

ପ୍ରଥମ ଓ ଦ୍ୱିତୀୟ ଏକକ



ଶ୍ରୀ ମୋହନ ଚରଣ ଦାସ
ମନମୋହନ ପୁସ୍ତକାଳୟ
ଗୃହନୀଚୌକ କଟକ

୬୩।୧ଏ, ବହୁବଜାର ଷ୍ଟ୍ରୀଟ୍, କଲିକତା-୧୨





ୀଶିକା—ଶ୍ରୀ କନକଦୁର୍ଗା

ନ ଚରଣ ଦାସ

ଣ ●

ଗୃହଟଙ୍କା ମାତ୍ର



# ଭୂମିକା

ସହୃଦୟ ପାଠକ ପାଠିକା,

ଆମ୍ଭର ପ୍ରକାଶିତ ଏହି ଜୈମିନି ଭାରତ ଭକ୍ତିପୂର୍ଣ୍ଣ ଗ୍ରନ୍ଥ ଖଣ୍ଡିକ ପାରମାର୍ଥିକ, ଆଧ୍ୟାତ୍ମିକ, ସାଂସାରିକ, ରାଜନୈତିକ, ସାମାଜିକ ପ୍ରଭୃତି ପ୍ରତ୍ୟେକ ବିଷୟରେ ପୂର୍ଣ୍ଣ ଥିବାରୁ ଆପଣମାନଙ୍କର ବିଶେଷ ଆଦର ଉତ୍ତରୋତ୍ତର ବୃଦ୍ଧି ପାଉଅଛି ।

ଏଥିରେ ମହାଭାରତ ଅଶ୍ୱମେଧିକ ପର୍ବ ବିଶଦ ଭାବେ ବ୍ୟାଖ୍ୟା କରାଯାଇ ଥିବାରୁ ଏହି ସୁବୃହତ ପୁସ୍ତକ ଖଣ୍ଡିକ ଆମ୍ଭମାନଙ୍କର ପରମ ଆଦରଣୀୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଯାହା ହେଉ ଏଥିପୂର୍ବେ ଏହା ପ୍ରକାଶିତ କରାଯାଉଥିଲେହେଁ ସେଥିରେ ଭାଷାର କଠିନତା ଏବଂ ସମସ୍ତ ବିଷୟ ବିଶଦଭାବରେ ପୁଙ୍ଖାନୁପୁଙ୍ଖ ବ୍ୟାଖ୍ୟାନ ହୋଇ ନଥିବା ଯୋଗୁଁ ସର୍ବସାଧାରଣଙ୍କର ଅସୁବିଧା ହୋଇଥିଲା, ତେଣୁ ଉକ୍ତ ଅସୁବିଧା ଦୂରକରିବା ନିମନ୍ତେ ଆମ୍ଭେ ବହୁ ପରିଶ୍ରମ ଓ ଅର୍ଥବ୍ୟୟ କରି ପ୍ରାଚୀନ ତାଳପତ୍ର ପୋଥି ଏବଂ ବଙ୍ଗଳା ଉଭୟକୁ ମିଳାଇ ସରଳ ଭାଷାରେ ଓ ବିଶଦଭାବରେ ଏହା ପ୍ରକାଶ କରି ସାଧାରଣଙ୍କ ଅସୁବିଧା ଦୂରକରି ଅଛୁ । ଏହା ଲେଖିବା ବାହୁଲ୍ୟ ମାତ୍ର, ଦେଖିଲେ ଜାଣି ପାରିବେ । ଏହି ପୁସ୍ତକର ଯଥା ସ୍ଥାନରେ ବିଷୟବୋଧକ ରଙ୍ଗିନ ଛବିମାନ ଦିଆଯାଇଅଛି ଏବଂ ଛପା ଓ କାଗଜ ମଧ୍ୟ ଭଲ କରାଯାଇଅଛି । ଏହା ଦୁଇ ଭାଗରେ ବିଭକ୍ତ, ପ୍ରଥମ ଓ ଦ୍ୱିତୀୟ ଖଣ୍ଡରେ ବନ୍ଧାଇକରି ବର୍ତ୍ତମାନ ସୁଲଭ ମୂଲ୍ୟ ୫ ଟଙ୍କା କରାଗଲା । ପ୍ରକାଶ ଥାଉ କି ଆମ୍ଭର ଏହି ବହିର ବିଶେଷ ବିକ୍ରି ଦେଖି କେତେକ ଅର୍ଥପିଶାଚ ପ୍ରବଞ୍ଚକ ମନଗଢ଼ା ଜୈମିନି ଭାରତ କରି ଲୋକଙ୍କୁ ଭ୍ରମରେ ପକାଇ ଠକାଉ ଅଛନ୍ତି । ମହର୍ଷି ଜୈମିନି ବେଦବ୍ୟାସଙ୍କ କୃତ ଭାରତର ସାରାଂଶ ଭକ୍ତି ରସାତ୍ମକ ବିଷୟ ନେଇ କେବଳ ଏହି ଅଶ୍ୱମେଧିକ ପର୍ବ ଖଣ୍ଡି କରି ଯାଇଅଛନ୍ତି । ଅନ୍ୟାନ୍ୟ ଯେଉଁ ଅଷ୍ଟାଦଶ ପର୍ବ ଜୈମିନି ଭାରତ ପ୍ରକାଶ ହୋଇ ପ୍ରଚାର ହୋଇଛି ଓ ହେଉଅଛି ତାହା ଜୈମିନିଙ୍କ କୃତ ନୁହେଁ ବା କୌଣସି ଶାସ୍ତ୍ରୋକ୍ତ ନୁହେ । ଏହା କେବଳ କପୋଳ କଳ୍ପିତ ମନଗଢ଼ା ଅଟେ । ତେଣୁ ସେ ନକଲି ବହି ପରିତ୍ୟାଗ କରି ଆମ୍ଭର ପ୍ରକୃତ ଜୈମିନି ଭାରତ ପଢ଼ନ୍ତୁ ।

**ବହି ଭିତରେ ମନମୋହନ ପୁସ୍ତକାଳୟ, କଟକ ଠିକଣା ଦେଖି କିଣିଲେ ଆଉ କେହି ଠକାମିରେ ପଡ଼ିବେ ନାହିଁ ।**

**ପ୍ରକାଶକ—ଶ୍ରୀ ମୋହନ ଚରଣ ଦାସ**

# ଉତ୍ସର୍ଗପତ୍ର



ମହାମହିମାସ୍ପଦ,

ଦୟାଦାକ୍ଷିଣ୍ୟାଦି ସକଳ ସଦ୍‌ଗୁଣାଧାର ଉତ୍କଳର ସୁବିଖ୍ୟାତ ମହାଜନ

**ଶ୍ରୀମାନ୍ ଶ୍ରୀଯୁକ୍ତ ଶ୍ରୀ ଶ୍ରୀ କ୍ଷେତ୍ରବାସୀ ସାହୁ**

ମହୋଦୟସ୍ୟ

ଉଦାରପଦପଙ୍କଜେଷୁ

ଶ୍ରୀମନ୍ ମହାଭାଗ,

ସାନୁନୟ ନିବେଦନ, ଏହି ଅଧୀନର ପରମାରାଧ୍ୟ ପିତୃଦେବ କବିରାଜ ୬ ଶମ୍ଭୁନାଥ ଦାସ ବୈଦ୍ୟଶାସ୍ତ୍ରୀ ଆପଣଙ୍କ ବିଶ୍ୱସ୍ତ ଗୃହଚିକିତ୍ସକ ଥାଇ ପରଲୋକ ହୋଇଥିଲେ । ତଦବଧି ଆପଣଙ୍କ ଯତ୍ନ, ସାହାଯ୍ୟ, ଦୟା ଓ ଅନୁରାଗ ବଳରେ ଆଜି ଏ ଅଧୀନ ସଂସାରର କ୍ରୀଡ଼ା ଭୂମିରେ ଦଣ୍ଡାୟମାନ । ଆଜି ସେହି ଅସୀମ ସ୍ନେହର ଚିହ୍ନ ସ୍ୱରୂପ ମୋର ଆନ୍ତରିକ ଭକ୍ତିର ସହିତ ଏହି **ଜୈମିନି ଭାରତ** ନାମକ ପୁସ୍ତକ ଖଣ୍ଡି ଆପଣଙ୍କ ସୁପବିତ୍ର କରକମଳରେ ଅର୍ପଣ କରୁଅଛି । ଆଶାକରେ ଆପଣ ନିଜର କ୍ଷମାଗୁଣେ ଅଧୀନର ଏହି ଧର୍ମ ପୁସ୍ତକ ଖଣ୍ଡି ଦୟାର୍ଦ୍ରେ ଗ୍ରହଣ କରିବାକୁ କୁଣ୍ଠିତ ହେବେ ନାହିଁ, ନିବେଦନ । ଇତି ।

ତା ୧୧।୫।୨୪

ଶ୍ରୀଚରଣାଧୀନ ସେବକ

**ମୋହନ**

# ସୂଚୀପତ୍ର

## ପ୍ରଥମ ଖଣ୍ଡ





## ଦ୍ୱିତୀୟ ଖଣ୍ଡ

ଜନ୍ମେଜୟ ରାଜା ହୋଇ ପୃଥିବୀ ପାଳିଲେ ।
ଦାନ ପୁଣ୍ୟ ଯଜ୍ଞ ଆଦି ନାନା କର୍ମ କଲେ ॥
ସକଳ ଶାସ୍ତ୍ରରେ ଜ୍ଞାତା ଅଟେ ନୃପମଣି ।
ପରମ ଆତ୍ମାରେ ନିତ୍ୟେ ଭଜେ ଚକ୍ରପାଣି ॥
ଦିନେ ସଭାକରି ବସିଥିଲେ ନୃପଈଶ ।
ଜୈମିନି ଋଷି ସେଠାରେ ହୋଇଲେ ପ୍ରବେଶ
ଋଷିଙ୍କୁ ଦେଖିଣ ରାଜା ନମସ୍କାର କଲେ ।
ପାଦ ଧୌତ କରି ଦିବ୍ୟାସନେ ବସାଇଲେ ॥
ବୋଇଲେ ହେ ଋଷିବର କର ଅନୁଗ୍ରହ ।
ପୂର୍ବେ ଥିଲେ ଯୁଧିଷ୍ଠିର ଆମ୍ଭ ପିତାମହ ॥
ତାଙ୍କଠାରେ ଶ୍ରୀକୃଷ୍ଣ ଯେ ସଦୟ ହୋଇଲେ ।
ମହା ମହା ଯୋଦ୍ଧାଙ୍କୁ ସେ ଯୁଦ୍ଧେ ବିନାଶିଲେ
କେଉଁପରି ଅଶ୍ୱମେଧ ଯଜ୍ଞ କଲେ ସେହି ।
କହ ମହାମୁନି ମୋହଠାରେ ଦୟାବହି ॥
ଆଦ୍ୟ ପ୍ରାନ୍ତକରି ସର୍ବ କୁହ ମୋର ଆଗ ।
କେଉଁ ପରି କଲେ ମହା ଅଶ୍ୱମେଧ ଯାଗ ॥
ପୂର୍ବବଂଶ ଇତିହାସ ଶୁଣିବାକୁ ମନ ।
ସେକଥା ସଂକ୍ଷେପି ମୋତେ କହ ତପୋଧନ ॥
ସେ ଯୋଗରେ ଶ୍ରୀକୃଷ୍ଣଙ୍କ ମହିମା ପ୍ରକାଶ ।
ଶୁଣିବା ପାଇଁକି ସଦା ମୋ ମନ ଉଲ୍ଲାସ ॥
ଜୈମିନି ଶୁଣିଣ ତାହା ଆନନ୍ଦ ହୋଇଲେ ।
ଶ୍ରୀକୃଷ୍ଣଙ୍କ ପଦ୍ମପାଦେ ଧ୍ୟାନ ଲଗାଇଲେ ॥
ଧନ୍ୟ ଧନ୍ୟ ରାଜା ତୁମ୍ଭ ପିତାମାତା ଧନ୍ୟ ।
ଶ୍ରୀକୃଷ୍ଣ ମହିମା ଶୁଣିବାକୁ କଲ ମନ ॥
ଯେଉଁପରି ହେଲା ଯାଗ କହୁଅଛୁ ମୁହିଁ ।
ମନଦେଇ ଶୁଣ ପରୀକ୍ଷିତଙ୍କ ତନୟି ॥
ସାନନ୍ଦ ହୋଇଣ ମୁନି ବୋଲନ୍ତି ବଚନ ।
ତୁମ୍ଭ ପୂର୍ବବଂଶ ଅଶ୍ୱମେଧ କଥା ଶୁଣ ॥
ଯୁଧିଷ୍ଠି ଦେବଙ୍କ ପିତା ପଣ୍ଡୁ ରାଜା ଥିଲେ ।
ତାଙ୍କ ଜ୍ୟେଷ୍ଠଭାଇ ଧୃତରାଷ୍ଟ୍ର ଅନ୍ଧ ହେଲେ ॥
ଧୃତରାଷ୍ଟ୍ରଠାରୁ ଶତେ ପୁତ୍ର ହେଲେ ଜାତ ।
ଦ ଅକ୍ଷରରେ ସମସ୍ତ ନାମ ଯେ ବିଦିତ ॥
ସେମାନଙ୍କ ମଧ୍ୟେ ବଡ଼ ଅଟେ ଦୁର୍ଯ୍ୟୋଧନ ।
ତାର ସାନ ଦୁଃଶାସନ ଏହିପରି ଜାଣ ॥
କ୍ରମେ ସେହି ଶତେଭାଇ ହେଲେ ବଳୀୟାର ।
ଭାର ନ ସହିଣ ପୃଥ୍ୱୀ ହୋଇଲା କାତର ॥

ପଣ୍ଡୁ ରାଜାଙ୍କର ପୁତ୍ର ହେଲେ ପାଞ୍ଚଜଣ ।
ଜ୍ୟେଷ୍ଠ ଯୁଧିଷ୍ଠିର ଭୀମ ତା ପରେ ଅର୍ଜୁନ ॥
ଆବର ନକୁଳ ସହଦେବ ସବା ସାନ ।
ଏହି ପାଞ୍ଚଜଣ ହେଲେ ପଣ୍ଡୁଠାରୁ ଜନ୍ମ ॥
ପଣ୍ଡୁ ରାଜା ଅନ୍ତେ ରାଜା ହେଲେ ଦୁର୍ଯ୍ୟୋଧନ
ମହା ଉଗ୍ରମୂର୍ତ୍ତି ସେହି ସମନ ସମାନ ॥
ମାନୀ ନିର୍ଦ୍ଦୟ ହିଂସ୍ରକ କପଟୀ ଯେ ଥିଲେ ।
ପୁଣି କର୍ଣ୍ଣଦ୍ରୋଣ ଭୀଷ୍ମ ତାଙ୍କୁ ସାହା ହେଲେ ॥
ଏଣୁ କରି ପାଣ୍ଡବଙ୍କୁ ହିଂସା କଲେ ସେହି ।
ବିଷଲଡୁ ଦେଲେ ଭୀମେ ମାରିବାର ପାଇଁ ॥
ବିଷ ଖାଇ ଭୀମ ଯହୁଁ ଅଚେତନ ହେଲେ ।
ଏହାଦେଖି ଦୁର୍ଯ୍ୟୋଧନ ଜଳରେ ମେଲିଲେ
ଯୁଧିଷ୍ଠିର ଧର୍ମବଳେ ଭୀମ ଉବୁରିଲେ ।
ପୁଣି ଗୋଟିଏ ଚକ୍ରାନ୍ତ ଦୁର୍ଯ୍ୟୋଧନ କଲେ ॥
ଜଉ ଛଣପଟେ ଏକଘର ଯେ କରିଲା ।
ମାତା ସହୁ ପାଞ୍ଚ ଭାଇ ତହିଁରେ ରଖିଲା ॥
ପୁରୋଚନ ନାମେ ଏକ ପଣ୍ଡାକୁ ଡାକିଣ ।
ବୋଇଲା ଅଗ୍ନି ସେ ଘରେ ଲଗାଅ ବହନ ॥
ଆଜ୍ଞା ପାଇ ପୁରୋଚନ ସେଠାରେ ମିଳିଲା ।
କୌଶଳ କରିଣ ରାତ୍ରେ ଅଗ୍ନି ଲଗାଇଲା ॥
ଆଗରୁ ଏ ସବୁକଥା ଜାଣି ମାୟାଧର ।
ବିଦୁରଙ୍କୁ ଡାକି କହି ଦେଲେ ସେ ଖବର ॥
ବିଦୁର ଯୁଧିଷ୍ଠିରଙ୍କୁ ସବୁ କହିଥିଲେ ।
ଅଗ୍ନି ଲଗାନ୍ତେ ସେମାନେ ବାହାରି ଆସିଲେ
ତହୁଁ ପାଣ୍ଡବମାନେ ଯେ ମାତା ସଙ୍ଗେନେଇ
ବନବାସେ ନାନାକଷ୍ଟ ଭୋଗ କଲେ ଯାଇଁ ॥
ଏସନ ସମୟେ ପଞ୍ଚାଳର ନରବର ।
ପାଞ୍ଚାଳୀ ବିଭା ନିମନ୍ତେ କଲେ ସ୍ୱୟମ୍ବର ॥
ସେହି ସ୍ୱୟମ୍ବରେ ଏକ ଲକ୍ଷ ସେ କରିଲେ ।
ଯେ ଲକ୍ଷ ବିନ୍ଧିବ କନ୍ୟା ନେବ ପଣ କଲେ ॥
ଲକ୍ଷ କଥା ଶୁଣିଣ ପାଣ୍ଡବ ପାଞ୍ଚଭାଇ ।
କପଟ ରୂପେ ସେ ସ୍ଥାନେ ପ୍ରବେଶିଲେ ଯାଇଁ
ବହୁଦେଶୁ ରାଜାମାନେ ତହିଁ ଆସିଥିଲେ ।
ଦ୍ରୁପଦ ତାହାଙ୍କୁ ଚାହିଁ ବଚନ ବୋଇଲେ ॥
ଯେ ଲକ୍ଷବିନ୍ଧିବ ମୋର କନ୍ୟା ତାଙ୍କୁ ଦେବି
ଶୁଣି ରାଜାଏ ବୋଇଲେ ମୁଁ ଲକ୍ଷ ବିନ୍ଧିବ ॥

ଯେତେ ରାଜାଥିଲେ ଲକ୍ଷ ବିନ୍ଧି ନ ପାରିଲେ ।
ପୁଣି ଦ୍ରୁପଦ ଅନ୍ୟାନ୍ୟ ଲୋକଙ୍କୁ କହିଲେ ॥
ଗୁଣ୍ଡାଳ ବ୍ରାହ୍ମଣ ଯାଏ ଯେ ଲକ୍ଷ ଭେଦିବ ।
ବିବାହ ମୋ ସତ୍ୟେ କନ୍ୟା ନିଶ୍ଚେ ସେହିନେବ
ବ୍ରାହ୍ମଣ ବେଶରେ ବୀର ଅର୍ଜୁନ ଯେ ଥିଲେ
କୃଷ୍ଣଙ୍କ କୃପାରେ ଲକ୍ଷ ସେଠାରେ ବିନ୍ଧିଲେ ॥
କନ୍ୟାରତ୍ନ ଲାଭ କଲେ ବୀର ଅରଜୁନ ।
ପାଣ୍ଡବଙ୍କୁ ଦୁର୍ଯ୍ୟୋଧନ ଚାହିଁଲେ ସେ ସ୍ଥାନ ॥
ପାଣ୍ଡବଙ୍କୁ ଦୁର୍ଯ୍ୟୋଧନ ରାଜ୍ୟକୁ ଆଣିଲେ ।
ପୁଣି ଦୁର୍ଯ୍ୟୋଧନ ଯେ କପଟପାଶା କଲେ ॥
ବାଜି ରଖି ଯୁଧିଷ୍ଠିଙ୍କ ସଙ୍ଗେ କଲେ ଖେଳ ।
ଯୁଧିଷ୍ଠି ଦେବ ଖେଳରେ ହାରିଲେ ସକଳ ॥
ଦ୍ରୌପଦୀର କେଶ ଦୁଃଶାସନ ଧରିନେଲା ।
ଦୁର୍ଯ୍ୟୋଧନ ସଭାତଳେ ଉଲଗ୍ନ ସେ କଲା ॥
ଶ୍ରୀକୃଷ୍ଣଙ୍କ ପାଦପଦ୍ମେ ଦେବୀ କଲେ ଲୟ ।
କରି ନ ପାରିଲା ଉଲଗ୍ନ ସେ କୁରୁରାୟ ॥
ଅତ୍ୟନ୍ତ କୋପହୋଇଣ ଦ୍ରୌପଦୀସେକାଳେ
ନେତ୍ରାଗ୍ନିରେ ସ୍ୱର୍ଣ୍ଣହଂସ ପୁରକୁ ଦହିଲେ ॥
ଦୁର୍ଯ୍ୟୋଧନ ପାଟ ମହାଦେଈ ଭାନୁମତୀ ।
ତା ବସନେ କୋପାନଳ ଲାଗିଲା ତଡ଼ିତ ॥
ଗୁଡ଼ି ପିଡ଼ି ହୋଇ ଭାନୁମତୀ ମହାଦେଈ ।
କୁରୁ ସଭାରେ ମିଳିଲେ ବସ୍ତ୍ରହୀନା ହୋଇ ॥
ଦେଖି ସଭାଲୋକେ ମୁହିଁ କଲେ ଧରଣୀକି ।
ମନେ ବିଚାରନ୍ତି ରାଜା ବଡ଼ ଅବିବେକୀ ॥
ପରକୁ ଯେ ମନ୍ଦ ଚିନ୍ତେ ଏହୁ ସଂସାରରେ ।
ସେ ମନ୍ଦରେ ନିଜେ ପଡ଼େ ଦେଖିଲୁନେତ୍ରରେ
ପୁନର୍ବାର ଆଉଥରେ ପଶାଖେଳ କଲେ ।
ଯେ ହାରିବ ବାରବର୍ଷ ବୁଲିବ ବନରେ ॥
ସେ ଥର ପଶାରେ ହାରିଲେକ ଯୁଧିଷ୍ଠିର ।
ଦୁର୍ଯ୍ୟୋଧନ ବୋଲେ ରାଜ୍ୟ ଭୁଞ୍ଜ ହେ ବାହାର
ଯୁଧିଷ୍ଠିର ଚାରିଭାଇ ଦ୍ରୌପଦୀଙ୍କୁ ନେଇ ।
ବନବାସେ ବାରବର୍ଷ କଟାଇଲେ ପୁଣି ॥
ଏକବର୍ଷ ଅଜ୍ଞାତ ବାସରେ କଟାଇଲେ ।
ଶ୍ରୀକୃଷ୍ଣଙ୍କୁ ଦୂତପଣେ ଯୁଧିଷ୍ଠି ପେଷିଲେ ॥
ପାଞ୍ଚଭାଇ ପାଇଁ ପାଞ୍ଚଗ୍ରାମ ସେ ମାଗନ୍ତେ ।
ଦୁର୍ଯ୍ୟୋଧନବୋଇଲେ ନ ଦେବି ମୁଁ କଦାଚିତେ
ଛୁଞ୍ଚି ମୁନ ନ ଦେବି ମୁଁ କେବେ ସୂଚ୍ୟଗ୍ରନେ
ଶ୍ରୀକୃଷ୍ଣ ଏ କଥା ଶୁଣି ଫେରିଲେ ତକ୍ଷଣେ ॥
ପାଣ୍ଡବଙ୍କୁ କହି ଯୁଦ୍ଧ ଆୟୋଜନ କଲେ ।
କୁରୁକ୍ଷେତ୍ରେ ଯୁଦ୍ଧ ହେବ ସ୍ଥିର ସେ କରିଲେ
ନନ୍ଦିଘୋଷ ରଥେ କୃଷ୍ଣ ସାରଥି ହୋଇଣ ।
ରଥୀ କଲେ ତୃତୀୟ ପାଣ୍ଡବ ଅରଜୁନ ॥
ଶ୍ରୀକୃଷ୍ଣ ପ୍ରସାଦେ ଯୁଧିଷ୍ଠିର ଜୟୀ ହେଲେ ।
ଭୀଷ୍ମଦ୍ରୋଣ କର୍ଣ୍ଣ ଆଦି ସପ୍ତରଥୀ ମଲେ ॥
ଦୁର୍ଯ୍ୟୋଧନ ଶତେ ଭାଇମାନଙ୍କୁ ମାରିଣ ।
ଯୁଧିଷ୍ଠିର ହସ୍ତିନାରେ ହୋଇଲେ ରାଜନ ॥
ଭୀଷ୍ମଦେବ ରାଜନୀତି ପୂର୍ବେ କହିଥିଲେ ।
ସେକଥା ବିଚାରି ଧର୍ମ ଭୋଗ ତୁଚ୍ଛ କଲେ
ଜ୍ଞାତି ଗୁରୁବଧ ଦୋଷ ବିଚାରି ହୃଦରେ ।
ବୋଲନ୍ତି କି କର୍ମ କଲି ମୁହିଁ ଜଗତରେ ॥
ରାଜ୍ୟଲୋଭେ ମହାପାପ ମୁହିଁ ଅରଜିଲି ।
ନରକେ ପଡ଼ିବା ପାଇଁ ବାଟ ସଫା କଲି ॥
ହସ୍ତିନା କଟକେ ଭୀମସେନ ହେଉ ରାଜା ।
ମୁଁ ବନବାସୀ ହୋଇବି ଗୃହ କରି ତେଜ୍ୟା
ଯୁଧିଷ୍ଠି ଅଧୀର ହେବା ଦେଖି ନାରାୟଣ ।
ମାୟାରେ ଭୁଲାଇ ଦେଲେ ଯୁଧିଷ୍ଠିର ମନ ॥
ଯୁଧିଷ୍ଠି ରାଜା ହୋଇଣ ପ୍ରଜାଙ୍କୁ ପାଳିଲେ ।
ଏହିପରି ତହୁଁ କେତେଦିନ ଗଲା ଭଲେ ॥
ଜ୍ଞାତିବଧ ପାତକ ଯୁଧିଷ୍ଠି ମନ ଦହେ ।
ବାଉଁଶ ମଧରେ ଘୁଣ ଲାଗିଲା ପରାୟେ ॥
ମନେ ବିଚାରନ୍ତି ମାୟା ସଂସାରେ ପଡ଼ିଲି ।
ମନୁଷ୍ୟ କର୍ତ୍ତବ୍ୟ କାର୍ଯ୍ୟ ପଥ ମୁଁ ଛାଡ଼ିଲି ॥
ଭୀଷ୍ମଦେବ ସ୍ୱର୍ଗ ଯିବାବେଳେ କହିଥିଲେ ।
ସେସବୁକଥା ସୁମରି ରାଜା ଅତି ଦୁଃଖୀ ହେଲେ ॥
ସେବେଳେ ମନେ ତାପ କଲେ ଯୁଧିଷ୍ଠିର ।
ଜ୍ଞାତିବଧ ପାପୁଁ କେମନ୍ତେ ମୁଁ ହେବି ପାର ॥
ଏମନ୍ତ ଭାବିଣ ରାଜା ଅତି ଦୁଃଖିତରେ ।
ବ୍ୟାସ ଶ୍ରୀକୃଷ୍ଣେ ସ୍ମରଣ କରିଲେ ଅର୍ଥୀରେ ॥
ଜୟ ଜୟ ନାରାୟଣ ଜଗତର ନାଥ ।
ମହାଦେବଙ୍କୁ ଉଦ୍ଧାର ଦୁଃଖ ରାଧାକାନ୍ତ ॥

---

## ବେଦବ୍ୟାସ ଯୁଧିଷ୍ଠିରଙ୍କ ପାଶେ ପ୍ରବେଶ ଓ ଅଶ୍ୱମେଧ ଯଜ୍ଞର ଉପଦେଶ ଦେବା

ବେଦବ୍ୟାସ ମୁନିବର ଏହି ସମୟରେ ।
ପ୍ରବେଶ ହୋଇଲେ ଆସି ଯୁଧିଷ୍ଠିର ପାଶରେ ॥
ଦେଖି ଧର୍ମସୁତ ବହୁ ସମ୍ମାନରେ ତାଙ୍କୁ ।
ପ୍ରଣାମ କରଣ ଦେଲେ ଦିବ୍ୟ ଆସନକୁ ॥
ବ୍ୟାସନେ ବସି ମୁନି ବୋଲନ୍ତି ବଚନ ।
କାହିଁପାଇଁ ଦେଖାଯାଏ ତୋ ମୁଖ ମଳିନ ॥
ଯୁଧିଷ୍ଠିର ବୋଇଲେ କଲି ଜ୍ଞାତିବଧ ପାପ ।
ତେଣୁ ମୋ ମନରେ ସଦା ଜାତ ଅନୁତାପ ॥
ସବିନୟେ କହୁଅଛି କର ଅନୁଗ୍ରହ ।
ସେ ପାପରୁ କେହ୍ନେ ମୁକ୍ତ ହେବି ମୋତେ କୁହ ॥
ବ୍ରହ୍ମଜ୍ଞାନୀ ମୁନି ତୁମ୍ଭେ ଅଟ ସର୍ବଜ୍ଞାତା ।
କିପରି ପାପୁଁ ଉଦ୍ଧରିବି ହେବ ପବିତ୍ରତା ॥
ଯେବେ ମୁଁ ପୂର୍ବ ଭାଗ୍ୟରୁ ହେଲି ଅଧିପତି ।
କାହିଁ। ମରାଇଲି ଦ୍ରୋଣ କର୍ଣ୍ଣ ଭୀଷ୍ମପତି ॥
ଦ୍ରୋଣ ମରାଇଣ ଗୁରୁଦ୍ରୋହୀ ମୁହିଁ ହେଲି ।
ଦାନିକର୍ଣ୍ଣ ନାଶ କରି ଅଖ୍ୟାତି ଲଭିଲି ॥
ଦାନିକର୍ଣ୍ଣ ଦାନିକର୍ଣ୍ଣ ଦାନିକର୍ଣ୍ଣ ନାମ ।
ବିଖ୍ୟାତ ଅଟଇ ଜାଣ ଏ ତ୍ରୟଭୁବନ ॥
କର୍ଣ୍ଣଠାରୁ ଦାନ ନ୍ୟନ୍ତି ଦେବ ବିପ୍ରମାନେ
ଦାନ ଲୋପ ହେଲା ଜାଣ କର୍ଣ୍ଣର ନିଧନେ
ଯେଉଁ ଜିତେନ୍ଦ୍ରିୟ ଭୀଷ୍ମ ଅବିବାହି ଥିଲେ ।
ମୋ ରାଜ୍ୟ ସକାଶେ ସେ ମହାତ୍ମା ନାଶଗଲେ
ପୃଥିବୀ ମାତାର ଅଳଙ୍କାର ଏହିମାନେ ।
ଅଳଙ୍କୃତ କରିଥିଲେ ପୃଥିବୀ ସ୍ୱଗୁଣେ ॥
ଶୋଭାଯୁକ୍ତ ଲୋକ ଚକ୍ଷୁ ବିହୀନେ ଯେପରି ।
ଏବେ ଏ ପୃଥିବୀ ମାତା ହେଲା ସେହିପରି ॥
ମୁଁ ବନଗାମୀ ହୋଇବି ଭୀମ ରାଜା ହେଉ ।
ବନେ ଭ୍ରମି ତୀର୍ଥସ୍ଥାନେ ମୋର ପ୍ରାଣ ଯାଉ ॥
ଏ କଥା ନ କଲେ ମୋତେ ଭବୁ ପାରି ନାହିଁ
ଜ୍ଞାତିବଧ ପାପୁଁ କେହ୍ନେ ଉଦ୍ଧରିବି ମୁହିଁ ॥
ବ୍ୟାସଦେବ ଶୁଣି ଯୁଧିଷ୍ଠିରଙ୍କୁ କହିଲେ ।
ଜ୍ଞାତିବଧ ପାପ ନାଶ ରୀତି ଶୁଣ ଭଲେ ॥
ତୁହି ଯେବେ ଅଶ୍ୱମେଧ ଯାଗକୁ କରିବୁ ।
ତେବେ ପାପ ନାଶଯିବ ନିର୍ମଳଙ୍କ ହେବୁ ॥
ପୂର୍ବେ ପର୍ଶୁରାମ ବୋଲି ଏକ ରାଜାଥିଲେ ।
ଏକୋଇଶବାର ପୃଥ୍ୱୀ ରାଜାଙ୍କୁ ଜିଣିଲେ ॥
ପୃଥିବୀ ନିକ୍ଷତ୍ରୀ କରି ଏକା କ୍ଷତ୍ରୀ ସେହି ।
କ୍ଷତ୍ରୀ ବଧ ପାପୁଁ ମୁକ୍ତ ହୋଇବାର ପାଇଁ ॥
ତିନି ଅଶ୍ୱମେଧ ଯାଗ ପୂର୍ଣ୍ଣ ସେହୁ କଲେ ।
କ୍ଷତ୍ରିବଧ ପାତକରୁ ମୁକତ ହୋଇଲେ ॥
ତୁ ମୋ କଥାମାନି ଅଶ୍ୱମେଧ ଯାଗ କର ।
ଜ୍ଞାତବଧ ପାତକ ତୋଠାରୁ ହେବ ଦୂର ॥
ତୋଠାରେ ପ୍ରସନ୍ନ ହୋଇଛନ୍ତି ଯଦୁପତି ।
ତାଙ୍କ ସକାଶେ ଲଭିଲୁ ଅଚଳ ବିଭୂତି ॥
ତାହା ଛାଡ଼ି ତୁହି କର୍ପା ଯିବୁ ବନବାସ ।
ଅଶ୍ୱମେଧ କରି ପାପ ରାଶି କର ନାଶ ॥
ତୋର ସହାୟ ଅଟନ୍ତି ଦେବ ଚକ୍ରଧର ।
ତାଙ୍କୁ ଘେନି ରାଜ୍ୟ ପାଳି ପାପ ଦୂରକର ॥
ଇହଲୋକେ କୀର୍ତ୍ତି ହେବ ଏହି ଯଜ୍ଞକଲେ ।
ଜ୍ଞାତିବଧ ପାପ ଯିବ ବସିବ ସ୍ୱର୍ଗରେ ॥
ଯୁଧିଷ୍ଠିର ଦେବ ବୋଲନ୍ତି ଶୁଣ ମୁନିବର ।
ଯଜ୍ଞକୁ ବହୁତ ଧନ ହେବ ଦରକାର ॥
ଧନ ହୀନ ପ୍ରାଣୀ ଯଜ୍ଞ କରି ନ ପାରଇ ।
ମୁଁ ପୁଣି କେହ୍ନେ କରିବି କହ ତପୀସାଇଁ ॥
ବ୍ୟାସଦେବ ବୋଲନ୍ତି ରାଜ୍ୟରୁ ଧନ ଆଣ ।
ଯୁଧିଷ୍ଠିର ବୋଲନ୍ତି ପ୍ରଜା ପାଇବେ କଷଣ ॥
ଅନ୍ୟାନ୍ୟ ରାଜାଙ୍କଠାରୁ ଆଣ ଧନ ଯାଇଁ ।
ଯୁଧିଷ୍ଠିର ବୋଇଲେ ଏହା ଉଚିତ ନୁହଇ ॥
ଏ ମହାଯୁଦ୍ଧରେ ସର୍ବ ରାଜା ହୋଇଲେ ହତ ।
ମିତ୍ରା ମୃତ୍ୟୁ ଅନ୍ତେ ରାଜା ହୋଇଲେ ବାଳୁତ
ଧନ ହୀନ ନିଃସହାୟ ଜନ ଅଟେ ମୁହିଁ ।
ଯୁଦ୍ଧରେ ସକଳ ନାଶ ହୋଇଲା ଗୋସାଇଁ
କେମନ୍ତ ପ୍ରକାର ଏହି ଯାଗ ମୁଁ କରିବି ।
ନିଶ୍ଚେ ବେଦବାସ ମୁହିଁ ବନବାସୀ ହେବି ॥
ଅହେ ମୁନିବର ଏଥି ଉପାୟ କହିବ ।
କେହ୍ନେ ଏ ଅଧମ ପାପୁ ପରିତ୍ରାଣ ହେବ ॥
ଜୟ ମାଳାଦ୍ରି-ବିହାରୀ ପତିତ-ପାବନ ।
ଉପାଧ୍ୟାୟ ମହାଦେବେ କର ପରିତ୍ରାଣ ॥

## ମରୁତ ଯଜ୍ଞ ବର୍ଣ୍ଣନ

ବ୍ୟାସଦେବ କହନ୍ତି ଯୁଧିଷ୍ଠି ମୁଖ ଚାହିଁ ।
ପୂର୍ବର ଚରିତ ଏବେ ଶୁଣ ମନଦେଇ ॥
ମରୁତ ନାମେଣ ଏକ ରାଜା ପୂର୍ବେ ଥିଲେ ।
ଏହି ପୃଥିବୀରେ ସେ ବହୁତ ଯାଗ କଲେ ॥
ଅସଂଖ୍ୟ ବ୍ରାହ୍ମଣେ ସେହି ଦେଲେ ବହୁ ଦାନ
ଦାନ ନେଇ ନ ପାରିଲେ ସମସ୍ତ ବ୍ରାହ୍ମଣ ॥
ସମସ୍ତ ବ୍ରାହ୍ମଣ ତାହା ହେମଗିରି ପରେ ।
ପକାଇଲେ ପଡ଼ିଅଛି ଦେଖ ହେ ନେସରେ ॥
ସେହି ଧନ ଆଣି ତୁମ୍ଭ ଯଜ୍ଞ କାର୍ଯ୍ୟକର ।
ଯୁଧିଷ୍ଠି ଦେବ ବୋଲନ୍ତି ଶୁଣ ମୁନିବର ॥
ଦତ୍ତ ଧନ ଆଣି ଦାନ ନୁହଇ ଉଚିତ ।
ଏ କାର୍ଯ୍ୟକଲେ ସଂସାରେ ହେବୁ କଳୁଷିତ ॥
ଶୁଣି ଲୋକମାନେ ଉପହାସ ଯେ କରିବେ ।
ରାଜା ହୋଇ ବ୍ରହ୍ମସ୍ୱ ହରଣ କଲେ ଏବେ ॥
ଜ୍ଞାତିବଧ ପାତକରୁ ଏ ପାପ ବଳିକ ।
ଏପରି ଅନ୍ୟାୟ ନ କରିବି ବ୍ୟାସଦେବ ॥
ବ୍ୟାସଦେବ କହୁଛନ୍ତି ଶୁଣ ଦଣ୍ଡଧାରି ।
ଯାହା ତୁ ବୋଇଲୁ ବାବୁ ବୁଝି ହେତୁ କରି ॥
ସ୍ୱଇଚ୍ଛାରେ ଯେହୁ ଧନ ପୃଥ୍ୱୀରେ ପକାଇ ।
ସେ ଧନରେ ଅଧିକାର ନୃପତିର ହୋଇ ।
ରାଜା ସେହି ଧନ ନେଲେ କିଛି ନାହିଁଦୋଷ
ଆଉରି କଥାଏ ଶୁଣ ପଣ୍ଡୁରାଜ ଶିଷ୍ୟ ॥
କଶ୍ୟପର ଏ ଧରଣୀ ଥିଲା ପୂର୍ବକାଳେ ।
ପର୍ଶୁରାମ କପରି ତାହାଙ୍କୁ ଦାନକଲେ ॥
ନୃପଗଣେ କପରି ହୋଇଲେ ଅଧିକାରୀ ।
ଦେଇ ପୁତ୍ରୀ ଗ୍ରହଣ କରିଲେ ବସୁନ୍ଧରୀ ॥
ଆଉରି କଥାଏ ପଣ୍ଡୁପୁତ୍ର ଏବେ ଶୁଣ ।
ଆଦ୍ୟରେ ଏ ପୃଥ୍ୱୀ ଥିଲା ଦାନବ ହସ୍ତେଣ ॥
କ୍ଷତ୍ରିୟମାନେ ତାହାଙ୍କୁ ପରାଜୟ କଲେ ।
କ୍ଷିତିପତି ହୋଇକରି ପୃଥିବୀ ପାଳିଲେ ॥
ଏହିପରି ଏ ଅବନୀ ଯାର ଯେତେବେଳେ ।
ସେହିଭୋଗକରେବାବୁତାହା ତେତେବେଳେ
ବିପ୍ରମାନେ ବହୁକାଳ ତହିଁ ପକାଇଲେ ।
ସ୍ୱଇଚ୍ଛାରେ ପକାଇଣ ଗୃହେ ଚଳିଗଲେ ॥
ସେ ଧନ ତୁମ୍ଭର ଜାଣ ନେଲେ ନାହିଁଦୋଷ
ଯେଣୁ ତୁମ୍ଭେ ବର୍ତ୍ତମାନ ପୃଥିବୀ ନରେଶ ॥
ସେହି ଧନ ଆଣି ଅଶ୍ୱମେଧ ଯାଗକର ।
ଜ୍ଞାତିବଧ ପାତକ ଅଙ୍ଗରୁ ହେଉ ଦୂର ॥
ବ୍ୟାସଦେବଙ୍କ ବଚନେ ଯୁଧିଷ୍ଠି ରାଜନ ।
ଅଶ୍ୱମେଧ କରିବାକୁ ବଳାଇଲେ ମନ ॥
ବ୍ୟାସଦେବଙ୍କ ଚରଣେ ପଡ଼ି ଯୁଧିଷ୍ଠିର ।
ଯଜ୍ଞେ କେତେ ବିପ୍ରଗଣ ହେବେ ଦରକାର ॥
ସେମାନେକେଉଁବିଧାନେଦକ୍ଷିଣା ଯେ ନେବେ
ସଂଶୟ ଫିଟାଇ ମୋର ଆଗେ କହ ଏବେ ॥
ଯଜ୍ଞୀୟ ଘୋଟକ କେଉଁପରି ହେବ ପୁଣ ।
ଏ କଥା ମୋତେ ବିସ୍ତାରି କହ ତପୋଧନ ॥
ଯୁଧିଷ୍ଠି ଦେବ ବଚନ ବ୍ୟାସଦେବ ଶୁଣି ।
କହେ ଏକମନେ ଶୁଣ ରାଜା ଚୂଡ଼ାମଣି ॥
ଯଜ୍ଞେ ଷୋଡ଼ଶ ହଜାର ବିପ୍ର ଲୋଡ଼ାହେବେ
କୁଳୀନ ବେଦ ବିଦ୍ୟାରେ ପଣ୍ଡିତ ସେ ଥିବେ
ଶାସ୍ତ୍ରଙ୍କ ନୈଷ୍ଠିକ ଜାଣ ହୋଇଥିବେ ସେହି ।
ଦକ୍ଷିଣା ଯେ ରୂପେ ନେବେ ଶୁଣ ମନଦେଇ
ସୁବର୍ଣ୍ଣ ମଣ୍ଡିତ ରଥ ଘୋଟକ ସହିତ ।
ବାଛୁରି ସହିତ ଗାଈ ଶସ୍ୟ ପରିମିତ ॥
ଏକ ଏକ ଭାର ସ୍ୱର୍ଣ୍ଣ ଜଣେ ଜଣେ ନେବେ
ଏହି ନିୟମରେ ଦ୍ୱିଜେ ଦକ୍ଷିଣା ପାଇବେ ॥
ଆଉରି ଯଜ୍ଞ ଘୋଡ଼ାର ଲକ୍ଷଣ ତୁ ଶୁଣ ।
ପୂର୍ବୁ ବ୍ରହ୍ମା ଯେଉଁପରି କରିଲେ ଭିଆଣ ॥
ବଳିଷ୍ଠ ହୋଇବ ଅଶ୍ୱ ଶୁକ୍ଳବର୍ଣ୍ଣ କାୟ ।
ପୂର୍ଣ୍ଣିମାଚନ୍ଦ୍ର ସମାନ ହେବ ଶୋଭନୀୟ ॥
ଲଞ୍ଜ ହଳଦିଆ ବା ଶାଗୁଆ ବର୍ଣ୍ଣ ହେବ ।
ଅତିଶୟ ଶୀଘ୍ରଗାମୀ ଘୋଟକ ହୋଇବ ॥
ଯଜ୍ଞକୁ ଏପରି ଅଶ୍ୱ ହେବ ଦରକାର ।
ତୋ ଆଗେ କହିଲୁ ଏବେ ପଣ୍ଡୁର କୁମର ॥
ବୀରପତ୍ର ଅଶ୍ୱ ମସ୍ତକରେ ବନ୍ଧାହେବ ।
ଚଇତ୍ର ଶୁକ୍ଳ ପୂର୍ଣ୍ଣିମା ଦିନ ଛାଡ଼ିଦେବ ॥
ବୀରପତ୍ରେ ଲେଖାଥିବ ଆପଣାର ଯଶ ।
ଆଉରି ଯେ ବୀରଦର୍ପ ଆଦି ସବିଶେଷ ॥
ଅଶ୍ୱ ଇଚ୍ଛାମତେ ଯେଣେ କରିବ ଗମନ ।
ତାର ପଛେ ଥିବ ତୋର ଭ୍ରାତ ପୁତ୍ର ସୈନ୍ୟ
ଯେହୁ ବୀର ପତ୍ର ପଢ଼ି ଘୋଡ଼ାକୁ ବାନ୍ଧିବ ।
ତାହାଙ୍କୁ ଜିଣିଣ ତୁମ୍ଭେ ଘୋଡ଼ା ଉଦ୍ଧରିବ ॥

ଏହିପରି ଏକବର୍ଷ ଯଜ୍ଞ ଅଶ୍ୱବର ।
ସ୍ୱଇଚ୍ଛାରେ ଭ୍ରମଣ କରିବ ଜନପୁର ॥
ଅଶ୍ୱ ଯେଉଁସ୍ଥାନେ ମଳମୂତ୍ର କରିଦେବ ।
ତହିଁ ହୋମକରି ଗୋଦାନ ବ୍ରାହ୍ମଣେଦେବ ॥
ଯଜ୍ଞକର୍ତ୍ତା ହେବ ଯେହୁ ତାର କଥା ଶୁଣ ।
ଯଜ୍ଞ ଅଶ୍ୱ ଦେଶ ଭ୍ରମି ଫେରିବା ଯାଏଣ ॥
ଭାର୍ଯ୍ୟା ସହିତରେ ସେହି ଶୟନ କରିବ ।
ମାତ୍ର ତାହା ସଙ୍ଗତେ ବିହାର ନ କରିବ ॥
ଭୋଗ ଇଚ୍ଛା ଛାଡ଼ି ଦେଇ ବିଳାସ ବିହୀନ ।
କଠୋର ବୈରାଗ୍ୟ ବ୍ରତ କରିବ ପାଳନ ॥
ଅଶ୍ୱ ଫେରି ଆସିଲେ ଯେ ଯଜ୍ଞକାର୍ଯ୍ୟ ହେବ ।
ଯେ ଯଜ୍ଞ କରିବ ସେହି ରାଜେନ୍ଦ୍ର ହୋଇବ ॥
ଏହିପରି ଶତେ ଯଜ୍ଞ ପୂର୍ବେ ଇନ୍ଦ୍ର କଲା ।
ଅମର ପୁରୀରେ ଦେବରାଜ ବୋଲାଇଲା ॥
ପୃଥିବୀ ରାଜାଙ୍କୁ ଜଣି ମହାଯଜ୍ଞ କଲେ ।
ଅଙ୍ଗୁପାପ ତାପ ନାଶଯାଏ ଅବହେଲେ ॥
ସ୍ୱର୍ଗେ ଦେବତାମାନଙ୍କଠାରୁ ପାଏ ମାନ୍ୟ ।
ଏ ଯଜ୍ଞ ବେଗେ ତୁ କର ଯୁଧିଷ୍ଠି ରାଜନ ॥
ଯୁଧିଷ୍ଠି ବୋଲନ୍ତି ଅହେ ବ୍ୟାସ ମୁନିବର ।
ଯଜ୍ଞ କରିବାକୁ ମନ ବଳଇ ମୋହର ॥
ଭାବୁଛି ମନେ କପରି ଯଜ୍ଞ ମୁଁ କରିବି ।
ଯଜ୍ଞ ଉପଯୁକ୍ତ ଘୋଡ଼ା କୋଉଁଠୁ ପାଇବି ॥
ଭୀମ ଅର୍ଜ୍ଜୁନ ନକୁଳ ସହଦେବ ବୀର ।
ଯୁଦ୍ଧ କରି କଷ୍ଟ ପାଇଛନ୍ତି ବହୁତର ॥
ବୃଷକେତୁ ମହାବୀର କର୍ଣ୍ଣର କୁମର ।
ଷୋଳ ବରଷ ବୟସ ଅଟଇ ତାହାର ॥
ଦେଖ ଘଟୋତ୍କଚ ପୁତ୍ର ବୀର ମେଘବର୍ଣ୍ଣ ।
ମହାଯୋଦ୍ଧା ପଣରେ ସେ ଅଟଇ ନିପୁଣ ॥
ଆମ୍ଭର ଯୁଦ୍ଧରେ ଏହି ଅନାଥ ହୋଇଛି ।
ଘଟୋତ୍କଚ ପରି ବୀର ମୃତ୍ୟୁ ଲଭିଅଛି ॥
ଏମାନଙ୍କୁ ଯଜ୍ଞକର୍ମେ ମୁହିଁ ଲଗାଇଲେ ।
ଅଧର୍ମ ହୋଇବ ଆହେ ତାତ ଜାଣ ଭଲେ ॥
ଆମ୍ଭର ସହାୟ ଏକା ଅଟନ୍ତି ଶ୍ରୀପତି ।
ଏତେବେଳେ ସେହି ତ ନାହାନ୍ତି ମୋର କତି
ଏପରି ସମୟେ ମୁହିଁ କି ବୁଦ୍ଧି କରିବି ।
ଚକ୍ରଧାରୀ ନ ଆସିଲେ କାହିଁକିନୁହେ ଭାବି ॥

ଅରେ ବାବୁ ଭୀମ ତୁହି ଏକମନେ ଶୁଣ ।
ଜ୍ଞାତିବଧ ପାପରୁ କପରି ହେବା ତ୍ରାଣ ॥
ଜାଣ ବାବୁ ଏ ଯଜ୍ଞରେ ବିପଦ ଘଟିବ ।
ବର୍ତ୍ତମାନ ଆମ୍ଭପକ୍ଷେ ବଡ଼ ଅସମ୍ଭବ ॥
ଯେବେ ଯଜ୍ଞ ଆରମ୍ଭ କରିବା ଆଜବର ।
ବିଘ୍ନ ହେଲେ ଅତି ନିନ୍ଦା ହୋଇବ ପ୍ରଚୁର ॥
ଅପମାନ କଥା ମୁହିଁ ସହି ନ ପାରିବି ।
ଅପମାନ ଅନଳରେ ମୁଁ ପୋଡ଼ି ହୋଇବି ॥
ଭୀମସେନ ବୋଲୁଛନ୍ତି ଶୁଣ ଜ୍ୟେଷ୍ଠଭାଇ ।
ଶ୍ରୀକୃଷ୍ଣ ଆଶାରେ ବର୍ତ୍ତିଅଛୁ ପାଞ୍ଚଭାଇ ॥
ଏ କୁରୁ ସାଗର ମହା ଦୁସ୍ତର ମଧ୍ୟରେ ।
ସମସ୍ତ ଜିଣିଛୁ ଆମ୍ଭେ ଯାହାଙ୍କ କୃପାରେ ॥
ଯେଉଁ ପ୍ରଭୁ ସଂସାରରେ ସୃଷ୍ଟିସ୍ଥିତି କର୍ତ୍ତା ।
ସର୍ବ ବିଘ୍ନ ନାଶକାରୀ ବିଧିର ବିଧାତା ॥
ବ୍ରହ୍ମା ରୁଦ୍ର ଇନ୍ଦ୍ର ଯାର ଚରଣେ କିଙ୍କର ।
ସେ ପ୍ରଭୁଙ୍କ ଅନୁଗ୍ରହେ ବିଘ୍ନ କିବା ଛାର ॥
ଶ୍ରୀହରିଙ୍କୁ ମନ ମଧ୍ୟେ କରନ୍ତୁ ସ୍ମରଣ ।
ତାଙ୍କ ଦୟାରେ ଏ ଯଜ୍ଞ ହୋଇବ ପୂରଣ ॥
ପାଣ୍ଡବଙ୍କ ଭର୍ତ୍ତା ବୋଲି ବିଖ୍ୟାତ ସଂସାରେ ।
ଯଜ୍ଞ ସଫଳ ହୋଇବ ତାହାଙ୍କ କୃପାରେ ॥
ଯେବେ ବ୍ୟାସଙ୍କ ଆଦେଶେ କରିବ ହେ ଯାଗ
ଯାଗ ଅଶ୍ୱ କାହିଁ ଅଛି ପୃଚ୍ଛ ତାଙ୍କୁ ବେଗ ॥
ଭୀମଙ୍କ ଏସନ ବାକ୍ୟ ବ୍ୟାସଦେବ ଶୁଣି ।
ବହୁତ ପ୍ରଶଂସା କରି ବୋଲୁଛନ୍ତି ବାଣୀ ॥
ଯାଗ ଅଶ୍ୱ ଅଛି ଯହିଁ ଶୁଣ ନୃପବର ।
ଏଠାରୁ ଅଟଇ ବାର ଦିନ ପଥ ଦୂର ॥
ଭଦ୍ରାବତୀ ନାମେ ଏକ ପୁର ଯେ ଅଛଇ ।
ଯୁବନାଶ୍ୱ ନାମେ ରାଜା ସେ ରାଜ୍ୟ ପାଳଇ ॥
ଶତେ ଅକ୍ଷୌହିଣୀ ବଳ ଅଟଇ ତାହାର ।
ଅତ୍ୟନ୍ତ ବଳିଷ୍ଠ ସେହି ବାଳୀ ସମ ବୀର ॥
ଧାର୍ମିକ ବିବେକ ଶାନ୍ତଶୀଳ ସୁମହତ ।
ପୁତ୍ରେ ପରି ପ୍ରଜାଙ୍କୁ ପାଳଇ ଅବିରତ ॥
ଅତ୍ୟନ୍ତ ଧାର୍ମିକ ସେହି ଦାନ ଯଜ୍ଞ କରେ ।
ବାହୁବଳେ ସମ ତାଙ୍କୁ ନାହିଁ ପୃଥିବୀରେ ॥
ସୁଲକ୍ଷଣ ଯଜ୍ଞ ଅଶ୍ୱ ଅଛଇ ତାହାର ।
ତାଙ୍କୁ ରକ୍ଷା କରିଥାନ୍ତି କୋଟି କୋଟି ବୀର ॥

ଯେବେ ଯଜ୍ଞ ଅଶ୍ୱ ତହୁଁ ଅଣିପାର ବାବୁ ।
ତେବେ ଅଶ୍ୱମେଧ ଯାଗ ନିଶ୍ଚୟ କରବୁ ॥
ସେଠାକୁ ଯିବାକୁ କ୍ଷମ ନୁହନ୍ତି ଅମରେ ।
ରାଜପୁତ୍ର ସୁବେଗ ତପ ଅଶ୍ୱ ରକ୍ଷା କରେ ॥
ପିତାଠାରୁ ବଳି ସେହି ଅଟେ ବିଷ୍ଣୁଭକ୍ତ ।
ପାରିବ ଯେବେ ସେ ଅଶ୍ୱ ଅଣ କୁନ୍ତିସୁତ ॥
ବିଳମ୍ବ କରିଲେ ବୀର କାର୍ଯ୍ୟନାଶ ହେବ ।
କୃଷ୍ଣ ପଦଧ୍ୟାୟୀ ବୋଲେ ହୀନ ମହାଦେବ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି ରସ
ଲୀଳା କଥା ପ୍ରସଙ୍ଗେ ବ୍ୟାସ ଯୁଧିଷ୍ଠିର
ପରାମର୍ଶେ ନାମ ପ୍ରଥମୋଽଧ୍ୟାୟଃ ।

---

## ଦ୍ୱିତୀୟ ଅଧ୍ୟାୟ

ବାସୁଦେବ ମହାଭୃତ୍ୟଂ ତପୋ ଯଜ୍ଞାଦିକାର୍ଯ୍ୟର
ନିଷ୍ଫଳଂ ଯାସ୍ୟତେ ସର୍ବଂ ସତ୍ୟଂ ଜାନୀହି ଭାରତ

## ଶ୍ରୀକୃଷ୍ଣଙ୍କ ହସ୍ତିନା ଆଗମନ ଓ ଭୀମସେନ ଭଦ୍ରାବତୀ ପୁରୁ ଅଶ୍ୱ ଆଣିବା

ଜୈମିନି ବୋଲନ୍ତି ଜନମେଜୟ ରାଜା ଶୁଣ
ଭୀମସେନ ହାସ୍ୟଭରି ବୋଲଇ ବଚନ ॥
ଏକା ହୋଇ ମୁହିଁ ଭଦ୍ରାବତୀପୁର ଯିବି ।
ଯଜ୍ଞଘୋଡ଼ାକୁ ତାହାର ଏସ୍ଥାନେ ଆଣିବି ॥
ମୋର ଏହି କଥା ସତ୍ୟ ଶୁଣ ନରବର ।
ଶ୍ରୀକୃଷ୍ଣ ସହାୟ ସଦା ତାହାକୁ ବା ଡର ॥
ଏବେ ରାଜା ଶ୍ରୀହରିଙ୍କି କର ସୁମରଣା ।
କିଛି ବିଘ୍ନ ହେବ ନାହିଁ ସେ କଲେ କରୁଣା ॥
ସେ ଦେବ ଜଗତନାଥ ତାଙ୍କୁ ନ ସ୍ମରିଲେ ।
ଦାନଧ୍ୟାନ ତପ ଯଜ୍ଞେ କିଛିହିଁ ନ ମିଳେ ॥
ପ୍ରତିଜ୍ଞା କରୁଛି ଯେବେ ଅଶ୍ୱ ନ ଆଣିବି ।
ଅନ୍ତଃକାଳେ କୁମ୍ଭୀପାକ ନରକେ ପଡ଼ିବି ॥
ପିତା ମାତା ବଧକଲେ ଯେଉଁ ପାପ ହୁଏ ।
ଯଜ୍ଞଅଶ୍ୱ ନ ଆଣିଲେ ସେ ପାପ ମୋ ଦେହେ
ଯେଉଁ ଦେଶେ କୂପ ନାହିଁ ନାହିଁ ଗଙ୍ଗାନୀର
ସେ ଦେଶେ ବିପ୍ର ବସନ୍ତି ଥିଲେ ଯେ ପ୍ରକାର
କ୍ରିୟାହୀନ ହୋଇ ପୁଣି ଅକ୍ରିୟା ପାପରେ ।
ଯଜ୍ଞ ଅଶ୍ୱ ନ ଅଣିଲେ ମୁହିଁ ସେ ପ୍ରକାରେ ॥
ଯହିଁ ନାହିଁ ବେଦପାଠ ଦେବତା ଅର୍ଚ୍ଚନ ।
ଧର୍ମ କାର୍ଯ୍ୟେ ଘୃଣା ନାନା ଅତ୍ୟାଗୃହମାନ ॥
ତହିଁ କ୍ଷଣେ ବାସକଲେ ଘଟେ ଯେଉଁ ପାପ ।
ଅଶ୍ୱ ନ ଅଣିଲେ ମୁଁ ଲଭିବ ତାହା ଭୂପ ॥
ଏମନ୍ତ ପ୍ରତିଜ୍ଞା କରି ବୀର ଭୀମସେନ ।
ତୁନି ହୋଇ ବସିଲେ ସେ ନ କହି ବଚନ ॥
ଭୀମସେନ ମନ କଥା ଜାଣି ଯୁଧିଷ୍ଠିର ।
ବୋଲନ୍ତି ଏ କାର୍ଯ୍ୟ ନୁହଇଟି ସହଜର ॥
ବିପଦେ ପଡ଼ିଛୁ ଭୀମ ମନ ଛନ ଛନ ।
ଜ୍ଞାତିବଧ ପାପୁଁ ଯେହ୍ନେ ହେବ ପରତ୍ରାଣ ॥
ଯୌବନାଶ୍ୱ ମହାଯୋଦ୍ଧା ବିଷ୍ଣୁ ପରାୟଣ ।
ତାଙ୍କୁ ଜିଣି ଅଶ୍ୱ ଆଣି ନୁହେ ସହଜେଣ ॥
ଅନେକ ସୈନ୍ୟ ତାହାର ନିପୁଣ ସମରେ ।
ଯୋଦ୍ଧାମାନେ କିବା ଯାକୁ ଯମ ଭୟକରେ
ତୁମ୍ଭେ ଏକାକୀ ସେଠାକୁ କରିଲେ ଗମନ ।
କେ ଜାଣେ କି ହେବ ଭାବି ମନ ହେବ ଛନ
କେ ଜାଣେ କାଳେ ବା ତୋତେ ପଡ଼ିବ ବିପଦ
ତହିଁ ପଠାଇବାକୁ ମୋ ନ ବଳଇ ହୃଦ ॥
ଯୁଧିଷ୍ଠିରଙ୍କ ବାଣୀ ଶୁଣି କର୍ଣ୍ଣଙ୍କ କୁମର ।
କରପଦ୍ମ ଯୋଡ଼ି କରି ଦଅଇ ଉତ୍ତର ॥
ହେ ଦେବ ଭୀମସେନର ଅଶୁଭ ନ ଭାବ ।
ସର୍ବଦା ତାଙ୍କର ସଖା ଦେବ ପଦ୍ମନାଭ ॥
ମୋତେ ଆଜ୍ଞା ଦିଅ ମୁହିଁ ତାଙ୍କ ସଙ୍ଗେ ଯିବି ।
ଯୌବନାଶ୍ୱ ଯୋଦ୍ଧାକୁ ମୁଁ ସମରେ ମାରିବି
ମୋହର ମାନସ ପୂର୍ଣ୍ଣ କର ଧର୍ମଦେବ ।
ତୁମ୍ଭ କାର୍ଯ୍ୟକଲେ ପ୍ରାଣ ସାର୍ଥକ ହୋଇବ ॥
ବୃଷକେତୁ ବାଣୀ ଶୁଣି ଭୀମସେନ ବୀର ।
ଗମ୍ଭୀର ଭାବେ ବୋଲନ୍ତି ବଚନ ମଧୁର ॥
ଯେଉଁ ଦିନୁ ତୋର ପିତା କର୍ଣ୍ଣ ଅଛୁ ମାରି ।
ସେହିଦିନୁ ନୟନରୁ ବହୁଅଛି ବାରି ॥
ସେ ଶୋକପାଶୋରେ ମୁଁ ମୁଁ ତୋହର ଦେଖିଣ
ବ୍ୟାକୁଳ ହୃଦୟ କିଛି ଶାନ୍ତ ହୁଏ ଜାଣ ॥
କର୍ଣ୍ଣ ପରି ଭାଇ ମାରି ମନେ ଯେଉଁ ତାପ ।
ତା ଏକା ଜାଣନ୍ତି ଦେବ ରୁକ୍ମିଣୀ ନାୟକ ॥

ବୃଷକେତୁ ବୀର ଭୀମସେନ ବାଣୀ ଶୁଣି ।
ବୋଲନ୍ତି ତହିଁକ ଚିନ୍ତା ନ କର ପାବନି ॥
ଯେ ଜନ ସଂସାରେ ଜନ୍ମି ଭଲ କାର୍ଯ୍ୟ କରେ ।
ଭଲ କାର୍ଯ୍ୟ କଲେ ତାକୁ ଭଜୁଥାନ୍ତି ନରେ ॥
ମୋର ପିତା କର୍ଣ୍ଣବୀର ଧାର୍ମିକ ଅଟଇ ।
ଦୁର୍ଯ୍ୟୋଧନ ସ୍ନେହବଶ ହୋଇକରି ସେହି ॥
ଜାଣନ୍ତି ଯେ ତୁମ୍ଭେ ଅଟ ସୋଦର ତାଙ୍କର ।
ପ୍ରତିଜ୍ଞା ନଷ୍ଟ ହୋଇବ ଭାବିଣ ମନର ॥
ଦୁର୍ଯ୍ୟୋଧନ ବାକ୍ୟେ ଭଲ ମନ ନ ବିଚାରି ।
କାର୍ଯ୍ୟ କରୁଥାନ୍ତି ପିତା ମିତ୍ର ସ୍ନେହ ଧରି ॥
ପିତାଙ୍କ ସାହସେ ଦୁର୍ଯ୍ୟୋଧନ ବଳବାନ ।
ଏ କଥାକୁ ଜାଣନ୍ତି ସଂସାରେ ସର୍ବଜନ ॥
ଦ୍ରୌପଦୀଙ୍କୁ କୁରୁସଭା ମଧ୍ୟକୁ ଆଣିଣ ।
ଦୁଃଶାସନ ହସ୍ତେ କରାଇଲେ ଉଲ୍‌ଗନ ॥
ବିରାଟ ଗୋଧନ ଗୁପ୍ତ ଭାବରେ ହରିଲେ ।
ଅର୍ଜୁନ ହସ୍ତରେ ତାର ଫଳ ଭୋଗକଲେ ॥
ଏ ସବୁର ମୂଳକର୍ତ୍ତା ପିତାଙ୍କୁ ବୋଲନ୍ତି ।
ତାଙ୍କର କାର୍ଯ୍ୟକୁ ତେଣୁ ନିନ୍ଦା କରୁଥାନ୍ତି ॥
ତାହାଙ୍କୁ ମାରିଣ ଦିବ୍ୟଗତି ଦେଇଅଛ ।
ଶ୍ରୀକୃଷ୍ଣ ସମ୍ମୁଖେ ମରି ଗଲେ ସ୍ୱର୍ଗଲୋକ ॥
ନାରୀମାନେ କାଚପିନ୍ଧି ପୁଣି କିଛି ଦିନେ ।
ବଦଳା ବଦଳି କରୁଥାନ୍ତି ଯଥାସ୍ଥାନେ ॥
ସେହିପରି ଅର୍ଜୁନ ସମରେ ମୋର ମିତ ।
ମନେ ଗର୍ବ ବହି ଶେଷେ ହୋଇଲେ ନିପାତ ॥
ଅର୍ଜୁନ ରଥେ ସାରଥି ବାସୁଦେବ ଥିଲେ ।
ତାଙ୍କୁ ଚାହିଁ ପିତା ମୋର ବୈକୁଣ୍ଠକୁ ଗଲେ ॥
ଫଳହୀନ ବୃକ୍ଷ ଯଦି ଥିବ ଅଗଣାରେ ।
ତାହାଙ୍କୁ ନ ପଚାରନ୍ତି ଯେବଣ ପ୍ରକାରେ ॥
ସେହିପରି ମୋର ପିତା ହୃଦୟ ଯେ ଜାଣ ।
ତାହା ପରଶ କରିଲେ ନର ନାଶପୁଣ ॥
ଅର୍ଜୁନ ଶରରେ ପିତା ମୃତ୍ୟୁ ସମୟରେ ।
ବାସୁଦେବ ମୂର୍ତ୍ତି ଦେଖି ପବିତ୍ର ହୋଇଲେ ॥
ପିତାଙ୍କର ଯଶ ଏ ସଂସାରେ ବ୍ୟାପିଅଛି ।
ମୁଁ ସାହାଯ୍ୟ ଦେଲେ ତାହା ପ୍ରକାଶିବ କିଛି ॥
ଅହେ ଦେବ ଭୀମସେନ ମୋର ବାଣୀ ଶୁଣ ।
ଯଜ୍ଞ ଅଶ୍ୱ ଆଣିବାକୁ ନିଅ ସଙ୍ଗତେଣ ॥

କର୍ଣ୍ଣର ନିଧନ ଚିନ୍ତା ଛାଡ଼ ବୀରମଣି ।
ମଲା ଗଲା କଥାରେ ଭାବିବା ବୃଥା ପୁଣି ॥
ଅଶ୍ୱ ଆଣିବାକୁ ଦେବ ମୋତେ ସଙ୍ଗେନେବ
ତେବେ ସେହି କଥାମାନ କହିବି ମୁଁ ସର୍ବ ॥
ମୋତେ ସଂସାରେ ସୁପୁତ୍ର ସମସ୍ତେ କହିବେ
ପିତା ଅରପଣ ରହିଅଛି ପୁତ୍ରଠାବେ ॥
ସଙ୍ଗେ ନିଅ ଭୀମ ମୋତେ ଭଦ୍ରାବତୀପୁର ।
ଘୋରଯୁଦ୍ଧ କରିଣ ଆଣିବା ଅଶ୍ୱବର ॥
ବୃଷକେତୁ ବଚନ ଶୁଣିଣ ଭୀମସେନ ।
ଅତି ଆନନ୍ଦରେ ତାକୁ କଲେ ଆଲିଙ୍ଗନ ॥
ତାହାକୁ ବୋଧିଣ ଭୀମସେନ ବୀରବର ।
ଘଟୋତ୍କଚ ସୁତେ ଚାହିଁ ବୋଲନ୍ତି ଉତ୍ତର ॥
ଆରେ ବାବୁ ମେଘବର୍ଣ୍ଣ ଘଟୋତ୍କଚ ସୁତ ।
ତୋରପିତା ଆମ୍ଭ କାର୍ଯ୍ୟ କରିଛି ବହୁତ ॥
ବନବାସେ ସମସ୍ତଙ୍କୁ ପିଠିରେ ବସାଇ ।
ଗନ୍ଧମାର୍ଦ୍ଦନ ପର୍ବତେ ପହଞ୍ଚିଲା ନେଇ ॥
ଅଶ୍ୱାପ କରିଣ ସର୍ବ ଦୁଃଖ ବିନାଶିଲା ।
ମହାବଳଶାଳୀ ଜାଣ ତୋର ପିତା ଥିଲା ।
ଯେଉଁଦିନୁ ତୋ ପିତାକୁ ହରାଇଛୁ ମୁହିଁ ।
ତୋତେମାନ ଦେଖିକରି ଦେହ ଧରିଛଇଁ ॥
ଆରେ ବାବୁ ମେଘବର୍ଣ୍ଣ ସାବଧାନେ ଥିବୁ ।
ରାଜପୁରେ ଧର୍ମରାଜେ ରକ୍ଷା ତୁ କରିବୁ ॥
ବୃଷକେତୁ ବୀରକୁ ମୁଁ ସଙ୍ଗେ ଘେନିଯିବି ।
ଯୌବନାଶ୍ୱ ମାରି ଯଜ୍ଞ ଅଶ୍ୱ ମୁଁ ଆଣିବି ॥
ଯେ ପର୍ଯ୍ୟନ୍ତ ବୃଷକେତୁ ଅମ୍ଭେ ନ ଫେରିବୁ ।
ସେ ପର୍ଯ୍ୟନ୍ତ ଅର୍ଜୁନଙ୍କୁ ସାହାଯ୍ୟ କରିବୁ ॥
ମେଘବର୍ଣ୍ଣ ବୋଲଇ ଶୁଣ ହେ ପିତାମହ ।
ମୋରଘର ମୁଁ ରଖିବି ଏଥି କି ସନ୍ଦେହ ॥
ଆପଣଙ୍କ କାର୍ଯ୍ୟ ଜାତ ଆମ୍ଭର ପିଅର ।
ତେଣୁ ନାଶ ବର୍ଣ୍ଣିଛନ୍ତି ଏହି ମର୍ତ୍ତ୍ୟପୁର ॥
ପୁତ୍ରର କାର୍ଯ୍ୟ ଅଟଇ ଏହୁ ସଂସାରରେ ।
ପିତାର କାର୍ଯ୍ୟ କରିବା ଅଟଇ ବିଧିରେ ॥
ମୁହିଁ ତୁମ୍ଭର ଅଟଇ ପୁତ୍ରର ଯେ ପୁତ୍ର ।
ତୁମ୍ଭକାର୍ଯ୍ୟ କରିବାର ଅଟେ ମୋ ଉଚିତ ॥
ବର୍ଷାପାଣି ନାନା ଅତୁ ବହିଣ ଆସଇ ।
ଯେ ପର୍ଯ୍ୟନ୍ତ ନଦୀରେ ସେ ମିଶିଣ ନ ଥାଇ

ସେ ପର୍ଯ୍ୟନ୍ତ ଅପବିତ୍ର ହୋଇଥାଏ ସେହୁ ।
ନଦୀରେ ମିଶିଲେ ତୀର୍ଥ ଜଳ ସେ ବୋଲାଇ
ତହିଁ ସ୍ନାନ କରି ଲୋକେ ହୋନ୍ତି ପାପ ମୁକ୍ତ
ନଦୀରେ ନ ମିଶିଥିଲେ ନ ବୁଡ଼ାନ୍ତି ହାତ ॥
ବୋଲନ୍ତି ଏ ଅପବିତ୍ର ଜଳେ ହାତ ଦେଲେ
ପାପବୃଦ୍ଧି ହେବ କଷ୍ଟେ ପଡ଼ିବା ନର୍କରେ ॥
ସେହିପରି ଅସାଧୁ ଯେ ସାଧୁ ସଙ୍ଗ କଲେ ।
ସାଧୁହୁଏ ପାପ ନାଶ ଯାଏ ଅବହେଳେ ॥
ଗୌତମ ଋଷିଙ୍କ ନାରୀ ଅହଲ୍ୟା ସୁନ୍ଦରୀ ।
ରାମ ପଦ୍ମପାଦ ଲାଗିଗଲେ ସେତୁ ତରି ॥
ଆବର କୁବୁଜା ନାରୀ ଥିଲେ ମଥୁରାର ।
ଶ୍ରୀକୃଷ୍ଣଙ୍କ କର ଲାଗି ହୋଇଲେ ସୁନ୍ଦର ॥
ସେହିପରି ପିତାମହୀ ହିଡ଼ିମ୍ବା ରାକ୍ଷସୀ ।
ପବିତ୍ର ହୋଇଲେ ତୁମ୍ଭ ଅଙ୍ଗେ ଅଙ୍ଗମିଶି ॥
ତାହାର ଗର୍ଭରୁ ଜାତ ହେଲେ ଆମ୍ଭତାତ ।
ବଗୃହରେ ତୁମ୍ଭର ସେ ବୋଲାଇଲେ ପୁତ୍ର ॥
ତୁମ୍ଭର କାର୍ଯ୍ୟ କରିବା ବିହିତ ତାଙ୍କର ।
ମୋର ଏ ବଚନ ଘେନ ଆହେ ବୀରବର ॥
ମୋତେ ଦୟାକରି ତୁମ୍ଭ ସଙ୍ଗତରେ ନିଅ ।
ମୁହିଁ ତୁମ୍ଭର ଅଟଇ ପୁଅର ଯେ ପୁଅ ॥
ଏ ମୋହର ବିନତି ହେ ଘେନିବା ଗୋସାଇଁ
ତୁମ୍ଭସଙ୍ଗେ ଭଦ୍ରାବତୀ ପୁର ଯିବି ମୁହିଁ ॥
ବୃଷକେତୁ ତୁମ୍ଭେ ଦୁହେଁ ସମର କରିବ ।
ସେ ସମରେ ଯୌବନାଶ୍ୱ ରାଜା ରହିଥିବ ॥
ଏମନ୍ତ ସମୟେ ମୁହିଁ ଯିବି ତା ପୁରକୁ ।
ଯଜ୍ଞାଶ୍ୱ ଆଣି ଭେଟିବି ମୁହି ଯୁଧିଷ୍ଠିରଙ୍କୁ ॥
ଏକଥା ମୋହର ସତ୍ୟ ହୋଇଲା ନିକର ।
ତତକ୍ଷଣଯାକ ଯିବା ଭଦ୍ରାବତୀ ପୁର ॥
ଯୁଧିଷ୍ଠି ଦେବଙ୍କ ପାଶୁ ମେଲାଣି ମାଗିଣ ।
ଶୁଭବେଳା ଦେଖି ତାତ ଚଳନ୍ତୁ ବହନ ॥
ଶ୍ରୀ କୃଷ୍ଣଙ୍କୁ ମନ ମଧ୍ୟେ କରି ସୁମରଣ ।
ସକଳ ବିପଦମାନ ହୋଇବ ଦହନ ॥
ତାଙ୍କ ଦୟାହେଲେ ସର୍ବଠାରେ ହେବ ଜୟ
ତାଙ୍କନାମ ଧରି ଚଳ ହୋଇବ ବିଜୟ ॥
ଶ୍ରୀକୃଷ୍ଣ ସୁମରି ଶୁଭବେଳେ ଯାତ୍ରାକର ।
ନାନା ବିଘ୍ନଥିଲେ କିଛି ନ ହେବ ଅମ୍ଭର ॥

ଶୁଣି ଭୀମସେନ ତାଙ୍କୁ ପ୍ରଶଂସା କରିଲେ ।
ଧନ୍ୟ ଧନ୍ୟ ଘଟୋତ୍କଚ କୁମର ବୋଇଲେ ॥
ଯାହା କହୁଅଛୁ ତୁହି ଅମ୍ଭର ଯେ ହିତ ।
ଚଳ ତନୟରେ ଯିବା ହୋଇଣ ତ୍ୱରିତ ॥
ଯୁଧିଷ୍ଠି ଦେବଙ୍କୁ ଯାଇଁ ଜଣାଇଲେ ଭୀମ ।
ମେଘବର୍ଣ୍ଣ ବୃଷକେତୁ ଯିବେ ମୋ ସଙ୍ଗେଣ ॥
ଅମ୍ଭଙ୍କୁ ଅପଣ ଆଜ୍ଞା ଦିଅ ହେ ବହନ ।
କାର୍ଯ୍ୟସିଦ୍ଧି କରୁ ଦେବ କରନ୍ତୁ କଲ୍ୟାଣ ॥
ଯୁଧିଷ୍ଠି ଦେବ ଶୁଣିଣ ହରଷ ହୋଇଲେ ।
ଆଲିଙ୍ଗନ କରି ତାଙ୍କୁ ବଚନ ବୋଇଲେ ॥
ତୁ ଯାହା କହିଲୁ ବାବୁ ଉତ୍ତମ ଅଟଇ ।
ଏକାକୀ ଶତ୍ରୁ ପୁରକୁ ଯିବା ନ ଯୋଗାଇ ॥
ଚଳ ବ୍ୟାସଦେବଙ୍କୁ ସକଳ ଜଣାଇବା ॥
ତାଙ୍କ ଆଦେଶରେ ସବୁ କାର୍ଯ୍ୟହିଁ କରିବା ॥
ଏହା ଶୁଣି ସମସ୍ତେ ଯେ ମେଳ ହୋଇଗଲେ ।
ବ୍ୟାସଦେବଙ୍କ ଚରଣ ତଳରେ ପଡ଼ିଲେ ॥
ବ୍ୟାସଙ୍କ ଚରଣେ ବନ୍ଦୁ ବିନୟ ହୋଇଣ ।
ଅନ୍ତଃପୁର ମଧ୍ୟେ ତାଙ୍କୁ ଆଣିଲେ ତକ୍ଷଣ ॥
ବ୍ୟାସଦେବ ଅନ୍ତଃପୁରରେ ପ୍ରବେଶ ହୋଇଲେ
ଭକ୍ତିଭରେ ଧର୍ମ ସ୍ୱର୍ଣ୍ଣାସନେ ବସାଇଲେ ॥
ସମସ୍ତେ ମିଳିଣ ତହିଁ କରନ୍ତି ବିଚାର ।
ଯଜ୍ଞ ଅଶ୍ୱକୁ ଆଣିବା କେବଣ ପ୍ରକାର ॥
ଯୁଧିଷ୍ଠି ଦେବ ବୋଲନ୍ତି ମୋର କଥା ଶୁଣ ।
ଜ୍ଞାତିବଧ ପାପ ସଦା ଦହେ ମୋର ମନ ॥
କିପରି ସେହି ପାପରୁ ହୋଇବି ଉଦ୍ଧାର ।
ତାହାର ଉପାୟ ଶୀଘ୍ର କର ଋଷିବର ॥
ଶ୍ରୀକୃଷ୍ଣଙ୍କ ବିନା ମୋର ଅନ୍ୟଗତି ନାହିଁ ।
ଏଥୁ ଉଦ୍ଧାର କରିବେ ଏକା ଭବଗ୍ରାହୀ ॥
ମୋତେ ଯେତେବେଳେ ମହା ବିପତ୍ତି ପଡ଼ଇ ।
ସେକାଳେ ରକ୍ଷା କରନ୍ତି ସତ୍ୟଭାମା ସାଇଁ ॥
ଦ୍ରୌପଦୀଙ୍କୁ ଯେତେବେଳେ ବିବସନ କଲେ
କୋଟିବସ୍ତ୍ର ଦେଇ ସେହି ଲଜ୍ଜାରୁ ତାରିଲେ ॥
ଯତୁଗୃହ ଦାହକାଳେ ହୋଇଲେ ସେ ସାହା ।
ଦୁଃଖୀର ଦୁଃଖ ହରଣକର୍ତ୍ତା ଚକ୍ରବାହା ॥
ବଷ୍ଣାସେ କୁର୍ମ୍ମୀର ଗଜେ ଦେଲାକ ବିପତ୍ତି ।
ଗଜ ଆତଙ୍କେ ଡାକିଲା ରଖ ଶିରୀପତି ॥

ଗଜ ଅନ୍ତର୍ଗତ କଥା ଜାଣି ନାରାୟଣ ।
ରକ୍ଷାକର ରକ୍ଷାକର ବୋଇଲେ ବଚନ ॥
ଚକ୍ର ପେଷି ନକ୍ର ମୁଣ୍ଡ କାଟିଲେ ଶ୍ରୀହରି ।
ଗଜକୁ ଉଦ୍ଧାର କରି ଚକ୍ର ଗଲା ଫେରି ॥
ବନରେ ହରିଣୀକୁ ରଖିଲେ ନାରାୟଣ ।
ଜ୍ଞାତିବଧ ପାପୁଁ ମୋତେ କରିବେ ମୋଚନ ॥
ଏତେ କହି ଯୁଧିଷ୍ଠି ମନରେ ଚିନ୍ତାକଲେ ।
ଅନ୍ତର୍ଯ୍ୟାମୀ ନାଥ ତାହା ଅନ୍ତରେ ଜାଣିଲେ ॥
ଜାଣିଲେ ହସ୍ତିନାରେ କି ବିପତ୍ତି ପଡ଼ିଲା ।
କିମ୍ପାଇଁ ଯୁଧିଷ୍ଠି ଦେବ ମୋତେ ସୁମରିଲା ॥
ଏହା ଭାବି ନନ୍ଦଘୋଷ ରଥରେ ଚଢ଼ିଲେ ।
ରାତ୍ରେ ଯାଇ ହସ୍ତିନାର ସିଂହଦ୍ୱାରେ ହେଲେ
ଦ୍ୱାରପାଳକୁ ଗୃହିଁ ବୋଲନ୍ତି ଭଗବାନ ।
ରାଜାଙ୍କୁ ଦେଖା କରିବୁ ଅନୁମତି ଅଣ ॥
ବୋଲନ୍ତି ଦ୍ୱାରିକାରୁ ଶ୍ରୀକୃଷ୍ଣ ଆସିଛନ୍ତି ।
ତୁମ୍ଭ ଦର୍ଶନ କରିବେ ହେଲେ ଅନୁମତି ॥
ନୃପତିଙ୍କ ଅବସର ଦେଖି ଆସ ତୁହି ।
ଶାସ୍ତ୍ରରେ ରାଜଦର୍ଶନ ଅନୁମତି ହୋଇ ॥
ଶୁଣି ଦ୍ୱାରପାଳ ଯାଇ ଜଣାଏ ରାଜାରେ ।
ଭୋ ଦେବ ଦ୍ୱାରକାପତି ବିଜେ ସିଂହଦ୍ୱାରେ
ବୋଇଲେ ରାଜା ଆଦେଶେ କରିବ ଦର୍ଶନ ।
ବିନାଦେଶେ ଯିବା ନୁହେଁ ଶାସ୍ତ୍ରର ନିୟମ ॥
ଯୁଧିଷ୍ଠି ଦେବ ଶୁଣିଣ ଦ୍ୱାରୀକୁ କହିଲେ ।
କହିବୁ ଏ କଥା ମନେ ରଖିଥାଅ ଭଲେ ॥
ଅଶେଷ ବ୍ରହ୍ମାଣ୍ଡକର୍ତ୍ତା ଯେଉଁ ନାରାୟଣ ।
ମୋ ପରି ପତିତ କେତେ ତାରନ୍ତି ଯା ନାମ
ଅଘୋର ପାତକୀ ଯାର ନାମକୁ ଧରିଣ ।
ପାପରୁ ମୁକ୍ତ ହୋଇଣ ବସନ୍ତି ସ୍ୱର୍ଗେଣ ॥
ଯା ଅଙ୍ଗରେ ଚରାଚର ହୁଏ ଅନ୍ତଯାତ ।
ଯାହାଙ୍କ କୃପାରେ ମୁଁ ହୋଇଛି ନରନାଥ ॥
ସଂସାରର ପ୍ରାଣୀ କେବେ କୌଣସି କାଳରେ
ପ୍ରଭୁଙ୍କୁ ଆଦେଶ ଦେଇ ପାରେ ଆସିବାରେ ॥
ନାମ ତାଙ୍କ ଭାବଗ୍ରାହୀ ଭକ୍ତ ଭାବେ ବନ୍ଧା ।
ନିଜ ଇଚ୍ଛାରେ ଆପବେ ଥିଲେ ମୋତେ ଶ୍ରଦ୍ଧା
କେଉଁପରି ଏ ଅଧମ ଅନୁମତି ଦେବ ।
ତାଙ୍କ କୃପା ହେଲେ ଆସି ପାରନ୍ତି ମାଧବ ॥

ଏସନ ଶୁଣିଣ ଦୂତ ଶ୍ରୀହରିଙ୍କ ଠାରେ ।
ସବୁ ଜଣାଇଲା ପଡ଼ି ଶ୍ରୀ ପଦ୍ମପାଦରେ ॥
ଆବର କହିଲା ଆହେ ଦେବ ଦଇତ୍ୟାରି ।
ବସିଛନ୍ତି ଅର୍ଜୁନ ଭୀମ ଯେ ଆଦି କରି ॥
ଆପଣଙ୍କ ଚିନ୍ତା କରୁଛନ୍ତି ନରରାଣ ।
ତାଙ୍କ ମନବାଞ୍ଛା ତୁମ୍ଭେ କରିବ ପୂରଣ ॥
ଏସନ ବାରତା ଦ୍ୱାରପାଳ କୃଷ୍ଣେ କହି ।
ସଙ୍ଗେ ଘେନିଗଲା ଯୁଧିଷ୍ଠିର ଛନ୍ତି ଯହିଁ ॥
ଦ୍ୱାରେ ଉଭା କରାଇଣ ରାଜାଙ୍କୁ କହଇ ।
ଭୋଦେବ ଦ୍ୱାରକାପତି ଦ୍ୱାରେ ଛନ୍ତି ରହି ॥
ଶୁଣି ଯୁଧିଷ୍ଠି ଭାବିଲେ କରୁଣା ମୋଠାରେ ।
ମୁହିଁ ସୁମରନ୍ତେ ଆସି ମିଳିଲେ ନିଶାରେ ॥
ଜାଣିଲି ମୁଁ ଅଶ୍ୱମେଧ ସୁଫଳରେ ହେବ ।
ଏହି ଦୟା ମୋହଠାରେ ଯେବେ ପ୍ରଭୁ ଥିବ ॥
ଏସନ କହି ଯୁଧିଷ୍ଠି ଆସନୁ ଉଠିଲେ ।
ଭାଇମାନଙ୍କୁ ଘେନିଣ ଦ୍ୱାରେ ଉଭା ହେଲେ ॥
ଦେଖିଲେ ବିଜୟ କରିଛନ୍ତି ବନମାଳୀ ।
ଶିରେ ଶିଖୀପୁଚ୍ଛ ହସ୍ତେ ମୋହନ ମୁରଲୀ ॥
ଯୁଧିଷ୍ଠିଙ୍କି ଦେଖି କୃଷ୍ଣ ନମସ୍କାର କଲେ ।
ଅନ୍ୟ ଗୁରି ଭାଇଯାକ କୃଷ୍ଣେ ପ୍ରଣମିଲେ ॥
ଶ୍ରୀକୃଷ୍ଣଙ୍କୁ ଯୁଧିଷ୍ଠି କରିଲେ କୋଳାଗ୍ରତ ।
ସ୍ନେହଭରେ ଆଲିଙ୍ଗନ କରିଲେ ତୁରିତ ॥
ଦରିଦ୍ରନିଧି ରତନ ପାଇଲା ପରାଏ ।
କୃଷ୍ଣେ ଦେଖି ସେହିପରି ହେଲେ ଧର୍ମରାଏ
ଯୁଧିଷ୍ଠି ଦେବ ନୟନୁ ପ୍ରେମ ଅଶ୍ରୁ ବହି ।
ଶ୍ରୀକୃଷ୍ଣଙ୍କ ଶରୀର ଯେ ତିନ୍ତିଗଲା ତହିଁ ॥
ଭୀମ ଅର୍ଜୁନ ନକୁଳ ସହଦେବ ଆଦି ।
ଶ୍ରୀକୃଷ୍ଣଙ୍କୁ ଦେଖିଣ ମଣନ୍ତି କୋଟିନିଧି ।
ଦ୍ରୌପଦୀ ଆସି କୃଷ୍ଣଙ୍କୁ ବନ୍ଦାପନା କଲେ ॥
ସବେ ମିଳି ଦିବ୍ୟାସନେ ନେଇ ବସାଇଲେ
ଅର୍ଘ୍ୟଆଦି ପାଦେ ଦେଇ ପୂଜ୍ଞାକଲେ ନେଇ
ପାଣ୍ଡବଙ୍କ ସ୍ନେହ ଦେଖି ତୋଷ ଲକ୍ଷ୍ମୀପାଇଁ ॥
ସମସ୍ତ ପାଣ୍ଡବମାନେ ମନେ ବିଚାରନ୍ତି ।
ଆମ୍ଭମାନଙ୍କ ଭାବନା ଶ୍ରୀକୃଷ୍ଣ ଜାଣନ୍ତି ॥
ଦେଖ ଏବେ କୌସ୍ତୁଭଇ ଭାବିଲେ ନିଶାରେ
ପାଣ୍ଡବଙ୍କ ଭଣ୍ଡା ହରି ମିଳିଲେ ଏଠାରେ ॥

ଶ୍ରୀକୃଷ୍ଣଙ୍କୁ ଯୁଧିଷ୍ଠିର ବୋଲନ୍ତି ବଚନ ।
ସଦା ସର୍ବଦା ମୋ ମନେ କୃଷ୍ଣ ଭଗବାନ ॥
ବିପଦେ ତୁମ୍ଭଙ୍କୁ ଚିନ୍ତା କଲେ ମୁଁ ମନରେ ।
ଉଦ୍ଧାରିଲ ପ୍ରବେଶି ବିପଦରୁ ତାରି ହେଲେ ॥
ଦ୍ରୌପଦୀ ବୋଇଲେ ଦେବ ଶୁଣ ମୋ ବଚନ
ଦୁର୍ଯ୍ୟୋଧନ ବୋଲେ ଅମ୍ଭେ ସର୍ବେ ଗଲୁ ବନ
ଦୁର୍ବାସାଋଷି ଅଯୁତେ ଶିଷ୍ୟଗଣ ନେଇ ।
ଅମ୍ଭେଥିବା ସ୍ଥାନେ ଋଷି ପ୍ରବେଶିଲେ ଯାଇ ॥
ସେମାନଙ୍କ ଚର୍ଚ୍ଚା କରିବାକୁ ନାହିଁ କିଛି ।
ବନରେ ବୁଲୁଛୁ ଅମ୍ଭେ ହୋଇ ନିରମାଖି ॥
ଫେରାଇଲେ ଋଷି କୋପ କରିବେ ଅମ୍ଭଙ୍କୁ ।
ଉପାୟ ନ ଦେଖି ଚିନ୍ତା କରିଲି ତୁମ୍ଭଙ୍କୁ ॥
ସେହିକାଳେ ତୁମ୍ଭେ ଆସି ପ୍ରବେଶ ହୋଇଲ ।
ଶାକଅନ୍ନ କଣିକାଏ ଗର୍ଭକୁ ନେଇଲ ॥
ଶାକଅନ୍ନ ଯହୁଁ ପ୍ରଭୁ ଆପଣ ଭୁଞ୍ଜିଲେ ।
ଅମୃତ ଭୋଜନ ପ୍ରାୟ ଋଷିଏ ହୋଇଲେ ॥
ସନ୍ତୋଷ ହୋଇଣ ଋଷି କରିଲେ କଲ୍ୟାଣ ।
ନିଜ ମନ୍ଦିରକୁ ଗଲେ ହୋଇ ହୃଷ୍ଟମନ ॥
ଆପଣ ନ ରଖିଥିଲେ ଋଷିଙ୍କ ଶାପରେ ।
ପାଣ୍ଡବ ବିନାଶ ହୋଇଥାନ୍ତେ ସେ କାଳରେ
ଦୁଃଶାସନ ପୂର୍ବେ ମୋତେ ସଭାର ତଳରେ
ଭୀଷ୍ମ ଦ୍ରୋଣ ଗୁରୁଜନମାନଙ୍କ ଆଗରେ ॥
ଉଲଗ୍ନ କରିବ ବୋଲି କଲା ବୀରପଣ ।
ତବ ପାଦପଦ୍ମ ଚିନ୍ତା କଲି ନାରାୟଣ ॥
ମୋହର ମନ ବେଦନା ଜାଣିଲ ଶ୍ରୀହରି ।
ତେତେ ବଡ଼ ବିପଦୁ ରଖିଲ ଦୟାକରି ॥
ଆକାଶ ମଣ୍ଡଳ ବ୍ୟାପିଗଲା ତବରୂପ ।
ଦୁଃଶା ଦେଖି ନ ପାରିଲା ମୋହର ସ୍ୱରୂପ ॥
ସଭା ଲୋକମାନେ ରୂପ ଦେଖି ନ ପାରିଲେ ।
ବାର ଗଡ଼ଯାଏ ଦୁଃଶା ବସନ ଫେଡ଼ିଲେ ॥
ଲୁଗା କାଢି କାଢି ବ୍ୟସ୍ତ ହେଲା ଦୁଃଶାସନ ।
କି ଅପୂର୍ବ ମାୟା ପ୍ରଭୁ କରିଲ ରଚନ ॥
ଏହା ଦେଖି ସର୍ବଜନେ ଅଚମ୍ଭିତ ହେଲେ ।
ତୁମ୍ଭ ପ୍ରସାଦରୁ ଦୁଃଖ ନାହିଁ ପାଣ୍ଡବରେ ॥
ଏପରି ଲଜ୍ଜାସାଗରୁ କରିଅଛ ପାର ।
ତବଗୁଣ ବର୍ଣ୍ଣିବାକୁ ଶକତି କାହାର ॥

ସର୍ବଦା ତୁମ୍ଭର ନଦବ ଅଟଇ ସ୍ୱଭାବ ।
ଦୁଷ୍ଟ ନାଶି ଶିଶୁପାଳ ଅହେ ବାସୁଦେବ ॥
ସାଧୁଙ୍କୁ ମହା ବିପତ୍ତି ପଡ଼ଇ ଯେ କାଳେ ।
ତୁମ୍ଭଙ୍କୁ ଚିନ୍ତିଲେ ତାହା ନାଶ ଅବହେଳେ ॥
ଦେବକୀ ଗର୍ଭ ସମ୍ଭୂତ ବସୁଦେବ ସୁତ ।
ବାସୁଦେବ ନାମ ତୁମ୍ଭ ଜଗତେ ବିଖ୍ୟାତ ॥
ଭକତ ବତ୍ସଳ ନାଥ ଅର୍ଜ୍ଜୁନ ସଙ୍ଗରେ ।
ଭକ୍ତଭାବେ ରକ୍ଷା କଲ ଏ କୁରୁ ସାଗରେ ॥
ଦ୍ରୌପଦୀ ଦେବୀଙ୍କ ବାଣୀ ଶ୍ରୀକୃଷ୍ଣ ଶୁଣିଣ ।
ବୋଇଲେ ଧନ୍ୟ ପାଞ୍ଚାଳୀ ତୋର ଜନ୍ମଧନ୍ୟ
ଧନ୍ୟ ତୋର ମାତାପିତା ଧନ୍ୟ ତୋର ଭକ୍ତି ।
ଧନ୍ୟରେ ସୁନ୍ଦରୀ ଧନ୍ୟ ତୋର ବୁଦ୍ଧିଦାତା ॥
ଏହା କହି ଶ୍ରୀକୃଷ୍ଣ ବୋଲନ୍ତି ଯୁଧିଷ୍ଠିରଙ୍କୁ ।
କି ପ୍ରକାରେ ରାଜନ ଚିନ୍ତା କରିଲ ଅମ୍ଭଙ୍କୁ ॥
ଯୁଧିଷ୍ଠିର ବୋଲନ୍ତି କୃଷ୍ଣ ଶୁଣ ମୋ ଉତ୍ତର ।
ତୁମ୍ଭଙ୍କୁ ନ ଦେଖି ମୋର ଚିନ୍ତା ଗୁରୁତର ॥
ଜ୍ଞାତିବଧ ପାତକରେ ହୋଇଲୁଁ ମଳିନ ।
ଅଶ୍ୱମେଧ ଯାଗ କରିବାକୁ ଇଚ୍ଛେ ମନ ॥
ଯାଗ ଅଶ୍ୱକଥା ଭୀମ ବ୍ୟାସେ ପଚାରିଲେ ।
ବ୍ୟାସଦେବ ଯୁବନାଶ୍ୱ ଅଶ୍ୱକୁ କହିଲେ ॥
ସେ ଅଶ୍ୱ ଆଣିବା ଯେବେ ଯଜ୍ଞ କାର୍ଯ୍ୟ ହେବ ।
ତା ନ ହେଲେ ଯଜ୍ଞ ଅଶ୍ୱ କାହିଁ ନ ମିଳିବ ॥
ଭୀମସେନ ତୁମ୍ଭର ସହାୟେ ପଣ କଲା ।
ସେ ଅଶ୍ୱକୁ ମୁହିଁ ଧରି ଆଣିବି ବୋଇଲା ॥
ଏ ନିମନ୍ତେ ତୁମ୍ଭଙ୍କୁ ମୁଁ ଚିନ୍ତିଲି ହୃଦରେ ।
ମୋର ପୂର୍ବଭାଗ୍ୟ ତୁମ୍ଭେ ମିଳିଲ ଏଠାରେ ॥
ହେ ଶ୍ରୀପତି ତୁମ୍ଭେ ଅଶ୍ୱମେଧ ଯାଗ କର ।
ଜ୍ଞାତିବଧ ପାପ ମୋ ହୃଦରୁ ହେଉ ଦୂର ॥
ସେ ଯଜ୍ଞ କରନ୍ତେ ଯାହୁଁ ହୋଇବି ମୁକତ ।
କିପରି ଏ ଯଜ୍ଞ ହେବ କୁହ ଜଗନ୍ନାଥ ॥
ଶ୍ରୀକୃଷ୍ଣ ବୋଲନ୍ତି ତୁମ୍ଭେ କହ ବିଚାରିଣ ।
ଯଜ୍ଞ କରିବାକୁ କିସ ଭାବିଛ ଆପଣ ॥
ଭାରତ ଯୁଦ୍ଧେ ଦେଖିଛ ମହାରାଜା ମଲେ ।
କାହା ସାହାଯ୍ୟରେ ଜୟୀ ହେଲ ତୁମ୍ଭେ ଭଲେ
ଏତେ କହୁ ମନେ ବିଚାରିଲେ ଚକ୍ରଧର ।
ବୋଇଲେ ଭୀମ ବୀରକୁ ହକାରି ସତ୍ୱର ॥

ସତ୍ୟ କରିଅଛୁ ସେହି ଅଶ୍ୱ ଦେବ ଆଣି ।
କ୍ରୋଧ ବଢ଼ିବ ତାହାର କଟୁବାକ୍ୟ ଶୁଣି ॥
ଆମ୍ଭ ବଚନରେ କ୍ରୋଧ ହେବ ବୃକୋଦର ।
ଅଶ୍ୱ ନ ଆଣିଲେ ଯଜ୍ଞ ନ ହେବ ନିକର ॥
ଏମନ୍ତ ବିଚାରି ମନେ ହସନ୍ତି ମୋହନ ।
ଡାକନ୍ତେ ଯୁଧିଷ୍ଠି ଆସିଲେ ସେ ଭୀମସେନ ॥
ବୃକୋଦରକୁ ବୋଲନ୍ତି ଦେବ ଜଗନ୍ନାଥ ।
ବୁଦ୍ଧି ଶୁଦ୍ଧି ନାହିଁ ତୁମ୍ଭ ଭୋଜନ ବହୁତ ॥
ଭଲ କିବା ମନ୍ଦ କିଛି ମାନବକ ନ ଜାଣ ।
ସଦା ସର୍ବଦା ଭାବନା ଉଦର ପୂରଣ ॥
ଜ୍ୟେଷ୍ଠ ଭ୍ରାତାଙ୍କର ଅନୁତାପ ନିବାରଣେ ।
ସେ ଭାବନା ସେ କଥା ନ ପଶେ ତୁମ୍ଭମନେ
ଆହେ ଦେବ ଯୁଧିଷ୍ଠିର ଏହା ଭରସାରେ ।
ପାପମୁକ୍ତ ହୋଇ ଯିବ ବଇକୁଣ୍ଠ ପୁରେ ॥
ଏ କଥା କେବେହେଁ ମନେ ନ ଭାବ ରାଜନ
ଯାହାର କୁବୁଦ୍ଧି ଆଚରଣ ବଡ଼ମୂଣ ॥
ହିଡ଼ିମ୍ବା ନାମେ ଅସୁରୀ ଦେଖିଲ ଏ ନେତ୍ରେ ।
ପାପ ପ୍ରଣୟ କଲ ଏ ତାହାର ସଙ୍ଗତେ ॥
ଶାସ୍ତ୍ରର ନିୟମ ଏ ଯେ ଶୁଣ ଦେଇ ମତ ।
ଶ୍ରେଷ୍ଠା ବଧୂର ଅଙ୍ଗ ଯେ ରମେ ନୀଚ ଜାତି
କାମିନୀ ବର୍ଜିତ ପତି ପିତା ଘରେ ନାରୀ ।
ଏମନ୍ତ ଜନଙ୍କ ସଙ୍ଗେ ବିହାର ନ କରି ॥
ହିଡ଼ିମ୍ବା ଅସୁର ଜରାସନ୍ଧ ବକାସୁର ।
ତାଙ୍କୁ ମାରିଥିଲ ଭୀମ କରିଣ ସମର ॥
ସେମାନେ ଅଟନ୍ତି ଭୀମଠାରୁ ବଳବାନ ।
ମୋ ସକାଶେ ଭୀମ ତାହାଙ୍କର ନେଲ ପ୍ରାଣ
ଯୁବନାଶ୍ୱ ମହାଯୋଦ୍ଧା ଅଟେ ଭଦ୍ରାପୁରେ ।
ଇନ୍ଦ୍ର ବରୁଣ କୁବେର ଯମ ଭୟ କରେ ॥
ତାକୁ ଜିଣି ଭୀମ ଯାହା ଅଶ୍ୱ ଆଣିଦେବ ।
ବୃଥା ଭାବନା କରିଛ ହଠହଠା ହେବ ॥
ମୋହର ବଚନ ରାଜା ସାବଧାନେ ଶୁଣ ।
ମହାମହା ବୀରମାନେ ଛନ୍ତି ପୃଥ୍ୱୀରେଣ ॥
ଭୀମସେନ ଯାଇଥିଲେ ରାଜସୂ ଯଜ୍ଞରେ ।
ସେ ରାଜାମାନଙ୍କୁ ଦେଖି ନାହିଁଟି ନେତ୍ରରେ ॥
ଅର୍ଜୁନ ମୋ ଅବଗୃରେ ମନ୍ଦକାର୍ଯ୍ୟ କଲା ।
ଜୟଦ୍ରଥକୁ ମାରିବ ବୋଲି ପଣ କଲା ॥

ସେହି ସକାଶରୁ ବଡ଼ ପ୍ରମାଦ ପଡ଼ିଲା ।
ମୋହର କୈତବେ ଜାଣ ଜୟଦ୍ରଥ ମଲା ॥
ମୋର ଅବଗୃରେ ଏହୁ କଲା ଏଡ଼େ ପଣ ।
ଯୁବନାଶ୍ୱ ଜିଣି ଅଶ୍ୱ ଆଣୁ ଭୀମସେନ ॥
ଯଜ୍ଞର ନିୟମ ଏହି ଶୁଣ ନରବର ।
ଚୌରାଶି ଲକ୍ଷଣେ ପୂର୍ଣ୍ଣ ଥିବ ଅଶ୍ୱବର ॥
ଅଶ୍ୱଶିରେ ଜୟପତ୍ର ବାନ୍ଧିଣ ଛାଡ଼ିବ ।
ବରଷେ ପର୍ଯ୍ୟନ୍ତ ଅଶ୍ୱ ସ୍ୱେଚ୍ଛାରେ ବୁଲିବ ॥
ଧନୁର୍ଦ୍ଧାରୀ ବୀରମାନେ ଥିବେ ଗୁପ୍ତେ ରହି ।
ଯେ ଧରିବ ଅଶ୍ୱକୁ ଆଣିବେ ଜିଣି ତହିଁ ॥
ରଘୁନାଥ ପୂର୍ବେ ଅଶ୍ୱମେଧ କରିଥିଲେ ।
ସେ ଅଶ୍ୱ ଲକ୍ଷଣ ହନୁମନ୍ତ ରଖିଗଲେ ॥
ଶୃଙ୍ଗ ପୁରେ ଅଶ୍ୱ ଯାଇ ପ୍ରବେଶ ହୋଇଲା ।
ସୁରଥ ନାମେଣ ତହିଁ ନୃପବର ଥିଲା ॥
ସୁରଥ ରାଜନ ଯହୁଁ ଅଶ୍ୱକୁ ବାନ୍ଧିଲେ ।
ହନୁମନ୍ତ ଯାଇ ଦ୍ୱନ୍ଦ ତହିଁ ଭିଆଇଲେ ॥
ସୁରଥ ରାଜନ ହନୁମନ୍ତକୁ ବାନ୍ଧିଲା ।
ଅଶ୍ୱ ସହିତରେ ବାନ୍ଧି ଅକଟେ ରଖିଲା ॥
ବହୁକଷ୍ଟେ ଅଶ୍ୱ ହନୁ ଉଦ୍ଧାରିଲେ ରାମ ।
ସେହି କରିଥିଲେ ଅଶ୍ୱମେଧ ଯାଗ ପୁଣ ॥
ଆହେ ଦେବ ଯୁଧିଷ୍ଠିର ଶୁଣ ମୋର ବାଣୀ ।
ତୁମ୍ଭ ଯାଗଅଶ୍ୱ ରକ୍ଷା କରିବ ଫାଲ୍‌ଗୁନୀ ॥
ସେ ପୁଣି ଦାଇବ ବର୍ଣ୍ଣେ ବନ୍ଧନ ହୋଇଲେ ।
ଏଠାରେ ତୁମ୍ଭଙ୍କୁ କିଏ ସମ୍ଭାଳିବ ଭଲେ ॥
କେ ଯାଇ ଅର୍ଜୁନକୁ ବନ୍ଧନୁ ମୁକୁଳାଇ ।
ଆଣିବ ଅଶ୍ୱ ସହିତେ ପ୍ରତେ ନ ଲାଗଇ ॥
ଏରୂପେ ଏ ଯଜ୍ଞରେ ବହୁତ ବିଘ୍ନ ହେବ ।
ତୁମ୍ଭର ଅଗ୍ରତେ କହିଲି ଯେ ମୁହିଁ ଧ୍ରୁବ ॥
ବୋଲନ୍ତି ଶ୍ରୀ ସଦାଶିବ ଶୁଣ ହେମବତୀ ।
ଜୈମିନି ଭାରତ ଶୁଣି ହୁଅ ଗୋ ମୁକତି ॥
ଶ୍ରୀହରିଙ୍କ ରସଲୀଳା ପୂର୍ଣ୍ଣ ଏ ଶାସ୍ତ୍ରରେ ।
ଯେ ଶୁଣି ଶୁଣାଏ ସେହି ସର୍ବ ପାପୁ ତରେ ॥
ରୁକ୍ମିଣୀ ନାୟକଙ୍କର ପାଦ ପଙ୍କଜରେ ।
ଉପାଧ୍ୟାୟ ମହାଦେବ ସଦ୍ଧା ଲୟକରେ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତିରସଲୀଳା
କଥା ପ୍ରସଙ୍ଗେ ଶ୍ରୀକୃଷ୍ଣ ଯୁଧିଷ୍ଠିର ପରାମର୍ଶେ
ନାମ ଦ୍ୱିତୀୟୋଽଧ୍ୟାୟଃ ।

# ତୃତୀୟ ଅଧ୍ୟାୟ

ସମାଶ୍ରିତ୍ୟ ପ୍ରବର୍ତ୍ତିନ୍ତେ ଯେଜ୍ଞାନାମତ୍ପରାୟଣା
ତେଷ୍ୟଦ୍ୟାନ୍ତି ଚଦଂଯାନ୍ତି ଖଦଦୈବସମାନ୍ତିକମ୍

## ଶ୍ରୀକୃଷ୍ଣ ଭୀମଙ୍କର କଥୋପ— କଥନ ଓ ଅଶ୍ୱ ଆଣିବାକୁ ଭଦ୍ରାବତୀ ପୁରୀ ଗମନ

ଈଶ୍ୱର ବୋଇଲେ ତୁମ୍ଭେ ପାଣ୍ଡବଙ୍କ ଗୋ ଶୁଣ
ଜନ୍ମେଜୟ ଜୈମିନି ଯା କରନ୍ତେ ବଖାଣ ॥
ଶ୍ରୀକୃଷ୍ଣଙ୍କ କଟୁବାଣୀ ଶୁଣି ଭୀମବୀର ।
କୋମଳ ବଚନେ ପୁଣି କରଇ ଉତ୍ତର ॥
ଶୁଣ ଦେବ ଶ୍ରୀହରି ଦ୍ୱାରକା ନୃପବର ।
ଯଜ୍ଞ କରିବାକୁ ଇଚ୍ଛା କଲେ ସହୋଦର ॥
ମୋତେ ପଠାଇବାରୁ ମୁଁ ସ୍ମରିଲି ତୁମ୍ଭଙ୍କୁ ।
ସତ୍ୟକଲି ଅଶ୍ୱ ଆଣି ଦେବଇଁ ତାହାଙ୍କୁ ॥
ଆପଣଙ୍କ ଭରସାରେ କଲି ମୁହିଁ ପଣ ।
ପାଣ୍ଡବ ରକ୍ଷକ କପାଁ କୁହ ଏ ବଚନ ॥
ସୁଦୀର୍ଘ ଉଦର ମୋର ବହୁତ ମୁଁ ଖାଏ ।
ଆଜନ୍ମରୁ ଏହିକଥା ଆଜି ନୂଆ ନୁହେଁ ॥
ରାକ୍ଷସୀ ହରଇ କାମାତୁରେ ହୋଇ ଭୋଳ ।
ସେ ଯୋଗେ ଏ ଅପମାନ ହେଲେ ଆଦମୂଳ
ବଳାଧିନୀ ନାରୀ ସ୍ୱାମୀ ଛାଡ଼ି ବାପଘରେ ।
ରହେଯେବେ କାମୁକସେ ବୋଲୁଏବେଭାରେ
ବଳାସୀ ସୁ ରୂପ ହୋଇ ନାରୀକୁ ଛାଡ଼ିଲେ ।
ମନ ଚଞ୍ଚଳ ତାହାର ସଦା କାମାତୁରେ ॥
ଭଲ ମନ୍ଦ ଉଚ୍ଚ ନୀଚ ଜାଣ ନ ପାରଇ ।
କାମେ ବଶ ହୋଇ ନାନା ଅନ୍ୟାୟ କରଇ
ପୁଣି ଭୀମ କହେ ଦେବ ମୋ ବିନତି ଶୁଣ
ଏ ଯାହା କହିଲି ତୁମ୍ଭଠାରେ ସବୁ ପୂର୍ଣ୍ଣ ॥
ଭଲ ମନ୍ଦ ଜାଣ ତବ ନାହିଁ ବାସୁଦେବ ।
ତୁମ୍ଭର ଭିଆଣ ନାଥ ତରି ଅଛ ସର୍ବ ॥
ଦେଖ ତ୍ରିଭୁବନେ ଯେତେ ସ୍ଥାବର ଜଙ୍ଗମ ।
ତବ ହୃଦେ ସମସ୍ତ ଅଛଇ ପରିପୂର୍ଣ୍ଣ ॥
ବାଲ୍ୟକାଳେ ମାତା ଦେଖି ଖାଇବାର ମାଟି ।
ମାଟି କାଢ଼ିବାକୁ ମାତା ମେଲକଲେ ପାଟି ॥

ତାଙ୍କୁ ମାୟା କରି ଦେବ ପାଟି ମେଲକଲ ।
ମାତାଙ୍କୁ ସପ୍ତ ବ୍ରହ୍ମାଣ୍ଡ ଗର୍ଭେ ଦେଖାଇଲ ॥
ସ୍ୱର୍ଗମର୍ତ୍ତ୍ୟ ପାତାଳରେ ଯାହା ଦେଖିଥିଲେ ।
ତବଗର୍ଭେ ଯଦୁପତି ତାହାହିଁ ଦେଖିଲେ ॥
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ପର୍ଯ୍ୟନ୍ତେ ।
ନାଗ ନର କିନ୍ନର ଯେ ଅଛନ୍ତି ସମସ୍ତେ ॥
ସେହି ଉଦରୁ ପ୍ରକାଶି ସଂସାର ଭିଆଅ ।
ଶେଷରେ ସଂହାର କରି ତହିଁ ନେଇ ଥୁଅ ॥
ଯା ଉଦରେ ସ୍ୱର୍ଗମର୍ତ୍ତ୍ୟ ପାତାଳ ରହିଛି ।
ମୋ ଉଦର ବଡ଼ ତୁମ୍ଭ ବିଚାରେ ଆସୁଛି ॥
ଭକ୍ଷାପୀଗୁଣେ ତୁମ୍ଭଙ୍କୁ କିଛି ନ ଅଣ୍ଟଇ ।
ବଳି ଏତେ ବଡ଼ ରାଜା ନ ପାରିଲା ଦେଇ ॥
ଲମ୍ପଟ ଗୁଣ ତୁମ୍ଭର ଶୁଣ ଦେବ ହରି ।
ଗୋପରେ ହରିଲ ପ୍ରଭୁ ଷୋଳସହସ୍ର ନାରୀ ॥
କୁଳ ଶୀଳ ବିଚାର ତ ଅଛଇ ତୁମ୍ଭର ।
ଭାଇଙ୍କ ଦୁହିତାକୁ ନିଜର ନାରୀ କଲ ॥
ଋକ୍ଷ ଜାତି ଜାମ୍ବବ ଝିଅକୁ ପାତାଳରୁ ।
ଆଣିଦେବ ବିଭା ହେଲେ କାମ ପ୍ରବଳରୁ ॥
ସ୍ତ୍ରୀବଂଶ ଗୁଣ ତୁମ୍ଭଠାରେ ଦେବ ନାହିଁ ।
ପାରିଜାତକୁ ହରିଲ ସତ୍ୟଭମା ପାଇଁ ॥
ମତ୍ସ୍ୟ କଚ୍ଛ ବରାହ ବାମନ ଅବତାର ।
ତୁମ୍ଭେ ପ୍ରଭୁ ଜନମ ଲଭିଲ ପୃଥିବୀର ॥
ତୁମ୍ଭେ କ୍ଷୀରସିନ୍ଧୁରେ ନିଶ୍ଚିନ୍ତ ହୋଇ ବସ ।
କାମଦେବ ପୁତ୍ର କରେ ତ୍ରିପୁର ନାଶ ॥
ଏତେ ଗୁଣମାନ ପ୍ରଭୁ ଅଛି ତୁମ୍ଭଠାରେ ।
ମୋତେଯେବୋଇଲଲଜ୍ଜା ନାହିଁତୋ ମୁଖରେ
ତୁମ୍ଭର ବଚନ ମୁହିଁ ରହସ୍ୟ ମଣିଲି ।
ତୁମ୍ଭ ସାହାଯ୍ୟରେ ଜରାସନ୍ଧକୁ ମାରିଲି ॥
ଆହେ ଦେବ ଚକ୍ରଧର ବାରେ ସାହାହେଲେ
ଯୁବନାଶ୍ୱ ପୁରୁ ଅଶ୍ୱ ଆଣିବ ମୁଁ ହେଲେ ॥
ଏହି ଅନୁଗ୍ରହ ଦେବ କର ରାଜନରେ ।
ଜ୍ଞାତିବଧ ପାପୁଁ ମୁକ୍ତ ହେବେ ଯେ ପ୍ରକାରେ
ପୂର୍ବପରି ଦୟା ଆମ୍ଭଠାରେ ନ ରଖିଲେ ।
ଲଜ୍ଜା ହୋଇବ ତୁମ୍ଭଙ୍କୁ ଆମ୍ଭେ ନାଶ ଗଲେ ॥
ଅସାଧ୍ୟକାର୍ଯ୍ୟ ଯେ ତୁମ୍ଭ ଯୋଗେ ସାଧହେବ
ଯଜ୍ଞ ପରାମର୍ଶ ଦିଅ ପ୍ରଭୁ ବାସୁଦେବ ॥

ତୁମ୍ଭ ବିନୁ ଏ ସଂସାରେ ଅମ୍ଭର କେ ନାହିଁ ।
ବିପଦ ଭଞ୍ଜନ ନାଥ କର ଏବେ ତ୍ରାହି ॥
ତୃଷାରେ ଚାତକ ପକ୍ଷୀ ଊର୍ଦ୍ଧ୍ୱେ ମୁଖ ଟେକେ
ମେଘପାଣି ପଡ଼ିଲେ ପିଅଇ ତାହା ସୁଖେ ॥
ସେ ମେଘ ଉଠାଇ ଯେବେ ନ ବରଷେ ପାଣି
କେମନ୍ତେ ଚାତକ ପ୍ରାଣ ରହିବ ଧରଣୀ ॥
ଅମ୍ଭେ ଯେ ଚାତକ ପ୍ରଭୁ ତୁମ୍ଭେ ଅଟ ଘନ ।
ଘନ ବିନା ଚାତକ କି ଧରିବ ଜୀବନ ॥
ଆଉର କହୁଛି ଦେବ ଶୁଣ ଚକ୍ରପାଣି ।
ମହାପଙ୍କ ପରେ ଜଳ ରହିଥାଏ ପୁଣି ॥
ତୃଷାର ଆରତେ ଗୋରୁ ଯାଏ ଜଳପାନେ
ପଙ୍କେ ପଡ଼ି ଉଠି ନ ପାରଇ ଶକ୍ତିହୀନେ ॥
ଗୋରୁର ପାଳକ ଯେବେ ଆସି ଦେଖେ ତାକୁ
ନ ଉଠାଇ ଫେରି ଚାଲିଯାଏ କି ଘରକୁ ॥
ସେଗୋରୁ ସେଠାରେ ପଡ଼ି ଅନାହାରେ ମଲେ
ସେ ଦୋଷ କି ରଖୁଆଳେ ନ ଲାଗିବ ଭଲେ
ଅମ୍ଭେ ପାଣ୍ଡବମାନେ ସେ ଗୋରୁତୁଲ୍ୟ ଜାଣ
ଅମ୍ଭ ରଖୁଆଳି ଅଟ ଦେବ ଜନାର୍ଦ୍ଦନ ॥
ଜ୍ଞାତିବଧ ପାତକରୁ ଉଦ୍ଧାରିବା ବାଟ ।
ଅଶ୍ୱମେଧ ଯଜ୍ଞ ଏକା ଅଟେ ନନ୍ଦସୁତ ॥
ଅମ୍ଭଙ୍କୁ ଉଦ୍ଧାର ନ କରିଲେ ନାରାୟଣ ।
ଏ ନିନ୍ଦା କି ନୋହିବ ତୁମ୍ଭଙ୍କୁ ଦେବ ଜାଣ ॥
ଭୀମସେନ ବାଣୀ ଶୁଣି ହସିଲେ ଶ୍ରୀହରି ।
ଧନ୍ୟ ତୁମ୍ଭ ପିତା ଧନ୍ୟ ମାତା ଗର୍ଭଧାରୀ ॥
ମାୟାଧର ମାୟାପାଶ କେହି ନ ଜାଣନ୍ତି ।
ଭକ୍ତିବଳେ ମାୟା କାଟ ପାଣ୍ଡବ ସନ୍ତତ ॥
ଯେପରି ଭୀମର ବଳ ସାହସ ବଢ଼ିବ ।
ସେ କଥା ବିଚାର କଲେ ପ୍ରଭୁ ବାସୁଦେବ ॥
ହସିକରି ଭୀମେ କୃଷ୍ଣ କଲେ ଆଲିଙ୍ଗନ ।
ଭୀମର ସାହସ ତେଜ ବଢ଼ିଲା ଦ୍ୱିଗୁଣ ॥
କୋଳକରି କଲ୍ୟାଣ ଭୀମକୁ କୃଷ୍ଣ କଲେ ।
ସ୍ନେହଭରେ ନେଇଣ ପାଖରେ ବସାଇଲେ ॥
ନିଜତେଜ ପ୍ରଭୁ ତୋଷେ ଦେଲେ ଭୀମସେନ
ବିଷ୍ଣୁ ତେଜ ପାଇ ଭୀମ ବଳୀ ଶତେ ଗୁଣ ॥
ଭୀମକୁ କହନ୍ତି ବୁଝାଇଣ ପଦ୍ମନାଭ ।
ଯୁଧିଷ୍ଠି ଦେବଙ୍କ ମନେ ଏଥି ପାଇଁ କ୍ଷୋଭ ॥
ମୋହର କୌଶଳେ ଭୀଷ୍ମ କର୍ଣ୍ଣ ଦ୍ରୋଣ ମଲେ
ଆଉର ଯେ ରଥୀ ସବୁ ଯୁଦ୍ଧେ ନାଶଗଲେ ॥
ଦୁର୍ଯୋଧନ ଆଦି ବନ୍ଧୁ ସୋଦର ସକଳେ ।
ସମସ୍ତେ ମଲେ ମୋହର ମନ୍ତ୍ରଣାର ବଳେ ॥
ସେ ପାପରୁ ଅଶ୍ୱମେଧ ହେବାର ଉଚିତ ।
ତୋ ଆଗେ କହିଲି ଶୁଣ ପବନର ସୁତ ॥
ଏହି ପାପୁଁ ଯେପରି ମୁକ୍ତ ହେବେ ଯୁଧିଷ୍ଠିର ।
ସେହି କଥା ଭାବୁଥାଏ ମୁହିଁ ନିରନ୍ତର ॥
ପାପହୀନ ହୋଇଣ ସଂସାରେ ଭୋଗ ପାଅ ।
ସକଳ ପାତକ ମାନ ମୋତେ ବେଗେ ଦିଅ
ତାହା ଶୁଣି ଭଣେ ଭୀମ ଶୁଣ ଯଦୁପତି ।
ତୁମ୍ଭଙ୍କୁ କିପାଇଁ ପାପ ଦେବୁ ଦାଶରଥି ।
ଅଳ୍ପପାପ ଦେଲେ ପ୍ରଭୁ ହେବ ବହୁ ପାପ ।
ତିଳ ପ୍ରମାଣେ ଦେଲେ ବଢ଼ିବ ତାଳରୂପ ॥
ଅବିହିତ କଥା କିପାଁ କହ ଶ୍ରୀପତି ।
କେଉଁପରି ଯଜ୍ଞ ହେବ ଭିଆଅ ସଂପ୍ରତି ॥
ଯଜ୍ଞ କରି ତୁମ୍ଭଙ୍କୁ ନ ଭାବେ ଯେଉଁ ଜନ ।
ତାହାର ସେ ଯଜ୍ଞେ ଫଳ କିଛି ନାହିଁ ଜାଣ
ଯଜ୍ଞଭାର ଯୁଧିଷ୍ଠି ତୁମ୍ଭଙ୍କୁ ସମର୍ପିଲେ ।
ଶତ କୋଟି ଯଜ୍ଞଫଳ ଲଭିବେ ସେ ଭଲେ ॥
ତପ ଯଜ୍ଞ ତୀର୍ଥ ଆଦି କର୍ମ ଯେ କରଇ ।
ତୁମ୍ଭର ପାଦରେ ନେଇ ତାହା ସମର୍ପଇ ॥
ତେବେ ତପ ଯଜ୍ଞ ତୀର୍ଥଫଳ ସେ ଲଭଇ ।
ତା ନ କଲେ ତପ ଯଜ୍ଞ ତୀର୍ଥଫଳ ନୋହି ॥
ଶ୍ରୀକୃଷ୍ଣ ବୋଲନ୍ତି ଭୀମ ଶୁଣ ସେ ଉତ୍ତର ।
ନିଷ୍କାମ ଭକ୍ତି କରଇ ରାଜା ଯୁଧିଷ୍ଠିର ॥
ସଦା ସର୍ବଦା ମୁଁ ତୁମ୍ଭ ଭାବେ ବଶ ଥାଇ ।
ତୁମ୍ଭ ବିନୁ ବୈକୁଣ୍ଠରେ ମୋର ସୁଖ ନାହିଁ ॥
ଏ ସଂସାର ଭୋଗସୁଖ ତୁମ୍ଭ ବିନା ମୋର ।
ନ ଥାଇ ତିଳ ପ୍ରମାଣେ ଜାଣ ବୃକୋଦର ॥
ମୋର ପଞ୍ଚପ୍ରାଣ ତୁମ୍ଭେ ଭାଇ ପାଞ୍ଚଜଣ ।
ବିଶେଷ କହିବା ନୋହେ ଭାବି ଦେଖ ମନ
ଶୁଣି ଭୀମ କରଯୋଡ଼ି ଶ୍ରୀହରିଙ୍କୁ କହେ ।
ଅଶ୍ୱ ଆଣିବା ନିମନ୍ତେ ଆଜ୍ଞା କର ରାଏ ॥
ଯୁବନାଶ୍ୱସୁତ ଯଜ୍ଞ ଅଶ୍ୱ ମୁଁ ଆଣିବି ।
ଆପଣଙ୍କ ଶ୍ରୀଚରଣେ ମୁହିଁ ସମର୍ପିବି ॥

ଭୀମଦେବ ଯୁଧିଷ୍ଠିରଙ୍କୁ ଯେ ରକ୍ଷା କରୁଥାଅ ।
ମୁଁ ଯାଇ ଯଜ୍ଞ ଅଶ୍ୱକୁ ଆଣିବି ନିଶ୍ଚୟ ॥
ଭୀମର ବଚନ ଶୁଣି ବୋଲନ୍ତି ଶ୍ରୀପତି ।
ଅଶ୍ୱ ଆଣିବା ନିମିତ୍ତ ଚଳ ହୋ ଝଟତି ॥
ଶ୍ରୀରାମ ଆଜ୍ଞା ଦେଇ କୃଷ୍ଣ ଯୁଧିଷ୍ଠିର ସେଦିନି ।
ଭୋଜନ କରି ଶୟନ କଲେ ତହିଁ ପୁଣି ॥
ରାଜପ୍ରଭାତରୁ ଭୀମ ହୋଇଲେ ବାହାର ।
ମେଘବର୍ଣ୍ଣ ବୃଷକେତୁ ଘେନି ସଙ୍ଗତର ॥
ମାତାଭ୍ରାତା ଶ୍ରୀହରିଙ୍କୁ କରି ନମସ୍କାର ।
ଶୁଭବେଳ ଦେଖି ସର୍ବେ ହୋଇଲେ ବାହାର
ଏ ସମୟେ ଅର୍ଜ୍ଜୁନଙ୍କୁ ଭୀମ ଡ଼କାଇଲେ ।
ଆଲିଙ୍ଗନ କରିଣ ସେ ବଚନ ବୋଇଲେ ॥
ତୁମେ ରକ୍ଷା କରୁଥିବ ରାଜ ବନ୍ଧୁଗଣେ ॥
ମୁଁ ଯାଇଣ ଭଦ୍ରାବତୀ ପୁରୁ ଅଶ୍ୱ ଆଣେ ॥
ଭୀମର ବଦନ ଶୋଭା ଶ୍ରୀହରି ଦେଖିଲେ ।
ମେଘବର୍ଣ୍ଣ ବୃଷକେତୁ ସଙ୍ଗତରେ ଦେଲେ ॥
ଶ୍ରୀହରି ବୋଲନ୍ତି ଅଶ୍ୱ ବିନା ଯଜ୍ଞ ନାହିଁ ।
ଭୀମ ବୋଲେ ତୁମ୍ଭ ଦୟା ହେଲେ ପାଇବଇଁ
କୃଷ୍ଣ ନାମ ମହାପାପୀ ଭଜିଲେ ହୃଦରେ ।
ପାପତାପ ନାଶି ଯାଏ ସେହି ସ୍ୱର୍ଗପୁରେ ॥
ସେହିପରି ଆପଣଙ୍କ ଦୟାରେ ମୁଁ ଯିବି ।
ମୋର ଯେ ଶତ୍ରୁ ହୋଇବ ତାହାଙ୍କୁ ମାରିବି
ତୁମ୍ଭର ପ୍ରସାଦେ ମୋର ଭୟ କାହେ ନାହିଁ ।
ଶତ୍ରୁ ସଂହାରିଣ ମୁହିଁ ଅଶ୍ୱ ଆଣିବଇ ॥
ଏତେ କହି ଭୀମ ମେଘବର୍ଣ୍ଣ ବୃଷକେତୁ ।
କୁନ୍ତୀଙ୍କ ପାଦେ ପଡ଼ିଲେ ବିଦା ହେବା ହେତୁ
କଲ୍ୟାଣ କରିଣ କୁନ୍ତୀ ବୋଇଲେ ବଚନ
ଆରେ ଭୀମ ନେଉ ସଙ୍ଗେ ମୋ ଅଞ୍ଚଳୀଧନ
କର୍ଣ୍ଣକୁ ହରାଇ ମୁହିଁ ଏହା ମୁଖ ଚାହିଁ ।
ଜୀବନ ମାତ୍ରେ ରଖିଛି ଜାଣିଥିବୁ ତୁହି ॥
ସାବଧାନେ ହୋଇ ବୃଷକେତୁ ମେଘବର୍ଣ୍ଣେ
ଯୁଦ୍ଧରେ ରକ୍ଷା କରିବୁ ତୁହି ପ୍ରାଣପଣେ ॥
ଦ୍ରୌପଦୀ ଅର୍ଘ୍ୟ ଦେଇଣ କହନ୍ତି ବଚନ ।
ସଙ୍ଗତେ ନେଉଛ ନାଥ ମୋ ଜୀବନଧନ ।
ଯାକୁ ନ ଦେଖିଲେ କୋଟିଯୁଗ ଘଡ଼ିଏ ମୁହିଁ
ସଙ୍ଗତେ ନେଉଛ ମୋର ସେ ବାଳ ତନୟ
ତୁମ୍ଭଙ୍କୁ ଲାଗିଲା ନାଥ ବୃଷକେତୁ ମୋର ।
କହିଣ ଦ୍ରୌପଦୀ ଶୋକେ ହୋଇଲେ ଅଧୀର
କୋଳେ ବୃଷକେତୁ ଧରି ଦ୍ରୁପଦ ନନ୍ଦନୀ ।
ଚୁମ୍ବନ ଦେଇ କଲ୍ୟାଣ କଲେ ଯାଜ୍ଞସେନୀ ॥
ବୃଷକେତୁ ବୋଲେ ମାତ ନୁହନ୍ତୁ ଅଧୀର ।
ଶ୍ରୀକୃଷ୍ଣ ଯାରେ ସହାୟ ଭୟ କାହେ ତାର ।
ବିଦାୟ ନେଇଣ ତହୁଁ ଆସିଲେ ସତ୍ୱର ।
ତନିହେଁ ନିର୍ଭୟେ ଗଲେ ଭଦ୍ରାବତୀପୁର ॥
ବାରଦିନେ ଭଦ୍ରାବତୀ ପୁରେ ପ୍ରବେଶିଲେ ।
ସେ ନଗ୍ର ପ୍ରାନ୍ତରେ ଏକ ଗିରିକୁ ଦେଖିଲେ
ତିନିବୀରେ ଉଠିଲେ ସେ ଗିରିର ଉପର ।
ଦେଖିଲେ ବିଚିତ୍ର ଶୋଭା ଭଦ୍ରାବତୀପୁର ॥
ଧନ୍ୟ ଧନ୍ୟ ଯୌବନାଶ୍ୱ ଧନ୍ୟ ତୋହପୁରୀ
ନାନାଜାତି ବନ ସ୍ଥାନେ ସ୍ଥାନେ ଅଛି ଘେରି
ଅସଂଖ୍ୟ ଦେଉଳମାନ ଦିଶଇ ଉଚ୍ଚକୁ ।
ଶତ ଶତ ପୁଷ୍କରଣୀ ମଣ୍ଡିଛି ପୁରକୁ ॥
ସ୍ଥାନେ ସ୍ଥାନେ ବେଦପାଠ କରନ୍ତି ବ୍ରାହ୍ମଣ ।
ତପୀମାନେ ତପ କରୁଛନ୍ତି ସ୍ଥାନେ ସ୍ଥାନ ॥
ନାନାସ୍ଥାନେ ଯଜ୍ଞମାନ ଦିଶୁଅଛି ଶୋଭା ।
ଧୃତାହୁତ ଧୂମ କୁହୁଡ଼ିର ପରି ଆଭା ॥
ଯୋଦ୍ଧାମାନଙ୍କର ଧନୁ ଟଙ୍କାର ଶୁଭଇ ।
ତିନିବୀର ଦେଖୁଥାନ୍ତି ଗିରିଶିଖେ ଥାଇ ॥
ଅମ୍ବ ନାରିକେଳ ଯେ ପଣସ ବୃକ୍ଷମାନ ।
ଗୁବାକ ଖର୍ଜ୍ଜୁର ତାଳ ଶାଳ ଆଦି ବନ ॥
କରମଙ୍ଗା ଜେଉଟ ମେ ଜମ୍ବୀର କଇଥ ।
ବଟଅଶ୍ୱତ୍ଥ ଶାଲ୍ମଳୀ ବୃକ୍ଷରେ ଶୋଭିତ ॥
ଚମ୍ପା କଣିଅର କଦମ୍ବର ଗଛମାନ ।
ପୁଷ୍କରଣୀ ତଟେ ଶୋଭା ଦିଶେ ବିଚକ୍ଷଣ ॥
ଉଦ୍ୟାନରେ ଉଗ୍ରଚ ଟଗର କୁସୁମମାନ ।
ମଲ୍ଲୀ ମାଲତୀ ମାଳତୀ କେତକୀ ଦମୟଣା ॥
ଜାଇ ଯୂଈ କୁରୁବେଲ୍ଲୀ ମନ୍ଦାର ରଙ୍ଗଣୀ ।
ଗଙ୍ଗଶିଉଳି ଗୋଲାପ କରବୀର ଘେନି ॥
ସଦାବିହାରୀ କୁସୁମ ହେନା ନାଗେଶ୍ୱର ।
କାଠଚମ୍ପା ବଉଳ ଅଶୋକ ଯେ ମନ୍ଦାର ॥
ଇନ୍ଦ୍ରପୁର ଠାରୁ ବଳି ସେ ପୁର ଶୋଭଇ ।
ମର୍ତ୍ତ୍ୟରେ ଏପରି ପୁର କେହି ଦେଖି ନାହିଁ ॥

ନାନା ପକ୍ଷୀ ବୃକ୍ଷପରେ କରନ୍ତି ସୁସ୍ୱର ।
ଶୁକ ସାରୀ ମୟୂର ଯେ କୋକିଳ ଆଦର ॥
ବନେ ନାନା ପଶୁମାନେ ନିର୍ଭୟେ ଖେଳନ୍ତି ।
ମନ ମଧ୍ୟେ ଭାବନା ହେ କେବେ ନ କରନ୍ତି ॥



ଭୀମ, ମେଘବର୍ଣ୍ଣ ଓ ବୃଷକେତୁ ଯୌବନାଶ୍ୱ ପୁରୁ ଅଶ୍ୱ ଆଣିବା

ପଶୁ ପକ୍ଷୀ ପଢଙ୍ଗାଦ ଗାନରେ ସେ ପୁର ।
କିବା ଦିନ କିବା ରାତ୍ରି ସର୍ବଦା ଚହଳ ॥
ଅଗରେ ଯେ ପୁଷ୍କରିଣୀ ଗୋଟିଏ ଅଛଇ ।
ରୂପାରେ ପାବଚ୍ଛ ଗୁର ପାଖେ ବସାଇ ॥
ଦେଖିକରି ଭୀମସେନ ଆନନ୍ଦ ହୋଇଲେ ।
ବୃଷକେତୁ ମେଘବର୍ଣ୍ଣେ ଗୁହାଁଣ ବୋଇଲେ ।
ତୁମ୍ଭେ କେନ ବୀରେ ଶୁଣ ମୋହର ଉତ୍ତର
ଅଶ୍ୱମାନେ ଏହୁ ପୋଖରୀରୁ ଖାନ୍ତି ନୀର ॥
ଯେତେବେଳରେ ପାଳକେ ଅଶ୍ୱମାନ ଆଣି ।
ଏହ ପୋଖରୀରେ ପଶି ଖୁଆଇବେ ପାଣି ॥
ଆଗହୁଁ ଆମ୍ଭେ ଯାଇଣ ଏହି ବନେ ଥିବା ।
ଅଶ୍ୱପାଳ ସହୁଡବେ ଅଶ୍ୱକୁ ଧରିବା ॥
ମୁଁ ଅଶ୍ୱ ବାନ୍ଧିଲେ ତୁମ୍ଭେ ଧନୁ ଧରିଥିବ ।
ପଛପାଖେ ଥାଇ ଯୋଦ୍ଧା ଆସିଲେ ମାରିବ ॥
ଶୁଣି କହେ ବୃଷକେତୁ ଭୀମର ବଚନ ।
ମୋହର ନେବା ଉପାୟ ଶୁଣ ଦେଇ ମନ ॥
ଶତେ ଅକ୍ଷୌହିଣୀ ଦଳ ଅଛଇ ରାଜାର ।
ଅଶ୍ୱରକ୍ଷକ ଅଛନ୍ତି ଦଶକ୍ଷୌଣୀ ଦଳ ॥
ସେମାନେ ଅଶ୍ୱସଙ୍ଗତେ ଯେବେ ବା ଆସିବେ
ତୁମ୍ଭ ବାହୁବଳେ ସର୍ବେ ଯମପୁର ଯିବେ ॥
ପ୍ରାଣୀମାନଙ୍କର ଦେହେଁ ନାନା ପାପ ଥାଇ ।
ଗଙ୍ଗାସ୍ନାନ କଲାମାନେ ସକଳ ତୁଟଇ ॥
ସୈନ୍ୟମାନେ ଯେବେ ଦ୍ୱନ୍ଦ କରିଣ ଆସିବେ
ତୁମ୍ଭ ବାହୁ ଗଙ୍ଗା ତୁଲ୍ୟ ତହିଁ ନାଶ ଯିବେ ॥

ସର୍ପମାନେ ବସିଥିବା ଯୋଗୁଁ ଗର୍ବ କରି ।
ଫଣାଟେକି ଧାଆନ୍ତି ଦେଖାନ୍ତି ଭୟ ଭାରି ॥
ଗରୁଡ଼କୁ ଦେଖିଲେ ତୁଟଇ ତାଙ୍କବଳ ।
ମଲା ମୂଷା ପରାଏ ପଡ଼ନ୍ତି ମହୀତଳ ॥
ଯେବେ ପାତକରେ ଲୀନ ହୋଇଥାନ୍ତି ନର
କୃଷ୍ଣ ସୁମରିଲେ ପାପ ଛାଡ଼ଇ ଶରୀର ॥
କୃଷ୍ଣ ଯେ ସୁମରେ ସେହି ମୁକତି ଲଭଇ ।
ମୁକ୍ତି ପାଇଲେ ସଂସାରେ ଜନ୍ମ ତାର ନାହିଁ ॥
ଯେଉଁମାନେ ଗୟାରେ ପିତୃଙ୍କୁ ଶ୍ରାଦ୍ଧ ଦିଅନ୍ତି ।
ତାଙ୍କ ପିତାଙ୍କର ହୁଏ ବଇକୁଣ୍ଠ ଗତି ॥
ଆମ୍ଭେ ଯାଗ ଅଶ୍ୱନେଇ ରାଜାଙ୍କୁ ଭେଟିଲେ ।
ତାଙ୍କ ମନ ପୂର୍ଣ୍ଣହେବ ଅଶ୍ୱମେଧ କଲେ ॥
ଜ୍ଞାତିବଧ ପାପରୁ ହୋଇବେ ମୁକ୍ତ ସେହି ।
ଏମନ୍ତ ପ୍ରକାରେ ତିନି ବୀରେ କୁହାକୁହି ॥
ଏହି ସମୟରେ ରାଜହସ୍ତୀକୁ ଘେନିଣ ।
ମାହୁନ୍ତ ଆସଇ ଜଳ ପିଆଇବା କାରଣ ॥
ହସ୍ତୀ ମାହୁନ୍ତ ଦେଖିଲେ ତହୁଁ ତିନିବୀର ।
ଅଞ୍ଜନ ପର୍ବତ ପରି ହସ୍ତୀର ଶରୀର ।
ତା ଉପରେ ମାହୁନ୍ତ ଅଙ୍କୁଶ ଘେନି କରେ ।
ହସ୍ତୀକୁ ପ୍ରବେଶ କଲା ପୋଖରୀ ଭିତରେ ।
ମତ୍ତହସ୍ତୀ ନିର୍ଭୟରେ ଜଳ ପାନ କଲା ।
ମାହୁନ୍ତ ଘେନିଣ ତାକୁ କୂଳକୁ ଉଠିଲା ॥
ହସ୍ତୀ ପୁଷ୍କରିଣୀ ଗର୍ଭେ ପଶିଲା ଯେ କାଳେ
ମତ୍ସ୍ୟସବୁ ପାଣିରେ ଡେଇଁଲେ ତେତେବେଳେ
ସଦା ଦୁଃଖୀ ଜନ ହାତେ ଧନ ଯେବେ ପଡ଼େ
ସଂସାରକୁ ତୃଣ ପରି ମନେ ମନେ ଲେଖେ ॥
ସେହିପରି ମତ୍ସ୍ୟମାନେ ହୋଇଲେ ଉଚ୍ଛନ୍ନ ।
ମାହୁନ୍ତ ହସ୍ତୀକୁ ନେଲା ରାଜା ଉପବନ ॥
ଚକୋର ଚକୋରୀ ଦୁହେଁ ପୁଷ୍କରିଣୀ ତୀରେ
ମାତିଲେ ଆନନ୍ଦେ ମତ୍ତ ହୋଇଣ କ୍ରୀଡ଼ାରେ
ତିନିବୀରେ ଏହିପରି ଥାଇଁଣ ଦେଖନ୍ତି ।
ପାଣି ପିଇବାକୁ ଅଶ୍ୱମାନେ ଯେ ଆସନ୍ତି ॥
ଯାଗ ଅଶ୍ୱ ଯେତେବେଳେ ସରସୀକୁ ଆସେ
ଅସଂଖ୍ୟ ସୈନ୍ୟ ଅଛନ୍ତି ତାର ରକ୍ଷା ଆଶେ ॥
ବର୍ଣ୍ଣ ଶ୍ୟାମବର୍ଣ୍ଣ ପୁଚ୍ଛ ପୀତବର୍ଣ୍ଣ ତାର ।
ଅବର ଅନେକ ଭାବ ଧବଳ ଶରୀର ॥

ଚଳିଲେ ଅସନ୍ତେ ପାଦଘାତେ ଉଠେ ଧୂଳି
ଶଙ୍ଖ ଭେରୀ ତୂରୀ ଆଦି ବାଜଇ କାହାଳି ॥
ଛତ୍ରୀ ତରଶ ଆଢ଼ୋଣୀ ପତାକା ଶୋଭଇ ।
ମେଘେ ବିଜୁଳିର ପରି ଝଟକ ଦିଶଇ ॥
ଯୁବନାଶ୍ୱ ରାଜା ତାହା ସଙ୍ଗେ ଘେନି ବଳ
ରଥୀ ସାରଥି ପଦାତି ଘେନିଣ ସକଳ ॥
ବହୁଯୋଦ୍ଧା ସଙ୍ଗେ ଘେନି ଆସେ ନରସାଇଁ
ରଥମାନଙ୍କର ସଂଖ୍ୟା କେ ପାରିବ କହି ॥
ସହସ୍ର ସହସ୍ର ବୀର ଅଛନ୍ତି ସଙ୍ଗରେ ।
ଅସ୍ତ୍ରଶସ୍ତ୍ରମାନ ଶୋଭାପାଏ ତାଙ୍କ କରେ ॥
ସବୁ ରଥରେ ସୁବର୍ଣ୍ଣ କଳଶ ଶୋଭାପାଇ ।
ରାଜପଥେ ହୀରାର କଳଶ ଝଟକଇ ।
ପତାକାରେ ହୀରାନୀଳା ହୋଇଛି ମଣ୍ଡଣି ।
ଅନାଇଲେ ସୂର୍ଯ୍ୟପ୍ରାୟେ ତେଜ ଦିଶେ ପୁଣି ॥
ଈଶ୍ୱର ବୋଲନ୍ତି ତୁମ୍ଭେ ଶୁଣ ଗୋ ପାର୍ବତୀ
ଜୈମିନି ଭାରତ ଶୁଣି ହୁଅନ୍ତି ମୁକତି ॥
ଶ୍ରୀକୃଷ୍ଣ ପାଦ ପଦ୍ମେ ସଦା କରି ଲୟେ ।
ଉପାଧ୍ୟାୟ ମହାଦେବ କୃଷ୍ଣ ପାଦେ ଧ୍ୟାୟେ ॥

ଇତି ଶ୍ରୀ ଜୈମିନିଭାରତ ହରଭକ୍ତ
ରସଲୀଳା କଥା ପ୍ରବନ୍ଧେ ନାମ
ତୃତୀୟୋଽଧ୍ୟାୟଃ ।

—o—

# ଚତୁର୍ଥ ଅଧ୍ୟାୟ

ଯନ୍ନାମସ୍ମୃତିମାତ୍ରେଣପଶ୍ୟୋନନରଙ୍କଂନରଃ
ସମୂର୍ତ୍ତିଦୂରତଃ ଭାତି ଭବଭୀତି ବିନାଶିନୀ ॥

## ଘୋଟକ ଗ୍ରହଣ କରିବାର ପରାମର୍ଶ ଓ ଶତ୍ରୁ ସଙ୍ଗରେ ଯୁଦ୍ଧ

ଈଶ୍ୱର କହନ୍ତି ଦେବୀ ପାର୍ବତୀ ଗୋ ଶୁଣ
ଜୈମିନି ଜନ୍ମେଜୟଙ୍କୁ କରନ୍ତି ବଖାଣ ॥
ସହସ୍ର ସହସ୍ର ଅଶ୍ୱମାନେ ଯେ ଆସନ୍ତି ।
ନାନାଗତି କରି ମନ ଉଲ୍ଲାସେ ଚରନ୍ତି ॥
ରାଉତମାନେ ଅଶ୍ୱକୁ ଚାଳି ନାନା ଢଙ୍ଗେ ॥
ଶିଖାଇ ଥିବାରୁ ସେହି ଚାଲୁଛନ୍ତି ରଙ୍ଗେ ॥
ରାଉତମାନେ ଅଶ୍ୱର ପୃଷ୍ଠରେ ବସିଣ ।
ହୁଙ୍କାର ଶବ୍ଦ କରନ୍ତି ଦଳକୁ ଚାପିଣ ॥

ଅଶ୍ୱମାନଙ୍କ ମଧ୍ୟରେ ଯାଏ ଯାଗ ଅଶ୍ୱ ।
କି ଉପମା ଦେବ ରତ୍ନପୁରେ ନାହିଁ ଲକ୍ଷ ॥
ଅଶ୍ୱ ଗ୍ରୀବପାଖେ ଯେ ଚାମର ପଡ଼ୁଥାଏ ।
ଅଶ୍ୱଦେହେଁ ନାନା ଅଳଙ୍କାର ଶୋଭାପାଏ ॥
କଟିରେ ଶୋହେ ଘାଗୁଡ଼ି ମୁଣ୍ଡେ ଜରିବେଣୀ ।
ଝାପୁମାନଙ୍କେ ହୋଇଛି ସୁବର୍ଣ୍ଣ ଛଏଣୀ ॥
ଗଳାରେ ଦଶଇ ଶୋଭା ହୀରା ନୀଳା ମାଳା ।
ଯେସନେ ଶୋଭା ଦଶଇ ରଜନୀରେ ତାରା ॥
ନାନା କୁସୁମରେ ହୋଇଅଛି ପରପୂର୍ଣ୍ଣ ।
ଫୁଲ ସୁବାସେ ମଧୁପେ ଗୋଡ଼ାନ୍ତି ପଛେଣ ॥
ଯଜ୍ଞଅଶ୍ୱ ନାନା ଆଭରଣେ ହୋଇ ଶୋଭା ।
ଉଚ୍ଚୈଃଶ୍ରବା ଅଶ୍ୱ କିବା ମର୍ତ୍ତ୍ୟେ ହୋଏ ଜନ୍ମ ॥
ସଙ୍ଗେ ଶଙ୍ଖ ଭେରୀ ତୁରୀ ମୃଦଙ୍ଗ ବାଜଇ ।
ଝୁଣା ଗୋକୁଳ ଧୂଆଁ ଯେ ଚହଟି ବାସଇ ॥
ବାଦ୍ୟମାନଙ୍କର ଧ୍ୱନି ସଙ୍ଗେ ବୀରନାଦ ।
ତାହା ସଙ୍ଗେ ଅଶ୍ୱ ଗଜମାନଙ୍କ ଶବଦ ॥
ସେ ଶବ୍ଦମାନଙ୍କେ କର୍ଣ୍ଣ ବଧିର ହୁଅଇ ।
ସୁଗନ୍ଧ ଥିବାରୁ ତହିଁ ଅଗ୍ରହ ଜନ୍ମଇ ॥
ଯାଗ ଅଶ୍ୱ ମନ ଉଲ୍ଲାସରେ ଚାଲୁଅଛି ।
ଆହା କି ସୁନ୍ଦର ତାର ମନୋହର ଗତି ॥
ବୃଷକେତୁ ମେଘବର୍ଣ୍ଣ ଭୀମସେନ ବୀର ।
ବୋଇଲେ ଯାହା ପାଇଁ ଆସିଲୁ ଏତେଦୂର ॥
ସେ ଅଶ୍ୱ ଆସୁଛି ଏବେ ଦେଖିଲୁ ନୟନେ ।
ତାହାକୁ ରଖିଛି ନୃପବର ସାବଧାନେ ॥
ଯାଗ ଅଶ୍ୱ ନିମନ୍ତେ ଆସିଲୁ ତିନିଜଣ ।
ଅଶ୍ୱ ନେଇକରି ଯିବା ଅତହିଁ କଠିନ ॥
ନ ନେଇ ତାହାକୁ ଆମ୍ଭେ ଗଲେ ବାହୁଡ଼ିଣ ।
କେବେହେଁ ଯାଇ ନ ପାରୁ ହସ୍ତିନା ଭୁବନ ॥
ମନ୍ତ୍ରୀହୀନେ ରାଜା ଯେହ୍ନେ ସୁବୁଦ୍ଧି ନ ଯାଏ ।
ସଦା ସର୍ବଦା ମନରେ ଅନୁତପ୍ତ ହୁଏ ॥
ପାପୀମାନେ ତାହିଁ ଯଶ କ୍ଷଣେ ନ ଲଭନ୍ତି ।
ଶ୍ରୀକୃଷ୍ଣ ନାମ ନ ଭଜି ମୁକ୍ତି କେବେ ପାନ୍ତି ॥
ଶିବଭକ୍ତ ବିନେ ହୋନ୍ତି ଦରିଦ୍ର ଯେସନ ।
ଅଶ୍ୱବିନା ସେହୁପରି ଆମ୍ଭେ ତିନି ଜଣ ॥
ଭୀମର ବଚନ ଶୁଣି ମେଘବର୍ଣ୍ଣ ବୀର ।
ଭୋ ଦେବ ଏ ଅଶ୍ୱନେବା କେଉଁତ ମାତର ॥
ଏଥି ସକାଶେ ହେ ତାତ ନ ଭାବ ମନରେ ।
ଏ ଯାଗ ଅଶ୍ୱ ଆଣିବା ମାତ୍ର ସର୍ବବୀରେ ॥
କଅଁଳା ବାଛୁରୀ କାହେ ଘେନିଗଲୁ ପର ।
ଅଶ୍ୱ ମୁଁ ଆଣିବି ଏହୁ ସର୍ବ ବୀର ମାତ୍ର ॥
ରାଜାର ମନ୍ତ୍ରୀ ପୁଅକୁ ବାନ୍ଧିଣ ଆଣିବି ।
ମୋର ବାହୁବଳ ଆଜ ଏଥେଁ ଦେଖାଇବି ॥
ଭୟ ନ କରିଣ ଦେବ ମୋତେ ଆଜ୍ଞା ଦିଅ ।
ଏ ଯୋଦ୍ଧାମାନଙ୍କୁ ମାରି କରେ ମୁଁ ବିଜୟ ॥
ଏଥୁ ଅଶ୍ୱ ନେବା ଯଶ ମୋର ରହିଥିବ ।
ଶ୍ରୀକୃଷ୍ଣ ସୁମରି ମୁହିଁ ଯାଉଅଛି ଦେବ ॥
ଏତେ କହି ମେଘବର୍ଣ୍ଣ ଭୀମେ ପ୍ରଣମିଲା ।
ଶ୍ରୀଗୁରୁଙ୍କୁ ଚିନ୍ତାକରି ତହୁଁ ଚଳିଗଲା ॥
ଭୀମ ବୃଷକେତୁ ଦୁହେଁ ପର୍ବତେ ରହିଲେ ।
ମେଘବର୍ଣ୍ଣ ବୀରପଣ ତହିଁ ଦେଖୁଥିଲେ ॥
ପ୍ରଥମରେ ମିଳି ମେଘବର୍ଣ୍ଣ ମାୟା କଲା ।
ପୃଥ୍ୱୀ ଆକାଶ ସହିତେ ମେଘ ଆଚ୍ଛାଦିଲା ॥
ଅତଶୟ ଅନ୍ଧକାର ହୋଇଲା ସମସ୍ତ ।
ଚାରି ଦଗରୁ ବହିଲା ପ୍ରବଳ ମରୁତ ॥
ପ୍ରଳୟ କାଳର ମେଘ ଯେହ୍ନେ ବରଷଇ ।
ସେହିପରି କଲା ଘଟୋତ୍କଚର ତନୟ ॥
ଘଡ଼ଘଡ଼ି ଶବ୍ଦେ କମ୍ପୁଅଛି ରତ୍ନପୁର ।
ଦେଖି ତାହା ଭୟ କଲେ ନାଗ ନର ସୁର ॥
ମେଘବର୍ଣ୍ଣ ରୂପ ଦେଖି ସୈନ୍ୟମାନେ ତହିଁ ।
ତରସ୍ତ ହୋଇଲେ ସର୍ବେ ପଳାଇବା ପାଇଁ ॥
ସ୍ୱର୍ଗେ ଦେବଗଣ ଦେଖି ମହା ଭୟକଲେ ।
ଇନ୍ଦ୍ରଙ୍କ ଆଗରେ ଯାଇଁ ସଭାରେ କହିଲେ ॥
ହେ ଦେବ ଚଉଦ ଭୁବନରେ ତୁମ୍ଭେ ରାଜା ।
ତୁମ୍ଭେ ଥାଉଁ ଥାଉଁ ଦୁଃଖ ପାଇଲେ ପରଜା ॥
କାହୁଁ ଏକ ଅସୁର ଯେ ହୋଇଣ ଜନମ ।
ପ୍ରଭାବତୀ ପୁରେ ଅ[illegible] ମିଳିଲା ବହନ ॥
ତହିଁ ମାୟାମେଘ ଉଆଇଛି ସେହି ଦେବ ।
କାତରେ କମ୍ପୁଅଛନ୍ତି ପୁରବାସୀ ସର୍ବ ॥
ଆମ୍ଭେମାନେ ତାହା ଦେଖି ତରସ୍ତ ହୋଇଲୁ
ତେଣୁକରି ହେ ଦେବ ଶୀଘ୍ରରେ ଜଣାଇଲୁ ॥
ଯେଡ଼େବଡ଼ ଯୋଦ୍ଧା ହେଉ ସେରୂପ ଦେଖିବ
ନିଶ୍ଚୟ ତାହାର ମନେ ଭୟ ଜାତ ହୋଇବ ।

ଶ୍ୱେଦେବ ଦେବରାଜ ତାହାକୁ ତୁମ୍ଭେ ମାର
ନ ହେଲେ ନିଶ୍ଚୟ ନାଶ ଯିବ ମର୍ତ୍ତ୍ୟପୁର ॥
ଏସନ ବଚନ ଶୁଣି ଇନ୍ଦ୍ର କୋପକଲା ।
କେଉଁ ଦୈତ୍ୟ ଅଛି ସ୍ୱର୍ଗେ ଦେଖରେ ବୋଇଲା
ଇନ୍ଦ୍ରର ବଚନ ଦେବେ ଦୂତ ବରଗିଲେ ।
ବେଗେଣ ଦୈତ୍ୟକୁ ଯାଇ କହନ୍ତି ବୋଇଲେ
ସ୍ୱର୍ଗର କେବଣ ଦୈତ୍ୟ କପାଁ ଅଛିଅଛୁ ।
କିପାଇଁ ଜନମାନଙ୍କୁ ତରସ୍ତ କରୁଛୁ ॥
ଦେବତାଙ୍କ ବାକ୍ୟେ ଦେବଦୂତ ଗଲେ ଚଳି ।
ପ୍ରଭାବତୀପୁରେ ମେଘବର୍ଣ୍ଣ ପାଶେ ମିଳି ॥
ଅହେ ମହାବୀର ତୁମ୍ଭେ କହ ସତକଥା ।
କେଉଁଠାରେ ଘର କିଏ ଅଟେ ତୁମ୍ଭ ପିତା ॥
କି ନିମନ୍ତେ ଆକାଶେ ଏ ରୂପ ଧରିଅଛ ।
କିସ ପାଇଁ ପ୍ରାଣୀଙ୍କ ଯେ ଭୟ ଦେଖାଉଛ ।
ତୁମ୍ଭ ରୂପ ଦେଖି ଦେବ ତରସ୍ତ ହୋଇଲେ
ସର୍ବେ ମିଳି ସୁନାସୀର ଆଗେ ଜଣାଇଲେ ॥
ଶୁଣି ସୁନାସୀର ଆମ୍ଭମାନଙ୍କୁ ପେଷିଲେ ।
ତାର ପରିଚୟ ଆଣ ବୋଲି ଆଜ୍ଞା ଦେଲେ ॥
କହ ଦେବ ସଂଶୟ ନ ରଖି ସର୍ବ କଥା ।
ତୁମ୍ଭଠାରୁ ଶୁଣିଲେ ଯେ ଯିବ ମନୁ ବ୍ୟଥା ॥
ମେଘବର୍ଣ୍ଣ କହେ ଦେବଦୂତଙ୍କୁ ଗୁହାଁଣ ।
ମୋରୂପରେ ଦେବେ ଭୟ କଲେକି କାରଣ
କହୁଛି ମୁଁ ନାମ ଧାମ ଶୁଣ ମନ ଦେଇ ।
ଦେବରାଜ ଆଗେ ତାହା କହିବ ବୁଝାଇ ॥
ମୋର ପିତା ନାମ ଅଟେ ଘଟୋତ୍କଚ ବୀର ।
ତାଙ୍କ ପିତାଙ୍କର ନାମ ଅଟେ ବୃକୋଦର ॥
ହିଡ଼ିମ୍ବିକା ଗର୍ଭରୁ ମୋହର ଉତପତ୍ତି ।
ମୋର ନାମ ମେଘବର୍ଣ୍ଣ ଶୁଣ ହେ ଝଟତି ॥
ଯୁଧିଷ୍ଠି ରାଜାଙ୍କ କାର୍ଯ୍ୟେ ଅଛିଅଛୁ ମୁହିଁ ।
ପ୍ରଭାବତୀ ପୁରୁଁ ଯାଗ ଅଶ୍ୱ ନେବା ପାଇଁ ॥
ଅଶ୍ୱମେଧ ଯାଗ ଯେ କରିବେ ଯୁଧିଷ୍ଠିର ।
ଯାଗ ଯୋଗ୍ୟ ଅଶ୍ୱ ଅଛି ପ୍ରଭାବତୀ ପୁର ।
ସେ ଅଶ୍ୱ ଧରିବା ପାଇଁ ଧରିଛୁ ଏ ଦେହ୍ୟ ।
ଦେବତାଙ୍କ ଭୟ କିସ ଉଚିତ ନୁହଇ ॥
ଶୁଣି ମେଘବର୍ଣ୍ଣ ମୁଖୁଁ ଏସନ ବଚନ ।
ଦେବଦୂତେ ଚଳିଗଲେ ଇନ୍ଦ୍ରଙ୍କ ପାଶେଣ ॥

କରଯୋଡ଼ି ଶଚୀପତି ଆଗେ ଉଭାହେଲେ ।
ପ୍ରଣାମ କରଣ ସର୍ବ ବୃତ୍ତାନ୍ତ ବୋଇଲେ ॥
ଶ୍ୱେଦେବ ଆପଣଙ୍କର ଆଜ୍ଞା ଶିରେ ଘେନି ।
ଚଳିଗଲେ ପ୍ରଭାବତୀ ପୁର ଏହିକ୍ଷଣି ॥
ଆପଣଙ୍କ ଆଜ୍ଞା ବୋଲି କହିଲୁ ତାହାରେ ।
ସର୍ବ ପରିଚୟ ଦେଲେ ସେହୁ ମୋ ଆଗରେ ॥
ବୋଇଲେ ମୋ ନାମ ଅଟେ ମେଘବର୍ଣ୍ଣ ବୀର ।
ମୋର ପିତା ଘଟୋତ୍କଚ ଭୀମଙ୍କ କୁମର ॥
ହିଡ଼ିମ୍ବିକା ଗର୍ଭରୁ ମୁଁ ହୋଇଛି ଜନମ ।
ଯୁଧିଷ୍ଠି ଦେବଙ୍କ କାର୍ଯ୍ୟେ ଆସିଅଛୁ ଏ ସ୍ଥାନ ॥
ଜ୍ଞାତିବଧ ପାପୁଁ ମୁକ୍ତ ହୋଇବା ନିମନ୍ତେ ।
ଅଶ୍ୱମେଧ କରିବେ ଯୁଧିଷ୍ଠି ନରନାଥେ ॥
ଯାଗଅଶ୍ୱ ଯୁବନାଶ୍ୱ ପୁରୁ ନେବା ପାଇଁ ।
ଆସିଅଛୁ କହିଲ ଏଥିରେ ମାୟା ନାହିଁ ॥
ସର୍ବଦେବ ଏହା ଶୁଣି ସନ୍ତୋଷ ହୋଇଲେ ।
ଅପୂର୍ବ ମାୟା ଦେଖିବା ବୋଲି ମନେ କଲେ ॥
ରଥ ଆରୋହଣ କରି ସର୍ବେ ଚଳିଗଲେ ।
ଆକାଶେ ରହି ଅସୁର ମାୟାକୁ ଦେଖିଲେ ॥
ଏସନ ସମୟେ ମେଘବର୍ଣ୍ଣ ବୀର ତହିଁ ।
ପ୍ରଳୟ କାଳରେ ମେଘ ଯେସନେ ଗରଜଇ ॥
ଯଜ୍ଞ ଅଶ୍ୱ ନେବା ପାଇଁ ମେଘବର୍ଣ୍ଣ ବୀର ।
ଆକାଶରୁ ଅବନୀକୁ ଖସିଲେ ସତ୍ୱର ॥
ନିଜ ମାୟାବଳେ ସର୍ବେ ବିମୋହିତ କଲେ ।
ଶୂରତେ ଝଞ୍ଜା ବାତରେ ଆଚ୍ଛନ୍ନ କରିଲେ ॥
ତହିଁ ଯେତେ ବୀରଥିଲେ ହେଲେ ମୂର୍ଚ୍ଛାଗତ ।
ପୃଥିବୀ ଉପରେ ଢଳି ପଡିଲେ ଶୂରତ ॥
ଧୂଳି ଉଡ଼ି ପାଦଘାତେ ଢାଙ୍କିଣ ଆକାଶ ।
ସର୍ବ ଅନ୍ଧକାର ହେଲେ ମାୟାର ପ୍ରକାଶ ॥
ତାହା ଦେଖି ଭୟକଲେ ନରନ ସକଳେ ।
ଅସ୍ତ୍ରଶସ୍ତ୍ର ଛାଡ଼ିଦେଇ ଧରଣେ ପଳାଇଲେ ॥
ସୈନ୍ୟଭଙ୍ଗ ହେବା ଦେଖି ସେନାପତିମାନେ ।
ବହୁତ ପ୍ରତିଜ୍ଞା କଲେ ସାହସ ବଚନେ ॥
ଏହା ଦେଖି ମେଘବର୍ଣ୍ଣ ପଥରି ବର୍ଷିଲା ।
ସିଂହନାଦୁ ବଳି ଘୋର ଗରଜନ କଲା ॥
ଦେବ ଦାନବ ଗନ୍ଧର୍ବ ସକଳେ କମ୍ପିଲେ ।
ଦେଖି ସୈନ୍ୟଗଣ ଏଣେ ତେଣେ ପଳାଇଲେ

ମେଘବର୍ଣ୍ଣ ଯଜ୍ଞ ଅଶ୍ୱ କରିଣ ହରଣ ।
ଆକାଶକୁ ଉଡିଗଲେ ଆନନ୍ଦ ହୋଇଣ ॥
ମେଘବର୍ଣ୍ଣ ମନେ ଭାବେ କାର୍ଯ୍ୟ ହେଲା ଜୟ ।
ଶ୍ରୀକୃଷ୍ଣଙ୍କ ପ୍ରସାଦେ ଲଭିଲି ଯଜ୍ଞହୟ ॥
ଯଜ୍ଞଅଶ୍ୱ ଘେନି ଆକାଶକୁ ଗଲାବେଳେ ।
ସମସ୍ତେ ସେକାଳେ ତାଙ୍କୁ ନୟନେ ଦେଖିଲେ
ନବଘନ ଜିଣି ଜ୍ୟୋତି ଆକାଶେ ଦିଶଇ ।
ଶିରେ ମଣିମୟ ଯେ ମୁକୁଟ ବିରାଜଇ ॥
ବେନିକର୍ଣ୍ଣରେ କୁଣ୍ଡଳ ଯେହ୍ନେ ସ୍ୱର୍ଗ ତାରା ।
କଣ୍ଠଦେଶେ ହାର ଝଲକୁଛି ହୀରାମାଳା ॥
ବାହୁଦେଶେ ଶୋଭାପାଏ ସୁନାର ବରତ ।
ବେନି ହସ୍ତରେ ସୁନାର ଖଡୁ ଯେ ଶୋଭିତା ॥
ନାନା ଅଳଙ୍କାରମାନ ଅଙ୍ଗେ ଶୋହେତାର ।
ଦେଖିଣ ଆଶ୍ଚର୍ଯ୍ୟ ହେଲେ ସଇନ ସକଳ ॥
ବଭ୍ରୁଚନ୍ଦ୍ର ଯମରାଜ ଅବା ଅଟେ ଏହି ।
କେଉଁ ବୀର ଅଟେ ଏହୁ କାହାର ତନୟ ॥
କାହିଁପାଇଁ ଆମ୍ଭ ଯାଗ ଅଶ୍ୱ ଏହୁ ନେଲା ।
ଦେଖ ଏଠାରେ ଅସୁର ମାୟା ପ୍ରକାଶିଲା ॥
ଚାଲ ସର୍ବେ ମିଳି ତାର ସଙ୍ଗେ କରି ରଣ ।
ଚାରିଆଡୁ ଘେରିଣ ମାରିବା ଏହିକ୍ଷଣ ॥
କେହୁବୋଲେ ସର୍ବେମିଳି ଏହାକୁ ବାନ୍ଧିବା ।
କେହୁବୋଲେ ଏହା ମୁଣ୍ଡ କାଟି ପକାଇବା ॥
ଯୁବନାଶ୍ୱ ସୈନ୍ୟମାନେ ଏମନ୍ତ ବୋଲନ୍ତେ ।
ଅଶ୍ୱଘେନି ମେଘବର୍ଣ୍ଣ ଗଲା ଶୂନ୍ୟପଥେ ॥
ଦେବତାମାନେ ଦେଖିଣ ପୁଷ୍ପ ବୃଷ୍ଟିକଲେ ।
ଆଶ୍ୱାସନା ଦେଇ ତାଙ୍କୁ ବହୁ ପ୍ରଶଂସିଲେ ॥
ଧନ୍ୟ ଧନ୍ୟ ମେଘବର୍ଣ୍ଣ ଘଟୋତ୍କଚ ସୁତ ।
ଧନ୍ୟ ତୋର ବଳବୀର୍ଯ୍ୟ ଧନ୍ୟ ତୋ ବୀରତ୍ୱ ॥
ଧନ୍ୟ ତୋର ଜନ୍ମଭୂମି ଧନ୍ୟ ଗର୍ଭଧାରୀ ।
ତୋର ଜନ୍ମ ସଫଳ ଯୁଧିଷ୍ଠି ଆଜ୍ଞାକାରୀ ॥
ତୁମ୍ଭର ଏ ଯଶ ତିନିପୁରରେ ହେଉ ଖ୍ୟାତ ।
ଆମ୍ଭର ଏହି କଲ୍ୟାଣ ଘଟୋତ୍କଚ ସୁତ ॥
ତୁମ୍ଭ ସାହାଯ୍ୟରେ ଯୁଧିଷ୍ଠିର ନରପତି ।
ଅଶ୍ୱମେଧ ଯଜ୍ଞକରି ପାପୁଁ ହେବେ ମୁକ୍ତ ॥
ପାଣ୍ଡୁର ପୁତ୍ରର ପୁତ୍ର ଅଟୁ ବୀରବର ।
ଯଜ୍ଞଅଶ୍ୱ ନେଇ ଯଶ ରଖିଲୁ କ୍ଷିତିର ॥

ସର୍ବଦେବ ମେଘବର୍ଣ୍ଣ ଏମନ୍ତ କହିଣ ।
ଚଳିଲେ ଅମରପୁରେ ଯେଥା ଯେଥା ସ୍ଥାନ ॥
ଏଣେ ମେଘବର୍ଣ୍ଣ ଶୀଘ୍ର ଗମନ କରିଲେ ।
ବୃଷକେତୁ ଭୀମଙ୍କର ନିକଟେ ମିଳିଲେ ॥
ଶୂନ୍ୟରେ ଚଳିଲେ ବୀର ଅଶ୍ୱ ସଙ୍ଗେ ନେଇ ।
ବୃଷକେତୁ ଭୀମପାଶେ ପ୍ରବେଶିଲେ ଯାଇ ॥
ଅଶ୍ୱ ଦେଖି ଆନନ୍ଦିତ ହେଲେ ଦୁଇ ବୀର ।
ଜୟ ଶଙ୍ଖ ବଜାଇଲେ ପର୍ବତ ଉପର ॥
ଏଥୁଅନ୍ତେ ଅଶ୍ୱ ଦେଖି ସର୍ବ ସୈନ୍ୟଗଣ ।
ନେଲା ନେଲା ବୋଲି ଗୋଳ କଲେକ ବହନ
ଅଶ୍ୱନେବା ଗୋଳ ଯହୁଁ ରାଜାସୈନ୍ୟ ହେଲା
ଚର ଯାଇ ନୃପତିର ଆଗେ ଜଣାଇଲା ॥
ଭୋ ଦେବ ପ୍ରତାପୀ ଯୁବନାଶ୍ୱ ନୃପବର ।
କରଯୋଡ଼ି ଜଣାଉଛି ଶୁଣ ମୋ ଉତ୍ତର ॥
ସର୍ବଙ୍କର ଯାଗ ଅଶ୍ୱ ଘେନିଣ ସଙ୍ଗରେ ।
ପୁଷ୍କରିଣୀକୁ ଗମନ୍ତି ମହା ଗହଣରେ ॥
ଏହି ସମୟରେ କେହି ମାୟା ଉଆଇଲା ।
ଆକାଶରେ ମହାମେଘ ପ୍ରାୟକ ହୋଇଲା ॥
ଅତିଶୟ ପବନ ବହିଲା ଖରତର ।
ବୃଷ୍ଟି ସହିତରେ ବରଷିଲାକ ପଥର ॥
ମାୟାବଳେ ସମସ୍ତ ସୈନ୍ୟଙ୍କୁ କଲା ମୋହ ।
ଶୂନ୍ୟେ ଠେକି ନେଇଗଲା ଆମ୍ଭ ଯଜ୍ଞହୟ ॥
ଯେହ୍ନେ କଅଁଳା ବାଛୁରୀ ଠେକିନିଅନ୍ତି ନରେ
ସେହିପରି ଯଜ୍ଞଅଶ୍ୱ ନେଲା ନିର୍ବିଘ୍ନରେ ।
ଆମ ସମସ୍ତଙ୍କ ଆଗେ ଅଶ୍ୱ ନେଲା ହରି ॥
ଏଥିକି ବିଚାର କର ଦେବ ଦଣ୍ଡଧାରୀ ।
ଦେବତା ଗନ୍ଧର୍ବ କିବା ନର ବା ଅସୁର ।
ମାୟା କଲା ଆମ୍ଭେ ନ ଚିହ୍ନିଲୁ ରୂପ ତାର ॥
ଯୁବନାଶ୍ୱ ସୈନ୍ୟଠାରୁ ଏମନ୍ତ ଶୁଣିଲେ ।
ଅଶ୍ୱ ଗୁଣି ଗୁଣି ସେହୁ ମୂର୍ଚ୍ଛାଗତ ହେଲେ ॥
ମୋହ ତେଜି ଅଶ୍ୱପାଇଁ କଲେକ କାରୁଣ୍ୟ ।
ସୁରଥ ନନ୍ଦନକୁ ଗାଇଲେ ତତକ୍ଷଣ ॥
ମନ୍ତ୍ରୀ ସହ ଯୋଦ୍ଧାମାନେ ମିଳିଲେ ସତ୍ୱର ।
ଅଶ୍ୱ ହରି ନେବା କଥା କହେ ନରବର ॥
ଯୋଦ୍ଧାମାନେ ଶୁଣି ତହୁଁ ଚମକି ଉଠିଲେ ।
ଏମନ୍ତ ବୃତ୍ତାନ୍ତ କେହୁ କଲା ଆମ୍ଭ ପୁରେ ॥

ତାହାର ବା ମୃତ୍ୟୁ ପଥ କହାଇଛି ଏଥି ।
ସୁର ବା ଅସୁର ହେଲେ ନ ଯିବ ବରତ ॥
ଯେବେ ଜନୁପତି ଆସି ଏହା କରିଥିବ ।
ନିଷ୍ଟେ ଏସ ଅମ୍ଭର ହସ୍ତୁ ବରତ ନ ଯିବ ॥
ଇନ୍ଦ୍ର ଆଦି ଦିଗପାଳ ହୋଇଥିଲେ ପୁଣି ।
ସମ୍ମୁଖ ସମରେ ଅମ୍ଭ ଆଗେ ଦେବେ ପ୍ରାଣ ॥
ଏଥିକି ଚିନ୍ତା ନ କର ଦେବ ନୃପବର ।
ଏଥୁ ନେଇ କାହିଁ ବା ରଖିବ ଅଶ୍ୱବର ॥
ତିନି ଭୁବନରେ କାହିଁ ରଖି ନ ପାରିବ ।
ଅଶ୍ୱ ନେବା ଯୋଗ୍ୟ ତାର ମରଣ ହୋଇବ ॥
ଏହିପରି ପ୍ରତିଜ୍ଞା କରନ୍ତେ ଜଣେ ଜଣ ।
କରପଦ୍ମ ଯୋଡ଼ି କହେ ସୁରଥ ନନ୍ଦନ ॥
ହେ ତାତ କଲ୍ୟାଣ କର ଆଜ୍ଞା ଦିଅ ମୋତେ ।
ଅଶ୍ୱ ଚୋରକୁ ମୁଁ ବାନ୍ଧି ଆଣିବି ତୁରିତେ ॥
ସର୍ବବୀରେ ନୃପତିଙ୍କୁ ବୋଲନ୍ତି ବଚନ ।
ଶୀଘ୍ରେ ଆଜ୍ଞା ଦିଅ ବିଳମ୍ବେ କି ପ୍ରୟୋଜନ ॥
ଅମ୍ଭ ଅଶ୍ୱ ନେଇ କାହିଁ ରଖିଛି ସେ ଚୋର ।
ସୈନ୍ୟ ମଧ୍ୟୁ ଅଶ୍ୱ ନେଲା ଏଡ଼େ ଗର୍ବ ତାର
ଆଜ ଜନୁପତି ତାର ପାଞ୍ଜି ପୋଛିଲାଣି ।
କାଲି କାନ୍ଦୁଥିବେ ତାର ଜନନୀ ଘରଣୀ ॥
ବୀର ଗର୍ବବାଣୀ ଶୁଣି ନୃପତି ବୋଲନ୍ତି ।
ଅଶ୍ୱ ହରିନେଲା ଶୂନ୍ୟେ କେ ଦେଖି ନାହାନ୍ତି
ସୈନ୍ୟ ମଧ୍ୟୁ ଅଶ୍ୱ ନେଲା ନୁହେ ସେ ସାମାନ୍ୟ
ହେଲା' ଯୁଦ୍ଧ ନ କରିବ ତାହା ସଙ୍ଗତେଣ ॥
ସୈନ୍ୟ ସାମନ୍ତ ଘେନିଣ ବେଗେ ସର୍ବେ ଯାଅ
ଯାଗ ଅଶ୍ୱକୁ ଆଣିଣ ମୋର ପାଶେ ଦିଅ ॥
ଶୁଣି ସୁରଥ ନନ୍ଦନ ସୈନ୍ୟଗଣ ସାଜି ।
ବୋଲେ ରଥ ଗଜ ସାଜ ଯୁଦ୍ଧେ ଯିବି ମୁହିଁ ॥
ସୈନ୍ୟମାନେ ସଜ ହୋଇ ରଥ ସଜ କଲେ ।
ଯୁବରାଜ ସୁରଥ ତହିଁରେ ବିଜେ ହେଲେ ॥
ପିତାଙ୍କୁ ପ୍ରଣାମ କରି ଯୋଦ୍ଧାମାନେ ଘେନି
ଯୁଦ୍ଧେ ଚଳନ୍ତେଣ କମ୍ପି ଅଛଇ ମେଦିନୀ ॥
ବାଦ୍ୟର ନାଦରେ କମ୍ପୁ ଅଛି ସ୍ୱର୍ଗପୁର ।
ବୀରଙ୍କ କୁହାଟ ବଜ୍ର ଜିଣି ଭୟଙ୍କର ॥
ନାନା ଅସ୍ତ୍ର ଶସ୍ତ୍ରମାନ କରେ ଛନ୍ତି ଧରି ।
ମେଘବର୍ଣ୍ଣଙ୍କୁ ସମ୍ମୁଖେ ଦେଖି କୋପଭର ॥

ରେରେ ଚୋର କରି ଶର ବର୍ଷା କଲେ ତହିଁ ।
ମେଘବର୍ଣ୍ଣଙ୍କୁ ଯିବାର ପଥ ନ ଦିଶଇ ॥
ଆରେ ଚୋର ଅଶ୍ୱ ଘେନି ଯିବୁ କେଉଁ ଆଡ଼ ।
ଏହି ହାବୁଡ଼େ କି ଶଶା ପଡ଼ିଲେ ବର୍ତ୍ତନ୍ତି ॥
ମେଘବର୍ଣ୍ଣ ଶୁଣି କଟୁ ବାଣୀ ପୁଣି କହେ ।
ଆଜ ଯମପୁର ତୁମ୍ଭେ ଦେଖିବ ସଭିହେଁ ॥
ତୁମ୍ଭମାନଙ୍କର କାଳ ମୋ ହାତେ ପୂରିବ ।
ଦେଖ ମୋର ଏହି ଧନୁ ହସ୍ତେ ଯେବେ ଥିବ ॥
ଏମନ୍ତ କହିଣ ମେଘବର୍ଣ୍ଣ କୋପ ହୋଇ ।
ଧନୁରେ ପୂରାଇ ଶର ମନ୍ତ୍ରିଣ ବିନ୍ଧଇ ॥
ମେଘବର୍ଣ୍ଣ ଶରେ ଚୋର ବୀର କ୍ଷୟ ଗଲେ ।
କଦଳୀବନ ପବନେ ଭାଙ୍ଗେ ଯେ ପ୍ରକାରେ ॥
ଏ ଚୋର ବୀରେ ପୂର୍ବର ଶାପେ ଜନ୍ମିଥିଲେ ।
ମେଘବର୍ଣ୍ଣ ହସ୍ତେ ମରି ସ୍ୱର୍ଗପୁରେ ଗଲେ ॥
ଆଉ ସୈନ୍ୟ ସେନା ଆସି ମିଳିଲେ ବହୁତ ।
ମେଘବର୍ଣ୍ଣ ସଙ୍ଗେ ଯୁଦ୍ଧ କଲେ ଅପ୍ରମିତ ॥
ପ୍ରତିଜ୍ଞା କରିଣ ମେଘବର୍ଣ୍ଣଙ୍କୁ କହନ୍ତି ।
ଆଜ ଜୀବନର ଆଶା ଛାଡ଼ ମୂଢ଼ମତି ॥
କେଉଁ ବାପବଳେ ରାଜା ଅଶ୍ୱ ତୁ ହରିଲୁ ।
ଅମ୍ଭ ଆଗେ କାହିଁ ଯିବୁ ନିଶ୍ଚେ ନାଶଗଲୁ ॥
ଏମନ୍ତ କହିଣ ସର୍ବେ ଶର ବୃଷ୍ଟି କଲେ ।
ମେଘବର୍ଣ୍ଣ ଯିବା ପଥ ସର୍ବେ ନିରୋଧିଲେ ॥
କେ ବୋଲେ ଏହାକୁ ଧର କେହୁ ବୋଲେ ମାର
କେହୁ ବୋଲେ ବାନ୍ଧି ନେବା ରାଜାର ଛାମୁର ॥
ଏହିପରି ସବୁ ସୈନ୍ୟମାନେ କହୁଛନ୍ତି ।
ଶୁଣି ଶୁଣି ମେଘବର୍ଣ୍ଣ ହେଲେ କୋପମୂର୍ତ୍ତି ॥
ଶ୍ରୀକୃଷ୍ଣଙ୍କୁ ମନ ମଧ୍ୟେ ଚିନ୍ତି ବୀରମଣି ।
ମହା ପ୍ରଚଣ୍ଡ ରୂପ କେ ପ୍ରକାଶିଲେ ପୁଣି ॥
ଧନୁରେ ପୂରାଇ ତୀକ୍ଷ୍ଣ ଶର ସେ ବିନ୍ଧିଲେ ।
ସକଳ ସୈନ୍ୟମାନଙ୍କୁ ପ୍ରାଣେ ବିନାଶିଲେ ॥
ଏଣେ ପର୍ବତ ଉପରେ କର୍ଣ୍ଣଙ୍କର ବାଳ ।
ମେଘବର୍ଣ୍ଣ ଯୁଦ୍ଧରୀତି ଦେଖିଣ ସକଳ ॥
ଭୀମର ଆଗରେ କର ଯୋଡ଼ିଣ କହନ୍ତି ।
ଅସମ୍ଭବ ଯୁଦ୍ଧ କରେ ଆପଣଙ୍କ ନାତି ॥
ରାଜାର ସମସ୍ତ ସୈନ୍ୟ ଏକା ବିନାଶିଲା ।
ପ୍ରଚଣ୍ଡ ମୂର୍ତ୍ତି ଧରିଣ ଅଶ୍ୱକୁ ହରିଲା ॥

ଆଜ କେହୁ ବୀର ଏହା କରି ନ ପାରନ୍ତା ।
ଯାହା ମୁଁ ଦେଖିଲି ମେଘବର୍ଣ୍ଣ ବଳବନ୍ତା ॥
ଏହାପରେ କହୁଁ କହୁଁ ଭୀମଙ୍କ ଅଗ୍ରତେ ।
ମେଘବର୍ଣ୍ଣ ଜୟକରି ମିଳିଲେ ତୁରିତେ ॥
ଭୀମଙ୍କୁ ପ୍ରଣାମ କରି ବୋଲନ୍ତି ବଚନ ।
ତବ ଦୟାରେ ନାଶିଲି ରାଜାଙ୍କର ସୈନ୍ୟ ॥
ଶ୍ରୀକୃଷ୍ଣ କୃପାରୁ ଯାଗ ଅଶ୍ୱ ମୁଁ ଆଣିଲି ।
ଭୀମଦେବ ତୁମ୍ଭ ପାଖରେ ତାକୁ ସମର୍ପିଲି ॥
ରଖ ଏବେ ଯାଗ ଅଶ୍ୱ ଯତ୍ନେ ପିତାମହ ।
ସୈନ୍ୟ ଆସନ୍ତି ସଂଗ୍ରାମ କରିବେ ନିଶ୍ଚୟ ॥
ସୈନ୍ୟ ନାଶ ଦେଖିଣ ସୁରଥ ବୀରମଣି ।
ସୈନ୍ୟସହ ଗିରିପରେ ପ୍ରବେଶ ତକ୍ଷଣି ॥
ମହାକୋପଭରେ ରାଜା ସୈନ୍ୟ ଗିରିପରେ ।
ମିଳିଗଲେ କଥା କହୁଁ କହୁଁ ସେ ସତ୍ୱରେ ॥
ଦେଖି ବୃଷକେତୁ ବୀର ଭୀମସେନେ କହି ।
ମୋତେ ଏବେ ଆଜ୍ଞା ଦିଅ ପବନ ତନୟି ॥
ମେଘବର୍ଣ୍ଣ ବହୁ ଯୁଦ୍ଧ କରି ଆସିଅଛି ।
ବିଶ୍ରାମ କରନ୍ତୁ ମୁହିଁ ଯୁଦ୍ଧକୁ ଯାଉଛି ॥
ବୃଷକେତୁ ବଚନରେ ଭୀମ ଆଜ୍ଞା ଦେଲେ ।
ପ୍ରଣାମ କରିଣ ବୃଷକେତୁ ଚଳିଗଲେ ॥
ଧନୁଶର ଧରି ଯୁଦ୍ଧେ ଚଳିଲେକ ବୀର ।
ନିର୍ଭୟେ ଗମଇ ଯେହ୍ନେ ସିଂହ ବନସ୍ତର ॥
ପାଦଗତ କରିଣ ଚଳଇ କର୍ଣ୍ଣସୁତ ।
ସୈନ୍ୟ ମଧ୍ୟରେ ପ୍ରବେଶ ହୋଇଲା ତୁରିତ ॥
ଦୈତ୍ୟ ଯୁଦ୍ଧେ ସଦାଶିବ ଯେପରି ପ୍ରବେଶ ।
ତେହ୍ନେସୈନ୍ୟେପ୍ରବେଶ ହୋଇଲା କର୍ଣ୍ଣଶିଷ୍ୟ
ଯୋଦ୍ଧାମାନଙ୍କୁ ଗୃହିଁଣ ବଚନ ବୋଲଇ ।
ପ୍ରତେ ନୁହେ ମୋର ଶବ୍ଦ ତୁମ୍ଭେ ଯିବ ଜାଇଁ ॥
ଜାୟା ଜନନୀମାନଙ୍କୁ କହ କରି ଆସ ।
ପୁଅ ଝିଅ ଥିଲେ ସମର୍ପି ଯେ ତାଙ୍କ ପାଶ ॥
ଆଜ ତାଙ୍କୁ ଦେଖି ନ ପାରିବ ତୁମ୍ଭେମାନେ ।
ନିଶ୍ଚେ ସର୍ବେ ନାଶ ଯିବ ମୋର ଶରମୁନେ ॥
ସର୍ବ ଯୋଦ୍ଧାମାନେ ବୃଷକେତୁ କଥା ଶୁଣି ।
ରାଗେ ଜର୍ଜରିତ ହୋଇ ବୋଲୁଛନ୍ତି ବାଣୀ ॥
ଟୋକାଖଣ୍ଡ କେତେ ନିର୍ଭୟରେ କହୁ କଥା
ତୋ କଥା ଶୁଣିଣ ହାସ୍ୟ ଉପୁଜଇ ଯଥା ॥

କେଉଁ ଦେଶେ ଘର ତୋର କାହାର ନନ୍ଦନ
ଏକାକୀ ହୋଇଣ କହୁ ନିର୍ଭୟ ବଚନ ॥
ଲାଜଥିଲେ ଏପରି କହନ୍ତୁ ନାହିଁ ବୀର ।
ଆଜଠାରୁ କୁଳ ବୁଡ଼ିଯିବ ତୋ ପିତାର ॥
ଶୁଣି ବୃଷକେତୁ ବୋଲେ ମୋର ପିତା କର୍ଣ୍ଣ
ସୂର୍ଯ୍ୟସୁତ ଅଟେ ସେହୁ ଅଙ୍ଗର ରାଜନ ॥
ମୁହିଁ ଯୁଧିଷ୍ଠି ଦେବଙ୍କ ଆଦେଶେ ଆସିଛି ।
ଅଶ୍ୱ ନେଲେ ଯଜ୍ଞ କରିବ ସେ କୁନ୍ତୀବତ୍ସ ॥
ଏମନ୍ତ କହିଣ ବୀର କୋପମୂର୍ତ୍ତି ହେଲା ।
ସୈନ୍ୟଗଣେ ଗୃହିଁ ବାଣ ବରଷଣ କଲା ॥
ଯୁବନାଶ୍ୱ ସୈନ୍ୟଗଣେ କୋପେ ଛନ୍ଦେ ଶର ।
ଶ୍ରାବଣ ମାସରେ ଯେହ୍ନେ ବରଷାର ଧାର ॥
ଶତ ଶତ ସୈନ୍ୟ ମିଳି ବାନ୍ଧିଲେ ନାରାଚ ।
ଏକାକୀ କାଟଇ ତାହା କର୍ଣ୍ଣର ଆତ୍ମଜ ॥
ମୁହୂର୍ତ୍ତିକେ ଲକ୍ଷ ଲକ୍ଷ ବାଣ ବୀର ପେଶେ ।
ଅନେକ ସୈନ୍ୟ ମାଇଲା ବୃଷକେତୁ ରୋଷେ
ବଡ଼ ବଡ଼ ଯୋଦ୍ଧାମାନେ ପଡ଼ିଲେ ସମରେ ।
କେତେ ଗଜ କେତେଯୋଦ୍ଧା ତହିଁ କ୍ଷୟଗଲେ
ସୈନ୍ୟ ହତ ଦେଖି କୋପେ ରାଜାର ନନ୍ଦନ
ତୀକ୍ଷ୍ଣ ତୀକ୍ଷ୍ଣ ଶରମାନ ତ୍ରାହାରେ ବାଛିଣ ॥
ବେନି ମତ୍ତ ଗଜ କିବା ଯୁଝନ୍ତି ସେ ବାରେ ।
କେହୁ କାହାକୁ ନିଜନ ନୁହନ୍ତି ସମରେ ॥
ଦେଖିକରି ଦୂତ ବେଗେ ଭୟ କରିଗଲେ ।
ପଳାଇ ଯାଇ ରାଜାର ଆଗରେ କହିଲେ ॥
ପାତକ ପଳାଏ ଯେହ୍ନେ କୃଷ୍ଣ ଦରଶନେ ।
ସେହିରୂପେ ଭୟକଲେ ରାଜା ସୈନ୍ୟମାନେ
ଦୂତ କହେ ଭଦ୍ରାବତୀ ନାୟକ ହୋ ଶୁଣ ।
ତୁମ୍ଭ ସବୁ ସୈନ୍ୟ ନାଶ କଲା ଏକ ଜଣ ॥
ସୁରଥ ସଙ୍ଗତେ ସେହୁ ସମର କରଇ ।
ସୈନ୍ୟ ନାଶହୋନ୍ତେ ଦେବ ଆସିଲି ମୁଁ କହି
ଭାଗ୍ୟକ୍ରମେ ପଳାଇ ଅଇଲି ତୁମ୍ଭ ସ୍ଥାନେ ।
ଆମ୍ଭ ଯାଗ ଅଶ୍ୱ ନେଲା ସେ ନିର୍ଭୟ ମନେ ॥
ମହା ମହା ଯୋଦ୍ଧାମାନେ ଯୁଦ୍ଧରେ ପଡ଼ିଲେ
ଶୁଣି ରାଜା କୋପଭରେ ଥରହର ହେଲେ ॥
ବୋଲନ୍ତିହୋକେତେସୈନ୍ୟଥିଲେକତାହାର
ଭୟ ନ କରିଣ ସର୍ବ କହ ମୋ ଆଗର ॥

ଏକାକୀ ମୋହର ଏତେ ସୈନ୍ୟର ମଧ୍ୟରୁ ।
କପରି ସୈନ୍ୟ ବିନାଶି ନେଲ ସେହିବାରୁ ॥
ସଂଶୟ ନ କରି ମୋତେ କହ ଆରେ ଶୂର ।
କେତେ ସୈନ୍ୟ ସେନାଥିଲେ ସଙ୍ଗତେ ତାହାର
ଭୀମଦେବ ରାଜନ ମୋର କଥା ଏବେ ଶୁଣ ।
ସୈନ୍ୟ ଯୋଦ୍ଧା ନାହିଁ ସେ ଅଟନ୍ତି ତିନିଜଣ
ପ୍ରଥମେ ଆସିଣ ଜଣେ ଅଶ୍ୱ ନେଲ ହରି ।
ଅଉ ଜଣେ ଆସି ସୈନ୍ୟମାନଙ୍କୁ ସଂହାରି ॥
ଅଉ ଜଣେ ପର୍ବତ ଶିଖରେ ଅଛି ବସି ।
ଏଥିକି ବିଚାର କର ଦେବ ନୃପମଣି ॥
ଶୁଣି ଯୁବନାଶ୍ୱ ରାଜା ବିଚାରେ ମନରେ ।
ମୋ ସଙ୍ଗେ ବାଦୀ ହେବାକୁ ନାହାନ୍ତି ମହିରେ
ପୃଥିବୀରେ ଯେତେକ ଅଛନ୍ତି ନରପତି ।
ମୋର ନାମ ଶୁଣିଲେ ସେ ଭୟ କରୁଥାନ୍ତି ॥
ଏହି ତିନିଜଣ ବା ହୋଇବେ ତିନି ଦେବ ।
ମନେ ପ୍ରତେ ହୁଏ ବ୍ରହ୍ମା ବିଷ୍ଣୁ ସଦାଶିବ ॥
ମନୁଷ୍ୟ ମାନଙ୍କ ଏତେ ବଳ କାହିଁ ହେବ ।
କାଣୁ କାଣୁ ମୋର ଯାଗ ଅଶ୍ୱ ହରିନେବ ॥
ମନୁଷ୍ୟ ନ ହୋଇ ଯେ ଦେବତା ହୋଇଥିବ
ଯୁଦ୍ଧଯଜ୍ଞ ମୋହଠାରୁ ଅଜ୍ଞ ସେ ପାଇବ ॥
ତେବେ ସେ ସର୍ବ ବିପଦ ଭୁଞ୍ଜିବ ନିଶ୍ଚୟ ।
ଜୈମିନି ବୋଲନ୍ତି ଶୁଣ ରାଜା ଜନ୍ମେଜୟ ॥
ଏହା ଶୁଣି ଯୌବନାଶ୍ୱ ସୈନ୍ୟ ବଳ ରାଇ ।
ରଥ ସାଜ ବୋଲି ସେମାନଙ୍କୁ ଅଜ୍ଞାଦେଇ ॥
ମହାମହା ବୀରମାନେ ସଜ ହୋଇ ଅସ ।
ନିକେ ମୁଁ ଯୁଦ୍ଧକୁ ଯାଇ ଉଦ୍ଧାରିବି ଅଶ୍ୱ ॥
ରାଜା ଅଜ୍ଞା ପାଇ ସେନାପତି ହେଲେ ସଜ ।
ସୈନ୍ୟ ସାମନ୍ତ ଇତ୍ୟାଦି ରଥ ଅଶ୍ୱ ଗଜ ॥
ମହା ସମାରୋହେ ବିଜେ ଯୁବନାଶ୍ୱ ରାଜା ।
ବାଦ୍ୟନାଦେ ମହୀ କମ୍ପେ ରଥେ ଉଡ଼େ ଧ୍ୱଜା
ଯାଉଁ ଯାଉଁ ପର୍ବତରେ ଭୀମଙ୍କୁ ଦେଖିଲେ ।
ଭୟଙ୍କର ରୂପ ଦେଖି ମନେ ବିଚାରିଲେ ॥
ଯମଦେବତା କି ଏଥି ଅସିଛି ଓହ୍ଲାଇ ।
ପାଣ୍ଡୁ ପୁତ୍ର ଭୀମ କିବା କୁନ୍ତୀଙ୍କ ତନୟ ॥
ଯୁଦ୍ଧସ୍ଥାନକୁ ଅନାଇ ଦେଲେ ନରପତି ।
ଦେଖିଲେ ଯୁଦ୍ଧ କରଇ ବୃଷକେତୁ ରଥୀ ॥

ଅତୁଳ୍ୟ ତା ଯୋଦ୍ଧାପଣ ଅସୀମ ସାହସ ।
ରଣ ବିଚକ୍ଷଣ ରୂପ କନ୍ଦର୍ପ ସଦୃଶ ॥
ଦେଖି ମନେ ପରଶଂସା କରିଲେ ନୃପତି ।
ଧନ୍ୟରେ ବାଳକ ତୋର ଧନ୍ୟ ଶିକ୍ଷାପଦ୍ଧତି
ବାଳକ ସ୍ୱଭାବ ଜାଣ ଭୟାକ୍ତ ଅଟଇ ।
ଧଳାସ୍ତ୍ର ଲୋକ ଦେଖିଲେ ଲୁଚଇ ସେ ଯାଇ ॥
ଏହାଠାରେ ଦେଖାନାହିଁ ଏହିଗୁଣ ତିଳେ ।
ଅମ୍ଭଙ୍କୁ ଦେଖିଣ ଯୁଦ୍ଧସ୍ଥାନରୁ ନ ଟଳେ ॥
ବୀରପଣେ ନିର୍ଭୟ ଭାବରେ ଯୁଝୁଅଛି ।
ପ୍ରକୃତ କ୍ଷତ୍ରିୟ ରକ୍ତ ପ୍ରମାଣ ପାଉଛି ॥
ଯେଉଁପ୍ରେ ପଶୁରାଜ ପଶୁମଧ୍ୟେ ନିର୍ଭୟରେ ।
ଇଚ୍ଛା ସୁଖେ ଦର୍ପକରି ବିଚରଣ କରେ ॥
ସେହି ପରକାରେ ବୀର କେଶରୀ ହୋଇଣ
ଗର୍ଜନରେ କମ୍ପାଉଛି ଏ ତିନି ଭୁବନ ॥
ମରଣକୁ ମନେ ଭୟ କିଛିମାତ୍ର ନାହିଁ ।
ଯୋଗୀ ତପ କଲା ପ୍ରାୟ ସମର କରଇ ॥
ଧନ୍ୟ ତୁମ୍ଭେ କ୍ଷତ୍ରୀ ପୁତ୍ର ତୁମ୍ଭ ଯୋଦ୍ଧାପଣ ।
ଧରଣୀ ତୁମ୍ଭର ଯଶେ ହେଉ ପରିପୂର୍ଣ୍ଣ ॥
ଏହିପରି ଯୋଦ୍ଧାପଣ ଦେଖି ନାହିଁ ନେତ୍ରେ
ଏମନ୍ତ କହିଣ ଯୁବନାଶ୍ୱ ନରନାଥେ ॥
ହର୍ଷ ଚିତ୍ତେ ଯୁଦ୍ଧ କରିବାକୁ ହେଲେ ସଜ ।
ଯୁଦ୍ଧ ନ କଲେ ଯେ ହେବ ଗୁରୁତର ଲାଜ ॥
ଯୁବନାଶ୍ୱ ଯୁଦ୍ଧ ସଜ୍ଜା ଦେଖି ଭୀମସେନ ।
ବଜ୍ରନାଦୁ ଜିଣି ତହିଁ କଲେକ ଗର୍ଜନ ॥
ଯୁଦ୍ଧକ୍ଷେତ୍ର ବୃଷକେତୁ କରିବାକୁ କ୍ଷାନ୍ତ ।
ବହନ ଚଳଲେ ଭୀମସେନ ବଳବନ୍ତ ॥
ଯମ ହସ୍ତେ କାଳଦଣ୍ଡ ପ୍ରାୟ ଶୋହେ ଗଦା ।
ଚାଲିଗଲେ ପୃଥ୍ୱୀଦେବୀ ଟଳମଳ ସଦା ॥
ଗଦା ଘେନି ଭୀମସେନ ମସ୍ତକ ଉପରେ ।
ଅଗଭର ହେଲେ ଭୁଲାଇଣ ଚକ୍ରାକାରେ ॥
ଶତ୍ରୁ ରକତରେ ଗଦା ଧୁଆଇବା ପାଇଁ ।
ଅତ୍ୟନ୍ତ ଆନନ୍ଦ ହେଲେ କୁନ୍ତୀଙ୍କ ତନୟି ॥
ବୃଷକେତୁ ବୀର ଦେଖି କହେ ବିନୟରେ ।
ଏହି ନିବେଦନ ମହାଶୟ ଘେନ ଥରେ ॥
ତ୍ରିଭୁବନ ଯୋଦ୍ଧା ଯେବେ ହେବେ ଏକତ୍ରିତ
ମୋ ବିଚାରେ ତୁମ୍ଭ ଯୁଦ୍ଧ ନୁହଇ ଉଚିତ ॥

ଏ ସାମାନ୍ୟ ନର କଦାଁ ଅଥସ୍ତି ହେ ଦେବ ।
ମୁଁ ଥାଉଁଥିବାରୁ ମୋର ଶତ୍ରୁ କେହି ନ ବର୍ତ୍ତିବ ॥
ପଶୁରାଜ ସିଂହ ଯେବେ ଶୃଗାଳ ସଙ୍ଗରେ ।
ଯୁଦ୍ଧ କରି ଶୃଗାଳକୁ ସମୂଳରେ ମାରେ ॥
ତେବେ କି ସଂସାରେ ଖ୍ୟାତିହୋଇବ ତାହାର
ଅପଖ୍ୟାତି ନିନ୍ଦା ଯେ ଘୋଷିବ ନିରନ୍ତର ॥
ସାମାନ୍ୟ ଯୋଦ୍ଧା ମଧ୍ୟରେ ଜୟ ପରାଜୟ ।
ମରିଲେ ମାରିଲେ ତାର ତହିଁ ନାହିଁ ଭୟ ॥
ଯାଅ ଦେବ ପର୍ବତ ଶିଖରେ ଥାଅ ରହି ।
ତୁମ୍ଭ ଯୁଦ୍ଧବାରେ ଘୋର କ୍ଳେଶ ଲଭେ ମହୀ
ସାମାନ୍ୟ ଭାବ ବହୁଛ ଭୀମ ନାମ ଧରି ।
ମୋର ଏହି ଇଚ୍ଛା ଦେବ ଶୁଣ କର୍ଣ୍ଣ ଡେରି ॥
ଏହି ସବୁ ଯେଉଁ ସୈନ୍ୟ ଦେଖୁଛ ଆଗରେ ।
ସୁରଥ ସହି ତାହାଙ୍କୁ ତୃଣ ମନେ କରେ ॥
ଅଶ୍ୱ ଆଣିବା ସମୟେ ମେଘବର୍ଣ୍ଣ ବୀର ।
ଏଥୁ ବଳି ସୈନ୍ୟ ଥିଲେ କଲା ନାରଖାର ॥
ଏବେ ଏମାନେ ଆମ୍ଭଙ୍କୁ ବେଢ଼ିଣ ଅଛନ୍ତି ।
ଯୁଦ୍ଧ କରିବା ଉଚିତ ଆମ୍ଭ ବେନି ପ୍ରତି ॥
ଆମ୍ଭର ଏ ନିବେଦନ ଘେନି ବୀରବର ।
ଅଜ ଥାଇ ଯୁଦ୍ଧ ଦେଖ ପର୍ବତ ଉପର ॥
ଯୁଦ୍ଧ କରିବାକୁ ଦେବ ନ ବଳାଅ ମନ ।
କରଯୋଡ଼ି କହୁଛି ଘେନି ଏ ନିବେଦନ ॥
ଆପଣଙ୍କ ତୁଳନାରେ ଏ ଚୁଚୁନ୍ଦ୍ରା ବତ ।
ଏମାନଙ୍କ ସଙ୍ଗେ ଯୁଦ୍ଧ ନୁହଇ ଉଚିତ ॥
ଚୁଚୁନ୍ଦ୍ରାକୁ ମାଇଲେ ଯେ ହାତ ଗନ୍ଧ ହୁଏ ।
ଏହା ଋଷି ବାକ୍ୟ ଅଛି ଶାସ୍ତ୍ରରେ ନିର୍ଣ୍ଣୟେ ॥
ଅଜ ଏହି ଯୁଦ୍ଧକୁ ଦେଖନ୍ତୁ ବୀରମଣି ।
ଯଶ ରହିଥିବ କାଳେ କାଳେ ଏ ଧରଣୀ ॥
ତୁମ୍ଭର ପ୍ରସାଦେ ଯେବେ ସୈନ୍ୟ ମୁଁ ମାରିବି
ଏ ଯଶ ତୁମ୍ଭର ନୁହେ ଦେବ ଲୁହ ଭାବି ॥
ଆମ୍ଭର ଏ ମନୋଗତ ଭାବ ଶୁଣ ବୀର ।
ପିତାଠାରୁ ପୁତ୍ର ଯଦି ହୁଅଇ ଯୋଗ୍ୟର ॥
ପୁତ୍ର କାର୍ଯ୍ୟେ ପିତାର ନ ଥାଏ ଅଭିମାନ ।
ଲୋକମାନଙ୍କରେ ବହୁ ଲଭଇ ସମ୍ମାନ ॥
ଏ ଯୁଦ୍ଧରେ ଯେବେ ମୋର ବିଜୟ ହୋଇବ
ଆପଣଙ୍କ ମନରେ କି ଆନନ୍ଦ ନୋହିବ ॥

ସ୍ୱର୍ଗପୁର କରି ବୀର ଆପଣା ଶକ୍ତିରେ ।
ନିଶ୍ଚିନ୍ତ ନୁହେଁ ଏ ଦେହ ଜାଣନ୍ତି ସକଳେ ॥
ନାରୀମାନଙ୍କ ସୌରଭ ପୁରୁଷ ଯୌବନ ।
ଅବର ଶରୀର ଅଧ ହେବ ଦିନେ ଲୀନ ॥
ବିବେଚନା କରି ଦେଖ କିଛି ସ୍ଥାୟୀ ନୁହେଁ
ପାଣି ଫୋଟକା ପରାୟେ ସର୍ବ ନାଶ ଯାଏ ॥
ଲକ୍ଷ୍ମୀଦେବୀଙ୍କ ପ୍ରସାଦେ ଧରଣୀର ଜନ ।
ସୁଖଭୋଗ କରନ୍ତି ହୁଅନ୍ତି ଭାଗ୍ୟବାନ ॥
ଚଞ୍ଚଳ ପ୍ରକୃତି ଯୋଗୁ ନାମ ଯେ ଚଞ୍ଚଳା ।
ନରଲୋକେ ପୂଜାରେ ସେ ହୁଅନ୍ତି ନିଶ୍ଚଳା ॥
ଯଶ ରଖିଥିବା ଜନ ସଂସାରେ ଅମର ।
ଜୀଇଁବା ମରିବା ଅଟେ ସମାନ ତାଙ୍କର ॥
ଏହା ଈଶ୍ୱରଙ୍କ ନୀତି ଏ ସଂସାରେ ଜାଣ ।
ଯଶଧର୍ମ ପାଇ ମୁକ୍ତି ଇଚ୍ଛେ ସାଧୁଜନ ॥
ଯଶଟି ପରମ ଧନ ସୁକବି କଣ୍ଠରେ ।
ଗାୟନ କରନ୍ତି କବି ହରଷ ଅନ୍ତରେ ॥
ଦେବଦାନବ ସମୁଦ୍ର ମନ୍ଥନର କାଳେ ।
ଅସୁରଙ୍କ ଦର୍ପଚୂର୍ଣ୍ଣେ ନିସ୍ତେଜ ହୋଇଲେ ॥
ଶ୍ରୀହରିଙ୍କ ତେଜେ ପୁଣି ମନ୍ଥିଲେ ସାଗର ।
ଯେପରି ଦଧି ହାଣ୍ଡିରେ ଚୁଅ ପରକାର ॥
ସେପରି ଏ ସୈନ୍ୟ ସାଗରକୁ ମୁଁ ମନ୍ଥିଲେ ।
ଆପଣଙ୍କ ଯଶ ଏଥି ନୋହିବକି ଭଲେ ॥
ନାରୀମାନଙ୍କର ଇଚ୍ଛା ପତି ପାଇବାକୁ ।
ସେହିପରି ଏହି ସୈନ୍ୟ ଗୃହାନ୍ତି ଆମ୍ଭଙ୍କୁ ॥
ସ୍ତ୍ରୀରୂପା ଯୁବନାଶ୍ୱ ରାଜା ସୈନ୍ୟଗଣ ।
ମୋ ତୀକ୍ଷ୍ଣଶର କନ୍ଦର୍ପ ଶର ହେବ ଜାଣ ॥
ଯେତେବେଳେ କାମଦେବ ପୁଷ୍ପଶର ମାରେ
ବିରହିଣୀ ହୋଇ ନାରୀ ସଙ୍ଗ ଇଚ୍ଛା କରେ ॥
ସ୍ୱାମୀସଙ୍ଗ ପାଇ ଯେଉଁ ପରି ହୁଏ ତୃପ୍ତ ।
ଯୁବନାଶ୍ୱ ସୈନ୍ୟହେବେ ମୋ ଶରେ ତେମନ୍ତ
ହେ ପାଣ୍ଡବ ବୀର ଦେଖ ସମ୍ମୁଖେ ଗୃହିଣୀ ॥
ସନ୍ତୋଷ କରିବ ଅଜ ଏମାନଙ୍କ ମନ ॥
ଯେତେବେଳେ ତୁମ୍ଭଙ୍କୁ ସେ ଦେଖିବେ ଆଗରେ
ମୁଖ ଫେରାଇ ଭାଜିବେ ଲଜ୍ଜିତ ଭାବରେ ॥
ଶ୍ୱଶୁରଙ୍କୁ ବୋହୂମାନେ ଲଜ୍ଜା ଯେ କରନ୍ତି ।
ଜନ ସାଧାରଣ ଠାରେ ଥାଏ ଏହି ରୀତି ॥

ଦେଖ ଏହି ସୈନ୍ୟବଧୂ ମୋର ଚରଣରେ
ତୁମ୍ଭେ ଥିବା ଯୋଗ୍ୟ ନତମୁଖ ପୃଥିବୀରେ ॥
ଲଜ୍ଜାଶୀଳା ନାରୀ ପ୍ରାୟେ କରିଛନ୍ତି ମୁଖ ।
ରହିଛନ୍ତି ଦେବ ଯୋଦ୍ଧା ସୈନ୍ୟଗଣ ଦେଖି ॥
ଏମାନଙ୍କର ମଳନ ହେବା ପରଯନ୍ତ ।
ଅପେକ୍ଷା କରିବା ମୋର ଅଟେ ଅନୁଚିତ ॥
ଶୁଣିକରି ଭୀମସେନ ହରଷେ ବୋଲନ୍ତି ।
ଯାଅ ବାବୁ ସୈନ୍ୟବଧୂ ନିକଟେ ଝଟିତ ॥
ମୋର ଏହି ବାକ୍ୟ ଶୁଣ ବତ୍ସ ବୀରମଣି ।
ଯେତେବେଳେ ଦେଖିବ ନୋହିବ କାମେ ଜାଣି
ସୈନ୍ୟବଧୂଏ କରିବେ ଯେବେ ପରାଜୟ ।
ନ ସହି ପାରିବି ବାବୁ ତାହା ମୁଁ ନିଶ୍ଚୟ ॥
ଦୂରେ ଥାଇ ଯେବେ ମୁହିଁ ଏପରି ଦେଖିବି ।
ଗଦା ବୁଲାଇଣ ମୁହିଁ ତତକାଳେ ଯିବି ॥
ବଧୂ ବୋଲି ମାନ୍ୟ ନ ରଖିବି ସେହି କାଳେ
ପ୍ରହାର କରିବି ଗଦା ଯାଇ ଅବହେଳେ ॥
ବାବୁ ବୃଷକେତୁ ବୀର ଶୁଣି ମନେ ଦେଇ ।
ସୈନ୍ୟ ବଧୂ ବଶ କରି ଯଶ ରଖ ମହୀ ॥
ଗୁରୁଜନ ବଧୂର ଦୁଷ୍କାମିପଣ ଦେଖି ।
ଦୂର କରିବାକୁ ତାହା ଇଚ୍ଛା ଯେ କରନ୍ତି ॥
ଗୁରୁଜନ ଏ ବିଷୟେ ଅବହେଳା କଲେ ।
ସଂସାର ମୁଖରେ ନିନ୍ଦା ପାଆନ୍ତି ସେ ଭଲେ ॥
ଅନେକ ଲୋକଙ୍କଠାରୁ ନିନ୍ଦା ସେହି ସହେ
ସ୍ତ୍ରୀର ଅନ୍ୟାୟରେ ଘର ଯେହ୍ନେ ନାଶଯାଏ ॥
ଅହେ ବୀରବର ବୁଝି ସୁଝି କାର୍ଯ୍ୟେ ଯାଅ ।
ତୁମ୍ଭେ ସର୍ବ ଜାଣ କିବା କହିବି ଉପାୟ ॥
ତୁମ୍ଭେ ପାଦଗାମୀ ହୋଇ କରିବ ସମର ।
ଯୁବନାଶ୍ୱ ସୈନ୍ୟ ସଂଖ୍ୟା ଅଟଇ ଅପାର ॥
ରଥ ଗଜ ଅଶ୍ୱପରେ କରି ଆରୋହଣ ।
ବାଣ ବରଷିବେ ସର୍ବେ ତୋତେ ଯେବେ ଜାଣ
ସେଥି ପାଇଁ ବାପଧନ ଏକାକୀ ତୁମ୍ଭଙ୍କୁ ।
ମନ କରୁ ନାହିଁ ପଠାଇବାକୁ ରଣକୁ ॥
ସୁଧୀର ରଣ ପଣ୍ଡିତ ବୃଷକେତୁ ବୀର ।
ବିନୋଦରେ ପ୍ରଣମିଣ ହୋଇଲେ ବାହାର ॥
କାମୀଜନ ଯେଉଁ ପରି ମଦ୍ୟ ପାନ କରେ ।
କୁଙ୍କୁମ ଗନ୍ଧଚନ୍ଦନ ଲେପଇ ଅଙ୍ଗରେ ॥

ସେପରି ବୀର ପୋଷାକ ପିନ୍ଧି ବୀରବର ।
ସୈନ୍ୟବଧୂ ନିକଟକୁ ଚଳିଲେ ସତ୍ୱର ॥
ନାଗର ଯେପରି ବହୁ ନାଗରୀଙ୍କି ପାଇ ।
ନାନା ରସକ୍ରୀଡ଼ା କରିବାରେ ଯେ ଭାବଇ ॥
ସେହିପରି ବୃଷକେତୁ ସୈନ୍ୟବଧୂ ଗୃହିଁ ।
ମତ୍ତ କରିବର ପରି ଗମେ କୋପ ବହି ॥
ବୃଷକେତୁ ଶରଘାତେ ହାହାକାର ସଇନେ ।
ଗୃହିଁ ଗୃହିଁ ଚଳିଗଲେ ଯମର ଭୁବନେ ॥
ତେବେ ବୃଷକେତୁ ରାଗ ନୋହିଲାକ ଶାନ୍ତ
ବାରମ୍ବାର ଶର ପେଶେ ହୋଇ ଉନମତ୍ତ ॥
ରଣସ୍ଥାନରେ ଦେଖିଲେ ବୃଷକେତୁ ବୀର ।
ବହୁତ ସୈନ୍ୟ ପଡ଼ିଲେ ଯୁବନାଶ୍ୱଙ୍କର ॥
ତେବେ ଯୁଦ୍ଧା ଯୁବନାଶ୍ୱ ସୈନ୍ୟ ନ ଢୁଞ୍ଚିଲେ
ବୃଷକେତୁଙ୍କୁ ମାରିବା ପାଇଁ ଚେଷ୍ଟାକଲେ ॥
ସୈନ୍ୟଙ୍କ ସାହସ ଦେଖି ବୃଷକେତୁ ଏଥି ।
ଭାବେ ହେଳାକଲେ ଯୁଦ୍ଧେ ନ ପାରିବି ଜିତ
ମତ୍ତସିଂହ ସମ ବୀର ରାଗେ ହେଲେ ପୂର୍ଣ୍ଣ ।
କର୍ଣ୍ଣ ପର୍ଯ୍ୟନ୍ତ ଓଟାରି ବିନ୍ଧିଲେକ ବାଣ ॥
ତୀକ୍ଷ୍ଣ ତୀକ୍ଷ୍ଣ ବାଣ ବାଛି ବିନ୍ଧେ କର୍ଣ୍ଣସୁତ
ସବୁ ସୈନ୍ୟମାନଙ୍କୁ କରିଲା ଅସ୍ତ ବ୍ୟସ୍ତ ॥
ବୃଷକେତୁ ଶରଘାତେ ସଇନ ସକଳେ ।
ଅତିଶୟ ଭୟକଲେ ମନର ମଧ୍ୟରେ ॥
ବୃଷକେତୁ ଆନନ୍ଦରେ ସିଂହନାଦ କରି ।
ସୈନ୍ୟ ମାରୁଅଛି ଯେହ୍ନେ ନିର୍ଭୟେ କେଶରୀ ॥
ଏହିପରି ଯୁଦ୍ଧ କରୁ ଅଛି କର୍ଣ୍ଣସୁତ ।
ଯୁବନାଶ୍ୱ ସୈନ୍ୟ କ୍ରମେ ହୋଇଲେ ପତିତ ॥
ଶ୍ରୀକୃଷ୍ଣ ଯେପରି ଗୋପେ ରାହାସ ସମୟେ ।
ହୋଇଥିଲେ ଗୋପୀ ଗୋଟିକେ କୃଷ୍ଣ ଗୋଟିଏ
ସେହିପରି ସୈନ୍ୟବୃନ୍ଦେ କର୍ଣ୍ଣଙ୍କ ନନ୍ଦନ ।
ଶରଜାଲେ ପୂର୍ଣ୍ଣକଲେ ସେହି ରଣସ୍ଥାନ ॥
ସୈନ୍ୟମାନେ ଏଣେତେଣେ ଭୟରେ ପଳାନ୍ତି
ବୃଷକେତୁ ବୀରବର ଗୋଡ଼ାଇ ମାରନ୍ତି ॥
ସୈନ୍ୟଙ୍କ ଦୁର୍ଦ୍ଦଶା ଦେଖି ଯୁବନାଶ୍ୱ ବୀର ।
ରଥ ଚଢ଼ି ବେଗେ ଯୁଦ୍ଧେ ହେଲେ ଅଗ୍ରସର ॥
ପ୍ରଦକ୍ଷିଣ ରଣସ୍ଥଳେ ବୋଇଲେ ବଚନ ।
ହେ ବାଳକ ଓଦେଇଅଛୁ ଏ ରଥକୁ ଢେନ ॥

ପାଦଗାମୀ ହୋଇ ଯୁଦ୍ଧ କରୁଅଛୁ ତୁହି ।
ମୁଁ ରଥରେ ଅଛି ଯୁଦ୍ଧ ଉଚିତ ନୁହଇ ॥
ପଦାତି ସହିତେ ରଥୀ ଯୁଦ୍ଧ ନ ଯୋଗାଇ
ଏଣୁ କରି ଏ ରଥ ଦେଉଛି ନିଅ ତୁହି ॥
ତୋର ସଙ୍ଗେ ଯୁଦ୍ଧକଲେ ମାନ୍ୟ ନ ରହିବ
ଗନ୍ଧବିନା କୁସୁମ କି ଶୋଭାଯୁକ୍ତ ହେବ ॥
ପରଦେଶୀ ବାଳକରେ ଅଟୁ ବୀର ତୁହି ।
ଚାଲି ଚାଲି ଆସି ଥିବୁ କ୍ଲାନ୍ତ ଥିବ ଦେହି ॥
ଏଠାରେ କଲୁଣି ତୁହି ବହୁତ ସମର ।
ଶରୀର ଅବଶ୍ୟ କ୍ଲାନ୍ତ ହେବଣି ତୋହର ॥
ମୁଁ ରଥରେ ଥିବି ତୁହି ରହିଥିବୁ ତଳ ।
ଉଚିତ ନୁହେ ଏପରି କରିବା ସମର ॥
କି ନାମ ତୋହର କେଉଁ ଗୋତ୍ରରେ ସମ୍ଭୂତ
କେଉଁ ଧର୍ମ କର୍ମ କରୁ କହ ତୁ ନିଶ୍ଚିତ ॥
କିଏ ଅଟେ ତୋର ପିତା ଘର କେଉଁଠାରେ
ଦିଅ ପରିଚୟ ଏବେ ମୋହର ଆଗରେ ॥
କି ନିମନ୍ତେ ଏଠାବକୁ କରିଲୁ ଗମନ ।
ସଂଶୟ ଫିଟାଇ କହ ମାୟା ନ କରଣ ॥
ବିନା ରଥେ ଭ୍ରମୁଅଛୁ ହୋଇଣ ନିର୍ଭୟ ।
ତୁମ୍ଭ ଅଟଳ ବୀରତ୍ୱ ଦେଖି ମୋ ସନ୍ଦେହ ॥
ଯେ ପର୍ଯ୍ୟନ୍ତ ତୁମ୍ଭ ପରିଚୟ ନ କହିବ ।
କେଉଁ ପରି ସେ ପର୍ଯ୍ୟନ୍ତ ସମର ହୋଇବ ॥
ରଣକ୍ଷେତ୍ରେ ତୁମ୍ଭ ରଣ ଦେଖି ପ୍ରଶଂସଇ ।
ତୁମ୍ଭ ପରି ରଥୀ ଏ ସଂସାରେ ଦେଖି ନାହିଁ ॥
ରାଜାର ବଚନେ କର୍ଣ୍ଣସୁତ ବୋଲେ ବାଣୀ
କଶ୍ୟପ ଋଷିଙ୍କ ବଂଶେ ଜନ୍ମ ଅମ୍ଭ ପୁଣି ॥
ଦାତାକର୍ଣ୍ଣ ବୀର ଅଟେ ମୋହର ପିଅର ।
ଦାନୀପଣେ ପୃଥିବୀରେ ନାହିଁ ପଟାନ୍ତର ॥
କୁରୁ ସଭାମଧ୍ୟେ ଦୁର୍ଯ୍ୟୋଧନ ପକ୍ଷେ ଥାନ୍ତି ।
କୁଟୁମ୍ବ ଛାଡ଼ିଣ ତାଙ୍କ ହିତ ସେ ବାଞ୍ଛନ୍ତି ॥
ଦ୍ରୌପଦୀଙ୍କ ବସ୍ତ୍ରଫେଡ଼ା ଦେଖିଲେ ନେତ୍ରରେ
ତିଳେକ ଦୟା ନୋହିଲା ତାହାଙ୍କ ଚିତ୍ତରେ
ଶ୍ରୀକୃଷ୍ଣଙ୍କୁ ଛାଡ଼ି ଦୁର୍ଯ୍ୟୋଧନଙ୍କୁ ଆଦର ।
ଦୁର୍ଯ୍ୟୋଧନ ବଚନକୁ ଥାନ୍ତି ଅନୁସର ॥
କର୍ଣ୍ଣ ବୀର ନାମ ବୋଲି ଜାଣିଥିବ ତୁମ୍ଭେ ।
ଶୁଣିଲୁ ହୋ ରାଜା ତାହାଙ୍କର ସୁତ ଅମ୍ଭେ ॥
ସମ୍ମୁଖ ସମରେ ବୀର ଅର୍ଜ୍ଜୁନ ହାତରେ ।
ମରିବାବେଳେ ଶ୍ରୀକୃଷ୍ଣ ନୟନେ ଦେଖିଲେ ॥
ଶ୍ରୀକୃଷ୍ଣ ଦର୍ଶନେ ମୁକ୍ତି ମିଳିଛି ଅବଶ୍ୟ ।
ଏଥିରେ ଅମ୍ଭର ମନେ ତିଳେ ନାହିଁ କ୍ଲେଶ ॥
ବୃଷକେତୁ ନାମ ମୋର ଯୁଧିଷ୍ଠି ପାଳିତ ।
ତାଙ୍କ କାର୍ଯ୍ୟେ ଆସିଅଛି ଏତେ ଦୂର ପଥ ॥
ଅଶ୍ୱମେଧ କରିବେ ଯୁଧିଷ୍ଠି ନରସାଇଁ ।
ଇଚ୍ଛା କରିଛନ୍ତି ବ୍ୟାସଠାରୁ ଆଜ୍ଞା ପାଇ ॥
ସୁଲକ୍ଷଣ ଯାଗଯୋଗ୍ୟ ଅଶ୍ୱ ଦରକାର ।
ସେଥିଯୋଗେ ଏଠାକୁ ଆସିଛୁ ତିନିବୀର ॥
ତୁମ୍ଭ ଯାଗ ଅଶ୍ୱ ହରିନେଲେ ମେଘବର୍ଣ୍ଣ ।
ଏଥି ଯୋଗେ ତୁମ୍ଭ ସୈନ୍ୟ ସଙ୍ଗେ ମୋର ରଣ
ଆଉ କିବା ପରିଚୟ ଦେବି ନୃପବର ।
ତୁମ୍ଭ ରଥ ନେଲେ ହେବ ଅନ୍ୟାୟ ମୋହର
ଯୁଦ୍ଧେ ତୁମ୍ଭ ରଥ ନେବା ଉଚିତ ନୁହଇ ।
ନେଲେ ତୁମ୍ଭ ସଙ୍ଗେ ରଣ କରି ନ ପାରଇ
ଦବା ନବାରେ ବନ୍ଧୁତା ସ୍ଥାପିତ ହୁଅଇ ।
ଏଣୁ କରି ତୁମ୍ଭ ରଥ ନେବା ନ ଯୋଗାଇ ॥
ଆଶା ଅଛି ଶତ୍ରୁମାରି ରଣ ଜୟ କଲେ ।
ଯଶ ରହିଥିବ ମୋର ଏହି ଧରଣୀରେ ॥
ଯୁଦ୍ଧସ୍ଥଳେ ଭଲମନ୍ଦ ନ ଥାଇ ଭାବନା ।
ତହିଁରେ ଅମ୍ଭର କିଛି ନ ଥାଏ ଶୋଚନା ॥
କାମନା ରହିଛି କାର୍ଯ୍ୟ ଜୟ ଫଳ ଲାଭ ।
ତୁମ୍ଭ ରଥେ ଯୁଦ୍ଧକଲେ ଧର୍ମ ନାଶ ଯିବ ॥
ରୁକ୍ମିଣୀ ପତିଙ୍କ ପଦ୍ମପାଦରେ ଶରଣ ।
ମହାଦେବ ଉପାଧ୍ୟାୟ ଭଜେ ଅନୁକ୍ଷଣ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତ
ରସଲୀଳା ସାର କଥା ପ୍ରବନ୍ଧେ
ନାମ ଚତୁର୍ଥୋଽଧ୍ୟାୟଃ



## ପଞ୍ଚମ ଅଧ୍ୟାୟ

ତେନା କୃଷ୍ଣଂହ୍ୟ ସକୃଷ୍ଣଂ କ୍ଷତ୍ରିୟସ୍ୟ ଧନଂ ତଥା
ଧାର୍ଷ୍ଟ୍ୟେନେମନୁକ୍ଷେମ୍ବେସ୍ତତ୍‌ସର୍ବଂ ପ୍ରେତଭୂଷଣ

### ବୃଷକେତୁ ଯୁଦ୍ଧେ ଯୁବନାଶ୍ୱ ରାଜାଙ୍କର ପରାଜୟ

ପାର୍ବତୀଙ୍କ ମୁଖ ଚାହିଁ ବୋଲନ୍ତି ଶଙ୍କର ।
କହୁଅଛି ପ୍ରାଣପ୍ରିୟା ତୁମ୍ଭେ ହେତୁକର ॥
ଜୈମିନି ଭାରତ ଏହି ଶ୍ରୀକୃଷ୍ଣ ଚରିତ ।
ଭକ୍ତିଭରେ ଶୁଣିଲେ ଏ ସଂସାରୁ ହୁଅନ୍ତି ମୁକ୍ତ ॥
ଜନ୍ମେଜୟ ରାଜାଙ୍କୁ ଯେ ଜୈମିନି ବୋଲନ୍ତି
ବୃଷକେତୁ କୁ କହନ୍ତି ପ୍ରଭାବତୀ ପତି ॥
ଅହେ ବୀର ତୁମ୍ଭର ପିଅର କର୍ଣ୍ଣ ଧନ୍ୟ ।
ବୀରପୁତ୍ର ବୀର ତୁମ୍ଭେ କ୍ଷତ୍ରିୟ ପ୍ରଧାନ ।
ତୁମ୍ଭର ସାହସ ପରଶଂସା ଜଗତରେ ।
ଆଜ ମୁଁ ଯାହା ଦେଖିଲି ଏ ଯୁଦ୍ଧ ଭୂମିରେ ॥
ମୋର ସର୍ବ ସୈନ୍ୟବୃନ୍ଦ କଲ ତୁମ୍ଭେ ନାଶ
ବୀରପଣେ ତୁମ୍ଭ ସମ ନୋହିବେ ଏ ଦେଶ ॥
ମହାମହା ଯୋଦ୍ଧା ରଣ ଯୁଦ୍ଧ ଛାଡ଼ି ଦେଇ ।
ପଳାନ୍ତି ଜୀବନ ଭୟେ ତୁମ୍ଭ ଶର ଚାହିଁ ।
କଦଳୀବନ ପବନ ଯେସନେ ନାଶକରେ ।
ତୁମ୍ଭଶରେ ମୋର ଯୋଦ୍ଧା ତେସନ ପ୍ରକାରେ
ଅସ୍ତବ୍ୟସ୍ତ ମସ୍ତକରୁ ମୁକୁଟ ପଡ଼ଇ ।
ଅସମ୍ଭାଳେ ଧାଆନ୍ତି ସେ ପ୍ରାଣ ରକ୍ଷା ପାଇଁ ॥
ଚାରିଆଡ଼େ ହାହାକାର ଶବଦ ଶୁଭଇ ।
ସେନାପତି ବଚନକୁ ସୈନ୍ୟ ନ ମାନଇ ॥
ସଂହାର ସମୟେ ଜାଣ ଯେସନେ ଉମାକାନ୍ତ ।
ତ୍ରିଶୂଳ ଧାରଣ କରି ବର୍ତ୍ତି ନିଯୁତେ ॥
ମାରିବା ବ୍ୟତୀତ ଆନ କିଛି ନ ଦିଶଇ ।
ସେହିପରି ତୁମ୍ଭ ଯୁଦ୍ଧ ନୟନେ ଦେଖଇ ॥
ବାଳକ ଅଟୁ ତେ ବୀର ଚଞ୍ଚଳ ତୋ ମତି ।
ଶର ମାରିବାକୁ ମୋର ନ ଚଳଇ ହାତ ।
ସେହି ସ୍ନେହବଶୁ ତୋତେ ମାରୁନାହିଁ ଶର
ଅସ୍ତ୍ରଶିକ୍ଷା ଦେଖାଇଣ ମନ ତୋଷ କର ॥
ତମ ଶର ତୋ ପ୍ରତି ବାରୁ ଅତ୍ୟନ୍ତ ଦାରୁଣ
ବାଜିଗଲେ ମରମ ବାଧା ହୋଇବଟି ଜାଣ ॥
ମନକଥା ଏଥି ପାଇଁ ତୁମ୍ଭଙ୍କୁ କହିଲି ।
ଶର ସନ୍ଧାନ କରଣ ଆଗେ ନ ମାରିଲି ॥
ବୃଷକେତୁ ବୀର ଯୁବନାଶ୍ୱ ବାଣୀ ଶୁଣି ।
ହସି କରି ପ୍ରତ୍ୟୁତ୍ତର ଦେଲେ ବୀରମଣି ॥
ନୃପବର ତୁମ୍ଭେ ନୁହ ମୋର ସମସର ।
ବୃଦ୍ଧ ହେବାରୁ ତୁମ୍ଭର ତୁଟିଲାଣି ଶିର ॥
ଆବର ହେଉଛ ଅସି ମୋ ସଙ୍ଗେ ଉଗାର ।
ମୋ ଶର ବାଜନ୍ତେ ତୁମ୍ଭେ ଯିବ ଯମପୁର ॥
ବୃଦ୍ଧ ମାରିବାକୁ ମନ ନ ବଳେ ମୋହର ।
ଏ ସମୟେ ଭଜନ କର ହେ ଚକ୍ରଧାରୀ ॥
ତାଙ୍କୁ ନ ଭଜିଣ ଆସିଅଛ ଯୁଦ୍ଧକରି ।
ନୀତି ଶାସ୍ତ୍ର ପଣ୍ଡିତ କି ନାହାନ୍ତି ତୁମ୍ଭର ॥
ଶୁଣୁଅଛି ମୋହଠାରୁ ବଳି ତୁମ୍ଭ ସୁତ ।
ସେମାନେ ଆଣିଣ ଅସ୍ତ୍ର ଧରନ୍ତୁ ତୁରିତ ॥
ତେବେ ମୋର ବୀରପଣ ଦେଖିବ ରାଜନ ।
ବୃଦ୍ଧଙ୍କୁ ମାରିଲେ କସ ଯଶ ମୋର ପୁଣ ॥
ଏଥିପାଇଁ ମନେ ପ୍ରାପ ହେଉଛି ମୋହର ।
ଯେବେ ମନ ଅଛି ରାଜା ଆଗେ ଶର ମାର ॥
ବୃଷକେତୁ ବାଣୀ ଶୁଣି ଯୁବନାଶ୍ୱ ବୀର ।
ଗୁଣରେ ବସାଇ ମନ୍ତ୍ରି ପେଷେ ଦଶଶର ॥
ଅନ୍ତରୀକ୍ଷରେ ଦଶ ଶର ବେଗେ ଚଳିଗଲା ।
ସାମାନ୍ୟ ଶରରେ କର୍ଣ୍ଣ ନନ୍ଦନ ଛେଦିଲା ॥
ତିନିଶର ମନ୍ତ୍ରିଣ ପେଷିଲା କର୍ଣ୍ଣସୁତ ।
ଶରର ଆଘାତେ ନୃପ ହେଲେ ଅପହତ ॥
ଅସମ୍ଭାଳ ହୋଇଣ ପଡ଼ିଲେ ନରସାଇଁ ।
ଧନ୍ୟ ଧନ୍ୟ କର୍ଣ୍ଣସୁତ ବୋଲି ପ୍ରଶଂସଇ ॥
ପୁଣି କର୍ଣ୍ଣସୁତ ଅର୍ଦ୍ଧଚନ୍ଦ୍ର ବାଣ ମାରି ।
ନୃପର କାଣ୍ଡ କୋଦଣ୍ଡ ଦେଲା ଖଣ୍ଡ କରି ॥
ରାଜା ମସ୍ତକର ପରେ ଥିଲା ଦଣ୍ଡଛତ୍ର ।
ଖଣ୍ଡ ଖଣ୍ଡ କଲା ତାକୁ କର୍ଣ୍ଣଙ୍କର ସୁତ ॥
ପୁଣି ରାଜରଥ ପ୍ରତି ନିକ୍ଷେପଇ ଶର ।
ଶର ବାଜି ଖଣ୍ଡ ଖଣ୍ଡ ହେଲା ରଥବର ॥
ରାଜାର ମୁକୁଟ ବୀର କାଟିଲାକ ହେଳେ ।
ଯୁବନାଶ୍ୱ ରାଜା ଯାଇ ଉଭା ହେଲେ ତଳେ ॥
ବୃଷକେତୁ ଅସ୍ତ୍ରଶିକ୍ଷା ବୀରତ୍ୱ ଦେଖିଣ ।
ଆଶ୍ଚର୍ଯ୍ୟ ହୋଇଲେ ରାଜା ରାଜସୈନ୍ୟଗଣ ॥

ଅନ୍ୟ ଏକ ରଥ ଆରୋହିଲେ ନରବର ।
କ୍ରୋଧଭରେ ଚକ୍ଷୁ ହେଲା ରକ୍ତସମ ଆକାର ॥
କାଳ ଦେବତା ପରାୟେ ଦିଶିଲାକ ତେଜ ।
ଧନୁରେ ସନ୍ଧିଣ ବାଣ ବିନ୍ଧେ ମହାରାଜ ॥
ସୂର୍ଯ୍ୟକିରଣେ ଯେପରି ଜଳ ଶୁଖିଯାଏ ।
ନଦୀ ପୁଷ୍କରଣୀ ମାନ ଶୋଭାକୁ ନ ପାଏ ॥
ସହସ୍ର କିରଣ ଯେବେ ପଡ଼େ ପୃଥିବୀରେ ।
ବ୍ୟାକୁଳେ ଖୋଜନ୍ତି ଜଳ ପଶୁପକ୍ଷୀ ନରେ ॥
ସେ ସମୟେ ପଶୁ ଜନ୍ତୁ ହୋଇ ତୃଷାତୁର ।
ଜଳାଶୟମାନ ଖୋଜେ ପାଇବାକୁ ନୀର ॥
ନ ପାଇଲେ ଛଟପଟ ହୁଅଇ ଜୀବନ ।
ଶେଷକୁ କରଇ ସେହୁ ପ୍ରାଣ ବିସର୍ଜନ ॥
ସୂର୍ଯ୍ୟକିରଣେ ଯେପରି ହୁଅଇ ଆଘାତ ।
ସେପରି ଶର ମାରଇ ପ୍ରଭାବତୀ ନାଥ
ଶରଘାତେ ବୃଷକେତୁ ହୋଇଲେ ଅଥୟ ।
ମନେ ବିଚାରନ୍ତି ମୁହିଁ ଏଥି ଯିବି କ୍ଷୟ ॥
ବୀରର ପ୍ରକୃତ କାର୍ଯ୍ୟ ସମରେ ସାହସ ।
ମୁହିଁ ନିଃସାହସୀ ହେବା ଅଟେ ବଡ଼ ଦୋଷ ॥
ଏମନ୍ତ ଚିନ୍ତିଣ ଶରମାରେ ବୀରବର ।
କୋପେଣ କାଟଇ ତାହା କ୍ରୁଦ୍ଧ ନୃପବର ॥
ଯୌବନାଶ୍ୱ କୋପଭରେ ବିନ୍ଧେ ଶରମାନ ।
ବୃଷକେତୁ ଦେହ ଫୁଟି ଗଲାକ ବହନ ॥
ରକ୍ତ ବହୁ ଅଛି ଯେହ୍ନେ ବରଷାରଧାର ।
ଗୃହଆଡ଼େ ସୈନ୍ୟବୃନ୍ଦ ଧେଉଛନ୍ତି ଭର ।
ସମୁଦ୍ର ଗର୍ଜନ ପ୍ରାୟ ମୁଖେ ରବଗୋଳ ।
ତଥିମଧ୍ୟେ ବିରାଜଇ କର୍ଣ୍ଣଙ୍କ ଦୁଲାଳ ॥
ସର୍ବେ ଶର ମାରୁଛନ୍ତି ବୃଷକେତୁ ପରେ ।
ଦାଗ ନ ଦିଶଇ ଶରମାନ ଅସିବାରେ ॥
ସମସ୍ତଙ୍କ ଶର କାଟେ ବୃଷକେତୁ ବୀର ।
ସମର ଭୂମିରେ ଜାଣ ନିର୍ଭୟ ଶରୀର ॥
ମନୋଭାବେ ଏତେବେଳେ କରିଲେ ମୁଁ ହେଲା
ସର୍ବେ ବେଢିଣ ମାରିବେ ଭୁଡ଼ିବ ମୋ ଭେଲା
ଆକର୍ଷି ଧନୁ ମାରେ ତୀକ୍ଷ୍ଣ ତୀକ୍ଷ୍ଣ ଶର ।
ଯେସନେ ମେଘେ ବିଜୁଳି ଗମଇ ପ୍ରଖର ॥
ସର୍ବ ଯୋଦ୍ଧାଙ୍କର ବାଣ କାଟେ ବୀରବର ।
ନିମିଷକେ କୋଟି କୋଟି ପ୍ରହାରଇ ଶର ॥

ଯେସନେ ନକ୍ଷତ୍ର ମଧ୍ୟେ ଚନ୍ଦ୍ର ଶୋଭାପାଏ ।
ବୃଷକେତୁ ସୈନ୍ୟମଧ୍ୟେ ତେହ୍ନେ ଦେଖାଯାଏ
ବୃଷକେତୁ ଶରେ କେତେ ଯୋଦ୍ଧା ମୋହଗଲେ
କେତେ ସୈନ୍ୟ ପ୍ରାଣହାରି ଭୂମିରେ ପଡ଼ିଲେ
ଦେଖୁଁ ଦେଖୁଁ ଅଗ୍ନି ଯେହ୍ନେ ଦହେ ନଳବନ
ବୃଷକେତୁ ତେହ୍ନେ ସୈନ୍ୟ କରିଲା ନିଧନ
ରାଜାର ସାରଥି ଶିର କାଟି ପକାଇଲା ।
ରଥଅଶ୍ୱ ଲକ୍ଷକରି ବାଣ ବରଷିଲା ॥
ଶରଘାତେ ଅଶ୍ୱମାନେ ଭୂମିରେ ପଡ଼ିଲେ ।
କେତେକ ଅଶ୍ୱ ଭୟେ ଛନ୍ଦାଇଣ ପଳାଇଲେ ॥
କର୍ଣ୍ଣସୁତ ମନ୍ତ୍ରବଳେ ଅସଂଖ୍ୟ ନାରାଜ ।
ବନ୍ଧି ଆକାଶେ ଢାଙ୍କିଲା ସୂର୍ଯ୍ୟଙ୍କର ତେଜ ॥
ଦିବସ କି ରାତ୍ରି ତହିଁ ବାରି ନ ହୋଇଲା ।
ରାଜସୈନ୍ୟ ହାହାକାର ଶବଦ ଶୁଭିଲା ॥
ସର୍ବେ ବୋଲୁଛନ୍ତି ବିଧାତାର ଛଳନ ।
ନ ହେଲେ ଏକାଜଣକେ କରନ୍ତା ଏସନ ॥
ରାଜାଙ୍କୁ ନଦେଖି ସର୍ବ ସୈନ୍ୟ ହେଲେ ଦୁଃଖୀ
ଭାବନ୍ତି ଏପରି ଯୁଦ୍ଧ ନାହୁଁ କେବେ ଦେଖି ॥
ଏହି ଅବସରେ ବୃଷକେତୁ ବୀରବର ।
ବହୁସୈନ୍ୟ ବିନାଶିଲା ମାରି ତୀକ୍ଷ୍ଣ ଶର ॥
ଆବର ମନ୍ତ୍ରିଣ ଅଗ୍ନି ଶର ସେ ପେଶିଲା ।
ମହାଘୋର ଶବ୍ଦକରି ଅଗ୍ନି ଶର ଗଲା ॥
ଶରତେଜ ଦେଖି ସର୍ବେ ହେଲେ ଚମତ୍କାର
ଅଗ୍ନି ଶିଖା ଘୋଟିଗଲା ସର୍ବ ଆକାଶର ॥
ଦେଖୁ ଦେଖୁ ବହୁସୈନ୍ୟ ଦେଲା ଶର ପୋଡ଼ି
ସୈନ୍ୟମାନେ ପଳାବନ୍ତି କରି ଘୋର ରଡ଼ି ॥
ସୈନ୍ୟଙ୍କ ଦୁର୍ଦ୍ଦଶା ଦେଖି କ୍ରୋଧେ ଦଣ୍ଡଧାରୀ
ବରୁଣାଶର ପେଶିଲେ ଅତି ବେଗକରି ॥
ଅଗ୍ନି ଶର ନାଶକରି ଶର ଚଳି ଆସେ ।
ଦେଖି ବୃଷକେତୁ ବୀର ପବନାସ୍ତ୍ର ପେଶେ ॥
ପବନାସ୍ତ୍ର ପେଷନ୍ତେଣ କର୍ଣ୍ଣଙ୍କ ନନ୍ଦନ ।
ବରୁଣାଶରକୁ ଉଡ଼ାଇଲେ ତତକ୍ଷଣ ॥
ଯୁଦ୍ଧସ୍ଥଳେ ବୃଷକେତୁ ଘୋରନାଦ କରି ।
କରଇ ଗର୍ଜ୍ଜନ ଯେହ୍ନେ ପ୍ରମତ୍ତ କେଶରୀ ।
ପ୍ରବଳ ବୀରଙ୍କୁ ଦେଖି ରାଜା ଚଳି ଭୟ ।
ମନେ ବିଚାରିଲେ ନିଷ୍ଟେ ହେବ ପରାଜୟ ॥

ଏତେ ପାଇଁ ପୁଣିହିଁ ସାହସ ହୃଦେ ଧରି ।
ଅଗ୍ରେହିଲା ଅନ୍ୟ ରଥେ ବେଗେ ଦଣ୍ଡଧାରୀ
ବୃଷକେତୁ ବେଗେ ମାରେ ପରବତା ଶର ।
ବଜ୍ର ଅସ୍ତ୍ରକୁ ପେଶିଲା ଯୁବନାଶ୍ୱ ବୀର ॥
ଶର ଦୁହେଁ ମିଶାମିଶି ହେଲେ ଆକାଶରେ ।
ଶୀଳା ପଡୁଅଛୁ ବୃଷ୍ଟିପରି ଭୂତଳରେ ॥
ସେହିକାଳେ ଆକାଶ ଦଶିଲା ନୀଳବର୍ଣ୍ଣ ।
ଆଶ୍ଚର୍ଯ୍ୟ ହୋଇଲେ ତାହା ଗୃହିଁ ଦେବଗଣ ॥
ଦୁହେଁ ଯୁଦ୍ଧ କରଛନ୍ତି ଅତି କୋପମନେ ।
ବାହୁବଳେ ବାଣ ବିନ୍ଧୁଛନ୍ତି ଅନୁକ୍ଷଣେ ॥
ଶରେ ଶରେ ଆକାଶକୁ କଲେ ଆଚ୍ଛାଦିତ ।
ଅନ୍ଧକାର ହେଲା ନ ଦଶିଲା ଦିନନାଥ ॥
ଭୟଙ୍କର ରଣେ କେ କାହାକୁ ନ ଚିହ୍ନଇ ।
ଆପଣା ଆପଣା ମଧ୍ୟେ ହାଣା ହଣି ହୋଇ ॥
ଗୃଧ୍ରଆଡ଼େ ମହାଶବ୍ଦ କରୁଛନ୍ତି ପ୍ରାଣୀ ।
ତ୍ରାହିକର ତ୍ରାହିକର ମାତ୍ର ଶୁଭେ ବାଣୀ ॥
ଦେଖି ଦେଖୁ ରାଜସୈନ୍ୟ ହୋଇଲେ ପ୍ରବଳ ।
ବେଢିଣ ମାରିଲେ ସର୍ବେ କର୍ଣ୍ଣଙ୍କ ଦୁଲାଳ ॥
ଅନାଇଁ ଅନାଇଁ ବୀର ନିସ୍ତେଜ ହୋଇଲେ ।
ପର୍ବତେ ଥାଇଣ ଭୀମସେନ ତା ଦେଖିଲେ ॥
ମହା ପ୍ରଚଣ୍ଡ ହୋଇଣ କଲେ ଗରଜନ ।
ଶବ୍ଦ ଶୁଣି ଆକାଶେ କମ୍ପିଲେ ଦେବଗଣ ॥
ସୈନ୍ୟମଧ୍ୟୁ ବୃଷକେତୁ ଉଦ୍ଧାରିବା ପାଇଁ ।
ବଜ୍ରହସ୍ତେ ପୁରନ୍ଦର ପରାୟେ ଧାମଈ ॥
ଦେଖି କର୍ଣ୍ଣ ସୁତ ଯେ ଆନନ୍ଦ ମନ ହେଲା ।
ସାହାସ କରିଣ ସୈନ୍ୟ ବାଣ ବରଷିଲା ॥
ସୂର୍ଯ୍ୟଶର ବୃଷକେତୁ ବୀର ନିକ୍ଷେପିଲା ।
ଆକାଶେ ଯେ ଶରଥିଲା କାଟି ପକାଇଲା ॥
ସମସ୍ତ ନିର୍ମୂଳ କଲା କର୍ଣ୍ଣର କୁମର ।
ରାଜାର ସମସ୍ତ ଶରକଲା ନାରଖାର ॥
ବାଣ ବ୍ୟର୍ଥହେବା ଦେଖି ଯୌବନାଶ୍ୱ ରାଜା
ମହାଶୂଳ ହସ୍ତେ ଧରି ହେଲା ବହୁତେଜା ॥
ଭୁଲାଇଣ ବୃଷକେତୁ ଉପରେ ମାଇଲା ।
ଶୂଳାଘାତ ପାଇ ବୀର ମୂର୍ଚ୍ଛିତ ହୋଇଲା ॥
ଠିଆ ହୋଇ ନ ପାରିଲା କର୍ଣ୍ଣଙ୍କ ନନ୍ଦନ ।
ଭୂମିରେ ପଡ଼ିଲା ବୀର ଅଜ୍ଞାନ ହୋଇଣ ॥

ଏହା ଦେଖି କାତର ହୋଇଲେ ଭୀମସେନ
ଅହା ବାପଧନ ବୋଲି କଲେକ ରୋଦନ ॥
ଘଡ଼ଘଡ଼ି ପରି କୋପେ କରିଲେ ଗର୍ଜନ ।
ରାଗରେ ଭୀମଙ୍କ ଚକ୍ଷୁ ହେଲା ରକ୍ତବର୍ଣ୍ଣ ॥
ରେରେକାର କରି ପ୍ରବେଶିଲେ ଯୁଦ୍ଧସ୍ଥଳେ ।
ଆକାଶେ ଦେବେ ପାତାଳେ ବାସୁକି କମ୍ପିଲେ
ଯୁବନାଶ୍ୱ ସୈନ୍ୟବୃନ୍ଦ ଭୀମସେନେ ଗୃହିଁ ।
ଭୟେ ଅସ୍ତ୍ରଶସ୍ତ୍ର ହସ୍ତୁ ଖସିଣ ପଡ଼ଇ ॥
ସମୁଦ୍ର ଯୁଆର ଉଠି ଆସେ ଯେଉଁ ପରି ।
ଭୀମସେନ ଭୟେ ସୈନ୍ୟ ପଳାନ୍ତି ସେପରି ॥
ଭୀମସେନ ପଦାଘାତେ ପୃଥିବୀ କମ୍ପିଲା ।
ବାସୁକୀନାଗର ଫଣା ଟଳମଳ ହେଲା ॥
ବାଉନଭାର ଗଦାକୁ ଧରିଛନ୍ତି କରେ ।
କୃତାନ୍ତକ ଦେବତା କି ଗମଇ ଯୁଦ୍ଧରେ ॥
ଦଶସହସ୍ର ହସ୍ତୀବଳ ଭୀମସେନଙ୍କର ।
ବାଲ ସୂର୍ଯ୍ୟ ପ୍ରାୟେ ତେଜ ଦଶଇ କେ ଧର
ସେ ରୂପ ଦେଖିଲେ ଯମ କରିବେ ଯେ ଭୟ
ସୈନ୍ୟ ଦେଖି କମ୍ପୁଛନ୍ତି ହୋଇଣ ଅଥୟ ॥
କେହି ସୈନ୍ୟ ସାହସରେ ରହି ନ ପାରିଲେ
ଭୀମ କୋପମୂର୍ତ୍ତି ଦେଖି ଭୟେ ପଳାଇଲେ ॥
ଏସନ ସମୟେ ଭୀମ ଭାବିଲେ ଯେ ମନ ।
ମୋ ଧନ ବୃଷକେତୁ ଯା ହରାଇଲା ପ୍ରାଣ ॥
ମନା କରୁଥିଲି ନ ମାନିଲା କଥା ମୋର ।
ଯୁଦ୍ଧ କରିବାକୁ ସେହି ହେଲା ଆଗଭର ॥
ମଧୁରବଚନେ ମୋତେକେତେ ବୋଧଦେଲା
ମୋ ମନା ନ ମାନିଯୁଦ୍ଧେ ପ୍ରବେଶ ହୋଇଲା
ବୀରପଣେ ଯୁବନାଶ୍ୱ ରାଜା ବହୁ ସୈନ୍ୟ ।
ବିନାଶ କରିଲା ବାବୁ କର୍ଣ୍ଣର ନନ୍ଦନ ॥
ଯୁବନାଶ୍ୱ ରାଜାକୁ ତୁ କଲୁ ଅସ୍ତବ୍ୟସ୍ତ ।
ଏଣୁତରି ଯୁବନାଶ୍ୱ ହେଲେ କୋପଚିତ୍ତ ॥
ଶକତ ମାରିଣ ତୋତେ କଲା ହତଜ୍ଞାନ ।
ଏହା ପୁଣି ଦେଖିଲା ଯେ ଏ ପାପ ନୟନ ॥
ମୋର ଆଗେ ତୁହି ନାଶ ହେଲୁରେ କୁମର
ନ ଯାଇ ରହିଛି ପ୍ରାଣ ହୃଦୟେ ମୋହର ॥
ଜ୍ୟେଷ୍ଠସହୋଦର ମୋତେକବୋଲିବେ ଶୁଣି
ବୃଷକେତୁ ନାଶ ଗଲା ତୋ ଦେଖନ୍ତେ ପୁଣି

ଏହି କଥା ମୋତେ ଭାରି ଅପମାନ ହେବ ।
ନ ଯାଇ ରହିଛୁ ତୋର ସଙ୍ଗେ ମୋର ଜୀବ ॥
ଅହା ମିତ୍ର ସ୍ନାନ ବସ୍ତ୍ର ମୋହର ସକାଶେ ।
ବୃଥା ଠାରେ ପ୍ରାଣଦେଲୁ ଅସି ପରଦେଶେ ॥
ଦେବକୀନନ୍ଦନ ବାସୁଦେବ କି ବୋଲିବେ ।
ତୋ ବିନାଶହେବା ଶୁଣି ମୋତେ ହିଙ୍ଗାସିବେ
ମାତା ଦେବୀ ପଚାରିବେ ବୃଷକେତୁ କାହିଁ ।
ତୋ ବିନାଶ କଥା କପଟ କହିବି ମୁହିଁ ॥
ଦେବୀ ଦ୍ରୌପଦୀଙ୍କୁ ଯାଇଁ କି ବୋଲି କହିବି ।
କେଉଁ ପ୍ରକାରେ ତାହାଙ୍କୁ ମୁହିଁ ପ୍ରବୋଧିବି ॥
ମୋତେ ଦେଖି ପଚାରିବେ ବୀର ଅରଜୁନ ।
କାହିଁ ବୀର ବୃଷକେତୁ ମୋର ପ୍ରାଣଧନ ॥
ତୋହଯୋଗୁ ଅଭିମନ୍ୟୁ ଶୋକ ସେ ଛାଡ଼ିଛି ।
ତୋ ମୁଖ ଚାହିଁଣ ସେହି ଜୀବନ ଧରିଛି ॥
କି କହିବି ବୋଲି ତାକୁ ନ ଦିଶେ ଉପାୟ ।
ଏହା ଶୁଣିଲେ କପଟ ଧରିବେ ସେ ଦେହ ॥
ଜ୍ୟେଷ୍ଠଭ୍ରାତ ଶ୍ରୀକୃଷ୍ଣ ବା ମାତାଙ୍କ ଅଗ୍ରତେ ।
କପଟ ମିଛ କହିବି ଏହା ଭାବେ ଚିତ୍ତେ ॥
ସମସ୍ତେ ଜାଣନ୍ତି ଭୀମ କହେ ସତ୍ୟବାଣୀ ।
କପଟ ତୋ ନାଶ ଲୁଚାଇବି ବସ୍ତ୍ରମଣି ॥
ଯେବେ ମିଥ୍ୟା କହି ତୋ ବିନାଶ ଲୁଚାଇବି ।
ଜାଣୁ ଜାଣୁ ଅନ୍ତଃକାଳେ ନରକେ ପଡ଼ିବି ॥
ଅହେ ବାସୁଦେବ ତୁମ୍ଭ ମନେ ଏହା ଥିଲା ।
ତୁମ୍ଭେ ଥାଉଁ ଏ ବିପଦେ ଭୀମ ଯେ ପଡ଼ିଲା ॥
ବୃଷକେତୁ ଛାଡ଼ି ମୁହିଁ ନ ଯିବି ହସ୍ତିନା ।
ଏହିଠାରେ ଜୀବ ଯିବ ବୃଷକେତୁ ବିନା ॥
ତୁମ୍ଭେ ଥାଉଁ ମୋର ଏହିଠାରେ ଗଲେ ଜୀବ ।
ଏ ନିନ୍ଦା କି ହେ ଶ୍ରୀପତି ତୁମ୍ଭଙ୍କୁ ନ ହେବ ॥
ସମସ୍ତେ ବୋଲନ୍ତି ପାଣ୍ଡବଙ୍କ ରକ୍ଷାକାରୀ ।
ସଦାସର୍ବଦା ଅଛନ୍ତି ଦେବ ଦଇତ୍ୟାରି ॥
ତୁମ୍ଭର ଅନନ୍ତ ମାୟା ଦେବ ନାରାୟଣ ।
ନାହିଁ ଏ ଭବେ ଆମ୍ଭର ତୁମ୍ଭବିନୁ ଅନ୍ୟ ॥
ଏ ବିପଦ ଦେବା ଇଚ୍ଛା ଥିଲା ଯେବେ ତବ ।
କାହିଁ ପାଇଁ ଯଜ୍ଞ ଉଆଇଲ ବାସୁଦେବ ॥
ଯେତେବେ ମୋ ଆତ୍ମୀୟ ପୁତ୍ର ବୃଷକେତୁ ବୀର ।
ରଣରେ ପଡ଼ିଲା ଏ ଜୀବନେ କିବା ଛାର ॥

ଏତେ କହି ଭୟଙ୍କର ରୂପେ ଭୀମସେନ ।
ପ୍ରଚଣ୍ଡ ଗଦା ଧରିଣ ବେଗେ ତମ ତମ ॥
ଚକ୍ର ପ୍ରାୟେ ବୁଲାଇଣ ଗଦା ବୀରମଣି ।
ଯୁବନାଶ୍ୱ ସୈନ୍ୟମଧ୍ୟେ ପଶିଲେକ ପୁଣି ॥
ଅନାଉଁ ଅନାଉଁ ରଥ ରଥୀ ପଦାତିଙ୍କି ।
ଗୋଟି ଗୋଟି ପଠାଇଲେ ଯମର କଟକି ॥
ଯୁଦ୍ଧ ସ୍ଥଳେ ରକତର ସ୍ରୋତ ଯାଏ ବହି ।
ରଣେ ଶରଣ ବୋଇଲେ ଦ୍ୱିଗୁଣେ ମାରଇ ॥
ଭୀମସେନ ଗୁଳିବାର ବାୟୁ ପ୍ରଭାବରେ ।
ରଥ ଗଜ ଅଶ୍ୱ ସୈନ୍ୟ ପଡ଼ିଲେ ଭୂମିରେ ॥
ଯେପରି ସଂସାର ଜନେ ଶ୍ରୀକୃଷ୍ଣ ନ ଭାବି ।
ମୋହମାୟା ସଂସାରରେ ମରୁଛନ୍ତି ବୁଡ଼ି ॥
ମୁକତିର ଉପାୟ ସେମାନେ ନ ଦେଖନ୍ତି ।
ଜ୍ଞାନ ଶୂନ୍ୟ ହୋଇ ଜଡ଼ ପରାଏ ରହନ୍ତି ॥
ଯୁବନାଶ୍ୱ ସୈନ୍ୟମାନେ ସେହିପରି ହେଲେ ।
ପ୍ରାଣଭୟେ ଭଲମନ୍ଦ କିଛି ନ ଭାବିଲେ ॥
ପାଗଳ ପରି ସେ ହେଲେ ଭୀମ ରୂପ ଚାହିଁ ।
କେହୁ ଅସ୍ତ୍ର ଶସ୍ତ୍ର କାଢ଼ି ଫୋପାଡ଼ି ଦିଅଇ ॥
କେହୁ ଉଲଗ୍ନ ହୋଇଣ ଲୁଗା ହସ୍ତେ ଶିରେ ।
କେହୁ ବା ଲଙ୍ଗଳା ହୋଇ ଗଡ଼େ ଭୂମିପରେ
କେହୁ ତାଳିମାରି ନାନା ଗୀତ କରେ ଗାନ ।
ଭୀମକୁ ଦେଖିଲେ ଟଳେ ଯାଏ ସେ ପଡ଼ିଣ ॥
କେହୁ ତଳ ମୁହିଁ କରି ବସେ ଧରଣୀକି ।
ଭୀମ ତଥାପି ମାରଇ ଉଦ୍ବୋଧ ନ ରଖି ॥
ହସ୍ତୀକି ଉଠାଇ ହସ୍ତୀ ପରେ ମାରେ ଭୀମ ।
ରଥ ପରେ ରଥ କଚଡ଼ାଇ ହୋଇ ତମ ॥
ବହୁପାପ ଭାରେ ନର ହୋନ୍ତି ଯେଉଁପରି ।
ମୁକତିର ପଥ ସବୁ ଦିଅନ୍ତି ପାଶୋରି ॥
ଶେଷରେ ସେ କୁମ୍ଭୀପାକ ନର୍କବେ ପଡ଼ନ୍ତି ।
ଏହା ଜାଣି ଶୁଣି କୁକର୍ମକୁ ନ ଛାଡ଼ନ୍ତି ॥
ସେହିପରି ଯୁବନାଶ୍ୱ ସୈନ୍ୟ ମାରେ ଭୀମ ।
ଗଦା ମାଡ଼ ଘାତେ କଲେ ଭୂମିରେ ଶୟନ ॥
ଗଦାଘାତେ ସୈନ୍ୟମାନେ ରକ୍ତ କରି ବାନ୍ତି ।
କୋଟି କୋଟି ହୋଇ ଯମପୁରେ ଚଳିଯାନ୍ତି ॥
ଏହି ପରି ଯୁବନାଶ୍ୱ ସଇନ ସକଳ ।
ହାହାକାର କରୁଛନ୍ତି ହୋଇଣ ବିକଳ ॥

ଭୀମର ଗର୍ଜ୍ଜନ ଧର ଧର ମାର ମାର ।
ସୈନ୍ୟ ଭୟେ କମ୍ପୁଛନ୍ତି ନ ଦେଖି ଉଦ୍ଧାର ॥
ଭୀମ ଭୟଙ୍କର ରଣ ଦେଖିଣ ସବନେ ।
ଇତସ୍ତତେ ଭୟେ ପଳାବନ୍ତି ଏଣେତେଣେ ॥
ସୈନ୍ୟଭଙ୍ଗ ଦେଖିକରି ସୁବେଗ ଯେ ବୀର ।
ଯୁବନାଶ୍ୱ ରାଜାଙ୍କର ସେ ଜ୍ୟେଷ୍ଠ କୁମର ॥
ମହାକ୍ରୋଧେ ଗର୍ଜିଣ ହୋଇଲା ଅଗଭର ।
ଭୀମର ସମ୍ମୁଖେ ଯାଇ ବୋଲଇ ଉତ୍ତର ॥
ରାଜାର ମୁଁ ଜ୍ୟେଷ୍ଠସୁତ ପ୍ରସିଦ୍ଧ ଜଗତେ ।
ତୋର ଷଣ୍ଢପଣ ମୁହିଁ ଦେଖିବି ସାକ୍ଷାତେ ॥
କେତେ କେତେ ଯୁଦ୍ଧ ବିଦ୍ୟା ଜାଣିଅଛି ମୁହିଁ ।
ଆଜ ତୋହ ଭୁଲେ ତାହା ପରୀକ୍ଷା ଦେବଇଁ
ମୋ ନାମ ଅଟେ ସୁବେଗ ଶୁଣ ବୃକୋଦର ।
ଆସ ମୋହ ସଙ୍ଗେ ସମ୍ମୁଖରେ ରଣକର ॥
ବାହାବଳ କେତେ ଏହିଠାରେ ଦେଖାଯିବ ।
ତୋର ମୋର ବୀରପଣ ପରୀକ୍ଷା ହୋଇବ ॥
ବୀରପଣେ ଭାରି ଗର୍ବ କରୁଅଛୁ ମନେ ।
ପାଉଁଛୁ ସଂସାରେ କେହି ନାହିଁ ମୋ ସମାନେ ॥
ମନେ ମନେ ସମସ୍ତ ବୀରଙ୍କୁ ମଣୁ ତୁଚ୍ଛ ।
ଦେଖାଯିବ ମୋହଭୁଲେ ଯୁଦ୍ଧରେ ପ୍ରତ୍ୟକ୍ଷ ॥
ଆଜ ମନ ଦମ୍ଭ ତୋ ଛାଡ଼ିବ ବୀରବର ।
ନିସ୍ତାର ନାହିଁ ହାତୁଡ଼େ ପଡ଼ିଛୁ ମୋହର ॥
ରାଜପୁତ୍ର ବାକ୍ୟେ ଭୀମ ଉତ୍ତର ନ ଦେଲେ ।
କଥାରେ କି ଅଛି ଦେଖାଯିବ ଫଳାଫଳେ ॥
ଏତେ କହି ଭୀମସେନ ଭୟଙ୍କର ବେଗେ ।
ଗଦା ବୁଲାଇଣ ସୈନ୍ୟ ପିଟିଲାକ ରାଗେ ॥
ଭୀମର ପ୍ରତାପ ଦେଖି ରାଜାର କୁମର ।
ରଥର ଉପରୁ ଡେଇଁ ପଡ଼ିଲା ସତ୍ୱର ॥
କରେ ଏକ ଗଦା ଘେନି ଅତି ବେଗ ହୋଇ
ଚକ୍ର ପ୍ରାୟେ ମସ୍ତକରେ ତାହାକୁ ବୁଲାଇ ॥
ଭୀମର ଶିରରେ ତାହା ଅତି ବେଗ କରି ।
ପ୍ରହାରିଲା ଶବ୍ଦ ଶୁଭେ ବଜ୍ରନାଦ ପରି ॥
ମହାବଳଶାଳୀ ଭୀମ ପାଇ ସେ ଆଘାତ ।
ପାଗଳ ପରି ସୈନ୍ୟରେ ପଶିଲେ ତୁରିତ ॥
ବାଉନ ଭାର ଗଦାକୁ ହସ୍ତରେ ଧରିଣ ।
ଦେଖି ସୈନ୍ୟମାନେ ପଳାନ୍ତି ଭୟକରିଣ ॥

ସୁବେଗ ବକ୍ଷରେ ପ୍ରହାରିଲେ ଗଦାବର ।
ସାମାନ୍ୟ ଲଭିଲେ କଷ୍ଟ ରାଜାର କୁମର ॥
ଦୁଇଜଣ କେ କାହାକୁ ମାରି ନ ପାରିଲେ ।
ନିଜେ ନିଜେ ନିଜ ବାହୁ ଗଦାକୁ ନିନ୍ଦିଲେ ॥
ମନଭାବ କାହାର ସମ୍ପୂର୍ଣ୍ଣ ହେଲା ନାହିଁ ।
ଦୁହେଁ ରାଗେ ଜର ଜର ହେଉଛନ୍ତି ତହିଁ ॥
ଦୁହେଁ ଗଦାଧରି ବୁଲୁଛନ୍ତି ଚକ୍ରାକାରେ ।
ଜଗାଜଗି ହୁଅନ୍ତି କେ କାହାକୁ ନ ମାରେ ॥
ଜୟରୂପୀ ଲକ୍ଷ୍ମୀ କାହା ପକ୍ଷ ନ ହୁଅନ୍ତି ।
ଏଣୁ କରି ଦୁଇବୀରେ ବିଶ୍ରାମ ଖୋଜନ୍ତି ॥
ଏମନ୍ତ ସମୟେ ଭୀମ ସୁବେଗକୁ ଧରି ।
ଆକାଶେ ଉଠାଇ ନେଲେ କଉଶଳ କରି ॥
ବୁଲାଇ ବୁଲାଇ ପୃଥିବୀରେ ଫୋପାଡ଼ିଲା ।
ତେବେ ସୁଦ୍ଧା ସୁବେଗର ପରାଣ ନ ଗଲା ॥
ଗଦା ଧରିଣ ସୁବେଗ ମାରେ ଭୀମପରେ ।
ସମସ୍ତେ ଆଶ୍ଚର୍ଯ୍ୟ ହେଲେ ଦେଖିଣ ନେତ୍ରରେ
ଗଦାମାଡ଼ ଖାଇ ଭୀମ ହେଲେ କମ୍ପମାନ ।
ଅତି ଭୟଙ୍କର ରୂପ କରିଲେ ଧାରଣ ॥
ରାଗରେ କହଇ ଭୀମ ଶୁଣରେ ସୁବେଗ ।
ପିତା ମାତାକୁ ଦେଖିବା ମନୁ କର ତ୍ୟାଗ ॥
ଏତେ କହି ହସ୍ତୀମାନ ଉଠାଇ ହସ୍ତରେ ।
ସୁବେଗ ଉପରେ ନେଇ କ୍ରୋଧେ କଚାଡ଼ିଲେ
ହସ୍ତୀ ଫୋପାଡ଼ିବା ଦେଖି ଯୁବନାଶ୍ୱ ସୁତ ।
ଡେଇଁ ଅଧବାଟୁ ତାହା ଧରିଲା ତୁରିତ ॥
ଧରି ଭୀମ ଉପରକୁ ଫୋପାଡ଼ିଲା ବୀର ।
ହସ୍ତୀ ପ୍ରାଣଗଲା ପଡ଼ି ଭୀମର ଦେହର ॥
ଦୁହେଁ ବଧା ମରାମରି ହୋଇଲେ ଶେଷରେ ।
ଉଠନ୍ତି ପଡ଼ନ୍ତି ପୁଣି ଗଡ଼ନ୍ତି ପୃଥ୍ୱୀରେ ॥
ବଧା ଗୋପୁତ୍ରା ଯେ ମୃଥ ମରାମରି ହୋନ୍ତି ।
ନିର୍ଘାତ ମାଡ଼ରେ କେହି କାକୁ ନ ଛାଡ଼ନ୍ତି ॥
ଏହିପରି କେତେକ ସମୟୁ ଦୁଇବୀର ।
ଉଭୟେ ମୂର୍ଚ୍ଛିତ ହୋଇ ପଡ଼ିଲେ ଭୂମିର ॥
ଜୈମିନି ବୋଲନ୍ତି ଜନ୍ମେଜୟ ଏବେ ଶୁଣ ।
ସଚେତ ହୋଇଲେ ବୀର କର୍ଣ୍ଣଙ୍କ ନନ୍ଦନ ॥
ଅତି କ୍ରୋଧରେ ବିପକ୍ଷ ଆଡ଼କୁ ଧାଇଁଲେ ।
ଯୋଦ୍ଧା ବନେ ଚଳେ ସିଂହ ହସ୍ତୀମାରିବାରେ

ଯୁବନାଶ୍ୱ ଅଗେ ଯାଇଁ ହେଲେ ଉପସ୍ଥିତ ।
ଦେଖି ଯୁବନାଶ୍ୱ ରାଜା କଲା ଉଗ୍ର ଶବ୍ଦ ॥
ବୃଷକେତୁ ପଞ୍ଚବାଣ ଗୁଣରେ ବସାଇ ।
ରାଜା ଉପରକୁ ମନ୍ତ୍ରି ବେଗଗଣ ପେଷଇ ॥
ଶରଘାତେ ଯୁବନାଶ୍ୱ ହେଲେ ମୂର୍ଚ୍ଛାଗତ ।
ରଥରୁ ଭୂମିରେ ଢଳି ପଡ଼ିଲେ ତୁରିତ ॥
ରାଜା ପଡ଼ିଯିବା ଦେଖି କର୍ଣ୍ଣର ନନ୍ଦନ ।
ସେଠାରେ ପ୍ରବେଶ ହେଲେ ଯାଇଣ ବହନ ॥
ରାଜା ଅଚେତନ ଦେଖି ବୃଷକେତୁ ବୀର ।
ଆପଣା ଚଦର କାନି ଧରିଣ ହସ୍ତର ॥
ବିଞ୍ଚିଣ ରାଜା ଅଙ୍ଗକୁ ଆଉଁସନ୍ତି ବୀର ।
ଦେହୁ ଶର କାଢ଼ି ମନସ୍ତାପ ଗୁରୁତର ॥
ମୁଖେ ମୁଖ ଦେଇଣ ରୋଦନ୍ତି ବୀରମଣି ।
ହା ହା ଯୁବନାଶ୍ୱ ରାଜା ହେଲ ହତଜ୍ଞାନୀ ॥
ଆହେ ଦୟାମୟ ପ୍ରଭୁ ଘେନ ମୋ ଜଣାଣ
ଯୁବନାଶ୍ୱ ମହାରାଜ ଲଭୁଁ ଏଥେ ଜ୍ଞାନ ॥
ଆତଙ୍କେ ପଡ଼ିଣ ଡାକୁଅଛୁ ଦୀନହୀନ ।
ପତିତଙ୍କୁ ତାହୁକର ପତିତପାବନ ॥
ହେ ଦୁଃଖନାଶନ ଏ ଦୁଃଖୀର ହୁଅ ସାହା ।
ଦୟାକର ଜ୍ଞାନ ଲଭନ୍ତୁ ଏ ନରନାହା ॥
ମୋର ନିବେଦନ କର୍ଣ୍ଣେ ଶୁଣ ହେ ଶ୍ରୀହରି
ବିପଦାର୍ଣ୍ଣବରୁ ମୋତେ ରଖ ହେ ଉଦ୍ଧରି ॥
ବିପଦେ ପଡ଼ି ତୁମ୍ଭଙ୍କୁ ଡ଼ାକେ ଯେଉଁ ଜନ ।
ତାହାକୁ ସେ ବିପଦରୁ କର ପରିତ୍ରାଣ ॥
ଶୁଣିଅଛୁ ହରିଣୀକି ପଡ଼ିଲା ବିପତ୍ତି ।
ତାହାକୁ ଉଦ୍ଧାର କଲ ଦେବ ଯଦୁପତି ॥
ଗଜକୁ ରକ୍ଷା କରିଲ ସମୁଦ୍ର ମଧ୍ୟରେ ।
ଚକ୍ର ପେଶି ନକ୍ର ମୁଣ୍ଡ କାଟିଲ ସତ୍ୱରେ ॥
ଦେବ ଶିରୀପତି ବାରେ ଘେନ ମୋ ଜଣାଣ
ଜ୍ଞାନ ଲଭନ୍ତୁ ଏ ଯୁବନାଶ୍ୱ ନୃପରାଣ ॥
ଯୁବନାଶ୍ୱ ରାଜା ପ୍ରାଣ ପାଇବା ନିମନ୍ତେ ।
ବୃଷକେତୁ ଜଣାଇଲା ଶ୍ରୀକୃଷ୍ଣ ଅଗ୍ରତେ ॥
ଯେଉଁପରି ଯୁବନାଶ୍ୱ ଲଭିବେ ପରାଣ ।
ଏ ପ୍ରାର୍ଥନା କରେ ବୀର ଶ୍ରୀକୃଷ୍ଣ ପାଦେଣ ॥
ଏମନ୍ତ ସମୟେ ରାଜା ଲଭିଲେକ ଜ୍ଞାନ ।
ଉଠି ଠିଆହେଲେ ବୃଷକେତୁ ହୃଷ୍ଟମନ ॥

ରାଜନ ବୋଲନ୍ତି ବୃଷକେତୁ ବୀରବର ।
ଆଜ ପ୍ରାଣ ଦାନଦେଲ ଏ ଯୁଦ୍ଧସ୍ଥଳର ॥
ତୁମ୍ଭେ ଚେଷ୍ଟା ନ କରିଲେ ଯାଇଥାନ୍ତା ପ୍ରାଣ
ତୁମ୍ଭର ନିମନ୍ତେ ବୀର ଲଭିଲି ଜୀବନ ॥
ଛୁଟିଲ ମୋର ମୂର୍ଚ୍ଛାରେ ତୁମ୍ଭେ ହୋଇ ବେସ୍ତ
ଅନେକ ସେବା କରିଛ ଆହେ କର୍ଣ୍ଣସୁତ ॥
ପ୍ରକୃତ ବନ୍ଧୁ ନ ଶତ୍ରୁ ହୋଇଥିଲି ଭୋଳ ।
ମୋ ତ୍ରୁଟି ମାର୍ଜନା କର କୃତାର୍ଥ ସଫଳ ॥
ଆଜଠାରୁ ଏ ଜୀବନ ତୁମ୍ଭର ଅଟଇ ।
ଅଶ୍ୱ ପାଇଁ ଯୁଦ୍ଧ କରିବାର ନ ଯୋଗାଇ ॥
ସୁତସୁତା ରାଜ୍ୟଧନେ ଇଚ୍ଛା ନାହିଁ ମୋର ।
ପ୍ରାଣ ଦାନ ଦେଲ ତୁମ୍ଭେ ମୁଁ ତୁମ୍ଭ କିଙ୍କର ॥
ସଂସାର ସୁଖରେ ଅଉ ମୋର ଆଶା ନାହିଁ ।
ତୁମ୍ଭ ଶ୍ରୀମୁଖ ଦର୍ଶନ କରୁଥିବି ରହି ॥
ଆହେ ବୀରବର ତୁମ୍ଭେ ମୋର ପ୍ରାଣଦାତା ।
ଆଜୁ ମୋ ଜୀବନେ ତୁମ୍ଭେ ଅଟ ହର୍ତ୍ତାକର୍ତ୍ତା ॥
ତୁମ୍ଭ ସୁଗୁଣରେ ମୁଗ୍ଧ ହେଲା ଏ ଜୀବନ ।
ତୁମ୍ଭ ସକାଶେ ଦେଖିବି ପ୍ରଭୁ ଜନାର୍ଦ୍ଦନ ॥
ଜଗତକର୍ତ୍ତାଙ୍କୁ ମୁହିଁ ନୟନେ ଦେଖିବି ।
ଜନ୍ମଜନ୍ମାନ୍ତର ପାପ ସବୁ ଉପେଛିବି ॥
ରାଜ୍ୟଧନ ସମ୍ପଦରେ କିଛି ନାହିଁ ଫଳ ।
ଜୀବନ ଉଦ୍ଧାର କର୍ତ୍ତା ପ୍ରଭୁ ଅଦ୍ୟମୂଳ ॥
ସମ୍ପଦ ଆଶାରେ ତୁମ୍ଭ ସଙ୍ଗେ କଲେ ରଣ ।
କୁତ୍ସିତ ବୋଲି ବୋଲିବେ ଜଗତର ଜନ ॥
ଲୋକ ମୁଖେ ଅପଯଶ ଘଟିବ ବହୁତ ।
ରାଜା ପ୍ରାଣଦାତା ସଙ୍ଗେ କଲେ ମନ୍ଦ କୃତ୍ୟ
ବୀର ବୃଷକେତୁ ଶୁଣ ମୋହର ଉତ୍ତର ।
ଏତକ ମାତ୍ର ମାଗୁଣି ତୁମ୍ଭଠାରେ ମୋର ॥
ମୋତେ ନେଇ ଭୀମସେନେ କରାଅ ଦର୍ଶନ ।
ତାଙ୍କ ଦର୍ଶନ ନିମିତ୍ତ ବ୍ୟାକୁଳ ମୋ ମନ ॥
ବିଳମ୍ବ ନ କର ମୋତେ ନିଅ ବୀରବର ।
ଦର୍ଶନ କରାଅ ମୋତେ ପବନ କୁମର ॥
ଶୁଣିଅଛୁ କର୍ଣ୍ଣ ବୀର ଦେଇ ନିଜଧନ ।
ଜଗତରେ ଦାତାପଣେ ହୋଇଲେ ପ୍ରଧାନ ॥
ଦାତା କର୍ଣ୍ଣ ବୋଲି ନାମ ପୃଥିବୀରେ ପାଇ ।
ପିତୃଗୁଣ ତୁମ୍ଭଠାରେ ଏବେ ଦେଖିଲଇଁ ॥

ଦୟାମୟ ହୃଦ ପାର ନ ହୁଏ ସମ୍ଭାଳ ।
ଶତ୍ରୁ ବିପଦେ ପଡ଼ିଲେ ଅଣାଇ ଉଦ୍ଧାର ॥
ମୋର ପ୍ରତି ଯେଉଁ ପର ତୁମ୍ଭ ବ୍ୟବହାର ।
କଲ ସମ୍ମୁଖେ ଦେଖିଲେ ସଇନ ମୋହର ॥
ଶୁଣିବାକୁ ଅସମ୍ଭବ ଦେଖିଲେ ନୟନେ ।
ପ୍ରାଣ ଥିବାଯାଏ ତୁମ୍ଭ କୀର୍ତ୍ତିଥିବ ମନେ ॥
ବୀର ଭୀମସେନ ସୁବେଗର ସଙ୍ଗେ ରଣ ।
ଉଭୟେ ଯୁଦ୍ଧରେ ହୋଇଥିଲେ ହତଜ୍ଞାନ ॥
ଚଲ ବୀର ସେଠାକୁ ଯିବା ହେ ବହନ ।
ତାଙ୍କୁ ନ ଦେଖିଣ ହୁଏ ବ୍ୟାକୁଳ ମୋ ମନ
କପଟ ନ ରଖି ବୀର ମୋତେ ସଙ୍ଗେ ନିଅ ।
ଭୀମସେନ ଠାକୁରଙ୍କୁ ଦର୍ଶନ କରାଅ ॥
ଦ୍ୱାରକାନାଥ ଚରଣେ ସଦା ମନ ଥାଉ ।
କ୍ଷିତିମହାଦେବ ଭବଭୟ ଦୂର ହେଉ ॥

ଇତି ଶ୍ରୀ ଜୈମିନିଭାରତେ ହରିଭକ୍ତ
ରସଲୀଳା କଥା ପ୍ରବନ୍ଧେ ନାମପଞ୍ଚମୋଽଧ୍ୟାୟଃ

—o—

## ଷଷ୍ଠ ଅଧ୍ୟାୟ

ଯଦା ଯଦା ସତ୍ୟଂ ଗ୍ଲାନର୍ଜାୟତେ ଭୂବିଭାରତ
ତଦା ତଦା ସ୍ୱୟଂ କୃଷ୍ଣସ୍ତୀତା ଭବତ ଯସ୍ତୁତିଃ

### ଯୁବନାଶ୍ୱ ଓ ବୃଷକେତୁ

ଭୀମସେନ ନିକଟକୁ ଗମନ ଓ ଭୀମସେନଙ୍କୁ
ଯୁବନାଶ୍ୱ ରାଜାର ଅଭ୍ୟର୍ଥନା ଓ ସୈନ୍ୟ
ସହ ହସ୍ତିନା ପୁରୀ ଗମନ

ବୋଲନ୍ତି ଶଙ୍କର ତୁମ୍ଭେ ଶୁଣ ଗୋ ପାର୍ବତୀ ।
ଜୈମିନି ଭାରତ ଶୁଣି ଚିତ୍ତ କର ଶାନ୍ତ ॥
ଜନ୍ମେଜୟଙ୍କୁ ଜୈମିନି ବୋଲନ୍ତି ବଚନ ।
ବୃଷକେତୁ ଯୁବନାଶ୍ୱ ଚଳିଲେ ବହନ ॥
ଯହିଁ ଭୀମସେନ ସୁବେଗ ଯେ ରଣ କର ।
ଅଚେତନ ହୋଇ ପଡ଼ିଛନ୍ତି ବସୁନ୍ଧରା ॥
ଯୁବନାଶ୍ୱ ବୃଷକେତୁ ଦେଖିଲେ ନେଏର ।
ମୋହେ ପଡ଼ିଣ ଅଛନ୍ତି ସେହୁ ଦେନି ବୀର ॥
ଦୁହିଁଙ୍କୁ ତହୁଁ ଉଠାଇ କଲେ ଆଶ୍ୱାସନା ।
ଭୀମ ସୁବେଗ ଯେ ତହୁଁ ଲଭିଲେ ଚେତନା ॥
ଚେତନା ପାଇଣ ଦୁହେଁ କ୍ରୋଧଭର ହେଲେ
ରଣ କରନ୍ତେଣ ରାଜା ନିବାରଣ କଲେ ॥
ନାନା ପ୍ରକାରେ ଦେନିଙ୍କୁ ବୁଝାଇ କହିଲେ
ରାଜାବାକ୍ୟେ ଦୁଇ ବୀରେ ନିବୃତ୍ତ ହୋଇଲେ
ଭୀମ ଭୟଙ୍କର ରୂପ ଦେଖିଣ ରାଜନ ।
ଶାନ୍ତ କରାଇଲେ କହି ବିନୟ ବଚନ ॥
କ୍ଷମାକର ଅପରାଧ ବାରେ ଏ ଦାସର ।
ନ ଚିହ୍ନିଣ କରିଅଛି ମନ୍ଦ ବ୍ୟବହାର ॥
ନିଜଗୁଣେ କ୍ଷମା କର ମୋ ଦୋଷ ସକଳ ।
କରଯୋଡ଼ି କହୁଅଛି ଆହେ ମହାବଳ ॥
ତବ ଦର୍ଶନରେ ମୁହିଁ ହୋଇଛି ପବିତ୍ର ।
କ୍ଷମାକର ପୂର୍ବ ଅପରାଧ ପଣ୍ଡୁ ସୁତ ॥
ସାଧୁଜନ ଦରଶନେ ପାପ ନାଶ ଯାଏ ।
ଶାସ୍ତ୍ର ପୁରାଣରେ ଲେଖିଅଛନ୍ତି ଋଷିଏ ॥
ଏ ପାପ ଜୀବନ ତୁମ୍ଭ ଦରଶନ ପାଇ ।
ପାପଶୂନ୍ୟ ହେଲା ମୋର ଯମ ଭୟ ନାହିଁ ॥
ପୂର୍ବଜନ୍ମ ଏ ଜନ୍ମେ ମୋ ଯେତେ ପାପ ଥିଲା
ତୁମ୍ଭ ଦର୍ଶନରେ ବୀର ସମସ୍ତ ଧୁଇଁଲା ॥
ବୀର ବେଶ ଛାଡ ବୀର କୋପ ଶାନ୍ତ କର ।
ଦାସ ପ୍ରତି କୋପକଲେ ଏ ନିନ୍ଦା କାହାର ॥
ସୁବେଗ ବାଳକ ନୁହେ ତୁମ୍ଭ ସମ ସର ।
ତୁମ୍ଭ ନାମେ କମ୍ପିତ ହୁଅଇ ବଜ୍ରଧାରୀ ॥
ତୁମ୍ଭ ଭାର ପୃଥ୍ୱୀଦେବୀ ସହି ନ ପାରଇ ।
ଗର୍ଜି ଚଲିଲେ ପାତାଳେ ବାସୁକୀ କମ୍ପଇ ॥
ତୁମ୍ଭ ଗଦା ବକ୍ଷେ ଦେଖି ଭୟେ ଜନ୍ମୁପତି ।
ପ୍ରାଣ ଭୟରେ ଚଳନ୍ତି ପ୍ରଭୁ ଶିରୀପତି ॥
କ୍ଷଣେ ତୁଉ ବିଧାନରେ ସୁବେଗ କୁମର ।
ଦୁହିଁ ନ ପଳାଇ ଯୁଦ୍ଧ କଲା ସମ୍ମୁଖର ॥
ଯାହାହେଉ ସର୍ବ ଦୋଷ ମୋର ବୀରବର ।
କ୍ଷମା କର ଶାନ୍ତ ହୁଅ ପବନ କୁମର ॥
ମୋର ମନ୍ଦିରକୁ ଦେବ କରନ୍ତୁ ଗମନ ।
ଆଜଠାରୁ ଏ ଜୀବନ କଲି ସମର୍ପଣ ॥
ଏ ପ୍ରାଣ ତୁମ୍ଭର ଏହି ରାଜ୍ୟହିଁ ତୁମ୍ଭର ।
ମନେ ଆନ ନ ବିଚାର ଦେବ ବୃକୋଦର ॥
ଯୁବନାଶ୍ୱ କର ଯୋଡ଼ି ହୁଅଇ ବିନୀତ ।
ଏ ସମୟେ ମେଘବର୍ଣ୍ଣ ହେଲେ ଉପସ୍ଥିତ ॥

ଯାଗ ଅଶ୍ୱ ସଙ୍ଗତରେ ଅଛନ୍ତି ସେନାଣ ।
ଯାହା ପାଇଁ ହଣାହଣି ଉଭୟ ସଇନ ॥
କାହିଁ ବା ହସ୍ତିନା କାହିଁ ପ୍ରଭାବତୀ ପୁର ।
କାହିଁ ଯୁବନାଶ୍ୱ ରାଜା କାହିଁ ଯୁଧିଷ୍ଠିର ॥
କାହିଁ ଯଜ୍ଞ ହେବ କାହିଁ ଅଛି ଯାଗଅଶ୍ୱ ।
କାହିଁ ବୃଷକେତୁ ବୀର କାହିଁ ଯୁବନାଶ୍ୱ ॥
କାହିଁ ଭୀମସେନ ବୀର ସୁବେଗ କୁମର ।
କିଏ ହରନେଲା ଅଶ୍ୱ କରଣ ଅଜ୍ଞାର ॥
ବିଧିର ମାୟା ଅଟଇ ଏ ମାୟା ସଂସାର ।
ସର୍ବେ ବୋଲୁଛନ୍ତି ଏହି ସବୁ ମୋର ମୋର
ଆପଣା ଦେହଟି ଆପଣାର ନୁହେଁ ଜାଣ ।
ବସ୍ତୁ କୂଟ ମାୟା ଏହୁ ସଂସାର ଭିଆଣ ॥
ଏହା ଶୁଣି ସର୍ବେଶାନ୍ତ ମୂରତି ହୋଇଲେ ।
ଏ ସମୟେ ଯୁବନାଶ୍ୱ ସମାଦର କଲେ ॥
ସୈନ୍ୟ ସହ ଭୀମଙ୍କୁ ସେ ପ୍ରାର୍ଥନା କରନ୍ତି ।
ମୋ ପୁରେ ଚାଲନ୍ତୁ ଆହେ ଦ୍ରୌପଦୀଙ୍କ ପତି
ବହୁମାନ୍ୟ କରି ତିନି ବୀରଙ୍କୁ ବସାଇ ।
ପୂଜେ ବିଧିମତେ ନାନା ଉପଚାର ଦେଇ ॥
ପାର୍ଶ୍ୱ ମନ୍ତ୍ରୀ ଅମନାତ୍ୟ ସମସ୍ତେ ଅଛନ୍ତି ।
ପ୍ରେମେ ପ୍ରଭୁଙ୍କ ମହିମା ରାଜନ ବୋଲନ୍ତି ॥
ହେ ଶ୍ରୀହରି ତବ ମାୟା ଦେବେ ଅଗୋଚର
ଅଚ୍ୟୁତ ଅନନ୍ତ ପ୍ରଭୁ ଜଗତ ଈଶ୍ୱର ॥
ତୁମ୍ଭଠାରୁ ସର୍ବକାର୍ଯ୍ୟ ହୁଏ ଭବେ ଜାତ ।
ସୃଷ୍ଟି ସ୍ଥିତି ପ୍ରଳୟର ତୁମ୍ଭେ ଆଦିଅନ୍ତ ॥
ସପତ ବ୍ରହ୍ମାଣ୍ଡ ସ୍ୱର୍ଗ ସପତ ପାତାଳ ।
ଆହେ ଦାମୋଦର ଏ ସମସ୍ତ ତବ ଖେଳ ॥
ବାଳକ ଯେପରି ଧୂଳିଘର କରି ଖେଳେ ।
ଖେଳସାରି ଘର ଭାଙ୍ଗି ମନ୍ଦିରକୁ ଗଲେ ।
ସେହିପରି ଏ ସଂସାର ଆହେ ନାରାୟଣ ॥
ଲୀଳା ଖେଳ ପରି ତୁମ୍ଭେ କର ଅନୁକ୍ଷଣ ॥
ସମସ୍ତଙ୍କୁ ସଂସାର ମାୟାରେ ଭୁଲାଉଛ ।
କାହାକୁ ହସାଇ କାହାକୁ ଯେ କନ୍ଦାଉଛ ।
ହସାଅ ଯାହାକୁ ପୁଣି କନ୍ଦାଅ ତାହାକୁ ।
ପ୍ରାଣୀମାନେ ନ ଜାଣନ୍ତି ତୁମ୍ଭର ମାୟାକୁ ॥
ନାନାସ୍ଥାନେ ନାନାଲୀଳା ଲଗିଛି ତୁମ୍ଭର ।
ଏହୁ ସଂସାର ଅଟଇ ତୁମ୍ଭ ଖେଳ ଘର ॥
ନାନାରୂପ ହେତୁ ବୋଲାଉଛ ନିରାକାର ।
ଭକ୍ତ ବାଞ୍ଛା ପୂର୍ଣ୍ଣକାରୀ କରୁଣା ସାଗର ॥
ସଂସାର ଖେଳା ନିମନ୍ତେ ଆକାର ବହିଣ ।
ଭକ୍ତବାଞ୍ଛା ପୂର୍ଣ୍ଣକର ଆହେ ଜନାର୍ଦ୍ଦନ ॥
କୃଷ୍ଣରୂପେ ଜନମ ଲଭିଲ ଗୋପପୁରେ ।
ରାମରୂପେ ଜନ୍ମିଥିଲ ଅଯୋଧ୍ୟା ନଗରେ ॥
ଯୁଗାନୁସାରେ ଜନ୍ମି ଣ କରୁଥାଅ ଖେଳା ।
ଦୁଷ୍ଟନାଶି ସନ୍ଥପାଳ ପ୍ରଭୁ ଚକାଡୋଳା ॥
ଚକ୍ରପାଣି ତୁମ୍ଭ ଚକ୍ର କିଏ ବା ବୁଝିବ ।
ତୁମ୍ଭ ମାୟାରେ ଭୁଲନ୍ତି ବ୍ରହ୍ମା ଇନ୍ଦ୍ରଶିବ ॥
ପାଣ୍ଡବଙ୍କୁ ସହାୟ ସର୍ବଦା କାଳେ କାଳେ ।
ଏଣୁ ପାଣ୍ଡବଙ୍କ ଯଶ ହୁଏ ରବିତଳେ ॥
ଯୁବନାଶ୍ୱ ଏତେ କହି ଭୀମଙ୍କ ଅଗ୍ରତ ।
ବାସୁଦେବ ଦର୍ଶନରେ ବ୍ୟଗ୍ରକଲେ ଚିତ୍ତ ॥
ବୀରବର ମୋତେ ନେଇ ଭେଟାଅ ଶ୍ରୀହରି ।
ଆଜଠାରୁ ମୁହିଁ ତୁମ୍ଭର ଯେ ଆଜ୍ଞାକାରୀ ॥
ଆହେ ବୀରଶ୍ରେଷ୍ଠ ତୁମ୍ଭେ କର୍ଣ୍ଣଙ୍କ କୁମର ।
ପୃଥିବୀ ମଧ୍ୟରେ ଅଟ ଏକା ଧନୁର୍ଦ୍ଧର ॥
ତ୍ରିଲୋକ ବିଜୟୀ ତୁମ୍ଭେ ସମରେ କୁଶଳ ।
ତବ ବୀରତେଜେ କମ୍ପୁଥାଏ ଧରାତଳ ॥
ଏ ସମୟେ ଦୟାକରି ମୋହର ଜୀବନ ।
ରକ୍ଷାକରି ପୃଥ୍ୱୀରେ ବୋଲାଇଲ ଧନ୍ୟ ॥
ପ୍ରାଣଦାନ କରି ପ୍ରାଣଦାତା ବୋଲାଇଛ ।
ନିଷ୍ପଟେ କହୁଅଛି ମୋ ପ୍ରାଣ ରଖିଛ ।
ତ୍ରିଜଗତେ ପ୍ରାଣଦାତାଠାରୁ ଗୁରୁ ନାହିଁ ।
ଏଣୁକରି ତୁମ୍ଭ ଯୁଦ୍ଧେ ଭଙ୍ଗଦେଲି ମୁହିଁ ॥
ତୁମ୍ଭଠାରେ ଅନ୍ୟ ଏକ ପ୍ରାର୍ଥନା ମୋ ଅଛି ।
ସେ ବାସନା ପୂର୍ଣ୍ଣକର ଆହେ କର୍ଣ୍ଣବଂଶି ॥
ମୋର ଏ ଜୀବନ ବାସୁଦେବ ଶ୍ରୀଚରଣେ ।
କେବେ ସମର୍ପଣ ହେବ ସଦା ଭାବେ ମନେ
ପାପୀର ଜୀବନ ସାଧୁସଙ୍ଗ ନ ହୋଇଲେ ।
ମୁକତ ନ ପାଏ ଜାଣ ଶାସ୍ତ୍ର ଏହା ବୋଲେ
ଧର୍ମ ଯୁଧିଷ୍ଠିଙ୍କି ମୁଁ କରିବି ଦରଶନ ।
ସର୍ବ ପାପ ତାପରୁ ଲଭିବ ପରିତ୍ରାଣ ॥
ତାଙ୍କ ପାଶେ ରହି ଧର୍ମକାର୍ଯ୍ୟ ମୁଁ ଶିଖିବ ।
ଧର୍ମକାର୍ଯ୍ୟ କରି ଅଙ୍ଗୁ ପାପ ଉପେକ୍ଷିବ ॥

ଅମ୍ଭୀଯ୍ୟ ସ୍ୱଜନ ପରିବାର ପୁତ୍ର ନାତି ।
ଆଉ ଯେତେ ପରିଜନ ସକଳ ସମ୍ପତ୍ତି ॥
ଏ ସବୁ ମୋହର ବୋଲି ଯେଉଁ ଅଭିମାନ
ଆଜିଠାରୁ ଶ୍ରୀକୃଷ୍ଣେ ତା କଲି ସମର୍ପଣ ॥
ତାଙ୍କ ଧନ ତାଙ୍କୁ ଦେବି ମୋର ଅଛି କିସ ।
ଅଜ୍ଞାନେ ମାୟାଜାଲେ ଥିଲି ମୁହିଁ ବଶ ॥
ଦେଖ ମୋ ଅସଂଖ୍ୟ ହାତୀ ଘୋଟକମାନଙ୍କୁ
ଏ ସମସ୍ତ ସମର୍ପିବି ଯୁଧିଷ୍ଠି ରାଜାଙ୍କୁ ॥
ସବୁ ହସ୍ତୀନେଇ ଯାଗ ଅଶ୍ୱ ସହିତରେ ।
ଭ୍ରମଣ କରିବ ଯଜ୍ଞେ ପ୍ରହରି ରୂପରେ ॥
ବୀର ବୃକୋଦର ମୋତେ ପ୍ରସନ୍ନ ହୋଇଣ
ଏହୁ କରିବର ପୃଷ୍ଠେ କର ଆରୋହଣ ॥
ପ୍ରାଣଦାତା ବୃଷକେତୁ ଏହି ଅଶ୍ୱପରେ ।
ଆରୋହଣ କରି ଚଳ ଏ ଅଧମ ପୁରେ ॥
ମୋହର ପ୍ରାର୍ଥନା ଘେନା କର ବୀରମଣି ।
ମୋ ପୁରକୁ ଗମନ କରନ୍ତୁ ଏ ଦିନ୍ତିନ ॥
ତୁମ୍ଭ ପାଦ ପଡ଼ିଲେ ଏ ପ୍ରଭାବତୀ ପୁର ।
ପାପ ତାପ ନାଶ ଯିବ ଏ ବାଞ୍ଛା ମୋହର ॥
ଯୁବନାଶ୍ୱ ନୃପବାକ୍ୟେ ବୀର ବୃକୋଦର ।
ଯିବା ପାଇଁ ଆଜ୍ଞା ଦେଲେ ପ୍ରଭାବତୀପୁର ॥
ମନ ଆନନ୍ଦରେ ଯୁବନାଶ୍ୱ ନରସାଇଁ ।
ପାତ୍ରମନ୍ତ୍ରୀ ଅନୁଚର ଗଣେ ଆଜ୍ଞା ଦେଇ ॥
ପ୍ରଭାବତୀପୁର ଯିବେ ବୀର ବୃକୋଦର ।
ଆଜ୍ଞାଦିଅ ସମସ୍ତଙ୍କୁ ମଣ୍ଡନ୍ତୁ ନଗର ॥
ରାଜପୁରୀ ଆଦି ସର୍ବ କରନ୍ତୁ ମଣ୍ଡନ ।
ବୃଷକେତୁ ବୀର ଯିବେ କର୍ଣ୍ଣଙ୍କ ନନ୍ଦନ ॥
ରୋପଣ କର ପତାକା ପତାକା ନଗରେ ।
କର୍ପୂର ଚନ୍ଦନ ଛେରା ଦିଅନ୍ତୁ ବାଟରେ ॥
ପ୍ରତିଦ୍ୱାରେ କରିଥାନ୍ତୁ କଦଳୀ ରୋପଣ ।
ଆମ୍ବଡାଳି ତହିଁ ପରେ ହେଉ ସୁଶୋଭନ ॥
ଦ୍ୱାରେ ଦ୍ୱାରେ ପୂର୍ଣ୍ଣକୁମ୍ଭ ସ୍ଥାପନ କରିବ ।
ମଙ୍ଗଳ କାର୍ଯ୍ୟରେ ନର ନାରୀ ରହିଥିବ ॥
ପ୍ରଭାବତୀ ରାଣୀ ଯଥା ବିଧି ବିଧାନରେ ।
ହେଉନ୍ତୁ ପ୍ରସ୍ତୁତ ସର୍ବ ସଖୀ ଗହଣରେ ॥
ଦେବତା ପରି ପୂଜନ୍ତୁ ବୀର ଭୀମସେନେ ।
ମୋର ପ୍ରାଣଦାତା ବୀର କର୍ଣ୍ଣଙ୍କ ନନ୍ଦନେ ॥

ଘଟୋତ୍କଚ ସୁତ ମେଘବର୍ଣ୍ଣ ନାମ ଯାର ।
ବିଧିମତେ ସମ୍ମାନ ଲଭନ୍ତୁ ଯେ ପ୍ରକାର ॥
ରାଜାଙ୍କ ଆଦେଶେ ଚର ବେଗେ ଚଳିଗଲା ।
ଏ ସର୍ବ ବୃତ୍ତାନ୍ତ ପୁରବାସୀଙ୍କୁ କହିଲା ॥
ରାଜାପୁରେ ପ୍ରବେଶିଣ କହିଲା ସମସ୍ତ ।
ଶୁଣି ପ୍ରଭାବତୀ ରାଣୀ ହେଲେ ଆନନ୍ଦିତ ॥
ପୁରବାସୀମାନେ ଚର ମୁଖରୁ ଶୁଣିଲେ ।
ରାଜାଙ୍କ ଆଦେଶ ପାଇ ପୁର ମଣ୍ଡାଇଲେ ॥
ପ୍ରଭାବତୀ ରାଣୀ ସର୍ବ ସଖିଗଣ ତୁଲେ ।
ନାନା ଅଳଙ୍କାର ଅଙ୍ଗେ ଆଭରଣ ହେଲେ ॥
ଯୁବନାଶ୍ୱ ରାଜା ସର୍ବ ସୈନ୍ୟ ଘେନି ଚଲେ
ଭୀମସେନ ବୃଷକେତୁ ମେଘବର୍ଣ୍ଣ ତୁଲେ ॥
ପ୍ରଭାବତୀ ପୁରେ ଯାଇଁ ହୋଇଲେ ପ୍ରବେଶ ।
ପୁରଶୋଭା ଦେଖି ଭୀମ ହୋଇଲେ ହରଷ ॥
ଭୀମସେନ ବୀର ଆଗେ ପଛେ ମେଘବର୍ଣ୍ଣ ।
ତାର ପଛେ ବୃଷକେତୁ ଦିଶଇ ଶୋଭନ ॥
ଯୁବନାଶ୍ୱ ରାଜା ତାଙ୍କ ପଛେ ଆସୁଛନ୍ତି ।
ତାହାଙ୍କ ପଛେ ସୁବେଗ ସଇନ ଆସନ୍ତି ॥
ରାଜପୁର ଦ୍ୱାରେ ଆସି ହୋଇଲେ ପ୍ରବେଶ ॥
ଦେଖି ପ୍ରଭାବତୀ ରାଣୀ ହୋଇଣ ଉଲ୍ଲାସ ॥
ସୁବର୍ଣ୍ଣ ଥାଳିରେ ପୁଷ୍ପ ଚନ୍ଦନ ଘେନିଣ ।
ରତ୍ନ ଦୀପାବଳି କନ୍ୟା ଘେନିଲେ ବନ୍ଦନ ॥
ସିଂହଦ୍ୱାରେ ପ୍ରବେଶ ହୋଇଲେ ନାରୀବର ।
ଭୀମସେନେ ବନ୍ଦାପନା କରିଲେ ସତ୍ୱର ॥
ପ୍ରଭାବତୀ ରାଣୀ ପଚାରନ୍ତି ବିନୟର ।
ଦୟା ବହି କୁହ କର୍ଣ୍ଣସୁତ କେଉଁ ବୀର ॥
ଅମ୍ଭ ସ୍ୱାମୀଙ୍କୁ ଜୀବନ ଦାନ ଦେଇଛନ୍ତି ।
ଏଣୁକରି ଅମ୍ଭର ସେ ଦେବତା ଅଟନ୍ତି ॥
ନାରୀର ସକଳ ଧର୍ମ ପତି ତାହାଙ୍କର ।
ପତି ବିନା ନାରୀଜନ୍ମ ସଂସାରେ ଅସାର ॥
ବୃଷକେତୁ ବୀର ଦେଇଛନ୍ତି ପତିଦାନ ।
ତାଙ୍କ ଯୋଗେ ଏ ପାପୀର ରହିଛି ଜୀବନ ॥
ଧନ୍ୟ ତୁମ୍ଭ ପିତା ମାତା ଧନ୍ୟ ତୁମ୍ଭ ବୁଦ୍ଧି ।
ଯାହାଠାରୁ ସଂସାରରେ ଅଟଇ ପ୍ରସିଦ୍ଧି ॥
ଦୟାମୟ ଶ୍ରୀପତି ତୁମ୍ଭଙ୍କୁ ରଖନ୍ତୁ ।
କାଳେ କାଳେ ତୁମ୍ଭଙ୍କୁ ଏ ସୁବୁଦ୍ଧି ଦିଅନ୍ତୁ ।

ନାନାମତେ ବିନୟରେ ପ୍ରଭାବତୀ ରାଣୀ ।
ସମସ୍ତଙ୍କୁ ବନ୍ଦାଇଲେ ସଖୀଗଣ ଘେନି ॥
ବିଧିମତେ ସମସ୍ତେ ଆସନ ପରେ ବସି ।
କଥାଭାଷା ହୋଇକରି ମନେ ହେଲେ ଖୁସି ॥
କେତେକ ସମୟ ଏହିପରି ଗଲା ବହି ।
ସୂପକାର ଜଣାଇଲା ରାଜା ପାଶେ ଯାଇଁ ॥
ଭୋଜି ଦେବ ଆସନ୍ନ ହେଲା ମନୋହର ବେଳ
ସମସ୍ତଙ୍କୁ ଘେନି ରାଜା ଉଠିଲେ ଚଞ୍ଚଳ ॥
ଯଥାସ୍ଥାନେ ସମସ୍ତଙ୍କୁ ଘେନିଣ ରାଜନ ।
ହସ୍ତ ପଖାଳିଣ ସର୍ବେ କରିଲେ ଭୋଜନ ॥
ପ୍ରଭାବତୀ ରାଣୀ ପରୁଷନ୍ତି ବିନୟରେ ।
କି ପଦାର୍ଥ ଦେବି ଲଜ୍ଜା ଛାଡ଼ କୁହ ବାରେ ॥
ଶାସ୍ତ୍ରେ ଲେଖାଅଛି ଗୀତ ବାଦ୍ୟ ପଠନରେ
ନୃତ୍ୟ ସଂଗ୍ରାମରେ ଯେ ଆହାର ବ୍ୟବହାରେ
ଏତେ ସ୍ଥାନେ ଲଜ୍ଜା କରିବାର ଅନୁଚିତ ।
ଆପଣମାନେ ଜାଣନ୍ତି ଶାସ୍ତ୍ରରେ ଉକତ ॥
ଦାସୀଠାରେ ଏହି କୃପା ସଦା ରଖିଥାଅ ।
ସ୍ୱାମୀ ପୁଅଙ୍କୁ ମୋହର ହେଉନ୍ତୁ ସଦୟ ॥
ରାଣୀର ବିନତ ବାଣୀ ଶୁଣି ଭୀମସେନ ।
ଧନ୍ୟ ପ୍ରଭାବତୀ ରାଣୀ ତୁମ୍ଭ ବୁଦ୍ଧି ଧନ୍ୟ ॥
ମେଘବର୍ଣ୍ଣ ବୃଷକେତୁ ଯୁବନାଶ୍ୱ ବୀର ।
ଭୋଜନାନ୍ତେ ଆଚମନ କଲେକ ସତ୍ୱର ॥
ତାମ୍ବୁଳ ଲାଗି ହୋଇଣ କଲେକ ଶୟନ ।
ପ୍ରଭାତ ସମୟେ ସର୍ବେ ଉଠିଲେ ବହନ ॥
ମୁଖ ପ୍ରକ୍ଷାଳନ ଆଦି ନିତ୍ୟକ୍ରିୟା ସାରି ।
ସିଂହାସନେ ବିଜୟ କଲେକ ଦଣ୍ଡଧାରୀ ॥
ମନ୍ତ୍ରୀଙ୍କୁ ଡାକିଣ ରାଜା ବୋଲନ୍ତି ବଚନ ।
ମୋର ଆଜ୍ଞା ଜଣାଇବ ସର୍ବ ପ୍ରଜାଗଣ ॥
ସମସ୍ତେ ଏକତ୍ର ହୋଇ ଏଠାକୁ ଆସିବେ ।
ଆମ୍ଭସଙ୍ଗେ ସଙ୍ଗହୋଇ ହସ୍ତିନାକୁ ଯିବେ ॥
ପ୍ରଭାବତୀ ରାଣୀକୁ କହିଲେ ନରବର ।
ଅନ୍ତଃପୁର ନାରୀ ଘେନିଆସ ହେ ସତ୍ୱର ।
ଆଜ ହସ୍ତିନାକୁ ଯିବା ଶ୍ରୀକୃଷ୍ଣ ଦର୍ଶନେ ।
ଧର୍ମରାଜାଙ୍କୁ ଦେଖିବା ହରଷିତ ମନେ ॥
ଦ୍ରୌପଦୀ ଦେବୀଙ୍କୁ ଯାଇଁ କରିବା ଦର୍ଶନ ।
ଜନ୍ମ ଜନ୍ମାନ୍ତର ପାପ ହୋଇବ ଦହନ ॥

ରାଜାଙ୍କ ଆଦେଶ ମତେ ମନ୍ତ୍ରୀ ଚୂଡ଼ାମଣି ।
ପୁରବାସୀ ସମସ୍ତଙ୍କୁ ଜଣାଇଲେ ପୁଣି ॥
ଆଜ୍ଞାପାଇ ପ୍ରଭାବତୀ ରାଣୀ ଚଳିଗଲେ ।
ଶୁଣି ଅନ୍ତଃପୁର ନାରୀମାନେ ସଜ ହେଲେ ॥
ପ୍ରବେଶ ହୋଇଲେ ଆସି ରାଜା ସନ୍ନିଧାନ ।
ଦେଖି ରାଜା ସୁବେଗଙ୍କୁ ବୋଲନ୍ତି ବଚନ ॥
ଶୁଣରେ କୁମରମଣି ମୋହର ଉତ୍ତର ।
ବଳିଷ୍ଠ ନିର୍ବଳ ଧନୀ ଦୁଃଖୀ ବିଜ୍ଞନର ।
ବ୍ରାହ୍ମଣଠାରୁ ଚଣ୍ଡାଳ ଶୁଦ୍ର ଆଦି ଯେତେ ।
ହସ୍ତିନା ମୁଁ ଯିବି ଯିବେ ମୋହର ସଙ୍ଗତେ ॥
ପୁତ୍ର ବଧୂଙ୍କୁ ଘେନିଣ ପ୍ରଭାବତୀ ରାଣୀ ।
ଡକାଇନ୍ତା ଦ୍ରୌପଦୀଦେବୀ ଆବର ରୁକ୍ମିଣୀ ॥
ସମସ୍ତଙ୍କୁ ଦେଖିବେ ଯାଇଣ ହସ୍ତିନାର ।
ସୁଯୋଗ ସମୟ ଏବେ ପଡ଼ିଛି ଆମ୍ଭର ॥
ଅତିଶୀଘ୍ର ସମସ୍ତଙ୍କୁ ସଙ୍ଗରେ ଘେନିଣ ।
ଭୀମ ବୀରଙ୍କ ସଙ୍ଗରେ କରିବା ଗମନ ॥
ସେଠାରେ ଅନେକ ପାପ ହୋଇବ ହରଣ ।
ଦର୍ଶନ କରିବା ପାଇଁ ପ୍ରଭୁ ନାରାୟଣ ॥
ଏ କଥାକୁ ଆରେ ବାବୁ ନ ଧରିବୁ ଆନ ।
ଭବଗ୍ରାହୀ ବିନା ନାହିଁ କାର ପରିତ୍ରାଣ ॥
ଯାଅ ବାବୁ ତମ ବୁଢ଼ୀମାଅଙ୍କୁ ଆଣିବ ।
ଏ ସମସ୍ତ କଥା ତାଙ୍କ ଆଗେ ଜଣାଇବ ॥
ପିତାଙ୍କୁ ପ୍ରଣାମ କରି ସୁବେଗ କୁମର ।
ରାଣୀହଂସପୁର ମଧ୍ୟେ ମିଳିଲେ ସତ୍ୱର ॥
ବୁଢ଼ୀମାଆଙ୍କ ଚରଣ ତଳେ ସେ ପଡ଼ିଲେ ।
କଲ୍ୟାଣ କରିଣ ବୁଢ଼ୀ ତାକୁ ପଚାରିଲେ ॥
ବୋଇଲେ କପାଇଁ ତୁହି ଆସିଛୁରେ ଧନ ।
କିପାଁ ଦିଶୁଅଛି ତୋର ଶ୍ରୀମୁଖ ମଳିନ ॥
ସୁବେଗ ବୋଇଲେ ବୁଢ଼ୀ ମାଆ ତୁମ୍ଭେ ଶୁଣ ।
ଆମ୍ଭ ପିତା ଯିବେ ଆଜ ହସ୍ତିନା ଭୁବନ ॥
ପ୍ରଭାବତୀ ନଗ୍ରେ ଜନ ଯେତେକ ଅଛନ୍ତି ।
ସମସ୍ତେ ସଙ୍ଗରେ ଯିବେ ନୃପତି ବୋଲନ୍ତି ॥
ଅନ୍ତଃପୁର ପାଟରାଣୀ ପୁତ୍ରବଧୂ ଘେନି ।
ଯେତେ ଦାସୀ ଅଛନ୍ତି ସମସ୍ତେ ଯିବେ ପୁଣି ॥
ରାଜାର ଆଜ୍ଞାରେ ସର୍ବେ ହୋଇଲେଣି ମେଳ ।
ତୁମ୍ଭଙ୍କୁ ନ ଦେଖି ମୋତେ ପେଶିଲେ ଭୂପାଳ ॥

ତୁମ୍ଭଙ୍କୁ ନେବା ନିମନ୍ତେ ଆସିଅଛୁ ମୁହିଁ ।
ଚାଲ ଶୀଘ୍ର ନୃପତି ଯେ ଥିବେ ବାଟ ଚାହିଁ ॥
ଆଜ ହସ୍ତିନାରେ ଯାଇଁ ଭେଟିବ ଶ୍ରୀହରି ।
ପାପ ତାଙ୍କ ଅଙ୍ଗୁ ନାଶ ହୋଇବ ତୁମ୍ଭରି ॥
ଯେପରି ସୂର୍ଯ୍ୟ ଉଦୟେ ଅନ୍ଧାର ପଳାଏ ।
ସେପରି କୃଷ୍ଣ ଦର୍ଶନେ ପାପ ଦୂର ହୁଏ ॥
ଧର୍ମ ଯୁଧିଷ୍ଠି କରିବେ ଅଶ୍ୱମେଧ ଯାଗ ।
ସେ ଯାଗ ଦେଖିଲେ ବଇକୁଣ୍ଠ ହେବ ଭୋଗ ॥
କେତେ କେତେ ଋଷି ମୁନି ଆଶ୍ରମ ଛାଡ଼ିଣ ।
ଯଜ୍ଞସ୍ଥାନକୁ ଆସିବେ ଦେଖିବ ନେତ୍ରେଣ ॥
ବ୍ରହ୍ମାଣ୍ଡର ନାଥ କୃଷ୍ଣ ଥିବେ ସେହିଠାରେ ।
ସତ୍ୟଭାମା ରୁକ୍ମିଣୀଙ୍କୁ ଘେନି ସଙ୍ଗତରେ ॥
ସୁଯୋଗ ହୋଇଛି ବୁଢ଼ୀମାଆ ତୁମ୍ଭେ ଚାଲ ।
ଏ ଜନ୍ମରୁ ଉଦ୍ଧାର ପାଇବ ନୁହେଁ ଗେଲ ॥
ବୁଢ଼ୀ ଶୁଣି କମ୍ପଣ ଉଠିଲା ଧାଡକାରେ ।
ଯାହା ବୋଲ ଅଉ ବାରେ ନ କହ ମୁଖରେ ॥
ବୁଢ଼ୀ ହେଲି ଧରମ କପଟ ଜାଣେ ନାହିଁ ।
ଏତେଦିନେ ମୋତେ ଆସି ଶୁଣାଇଲୁ ତୁହି ॥
ଶ୍ରୀକୃଷ୍ଣ ଦର୍ଶନ କଲେ କି ଲାଭ ହୋଇବ ।
ଯୁଧିଷ୍ଠି ଦର୍ଶନେ କେଉଁ ଫଳ ବା ମିଳିବ ॥
ଋଷି ମୁନିଙ୍କି ଦେଖିଲେ କି ଫଳ ଆମର ।
ଯଜ୍ଞ ଦେଖିବାକୁ ମନ ନ ବଳେ ମୋହର ॥
ଦ୍ରୌପଦୀ ରୁକ୍ମିଣୀ ସତ୍ୟଭାମାକୁ ଦେଖିଲେ ।
କିଛି ଫଳ ନ ମିଳିବ କହୁଅଛୁ ଭଲେ ॥
ଆଜ୍ଞାଯାଏ ପଞ୍ଚାନବେ ବର୍ଷ କଲି ଭୋଗ ।
ଏବେ ତୋଠାରୁ ଶୁଣିଲି ଉଦ୍ଧାରନ ଯୋଗ ॥
ବାପ ଘରଠାରୁ ମୁହିଁ ନ ଜାଣେ ଧରମ ।
ଶୁଣିଲି ତୋଠାରୁ ପୋଡ଼ ଯାଉ ମୋ କରମ ॥
ପିତା ମାତା ସ୍ୱାମୀ ମୋପଡ଼ନ୍ତି ସଦା ମନେ ।
କେତେବେଳେ ଘର ଛାଡ଼ି ନ ଯିବି ମୁଁ କ୍ଷଣେ ॥
ଦେଖି ନାହିଁ ଶୁଣି ନାହିଁ ଯାହା କରି ନାହିଁ ।
ଏ ବୁଢ଼ା କାଳରେ ମୋରେ ଘଟାଅ କିପାଇଁ ॥
ପାଗଳ ହେଲାଣି ପିତା ହୋଇ ବୁଦ୍ଧିଶୂନ୍ୟ ।
ଯୁବା ବୟସରେ ଖୋଜୁଅଛି ଧର୍ମଜ୍ଞାନ ॥
ରାଜାଙ୍କର ରାଜ୍ୟ ଛାଡ଼ିଯିବା ନୋହେ ବିଧି ।
ରାଜାଙ୍କୁ କେ ଶିଖାଇଛି ଏମନ୍ତ ଦୁର୍ବୁଦ୍ଧି ॥
ଏ ବୁଦ୍ଧିରେ ଏ ରାଜ ସମ୍ପଦ ସରିଯିବ ।
ନାରଖାର ହୋଇ କେଉଁ ଆଡ଼େ ମିଳାଇବ ॥
ରାଜାହୋଇ ରାଜ୍ୟରକ୍ଷା ନ କଲେଟି ଜାଣ ।
ରାଜ୍ୟ ନାଶଯାଏ ମୋହଠାରୁ ତୁମ୍ଭେ ଶୁଣ ॥
ରାଜା ବିନା ସମ୍ପଦ କେ ରଖି ନ ଧାରଇ ।
ରାଜାର ଏ ବୁଦ୍ଧି ଦେଖି ଆଶ୍ଚର୍ଯ୍ୟ ଲାଗଇ ॥
ମୁହିଁ କେବେ ଗୃହ ତେଜି ନ ଯିବିରେ ଧନ ।
ତା ଇଚ୍ଛା ଯେଣିକି ହୁଏ କରୁ ସେ ଗମନ ॥
ବୁଢ଼ୀଠାରୁ ଶୁଣିଣ ସୁବେଗ ବେଗେ ଗଲା ।
ପିତାଙ୍କୁ ପ୍ରମାଣ କରି ସକଳ କହିଲା ॥
ଶୁଣ ହେ ପିଅରି ତୁମ୍ଭ ଜନନୀଙ୍କ ଗୁଣ ।
ବୋଇଲେ ମୁହିଁ ନ ଯିବି ଗୃହକୁ ତେଜିଣ ॥
ସୁବେଗଠାରୁ ଶୁଣିଣ ଯୁବନାଶ୍ୱ ରାଜା ।
ମାତା ନ ଆସିବାରୁ ପାଇଲେ ବଡ଼ ଲଜ୍ଜା ॥
ମନ୍ତ୍ରୀଙ୍କୁ ବୋଲନ୍ତି ତୁମ୍ଭେ ଚଳ ହେ ବହନ ।
ବୁଝାଇ କରି ମାତାକୁ ଏଠାବକୁ ଆଣ ॥
ରାଜାଙ୍କ ବଚନେ ମନ୍ତ୍ରୀବର ଚଳିଗଲେ ।
ବୁଢ଼ୀଙ୍କ ନିକଟେ ଯାଇଁ ପ୍ରବେଶ ହୋଇଲେ ॥
ନାନା କଥା କହି ମନ୍ତ୍ରୀବର ବୁଝାଇଣ ।
ବୁଢ଼ୀଙ୍କୁ ସଙ୍ଗେ ଆଣିଲେ ରାଜା ସନ୍ନିଧାନ ॥
ରାଜା ଜନନୀଙ୍କୁ ଦେଖି ମାନ୍ୟରେ ବସାଇ ।
ମଧୁର ବଚନେ ବିଧି ମତରେ ବୁଝାଇ ॥
ହସ୍ତିନାରେ ବିଜେ କରିଛନ୍ତି ଭଗବାନ ।
ଲୋକଙ୍କୁ କଲ୍ୟାଣ ଦେବା ପାଇଁ ବିଦ୍ୟମାନ
ତାଙ୍କ ଦର୍ଶନେ ଅଶୁଭମାନ ନାଶଯାଏ ।
ମନରେ ଯେ ଧ୍ୟାଏ ସେହି ସଦଗତି ପାଏ ॥
ଏଣୁ କରି ସେଠାବକୁ ଯାଆନ୍ତି ସର୍ବଜନ ।
ଚାଲ ମାତା ମୋର ସଙ୍ଗେ କରିବ ଦର୍ଶନ ॥
ହସ୍ତିନା ପୁରକୁ ଚାଲ ଆନନ୍ଦ ହୋଇଣ ।
ନରଦେହ ବହିଣ ଅଛନ୍ତି ଭଗବାନ ॥
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ତାହାଙ୍କର ।
ଲକ୍ଷ୍ମୀରୂପୀ ରୁକ୍ମିଣୀ ଅଛନ୍ତି ସଙ୍ଗତରେ ॥
ଅନ୍ୟ ସତୀ ନାରୀମାନେ ଅଛନ୍ତି ସେ ସ୍ଥାନେ
ସେ ସ୍ଥାନକୁ ଗଲେ ମାତା ଦେଖିବ ନୟନେ
ସାଧୁମାନେ ନିମନ୍ତ୍ରଣ ପାଇ ଆସିଥିବେ ।
ଯଜ୍ଞ ସ୍ଥାନରେ ସମସ୍ତେ ପରିପୂର୍ଣ୍ଣ ହେବେ ॥

ମନର ଆନନ୍ଦେ ମାତା ମୋର ସଙ୍ଗେ ଚାଲ ।
ଶ୍ରୀହରିଙ୍କୁ ଦେଖି ଜନ୍ମ କର ମା ସଫଳ ॥
ବହୁମତେ ରାଜା ମାତାଙ୍କୁ ଯେ ବୁଝାଇଲେ ।
ଯିବା କଥା ଶୁଣି ବୁଢ଼ୀ କମ୍ପିଣ ଉଠିଲେ ॥
ବାଳକାନ୍ତୁ ନ ଜାଣଇ ତପ ଜପ ବିଧି ।
ତୁ କାହାଠାରୁ ଶିଖିଲୁ ଏମନ୍ତ ଅବିଧି ॥
ନ ଯା ତୁହି ହସ୍ତିନାକୁ ପ୍ରଜାଗଣ ଘେନି ।
ଶ୍ରୀକୃଷ୍ଣ ଦର୍ଶନେ କିଛି ଫଳ ନାହିଁ ପୁଣି ॥
ସଂସାରର କାର୍ଯ୍ୟକର ରାଜପୁରେ ରହି ।
ହସ୍ତିନାକୁ ଯିବା ଅମ୍ଭ ଉଚିତ ନୁହଇ ॥
ଯୁଧିଷ୍ଠି କୃଷ୍ଣ ଦର୍ଶନେ କି ଫଳ ମିଳିବ ।
ସେଠାକୁ ଗଲେ ଅମ୍ଭର କେଉଁ ଲାଭ ହେବ॥
ଖାଇବା ଶୋଇବା ପାଇଁ ଅବସ୍ଥା ଲଭିବା ।
ତାଙ୍କ ଯଜ୍ଞ ସେ କରିବେ ଅମ୍ଭେ କପାଁ ଯିବା॥
ମୁହିଁ ଘର ଛାଡ଼ିଗଲେ ସମ୍ପଦ ସରିବ ।
ଯିବା କଥା ମୋ ଆଗରେ କେହି ନ ଧରିବ
ଅତି ଦୁଷ୍ଟବଧୂମାନେ ଅଛନ୍ତି ମୋ ପୁରେ ।
ଘର ଛାଡ଼ି ଗଲେ ନଷ୍ଟ କରିବେ ସତ୍ୱରେ ॥
ମୁହିଁ ଗଲେ ସେମାନଙ୍କ ନ ରହିବ ଭୀତି ।
କେହି କାହାକୁ ନ ମାନି କରିବେ ଅନୀତି ॥
ଯାହା ତାହାଙ୍କର ଇଚ୍ଛା ସେ ତାହା କରିବେ
ଘରେ ଥିବା ଧନ ଦ୍ରବ୍ୟ ଯାକୁ ତାକୁ ଦେବେ
ଘର ଦ୍ରବ୍ୟେ ଦୟା ମାୟା ତାହାଙ୍କର ନାହିଁ ।
କେବେ ଘର ଛାଡ଼ିକରି ନ ଯିବଇଁ ମୁହିଁ ॥
କାଅରରେ ପାଚିଲା ଗହମ ହୋଇଅଛି ।
ମୁଁ ଗଲେ ସେମାନ ଉଜାଡ଼ିବେ ପଶୁପକ୍ଷୀ ।
ଘରେ ଅନେକ ଲକ୍ଷ୍ମୀ ପ୍ରତ୍ୟହ ହେଉଛି ।
ଗୋପାଳ ଚରାଇ ନେବେ ନ ରହିବ କିଛି
ଇଚ୍ଛା ଅନୁସାରେ ଦାସ ଦାସୀ ଭଯ୍ୟ ଛାଡ଼ି ।
ଘରଦ୍ରବ୍ୟ ନେଇ ସବୁ ଦେବେ ସେ ଉଜାଡ଼ି
ମୁହିଁ ନ ରହିଲେ ଘର ନଷ୍ଟ ହୋଇଯିବ ।
ଏ ସମ୍ପଦ ସବୁ ମୋର ବ୍ୟର୍ଥ ହୋଇବ ॥
ଏଥି ପାଇଁ ଯିବାକୁ ମୋ ନ ବଳଇ ମନ ।
କି ମିଳିବ ଦର୍ଶନ କରିଲେ ଜନାର୍ଦ୍ଦନ ॥
ହସ୍ତିନା ପୁରକୁ ଗଲେ କି ଫଳ ମିଳିବ ।
ଯୁଧିଷ୍ଠିଙ୍କ ଦର୍ଶନରେ କେଉଁ ଲାଭ ହେବ ॥
ତାଙ୍କ ଯଜ୍ଞ ଅମ୍ଭର ଦେଖିଲେ କିବା ଫଳ ।
ବାଳକାନ୍ତୁ ନ ଯାଏ ମୁଁ ଦେବା ଦେଖା ଅଳ
ସମସ୍ତେ ବୋଲନ୍ତି ଗୃହ ଧର୍ମ ଅଟେ ସାର ।
ଗୃହ ଛାଡ଼ିବା ଲୋକର ସମସ୍ତ ଅସାର ॥
ତୋତେ ଏହି ବୁଦ୍ଧି ବାପ କିଏ ଶିଖାଇଲା ।
ତୁ ତାହାର କଥାରେ ପଡ଼ିଲୁ ନୋହୁ ପିଲା ॥
ଗୃହ ଛାଡ଼ି ଗଲେ ବାବୁ ବିପତ୍ତି ପଡ଼ିବ ।
ଘରଛାଡ଼ି ଯିବା କଥା ମନରେ ନ ଭାବ ॥
ଜନନୀର ବାଣୀ ଶୁଣି ଯୁବନାଶ୍ୱ ରାଜା ।
ମନମଧ୍ୟରେ ପାଇଲେ ବହୁତ ଯେ ଲଜ୍ଜା ॥
ବୋଲନ୍ତି ଜନନୀ ହୋଇ ନ ଥିଲେ ମୋହର
ଏକ୍ଷଣି ମୁଣ୍ଡକୁ ଗଣ୍ଡିରୁ କରନ୍ତି ଦୂର ।
ଏତେ କହି ସୁବେଗକୁ ବୋଲନ୍ତି ବଚନ ।
ଆରେ ବାବୁ ବୁଢ଼ୀକୁ ତୁ କରରେ ବନ୍ଧନ ॥
ଦୋଳି ଉପରେ ବସାଇ ବେଗେ କର ନିଅ
ଭୀମସେନଙ୍କ ଅଗ୍ରତେ ନେଇ ପହଞ୍ଚାଅ ॥
ପିତାଙ୍କ ଆଦେଶ ମତେ ସୁବେଗ ଚଳିଲା ।
ଦଉଡ଼ିରେ ବୁଢ଼ୀ ଗୋଡ଼ ହାତକୁ ବାନ୍ଧିଲା ॥
ବନ୍ଧନ କରିଣ ଦୋଳୀ ଉପରେ ବସାଇ ।
ଶୀଘ୍ର ନେଇ ଚଳିଗଲା ଭୀମସେନ ଯହିଁ ॥
ପରସ୍ପରେ ଏହି କଥା ହେଲେ କୁହା କୋହି
ରାଜମାତା ନ ଯିବାରୁ ସୁବେଗ ବାନ୍ଧଇ ॥
ବଳାତ୍କାରେ ନେଇଯିବେ ହସ୍ତିନା ପୁରକୁ ।
ବୁଢ଼ୀ କରୁଅଛି ନିନ୍ଦା ନିଜର କର୍ମକୁ ॥
ଏ ବଚନ ଭୀମ ବୀର ଶୁଣିଲେ କର୍ଣ୍ଣରେ ।
ରାଜାଙ୍କୁ ପ୍ରବୋଧି ବୁଝାଇଲେ ବହୁବାରେ ॥
ତେବେ ସୁଦ୍ଧା ରାଜା ମନ ବୁଝିଲାକ ନାହିଁ ।
ରାଜପୁରେ ଜନନୀଙ୍କୁ ଛାଡ଼ିଯିବା ପାଇଁ ॥
ଏହିପରି ପାଞ୍ଚଦିନ ହେଲା ତହିଁ ଗତ ।
ସର୍ବେ ମେଳହେଲେ ହସ୍ତିନା ଯିବାନିମିତ୍ତ ॥
ବୁଢ଼ୀ ବନ୍ଦୀହୋଇ କାନ୍ଦେ ଦୋଳୀର ଉପରେ
ବୁଢ଼ୀର କ୍ରନ୍ଦନ ରାଜା ଶୁଣିଲେ କର୍ଣ୍ଣରେ ॥
ବିକଳ କ୍ରନ୍ଦନ ଶୁଣି ନୃପ ଶିରୋମଣି ।
ସୁବେଗ ଦ୍ୱାରା ବନ୍ଧନୁ ମୁକ୍ତ କଲେ ପୁଣି ॥
ପ୍ରଭାବତୀ ପୁରଲୋକ ରାଜା ରାଣୀ ସଙ୍ଗେ ।
ହସ୍ତିନା ଯିବାକୁ ସର୍ବେ ମନର ଉଦ୍‌ବେଗେ॥

ଭୀମ ବୃଷକେତୁ ମେଘବର୍ଣ୍ଣ ତିନି ବୀର ।
ଦଳ ବଳ ସହ ଯାତ୍ରା କଲେ ଅନୁକୂଳ ॥
ଶୁଭବେଳେ ବାହାର ହୋଇଲେ ହସ୍ତିନାକୁ ।
ଗଜବାଜି ବାଦ୍ୟ ନାଦ ଶୁଭଇ ଦୂରକୁ ॥
ସର୍ବେ ବୋଲନ୍ତି କପର ଦେଖିବା ଶ୍ରୀହରି ।
ବାଟ ଚାଲିବାରେ ତ୍ରୁଟି ନୁହଇ କାହାରି ॥
ଏହିପରି ଚଳୁଛନ୍ତି ହସ୍ତିନା ପୁରକୁ ।
ଶ୍ରୀକୃଷ୍ଣଙ୍କ ଦର୍ଶନରେ ରଖିଣ ଚିତ୍ତକୁ ॥
ଯାଉଁ ଯାଉଁ ବାଟେ ପାଞ୍ଚଦିନ ଗଲା ବହି ।
ଏମନ୍ତ ସମୟେ ଭୀମ ଯୁବନାଶ୍ୱ କହି ॥
ଏଠାକୁ ହସ୍ତିନାପୁର ବିଂଶତି ଯୋଜନ ।
ରହିଅଛୁ ମନେ ରାଜା ହେତୁ କରି ଧ୍ୟାନ ॥
ଅମ୍ଭେ ଆଗେ ଯାଉଁ ତୁମ୍ଭ ଆଗମନ ବାଣୀ ।
ଯୁଧିଷ୍ଠିରଙ୍କୁ ଜଣାଇବୁ ନ କର ଗ୍ଲାନି ॥
ଯଥା ବିଧି ବିଧାନରେ କରି ଅଭ୍ୟର୍ଥନା ।
ଅମ୍ଭେ ଯାଉଅଛୁଁ ରାଜା ନୁହ ହେ ବିମନା ॥
ଯୁବନାଶ୍ୱ ବୋଲେ ବୀର ନ କୁହ ଏସନ ।
ତୁମ୍ଭଙ୍କୁ ଛାଡ଼ିବା ପାଇଁ ନ ବଳେ ମୋ ମନ ॥
ତୁମ୍ଭେ ଛାଡ଼ିଗଲେ ଯେବେ ବିପଦ ପଡ଼ିବ ।
ଅମ୍ଭମାନଙ୍କୁ ତହିଁରୁ କିଏ ଉଦ୍ଧାରିବ ॥
ଯୁବନାଶ୍ୱ ବାଣୀ ଶୁଣି ଭୀମସେନ ବୀର ।
ବୋଲନ୍ତି ଚିନ୍ତା ନ କର ହେ ନୃପଶେଖର ॥
ଅମ୍ଭେ ଗଲେ ତୁମ୍ଭ ସଙ୍ଗେ ଅଛି ବୃଷକେତୁ ।
କେବେ ବିପଦ ନ ହେବ ରଖିଥାଅ ହେତୁ ॥
ବୃଷକେତୁ ବୀର ଯେବେ ସଙ୍ଗତରେ ଥିବ ।
ଯେତେ ବିପଦ ପଡ଼ିଲେ ସବୁ ମେଣ୍ଟାଇବ ॥
ଏଥିକି ଶୋଚନା ନ କର ହେ ନୃପମଣି ।
ଅମ୍ଭଙ୍କୁ ବିଦାୟ ଦିଅ ହୃଷ୍ଟଚିତ୍ତେ ପୁଣି ॥
ଅମ୍ଭେ ଯାଇ ଶ୍ରୀକୃଷ୍ଣ ଯୁଧିଷ୍ଠିର ଦେବ ଆଗେ ।
ତୁମ୍ଭ ଆଗମନ ବାର୍ତ୍ତା କହିବୁ ସନ୍ତୋଗେ ॥
ରୁକ୍ମିଣୀ ଦ୍ରୌପଦୀ ଆଗେ ଜଣାଇବୁ ଯାଇଁ
ତୁମ୍ଭର ପାଟରାଣୀଙ୍କ ଦରଶନ ପାଇଁ ॥
ଏହା ଶୁଣି ଯୁବନାଶ୍ୱ ସନମତ ହେଲେ ।
ଭୀମସେନ ବିଦାହୋଇ ଆଗରେ ଆଇଲେ ॥
ମହାବେଗେ ରଥ ଚଳାଇଲେ ଭୀମବୀର ।
ଶ୍ରୀକୃଷ୍ଣ ଭ୍ରାତ ଦର୍ଶନ ପାଇଁ ତତ୍ପର ॥

ହସ୍ତିନାର ସିଂହଦ୍ୱାରେ ହୋଇଲେ ପ୍ରବେଶ ।
ରଥରୁ ଓହ୍ଲାଇ ଗଲେ ଧର୍ମଙ୍କର ପାଶ ॥
ଧର୍ମଙ୍କ ଚରଣେ ପଡ଼ି ପ୍ରଣାମ କରିଲେ ।
ତହିଁ ପରେ ଶ୍ରୀକୃଷ୍ଣଙ୍କ ଚରଣ ବନ୍ଦିଲେ ॥
ଅନ୍ୟ ଭ୍ରାତାମାନଙ୍କୁ ସେ କରିଲେ କଲ୍ୟାଣ ।
ଯୁଧିଷ୍ଠିର ଦେବ ପୃଚ୍ଛନ୍ତି କୁଶଳ କାରଣ ॥
ଯୁଦ୍ଧକଥା ଆଦ୍ୟ ପ୍ରାନ୍ତ ସକଳ କହିଲେ ।
ଶୁଣି ସର୍ବେ ଆନନ୍ଦରେ କୋଳାଗ୍ରତ କଲେ ॥
ଆଣିଅଛୁ ଯାଗ ଅଶ୍ୱ ରାଜା ସହିତରେ ।
ରାଜା ଯାଗ ଅଶ୍ୱ ଘେନି ଆସନ୍ତି ପଛରେ ॥
ସର୍ବ ସୈନ୍ୟ ସ୍ୱକୁଟୁମ୍ବ ଘେନି ନୃପସାଇଁ ।
ଆସନ୍ତି ହେ ଦେବ ତୁମ୍ଭ ଦର୍ଶନକୁ ପାଇଁ ॥
ବୃଷକେତୁ ଥିଲାକୁ ଯେ ହେଲା ତହିଁ ଜୟ ।
ମେଘବର୍ଣ୍ଣ ଅଟେ ବଡ଼ମାୟାବୀ ନିଶ୍ଚୟ ॥
ତୁମ୍ଭ ପ୍ରସାଦରୁ କାର୍ଯ୍ୟ ସିଦ୍ଧ ହେଲା ଜାଣ ।
ଆସୁଅଛି ଅଶ୍ୱବର ସର୍ବ ସୁଲକ୍ଷଣ ॥
ଯୁବନାଶ୍ୱ ଦଣ୍ଡଧାରୀ ଆସୁଛନ୍ତି ଦେବ ।
ପାଟମହାଦେଈ ସଙ୍ଗେ ପୁରନାରୀ ସର୍ବ ॥
ନାମ ତାଙ୍କ ପ୍ରଭାବତୀ ଅତି ରୂପବତୀ ।
ବେଶଭୂଷଣ ହୋଇଣ ଆସୁଛନ୍ତି ସତୀ ॥
ଉଲ୍ଲାସରେ ଆସୁଛନ୍ତି ହସ୍ତିନା ନଗର ।
ତାଙ୍କ ଶୋଭାକୁ ମୁଁ କିବା ଦେବି ପଟାନ୍ତର ॥
ଦେବୀ ଦ୍ରୌପଦୀଙ୍କୁ ଆସି କରିବେ ଦର୍ଶନ ।
ତରୁ ଆସୁଛନ୍ତି ଏହା ବାଞ୍ଛାକରି ମନ ॥
ଆସନ୍ତି ସେ ମେଘବର୍ଣ୍ଣ ବୃଷକେତୁ ସଙ୍ଗେ ।
ଜଣାଇବାକୁ ଆସିଲି ଦେବ ତୁମ୍ଭ ଆଗେ ॥
ଜୟ ପ୍ରଭୁ ନାରାୟଣ ଜଗତ ପାଳକ ।
ଉପାଧ୍ୟାୟ ମହାଦେବ ତୋ ପାଦ ସେବକ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାର କଥା ପ୍ରବନ୍ଧେ
ନାମ ଷଷ୍ଠୋଽଧ୍ୟାୟଃ ।



# ସପ୍ତମ ଅଧ୍ୟାୟ

ଅନ୍ତର୍ଗର୍ଭେ ନବସତ ଟୋବନ୍‌କଳ ସର୍ବଥା ।
ପ୍ରସନ୍ନେ ପୁଣ୍ଡ୍ରବୀକାକ୍ଷେ ସର୍ବ ମନୀକ୍ଷ ଲଭ୍ୟତ ॥

## ଯୁଧିଷ୍ଠିର ପ୍ରଭୃତ ପାଣ୍ଡବମାନଙ୍କ ସଙ୍ଗେ ଯୁବନାଶ୍ୱ ରାଜାର ସାକ୍ଷାତ ଓ ବେଦବ୍ୟାସ କର୍ତ୍ତୃକ ମରୁତ ଯଜ୍ଞ ବିଷୟ ବର୍ଣ୍ଣନ

ଜନ୍ମେଜୟ ରାଜାଙ୍କୁ ଯେ ବୋଲନ୍ତି ଜୈମିନ ।
ଯୁଧିଷ୍ଠିର ଯୁବନାଶ୍ୱ ଆଗମନ ବାଣୀ ॥
ଭୀମଠାରୁ ଶୁଣିକର ହେଲେ ହରଷିତ ।
ପାଶକୁ ଡାକି ଭୀମକୁ କହିଲେ ତଦନ୍ତ ॥
ଆହେ ବାବୁ ଶୀଘ୍ର ହୋଇ ତୁମ୍ଭେ ଚାଲିଯାଅ
ଦ୍ରୌପଦୀ ଦେବୀଙ୍କ ପାଶେ ଏମନ୍ତ ଜଣାଅ ॥
କହିବ ଯୁବନାଶ୍ୱଙ୍କ ରାଣୀ ପ୍ରଭାବତୀ ।
ତୁମ୍ଭ ଦର୍ଶନ କରିବା ଆଶେ ଅଛନ୍ତି ॥
ତାଙ୍କୁ ଯାଇ ଖଣ୍ଡେ ଦୂରେ ଅଭ୍ୟର୍ଥନା କର ।
ଆଣିବ ବିଧି ବିଧାନେ ଗଉରବ କରି ॥
ଶ୍ରୀକୃଷ୍ଣଙ୍କ ପ୍ରସାଦରୁ ଏ ମହୀମଣ୍ଡଳେ ।
ଅମ୍ଭ ଯଶ ବିସ୍ତାର ହୋଇଛି ସର୍ବସ୍ଥଳେ ॥
ତୁମ୍ଭେ ନାନା ଆଭରଣ ହୋଇଣ ସଭିର ।
ଦାସୀ ପରିବାରଙ୍କୁ ଘେନିଣ ସଙ୍ଗତରେ ॥
ମହା ଗହଣରେ ଯିବ ବିଧି ଅନୁସାରେ ।
ବିଧାନରୁ ବ୍ୟତିକ୍ରମ ନ ହୋଇବ ଭଲେ ॥
ସର୍ବଜୟୀ ପାଣ୍ଡବେ ଯେ ଚତୁର୍ଦ୍ଦିଗେ ନାମ ।
ଅତଏବ ଆଡ଼ମ୍ବରେ ଯିବାର ନିୟମ ॥
ଏହା ବୁଝାଇଣ କୁହ ଦେବୀ ଦ୍ରୌପଦୀଙ୍କୁ ।
ଲଜ୍ଜା ଯେପରି ନ ହୁଏ ଅମ୍ଭର ବଂଶକୁ ॥
ଯୁଧିଷ୍ଠିର ଆଜ୍ଞା ପାଇ ବୀର ଭୀମସେନ ।
ଦ୍ରୌପଦୀ ଦେବୀ ଅଛନ୍ତି ଯେଉଁଣି ଭୁବନ ॥
ତାଙ୍କ ନିକଟକୁ ବୀର ଶୀଘ୍ର ଚାଲିଗଲେ ।
ଦ୍ରୌପଦୀ ଦେବୀଙ୍କ ପାଶେ ପ୍ରବେଶ ହୋଇଲେ
ଦ୍ରୌପଦୀ ଦେଖିଲେ କାନ୍ତ ଆସୁଛନ୍ତି ପୁର ।
ବନ୍ଦାପନା କରିଣ ସେ ଆଣିଲେ ସତ୍ୱର ॥

ବୋଲନ୍ତି ଏତେ ଦିନରେ ପାଇଲି ଦର୍ଶନ ।
ଏହି ଅଭାଗିନୀ ପଡୁ ନ ଥିଲି କି ମନ ॥
ଆଜ କି ଯୋଗରେ ରଜନୀ ମୋ ପାହିଥିଲା ।
ଏଣୁ ଶ୍ରୀଚରଣ ନାଥ ଦର୍ଶନ ହୋଇଲା ॥
ଆହେ ପ୍ରାଣନାଥ ତୁମ୍ଭ ଦେହେ ଶରୀଧାତ ।
ଚିହ୍ନ ବରିଜୁ ଅଛଇ ନଦେ ତାସ୍ତବତ ॥
ପ୍ରଭାବତୀ ପୁରୁ ଅଶ୍ୱ ଆଣିବା ନିମନ୍ତେ ।
ଯାଇଥିଲ ପ୍ରାଣନାଥ କୁହ ମୋ ଅଗ୍ରତେ ॥
ମେଘବର୍ଣ୍ଣ ବୃଷକେତୁ ସଙ୍ଗେ ଯାଇଥିଲେ ।
ତାଙ୍କର କୁଶଳ ନାଥ କୁହ ମୋତେ ଭଲେ ॥
ପ୍ରିୟାର ବଚନ ଶୁଣି ଭୀମସେନ ବୀର ।
ବୋଲନ୍ତି ଶୁଣ ଗୋ ସତୀ ଆମ୍ଭର ଉତ୍ତର ॥
ପାଣ୍ଡବମାନଙ୍କ ସାହା ଅଟନ୍ତି ଶ୍ରୀହରି ।
ତାଙ୍କ କୃପା ବଳେ ଅମ୍ଭ ଜୟ ସର୍ବସ୍ୱରି ॥
ବିପଦ ପଡ଼ିଲା ମାତ୍ରେ ହୁଅନ୍ତି ସେ ସାହା ।
ଅମ୍ଭ ରକ୍ଷାକାରୀ ପ୍ରଭୁ ଦେବ ଲକ୍ଷ୍ମୀନାହା ॥
ତାଙ୍କ ଆଜ୍ଞା ଘେନି ଉଜ୍ଜାଣୀରେ ଯାଇଥିଲୁ ।
ପ୍ରଭାବତୀପୁରେ ଯାଇ ପ୍ରବେଶ ହୋଇଲୁ ॥
ମେଘବର୍ଣ୍ଣେ ଯାଗ ଅଶ୍ୱ କପଟେ ହରିଲା ।
ଯୁବନାଶ୍ୱ ନୃପବର ତାହା ସେ ଜାଣିଲା ॥
ସୈନ୍ୟ ସହ ଅମ୍ଭସଙ୍ଗେ କଲା ଘୋର ରଣ ।
ବୃଷକେତୁ ବୀର ହେତୁ ଜୟ କଲୁ ଜାଣ ॥
ହାରିଯାଇ ରାଜା ଅମ୍ଭ ପରିଚୟ ପାଇ ।
ଯୁଧିଷ୍ଠି ଦର୍ଶନେ ମହା ସମ୍ଭବେ ଆସଇ ॥
ଧନ ପରିବାର ଅଦ୍ଧ ରାଜ୍ୟରୁ ସମସ୍ତେ ।
ଘେନି ଆସୁଛନ୍ତି ଯୁବନାଶ୍ୱ ନରନାଥେ ॥
ଅନ୍ତଃପୁର ସର୍ବନାରୀଗଣ ଘେନି ରାଣୀ ।
ଆସୁ ଅଛନ୍ତି ତୁମ୍ଭର ଦରଶନେ ପୁଣି ॥
ଅତ୍ୟନ୍ତ ସୁନ୍ଦରୀ ଅଟେ ପାଟ ମହାଦେଈ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ତା ସମ କେହି ନାହିଁ ॥
ବେଶ ଭୂଷଣରେ ରାଣୀ ହୋଇଣ ଭୂଷଣ ।
ଆନନ୍ଦରେ ଆସୁଛନ୍ତି କରିବେ ଦର୍ଶନ ॥
ପ୍ରାଣପ୍ରିୟା ତୁମ୍ଭେ ବେଗେ ଆଭରଣ ହୁଅ ।
ଉପଯୁକ୍ତ ଭାବେ ତାଙ୍କୁ ସମ୍ମାନ ଦେଖାଅ ॥
ରାଜ୍ୟେ ରାଜ୍ୟେ ଅମ୍ଭ ଯଶ ବିରାଜୁ ଅଛଇ ।
ପ୍ରଭାବତୀ ଯେଉଁ ପରି ଅପମାନ ନୋହିଁ ॥

ସଙ୍ଗତରେ ଅର୍ଦ୍ଧଚନ୍ଦ୍ର ବହୁତ ରମଣୀ ।
ଆନନ୍ଦରେ ଦେଖିବାକୁ ତୁମ୍ଭକୁ ସଜଣୀ ॥
ତୁମ୍ଭଙ୍କୁ ଦେଖା କରବେ ରାଣୀ ପ୍ରଭାବତୀ ।
ତୁମ୍ଭ ଯଶ କୀର୍ତ୍ତି ଶୁଣିଣ ସେ ଅଛନ୍ତି ॥
ତୁମ୍ଭେ ଏବେ ଉଚିତରେ ବେଶଭୂଷା ନିଅ ।
ଅଭ୍ୟର୍ଥନା କର ଆଣ ସେ ରମଣୀବୃନ୍ଦ ॥
ଯୁଧିଷ୍ଠିର ସଂସାରରେ ଯେପର ପୂଜିତ ।
ତାଙ୍କ ଯଶ କୀର୍ତ୍ତି ସର୍ବ ମୁଖେ ବିରାଜିତ ॥
ତୁମ୍ଭେ ମଧ୍ୟ ଅଷ୍ଟ ଅଳଙ୍କାରେ ସଜ ହୁଅ ।
ଅନ୍ୟ ନାରୀଗଣେ ବଧୂବଧାନେ ସଜାଅ ॥
ସର୍ବେ ମେଳ ହୋଇଯିବ ପ୍ରଭାବତୀ ପାଶ ।
ଜ୍ୟେଷ୍ଠ ଭ୍ରାତାଙ୍କର ଏହା ହୋଇଛି ଆଦେଶ ॥
ଅମ୍ଭେ ସର୍ବେ ମେଳ ହୋଇ ରାଜା ପାଶେ ଯିବୁ
ଉଚିତ ବେଭାର ସମ୍ମାନ ଯେ ଦେଖାଇବୁ ॥
ତାଙ୍କୁ ଯାଇ ପାଶ୍ଚୋଟି ଆଣିବୁ ଶୀଘ୍ରକର ।
ଏମନ୍ତ ବିଚାର କରିଛନ୍ତି ଚକ୍ରଧାରୀ ॥
ଆବର କଥାଏ ସଖି ଶୁଣ ମନ ଦେଇ ।
ତୁମ୍ଭ ତେଜ କପାଁ ଆଜ ମଳିନ ଦିଶଇ ॥
କପାଇଁ ମନରେ ଚିନ୍ତା କରୁଛ ତୁମ୍ଭର ।
ପରିତେ ତୁମ୍ଭ ଶୋଭା ନ ଦେଖେ ନାରୀବର ॥
ମନେ ଭାବେ କୃଷ୍ଣ ନ ଥିବାରୁ ହସ୍ତିନାରେ ।
ସେ ନିମନ୍ତେ ଚିନ୍ତା କରଅଛ କି ମନରେ ॥
ଜାଣୁଛି ସେଥି ସକାଶେ ତୁମ୍ଭ ରୂପ କ୍ଷୀଣ ।
ପ୍ରଭାବତୀ ପ୍ରଭାବେ ପାଇବ ଅପମାନ ॥
ମନର ବେଦନା ସଖି କେହି ନ ଜାଣନ୍ତି ।
ବେଦନାକୁ ଜ୍ୟକ୍ତକର ଶୁଣ ମୋ ଭାରତୀ ॥
ଭୀମଙ୍କ ବଚନ ଦେବୀ କରଣ ଶ୍ରବଣ ।
କହି ଆରମ୍ଭିଲେ ତହୁଁ ମଧୁର ବଚନ ॥
ଯାହା ବୋଇଲେ ହେ ନାଥ ସେହି ପଦ୍ମମୁଖ ।
ତାଙ୍କୁ ଏ ପୁରେ ନ ଦେଖି ମୋର ମନ ଦୁଃଖ
ମୋ ମନକଥାକୁ ଜାଣିବେସେଯେତେବେଳେ
ମୋ ମନ ଉଲ୍ଲାସ ହେବ ତାଙ୍କ କୃପାବଳେ ॥
ଦୟାନିଧି ଦୟାକରି ଦରଶନ ଦେଲେ ।
ମନମୋହନ ବେଶ ହୋଇବ ତତକାଳେ ॥
ତାଙ୍କ ଦରଶନ ନ ପାଇଲେ ନାଥ ମୁହିଁ ।
ଖାଇବା ପିଇବା ମୋତେ କିଛି ନ ରୁଚଇ ॥
ମୋ ମନରେ ଆନନ୍ଦ ଯେ ନ ହୋଇବ ଜାତ
ଯାହା କହନ୍ତୁ ହେ ନାଥ ମୁଁ ତୁମ୍ଭ ଆଶ୍ରିତ ॥
ହେ ଶ୍ରୀହରି ମୋତେ ଆସି ଦରଶନ ଦିଅ ।
ଲଜ୍ଜା ସମୁଦ୍ରରୁ ମୋତେ ପାରକର ନିଅ ॥
ଯେବେ ବଳାତ୍କାରେ ମୁହିଁ ଯିବ ରାଣୀପାଶ ।
ଶିରୀଛଡ଼ା ନାରୀ ପ୍ରାୟେ ଦିଶିବ ଅବଶ୍ୟ ॥
ପ୍ରଭାବତୀତେଙ୍କୁ ତେଜ ହୋଇଲି ମୋଊଣା ।
ଏ କଥା କି ତୁମ୍ଭଙ୍କୁ ନ ହେବ ବଡ଼ମୂଣା ॥
ଏହିପରି ପାଞ୍ଚାଳୀ ଯେ ଲଗାଇଲେ ଲୟ ।
ପାଞ୍ଚାଳୀର ମନ କଷ୍ଟ ଜାଣି ଦେବରାୟ ॥
ପ୍ରବେଶ ହୋଇଲେ ଆସି ହସ୍ତିନା ନଗର ।
ଯହିଁ ଥିଲେ ଦ୍ରୌପଦୀ ଭୀମସେନ ବୀର ॥
ଗରୁଡ଼ପୃଷ୍ଠରୁ ଉତ୍ତରି ଦେବ ନାରାୟଣ ।
ଦ୍ରୌପଦୀଙ୍କ ସମ୍ମୁଖରେ ଉଭା ହେଲେ ପୁଣ ॥
ଭୀମ ଦ୍ରୌପଦୀ ଦେଖିଣ ଆନନ୍ଦ ହୋଇଲେ ।
ଚରଣେ ପ୍ରଣାମ କରି ପାଶେ ବସାଇଲେ ॥
ଦେବୀ ଦ୍ରୌପଦୀଙ୍କ ମନ ଆନନ୍ଦ ହୋଇଲା ।
ଅତିଶୟ ତେଜରୂପ ତହିଁ ବିରାଜିଲା ॥
ଦେବୀ ମନୋଗତ ଭାବ ଜାଣିଲେ ଶ୍ରୀହରି ।
ଯହି ଯେଉଁ ଅଳଙ୍କାର ଦେଲେ ତାହା ଭରି ।
ଦ୍ରୌପଦୀଙ୍କ ବେଶ ହେବା ଦେଖି ଭୀମସେନ ॥
ବିଦାୟ ହେଉଛି ପ୍ରଭୁ ଦେବ ଜନାର୍ଦ୍ଦନ ॥
ମୋତେ ଗୃହିଁ ବସିଥିବେ ଯୁଧିଷ୍ଠି ରାଜନ ।
ଦିଅ ସଖି ମେଲାଣି ମୁଁ ଚଳଇ ବହନ ॥
ପ୍ରଫୁଲ୍ଲ ବଦନେ ଦେବୀ ବୋଲନ୍ତି ବଚନ ।
ଯାଅ ଶୀଘ୍ରେ ଭାବୁଥିବେ ହସ୍ତିନା ରାଜନ ॥
ବିଦାୟ ଘେନିଣ ଭୀମ ଗମିଲେ ତୁରିତ ।
ଚଳିଗଲେ ଯେ ସ୍ଥାନେ ଅଛନ୍ତି ଜ୍ୟେଷ୍ଠ ଭ୍ରାତ
ସୈନ୍ୟସହ ଯୁଧିଷ୍ଠିର ଭୀମଙ୍କ ସଙ୍ଗରେ ।
ସୁନ୍ଦର ଚମ୍ପକ ବନେ ପରବେଶ ହେଲେ ॥
ଭ୍ରମର ଶବ୍ଦ କରନ୍ତି ବଉଳ ବନରେ ।
ଗନ୍ଧବାୟୁ ମନ୍ଦେ ବହି ମନୋଲ୍ଲାସ କରେ ॥
ସନ୍ତାପରେ ଯାର ମନ ହୋଇଥିବ ବ୍ୟସ୍ତ ।
ବାୟୁ ପ୍ରବାହରେ ତାହା ହେବ ଦୂରୀଭୂତ ॥
ବିଳମ୍ବ ହେବାରୁ ବୃଷକେତୁ ବୀରବର ।
ଯୁବନାଶ୍ବ ରାଜାଙ୍କର ଆସିବା ଖବର ॥

ଜଣାଇବା କାରଣରେ ସତ୍ୱର ହୋଇଣ ।
ସୁନ୍ଦର ଚମ୍ପକ ବଣ ନିକଟେ ମିଳଣ ॥
ଦେଖାହେଲା ଧର୍ମରାଜ ଅଗ୍ରତେ କହିଲେ ।
ଯୁବନାଶ୍ୱ ରାଜା ତୁମ୍ଭ ଦର୍ଶନେ ଆଇଲେ ॥
ସମ୍ବାଦ ଦେବାକୁ ମୁହିଁ ଆସିଲି ଏଠାରେ ।
ମହାଗହଣେ ନୃପତି ଅଛନ୍ତି ସେଠାରେ ॥
ଏହା ଶୁଣି ଧର୍ମରାଜ ହୋଇଲେ ଆନନ୍ଦ ।
ମୁଖ ବିକାଶଇ ଯେ କୁମୁଦ ବନେ ଚନ୍ଦ ॥
ମନ ପ୍ରଫୁଲ୍ଲିତରେ ବୋଲନ୍ତି ଯୁଧିଷ୍ଠିର ।
ଚାଲ ବାବୁ ସେଠାକୁ ବିଳମ୍ବ ନ କର ॥
କେଉଁଠାରେ ଛନ୍ତି ନୃପ ମୋତେ ତା ଦେଖାଅ
ବିଳମ୍ବରେ ଅଥୟ ହେଉଛି ମୋର ଦେହ ॥
ଯୁଧିଷ୍ଠିରଙ୍କ ବଚନ ବୃଷକେତୁ ଶୁଣି ।
ବୋଲନ୍ତି ଆଗେ ଚାଲନ୍ତୁ ଆହେ ନୃପମଣି ॥
ବୃଷକେତୁ ଦେଖାଇବା ପଥ ଅନୁସାରେ ।
ଚାଲିଗଲେ ଧର୍ମରାଜ ସୈନ୍ୟ ଗହଣରେ ॥
ଯୁବନାଶ୍ୱ ନିକଟରେ ପ୍ରବେଶ ହୋଇଲେ ।
ଦେଖି ଯୁବନାଶ୍ୱ ହସ୍ତୀପରୁ ଓହ୍ଲାଇଲେ ॥
ରଥରୁ ଓହ୍ଲାଇ ଧର୍ମ ଚାଲିଲେ ସତ୍ୱର ।
ବେନିରାଜା କୋଳାକୋଳି ହେଲେ ପରସ୍ପର
ଯୁବନାଶ୍ୱ ରାଜା ତହୁଁ ବୋଇଲେ ବଚନ ।
ଭାଗ୍ୟ ମୋର ଦେଖିଲି ମୁଁ ତବ ଶ୍ରୀଚରଣ ॥
ଯୁଧିଷ୍ଠି ବୋଲନ୍ତି ତୁମ୍ଭେ ଶୁଣ ଦଣ୍ଡଧର ।
ତୁମ୍ଭ ଆଗମନେ ମୁହିଁ ପବିତ୍ର ଅନ୍ତର ।
ଆଜଯାଏ ପାଣ୍ଡୁ ପୁତ୍ର ପାଞ୍ଚଜଣ ଥିଲୁ ।
ଆଜହୁଁ ତୁମ୍ଭଙ୍କୁ ମିଶି ଛଅଜଣ ହେଲୁ ॥
ଆଜଠାରୁ ତୁମ୍ଭଠାରେ ଭ୍ରାତୃବତ ସ୍ନେହ ।
ରହିଥାଉ ସେ କଥା କରନ୍ତୁ ଦୟାମୟ ॥
ଯୁବନାଶ୍ୱ ବୀର ଶୁଣି ଏସନ ବଚନ ।
କହିଲେ ଧନ୍ୟ ହେ ରାଜା ଧନ୍ୟ ତୁମ୍ଭ ନାମ
ଯାହା ଶୁଣିଥିଲି ପ୍ରତ୍ୟକ୍ଷରେ ମୁଁ ଦେଖିଲି ।
ଅନେକ ଜନ୍ମର ମୋର ପାପକୁ ଦହିଲି ॥
ଯୁଧିଷ୍ଠି କହନ୍ତି ଶୁଣ ଆହେ ନରରାଣେ ।
ସଂସାରେ ଜନମ ଲଭିଛନ୍ତି ଯେତେଜନ ॥
ଇନ୍ଦ୍ରିୟର ବଶେ ପ୍ରାଣୀ ମୋହ ହୋଇକରି ।
ନାନା ପାପକରେ ଭଲ ମନ୍ଦ ନ ବିଚାରି ॥
ସେମାନଙ୍କୁ ଯେଉଁ ଲୋକ କରଇ ଆୟତ୍ତ ।
ତପୀଗଣଙ୍କ ମଧ୍ୟେ ସେ ଲୋକ ଅଟେ ଶ୍ରେଷ୍ଠ ॥
ସେମାନଙ୍କୁ ବଶକଲେ ରାଜର୍ଷି ହୋଇ ।
ମୁକ୍ତିଲଭି କରି ବୈକୁଣ୍ଠରେ ବସେ ଯାଇଁ ॥
ବୈକୁଣ୍ଠାଧିକାରୀ ନାଥ ଶ୍ରୀହରି ଅଟନ୍ତି ।
ନାନାମାୟାରେ ଲୋକଙ୍କୁ ଭୁଲାଇ ପାରନ୍ତି ॥
ତାଙ୍କୁ ନ ଭଜିଣ କେହି ଇନ୍ଦ୍ରିୟ ଦମନ ।
କରି ନ ପାରଇ ଏହା ଶୁଣ ହେ ରାଜନ ॥
ସେହି ନିରାକାର ପ୍ରଭୁ ନର ଦେହ ଧରି ।
ଏଠାରେ ଛନ୍ତି ଦେଖିବ ଆସ ଦଣ୍ଡଧାରୀ ॥
ଶୁଣି ଯୁବନାଶ୍ୱ ଆନନ୍ଦରେ ଚଳିଗଲେ ।
ଯୁଧିଷ୍ଠି ଦେବଙ୍କ ସଙ୍ଗେ ପୁରରେ ମିଳିଲେ ॥
ଦେଖିଲେ ବିଜୟ କରିଛନ୍ତି ବନମାଳୀ ।
ପ୍ରଣାମ କରିଣ ସ୍ତୁତିକଲେ ଦଣ୍ଡଧାରୀ ॥
ଯୁଧିଷ୍ଠି ଦେବ ବୋଲନ୍ତି ପାପ ତାପ ହର୍ତ୍ତା ।
ତ୍ରିଦଶ ଲୋକଙ୍କର ଅଟନ୍ତି ଜ୍ଞାନଦାତା ।
ହର୍ତ୍ତା କର୍ତ୍ତା ନାଥ ଏ ଅଟନ୍ତି ଦେବ ହରି ।
ମତ୍ସ୍ୟ କଚ୍ଛ ବରାହାଦି ରୂପ ଥିଲେ ଧରି ॥
ମୋକ୍ଷଦାତା ଅଟନ୍ତି ଯେ ଦେବ ଶ୍ରୀପତି ।
ସନ୍ତୋଷେ ଦର୍ଶନ କରି ପ୍ରଭାବତୀ ପତି ॥
ପାଟରାଣୀ ଆମ୍ଭ ଅନ୍ତଃପୁରେ ଚଳିଯାନ୍ତୁ ।
ଲକ୍ଷ୍ମୀସହ କୋଇନ୍ତାକୁ ଦର୍ଶନ କରନ୍ତୁ ॥
ଅଯୋନି ସମ୍ଭୂତା ଯାଜ୍ଞସେନୀଙ୍କ ଦର୍ଶନ ।
ଆବର ପ୍ରଭୁଙ୍କ ଅଷ୍ଟପାଟବଂଶୀ ଗଣ ॥
ଏମନ୍ତ ସମୟେ ଯୁବନାଶ୍ୱ ବୀରବର ।
ଶ୍ରୀକୃଷ୍ଣଙ୍କ ଚରଣକୁ ଧଇଲେ ସତ୍ୱର ॥
ହେ ଦେବ ମାନବ ରୂପେ ବଳି ଉଦ୍ଧାରିଲ ।
ପାଦମାତ୍ର ଅହଲ୍ୟାକୁ ପାଷାଣୁ ତାରିଲ ॥
ମାୟାରେ ପର୍ବତ ଉପାଇଲ ମଞ୍ଜୁଜାଲେ ।
ଦୁଷ୍ଟ ମାରି ସନ୍ଥ ପାଳୁଥାଅ କାଳେ କାଳେ ॥
ଅରକ୍ଷର ରକ୍ଷକ ଯେ ତେଣୁ ବୋଲାଉଛ ।
କୁରୁସଭାରେ ଦ୍ରୌପଦୀ ବିପଦୁ ରଖିଛ ॥
କୁବୁଜା କୁତ୍ସିତ ରୂପ କରିଲ ହରଣ ।
ଶ୍ରୀକର ଲାଗନ୍ତେ ହେଲା ତ୍ରିପୁରେ ସେ ଧନ ॥
ମୁହିଁ ଆଶ କରିଅଛି ଏ ଭବ ସିନ୍ଧୁରୁ ।
କପରି ଉଦ୍ଧାର ହେବି ଆହେ କଳ୍ପତରୁ ॥

ରଖ ବା ନ ରଖ ପ୍ରଭୁ ଚରଣେ ଦାସକୁ ।
ସବୁ ଆଶା ଛାଡ଼ି ଧ୍ୟାଏ ତୁମ୍ଭ ପୟରକୁ ॥
କୃପାକର କୃପାମୟ ମୋହର ଉପରେ ।
ଶେଷକାଳେ ଠାବ ଦିଅ ଶ୍ରୀଚରଣତଳେ ॥
ଧର୍ମ ଯୁଧିଷ୍ଠିରଙ୍କୁ ଅନାଇ ଦଣ୍ଡଧାରୀ ।
ବୋଲନ୍ତି ଏ ଯଜ୍ଞ ଅଶ୍ୱ ଥିଲାକୁ ମୋ ପୁରୀ ॥
ଅଶ୍ୱଯୋଗୁ ଧର୍ମ ନାରାୟଣଙ୍କୁ ଦେଖିଲି ।
ଏ ମାନବ ଜନ୍ମ ମୋର ସାର୍ଥକ ଲଭିଲି ॥
ଧନ୍ୟ ଏହି ବୃଷକେତୁ କର୍ଣ୍ଣର ନନ୍ଦନ ।
ଯୁଦ୍ଧକାଳେ ଶତ୍ରୁ ହୋଇ ରଖିଲେ ମୋ ପ୍ରାଣ
ମେଘବର୍ଣ୍ଣ ବୃଷକେତୁ ଭୀମବୀର ତୁଲେ ।
ଅନୁରୋଧ ମାନି ସେ ମୋ ପୁରରେ ମିଳିଲେ
ଯେପରି ଫୁଲ ସଂଯୋଗେ ପଟ ଯେ ମସ୍ତରେ
ସେହିପରି ଏ ଅଧମ ମିଳିଲି ଛାମୁରେ ॥
ଚର୍ମଚକ୍ଷୁରେ ଦେଖିଲି ରୂପ ପ୍ରଭୁଙ୍କର ।
ଭବ ସମୁଦ୍ରରୁ ନିଶ୍ଚେ ହୋଇବି ଉଦ୍ଧାର ॥
ଏଣେ ଦ୍ରୌପଦୀ ଦେବୀ ଯେ ଦାସୀଗଣ ନେଇ
ପାଛୋଟିଣଗଲେ ପ୍ରଭାବତୀ ମହାଦେଈ ॥
ସୁବର୍ଣ୍ଣ ଥାଳୀରେ ଅର୍ଘ୍ୟ ଘେନି ଯାଜ୍ଞସେନୀ ।
ହରଷରେ ବନ୍ଦାଇଲେ ପ୍ରଭାବତୀ ରାଣୀ ॥
ପ୍ରଭାବତୀ ରାଣୀ ତହୁଁ ଆନନ୍ଦ ମନରେ ।
ଦ୍ରୁପଦୀ ଦେବୀଙ୍କର ଚରଣ ବନ୍ଦିଲେ ॥
ଦୁଇରାଣୀ ଆନନ୍ଦରେ ଧରାଧରି ହୋଇ ।
ମାତା କୁନ୍ତୀଦେବୀ ପାଶେ ପ୍ରବେଶିଲେ ଯାଇଁ
ଦ୍ରୁପଦୀ ପ୍ରଭାବତୀ ହରଷ ଅନ୍ତରେ ।
କୁନ୍ତୀଦେବୀଙ୍କ ଚରଣ ତଳରେ ପଡ଼ିଲେ ॥
କଲ୍ୟାଣ କରଣ କୁନ୍ତୀ ସତ୍ୱରେ ଉଠିଲେ ।
ପ୍ରଭାବତୀ ଦ୍ରୌପଦୀଙ୍କୁ କୋଳାଗତ କଲେ ॥
ତହୁଁ ସତ୍ୟଭାମା ରୁକ୍ମିଣୀଙ୍କ ପାଶେ ଗଲେ ।
ନମସ୍କାର କରି ପ୍ରଭାବତୀ ରାଣୀ ବୋଲେ ॥
ଜଗତର ମାତା ତୁମ୍ଭେ ଲକ୍ଷ୍ମୀନାରାୟଣୀ ।
ବିଷ୍ଣୁ ଅର୍ଦ୍ଧାଙ୍ଗିନୀ ମାତ ଘେନ ମୋ ଦକ୍ଷିଣୀ ॥
ଏହିପରି ଭକ୍ତିଭରେ ପ୍ରଭାବତୀ ରାଣୀ ।
ତଦପରେ ବନ୍ଦିଲେ ସେ ଶ୍ରୀକୃଷ୍ଣ ଜନନୀ ॥
ଯଥାବିଧି ଅନୁସାରେ ମାନ୍ୟକଲେ ରାଣୀ ।
ସ୍ନେହଭରେ କୋଳାକୋଳି ହୋଇଲେ କାମିନୀ

ତଦପରେ ପାର୍ଥ ଯୁବନାଶ୍ୱ ପାଶେଗଲେ ।
ଯୁବନାଶ୍ୱଙ୍କ ଚରଣେ ନମସ୍କାର କଲେ ॥
କଲ୍ୟାଣ କରଣ ରାଜା ସତ୍ୱର ଉଠିଲେ ।
ପାର୍ଥଙ୍କୁ ଯେ ସ୍ନେହଭରେ ଆଲିଙ୍ଗନ କଲେ ॥
ବୋଇଲେ ଶୁଣିଛି ପାର୍ଥ ତୁମ୍ଭର ବିକ୍ରମ ।
ନାମ ଶୁଣି କମ୍ପନ୍ତି ସକଳ ଶୂରଗଣ ॥
ଯେପରି ବିକ୍ରମ ଧର୍ମଜ୍ଞାନ ସେହିପରି ।
ଦେଖିଣ ସନ୍ତୋଷ ଚିତ୍ତ ହୋଇଲା ମୋହରି ॥
ଅର୍ଜ୍ଜୁନ କହିଲେ ଆହେ ପ୍ରଭାବତୀ ନାଥ ।
ଆଜଠାରୁ ତୁମ୍ଭେ ମୋର ଅଟ ଜ୍ୟେଷ୍ଠଭ୍ରାତ ॥
ଧନ୍ୟ ଆମ୍ଭ ପୁଣ୍ୟ କେତେ ତପ କରିଥିଲି ।
ତୁମ୍ଭ ପରି ରାଜାଙ୍କର ଚରଣ ପଡ଼ିଲି ॥
ଧର୍ମଦେବ ଯେପରି ଆପଣ ସେହିପରି ।
ଆମ୍ଭର ଭକ୍ତିଭାଜନ ଅଟ ଦଣ୍ଡଧାରୀ ॥
ଆପଣଙ୍କ ବୀରପୁତ୍ର ସୁବେଗ ସୁମତି ।
ଯଥା ବିଧିରେ ଆମ୍ଭଙ୍କୁ କରିଲେ ପ୍ରଣତି ॥
ପ୍ରଶଂସା କରି ବୋଲନ୍ତି ଯୁବନାଶ୍ୱ ପ୍ରତି ।
ଅନେକ ବୀର ମୁଁ ଦେଖିଅଛି ଏ ଧରିତ୍ରୀ ॥
ତାଙ୍କ ବୀରଧର୍ମ ଦୟା ଭକ୍ତି ତୁଳନାରେ ।
ବୃଷକେତୁ ସମସ୍ତଙ୍କୁ ଜିଣିବେ ବିଧିରେ ॥
ଦାନୀକର୍ଣ୍ଣଙ୍କର ପୁତ୍ର ଦୟା ଅସମ୍ଭବ ।
ତାଙ୍କ ଦୟାରେ ମୋ ପ୍ରାଣ ରହିଛି ଗାଣ୍ଡିବ ॥
ବୃଷକେତୁ ତୁଳନାରେ ସମସ୍ତ ଅଜ୍ଞାନ ।
ଅସାର ସମ୍ପଦ ସୁଖେ ଥାଆନ୍ତି ମୋହେଣ ॥
ଅପୂର୍ବ ସ୍ୱରୂପ ନବଘନ ଦେହ ବର୍ଣ୍ଣ ।
ସମ୍ପଦ ଏହାର ତୁଲେ ନୋହିବ ସମାନ ॥
ପ୍ରେତର ଅଧିକାର ଯେପରି ଶ୍ମଶାନରେ ।
ମୋର ମନ ସଦା ହରି ଶ୍ରୀପଦ୍ମପାଦରେ ॥
ଅନ୍ତର୍ଯ୍ୟାମୀ ଦୀନବନ୍ଧୁ ବିନତି ମୋହର ।
ତୁମ୍ଭ ଶ୍ରୀଚରଣ ତଳେ ରଖ ଏହି ଶିର ॥
ଧନରତ୍ନ ସମ୍ପଦେ ମୋ ପ୍ରୟୋଜନ ନାହିଁ ।
ତୁମ୍ଭ ଶ୍ରୀଚରଣ ଧ୍ୟାଏ ମୁକ୍ତହେବା ପାଇଁ ॥
ଋଷିମୁନିଙ୍କର ଆତ୍ମା ଯେପରି ପବିତ୍ର ।
ତୁମ୍ଭ ନାମେ ମତ୍ତ ଥାଉ ସଦା ମୋର ଚିତ୍ତ ॥
ଭୋଗ ସୁଖରେ ତାଙ୍କର ନ ଥାଏ ଯେ ମନ
କେବଳ ଭାବନା ଏକା ଶ୍ରୀହରି ଭଜନ ॥

ଯେପରି କେମନ୍ତେ ହେବ ମୋତେବର ଦୟା
ହେ ଶ୍ରୀହରି ମୋହଠାରେ ନ ରଖିଣ ମାୟା ॥
ଧର୍ମ ଯୁଧିଷ୍ଠିର ଅଶ୍ୱମେଧ କରିବାକୁ ।
ବାଞ୍ଛା କରିଛନ୍ତି ପୂର୍ଣ୍ଣ କର ହେ ତାହାକୁ ॥
ହେ ଦେବ ଦେବକୀ ସୁତ ଦିଅ ଅନୁମତ ।
ଅଶ୍ୱତ୍ୟାଗ କରନ୍ତୁ ଯେ ବୃଷକେତୁ ରଥୀ ॥
ଜ୍ୟେଷ୍ଠ ଧର୍ମରାଜ ଦେଖି ହୁଅନ୍ତୁ ସନ୍ତୋଷ ।
ଏ ବିନତି ତୁମ୍ଭପାଖେ ଅହେ ପୀତବାସ ॥
ଯୁବନାଶ୍ୱ ବାକ୍ୟ ଶୁଣି ଆନନ୍ଦରେ ହରି ।
ଯୁବେଗ ବୃଷକେତୁଙ୍କୁ କୋଳାଗତ କରି ॥
ସମସ୍ତଙ୍କୁ ନେଇ ପୁରି ମଧ୍ୟକୁ ଚଳିଲେ ।
ଏକମାସ ଯାଏ କାଳ ତହିଁ କଟାଇଲେ ॥
ବାସୁଦେବ ପାଣ୍ଡବଙ୍କୁ ବୋଲନ୍ତି ବଚନ ।
ଯେପରି ହୋଇବ ଅଶ୍ୱମେଧ ଯାଗ ଶୁଣ ॥
ଚଇତ୍ର ପୂର୍ଣ୍ଣିମା ପରେ ଅଶ୍ୱ ମୁକ୍ତ ହେବ ।
ଇଚ୍ଛାମତେ ଏକାଦଶେ ମାସ ସେ ବୁଲିବ ॥
ତାର ପଛେ ବୀରମାନେ ଅସ୍ତ୍ର ଶସ୍ତ୍ର ଧରି ।
ଯାଉଥିବେ ଅଶ୍ୱ ଯେ ବାନ୍ଧିବ ତାକୁ ମାରି ॥
ଅଶ୍ୱ ମୁକୁଳାଇ ପୁନର୍ବାର ଛାଡ଼ି ଦେବେ ।
ଏପରି ପୃଥ୍ୱୀର ସର୍ବ ସ୍ଥାନ ଯେ ବୁଲିବେ ॥
ଏକାଦଶ ମାସ ପରେ ଆଣି ଅଶ୍ୱବର ।
ଅଶ୍ୱମେଧ ଯାଗ ଯେ କରିବେ ଯୁଧିଷ୍ଠିର ॥
ଏବେ ମୁହିଁ ଯାଉଅଛି ଦ୍ୱାରକା ଭୁବନ ।
ଏମନ୍ତ କହିଲେ ପ୍ରଭୁ ଦେବକୀ ନନ୍ଦନ ॥
ଯେତେବେଳଯାଏ ଶୁଭ ସମୟ ନ ହେବ ।
ତେତେବେଳେଯାଏ ଅଶ୍ୱ ଯତ୍ନେ ରଖିଥିବ ॥
ଯୁବନାଶ୍ୱ ରାଜାଙ୍କୁ ରଖିବ ଯତ୍ନକରି ।
ଯେପରି କାଳି କଷ୍ଟ ନ ପାନ୍ତି ଦଣ୍ଡଧାରୀ ॥
ଅମର ଗଣ ଯେପରି ଯଜ୍ଞକୁ ଆସିବେ ।
ଏପରି ବିଧାନ ହେବ ସର୍ବରେ କରିବେ ॥
ଏତେ କହି ଦ୍ୱାରକାକୁ ଗଲେ ନାରାୟଣ ।
ଏ ସମୟେ ବେଦବ୍ୟାସ ପରବେଶ ପୁଣ ॥
ଯୁଧିଷ୍ଠିର ଯୁବନାଶ୍ୱ ଅଶ୍ୱର ରକ୍ଷଣେ ।
କପରି ଯଜ୍ଞ ହୋଇବ ବିଚାରନ୍ତି ମନେ ॥
ବେଦବ୍ୟାସଙ୍କ ଉପରେ ଧର୍ମ ଯୁଧିଷ୍ଠିର ।
ନେତ୍ର ପଡ଼ିବାରୁ ଚିତ୍ତ ଆନନ୍ଦ ଅପାର ॥
ପ୍ରଣାମ କରିଣ ତାଙ୍କୁ ବୋଲନ୍ତି ବଚନ ।
ପବିତ୍ର ହୋଇଲୁ ପାଇ ତୁମ୍ଭ ଦରଶନ ॥
ବେଦବ୍ୟାସ କଲ୍ୟାଣ କରନ୍ତି ଯୁଧିଷ୍ଠିରେ ।
କହ ବାବୁ କପରି ଅଛୁ ତୁ କୁଶଳରେ ॥
ଯୁଧିଷ୍ଠି ଦେବ ବୋଲନ୍ତି ଶୁଣ ତପୀମଣି ।
ଅଶ୍ୱମେଧ ଯାଗପାଇଁ ଚିନ୍ତିତ ମୁଁ ପୁଣି ॥
ଶୁଣିଅଛୁ ପୂର୍ବେ ଥିଲା ମରୁତ ରାଜନ ।
ଅଶ୍ୱମେଧ ଯାଗ ସେହି କଲେ ସମାପନ ॥
ସେ କଥା ଅଶେଷି ମୋତେ କହ ମୁନିବର ।
ଶୁଣିଲେ ହୃଦରୁ ଚିନ୍ତା ହେବ ଅବା ଦୂର ॥
ବ୍ୟାସଦେବ ବୋଲନ୍ତି ଶୁଣ ହେ ଯୁଧିଷ୍ଠିର ।
କିଛି କହେ ଶୁଣ ଯଜ୍ଞ ତଥିର ବିସ୍ତର ॥
ପୂର୍ବେ ମରୁତ ରାଜନ ମହା ଯଜ୍ଞ କଲେ ।
ମନରେ ବୃହସ୍ପତିଙ୍କୁ ସ୍ମରଣ କରିଲେ ॥
ଦେବ ସଭାମଧ୍ୟେ ବୃହସ୍ପତିଙ୍କୁ ରଖିଲେ ।
ମରୁତ ସ୍ମରନ୍ତେ ଯୋଗବଳରେ ଜାଣିଲେ ॥
ଇନ୍ଦ୍ରଙ୍କୁ ବୋଲନ୍ତି ଗୁରୁ ଶୁଣ ସୁନାସୀର ।
ମର୍ତ୍ତ୍ୟେ ମତେ ଚିନ୍ତିଲା ମରୁତ ନୃପବର ॥
ମୁଁ ଏବେ ଯିବାକୁ ଇଚ୍ଛା କରୁଛି ତା ପୁର ।
ଏ ବିଚାର ଦିଅ ଦେବରାଜ ପୁରନ୍ଦର ॥
ଇନ୍ଦ୍ର ବୋଲନ୍ତି ମରୁତ କପାଇଁ ଚିନ୍ତିଲେ ।
ସେ କଥାଟି ଦେବଗୁରୁ କହ ଆମ୍ଭତୁଲେ ॥
ବୃହସ୍ପତି ବୋଲନ୍ତି ମରୁତ ନୃପମଣି ।
ଅଶ୍ୱମେଧ କରିବାକୁ କରଣ ଭାଳେଣି ॥
ସେ କିମନ୍ତେ ଚିନ୍ତନ୍ତି ଆମ୍ଭଙ୍କୁ ନୃପଈଶ ।
କି କରିବ ତୁମ୍ଭର ବିଚାର ଏଥି କସ ॥
ଶଚୀପତି ବୋଲନ୍ତି ଶୁଣ ହେ ଦେବଗୁରୁ ।
ଅନ୍ୟାୟ୍ୟ ଅଟଇ ତୁମ୍ଭ ଯିବା ସ୍ୱର୍ଗପୁରୁ ॥
ନଚଲେକେ କରିବେ ଯେ ଅଶ୍ୱମେଧ ଯାଗ ।
ସେଠାକୁ ତୁମ୍ଭ ଯିବାର ନୁହେଁ ମହାଭାଗ ॥
ନରପକ୍ଷେ ଏ ଯାଗ ଅଟଇ ଦୁଷଣୀୟ ।
ନ ଯାଅ ନ ଯାଅ ତହିଁ ଗୁରୁ ମହାଶୟ ॥
ଇନ୍ଦ୍ରଙ୍କ ବଚନ ଶୁଣି ସ୍ୱର୍ଗେ ଦେବଗୁରୁ ।
ଇନ୍ଦ୍ର ଆଜ୍ଞା ଭାଙ୍ଗି ନ ଅଇଲେ ସ୍ୱର୍ଗପୁରୁ ॥
ଏମନ୍ତ ସମୟେ ବ୍ରହ୍ମାସୁତ ମୁନିବର ।
ପ୍ରବେଶ ହୋଇଲେ ଯାଇ ତାହାଙ୍କ ନଗର ॥

ନାରଦଙ୍କୁ ଦେଖି ରାଜା ଦିବ୍ୟାସନ ଦେଲେ ।
ଆସନେ ବସିଣ ମୁନି କଲ୍ୟାଣ ବାଞ୍ଛିଲେ ॥
ମରୁତ୍ତ ରାଜନ ବୋଲେ ଶୁଣ ମୁନିବର ।
ଅଶ୍ୱମେଧ କରିବାକୁ ମନରେ ବିଚାର ॥
ଏଣୁକରି ଦେବଗୁରୁ କରିଲି ସ୍ମରଣ ।
କିପାଁ ନ ଆସିଲେ ଗୁରୁ କହନ୍ତୁ ଆପଣ ॥
ନାରଦ ବୋଲନ୍ତି ତୁମ୍ଭେ ଶୁଣ ନରବର ।
ଦେବଗୁରୁ ଜଣାଇଲେ ଇନ୍ଦ୍ରଙ୍କ ଛାମୁର ॥
ଇନ୍ଦ୍ର ବୋଇଲେ ହେ ଗୁରୁ ଶୁଣ ଅମ୍ଭ ବାଣୀ
ନର ହୋଇ ଅଶ୍ୱମେଧ ଯାଗକରେ ପୁଣି ॥
ସେ ଯାଗକୁ ତୁମ୍ଭେ ଯିବା ନୁହଇ ଉଚିତ ।
ମୋର ବିଚାରେ ତୁମ୍ଭର ଅଟଇ ଅନୁଚିତ ॥
ଏଣୁକରି ବୃହସ୍ପତି ନ ଆସିଲେ ଏଥି ।
ଏ ବାରତା ଦେବାକୁ ତୋ ପୁରକୁ ଆସିଛି ॥
ନାରଦଙ୍କ ବାଣୀ ଶୁଣି ମରୁତ୍ତ ରାଜନ ।
କିପରି କରିବି ଅଶ୍ୱମେଧ ତପୋଧନ ॥
ବେଦଜ୍ଞ ନ ହେଲେ ଯାଗ ନ ହୋଇବ ପୁଣି ।
କିପରି ମୋ ଆଶା ପୂର୍ଣ୍ଣ ହେବ ତପୀମଣି ॥
ନାରଦ ବୋଲନ୍ତି ରାଜା ଶୁଣ ମନ ଦେଇ ।
ସମ୍ବର୍ତ୍ତ ମୁନିବର ଯେ ବେଦଜ୍ଞ ଅଟଇ ॥
ତାଙ୍କୁ ଆଣିଲେ ତୋ ବାଞ୍ଛା ହୋଇବ ପୂରଣ
ମୋର ବୋଲେ ମୁନିଙ୍କୁ ତୁ କରହୋ ବରଣ
ମୁନିଙ୍କୁ ସ୍ମରଣ କଲେ ମରୁତ୍ତ ରାଜନ ।
ପ୍ରବେଶ ହୋଇଲେ ମୁନି ରାଜାଙ୍କ ଭବନ ॥
ମୁନିଙ୍କି ପ୍ରଣାମ କରି ଦୁଃଖ ଜଣାଇଲେ ।
ମୁନିବର ମନ୍ତ୍ରପାଠେ ଯାଗ ଆରମ୍ଭିଲେ ॥
ବେଦ ଅଧ୍ୟୟନ କଲେ ମୁନି ଶୁଦ୍ଧମନେ ।
ଆହୁତି କରନ୍ତି ଘୃତ ଦେଇଣ ବହ୍ନେ ॥
ଯାଗ ପୂର୍ଣ୍ଣକଲେ ମୁନି ହୋଇ ହୃଷ୍ଟମନ ।
ମନ୍ତ୍ରପାଠେ ଗାଦି ଶୁଦ୍ଧି କରିଲେ ବହ୍ନ ॥
ମରୁତ୍ତ ରାଜାଙ୍କ ଦେହେ ଯେତେ ପାପ ଥିଲା
ଯାଗପୂର୍ଣ୍ଣ ହେବାରୁ ସକଳ କ୍ଷୟ ଗଲା ॥
ପୂର୍ଣ୍ଣାହୁତି ଦେଇ ଯଜ୍ଞବିଧି ବଢ଼ାଇଲେ ।
ଯଜ୍ଞଶେଷେ ମରୁତ୍ତ ରାଜନ ସ୍ୱର୍ଗଗଲେ ॥
ଏଣୁକରି ଧର୍ମରାଜ ଶାସ୍ତ୍ର ଅନୁସାରେ ।
କରିଲେ ଅବଶ୍ୟ ଫଳ ମିଳିବ ସତ୍ୱରେ ॥

ଏ ଜନ୍ମରେ ଯଶଲାଭ ଅନ୍ତେ ସ୍ୱର୍ଗବାସ ।
ପାଇବାକୁ ଚେଷ୍ଟାକର ଆହେ ପଣ୍ଡୁଶିଷ୍ୟ ॥
ବ୍ୟାସଦେବଙ୍କ ମୁଖରୁ ଶୁଣିଣ ଏ ବାଣୀ ।
ଆନନ୍ଦ ସାଗରେ ମଗ୍ନ ହେଲେ ନୃପମଣି ॥
ବାରମ୍ବାର ପଚାରନ୍ତି ଶୁଣ ମୁନିବର ।
କେଉଁପରି ଅଶ୍ୱମେଧ ଯାଗ ହେବ ମୋର ॥
ବ୍ୟାସଙ୍କ ଉତ୍ସାହ ଗିର ଶୁଣି ଯୁଧିଷ୍ଠିର ।
ଅତିଶୟ ଆଶା ବୃଦ୍ଧି ହୋଇଲା ତାଙ୍କର ॥
ଧନ ହେଲେ ରାଜାଙ୍କର ଲୋଭ ବଢୁଥାଏ ।
ଯେପରି ଘୃତ ସଂଯୋଗ ଅଗ୍ନି ବୃଦ୍ଧିହୁଏ ॥
ସେପରି ଯୁଧିଷ୍ଠି ମନେ ଧର୍ମ ଲୋଭ ହେଲା ।
ବ୍ୟାସଦେବଙ୍କୁ ବିନତି କଲେ ଧର୍ମବଳା ॥
କଥୋପକଥନ ହେଲା ବହୁତ ସମୟ ।
ଶ୍ରୋତା ବକ୍ତା ଦୁଇଜଣ ଆନନ୍ଦ ହୃଦୟ ॥
ଯୁଧିଷ୍ଠି ବୋଲନ୍ତି ସ୍ୱର୍ଗଗୃଦ୍ଧ କେବେ କରେ ।
ଡାକ ହାତ ବଢ଼ାଇଲେ ପଡ଼େ କି ବେଗରେ
ବିପଦ କାଳେ ଉଦ୍ଧାର ବାଟ ଯେ ନ କରେ
ମନକଷ୍ଟେ ବସିଲେ ବା କାହୁଁ ତହୁଁ ତରେ ॥
ବିରସ ମନରେ ରାଜା ନିରାଶ ହୋଇଣ ।
ଯଜ୍ଞ ବୃଥା ହେବ ବୋଲି ବିଚାରନ୍ତି ମନ ॥
ଭାବିତରେ ଯୁଧିଷ୍ଠିର ବିଷଣ୍ଣ ହୋଇଲେ ।
ଚିନ୍ତାବ୍ଧିରେ ଧର୍ମରାଜ ବଳାପଡ଼ିଗଲେ ॥
କ୍ଷତାଶ ହୋଇଣ ଦୀର୍ଘ ନିଶ୍ୱାସ ମାରନ୍ତି ।
ଶିରେ କର ମାରି ରାଜା ଏମନ୍ତ ବୋଲନ୍ତି ॥
ବିଧି ଏହା ମୋହର କପାଳେ ଲେଖିଥିଲା ।
କେଉଁ ପାପ ଯଶାରୁ ଏ ଦଣ୍ଡ ମୋତେ ଦେଲା
ଏ ଜନ୍ମେ ହେତୁ ପାଇଲା ଦିନରୁ ମୋହର ।
ଭଲ ବିନା ମନ୍ଦ କରି ନାହିଁ ମୁଁ କାହାର ॥
ଉପକାର ବିନା ଅପକାର କରି ନାହିଁ ।
କିମ୍ପା ଏ ଦୁର୍ଘଟଣା ମୋ ଭାଗ୍ୟେ ଅଟଇ ॥
ଏତେ କଷ୍ଟ ମୋ କପାଳେ ଘଟେ କାହିଁପାଇଁ ।
ଜଣାଯାଏ ପୂର୍ବେ ପାପ କରିଅଛି ମୁହିଁ ॥
ଦଇବ ଭଗାରି ହେଲେ ମୁଁ କି କରିପାରେ ।
ଭଲ କି କରିବି ଯାଇଁ ଦଇବ ସଙ୍ଗରେ ॥
ଚିନ୍ତିତ ହୋଇଣ ଯୁଧିଷ୍ଠିର ନରପତି ।
ମନର ବ୍ୟାକୁଳେ ବ୍ୟାସଦେବଙ୍କୁ ବୋଲନ୍ତି ॥

ଅହେ ଦେବ ସତ୍ୟବତୀସୁତ ବାରେ ଶୁଣ ।
କିପରି ଶୀତଳ ହେବ ଏ ଦଗ୍ଧ ପରାଣ ॥
ସର୍ବଦା ଏ ମନସ୍ତାପ ମୋର ହୃଦବନ ।
ଅହରହ ଦହନ କରୁଛି ତପୋଧନ ॥
ଧର୍ମରାଜାଙ୍କ ବ୍ୟାକୁଳ ଦେଖି ମୁନିବର ।
କଥା ପ୍ରସଙ୍ଗରେ ତାଙ୍କୁ ବୋଲନ୍ତି ଉତ୍ତର ॥
ବ୍ୟାସଙ୍କ ବାକ୍ୟରେ ଧର୍ମରାଜ ହେଲେ ଶାନ୍ତ ।
ମହାଦେବ କୃପାଧ୍ୟାୟ ଭଜେ ଉମାକାନ୍ତ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାର କଥା ପ୍ରବନ୍ଧେ ନାମ
ସପ୍ତମୋଽଧ୍ୟାୟଃ ।



# ଅଷ୍ଟମ ଅଧ୍ୟାୟ

ଗୁଣତ୍ରୟ ବିଭେଦେନ ମୂର୍ତ୍ତିତ୍ରୟ ମୁପେୟୁଷେ
ଶଙ୍ଖଚକ୍ରଗଦାପଦ୍ମ ଧାରିଣେ ବ୍ରହ୍ମଣେ ନମଃ ॥

## ଯୁଧିଷ୍ଠିର ଏବଂ ବ୍ୟାସଦେବଙ୍କ ବର୍ଣ୍ଣାଶ୍ରମ ଧର୍ମ ସମ୍ବନ୍ଧେ ପରସ୍ପର କଥୋପକଥନ

ଶଙ୍କର ବୋଲନ୍ତି ଦେବୀ ପାର୍ବତୀ ଗୋ ଶୁଣ
ବ୍ୟାସଦେବଙ୍କ ବାକ୍ୟରେ ଧର୍ମଙ୍କ ନନ୍ଦନ ॥
ମନୁ ମନସ୍ତାପ ଦୂର ହୋଇଲା ତାଙ୍କର ।
ଶୁଣି ପଚାରନ୍ତି ପ୍ରଶ୍ନ କୁନ୍ତୀଙ୍କ କୁମର ॥
ତୁମ୍ଭଠାରୁ ଅତ୍ର ଧର୍ମ ତତ୍ତ୍ୱ ମୁଁ ଶୁଣିଲେ ।
ମନର ଅଶାନ୍ତି ମାନ ଦୂର ହେବ ଭଲେ ॥
ଏକମାତ୍ର କାମନା କିପରି ଯାଗ ହେବ ।
ସଦା ହୃଦକୁ ଘାରୁଛି ଅହେ ମହାଭାଗ ॥
ଅତି ରୋଗୀ ବ୍ୟକ୍ତି ସନ୍ନିପାତ ସମୟରେ ।
ଜଳ ପାଇଁ ସମସ୍ତଙ୍କୁ ଅସ୍ତବ୍ୟସ୍ତ କରେ ॥
ମନ୍ଦ ହେବ ଭାବି ଲୋକେ ନ ଦିଅନ୍ତି ଜଳ ।
ଜଳ ନ ପାଇଣ ସେହି ହୁଅଇ ବିକଳ ॥
ସେପରି ଏ ଜଗତେ ମନ ଧାଉଛି ସତତ ।
ଆଶାପୂର୍ଣ୍ଣ ହେଉ ନାହିଁ ସତ୍ୟବତୀ ସୁତ ॥
ଦୟାକର ସେ ଆଶା ମୋ କେବେ ପୂର୍ଣ୍ଣ ହେବ
ତାହା ନ ହୋଇଲେ ନିଶ୍ଚେ ମରଣ ମୋ ଧ୍ରୁବ ॥
ଧର୍ମର ନିୟମ କେଉଁ ମୂଳ ମୂନେ ଅଛି ।
ଅହେ ତପୋଧନ ମୋତେ କହିବାକ ବାଛି ॥
ଆଶ୍ରମ ବାସରେ ବର୍ଣ୍ଣଭେଦ ଧର୍ମଭେଦ ।
ଧର୍ମଶାସ୍ତ୍ରେ କେଉଁପରି ଲେଖିଛନ୍ତି ବେଦ ॥
ସର୍ବଲୋକେ ହିତକାରୀ ସଜ୍ଜନ ସୁମତି ।
ହେ ମହର୍ଷି ଲୋକେ ଏହା କିପରି ଅର୍ଜନ୍ତି ॥
ଯେଉଁ ଜୀବ ବୃଥା ମୋହ ମାୟାରେ ପଡ଼ନ୍ତି ।
କେଉଁ ପରକାରେ ସେହି ମୁକତି ଲଭନ୍ତି ॥
କି କାର୍ଯ୍ୟ କରିଲେ ହୁଏ ଜଗତରେ ଖ୍ୟାତି ।
ବଂଶର ସମ୍ମାନ ବଢ଼େ ଧର୍ମ କର୍ମେ ମତି ॥
ଅନ୍ତଃକାଳେ ସ୍ୱର୍ଗବାସ ହୁଏ ବିଶେଷରେ ।
ପ୍ରକାଶିଣ ଅହେ ତପିମଣି କହ ମୋତେ ॥
ଧର୍ମରାଜାଙ୍କ ବଚନ ବ୍ୟାସଦେବ ଶୁଣି ।
ଅତିଶୟ ଆନନ୍ଦରେ ବୋଲିଛନ୍ତି ବାଣୀ ॥
ଅହେ ପାଣ୍ଡୁ କୁଳ ମଣି ଦୀର୍ଘଜୀବୀ ହୁଅ ।
ତୁମ୍ଭ କଥା ଶୁଣି ମୋର ଆନନ୍ଦ ହୃଦୟ ॥
ଜ୍ଞାନକଥା ଶୁଣିବା କାରଣେ ତୁମ୍ଭ ମନ ।
ଶୁଣିଲେ ସନ୍ଦେହ ଜାଲ ଛିଡ଼ିବ ବହନ ॥
ଯୁକ୍ତି ତର୍କକର ମନଭାବ ଯେ ବୁଝଇ ।
ବିବେକ ଶକ୍ତିରେ ଭଲମନ୍ଦ ବିଚାରଇ ॥
ଜାଣିଲି ଏ ପୃଥିବୀରେ ତୁମ୍ଭେ ଏକମାତ୍ର ।
ଧର୍ମ ଚତୁଷ୍ପଦ ତୁମ୍ଭଠାରେ ବିରାଜିତ ॥
ପାପ ନାଶନ କାରଣେ ହୋଇଛ ଉଦିତ ।
ସାଧୁ ସାଧୁ ସାଧୁ ବାବୁ ତୁମ୍ଭର ଚରିତ ॥
ପବିତ୍ରଆତ୍ମା ଥିବାରୁ ତୁମ୍ଭର ନିରତେ ।
ତୁମ୍ଭଙ୍କୁ ଶ୍ରୀହରି ନ ଛାଡ଼ନ୍ତି କଦାଚିତେ ॥
ସାଧାରଣ ତତ୍ତ୍ୱ ବୁଝି ସାମାନ୍ୟ ବୁଦ୍ଧିରେ ।
ଧର୍ମଲାଭ କରନ୍ତି ଯା ଶୁଣିଛୁ କର୍ଣ୍ଣରେ ॥
ତୁମ୍ଭପରି ଶ୍ରୋତା ଏ ସଂସାରେ କେହି ନାହିଁ ।
ମୁକ୍ତ କଣ୍ଠେ ଏହା ମୁଁ କହୁଛି ନରସାଇଁ ॥
ମୋହର ବଚନ ଶୁଣ ଅହେ ଧର୍ମରାଜ ।
ପ୍ରଥମେ ସୃଷ୍ଟିର କଥା ମନ ଦେଇ ହେଜ ॥
ବିଧାତା କେତେ ପ୍ରକାରେ ପ୍ରାଣୀ ସୃଜିଛନ୍ତି ।
ନିଜ ଇଚ୍ଛାମତେ ବାଳବତେ ସେ ଖେଳନ୍ତି ॥

କେବେ ସୃଷ୍ଟି କେବେ ସ୍ଥିତି କେବେ ବା ପ୍ରଳୟ
କେ ହସେ କେ କାନ୍ଦେ କେହୁ ବିଷାଦ ହୃଦୟ
ମାନବ ପ୍ରାଣୀଗଣଙ୍କ ମଧ୍ୟରେ ପ୍ରଧାନ ।
ଜ୍ଞାନବୁଦ୍ଧି ଚିନ୍ତାଶକ୍ତି ଆଦି ବିଦ୍ୟମାନ ॥
ମାନବ ଶରୀରେ ପ୍ରଭୁ ସଦା ବିରାଜିତ ।
କିନ୍ତୁ ସେମାନଙ୍କ ଅଛି ପାର୍ଥକ୍ୟ ବହୁତ ॥
ସତ୍‌କର୍ମ କରିଲେ ସତ୍ୟ ଫଳ ଯେ ମିଳଇ ।
ମାନବ ସତ ମାର୍ଗରେ ଗଲେ ମୁକ୍ତି ପାଇ ॥
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ମଧ୍ୟେ ଶୂଦ୍ର ନୀଚ ।
କର୍ମବଶେ ଶୂଦ୍ର ହୋଇ ପାରଇ ଯେ ଉଚ୍ଚ ॥
ଚାରିବର୍ଣ୍ଣରେ ବ୍ରାହ୍ମଣ ଅଟଇ ପ୍ରଧାନ ।
ସେଥିଯୋଗେ ବ୍ରାହ୍ମଣ ପାଆନ୍ତି ଅତି ମାନ୍ୟ॥
ବ୍ରାହ୍ମଣଙ୍କ କାର୍ଯ୍ୟ ବେଦବିଧି ଧର୍ମଜ୍ଞାନ ।
ତପ ଜପ କ୍ରିୟା ଆଦି ପବିତ୍ର ବିଧାନ ॥
ଯାଜନ ଯଜନ ଅଧ୍ୟୟନ ହୋମଯାଗ ।
ଗାୟତ୍ରୀ ସାବିତ୍ରୀ ଦେବ ପୂଜାଆଦି ସର୍ବ ॥
ଧର୍ମଶାସ୍ତ୍ର ପୁରାଣକୁ କରଇ ପଠନ ।
ଧର୍ମେ ମତି ରଖି ପାପେ ନ ଦିଅଇ ମନ ॥
ଆଗମ ନିଗମ ଗୀତା ଆଦି ଯେତେ ପାଠ ।
ଏମାନଙ୍କୁ ସର୍ବଦା ଯେ କରନ୍ତି ଅଭ୍ୟାସ ॥
ଧର୍ମରକ୍ଷା କରନ୍ତି ଯେ ପବିତ୍ର ଭାବରେ ।
ପର ଅପବାଦ ଭୀତି ରଖିଣ ମନରେ ॥
ଲୋକ ମୁଖେ ଯଶ ପ୍ରଶଂସିତ କାର୍ଯ୍ୟ କରେ ।
ମନ ନ ବଳାଏ ପରଦ୍ରବ୍ୟ ହରଣରେ ॥
ପର ସୁଖ ଦୁଃଖ ଦେଖି ଭାବଇ ମନର ।
ଈଶ୍ୱରଙ୍କ ଖେଳ ଅଟେ ଏ ମାୟା ସଂସାର ॥
ଧର୍ମ ନ୍ୟାୟ କଥା ବିନା କିଛି ନ ଭାବଇ ।
ଧର୍ମ ଚେଷ୍ଟା ଭିନ୍ନ ତାର ଅନ୍ୟ ଚେଷ୍ଟା ନାହିଁ॥
ଗୁରୁ ନାମ ମନକୁ ଧରଇ ଯତ୍ନକରି ।
ଅନ୍ୟେ ମନ ନ ବଳାଇ ବିଷ୍ଣୁ ସେବା କରି
ବ୍ରାହ୍ମଣଙ୍କ କାର୍ଯ୍ୟ ଏହା ଯେହୁ ଦ୍ୱିଜ କରେ ।
ବ୍ରହ୍ମତେଜ ପାଏ ଖ୍ୟାତି ହୁଅଇ ସଂସାରେ ॥
ସତ୍ୟବିନା ମିଥ୍ୟାକୁ ଯେ ମୁଖେ ନ ଧରଇ ।
ସେ ଯେଉଁ କାର୍ଯ୍ୟ କରିବ ନିଷ୍ଫଳ ନୁହଇ ॥
ବ୍ରାହ୍ମଣଙ୍କ ଅନଳ ଶକ୍ତିରୁ ବଳି ଠାଣି ।
ବ୍ରହ୍ମ ତେଜକୁ ଡରନ୍ତି ସ୍ୱର୍ଗେ ଦେବଗଣ ॥

ସର୍ବଭୂତେ ସମଭାବ ନ କରେ ପ୍ରଭେଦ ।
ବ୍ରହ୍ମ ଜାଣନ୍ତି ବ୍ରାହ୍ମଣ କହିଅଛି ବେଦ ॥
ତା ନ କର ଯେ ମହୀରେ ହୋଇଅଛି ଖ୍ୟାତ
ଧର୍ମର ମହିମା ଗୁଣେ ହୁଅଇ ମୋହିତ ॥
ଯୁଦ୍ଧରେ ବଳିଷ୍ଠ ଲୋକ ଦୁର୍ବଳକୁ ଦେଖି ।
ଶରମାରେ ନାହିଁ ନ୍ୟାୟ ପକ୍ଷକୁ ସେ ରଖି ॥
ନ ପଳାଇ ସଙ୍ଗ୍ରାମ ସମ୍ମୁଖେ ଯୁଦ୍ଧକରେ ।
ପ୍ରାଣ ହରନ୍ତି ସେମାନେ ଯାନ୍ତି ସ୍ୱର୍ଗପୁରେ ॥
ଶରଣାଗତ ଲୋକକୁ ଯେହୁ ନ ପ୍ରହାରେ ।
ତାହାହେଲେ ତାର ଯଶ ରହେ ଏ ମହୀରେ
ଇହଜନ୍ମେ ପରଜନ୍ମେ ସେ ସୁଖ ଲଭଇ ।
ସତ୍ୟକଥା ଏ ନିଶ୍ଚୟ ଏଥେ ମିଥ୍ୟା ନାହିଁ ॥
ଏପରି ସୁଗୁଣବନ୍ତ ଅଟେ ଯେଉଁ ନର ।
ପ୍ରକୃତ କ୍ଷତ୍ରିୟ ସେହି ଏହି ପୃଥିବୀର ॥
ବାଣିଜ୍ୟ ନିପୁଣ ଯେହୁ ନ୍ୟାୟପଥେ ଯାଏ ।
ସ୍ୱଭାବ ସରଳ ଯେବେ ଚିତ୍ତ ଶାନ୍ତ ଥାଏ ॥
ଅତିଥି ସେବାରେ ସଦା ରଖିଥାଏ ମନ ।
ମିଥ୍ୟାକଥା ଶୁଣିବାକୁ ନ ଡେରଇ କାନ ॥
ତୀର୍ଥମାନଙ୍କରେ ନାନା ଦାନ କାର୍ଯ୍ୟକରେ ।
କଳିବୋଲି ମନେଗର୍ବ ନ ବହେ ସେ ଛଳେ
ବୈଶ୍ୟ ଜାତିର ଏ ଚିହ୍ନ ଜାଣ ବିଜ୍ଞନର ।
ମହୀରେ ଭୋଗ କରଇ ସମ୍ମାନ ଅପାର ॥
ଅତିଥି ସେବାରେ ସଦା ମନଟି ଯାହାର ।
ମିଛକଥା ଶୁଣି ଘୃଣାକରେ ଯେଉଁ ନର ॥
ତୀର୍ଥବାସ କରିବାରେ ମନ ଯାର ଥାଏ ।
ବୈଶ୍ୟ ଲକ୍ଷଣ ସଂସାରେ ଭୋଗ ସେହୁ ପାଏ
ଶୂଦ୍ରମାନଙ୍କର କାର୍ଯ୍ୟ ଶୁଣ ଦେଇ ମନ ।
ସେବା କରିବେ ସର୍ବଦା ଏମାନଙ୍କୁ ପୁଣ ॥
ତପ ଜପ ଯଜ୍ଞ ଆଦି ବେଦ ପାଠ ମାନ ।
ଶୂଦ୍ରମାନଙ୍କ କରିବା ନୁହଇ ବିଧାନ ॥
ବିପ୍ର ସେବା କଲେ ତାଙ୍କ ସଦଗତି ହୁଏ ।
ଦେବତାର ପୂଜାଫଳ ସହଜେ ସେ ପାଏ ॥
ଯେ ଶୂଦ୍ର ସତ୍‌କର୍ମ କରି ବିଷ୍ଣୁ ଭକ୍ତିକରେ ।
ବ୍ରାହ୍ମଣ ସମାନ ସେହି ବୋଲାଏ ମହୀରେ ॥
ଭାଗ୍ୟ ଦୋଷେ ଯେଉଁ ସ୍ତ୍ରୀ ବିଧବା ହୁଅଇ ।
ସୁଖଭୋଗ ପାଇଁ ସବୁବେଳେ ଭାବୁଥାଇ ॥

କଷ୍ଟ ସମ୍ପତ୍ତି ହସ୍ତରେ ପଡ଼ିଲେ ତାହାର ।
ବେଶଭୂଷା ହୋଇ ରମେ ଯାଇ ପୁରୁଷର ॥
କହିବା ଚାଲିବା ଗତି କରେ ବିଡ଼ମ୍ବନ ।
ଏ ନାରୀ ଯା ଘରେ ଥାଏ ସେ ନର୍କ ଭୁବନ ॥
ସ୍ତ୍ରୀ କୁଳଟା ଅବର ସ୍ୱାମୀ ନିନ୍ଦାକାରୀ ।
ହୋଇଲେ ତାର ପାପରେ ସ୍ୱାମୀ ଯାଏ ମରି ॥
ଯେଉଁ ନାରୀ ପତିପ୍ରାଣା ସେହି ପତିବ୍ରତା ।
ସ୍ୱାମୀ ଛଡ଼ା ନ ପୂଜଇ ଅନ୍ୟାନ୍ୟ ଦେବତା ॥
ସ୍ୱାମୀ ସୁଖେ ସୁଖୀ ଦୁଃଖେ ଦୁଃଖିତ ହୁଅଇ ।
କେତେବେଳେ କଟୁକଥା ସ୍ୱାମୀକୁ ନ କହି ॥
ଶାଶୁ ଶ୍ୱଶୁର ଦେବରମାନଙ୍କୁ ସେ ପୁଣି ।
ବିଧିମତେ ଭକ୍ତି ସ୍ନେହେ କାଟୁଥାଏ ଦିନ ॥
ଏପରି ରମଣୀ ଯେବେ ବିଧବା ହୁଅଇ ।
ସ୍ୱାମୀ ନାମ ମାଳକରି ସଦା ଜପୁଥାଇ ॥
ଦିନରାତି ଈଶ୍ୱରଙ୍କ ନାମ ଜପକରେ ।
କଠୋର ବୈଧବ୍ୟବ୍ରତ ପାଳେ ଆନନ୍ଦରେ ॥
ନିଜର ଭାଗ୍ୟର ଫଳ ଜାଣି ସେ ତରୁଣୀ ।
ସର୍ବ ସମୟରେ ଚିନ୍ତା କରେ ଚକ୍ରପାଣି ॥
ମରିବା ସମୟେ ସ୍ୱାମୀ କିମ୍ବା ବାପ ଘରେ ।
ପର ପୁରୁଷ ନ ଚୁହିଁ ଥାଏ ଆନନ୍ଦରେ ॥
ଏପରି ନାରୀର ପୁଣ୍ୟବଳେ ଦୁଇକୁଳ ।
ଅକ୍ଳେଶେ ଯାଆନ୍ତି ତରି ଜାଣ ବିଜ୍ଞନର ॥
ଜଗତରେ ସାର ଅଟନ୍ତି ଯେ ନାରୀଗଣ ।
ତାଙ୍କ ବିନା ଗୃହ କାର୍ଯ୍ୟ ନୁହଇ କରଣ ॥
ପିଲାଦିନେ ପିତାଙ୍କର ଅଧୀନରେ ଥାନ୍ତି ।
ଯୌବନେ ସ୍ୱାମୀ ଅଧୀନେ ସମୟ କାଟନ୍ତି ॥
ବିବାହ ଦିନରେ ସ୍ୱାମୀ ସଙ୍ଗେ ଥାଏ ରହି ।
ସଦା ସର୍ବଦା ସ୍ୱାମୀର ଆଦେଶ ପାଳଇ ॥
ବୃଦ୍ଧ ଅବସ୍ଥାରେ ପୁତ୍ର ଅଧୀନରେ ରହି ।
ସ୍ୱାଧୀନତା କେତେବେଳେ ସେମାନଙ୍କ ନାହିଁ
ରମଣୀର ମଧୁରତା ମନୋହର ଛବି ।
ଦେଖିଲେ ସମସ୍ତଙ୍କର ହୃଦ ଯାଏ ଦ୍ରବି ॥
ମାନ ଲଜ୍ଜା ଆବରଣ ରୂପରେ ତାଙ୍କର ।
ରକ୍ଷା କରଥାଏ ମାନ ମର୍ଯ୍ୟାଦା ସକଳ ॥
ତୀର୍ଥ ଯାତ୍ରା ବାରବ୍ରତ ଦେବତା ଅର୍ଚ୍ଚନ ।
ନାରୀମାନଙ୍କର ଏଥିଁ ନାହିଁ ପ୍ରୟୋଜନ ॥
ସ୍ୱାମୀ ତୀର୍ଥ ସ୍ୱାମୀ ବ୍ରତ ସ୍ୱାମୀ ଜପ ଧ୍ୟାନ ।
ସ୍ୱାମୀ ମନ୍ତ୍ର ସ୍ୱାମୀ ତନ୍ତ୍ର ସ୍ୱାମୀ ଆରାଧନ ॥
ଏପରି ନାରୀ ଯା ଗୃହେ ଥାଏ ସେ ଗୃହକୁ ।
ପଦ୍ମାଳୟା ସହ ହରି ନ ଛାଡ଼ନ୍ତି ତାକୁ ॥
କାମିନୀମାନେ ସଂସାରେ ସୁଖର କାରଣ ।
ସେମାନଙ୍କୁ ଛାଡ଼ି ଗୃହ କଲେ ଅକାରଣ ॥
ଦୁଃଖ ଶୋକ ବିପଦରେ ଧୈର୍ଯ୍ୟ ଦେବାପାଇଁ ।
ପୁଣି ଶାନ୍ତି ଲଭିବାର ସ୍ଥାନ ନାରୀ ହୋଇ ॥
ଏତେଗୁଣ ଥିଲେ ମଧ୍ୟ ସ୍ତ୍ରୀଜାତିଠାରେ ।
ବିଶ୍ୱାସ ନ ଯିବେ କେବେ ତାହାଙ୍କୁ ବିଧିରେ ॥
ମାୟାର ଭଣ୍ଡାର ସେହିମାନେ ଯେ ଅଟନ୍ତି ।
ନାନା ଗୃଣୁ କହଣ ସେ ପୁରୁଷ ଭୁଲନ୍ତି ॥
ନାରୀମାନଙ୍କର ସ୍ନେହ ମୋହରେ ପଡ଼ିଣ ।
କେତେବେଳେ ନ କହିବ ବିଶ୍ୱାସ ବଚନ ॥
ଗୁପ୍ତକଥା ନାରୀକୁ କହିଲେ ବିଶ୍ୱାସରେ ।
ବିପଦ ବରଣ ସେହି କରେ ସହଜରେ ॥
ଯେଉଁମାନେ ଅଟନ୍ତି ଯେ କୁଳବତୀ ନାରୀ ।
ଲଜ୍ଜାଶୀଳା ଧାର୍ମିକ ସେ ପତି ସେବାକାରୀ ॥
ଦାସୀ ଯୋଗ୍ୟା ନାରୀଙ୍କର ରୀତିନୀତି ଶୁଣ ।
ଯେତେ ଇଚ୍ଛା ତେଣେ ଯାଏ ଲଜ୍ଜା ନ ଭାବଣ ॥
ଶୁଣିବାକୁ ପରଛିଦ୍ର ଡେରିଥାଏ କର୍ଣ୍ଣ ।
ଅନ୍ୟକୁ ବିପଦ ହେଲେ ହରଷିତ ମନ ॥
ଯାଉଥିବାବେଳେଲୋକେ ଜାଣିବା ସକାଶେ ॥
ଦେଖାଇ ହୋଇଣ ଛଟା ଚାଲେ ଗତିରସେ ।
ଧନୀଲୋକ ପାଶେ ସବୁବେଳେ ତାର ଗତି ।
ନାନାଦି ଯନ୍ତ୍ର ମନ୍ତ୍ରରେ ବଡ଼ ବୁଦ୍ଧିମତୀ ॥
ଏହିପରି ନାରୀମାନେ ହୋନ୍ତି ସହଚରୀ ।
ନାରୀବଶ ପୁରୁଷମାନଙ୍କ ଚର ସ୍ତ୍ରୀ ॥
ଏପରି ନାରୀଙ୍କୁ ଯେହୁ ସମାଦର କରେ ।
ସର୍ବ ସୁଖ ନାଶଯାଏ ତାର ସହଜରେ ॥
ସୁନ୍ଦର ଲାବଣ୍ୟ ରୂପ ବୁଦ୍ଧିମତୀ ନାରୀ ।
ନୀଚଲୋକ ସଙ୍ଗେ ପଡ଼ି ନଷ୍ଟକରେ ଶିରୀ ॥
ଯେପରି ଦୁଧରେ ଅଳ୍ପ ଗାଈମୂତ୍ର ପଡ଼ି ।
ଦୁଧର ସୁଗୁଣଯାଇ ସବୁ ଦିଏ ପୋଡ଼ି ॥
ଶ୍ରେଷ୍ଠବଂଶ ଉଚ୍ଚବଂଶ ବିଶୁଦ୍ଧ ବେଭାର ।
ଧର୍ମ କାର୍ଯ୍ୟ ବିନା ଚିନ୍ତା ନ ଥାଇ ଯାହାର ॥

ସାବିତ୍ରୀ ସତୀଙ୍କ ନାମ ଜଗତେ ବିଖ୍ୟାତ ।
ସେପରି ରମଣୀ ହୁଏ ସ୍ୱାମୀସଙ୍ଗେ ରତ ॥
ସ୍ୱାମୀ ଏ ସବୁ ବିପଦ ସହଚରୀ କରେ ।
କେତେ କେତେ ନାରୀଙ୍କୁ ନାଶଇ ସହଜରେ ॥
ଏହି ହେତୁ ଧର୍ମରାଜ ମୋ ବଚନ ଶୁଣ ।
ନାରୀଙ୍କୁ କେବେ ବିଶ୍ୱାସ ନ ଯିବ ରାଜନ ॥
ବିଶେଷ ଭାବରେ ଦୃଷ୍ଟି ରମଣୀମାନଙ୍କୁ ।
ରଖିବ ହେ ଧର୍ମରାଜ କହିଲି ତୁମ୍ଭଙ୍କୁ ॥
ରାଜାଙ୍କ ଉଚିତ ଅଟେ ପରଜା ପାଳନ ।
ପ୍ରଜାଙ୍କର ଅମଙ୍ଗଳେ ରାଜା ନଷ୍ଟ ଜାଣ ॥
ବେଶ୍ୟା ଭ୍ରଷ୍ଟା ନାରୀମାନେ ଏହି ଜଗତରେ ।
ସାହାଯ୍ୟ ପାଇଲେ ମନ୍ଦ ଘଟାନ୍ତି ସତ୍ୱରେ ॥
ତେଣୁ ସେମାନଙ୍କୁ ଦୂରେ ରଖିବା ଉଚିତ ।
ଯେ ମନ୍ତ୍ରେ ତାଙ୍କ ପ୍ରୀତିରେ ଧର୍ମହୁଏ ହତ ॥
ଅଶେଷ ନରକ ଭୋଗ ସେ ନର କରଇ ।
ଜୀବନ୍ତେ ଅଶାନ୍ତି ମଲେ କୁମ୍ଭୀପାକେ ଯାଇ ॥
ନାସ୍ତିକ ଧର୍ମ ବିଦ୍ରୋହୀ ପାଷଣ୍ଡ ମାନବେ ।
ନ ମାନନ୍ତି ଭଗବାନ ଅଛନ୍ତି ଏ ଭବେ ॥
ମଦ ମାଂସ ଓ ବେଶ୍ୟାସଙ୍ଗେ ଉଦ୍ଧତ ଅସୁର ।
ପ୍ରଜାପୀଡ଼କ ନର୍କରେ ବାସ ଏହାଙ୍କର ॥
ଶାସ୍ତ୍ରେଅଛି ସର୍ପବିଷ ରୋଗ ନାଶକରେ ।
ହେଲେ ମଧ୍ୟ ତା ପାଶକୁ କିଏ ଯାଇପାରେ ॥
ତାହାଙ୍କର ସହବାସ ନରକ ଯେପରି ।
ସଂସର୍ଗରେ ଧର୍ମ ନାଶ ହୁଏ ସେହିପରି ॥
ଏମାନଙ୍କ ସଙ୍ଗେ ପ୍ରୀତି ଯେ ନର କରଇ ।
ଧର୍ମ କର୍ମ ନଷ୍ଟକରି ନରକେ ପଡ଼ଇ ॥
ଚଣ୍ଡାଳର ଘରେ ଯେବେ ଉପଯୁକ୍ତ ନର ।
ଜନ୍ମହେଲେ ନିଜଗୁଣେ ପୂଜ୍ୟ ଜଗତର ॥
ସଂସାରରେ ମାୟାଜାଲ ଖଣ୍ଡନ ନିମନ୍ତେ ।
ଯାହାଙ୍କର ଚିତ୍ତଥାଏ ହରି ପଦାଗ୍ରତେ ॥
ନିଜ ପରିବାରଠାରୁ ମାୟାମୋହ ଛାଡ଼ି ।
ସାଧୁସଙ୍ଗ ପାଇବାକୁ ସଦାଥାଏ ଲୋଡ଼ି ॥
ତୀର୍ଥ ଆଦି ଦେଖିବାକୁ ବଳଇ ତା ମତି ।
ସର୍ବଦା ଚିନ୍ତା କରଇ ପ୍ରଭୁ ବିଶ୍ୱପତି ॥
ନୁହେଁ ସେ ଜନ ସାମାନ୍ୟ ଦେବତା ପ୍ରକାର ।
ପଟାନ୍ତର ଦେବାକୁ ନ ଥିବ ଜନାନ୍ତର ॥

ଏପରି ନର ସଂସାରେ ଧନ୍ୟ ଯେ ଅଟଇ ।
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ପାଇ ॥
ଜୟ ପ୍ରଭୁ ନାରାୟଣ କମଳା ବିଳାସ ।
ଉପାଧ୍ୟାୟ ମହାଦେବ ପଦେ କରେ ଆଶ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାର କଥା ପ୍ରସଙ୍ଗେ ନାମ
ଅଷ୍ଟମୋଽଧ୍ୟାୟ

---

## ନବମ ଅଧ୍ୟାୟ

ପତିତାନାଂ ପରିତ୍ରାତୁଂଘୋର ଦୁଷ୍କୃତ କର୍ମଣ
ଅବତୀର୍ଣ୍ଣ ସ୍ୱୟଂ ବିଷ୍ଣୁର୍ନାମ ପତିତପାବନ ।

### ଲକ୍ଷ୍ମୀଙ୍କ ଅବସ୍ଥାନ ସମ୍ବନ୍ଧେ ବେଦ ବ୍ୟାସ ଓ ଯୁଧିଷ୍ଠିରଙ୍କର କଥୋପ-କଥନ, ଶ୍ରୀକୃଷ୍ଣଙ୍କୁ ଆଣିବାକୁ ଭୀମର ଦ୍ୱାରକା ଗମନ

ଏଥୁଅନ୍ତେ ଜଇମିନି ଜନ୍ମେଜୟେ କହି ।
ବୋଇଲେ ଶୁଣ ହେ ରାଜା ମନକର୍ଣ୍ଣ ଦେଇ ॥
ବେଦବ୍ୟାସଙ୍କ ମୁଖରୁ ଶୁଣିଣ ବଚନ ।
କହିବାକୁ ଆରମ୍ଭିଲେ ଧର୍ମ ନୃପରାଣ ॥
ଆପଣଙ୍କ ସୁଦୟାରୁ ମୋ ଜ୍ଞାନ ଉଦୟ ।
ସଂସାରୀ ଧର୍ମ କହିଲ ଆହେ ଦୟାମୟ ॥
ଏବେ ମୁହିଁ ପଚାରୁଛି ଆହେ ଋଷିବର ।
ଲକ୍ଷ୍ମୀ ସୁଦୟାରେ ଚଳେ ସକଳ ସଂସାର ॥
ତାଙ୍କୁ ଛାଡ଼ି ସଂସାରରେ କିଛି ସୁଖ ନାହିଁ ।
ତାଙ୍କ ଦୟାବଳେ ନର ସମସ୍ତ ଲଭଇ ॥
କେଉଁ କାର୍ଯ୍ୟ କଲେ ଲକ୍ଷ୍ମୀ ଅଚଳ ରହିବ ।
ଲକ୍ଷ୍ମୀଙ୍କର ସ୍ନେହ ଦୟା କେଉଁରୂପେ ହେବ ॥
ଲକ୍ଷ୍ମୀ ଯେଉଁ ଗୃହେ ଯାଇ ବସତି କରନ୍ତି ।
ସେ ଗୃହକୁ କେବେ ନ ଛାଡନ୍ତି ଶିରୀପତି ॥
ଏଥିର କାରଣ ମୋତେ କୁହ ତପୀ ସାଇଁ ।
ତବ ମୁଖୁଁ ଶୁଣି ମୁହିଁ କୃତାର୍ଥ ହେବଇଁ ॥
ଏସନ ବଚନ ଧର୍ମଠାରୁ ବ୍ୟାସ ଶୁଣି ।
ମନ୍ଦହାସେ ଆରମ୍ଭିଲେ କହିବାକୁ ବାଣୀ ॥
ଶ୍ରୀକୃଷ୍ଣଙ୍କୁ ଶୁଦ୍ଧମନେ ଯେ କରଇ ଧ୍ୟାନ ।
ସତି ଆଚରଣ କରେ ସତ୍ୟେ ଧୂଏ ମନ ॥

ସମସ୍ତ ଜୀବଙ୍କଠାରେ ସମଭାବ ଧରେ ।
ମିଥ୍ୟା ଅହଙ୍କାର ଗର୍ବ ଆଦ ତ୍ୟାଗକରେ ॥
ମିଛ ନ କହିଣ ସାଧୁ ସଙ୍ଗ ଯେ କରଇ ।
ତାଙ୍କଠାରେ ଲକ୍ଷ୍ମୀଙ୍କର ସଦା ଦୟା ଥାଇ ॥
କମଳା ସନ୍ତୁଷ୍ଟ ହେଲେ ତହିଁ ନାରାୟଣ ।
ଉଭୟେ ରହନ୍ତି ଏବେ ଶୁଣ ଧର୍ମଗଣ ॥
ପିତା ମାତା ଭ୍ରାତା ଗୁରୁଜନ ମାନ୍ୟ କରେ ।
ସଦା ପାଳୁଥାଏ ତାଙ୍କ କଥା ଆନନ୍ଦରେ ॥
କାହା ପ୍ରତି କେବେ କଟୁ କଥା ନ କହିବ ।
ସମସ୍ତ ମାନବେ ସ୍ନେହ ଭାବେ ଚଳାଇବ ॥
ଯେଉଁଠାରେ ନାରୀମାନେ ପତି ପରାୟଣା ।
ସ୍ୱାମୀ ଚିନ୍ତା ସ୍ୱାମୀ ପୂଜା ସ୍ୱାମୀର ଭାବନା ॥
ନିଜ ପ୍ରାଣ ବିକଅନ୍ତି ସ୍ୱାମୀ ପାଦତଳେ ।
ଏପରି ଗୃହକୁ ଲକ୍ଷ୍ମୀ ନ ଛାଡ଼ନ୍ତି ହେଲେ ॥
ଜାଣି ଶୁଣି ମିଥ୍ୟାକଥା କହନ୍ତି ଯେ ନରେ ।
ରାଗବଳେ ହେଉ କିବା ଛଳନାକ୍ରମରେ ॥
ସାକ୍ଷ୍ୟବେଳେ ମିଥ୍ୟାକଥା କେବେ ନ କହଇ
ଲକ୍ଷ୍ମୀ ତା ଗୃହରେ ସଦାବେଳେ ଥାନ୍ତି ରହି ॥
ପ୍ରାଣ ପଣେ ନିଜ କାର୍ଯ୍ୟ ଯେହୁ କରୁଥାଇ ।
ପିତୃ ଗୁରୁଜନ କାର୍ଯ୍ୟେ ଘୃଣା ନ କରଇ ॥
ଦେବ କାର୍ଯ୍ୟେ ଶ୍ରଦ୍ଧା ଯାର ଧର୍ମ କାର୍ଯ୍ୟେ ମନ
ସାଧୁସଙ୍ଗ କରିବାକୁ ସଦା କରେ ଧ୍ୟାନ ॥
ଶ୍ରଦ୍ଧା ଭକ୍ତିଭରେ ଯେହୁ ଦାନଧ୍ୟାନ କରେ ।
ଲକ୍ଷ୍ମୀ ରହିଥାନ୍ତି ସଦାବେଳେ ତା ଗୃହରେ ॥
ଯୁଦ୍ଧେ ବୀରତ୍ୱ ଦେଖାଏ ଯେଉଁ ବୀରବର ।
ପ୍ରଶଂସା ନେବାକୁ ବ୍ୟସ୍ତ ନୁହଇ ଅବର ॥
ନିଜର ପ୍ରଶଂସା ତୁଣ୍ଡେ ନ କରେ ଗାୟନ ।
ଲକ୍ଷ୍ମୀ ତା ଗୃହରେ ରହିଥାନ୍ତି ଅନୁକ୍ଷଣ ॥
ଯେଉଁ ଲୋକ ପରର ସୁନ୍ଦର ନାରୀ ଦେଖି ।
ମାତା ସମ ଜ୍ଞାନକରେ ହୁଏ ବହୁ ସୁଖୀ ॥
ପର ଉପକାର ପାଇଁ ବାର୍ତ୍ତା ପ୍ରଚାରଣା ।
ଖୋଲାଇଣ ଦିଏ ନ କହିଣ ଗର୍ବ ପୁଣି ॥
ଦୁଃଖୀ ଲୋକ ଦେଖିଲେ ଯେ ଶକ୍ତି ଅନୁପାୟୀ
ସାହାଯ୍ୟ କରଇ ତଳେ କୁଣ୍ଠିତ ନ ହୋଇ ॥
ଯାବତୀୟ ପାପ କାର୍ଯ୍ୟେ ନ ବଳାଏ ମନ ।
ଲକ୍ଷ୍ମୀ ତା ଗୃହରେ ରହିଥାନ୍ତି ଅନୁକ୍ଷଣ ॥

ସ୍ୱାମୀର ମନ୍ଦ କାମକୁ ଦେଖି ଯେ ରମଣୀ ।
ସନ୍ତାପି ହୋଇଣ କହେ ନାନା କଟୁବାଣୀ ॥
ସ୍ନେହଭକ୍ତି ଆଦ ମନେ କିଛି ନ ଭାବଇ ।
ଏପରି ନାରୀର ମୁଖ ଲକ୍ଷ୍ମୀ ନ ଦେଖଇ ॥
ଏ ସଂସାର ନାରୀଙ୍କର ଦୋଷେ ଛାରଖାର ।
ଜାଣି ଶୁଣି ତଥାପି ସେବନ୍ତି ତାଙ୍କୁ ନର ॥
ଜାଣି ଶୁଣି ନିଅଁ ମୁଖେ ହେବାକୁ ଦହନ ।
ନିଜର ଦେହକୁ ତହିଁ କେ ପକାଏ ପୁଣ ॥
ବିଟପୀ ନାରୀଙ୍କ ସଙ୍ଗେ ଯେ ଲୋକ ବଞ୍ଚଇ ।
ତାର ଏହି ଦଶା ହୁଏ ଲକ୍ଷ୍ମୀ ଛାଡି ଯାଇ ॥
ଯେଉଁ ଲୋକ ମଦ୍ୟଖାଇ ଜୁଆ ଖେଳଖେଳେ
ବନ୍ଧୁ ବାନ୍ଧବରେ ନିନ୍ଦା ପାଏ ସଦାବେଳେ ॥
ସେପରି ଲୋକେ ସମସ୍ତେ ଘୃଣା ଯେ କରନ୍ତି
ଶେଷେ ଲକ୍ଷ୍ମୀ ତାହାର ଯେ ସମସ୍ତ ହରନ୍ତି ॥
ଏଥିର ପ୍ରମାଣ ଦେଖ ଶକୁନି ମନ୍ତ୍ରୀର ।
ମନ୍ଦବୁଦ୍ଧି ଯୋଗୁ ମଲେ କୌରବ ସକଳ ॥
ଏହି ମନ୍ତ୍ରୀ ବୁଦ୍ଧି ଯୋଗୁଁ ଏସନ ହୋଇଲା ।
ଆତ୍ମୀୟ ଜ୍ଞାତିମାନଙ୍କ ନିଧନ ଘଟିଲା ॥
ଜୁଆରିମାନଙ୍କ ଦଶା ଶୁଣିଲେ କର୍ଣ୍ଣରେ ।
କି ଅବା ଲୋଭରେ ପଡ଼ି ମାତେ ଯେ ଖେଳରେ
ଲକ୍ଷ୍ମୀ ତାହାକୁ ଛାଡ଼ନ୍ତି କହୁକଷ୍ଟ ଦେଇ ।
ଯଶଧର୍ମମାନ ଆଦ ସବୁ ନାଶ ଯାଇ ॥
ଅଧିକ ଲୋକଙ୍କେ ଯେହୁ ହୁଏ ଆନନ୍ଦିତ ।
ପରଧନ ହରଣରେ ବଳଇ ଯା ଚିତ୍ତ ॥
ମଦ୍ୟପାନେ ଯାର ଚିତ୍ତ ରତ୍ତ ଅନୁକ୍ଷଣ ।
ପଞ୍ଚପ୍ରାଣ ନାଶିବାକୁ ନୁହେ ଯେ କୃପଣ ॥
ଏପରି ଲୋକର ପାଶ ଲକ୍ଷ୍ମୀ ନ ଦେଖନ୍ତି ।
ସର୍ବସ୍ୱ ହରଣ ତାକୁ ଭିକ୍ଷା ଯେ ମଗାନ୍ତି ॥
ଲକ୍ଷ୍ମୀଙ୍କର ଦୟା ଆଦ ବିଷୟ ସକଳ ।
ମୁଁ ଯାଇ କହିଲି ଶୁଣିଲ ହେ ନରପାଳ ॥
ଏବେ ଶୁଣ ମୋ ବଚନ ଅହେ ନୃପଗଣ ।
ଯେ ସଂକଳ୍ପ କରିଅଛ ତହିଁ ଦିଅ ମନ ॥
ଚିର ଇଚ୍ଛା ଅଶ୍ୱମେଧ ଯଜ୍ଞର ସମୟ ।
ଉପସ୍ଥିତ ହୋଇଅଛି ଅହେ ନରରାୟ ॥
ଯଜ୍ଞ ପୂର୍ଣ୍ଣ ହେବା ପାଇଁ ଯଜ୍ଞକର୍ତ୍ତା ହରି ।
ମନ୍ତ୍ରଣା କର ଯେ ଅଣିବାକୁ ବେଗକରି ॥

ବିଶ୍ୱପତି ଶ୍ରୀକୃଷ୍ଣଙ୍କ ବିନୁ ଏହୁ ଯାଗ ।
ସହଜେ ସଫଳ ନ ହେବ ଯେ ମହାଭାଗ ॥
ଜୈମିନି ବୋଲନ୍ତି ଏବେ ଜନ୍ମେଜୟ ଶୁଣ
ବ୍ୟାସଙ୍କ ବଚନ ଶୁଣି ଧର୍ମଙ୍କ ନନ୍ଦନ ॥
ଭୀମସେନଙ୍କୁ ପାଶକୁ ଡ଼ାକିଲେ ସତ୍ୱର ।
ବୋଇଲେ ଶୁଣରେ ବାବୁ ମୋହର ଉତ୍ତର॥
ତୋର ଋଣ ମୁହିଁ କେବେ ସୁଝି ନ ପାରିବି ।
ତୋହ ପରି ଭାଇ ଆଉ କେବେ ନ ପାଇବି ॥
ବିପଦରେ ଭରସା ତୁ ଏକମାତ୍ର ମୋର ।
ତୋର ବିନା ମୋର ନାହିଁ ଆଉଟି ନିସ୍ତାର ॥
ଯେତେକ ଅସାଧ କର୍ମ କରୁଛୁ ରେ ଭାଇ ।
ତୋହ ଯୋଗୁ ଆଜ ରାଜଚକ୍ରବର୍ତ୍ତୀ ମୁହିଁ ॥
ତୋର ଯୋଗୁ କୁରୁବଳ ନିପାତ ହୋଇଛି ।
ତୋହ ଯୋଗୁ ଜରାସନ୍ଧ ନୃପତି ମରିଛି ॥
କହି ହେବ ନାହିଁ କେତେ କେତେ ବୀରବର
ତୋ ଗଦା ଅଘାତେ ଯାଇଛନ୍ତି ଯମପୁର ॥
ବିପଦେ ସହାୟ ମୋର ଅଟୁ ରେ ପାବନୀ ।
ତୋ ବାହୁ ବଳରେ ଭୋଗକରେ ଏ ଅବନୀ
ଯାଅ ବାବୁ ବେଗେ ତୁହି ଦ୍ୱାରବତୀ ପୁର ।
ଯଜ୍ଞକର୍ତ୍ତା ଶ୍ରୀହରିଙ୍କୁ ଆଣ ସଙ୍ଗତର ॥
ଭକ୍ତବିନା ଭକ୍ତବନ୍ଧୁ ପ୍ରଭୁ ଜନାର୍ଦ୍ଦନ ।
କେବେହେଁ ଆସିବେ ନାହିଁ ଏ ସତ୍ୟବଚନ॥
ତୁ ତାଙ୍କ ବିଶ୍ୱାସୀ ଭକ୍ତ ଜାଣିଛୁ ମୁଁ ତୋତେ
ତୋହବିନା ନ ଆସିବେ ପ୍ରଭୁ ଜଗନ୍ନାଥେ ॥
ଜାଣେ ମୁହିଁ ତୋର ପ୍ରିୟ ସଖା ନାରାୟଣ ।
ତୋତେ ସେ ସ୍ନେହ କରନ୍ତି ମୋଠୁ ବେଶୀପୁଣ
ସଂସାରରେ ଚିନ୍ତାମଣି ଅଚିନ୍ତା ହୋଇଣ ।
ନିଶ୍ଚିନ୍ତ ଅଛନ୍ତି ପ୍ରଭୁ ଯଜ୍ଞ ଅପ୍ରୟୋଜନ ॥
ବିଧିମତେ ଜଣାଇବୁ ତାଙ୍କୁ ବିନୟରେ ।
ଯେପରି ଆ. ବେ ହରି ତୋହର ସଙ୍ଗରେ ॥
ବିନୟ ମୋହର ବସୁଦେବଙ୍କୁ ଜଣାଇ ।
ମଣାଇ କହିବୁ ତାଙ୍କୁ ଆସିବାର ପାଇଁ ॥
ଜଣାଇବୁ ଦେବକୀଙ୍କୁ ଯଜ୍ଞ ସମାଚାର ।
ପୁତ୍ରବଧୂ ସହିତେ ଆସିବେ ଆମ୍ଭପୁର ॥
ବିନୟରେ ଦେବୀ ରୁକ୍ମିଣୀଙ୍କି ଜଣାଇବ ।
ସତ୍ୟଭାମା ଆଦି ସର୍ବ ନାରୀଙ୍କି କହିବ ॥

ହସ୍ତିନାକୁ ଆସିବେ ସମସ୍ତେ ବେଗ ହୋଇ ।
କାର୍ଯ୍ୟ ସମାପ୍ତ ପର୍ଯ୍ୟନ୍ତ ଥିବେ ଏହିଠାଇଁ ॥
ସର୍ବ ଯଦୁଗଣଙ୍କୁ ବିନୟେ ଜଣାଇବ ।
ଅବର ବଳରାମଙ୍କୁ ନିବେଦ କହିବ ॥
ସର୍ବେ ଏଠାକୁ ଆସିବେ ସୁଦୟା କରଣ ।
ଯଜ୍ଞ କାର୍ଯ୍ୟ କରି ହେବେ ଆନନ୍ଦିତ ମନ ॥
ଯେତେ ଅପବାଦ ହେବ ମୋହର ନୋହିବ
ସକଳ ନିନ୍ଦା ତାଙ୍କର ଜଗତେ ରହିବ ॥
ଏ ମୋର ବଚନେ ଭୀମ ହେଲା ତୁ ନ କର
ଶୀଘ୍ରହୋଇ ଯାଅ ବାବୁ ଦ୍ୱାରବତୀ ପୁର ॥
ଯେତେବେଳେ ଯାହା ତୋତେ କହଇରେ ଭୀମ
ହେଳା ନ କରିଣ ତାହା କରିଛୁ ପାଳନ ॥
ଯୁଧିଷ୍ଠି ବଚନେ ଭୀମ ଆନନ୍ଦିତ ହୋଇ ।
ପ୍ରଣାମ କରିଣ ଚଳିଗଲେ ବେଗ ହୋଇ ॥
ସମସ୍ତଙ୍କଠାରୁ ବୀର ବିଦାୟ ଘେନିଣ ।
ଗମନ କରିଲେ ମହା ଆନନ୍ଦ ହୋଇଣ ॥
ଏତେକତ କନିଷ୍ଠ ପୁଣି ଜ୍ୟେଷ୍ଠଙ୍କ ଆଦେଶ ।
ତା ପରେ କୃଷ୍ଣ ଦର୍ଶନ ଦ୍ୱାରବତୀ ଦେଶ ॥
କୃଷ୍ଣଙ୍କୁ ସ୍ମରଣ ବୀର ଗମଇ ହର୍ଷରେ ।
ବାଟେ ଯାଉଁ ଯାଉଁ ନଗ୍ରମାନ ଦେଖି ଚଳେ
କେତେକେତେ ରାଜଧାନୀ କରି ଦରଶନ ।
ବନଶୋଭା ଗିରି ଶୋଭା ଆଦି ତୀର୍ଥସ୍ଥାନ ॥
କେଉଁଠାରେ ପକ୍ଷୀମାନେ ମଧୁର ସ୍ୱରରେ ।
ଗାୟନ କରନ୍ତି ବସି ବୃକ୍ଷଡ଼ାଳ ପରେ ॥
କେଉଁଠାରେ ପୋଖରୀରେ ରାଜହଂସଗଣ ।
ଆନନ୍ଦରେ କରୁଛନ୍ତି ତହିଁ ସନ୍ତରଣ ॥
କାହିଁ ବା କ୍ଷେତରେ ପକ୍ୱଶସ୍ୟ ପୂରିଅଛି ।
ଋଷିମାନଙ୍କର ମନ ଆନନ୍ଦେ ନାଚୁଛି ॥
କେଉଁ ରାଜପଥ ବୃକ୍ଷ ଛାୟାରେ ପୂରିତ ।
କାହିଁ ବାପୀ ଆଦି ମଣ୍ଡପ ଯେ ବିରାଜିତ ॥
ପଥେ ଦେଖି ନଗରର ଶୋଭା ଏହିପରି ।
ବେଗେ ଚଳିଯାନ୍ତି ବୀର ବିକ୍ରମକେଶରୀ ॥
ଯାହାହୃଦେ କୃଷ୍ଣ ଥାଏ ତାକୁ କିବା ଦୂର ।
କ୍ଷଣକରେ ପ୍ରବେଶିଲେ ଦ୍ୱାରକା ନଗର ॥
ଯେଉଁ ପୁରରେ ନାରାୟଣ ନିଜେ ବିଦ୍ୟମାନ ।
କି ତୁଳନା ଦେବା ତାକୁ ନ ଥିବ ସଚ୍ଛୈତ୍ୟଣ

ଶୋଭା ଦେଖାଯାଏ ଯୋଜନେକ ପରଯନ୍ତ ।
ଆଗରେ ବିରାଜୁ ଅଛି ତୋରଣ ସମସ୍ତ ॥
କି ଆଶ୍ଚର୍ଯ୍ୟ ଶିଳ୍ପ କାର୍ଯ୍ୟ ତାହାର ଗଠନ ।
ଯେ ଦେଖିଛି ଧନ୍ୟ ଅଟେ ତାହାର ଜୀବନ ॥
ନାନାବର୍ଣ୍ଣେ ଖମ୍ବମାନ ଦିଶେ ସୁଶୋଭିତ ।
ହୀରା ନୀଳା ଅଷ୍ଟରତ୍ନେ ହୋଇଛି ମଣ୍ଡିତ ॥
ସ୍ୱର୍ଣ୍ଣ ମଣ୍ଡପ ପରେ ନହବତ ବାଜେ ।
କେବେ କେବେ ରତ୍ନଝାଲି ତହିଁରେ ବିରାଜେ ॥
ଶିଳ୍ପଗୃହ ଅସ୍ତ୍ରାଗାର କେତେ କାରଖାନା ।
କେତେ ସୈନ୍ୟ ତହିଁ ଛନ୍ତି ନୁହଇ କଳନା ॥
ଦୁର୍ଲଙ୍ଘ ଅଭେଦ୍ୟଗଡ଼ ଅତି ଚମତ୍କାର ।
ପଶିବାକୁ ଶକ୍ତି ତହିଁ ଅଛି ଯେ କାହାର ॥
ସମୁଦ୍ର ତୀରରେ ପୁରୀ ଅତହିଁ ପବିତ୍ର ।
କି ଘୋର ମାନବ ଦେବ ଦାନବେ ସାଧିତ ॥
ଗଡ଼ଖାଇ ପରି ସିନ୍ଧୁ ତହିଁରେ ବେଢ଼ିଛି ।
କଳ କଳ ନାଦେ ପୁଣି ଚରଣ ଧୋଉଛି ॥
ସ୍ଥାନେ ସ୍ଥାନେ ଗୋଲଗଞ୍ଜା ହାଟ ବିରାଜଇ ।
ଅମରଙ୍କ ପୁରୀ ତାକୁ ଲକ୍ଷ୍ୟ ଯେ ନୁହଇ ॥
ପ୍ରତ୍ୟେକ ପ୍ରକାର ଦୋକାନ ଯେ ଧାଡ଼ି ଧାଡ଼ି
ସମସ୍ତ ନଗରଯାକ ରହିଅଛି ବେଢ଼ି ॥
ସ୍ଥାନେ ସ୍ଥାନେ ଅତିଥିଙ୍କ ବାସସ୍ଥାନମାନ ।
ପ୍ରହରି ଜଗିଣଛନ୍ତି ତହିଁ ନିଶିଦିନ ॥
ରାଜକାର୍ଯ୍ୟ ଯଥାସ୍ଥାନେ ହୁଏ ନିର୍ବିଘ୍ନରେ ।
ରାଜ କର୍ମଗୃହୀ ରହିଛନ୍ତି ଆନନ୍ଦରେ ॥
ବ୍ରାହ୍ମଣଙ୍କ ପାଇଁ ଦ୍ୱାର ଅଛି ଖୋଲି ହୋଇ ।
ସାଧୁସନ୍ଥ ପ୍ରବେଶିବା ପାଇଁ ମନା ନାହିଁ ॥
ବନ୍ଧୁ ପରିବାର ଘେନି ପ୍ରଭୁ ଭଗବାନ ।
ଅବସ୍ଥାନ କରିଛନ୍ତି ଦ୍ୱାରକା ଭୁବନ ॥
ସମସ୍ତଙ୍କ ବେଶଭୂଷା ଚଳ ପ୍ରଚଳନ ।
ସମାନ ଭାବରେ କିଛି ନାହିଁ ଭିନ୍ନାଭିନ୍ନ ॥
ଯେଉଁ ଗୃହେ ଯେତେବେଳେ ନୟନ ପଡ଼ଇ
ଚକ୍ଷୁ ପାଲଟାଇବାକୁ ସତ ନ ବଳଇ ॥
ଚକ୍ଷୁ ପ୍ରୀତିକର ମନୋହର ବସ୍ତୁମାନ ।
ପ୍ରତିସ୍ଥାନେ ଶୋଭା ପାଉଅଛି ଅନୁକ୍ଷଣ ।
ସର୍ବଶେଷେ ଶୋଭାଦିଶେ ଅପୂର୍ବ ନଗରୀ ॥
ଯହିଁ ବିରାଜେ କରିଛନ୍ତି ରୁକ୍ମିଣୀ ସୁନ୍ଦରୀ ।
ସତ୍ୟଭାମା ଲକ୍ଷ୍ମୀ ସତ୍ୟା ଆଦି ପାଟଦେଈ ।
ନାରାୟଣଙ୍କର ସହ ତହିଁ ଛନ୍ତି ରହି ॥
ସଂସାରର ସାରବସ୍ତୁ ସକଳ ସେଠାରେ ।
ପୂର୍ଣ୍ଣଥିବାରୁ ସ୍ୱର୍ଗକୁ ନିନ୍ଦେ ଅବହେଳେ ॥
ସେ ପୁରରେ ଭୀମସେନ ହୋଇଲେ ପ୍ରବେଶ
ଶ୍ରୀକୃଷ୍ଣଙ୍କ ନାମ ହୃଦେ ଧ୍ୟାଇ ବୀରଈଶ ॥
ଭାବିଲେ ଯେଉଁ ନାମର ବଳେ ମୁଁ ପଥରେ ।
ଏଥିଁ ଆସି ପ୍ରବେଶିଲେ ସେ ନାମକୁ ଭୁଲେ
ସଂସାରର ହର୍ତ୍ତା କର୍ତ୍ତା ପ୍ରଭୁ ନାରାୟଣ ।
କିମ୍ପାଇଁ ଏପରି ଭାବ ଦେଲେ ମୋ ହୃଦେଣ ।
ପ୍ରକୃତରେ ନରଦେହ ଅଟେ ଭୀମବର ।
ମାୟାଧର ମାୟାରେ ସେ ହେଲେ ହରବର ॥
ଯଦୁବଂଶ ଆଦି ସର୍ବ ବୀରଙ୍କୁ ଦେଖିଲେ ।
ମାତ୍ର କୃଷ୍ଣଙ୍କୁ ନ ଦେଖି ଚିନ୍ତିତ ହୋଇଲେ ॥
ଅସ୍ତ୍ର ବ୍ୟସ୍ତେ ଅନ୍ତଃପୁରେ ଗଲେ ବୀରମଣି ।
ଦେବକୀଙ୍କ ଚରଣରେ କରିଲେ ଦଣ୍ଡିମୀ ॥
ଭୀମଙ୍କୁ ଦେଖିଣ ଦେବୀ ଆନନ୍ଦ ହୋଇଣ ।
ପଚାରିଲେ କୁହ ବାବୁ କୁନ୍ତୀଙ୍କ କଲ୍ୟାଣ ॥
ଆଉରି ପାଞ୍ଚାଳୀ ଆଦି ସୁଭଦ୍ରା ସୁନ୍ଦରୀ ।
ତୁମ୍ଭେ ପାଞ୍ଚଭାଇ ବୃଷକେତୁ ଆଦି କରି ॥
ରାଜ୍ୟପ୍ରଜା ଆଦି ସମସ୍ତଙ୍କର ତ ମଙ୍ଗଳ ।
କୁହ ଆରେ ବାବୁ ମୋର ଆଗରେ ସକଳ ॥
ଭୀମସେନ ସମସ୍ତଙ୍କ ମଙ୍ଗଳ କହିଲେ ।
ଶୁଣିଣ ଦେବକୀ ଅତି ଆନନ୍ଦିତ ହେଲେ ।
ବୋଇଲେରେବାବୁ ତୁମ୍ଭେମାନେମୋରପ୍ରାଣ
ମୋ କଥା କି କେବେ ପଡ଼ୁଥାଏ ତୁମ୍ଭମନ ॥
ସମସ୍ତ ଉତ୍ତର ଦେଇ କୃଷ୍ଣ ନ ଦେଖିଣ ।
ଉଠନ୍ତେ ସେଠାରୁ ଦେବୀ ବୋଲନ୍ତି ବଚନ
ଆରେ ବାବୁ ବସ ସୁସ୍ଥେ ନୟନ ପୁରାଇ ।
ଦେଖେ ଥରେ ତୋର ଚନ୍ଦ୍ରମାମୁଖକୁ ମୁହିଁ ।
ମରଣ ସମୟ ହେଲା ନିକଟ ମୋହର ।
ଆଜ କି ଦେଖିବି ସତେ ତୋ ମୁଖ କମଳ ॥
ମରିଗଲେ ମୋର ଆଶା ରହିବରେ ବାବୁ ।
କୃଷ୍ଣ ଦେଖାହେବ କିମ୍ପା ଏତେ ବ୍ୟସ୍ତେ ଭାବୁ
ସାକ୍ଷାତ ହେବ ଅବଶ୍ୟ ଶତ୍ରୁକର ସ୍ଥିର ।
କୃଷ୍ଣ ଦରଶନ ହେବ କୁହରେ ଅସ୍ଥିର ॥

ଏମନ କହିଣ ଦାସଦାସୀଙ୍କୁ ଡାକିଲେ ।
ପାଚକ ପାଚକୀ ଡାକିକରି ଆଜ୍ଞାଦେଲେ ॥
ବୋଇଲେ ମୋ ପ୍ରିୟ ପୁତ୍ର ଅର୍ଜୁନର ଧନ ।
ବହୁଦିନେ ଆସିଅଛନ୍ତି ମୋହର ଭୁବନ ॥
ଶୀଘ୍ର ଖାଦ୍ୟ ଦ୍ରବ୍ୟ ଯାହା ଆୟୋଜନ କର ।
ଆଗ ଆଣି ଜଳଯୋଗ ଦିଅ ଗୋ ସତ୍ୱର ॥
ଆଜ୍ଞାମାତ୍ରେ ଦାସୀମାନେ ଆଣି ଯୋଗାଇଲେ
ଆମ୍ବ ପଣସ ଆଦି ସକଳ ଫଳ ମୂଳେ ॥
ଦୁଧସର ଲବଣୀ ଯେ ଅବର ପିଷ୍ଟକ ।
ସବୁ ସଜାଡିଣ ଦାସୀ ହୋଇଲେ ଉତ୍ସୁକ ॥
ବେଗେ ଆସି ଦେବକୀଙ୍କ ପାଶେ ଜଣାଇଲେ
ଜଳଯୋଗ ହେଲା ବେଗେ ଆସନ୍ତୁ ବୋଇଲେ
ଶୁଣିଣ ଦେବକୀ ଭୀମସେନଙ୍କୁ ନେଇଣ ।
ଜଳଯୋଗ କରାଇଲେ ଆନନ୍ଦେ ବସିଣ ॥
ଜଳଯୋଗ କରି ଭୀମ ସନ୍ତୁଷ୍ଟ ହୋଇଲେ ।
ଦେବକୀଙ୍କ ପାଶେ ବସି ତାମ୍ବୁଳ ଭୁଞ୍ଜିଲେ ॥
ଭୀମଙ୍କର ସ୍ଥିର ଚିତ୍ତ ଦେଖି ଦେବୀ ତହୁଁ ।
ଆସିବା କାରଣ ପୁଚ୍ଛନ୍ତି ସେ ହୃଷ୍ଟ ହୋଇ ॥
କି କାର୍ଯ୍ୟେ ଆସିଛୁ ବାବୁ କହ ମୋ ଆଗର ।
ଶୁଣି ଭୀମସେନ ବୋଲେ ଶୁଣ ମାତାଗୀର ॥
ଜ୍ଞାତି ବଧ ପାପ ନାଶ ପାଇଁ ଜ୍ୟେଷ୍ଠଭାଇ ।
ଅଶ୍ୱମେଧ କରିବେ ସେ ସ୍ଥିର ଅଛି ହୋଇ ॥
ସେ କାରଣୁ ଆସିଅଛି ମୁହିଁ ଏ ସ୍ଥାନକୁ ।
ସମସ୍ତଙ୍କୁ ନେଇଯିବ ହସ୍ତିନାପୁରକୁ ॥
ଆଉର କହିଅଛନ୍ତି ଜନନୀ ଆମ୍ଭର ।
ସମସ୍ତ କୁଟୁମ୍ବ ନେଇଯିବେ ମୋ ସଙ୍ଗର ॥
ପ୍ରାଣସଖା ଶ୍ରୀକୃଷ୍ଣଙ୍କ ଆଜ୍ଞା ଅନୁସାରେ ।
ଯଜ୍ଞ ଆୟୋଜନ ମାତା ହୋଇଛି ସେଠାରେ
ନିଜଚାକର ପରି ମନେ କରିଣ ଚଳାବ ।
ଦୋଷାଦୋଷ ମୋର ମାତା ସବୁ ଉପେକ୍ଷିବା
ଭୀମବାଣୀ ଶୁଣି ଦେବୀ ବୋଲନ୍ତି ବଚନ ।
ଏତେ ନୀଚ ହୋଇ କିମ୍ପା କହୁ ବାପଧନ ॥
ନୁହଇ କି ସେହି ଯଜ୍ଞ ମୋହରି ରେ କୁମର ।
ଯେବେ ତୁ ଆସିଲୁ ଚାଲ ଯିବା ସଙ୍ଗତର ॥
ଏହିପରି କଥାବାର୍ତ୍ତା ହେବା ସମୟରେ ।
ଏକ ଦାସୀ ଜଣାଇଲା ଆସିଣ ପାଶରେ ॥

ଆଗୋ ମାତ ଆପଣଙ୍କ ଆଜ୍ଞା ଅନୁସାରେ ।
ମଣୋହି ପ୍ରସ୍ତୁତ ହେଲା ଆସନ୍ତୁ ସତ୍ୱରେ ॥
ଶୁଣି ଭୀମ ଦେବକୀଙ୍କ ସଙ୍ଗରେ ଯାଇଣ ।
ଦେଖିଲେ ସୁବର୍ଣ୍ଣ ପାତ୍ରେ ଖାଦ୍ୟ ଦ୍ରବ୍ୟମାନ ।
ନାନାବିଧ ବ୍ୟଞ୍ଜନ ତହିଁ ହୋଇଛି ପ୍ରସ୍ତୁତ ।
ଏ ସବୁ ଦେଖିଣ ଭୀମ ହୋଇଲେ ଚକିତ ॥
କେତେକ୍ଷଣ ମଧ୍ୟରେ ଏ ସବୁ ଭିଆଇଲେ ।
ପୁଣି ଭାବିଲେ ଲକ୍ଷ୍ମୀ ଅଛନ୍ତି ଯେଉଁଘରେ ॥
କିସ ଅବା ଅପୂର୍ବ ଅଟଇ ତାଙ୍କର ।
ଏପରି ଭାବିଣ ଇଚ୍ଛାସୁଖେ ବୀରବର ॥
ଭୋଜନ କରିଣ ଆଚମନ କରି ସାରି ।
ତାମ୍ବୁଳ ଭୁଞ୍ଜିଣ ଦେବୀ ପାଶେ ବସିକରି ॥
ସମ୍ମୁଖରେ ଏକ ଦାସୀ ଦେଖିଣ ବୋଇଲେ ।
ପ୍ରାଣକଣ୍ଠି ଶ୍ରୀକୃଷ୍ଣଙ୍କୁ ଜଣାଅ ସତ୍ୱରେ ॥
କହିବ ତୁମ୍ଭ ସେବକ ହସ୍ତିନାର ଭୀମ ।
ତୁମ୍ଭ ଦେଖା ପାଇଁ ଆସିଛନ୍ତି ନାରାୟଣ ॥
ତହୁଁ ଦାସୀ ବେଗେ ଯାଇ ଶ୍ରୀହରିଙ୍କଠାରେ ।
ସମସ୍ତ ଜଣାଇଲା ସେ ଅତି ବିନୟରେ ॥
ଶୁଣି ଶ୍ରୀହରି ବୋଲନ୍ତି ଜାଣେ ମୁଁ ସକଳ ।
କ୍ଷୁଧା ହୋଇଲାଣି ଅନ୍ନ ଆଣ ତୁ ଚଞ୍ଚଳ ॥
ଭୋଜନାନ୍ତେ ଭୀମ ସହ ହୋଇବି ସାକ୍ଷାତ ।
ଏ କଥା କହିବା ପାଇଁ ଭୀମଙ୍କ ଅଗ୍ରତ ॥
ଦାସୀକି ପଠାଇ ପ୍ରଭୁ ମଣୋହି କରିଲେ ।
ଏଣେ ଯାଇ ଦାସୀ ଭୀମେ ସମସ୍ତ କହିଲେ ॥
ଶୁଣି ବୀର ଭୀମସେନ ହୋଇଲେ ଦୁଃଖିତ ।
ଉଦ୍ବେଗେ ଛନ ଛନ ହେଲା ତାହାଙ୍କର ଚିତ୍ତ ॥
ଭାବନା କରିଲେ ଚିତ୍ତ ହେଲା ଏ କି କଥା
କିମ୍ପାଁ ଆଜ ଦୟାମୟ କଲେ ନିଷ୍ଠୁରତା ॥
ହୋଇଛି ଅବଶ୍ୟ ଦୋଷ ତାଙ୍କ ଚରଣରେ ।
ନୋହିଲେ କରନ୍ତେ କୋପ କିମ୍ପାଁ ଅଧମରେ ॥
ବିଧାତା ହୋଇଲେ ବାମ ଘଟଇ ସମସ୍ତ ।
ନୋହିଲେ କୋପ କରନ୍ତେ କିମ୍ପାଁ ଜଗନ୍ନାଥ ॥
କିବା ଚକ୍ରପାଣି ମାୟା କି ବୁଝିବି ମୁହିଁ ।
ଦୟାମୟ ଦୟାକଲେ ସକଳ ହୁଅଇ ॥
ମାୟା ଫାଶେ ବନ୍ଦୀକରି ସବୁ ଜୀବଗଣ ।
ଫାଶରେ ଖେଳାନ୍ତି କଣ୍ଢେଇ ପରାଏ ଜାଣ ॥

କେତେବେଳେ ଜୀବଗଣ ଆନନ୍ଦ ହୁଅନ୍ତି ।
କେବେ ନୀରବ ବା କେବେ କ୍ରନ୍ଦନ କରନ୍ତି ॥
କେହୁ ଗର୍ବଭରେ ଲୋଭେ ଅନ୍ୟାୟ କରନ୍ତି ।
କେଉଁମାନେ ଧର୍ମ କାର୍ଯ୍ୟମାନ କରୁଥାନ୍ତି ।
କେହୁ ହସେକେହୁ କାନ୍ଦେ କେ କଷ୍ଟ ଭୋଗଇ
କେହୁ ପଲଙ୍କ ସୁପାତ ପରେ ଗଡ଼ୁଥାଇ ॥
କେହୁ ଉଚ୍ଚ କେହୁ ନୀଚ କେହୁ ଧନବାନ ।
କେ ଅନ୍ନ ବସ୍ତ୍ରରେ କଷ୍ଟପାଏଁ ଅନୁକ୍ଷଣ ॥
ଏ ସମସ୍ତ ଖେଳ ପ୍ରଭୁ ଅଟଇ ତୁମ୍ଭର ।
କି ବୁଝିବ ମୁହିଁ ଗୂଢ଼ ଯେ ମାୟା ଭଣ୍ଡାର ॥
ଏହିପରି ଚିନ୍ତାକଲେ ପବନ କୁମର ।
ମହାଦେବ ବୋଲେ ଭାବି ଶ୍ରୀକୃଷ୍ଣ ପୟର ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାର କଥା ପ୍ରବନ୍ଧେ
ନାମ ନବମୋଽଧ୍ୟାୟଃ

——o——

# ଦଶମ ଅଧ୍ୟାୟ

ଯୋଗୀହୃଦୟମଧ୍ୟସ୍ଥଂ ମାୟା ମନୁଷ୍ୟ ବିଗ୍ରହଂ
ଚିନ୍ମୟଂମୁକ୍ତିଦଂନିତ୍ୟଂ ଭଜେ ଶରଣଂ ହରିମ୍

## ଭୀମସେନଙ୍କ ସହିତ ଶ୍ରୀକୃଷ୍ଣଙ୍କର ସାକ୍ଷାତ ଓ ହସ୍ତିନାପୁର ଗମନ ଉଦ୍‌ଯୋଗ

ଜନ୍ମେଜୟଙ୍କୁ ଜୈମିନି ବୋଲନ୍ତି ବଚନ ।
ଏଥୁଅନ୍ତେ ଯାହା ହେଲା ଶୁଣହେଇ ମନ ॥
ଚିତ୍ତେ ଶ୍ରୀକୃଷ୍ଣଙ୍କ ନାମ ଚିନ୍ତି ବାରବାର ।
ଦେବକୀ ପାଶୁଁ ଯିବାକୁ ହୋଇଲେ ତତ୍ପର ॥
କରୁଣାସାଗର କୃଷ୍ଣ ଦର୍ଶନ ଆଶାରେ ।
ସଙ୍ଗେ ନେଇ ଦାସୀକି ଚଳିଲେ ଅତି ଖରେ ॥
ଦୂରରୁ ଦେଖିଲେ ଭୀମ କମଳଲୋଚନ ।
ବସିଛନ୍ତି ଭୋଜନରେ ଆନନ୍ଦ ହୋଇଣ ॥
ଭାବିଲେ ସେ ଅଷ୍ଟପାଟ ମହିଷୀ ପାଶରେ ।
ଲକ୍ଷ୍ମୀସହ ନାହାନ୍ତି କି ଦ୍ୱାରକା ନଗରେ ॥
ଏ ରାଜ୍ୟ କି ଧନଧାନ୍ୟ ହେଲା ଅନ୍ତର୍ଦ୍ଧାନ ।
ସେଥିଯୋଗୁଁ କୃଷ୍ଣଙ୍କର ଖାଦ୍ୟେ ବହୁମନ ॥
ଦ୍ୱାରକାପୁରେ କି ଅଛି ମେଘବର୍ଷା ନାହିଁ ।
ସେଥି ପାଇଁ ଅଶୁଭ ମୁଁ ଦର୍ଶନ କରଇ ॥
କିବା ଯାଦବ ନାଶିଙ୍କୁ ରଖ ଦୁରାଚାର ।
ବଳାତ୍କାରେ ହରି ନେଇଗଲେ ନିଜପୁର ॥
କିଛି ବୁଝି ପାରୁନାହିଁ କାରଣ ଏହାର ।
ଏପରି ବେଭାର କପାଁ ଦେଖେ କୃଷ୍ଣଙ୍କର ॥
ଭୀମସେନ କଉତୁକେ ବୋଇଲେ ଏପରି ।
ଶୁଣି ନ ଶୁଣିଲା ପରି ହେଲେ ମାୟାଧାରୀ ॥
ଅଦ୍ଭୁତ କୌତୁକୀ ହୋଇ ପ୍ରଭୁ ଭଗବାନ ।
ଭୀମେ ଗ୍ରାହ୍ୟ ଶୀଘ୍ର ଶୀଘ୍ର କରିଲେ ଚର୍ବଣ ॥
ଗ୍ରାସିବାଇବା ହେତୁ ମୁଖୁ କଣ୍ଠେ ଶବ୍ଦ ଘୋର ।
ଭୀମକୋପ ପାଇଁକି କରିଲେ ଦାମୋଦର ॥
ଦେଖିଣ ଏସନ ରୀତି ଭୀମସେନ ବୀର ।
ବୋଲନ୍ତି ଏ ନୁହେ ଆମ୍ଭ ଶ୍ରୀକୃଷ୍ଣ ମନ୍ଦର ॥
କେଉଁ ରାକ୍ଷସ ଏ ପୁରେ କରିଛି ଗମନ ।
ସେଥିପାଇଁ ଦେଖାଯାଏ ନାହିଁ ବନ୍ଧୁପଣ ॥
ବନ୍ଧୁମାନଙ୍କୁ ଦେଖିଣ ନ କହିଣ ଭାଷ ।
ଭୋଜନେ ଆସକ୍ତ ହେବା ଏ ମନ୍ଦ ଅଭ୍ୟାସ ॥
ମାତ୍ର ପ୍ରଭୁ ହୋଇ ଇଚ୍ଛାମତେ ଯାହା କରେ ।
ଦାସ ହୋଇ କିଛି କହି ନ ପାରେ ତାହାଁରେ ॥
ତାହା ଚିତ୍ତେ କଷ୍ଟ ଦେବା ଭଲକାର୍ଯ୍ୟ ନୁହେ ।
ଏଥିରେ ପ୍ରଶଂସା ନୋହି ଅପଯଶ ହୁଏ ॥
ଯାହାହେଉ ମୋହର ଯେ ସକଳ ବୃତ୍ତାନ୍ତ ।
କରୁଣାସାଗର ହରି ଜାଣନ୍ତି ସମସ୍ତ ॥
ତଥାପି କିରୂପେ ସେହି ମୋହର ଆଗରେ ।
ଆହାର କରୁଅଛନ୍ତି ଆନନ୍ଦ ମନରେ ॥
ଏହିପରି ଯେତେ କଥା କହେ ଭୀମସେନ ।
ନ ଶୁଣି ଆହାରେ ଲାଗିଥାନ୍ତି ନାରାୟଣ ॥
ଆଶ୍ଚର୍ଯ୍ୟ ବେହାର ଦେଖି ମାୟାଧାରୀଙ୍କର ।
ବୃକୋଦର ବୋଇଲେ ତାହାଙ୍କୁ ପୁନର୍ବାର ॥
ଅଜ ଏହି ରୀତି ଚକ୍ରଧର ହେ ତୁମ୍ଭର ।
ଆଶ୍ଚର୍ଯ୍ୟ ବେଭାର ଦେଖୁଅଛି ମୁଁ ନେହର ॥
କିବା ଖାଦ୍ୟଦ୍ରବ୍ୟ କଣ୍ଠେ ଲାଗିଣ ଅଛଇ ।
ଆସ ଗଦା ବୁଲାଇଣ କାଢ଼ିଦେବି ମୁହିଁ ॥
ତବ ମାୟା ବୁଝିବାକୁ ମୋର ଶକ୍ତି ନାହିଁ ।
କିଅଁତ ଖାଦ୍ୟ ଯେ କଣ୍ଠେ ଅଟକି ରହଇ ॥
ମହା ପ୍ରଳୟରେ ଯେହୁ ପ୍ରଭୁ ବାସୁଦେବ ।
ଗିରି ନଦ ନଦୀ ଆଦି ଗର୍ଭେ ଦେଲେ ଠାବ ॥

ତାଙ୍କ କଣ୍ଠେ କ୍ଷୁଦ୍ର ଦ୍ରବ୍ୟ ଅଟକି କି ପାରେ ।
କପଟ ବସ୍ତୁ ରଖିଛ ଆପଣା ଗର୍ଭରେ ॥
ଦାଶରଥି ଏ କି ସ୍ୱିତ ବଚନ ମଣିଲ ।
ଭାବେ ମୋତେ କି ପରୀକ୍ଷା କରୁଛ ନଗାପାଇଁ ॥
ଯାହା ହେଉ ଦୂରଦେଶୁଁ କୁଟୁମ୍ବ ଆସିଛୁ ।
ତୁମ୍ଭର ନିକଟେ ଏଥି ଉପସ୍ଥିତ ଅଛୁ ॥
ମୋ ଦମ୍ପତୀ ଏତିକି ହେ ପ୍ରଭୁ ଦୟାମୟ ।
ଇଚ୍ଛା ଯେବେ ହୁଏ ଗ୍ରାସକର ମୋର ଦେହ ॥
ଆମ୍ଭଙ୍କୁ ଭକ୍ଷିଲେ କିଛି ଲାଭ ନ ହୋଇବ ।
ନାମ ନିନ୍ଦା ହେବ କିନ୍ତୁ ପେଟ ନ ପୂରିବ ॥
ଯେବେ ମୋତେ ଭକ୍ଷଣ କରିବ ବାସୁଦେବ ।
ଆପଣଙ୍କ ଗର୍ଭ ଉପରରେ ଦେବ ଦାବ ॥
ଉପରେ ରହଣ ମୁହିଁ ସମସ୍ତ ଭୁବନ ।
ଅଖିଳ ବ୍ରହ୍ମାଣ୍ଡ ଯାକ କରିବି ଦର୍ଶନ ॥
ତଲେ ମାହି ଯେତେ ମୋର ନାହିଁ ହି ତହିଁରେ ।
ତୁଟିବ ସମସ୍ତ ତେଣ୍ଟା ରହିବ ସୁଖରେ ॥
ମାତ୍ର ତୁମ୍ଭ ନାମେ ଅହେ କମଳା ରମଣ ।
ଲୋକମୁଖେ ଅପବାଦ ହୋଇବ ଘୋଷଣ ॥
ମ୍ଳେଚ୍ଛମାନେ ସର୍ବଜନେ ବୋଲିବେ ଏହାହିଁ ।
ଅଶ୍ୱମେଧ କଲେ ଧର୍ମ କୃଷ୍ଣ ସାହା ପାଇ ॥
ପୂର୍ଣ୍ଣଚନ୍ଦ୍ର ଅଣି ଯଜ୍ଞ ପୂର୍ଣ୍ଣ କରିବାରେ ।
ବୃକୋଦର ଯାଇଥିଲେ ଦ୍ୱାରକା ନଗରେ ॥
ହେ ପାଣ୍ଡବନାଥ ଶତ୍ରେ ଥିଲୁ ବହୁ ଆଶା ।
ପାଇଲେ ତୁମ୍ଭଙ୍କୁ ଦୂର ହେବ ଆମ୍ଭ ଦଶା ॥
ଆଶାକୁ ନିରାଶ କରି ଅହେ ବାସୁଦେବ ।
ଶତ୍ରୁଙ୍କୁ ହସାଇ ଏବେ କଳଙ୍କ ରଖିବ ॥
ସମସ୍ତେ ଶୁଣି ବୋଲିବେ ଅହେ ନାରାୟଣ ।
ପାଣ୍ଡବ ରକ୍ଷକ କଲେ ପାଣ୍ଡବେ ନିଧନ ॥
ବୃକୋଦରଙ୍କୁ ଗ୍ରାସିଲେ ପ୍ରଭୁ ଜନାର୍ଦ୍ଦନ ।
ଶୁଣି ମାତା କୁନ୍ତୀ ନିଶ୍ଚେ ତେଜିବେ ଜୀବନ ॥
ଆବର ଦ୍ରୌପଦୀ ଶୁଣି ଜୀବନ ହାରିବେ ।
ସ୍ତ୍ରୀ ହତ୍ୟା ପାପ ପ୍ରଭୁ ଆପଣ ଲଭିବେ ॥
ମୋ ବିଚ୍ଛେଦ ଧର୍ମରାଜ ସହି ନ ପାରିବେ ।
ଅର୍ଜୁନ ନକୁଳ ସହ ପରାଣ ତେଜିବେ ॥
ତୁମ୍ଭ ଭଗ୍ନୀ ଭଦ୍ରା ଦେବୀ ଏ ସବୁ ଦେଖିଣ ।
ସତେ କି ଜୀବନ ସେ ରଖିବେ ନାରାୟଣ ॥
ଅହେ ଦୟାମୟ ତେଣୁ ବିନତି ମୋହର ।
ସର୍ବ ତେଣ୍ଟା ଯିବ ସମସ୍ତଙ୍କୁ ଗ୍ରାସକର ॥
ତୁମ୍ଭର ଏ ବ୍ୟବହାରେ ଦୋଷ ନ ହୋଇବ ।
ଗୁଣମୟ ତୁମ୍ଭ ଗୁଣ କେ ବୁଝି ପାରିବ ॥
ପ୍ରାଣୀଙ୍କ ବିନାଶ କରି ଜନ୍ମକର ହରି ।
ଏହା ମର୍ମ କେ ବୁଝି ପାରିବ ଦଇତ୍ୟାରି ॥
ଜନ୍ମ କରାଇ ପ୍ରାଣୀଙ୍କି ତୁମ୍ଭେ ନାଶ କର ।
ସମସ୍ତ କରାଇ ତୁମ୍ଭେ କର ଚକ୍ରଧର ॥
କୃପାକର ଏ ସେବକ ପ୍ରତି ନାରାୟଣ ।
ତୁମ୍ଭ ହାତେ ମଲେ ଯିବ ବୈକୁଣ୍ଠ ଭୁବନ ॥
ନ ପଡିବ ମାୟାଜାଲେ କେଉଁପରି ଆଉ ।
ଧନ ସମ୍ପଦରେ ଲୋଭ ଯେପରି ନ ହେଉ ॥
ଯେବେ କର୍ମର ଯୋଗରୁ ଏ ଭବେ ଆସିବି ।
ନରଜନ୍ମ ନାରାୟଣ ଯେବେ ମୁଁ ଲଭିବି ॥
ଇନ୍ଦ୍ରିୟ ଅଥବା ମାୟା ଦୁହିଁଙ୍କର ବଳ ।
ଆମ୍ଭଠାରେ ପରାଜିତ ହେବେ ଯେ ସକଳ ॥
ତୁଇଭକ୍ତ ବିନା କିଛି ନ କରେ ସେ ଧ୍ୟାନ
ସର୍ବଦା ତୁମ୍ଭର ପାଦ କରିବୁ ପୂଜନ ॥
ଗମନ କରିବ ପ୍ରଭୁ ତୁମ୍ଭେ ଯେ ଠାବକୁ ।
କର୍ଣ୍ଣ ଦେଇ ବନ୍ଧୁମତେ ଶୁଣିବ ନାମକୁ ॥
ତୁମ୍ଭର ମୋହନ ରୂପ କରି ନିରୀକ୍ଷଣ ।
ସଫଳ ହୋଇବ ଚକ୍ଷୁ ସାର୍ଥକ ଜୀବନ ॥
ରସନାରେ ସୁଧାରସ ତୁଲ୍ୟ ତୁମ୍ଭ ନାମ ।
ସର୍ବଦା ରଖିବ ଅହେ ପୁରୁଷ ଉତ୍ତମ ॥
ଦୁଷଣ ମାୟାରେ କିବା କୁତ୍ସିତ କର୍ମରେ ।
ଏ ଭବ ସାଗରେ ପ୍ରଭୁ ଭସାଅନା ମୋରେ ॥
ଯେବେ ଭବେ ଜନ୍ମହୋଇ ସଫଳ ନୋହିବ ।
ତେବେ ଦେହ ଧରିବାର ଅକାରଣ ହେବ ॥
ବୋଲନ୍ତି ଜୈମିନି ରାଜା ଜନ୍ମେଜୟ ଶୁଣ ।
ଭୀମ ବାଣୀ ଶୁଣି ପ୍ରଭୁ ହେଲେ ଖୁସିମନ ॥
ମାୟାବୀ ସେ ମାୟାଧର କୁହୁକ ମାୟାରେ ।
ଦେଖାନ୍ତି କୁହୁକ ମାୟା ବୀର ବୃକୋଦରେ ॥
ବାଜିକରମାନେ ଧରି ନାନା ଯନ୍ତ୍ରମାନ ।
ଖେଳମାନ ଦେଖାଏ ସେ ଗୁରୁତର କରଣ ।
ସେହିପରି ନାନାମାୟା ପ୍ରକାଶିଣ ହରି ।
ବୃକୋଦରେ ଶନ୍ତ୍ରିତ କରିଲେ ଚକ୍ରଧାରୀ ॥

ହସାଇ କନ୍ଦାଇବାରେ ପଟୁ ଜଗନ୍ନାଥ ।
କ୍ରୀଡ଼ା କରନ୍ତି ସେ ଭକ୍ତ ସଙ୍ଗେ ଅବିରତ ॥
ବହୁକ୍ଷଣ ଦୁଃଖଦେଇ ବୀର ଭୀମସେନେ ।
କହିବାକୁ ଆରମ୍ଭିଲେ କୋମଳ ବଚନେ ॥
ହେ ବୀର ପାଣ୍ଡବ କୁଳ ଗୌରବ ବର୍ଦ୍ଧନ ।
ଆସିବାରେ ବାଟେ ତ ନୋହିଛି ବିଘ୍ନମାନ ॥
ହସ୍ତିନାପୁରର କହ ଶୁଭ ସମାଚାର ।
ଧର୍ମଦେବ ଯୁଧିଷ୍ଠିର ଛନ୍ତି କି ପ୍ରକାର ॥
କପିର ଅଛି ମୋ ପ୍ରାଣ ସଖା ଅରଜୁନ ।
କୁନ୍ତୀ ଦ୍ରୌପଦୀ ଭଦ୍ରାଦି ସର୍ବ ନାରୀଗଣ ॥
ନକୁଳ ସହଦେବଙ୍କ ଶୁଭ ସମାଚାର ।
ରାଜ୍ୟର ପ୍ରଜାମାନଙ୍କ କୁଶଳ ଖବର ॥
ସମସ୍ତ କହିଣ କର ସନ୍ଦେହ ମୋଚନ ।
କହ ବୀରମଣି ଶୀଘ୍ର ମୋହର ଆଗେଣ ॥
ସମସ୍ତ କହିଣ ବୀର ଶରୀର ଶାନ୍ତ କର ।
ବସ ମୋ ସହିତେ ଦୁହେଁ କରିବା ଆହାର ॥
ଶୁଣିଣ ଭୋଜନ କଥା ବୀର ଭୀମସେନ ।
ଉଚ୍ଚେ ହସିକରି ତହିଁ ବୋଇଲେ ବଚନ ॥
ଆହେ ଦୟାମୟ ସର୍ବେ ତୁମ୍ଭ କୃପାବଳେ ।
ହସ୍ତିନାରେ ଛନ୍ତି ପ୍ରଭୁ ଅତ୍ୟନ୍ତ କୁଶଳେ ॥
ସକଳ ଆପଦ ଆଉ ଅଶୁଭ ବାରଣେ ।
ଯେ ହରି ସହାୟ ଯାର କି ଭାବନା ମନେ ॥
ସାଗର ପ୍ରାନ୍ତରେ କିବା ବିପକ୍ଷ ପକ୍ଷରେ ।
ଘୋର ଉତ୍କାପୂତ କିବା ବିଷମ ସମରେ ॥
କେହି ତାକୁ ପରାଭବ ଦେଇ ନ ପାରଇ ।
ଯମ ସୁଦ୍ଧା ଭକ୍ତ ଦେଖି ଭୟ କରୁଥାଇ ॥
ଯାହା ହେଉ ଜଗନ୍ନାଥ ତୁମ୍ଭଙ୍କୁ ବୋଲଇ ।
ଭୋଜନରେ ମନ କିବା ଶାନ୍ତିହେଲା ନାହିଁ ॥
ଆହେ ପ୍ରଭୁ ଭୋଜନରେ ମନ ତୃପ୍ତକର ।
କିପାଇଁ ଡାକୁଛ ମୋତେ ଛଳନା ବିଚାର ॥
ହୃଦୟେ ଭାବିଣ ପ୍ରଭୁ ଦେଖନ୍ତୁ ଆପଣ ।
ସର୍ବଜୀବେ ହୋଇଅଛ ତୁମ୍ଭେ ବିଦ୍ୟମାନ ॥
ଆପଣେ ସନ୍ତୁଷ୍ଟ ହେଲେ ସର୍ବତୃପ୍ତ ହୋଇ ।
ସେଥିରୁ କିଏ ଅଧମ ପୃଥକ ଅଟଇ ॥
ବୃକୋଦର କଥା ଶୁଣି ପ୍ରଭୁ ଜନାର୍ଦ୍ଦନ ।
ବୋଇଲେ ତାହାଙ୍କୁ ପୁଣି ମଧୁର ବଚନ ॥
ନିଜ ହାତେ ଖାଦ୍ୟ ମୁହିଁ ତୁମ୍ଭଙ୍କୁ ଦେଉଛି ।
ନାହିଁ କର ନାହିଁ ଆହେ ବୀର ପାଣ୍ଡୁ ବଂଶି ॥
ସ୍ନେହର ପଦାର୍ଥ ପୁଣ ଜାଣନ୍ତି ସମସ୍ତେ ।
ପ୍ରଣୟିନୀ ଆଦରଣୀ ସମସ୍ତ ସାକ୍ଷାତେ ॥
ହୃଦୟର ସୁଖ ଦୁଃଖ ଅଟନ୍ତି ସେମାନେ ।
ଅନ୍ୟ କେ ଜାଣି ପାରଇ ସୁହୃଦ ବିହୁନେ ॥
ଏ ସମସ୍ତେ ଜାଣ ଭୀମ ମୋହ ନିକଟରେ ।
ପାର୍ଥର ସହିତ କେଭେ ତୁଳ ନୋହିପାରେ ॥
ସଂସାରରେ ପାର୍ଥ ସମ ଆତ୍ମୀୟ ବାନ୍ଧବ ।
ହୋଇନାହିଁହେବନାହିଁ, କାଳେହେଁନୋହିବ
ଆନନ୍ଦରେ ସେହି ପାର୍ଥ ମୋହର ସହିତ ।
ମୋର ଦେବା ଖାଦ୍ୟରେ ସେ ହୁଏ ଆନନ୍ଦିତ
ସଂସାରେ ସର୍ବେ ଜାଣନ୍ତି ହୋଇଛି ପ୍ରଚାର ।
ନର ନାରାୟଣ ବୋଲି ଘୋଷେ ନିରନ୍ତର ॥
ଏତେକ କହିଣ ହରି ଡାହାଣ ହସ୍ତରେ ।
ଧରିଣ ଭୀମଙ୍କୁ ବସାଇଲେ ଆସନରେ ॥
ତହୁଁ ଅମୃତ ସମାନ ନାନାଦି ଆହାର ।
ଦେଇଣ ତୃପ୍ତ କରିଲେ ବୀର ବୃକୋଦର ॥
ଭୋଜନ ଶେଷେ ତାମ୍ବୁଳ ଖାଇ ବେନିଜନ ।
ଆସନେ ବସିଲେ ସୁଖେ ଆନନ୍ଦ ହୋଇଣ ॥
ତହୁଁ ପ୍ରଦ୍ୟୁମ୍ନାଦି ଯେତେ ଛନ୍ତି ଯଦୁବୀର ।
ସମସ୍ତଙ୍କୁ ଆଦେଶିଲେ ପ୍ରଭୁ ଦାମୋଦର ॥
ନଗରର ସର୍ବସ୍ଥାନେ ଘୋଷଣା ଦିଅଅ ।
ବୋଲିବ ହସ୍ତିନା ଯିବା ପାଇଁ ସଜ ହୁଅ ॥
ଦେବକୀ ରୁକ୍ମିଣୀ ଆଦି ସର୍ବ ପୁରନାରୀ ।
ସର୍ବେ ସଜ ହୁଅ ଯିବା ହସ୍ତିନା ନଗରୀ ॥
ସର୍ବେ ଗଲେ ଏ ନଗରୀ ହୋଇବତ ଶୂନ୍ୟ ।
ପିତା ଜ୍ୟେଷ୍ଠଭ୍ରାତା ଏଥି ଥାନ୍ତୁ ବେନିଜନ ॥
ଅଶ୍ୱମେଧ ଯାଗ ପାଇଁ ବହୁଧନ ଲୋଡ଼ା ।
ଜାଣିଅଛି ମୁହିଁ କହୁ ନାହିଁ କରି ବ୍ରୀଡ଼ା ॥
ପାଣ୍ଡବଙ୍କ କାର୍ଯ୍ୟ ଆମ୍ଭ କାର୍ଯ୍ୟ ଯେ ଅଟଇ ।
ଭଣ୍ଡାରରୁ ଧନରତ୍ନ ଆଣ ବେଗେ ଯାଇଁ ॥
ମଣି ମୁକ୍ତା ପ୍ରବାଳାଦି ଅଛି ଯେତେ ଧନ ।
ଭଣ୍ଡାର ଶୂନ୍ୟ କରିଣ ଆଣ ହେ ବହନ ॥
ଗାଡ଼ି ଘୋଡ଼ା ଓଟ ପୃଷ୍ଠେ ସବୁ ଲଦାଇଣ ।
ନେଇଯିବା ସଙ୍ଗତରେ ହସ୍ତିନା ଭୁବନ ॥

ଯେଉଁ ଯଜ୍ଞେ ଉପସ୍ଥିତ ହେବ ନିତେ ମୁହିଁ ।
ଅଭାବ ହୋଇଲେ ନିନ୍ଦା କାହାକୁ ହେବଇଁ ॥
ପରମାର୍ଥ ଯେଉଁଠାରେ ବିରାଜ ଥାଆନ୍ତି ।
ଅର୍ଥ ପାଇଁ ମାନବେ କି ଇଚ୍ଛାଟି ହୁଅନ୍ତି ॥
ସଂସାରର ଲୋକମାନେ ଧରି ଦିବ୍ୟ ଦେହ ।
ମାୟାମୋହ ଫାନ୍ଦେ ପଡି କାଟନ୍ତି ସମୟ ।
ସମସ୍ତେ ବୋଲନ୍ତି ଏଥି ମୋହର ମୋହର !
ମୃତ୍ୟୁକାଳେ କିସ ନେଇ ଯାଏ ସଙ୍ଗତର ॥
ଲୋଭରେ ପଡ଼ିଣ ଜୀବ ଧର୍ମ କର୍ମ ଭୁଲେ ।
ମୃତ୍ୟୁକାଳେ ଭାବିଲେ କି ମୁକ୍ତିବାଟ ମିଳେ ॥
ତେଣୁ ମୁଁ କହୁଛି ଏହି ଅନିତ୍ୟ ସଂସାର ।
କେହି କାହାର ନୁହଇ ଶୁଣ ଅହେ ବୀର ॥
ଧର୍ମ କାର୍ଯ୍ୟ ପାଇଁ ତିଳେ ହେଳା ନ କରିବ ।
ହେଳା କଲେ ଏକାବେଳେ ଭେଳା ବୁଡ଼ିଯିବ
ଅବର ପାଣ୍ଡବ ଶ୍ରେଷ୍ଠ ଯୁଧିଷ୍ଠିର ରାଜା ।
ତହିଁ ପୁଣି ଅଛିନ୍ତି ଯୁବନାଶ୍ୱ ରାଜା ॥
ମୋ ବାହାକୁ ଏକମାସ ଆଶା କରିଛନ୍ତି ।
ବିଳମ୍ବ ଦେଖିଣ ଚିନ୍ତା କରନ୍ତେ ନୃପତି ॥
ବହୁତର ବିଘ୍ନ ଏଥି ଉପସ୍ଥିତ ହୁଏ ।
ବିଳମ୍ବ କରିବା ମୋର ଉଚିତ ଯେ ନୁହେ ॥
ଭାଇ ବୋଲି ବନ୍ଧୁବୋଲି ଯିବୁ ଛାଡ଼ି ପାରେ ।
ପାଣ୍ଡବଙ୍କ ଭକ୍ତିପାଶେ ବନ୍ଧା ସବୁବେଳେ ॥
ଏ ସବୁ ଭାବିଣ ବୀରମାନେ ବେଗ ହୋଇ ।
ଘୋଷଣା ଦେଇଣ ସଜହୁଅ ବେଗେ ଯାଇ ॥
ଅବାଳ ବୃଦ୍ଧ ବନିତା ଛନ୍ତି ଏଥେ ଯେତେ ।
ସଜ ହୁଅନ୍ତୁ ସେ ଯିବେ ମୋହର ସହିତେ ॥
ଶ୍ରୀକୃଷ୍ଣଙ୍କ ମୁଖୁ କୃତବର୍ମା ଏହା ଶୁଣି ।
ତକ୍ଷଣେ ଘୋଷଣା ଦେଲେ ପ୍ରତିଗୃହେ ପୁଣି ॥
ଶ୍ରୀକୃଷ୍ଣଙ୍କ ଆଜ୍ଞା ପ୍ରତି ଗୃହେ ଜଣାଇଲେ ।
ବୀର ମହାବୀରଙ୍କୁ ସେ ବୁଝାଇ କହିଲେ ॥
ବସୁଦେବ ଅକ୍ରୁର ଯେ ରାମ ସମସ୍ତଙ୍କୁ ।
ସବିନୟେ ଜଣାଇଲେ କୃଷ୍ଣ ଆଦେଶକୁ ॥
କ୍ରମେ କ୍ରମେ ସର୍ବଜନ ଆଦେଶ ଶୁଣିଲେ ।
ଯଜ୍ଞ ଦେଖିବାର ପାଇଁ ଆନନ୍ଦିତ ହେଲେ ॥
ଏତେକ ଧର୍ମଙ୍କ ପୁରୀ ଯଜ୍ଞ ଦରଶନ ।
ତହିଁ ପୁଣି ଆଜ୍ଞା ଦେଇଛନ୍ତି ନାରାୟଣ ॥
ଆଗରେ ବ୍ରାହ୍ମଣମାନେ ହୋଇଲେ ବାହାର
ଯଜ୍ଞ ମନ୍ତ୍ର ଉଚ୍ଚେ ଯାର ପବିତ୍ର ଶରୀର ॥
ଯେତେକ ସନ୍ନ୍ୟାସୀ ଥିଲେ ସେହି ନଗରରେ
ଆନନ୍ଦରେ ଅଗ୍ରସର ହୋଇଲେ ସକଳେ ॥
ତାପରେ ଆନନ୍ଦଭରେ ପୁରବାସୀ ଜନ ।
ପରିବାର ସଙ୍ଗ ହର୍ଷେ କରିଲେ ଗମନ ॥
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଆଦିକରି ।
ଦ୍ୱାରକାରେ ଥିଲେ ଯେତେ ଲୋକୋମାପହାରି
ସୈନ୍ୟ ସେନାପତି ଆଦି ସମସ୍ତେ ମିଳିଣ ।
ହସ୍ତିନା ପୁରୀକୁ ବେଗେ କରିଲେ ଗମନ ।
ମହାନାୟକ ସାମନ୍ତ ଖଣ୍ଡାଏତ ଗଣ ।
ତେଲି ତନ୍ତୀ କୁମ୍ଭାର କମାର ଆଦି ପୁଣ ॥
ବଢ଼େଇ ଗୁଡ଼ିଆ ଯେ ପାଟରା ଜଉତସ ।
ଧୋବା ବଣିଆ ଭଣ୍ଡାରି ଚମାର କୃଷକ ॥
ଅଠର ନାୟକ ହାଡ଼ି ମେହେନ୍ତର ମେଳେ ।
ସମସ୍ତେ ହସ୍ତିନା ବାହାରିଲେ ଏକାବେଳେ
ଯାଉ ଯାଉ ପଥେ ଅଶ୍ୱ ଗଜ ରଥ ଧ୍ୱନି ।
ବୀରଙ୍କ ଧନୁଟଙ୍କାର ମୁଖରବ ପୁଣି ॥
ଶଙ୍ଖ ଗର୍ଜନ ଆଦି ଏକସ ହୋଇଣ ।
ସମୁଦ୍ର ଗର୍ଜନଠାରୁ ଶୁଭଇ ବଳିଣ ॥
ହାସ୍ୟ ପରିହାସ୍ୟ ନାନା କଉତୁକ ମାନ ।
ମନ ଆନନ୍ଦରେ ସର୍ବେ କରନ୍ତି ଗମନ ॥
ହସ୍ତିନାକୁ ଏହିପରି ସର୍ବେ ଯାତ୍ରା କଲେ ।
ଶୂନ୍ୟକରି ଦ୍ୱାରକାକୁ ଶ୍ରୀକୃଷ୍ଣ ଚଳିଲେ ॥
ସୈନ୍ୟମାନେ ବୀରଦର୍ପେ କରିଣ ହୁଂକାର ।
ଚଳନ୍ତେ କମ୍ପି ଉଠଇ ସପତ ପାତାଳ ।
ପାଦଘାତେ ଧୂଳିସବୁ ଆକାଶେ ଉଠିଣ ।
ଅନ୍ଧକାର କରିଦେଲା ଘୋଟିଣ ଗଗନ ॥
ସୈନ୍ୟ ପଦାଘାତେ ଧରା କମ୍ପମାନ ହୁଏ ।
ସୈନ୍ୟ କୋଳାହଳେ କର୍ଣ୍ଣ ବଧିର କରାଏ ॥
ମଧ୍ୟେ ମଧ୍ୟେ ଅଶ୍ୱହ୍ରେଷା ସିଂହନାଦ ଶୁଣି ।
ହୃଦୟ କମ୍ପିତ ହୋଇ ମେଦିନୀ ତକ୍ଷଣି ॥
ଏହିପରି ସର୍ବେ ଚଳିଯାନ୍ତି ମହାନନ୍ଦେ ।
ସମ୍ବଲୀ ନାମରେ ଏକ ବୃଦ୍ଧା ପଥ ମଧ୍ୟେ ॥
ସଖୀମାନଙ୍କୁ ଗୃହିଣ ବଚନ ବୋଲଇ ।
ଏତେ କଷ୍ଟକରି ଆମ୍ଭେ ଯିବା କିସ ପାଇଁ ॥

ତେଲଅ ମୁଣ୍ଡରେ ତେଲ ଏ ସାର ବଚନ ।
ଅମ୍ଭମାନଙ୍କ ସେଥିରେ ଲାଭ ନାହିଁ ଜାଣ ॥
ନାରାୟଣ କେତେବେଳେ ଦୁଃଖୀ ଲୋକଙ୍କର
ଦୁଃଖ ହରନ୍ତି ଏ କଥା ନ ଆସେ ମନର ॥
ଧନୀଙ୍କି ସନ୍ତୁଷ୍ଟ ହୋଇ ଦିଅନ୍ତି ସେ ଧନ ।
ଦୁଃଖୀକି କେବେ ଗୃହାନ୍ତି ନାହିଁ ନାରାୟଣ ॥
ଏପରି କହିଣ ବୁଢ଼ୀ ଯାନରେ ଚଢ଼ିଣ ।
ଆନନ୍ଦ ମନରେ ତହୁଁ କଲାକ ଗମନ ॥
ଯାଉଁ ଯାଉଁ ବାଟେ ଧକ୍କା ବାଜିବାରୁ ବୁଢ଼ୀ ।
ଖସି ପଡ଼ିଲା ସେ ତଳେ ଦାନ୍ତକୁ କାମୁଡ଼ି ॥
ତଳେ ପଡ଼ି ବୁଢ଼ୀ ତହୁଁ ଅଚେତନ ହେଲା ।
ମୁଖ କର୍ଣ୍ଣ ନାସିକାରୁ ରକତ ବହିଲା ॥
ସମସ୍ତେ ଦେଖିଣ ତହିଁ ହାହାକାର କଲେ ।
କୃଷ୍ଣ ନିନ୍ଦା ଫଳ ଏହା ବୋଲିଣ କହିଲେ ॥
ଅହଙ୍କାରେ ମତ୍ତ ହୋଇ ଗର୍ବ ଦେଖାଇଲେ
ମୁକ୍ତିପଥ ଛାଡ଼ି ନର୍କଗତି ପାଏ ଭଲେ ॥
ମନେକରେ ଚିରକାଳ ଏହିପରି ଯିବ ।
ନିଜେ ନିଜେ ମୁକ୍ତିପାଇ ଗୋଲୋକେ ରହିବ
ଛୁମ୍ଭର ପରାୟେ ସର୍ବ କରି ପାପୀଲୋକ ।
ସଂସାରେ ଭୁଞ୍ଜନ୍ତି ସେହିମାନେ ନାନାଦୁଃଖ ॥
ସୈନ୍ୟଙ୍କ ତୁଣ୍ଡରୁ ଶୁଣି ଏମନ୍ତ ବଚନ ।
ଶମ୍ଭଳ ଉଠିଣ ତହିଁ ବୋଲେ ତତକ୍ଷଣ ॥
ଦେଖି ଦେଖି ସୈନ୍ୟମାନେ ସର୍ବ ସାକ୍ଷାତରେ
କୃଷ୍ଣଙ୍କୁ କରି ଦର୍ଶନ ଉଠି ଯା ନ ପାରେ ॥
ମହା ପାପୀମାନେ ଭୁଲି ପତିତପାବନେ ।
ନାନାଦୁଃଖ ନାନାକ୍ଲେଶ ଭୋଗେ ରାତ୍ରଦିନେ
ଜାଣେ ମୁହିଁ ଭଗବାନ ଉଦ୍ଧାର କାରଣ ।
ଭବ ପାରି କରିବାକୁ ସେହି ଏକା ଜାଣେ ॥
ସାକ୍ଷାତେ ଉଦ୍ଧାରକର୍ତ୍ତା ମୁହିଁ ଦେଖିଲଇଁ ।
ଆଉ କେବେ ଏ ଅବସ୍ଥା ନ ଭୋଗିବି ମୁହିଁ ॥
ବୋଲନ୍ତି ଜୈମିନି ଶୁଣ ପାଣ୍ଡୁ ବଂଶଧର ।
ଏଣେ ପ୍ରଭୁ ବାସୁଦେବ ହୋଇ ତରତର ॥
ଧବଳ ଅଶ୍ୱର ପରେ କରି ଆରୋହଣ ।
ଗମନ କରିଲେ ଦେବ ହସ୍ତିନା ଭୁବନ ॥
ଅନୁଚରଗଣ ସଙ୍ଗେ ହେଲେ ବହିର୍ଗତ ।
କିବା ଶୋଭି ହର୍ଷ ମର୍ତ୍ତ୍ୟେ ହୋଇଲା ଉଦିତ ॥
ଭୀମସେନ ସହିତରେ ଆନନ୍ଦ ମନରେ ।
ଧର୍ମରାଜେ ଦେଖିବାକୁ ଗମିଲେ ସତ୍ୱରେ ॥
ଦ୍ୱାରକା ନିବାସୀଗଣେ କୃଷ୍ଣଙ୍କ ବିହୁନେ ।
ରହି ନ ପାରନ୍ତି ଘରେ ଭାବୁଥାନ୍ତି ମନେ ॥
ମନ ମଧ୍ୟେ ବିପଦକୁ ଚିନ୍ତାକଲେ ପୁଣି ।
ହା କୃଷ୍ଣ ହା କୃଷ୍ଣ ବୋଲି କରୁଛନ୍ତି ଧ୍ୱନି ॥
ଦ୍ୱାରବତୀ ତେଜି ଏବେ ଯିବେ ନାରାୟଣ ।
ତେଣୁ ପୁରବାସୀ ହୋଇ ଦୁଃଖରେ ମଗନ ॥
ଶ୍ରୀକୃଷ୍ଣଙ୍କ ପଛେ ସର୍ବେ ଆନନ୍ଦେ ଚଳନ୍ତି ।
ଯଜ୍ଞ ଦେଖିବେ ବୋଲିଣ ଆନନ୍ଦିତ ମତି ॥
ଏ ସମୟେ ଏକ ମାଳାକାରର ରମଣୀ ।
ପଦ୍ମପୁଷ୍ପ ହାର ଘେନି କରଇ ଦର୍ଶନି ॥
ଆହେ ଦୟାମୟ ଘେନ ମୋର ନିବେଦନ ।
ଏ ମାଳାକୁ ଶ୍ରୀଚରଣେ କରିଣ ପ୍ରଦାନ ॥
ଏ ମାଳାକୁ ନେଇ ପ୍ରଭୁ ମୁକ୍ତିଦାନ ଦିଅ ।
ଦରିଦ୍ର କଷ୍ଟରୁ ମୋତେ ଉଦ୍ଧାର କରିଅ ॥
ମୁହିଁ ଅତି ଦୀନ ହୀନ ଆହେ ଦୟାମୟ ।
ନ ଜାଣଇ ଭକ୍ତିସ୍ତୁତି ଅଜ୍ଞାନ ହୃଦୟ ॥
ଅଜାମିଳ ପାପୀ ନାମ ଧରି ଗଲା ତରି ।
ମହାଘୋର ସଙ୍କଟରୁ ମୃଗୁଣୀ ଉଦ୍ଧରି ॥
ଗଜକୁ ରଖିଲେ ପ୍ରଭୁ ନକ୍ରକୁ ନାଶିଣ ।
ଧ୍ରୁବକୁ ଦେଇ ହେ ପ୍ରଭୁ ଧ୍ରୁବଲୋକେ ସ୍ଥାନ ॥
ସୁଦାମା ବିପ୍ରର ପ୍ରଭୁ ଦାରିଦ୍ର୍ୟ ଖଣ୍ଡିଲେ ।
ଅହଲ୍ୟାକୁ ପାଷାଣରୁ ମୁକତ କରିଲେ ॥
ବାଲୀ ମାରି ସୁଗ୍ରୀବକୁ ଦେଲେ ରାଜ୍ୟଭାର ।
ଦେବଙ୍କୁ ରଖିଲ ମାରି ବିଶ୍ରବା କୁମର ॥
କିଅଁତରେ ଦୟା ମୋତେ କର ରଜବାହା ।
ଏ ନାରୀ ଜନ୍ମରୁ ମୁକ୍ତିକର ଲକ୍ଷ୍ମୀନାହା ॥
ଏ ବଚନ ଶୁଣି ହରି ଆନନ୍ଦ ମନରେ ।
ବୋଇଲେ ମାଳିନୀ ଶୁଣ ଯାହା କହେ ତୋତେ
ସାଧୁସଙ୍ଗ କରି ଧର୍ମକାର୍ଯ୍ୟେ ଦିଅ ମନ ॥
ସକଳ ବିପଦ ତୋର ହୋଇବ ଖଣ୍ଡନ ॥
ମାଳାକାର ନାରୀ ଶୁଣି ଆନନ୍ଦ ହୋଇଲା ।
ମାଳାଦେଇ ପ୍ରଣମିଣ ଆନନ୍ଦେ ଚଳିଲା ॥
ମାଳିନୀଙ୍କି ଉପଦେଶ ଦେଇ ନାରାୟଣ ।
ଭୀମ ସଙ୍ଗେ ଆନନ୍ଦରେ ଯିବା ପାଇଁ ମନ ॥

ଏ ସମୟେ ଆସେ ଏକ ତୈଳକାର ନାରୀ ।
ଶ୍ରୀକୃଷ୍ଣଙ୍କ ପାଶେ ଯାଇ କରଇ ଗୁହାରି ॥
ପାଦେ ପଡ଼ି ବିନୟରେ ବଚନ କହଇ ।
ମୋର ନିବେଦନ ଶୁଣ କମଳାର ସାଇଁ ॥
ତୁମ୍ଭର ଅଶ୍ୱକୁ ପାଳି ଯଜ୍ଞ ଦେଖିବାକୁ ।
ପ୍ରସ୍ତୁତ ହୋଇଛୁ ଯିବା ପାଇଁ ହସ୍ତିନାକୁ ॥
ଲଭିବାକୁ ବହୁଧନ ମୋର ଆଶା ନାହିଁ ।
ମାତ୍ର ତୁମ୍ଭର ଦର୍ଶନକୁ ବାଟ ଅଛୁ ଚାହିଁ ॥
କିନ୍ତୁ ବିଧାତାର ଲେଖା ନୁହେ ଖଣ୍ଡିବାର ।
ବାଟରେ ବିପଦ ଏକ ହେଲା ଭୟଙ୍କର ॥
ତେଲ ଦୁଇଶଣ ମୁହିଁ ପୁରୁଣା କଳଶେ ।
ଅଳ୍ପଦୂର ଯାଇଅଛୁ ମୁହିଁ ଧନ ଆଶେ ॥
କଣା ମାଠିଆରେ ତେଲ କିଛି କାଳ ରହି ।
ଗଳିବାରେ ଟୋପା ଟୋପା ହୋଇଣ ପଡ଼ଇ
ମାଏ ଗାଡ଼ି ଘୋଡ଼ା ଚାଲିବାରେ ବାଟ ନାହିଁ
ବାଟ ନ ପାଇ ବସିଛୁ ଅହେ ଯଦୁସାଇଁ ॥
କେଉଁପରି ଯିବି ପ୍ରଭୁ କହ ପ୍ରତିକାର ।
ନ କଲେ ସରିବ ତେଲ ଭାଣ୍ଡଗୋଟି ମୋର॥
ଏସନ ଶୁଣିଣ ହରି ଆନନ୍ଦ ହୋଇଲେ ।
ମାୟାଧର ମାୟାବଳେ ତାକୁ ଉଦ୍ଧାରିଲେ ॥
ଶ୍ରୀକୃଷ୍ଣଙ୍କ ପାଶେ ସେହି ରହିଣ ଚଳଇ ।
ଉପାଧ୍ୟାୟ ମହାଦେବ ସଙ୍ଗରେ ଗୋଡାଇ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତ
ରସଲୀଳା ସାର କଥା ପ୍ରବନ୍ଧେ
ନାମ ଦଶମୋଽଧ୍ୟାୟଃ

———o———

## ଏକାଦଶ ଅଧ୍ୟାୟ

ସ୍ତୂୟମାନଃସଦାଦେବୈର୍ଯୋଗୀନ୍ଦ୍ରୈର୍ଦିବ୍ୟଦର୍ଶନୈଃ
ନିତ୍ୟମାରାଧ୍ୟମାନଂ ଚ ତୈଃ ମ ମଧୁସୂଦନଃ

### ଶ୍ରୀକୃଷ୍ଣଭୀମଯାଦବଙ୍କ ହସ୍ତିନାଗମନ

ବସୁଦେବଙ୍କଠାରୁ ବିଦାୟ, ବୃନ୍ଦାବନରେ
ଗୋପୀ ଓ ଗୋପାଳଙ୍କ ସହ ସାକ୍ଷାତ
ଏବଂ ହସ୍ତିନା ପ୍ରବେଶ

ଜୈମିନି ବୋଲନ୍ତି ରାଜା ଜନ୍ମେଜୟ ଶୁଣ ।
ଏଥୁଅନ୍ତେ ଯାହା ହେଲା କହୁଛି ମୁଁ ପୁଣ ॥
ଏ ତିନି ନାରୀଙ୍କି ଶାନ୍ତ କରିଣ ଶ୍ରୀହରି ।
ପରିହାସେ ଭୀମକୁ ବୋଲନ୍ତି ନରହରି ॥
ଦେଖ ବୀରବର ଏହା ନାରୀଙ୍କର ରୀତି ।
ତୁମ୍ଭଙ୍କୁ ସ୍ୱାମୀ କରିବେ ସମସ୍ତଙ୍କ ମତି ॥
ତେଣୁ ଗୁଣଧାରି ମୁହିଁ କହୁଛି ତୁମ୍ଭଙ୍କୁ ।
ସ୍ତ୍ରୀ ରୂପେ ଗ୍ରହଣ କର ଏ ନାରୀମାନଙ୍କୁ ॥
ଏହା କହି କୃଷ୍ଣ ବୋଲନ୍ତି ଶମ୍ବଳୀ ପ୍ରତି ।
ଭୀମକୁ ପତି ପଣରେ ବର ଗୋ ଝିଅଟି ॥
ମନ୍ଦ ରୂପ ନୁହେଁ ସ୍ଥୂଳୋଦର ବୃକୋଦର ।
ତାଙ୍କୁ ବରିଲେ ଲଭିବ ପ୍ରୀତି ବହୁତର ॥
ଯୋଗ୍ୟ ବର କରିବାକୁ କମ୍ପା ଗୋ ରମଣୀ
ବିଳମ୍ବ କରିବା ନୁହେ ନୁହେ ହାସ୍ୟବାଣୀ ॥
ତାଙ୍କ ନିକଟରେ ସଖି ଅତି ସ୍ନେହେ ଥିବ ।
ଅତିଶୀଘ୍ର ତୁମ୍ଭର ଯେ ଇଚ୍ଛା ପୂର୍ଣ୍ଣହେବ ॥
ପ୍ରେମଶୀଳା ସୁହାଗିନୀ କାନ୍ତକୁ ଘେନିଣ ।
ହରଷରେ ଇଚ୍ଛା ସୁଖେ କଟେଇବ ଦିନ ॥
ଭୀମସେନ କହେ ଶ୍ରୀକୃଷ୍ଣଙ୍କ ବାଣୀ ଶୁଣି ।
ମୋତେ ଶମ୍ବଳୀ ବରିବା ଅନୁଚିତ ଜାଣି ॥
ମୋହର ବିବାହ ବହୁଦିନୁ ହୋଇଅଛି ।
ଅଷ୍ଟଯାଁ ରମଣୀ ଆମ୍ଭ ଘରରେ ରହିଛି ॥
ରୂପ ତାର ଭୟଙ୍କର ଝିଅ ଅସୁରର ।
ଯେବେ ମୋତେ ବରିବ ସେ ନାଶିବ ନିକର
ବରିବାର ଇଚ୍ଛାଥିଲେ ବର ହେ ଆମ୍ଭଙ୍କୁ ।
ସୁଖ ଦୂରେ ଥାଉ ଲଭିବ ବହୁ ଦୁଃଖକୁ ॥
ବିଶେଷ ଶମ୍ବଳୀ ତୁମ୍ଭେ ଅଟ ଦନ୍ତହୀନ ।
ବୟସ ବେଶୀ ହୋଇଛି ଯାଇଛି ଯୌବନ ॥
ଜୀର୍ଣ୍ଣ ଶୀର୍ଣ୍ଣ ଦେହ ତୁମ୍ଭ ଏ ଇଚ୍ଛା କିପାଇଁ ।
ଲଜ୍ଜାହୀନା ହୋଇଅଛ ଅଷ୍ଟଯାଁ ମଣିଇ ॥
ଶ୍ରୀକୃଷ୍ଣଙ୍କ ଛଡ଼ା ଅନ୍ୟ ଭାବନା ନ କର ।
ତାଙ୍କୁ ବରଣ କରିଲେ ହେବ ଉପକାର ॥
ସଂସାରର ସ୍ୱାମୀ ସେହି ପ୍ରଭୁ ଭଗବାନ ।
ତାଙ୍କ ଛଡ଼ା ଅନ୍ୟ ପତି ନ କର ଭଜନ ॥
କହିପାରି ସତ୍ୟଭାମା ଆଦି ନାରୀଗଣ ।
ଅପୂର୍ବ ସୁନ୍ଦରୀ ସଙ୍ଗେ ଛନ୍ତି ନାରାୟଣ ॥
ହେଲେ ମଧ୍ୟ ଦେଖ ଭାର୍ଯ୍ୟା ଜାମ୍ବବତୀ ନାରୀ ।
ସଂସାର ମଧ୍ୟରେ ସେହୁ କୃଷ୍ଣ ମନୋହାରୀ ॥

ତେଣୁ ସର୍ବେ କହୁଅଛୁ ଶୁଣ ସକଳ ।
ଶ୍ରୀକୃଷ୍ଣଙ୍କୁ ପତିରୂପେ ବର ତୁ ଚଞ୍ଚଳ ॥
ଶ୍ରୀକୃଷ୍ଣଙ୍କୁ ଏତେ ନାରୀମାନେ ଭଜିକରି ।
ହିଂସା ଭାବ ଶୁଣ ଭୋଗନ୍ତି ଦଦ୍ୟାଶିରୀ ॥
ଏକନାରୀ ଯେଣୁ ଲୋକ ରହି ନ ପାରଇ ।
ସେଥିପାଇଁ କେତେ ଗୋଳ ସଂସାରେ ଲାଗଇ
ଏଥିରେ କିଛିହିଁ ତୁମ୍ଭେ ନ କର ଗୋ ଚିନ୍ତା
ପତିରୂପେ ବରି ହରି ହୁଅଗୋ ବନିତା ॥
ଏପରି କହିଣ ବୀର କୃଷ୍ଣଙ୍କୁ ଡାକିଣ ।
ବୋଲେ ପ୍ରଭୁ ତୁମ୍ଭ ବିନା କେହି ନାହିଁପୁଣ
ଅହେ କୃପାର ସାଗର ତ୍ରିଭୁବନ ନାଥ ।
ବଡ଼ ସନ୍ଦେହ ମୋ ମନେ ହୋଇଅଛି ଜାତ
କେହି ତାହା ତୁମ୍ଭବିନା ନ ପାରେ ଏହାକୁ ।
ତୁମ୍ଭେ ଜ୍ଞାନ ନ ଦେଲେ କା ଶକ୍ତି ବୁଝିବାକୁ
ଦେଖୁଅଛୁ ଶୁଣୁଅଛୁ ଜାଣୁଛୁ ଅବର ।
ପାପର ଫଳ ଭୋଗରେ ଯେଉଁ ଦୁରାଚାର ॥
ଯେଉଁମାନେ ପ୍ରାଣ ଶେଷେ ତୁମ୍ଭଙ୍କୁ ବିଚାରି ।
ମହତ ସଙ୍ଗରେ ବାସ ନୁହଇ ତାଙ୍କର ॥
ଯେଉଁମାନଙ୍କର ଶ୍ରଦ୍ଧା ତୀର୍ଥ ଦରଶନେ ।
ନୋହେ ପଞ୍ଚମ ପାପରେ ପାପୀ ଯେ ସେମାନେ
ଗୋହତ୍ୟା ପ୍ରଭୃତି ମହା ମହା ପାପେ ରତ ।
ସତ୍ୟ ତ୍ୟାଗକରି ହେଲେ ମିଥ୍ୟା ବଶୀଭୂତ ॥
ଧରମ ବିରୋଧି ଯେହୁ ନ ଭଜେ ତୁମ୍ଭଙ୍କୁ ।
ଅହଂକାରେ ଘୃଣା ସଦା କରେ ସମସ୍ତଙ୍କୁ ॥
କର୍ମଭୂମି ଭୋଗ ପାଇଁ ସଂସାରେ ଆସଇ ।
ପୂର୍ବ ଜନ୍ମ ଫଳରେ ନରକ ଭୋଗେ ସେହି
ମାତ୍ର ତୁମ୍ଭଙ୍କୁ ଭାବନା କରନ୍ତି ସେମାନେ ।
ମହାସୁଖୀ ହୋଇଣ ସେ ରହନ୍ତି ସୁମନେ ॥
ଯେଉଁମାନେ ତୁମ୍ଭ ଭକ୍ତି ମନରେ ଲଭନ୍ତି ।
ସେମାନେ ମୁକତି ପଥ ସ୍ପଷ୍ଟ ଦେଖିଥାନ୍ତି ॥
ଅହେ ଭଗବାନ ତେବେ କିପାଇଁ ସଂସାରେ ।
ସେମାନଙ୍କୁ ଆସିବାକୁ ପଡ଼ଇ ନିକରେ ॥
ଜନନୀ ଜଠରେ କାହିଁପାଇଁ ଅବସ୍ଥିତ ।
ଲୋଭ ମାୟା କି ହେତୁରୁ ପ୍ରନଷ୍ଟ କରନ୍ତି ॥
ସେମାନଙ୍କ ମନେ କିପାଁ ହୁଅଇ ବାସନା ।
ଭୋଗରେ କିପାଇଁ ସେହୁ କରନ୍ତି କାମନା ॥

ଭିନ୍ନ ନ ଥାନ୍ତି ଯେବେହିଁ ପାପୀ ପୁଣ୍ୟବନ୍ତ
ତୁମ୍ଭେ ଯେବେ କିପରି ଯେ ହୁଅନ୍ତ ପୂଜିତ ॥
ସ୍ତ୍ରୀ ପୁତ୍ର ସମ୍ପଦ ସର୍ବ ବର୍ଜନ କରିଣ ।
ତପ ସାଧନ କରନ୍ତି କାହିଁକି ବା ଜନ ॥
ଭୋଗାଭୋଗ ତ୍ୟାଗକରି ଇନ୍ଦ୍ରିୟ ଦମନ ।
କରନ୍ତି କିପାଇଁ ଅହେ ପ୍ରଭୁ ନାରାୟଣ ॥
ଉପବାସୀ ହୋଇ ଲୋକେ ପବନ ଆହାରେ ।
ତୁମ୍ଭଙ୍କୁ ପ୍ରାପତ ପାଇଁ କିପାଁ ଯାଗ କରେ ॥
ଅନ୍ତ ନ ଥିବାରୁ ତୁମ୍ଭ ନାମଟି ଅନନ୍ତ ।
ତୁମ୍ଭର ମହିମା ପ୍ରଭୁ କେ କରିବ ଅନ୍ତ ॥
ରାମ ମୁଖୁଁ ଏସନ ବଚନ କୃଷ୍ଣ ଶୁଣି ।
ହରଷେ ଉତ୍ତର ଦେଲେ ପ୍ରଭୁ ଚକ୍ରପାଣି ॥
ଅହେ ଭକ୍ତ ତୁମ୍ଭେ ଶୁଣ ବଚନ ଆମ୍ଭର ।
ଶୁଣିଲେ ତୁମ୍ଭ ସନ୍ଦେହ ହୋଇଯିବ ଦୂର ॥
ଯେମାନଙ୍କ ଇଚ୍ଛା ଆମ୍ଭ ସହିତ ବାସରେ ।
ନ ଥାଇ ତୃଷ୍ଣା ତାଙ୍କର ଇହ ପରକାଳେ ॥
ସେମାନେ ନିର୍ବାଣ ମୁକ୍ତି କେବେ ନ ଇଚ୍ଛନ୍ତି ।
ଆମ୍ଭେ ଯେଉଁଠାକୁ ଯାଉ ସେଠାକୁ ସେ ଯାନ୍ତି ॥
ବିଚ୍ଛେଦ ଭାବରେ କେତେବେଳେ ନ ରହନ୍ତି
ସର୍ବଦା ଆମ୍ଭ ଦର୍ଶନ ଇଚ୍ଛା ସେ କରନ୍ତି ॥
ଯେତେବେଳେ ଯେଉଁ ଅବତାର ଆମ୍ଭେ ଯହିଁ ।
ସେମାନେ ଜନ୍ମ ହୁଅନ୍ତି ସେ ସ୍ଥାନରେ ଯାଇଁ ॥
ପ୍ରତିଯୁଗେ ଯେଉଁଠାରେ ଯେତେ କ୍ରୀଡ଼ା କରେ
ସେମାନେ ସଖା ସ୍ୱରୂପେ ଥାଆନ୍ତି ସଙ୍ଗରେ ॥
ଯେତେବେଳେ ହେଲୁ ଅମ୍ଭେ ରାମ ଅବତାର ।
ତେତେବେଳେ ସେମାନେ ତ ହୋଇଲେ ବାନର
ଜଣାଇଥିଲୁ ସମସ୍ତଙ୍କ ସାକ୍ଷାତରେ ।
ନ ଥିଲେ ବଞ୍ଚିତ କେହୁ ଆମ୍ଭର କୃପାରେ ॥
ଇହପରଲୋକେ ଯେଉଁଠାରେ ଯେଉଁ ସ୍ଥିତ ।
ସଦା ଭକ୍ତ ଗଣ ଆମ୍ଭ ସହିତେ ରହନ୍ତି ॥
ଯଦୁପତି ଏ ଭାରତୀ ରାମଙ୍କୁ କହିଣ ।
ସେହି ସ୍ଥାନରୁ ଚଞ୍ଚଳେ କରିଲେ ଗମନ ॥
ଏହି ସମୟେ ପ୍ରବୃତ୍ତ ସୂତକା ରମଣୀ ।
ଭୂତଳେ ପଡ଼ିଣ କୃଷ୍ଣେ କରଇ ଦାଇନ ॥
ମୋତେ ମୁକ୍ତି ନ କରିଲେ ଅହେ ଶ୍ରୀମାଧବ ।
କହନ୍ତୁ ବିଚାରି ନିନ୍ଦା କାହାକୁ ହୋଇବ ॥

ତୁମ୍ଭର ବଂଶର ମୁହିଁ ସଦା ହିତ କରେ ।
କେବେହେଁ ଭେଦ ଦେବ ଥାଏ ତୁମ୍ଭ ଅଜ୍ଞାତରେ ॥
ବସୁଦେବ ଆଦିକରି ଯାଦବ ବଳଙ୍କୁ ।
ରକ୍ଷା କରିଛ ପ୍ରସବ ସ୍ନେହେ ସମସ୍ତଙ୍କୁ ॥
ଦେବକୀ ଜନମ କାଳେ ତୁମ୍ଭର ମାୟାରେ ।
ନ ଜାଣି ପାରିଣ ମୁହିଁ ଅଛିଲି ସେଠାରେ ॥
ଯାହାଠାରୁ ଚରାଚର ସମସ୍ତ ସୃଜିତ ।
ଯାହାଙ୍କ ଦୟା ଗୁଣରେ ସମସ୍ତେ ରକ୍ଷିତ ॥
ଯେ ନିଜେ ଇଚ୍ଛାରେ ମର୍ତ୍ତ୍ୟେ ପ୍ରକାଶ ହୁଅନ୍ତି ।
ନିଜକାର୍ଯ୍ୟ ଶେଷକରି ନିଜଧାମେ ଯାନ୍ତି ॥
କେଉଁ ପ୍ରୟୋଜନ ତାଙ୍କ ଜନମ କାଳରେ ।
ସୂତିକା ହତର୍କେ ଥିବ ପ୍ରସବର ଘରେ ॥
ଅଜ ଅଜ ଯାଦବଙ୍କ ସେ କ୍ଷମତା ନାହିଁ ।
ଉପସ୍ଥିତ ସେମାନଙ୍କ କାର୍ଯ୍ୟେ ଏଥି ପାଇଁ ॥
ସୂତିକା କରୁଣ ବାଣୀ ଶୁଣି ଲକ୍ଷ୍ମୀକାନ୍ତ ।
ଆଜ୍ଞା ଦେଲେ ଭୀମକୁ ସେ ଡାକିଣ ତୁରିତ ॥
ଅମ୍ଭର କଥାରେ ଭୀମ ଅତି ବେଗେ ଯାଇଁ ।
ଭୂତକୁ ଉଦ୍ଧାର କର ସୂତିକାକୁ ତୁହି ॥
ଶ୍ରୀକୃଷ୍ଣ ବୋଇଲେ ଭୀମ ତାକୁ ଉଠାଇଲେ ।
ସେ ପୁଣି ଅଗରେ ବାସୁଦେବଙ୍କୁ ଦେଖିଲେ ॥
ଶ୍ରୀକୃଷ୍ଣଙ୍କ ମୁଖ ଚାହିଁ ବୋଲଇ ବଚନ ।
ହେ ପ୍ରଭୁ ବୈକୁଣ୍ଠନାଥ ଜଗତ ଜୀବନ ॥
ତୁମ୍ଭର ମାୟାରେ ସଂସାରର ଅତିଯାତ ।
ଭକ୍ତଭର ଉଦ୍ଧାରିଣ ମାରିବ ଦଇତ ॥
ଏପରି ସ୍ତୁତି କରିଣ ସୂତିକା ଚଳିଲେ ।
ତହୁଁ କୃଷ୍ଣ ବସୁଦେବ ପାଶେ ବିଜେକଲେ ॥
ପାଦେ ପଡ଼ି ଉଠି ଶିରେ କରକୁ ଦେଇଣ ।
ବୋଇଲେ ଶୁଣନ୍ତୁ ପିତା ମୋର ନିବେଦନ ॥
ଧର୍ମପୁତ୍ର ଯୁଧିଷ୍ଠିର ହସ୍ତିନା ପୁରରେ ।
ସ୍ଥିର କରିଛନ୍ତି ଅଶ୍ୱମେଧ କରିବାରେ ॥
ବନ୍ଧୁ ଦଳରୁ ବନ୍ଧୁତା ତାହାଙ୍କ ସଙ୍ଗରେ ।
ବନ୍ଧୁତାଭାବନ୍ତର ବନ୍ଧା ହୋଇଛୁ ସକଳେ ॥
ଅମ୍ଭମାନଙ୍କ କୁଟୁମ୍ବ ସହିତ ମିଳନ ।
ସେହିଭାବ ସବୁଦିନେ ପଣ୍ଡୁ ଯଦୁଗଣ ॥
ଭୀମସେନ ଡାକିଣ ଆସିଛି ଏହି ପୁରୀ ।
ଅମ୍ଭଙ୍କୁ ନେବା ପାଇଁ ହସ୍ତିନା ନଗରୀ ॥

ଅମ୍ଭେମାନେ ଗଲେ ହେବ ଯଜ୍ଞ ଆୟୋଜନ
ପରାମର୍ଶ ନେବେ ସେହି ଯୁଧିଷ୍ଠିର ରାଣ ॥
ଯଜ୍ଞ କାର୍ଯ୍ୟ-ମଙ୍ଗଳ ସହିତ କରାଇଲେ ।
ତେବେ ସୁଖ୍ୟାତି ରହିବ ଏହି ମହୀତଳେ ॥
କଲ୍ୟାଣ କରିଣ ପିତା ଆଜ୍ଞା ମୋତେ କର ।
ସୈନ୍ୟ କୁଟୁମ୍ବ ସହିତ ଯିବ ହସ୍ତିନାର ॥
ପ୍ରକୃତ ବାଳକ ଅମ୍ଭେମାନେ ବୟସରେ ।
ହିତାହିତ ଜ୍ଞାନ ଶୂନ୍ୟ କର୍ତ୍ତବ୍ୟ କର୍ମରେ ॥
କାହିଁରେ ସମ୍ମାନ ପୁଣି କାହିଁ ଅପମାନ ।
ସମାନରେ ଚଳିବାକୁ ବଡ଼ଇ କଠିଣ ॥
ସେହି ଅଶ୍ୱମେଧ ହେତୁ ବହୁ ନରବର ।
ଅନେକ ଦେଶୁ ଆସିବେ ଶୁଣନ୍ତୁ ପିଅର ॥
କିପରି ସମସ୍ତଙ୍କର ମନ ତୋଷ ହେବ ।
ନିରାପଦରେ କିପରି ଏ ଯଜ୍ଞ ହୋଇବ ॥
ଅନେକ ସମ୍ମାନ ପାଇଁ ଅଭିମାନୀ ହୋନ୍ତି ।
ବଂଶର ବଡ଼ିମାପଣ ବଖାଣ କରନ୍ତି ॥
ଆପଣାକୁ କେହୁ ବଡ଼ ବୋଲି ଜ୍ଞାନ କରେ ।
ସମସ୍ତ ଲୋକେ ସାମାନ୍ୟ ତାହାର ଦୃଷ୍ଟିରେ ॥
କେଉଁପରି ଭଲ ମନ୍ଦ ବିଗ୍ରହ କରିଣ ।
ଯଶ ଗୌରବ ବଢ଼ିବ ଦାନକଲେ ଧନ ॥
ବେଶୀ ଘନିଷ୍ଠ ଭାବରେ କାହାର ସଙ୍ଗରେ ।
ଉଚିତ ଅଟଇ ଅଭ୍ୟର୍ଥନା କରିବାରେ ॥
କିସ କରିବାକୁ ହେବ ମୋତେ ଆଜ୍ଞାକର ।
କାହାକୁ କିପରି ଭାବେ କରିବି ବ୍ୟବହାର ॥
ଏଣୁ କରି ଶ୍ରୀଚରଣେ ଏହି ନିବେଦନ ।
ସମସ୍ତଙ୍କୁ ଜାଣି ଉପଦେଶ କର ଦାନ ॥
ଏହା ଶୁଣି ବସୁଦେବ ଶ୍ରୀକୃଷ୍ଣେ ଡାକିଣ ।
ମୁଖେ ଚୁମ୍ବ ଦେଇ ସ୍ନେହେ ବୋଲନ୍ତି ବଚନ
କି ଅବା ନ ଜାଣ ତୁହି କମଳଲୋଚନ ।
କିସ ଶିଖାଇବି ତୋତେ ଅରେ ବାପଧନ ॥
ସଂସାରରେ ହର୍ତ୍ତା କର୍ତ୍ତା ଅଟୁ ଅରେ ଧନ ।
ଭାଗ୍ୟବଳେ ହୋଇଅଛୁ ମୋ କୋଳେ ଜନମ
ଯାହା ହେଉ ତୁମ୍ଭ ସ୍ନେହେ ବନ୍ଧା ମୁଁ ହୋଇଛି
ସଂସାରର ପିତା ତୁହି କବା ବାକି ଅଛି ॥
ମୋହପରି ଲୋକ ପିତା ହେବାକୁ ବିସ୍ମୟ ।
ଇଚ୍ଛାରେ ଯାହାଙ୍କ ଜନ୍ମ ଇଚ୍ଛାରେ ହିଁ ଲୟ ॥

ଅଯୋନି ସମ୍ଭବ ଯୋନି ମାୟାରେ ଆଶ୍ରୟ ।
ନରରୂପେ ଜନ୍ମହୋଇ ବୋଲ ମୋ ତନୟ ॥
କହୁଅଛି ହେ ଶ୍ରୀକୃଷ୍ଣ ଅମ୍ବର ଅଗରେ ।
ଦେବକୀ ଯାଉଅଛନ୍ତି ତୁମ୍ଭର ସଙ୍ଗରେ ॥
ହେ ହର ତୁମ୍ଭଙ୍କୁ ଗର୍ଭେ ଧାରଣ କରଣି ।
ସଂସାର ମଧ୍ୟରେ ହୋଇଛନ୍ତି ସେହୁ ଧନ୍ୟ ॥
ବିଶ୍ୱମ୍ଭର ଜଗତ ମୋହିନୀ ଶକ୍ତିଧର ।
ପରାଜିତ ହୋଇଅଛ ଦେବକୀ ଗୋଚର ॥
ଶୂନ୍ୟକର ପୁତ୍ର ତୁମ୍ଭେ ଯାଉଛ ଶ୍ରୀହର ।
ଏଠାରେ ଆମ୍ଭେ ରହିଲୁ ମାଟିପିଣ୍ଡ ଧରି ॥
ଗଭୀର ଦୁଃଖ ସମୁଦ୍ରେ ମୋତେ ପକାଇଣି ।
ବୋଇଲ ଯାଉଛୁ ମୁହିଁ ଏ ବଡ଼ ଦାରୁଣ ॥
ଯାହାହେଉ ମୋ ବୁଦ୍ଧିରେ ଜାଣିଛୁ ମୁଁ ଯାହା
ସ୍ଥିର ଭାବେ ଶୁଣ ବାବୁ ନ ଭୁଲିବୁ ତାହା ॥
ଯେଉଁମାନେ ଦେବଧର୍ମ ଜାଣିଣ ଅଛନ୍ତି ।
ଆବର ବଂଶାନୁଧର୍ମ ବିଧାନେ ଚଳନ୍ତି ॥
ପବିତ୍ର ଆଚାର ଅଟେ ଯେଉଁମାନଙ୍କର ।
ସଦା ବେଦାଭ୍ୟାସ କରେ ଯେଉଁ ବିପ୍ରବର ॥
ସେମାନଙ୍କଠାରେ ଧନ କରିବ ହେ ଦାନ ।
ଉପଯୁକ୍ତ ପାତ୍ରେ ଦେଲେ ଧର୍ମ ହୁଏ ଜାଣ ॥
ଏପରି କାର୍ଯ୍ୟରେ ବାବୁ ଉଦାସ ନ ହେବ ।
ତାହାହେଲେ ଦାନଫଳ ଅବଶ୍ୟ ଫଳିବ ॥
ଯେଉଁମାନେ ପର ନିନ୍ଦା ପର ଅମଙ୍ଗଳ ।
ନ କରନ୍ତି ରହିବ ହେ ତୁମ୍ଭେ ତା ସଙ୍ଗର ॥
ପର ଧନ ଟେକା ପର ଜ୍ଞାନ ଯେ କରନ୍ତି ।
ସେମାନଙ୍କ ପାଶେ ତୁମ୍ଭେ ଥାଅ ଦାଶରଥି ॥
ଯେଉଁ ଲୋକ ସଂସାରକୁ ଘୃଣା ନ କରଇ ।
ସମସ୍ତ ଲୋକେ ସମାନ ଭାବରେ ଦେଖଇ ॥
ନିଜ ପର ସମସ୍ତଙ୍କୁ ଯେ ମନେ କରଇ ।
ସେମାନଙ୍କ ସହିତରେ ସଦା ଥାଅ ରହି ॥
ଦାନେ ଦାତା ବଳେ ବୀର କ୍ଷତ୍ରୀଧର୍ମେ ବଢ଼ି
ସମରରୁ ଶତ୍ରୁକୁ ଯେ ନ ଦିଅଇ ଆଡ଼ି ॥
ଦେବ ପିତୃ ତୃପ୍ତିକରେ ଯେ ଦାନ ଧ୍ୟାନରେ
ସଦାବେଳେ ସାହାଯ୍ୟ ଯେ କରେ ଦୁର୍ବଳରେ
ଏପରି କ୍ଷତ୍ରିୟ ସଙ୍ଗେ କରିବ ଗମନ ।
ସେମାନଙ୍କ ସଙ୍ଗ ନ ଛାଡ଼ିବ ନାରାୟଣ ॥

ଯେଉଁ ଲୋକ ଅଭିମାନେ ନିଜ ଗୌରବରେ
ମନୁଷ୍ୟମାନଙ୍କୁ ତୃଣ ପ୍ରାୟ ଜ୍ଞାନ କରେ ॥
ଜାତି କୁଳ ବିଦ୍ୟା ଧନ ବୟସ ଗର୍ବରେ ।
ସମସ୍ତଙ୍କୁ ତୁଚ୍ଛ ସେ ମଣଇ ଜଗତରେ ॥
ଭାର୍ଯ୍ୟାର କଥାରେ ଚଳେ ନ ବିଗୃରେ ଆନ ।
ସୁନ୍ଦରୀ ସ୍ତ୍ରୀ ଦେଖିଲେ କାମେ ଯାର ମନ ॥
ଏପରି ପୁରୁଷ ହୀନ ଚିତ୍ତ ଯେ ଅଟଇ ।
ଏହା ସହିତରେ ସଙ୍ଗ କେବେ ନ ଯୋଗାଇ ॥
ଯେଉଁଲୋକ ନିଜ ହିତ ସାଧନ ନିମିତ୍ତ ।
ସର୍ବଦା କୁଟିଳ ବୁଦ୍ଧି କରଇ ଚିନ୍ତିତ ॥
ନାନା ମାୟା କରି ମୁଖେ ମଧୁର କହଇ ।
ଲୋକଙ୍କୁ ଠକାଇ ନାନା ବିପଦେ ପକାଇ ॥
ଏପରି ଲୋକର ସଙ୍ଗେ କେବେ ନ ରହିବ ।
ଜାଣି ଶୁଣି ତାହାଠାରୁ ଦୂର ହୋଇଯିବ ॥
ଯେଉଁଲୋକ କୁଟୁମ୍ବକୁ ପୋଷିବା ନିମିତ୍ତ ।
ସର୍ବଦା ଅନ୍ୟାୟ କାର୍ଯ୍ୟ ଭାବୁଥାଏ ଚିତ୍ତ ॥
ଧର୍ମୀଲୋକ ପାଶେ ନାନାଦି ଯେ କଥା କହିଣ
ପର ଅମଙ୍ଗଳ କରି ଅର୍ଜୁଥାଏ ଧନ ॥
ମନୁଷ୍ୟର ଦେହ ଧରିଥିଲେ କିସ ହେବ ।
ସେମାନଙ୍କୁ ପଶୁଠାରୁ ବଳିଣ ଦେଖିବ ॥
ଇନ୍ଦ୍ରିୟର ବଶେ ଥାଏ ସଦା କଦାଚାରୀ ।
ଗୁରୁଲଘୁ ବିବେଚନା ନାହିଁଟି ଯାହାର ॥
ମଣିଷ୍କ ହରଣ ପାଇଁ ବଳାଏ ଯେ ମତି ।
ରଜସ୍ୱଳା ନାରୀସଙ୍ଗେ କରେ ଯେ ପୀରତି ॥
ଏପରି ପାପୀର ମୁଖ ଯେ କରେ ଦର୍ଶନ ।
ଗଙ୍ଗାସ୍ନାନ କଲେ ଯାଏ ତାର ପାପମାନ ।
ଅଥବା ଶିବ ବିଷ୍ଣୁଙ୍କ ଦର୍ଶନ କରିଲେ ।
ପାପତାପ ତା ଅଙ୍ଗରୁ ଦୂର ହୁଏ ଭଲେ ॥
ନିଷେଧ କରୁଛି ବାବୁ ମାନ ମୋ ବଚନ ।
ଏପରି ପାମରେ ତେଜିବାରେ ପ୍ରୟୋଜନ ।
ଶ୍ୱଶୁରର ଘରେ ଯେହୁ ଜୀବନ ପାଳଇ ।
ମହତ ମାନମର୍ଯ୍ୟାଦା ତାର ରହେ ନାହିଁ ॥
ଲୋକ ମୁଖେ ଅପବାଦ ହୁଅଇ ତ ହାର ।
ସ୍ୱାମୀ ବୋଲି ନ ମାନଇ ରମଣୀ ଯେ ତାର
ଏପରି ଅପମାନରେ ବଞ୍ଚିବା ମରିବା ।
ସମାନ ଅଟଇ ତାର ହେତୁ ରଖ ବାବା ॥

ଯେଉଁ ଲୋକ ଜାମାତାର ଧନରେ ଚଳଇ ॥
କୁଆଁ ଇର ଆଶ୍ରୟରେ ସମସ୍ତ କାଟଇ ॥
ଏପରି ଲୋକର ସଂସାରରେ ପଉରୁଷ ।
କଦାପି କରନ୍ତି ନାହିଁ ସକଳ ବିଦୁଷ ॥
ପୁତ୍ରହୀନ ହେଲେ ଯେଉଁ ଗତି ପାଏ ନର ।
ତାହାର ଅଟଇ ସେହି ଗତି ଚକ୍ରଧର ॥
ଏପରି କାପୁରୁଷର ସଙ୍ଗ ନ କରିବ ।
ଦେଖିଣ ଦୂରରୁ ନିଜେ ଅନ୍ତ ହୋଇଯିବ ॥
ଯୁଆଖେଳେ ମତ୍ତ ଯେଉଁମାନେ ହୋଇଥାନ୍ତି
ଧନ କ୍ଷୟ କରି ଶେଷେ ଲୋକ ନିନ୍ଦା ପାନ୍ତି ॥
ଯେଉଁଲୋକ କାମେ ମତ୍ତ ହୋଇଣ ଅବିର ।
ବୟସରେ ବଡ଼ ସଙ୍ଗେ କରଇ ଶୃଙ୍ଗାର ॥
କିବା ପୁଷ୍ପବତୀ ନାରୀଙ୍କର ସଙ୍ଗ କରେ ।
କିବା ଗର୍ଭବତୀ ନାରୀ ସହିତେ ବିହରେ ॥
ଯେଉଁ ଲୋକ ନାରୀସହ ଭୋଜନ ଯେ କରେ
କିବା ଦିବସେ ରମଣ କରେ ତାହା ତୁଲେ
ପରସ୍ତ୍ରୀ ସମ୍ଭୋଗରେ ଯେ ବଳାଏ ମନ ।
ଏପରି ପାପୀଙ୍କର ନ ଚୁହିଁବ ବଦନ ॥
ସ୍ୱାମୀର ବିପଦ ଦେଖି ଯେବଣ ଚାକର ।
ପରିତ୍ୟାଗ କରଇ ତାହାଙ୍କୁ ସେ କାଳର ॥
ଏପରି ଦାସକୁ ଯେହୁ ବିଶ୍ୱାସ କରଇ ।
ନାନାଦି ବିପଦେ ସେହୁ ସହଜେ ପଡ଼ଇ ॥
ଅତି ଧନବାନ ଲୋକ ସଦାବେଳେ ସୁଖୀ ।
ଆନନ୍ଦେ ଦିନ କାଟଇ ନ ଜାଣଇ ଦୁଃଖ ॥
ଦୁଃଖୀ ଦରିଦ୍ର ଦେଖିଲେ ଦୟା ନ କରଇ ।
ଏପରି ନାରୀର ପାଶ ନ ଯିବୁରେ ତୁହି ॥
ସ୍ୱାମୀକି ଠକାଇ ଦିଏ ଯେ କୁଳରମଣୀ ।
ବହୁକଥା କହୁଥାଏ ରାଗରେ ସେ ପୁଣି ॥
ସ୍ୱାମୀ ଯାହା କହେ ତାହା ନ ମାନଇଁ ଭଲେ
ନିଜ ଇଚ୍ଛାରେ ଚଳଇ ଯେହୁ ଏ ସଂସାରେ ॥
କଟୁକଥା ସ୍ୱାମୀକୁ ଯେ କହିବା ନିମିତ୍ତ ।
ଭଲେ ମାନ ଦୁଃଖ ଜାତ ନୁହେଁ ତାର ଚିତ୍ତ
ଏପରି ନାରୀର ଘୋର ନର୍କେ ହୁଏ ଗତି ।
ସେମାନଙ୍କ ସଙ୍ଗେ କେବେ ନ କର ବସତି
ବସୁଦେବ ମୁଖରୁ ଏସନ ବାଣୀ ଶୁଣି ।
ବାସୁଦେବ ପ୍ରଣମିଲେ ତାହାଙ୍କୁ ତକ୍ଷଣି ॥

ହାତ ଯୋଡ଼ିକରି ହରି ବିନୟେ କହନ୍ତି ।
ଆପଣଙ୍କ ଆଜ୍ଞା ମୁଁ ପାଳିବି ମହାମତି ॥
ଏହି ଉପଦେଶମତେ ଚଳିବଟି ଯେହୁ ।
ଧନ ମାନ ସୁଖ ଆଦି ଲଭିବଟି ସେହୁ ॥
ସ୍ମରଣ ରଖିବ ସବୁଦିନେ ଏ ବଚନ ।
ଅବଶ୍ୟ ପରମ ସୁଖେ କଟିଯିବ ଦିନ ॥
ଦୁର୍ଜନ ପାଷଣ୍ଡ ଖଳ ସଙ୍ଗ ଛାଡ଼ିକରି ।
ଯୁଧିଷ୍ଠିର ସଙ୍ଗେ ଆମ୍ଭେ ଯିବୁ ବେଗକରି ॥
କେବେହେଁ ଦୁର୍ଜନ ସଙ୍ଗେ ନ କରିବୁ ବାସ
ସତ୍ୟକରି କହୁଅଛୁ ଆମ୍ଭେ ତୁମ୍ଭ ପାଶ ॥
ଭୀମସେନ ବୀର ଶୁଣି ଶ୍ରୀକୃଷ୍ଣଙ୍କ ଗୀର ।
ଉତ୍ତର କରିଲେ ତେବେ ହୋଇ ଅଗଭର ॥
ସୁଚତୁର ବସୁଦେବ ବୋଇଲେଣି ଯାହା ।
ଅମୃତ ର ଉପଦେଶ କି କହିବି ତାହା ॥
ଶୁଣ ପ୍ରଭୁ ନାରାୟଣ କହୁଛି ତୁମ୍ଭଙ୍କୁ ।
ପାପୀ ତ୍ରାଣକର୍ତ୍ତା ବୋଲି ବୋଲନ୍ତି ତୁମ୍ଭଙ୍କୁ ॥
ପାପୀଲୋକ ତୁମ୍ଭଙ୍କୁ ଯେ ଦେଖି ନ ପାରିଲେ
କୁହ କିପରି ତରିବେ ସଂସାରୁ ସେ ଭଲେ ॥
ଯେଉଁଠାରେ ସାଧୁବାସ ସେହିଠାରେ ସ୍ଥିତି ।
କରୁଥାଅ ହେ ଶ୍ରୀକୃଷ୍ଣ ଏହି ତୁମ୍ଭ ମତି ॥
ମାନ ବିଚାର କରିଣ ଦେଖ ନାରାୟଣ ।
ସାଧୁମାନଙ୍କ ଜୀବନ ଅଟ ତ ଆପଣ ॥
ଉପକାର ପାଇ ଯେହୁ ଭଦ୍ର ବ୍ୟବହାର ।
କରୁଥାଏ ମୁହିଁ ବୋଲେ ଦୋଷ ନୁହେଁ ତାର
ଏଣୁକରି ହେ ମାଧବ କହେଟି ତୁମ୍ଭଙ୍କୁ ।
ସକଳ ଜୀବରେ ବହି ସମାନ ଭାବକୁ ॥
ଦୟା ନ କରିଲେ ତୁମ୍ଭେ ପାପୀର କି ଗତି
ସାଧୁ ପାଇଁ ଏକା ଯେବେ ଅଛ ଲକ୍ଷ୍ମୀପତି ॥
ନିଜ ବଳେ ଠିଆ ହୁଅନ୍ତି ଯେବଣ ଜନ ।
ସାହାଯ୍ୟରେ ସେମାନଙ୍କ କିବା ପ୍ରୟୋଜନ
ଛନୁ ଅବଶରୁ ବସି ଉଠି ନ ପାରଇ ।
ଚଳିବାକୁ ପାଦ ପୁଣି ବାହାର ନୁହଇ ॥
ଏମାନଙ୍କୁ ସାହାଯ୍ୟ ତ ଜଗତର ରୀତ ।
ପାପୀଲୋକ କେବେ କିପାଁ ନ ପାଇବେ ଗତ
ସମସ୍ତ ଯାଦବ ଶୁଣି ଭୀମଙ୍କ ଏ ବାଣୀ ।
ଧନ୍ୟବାଦ ଦେଇଣ ଉଠିଲେ ତତକ୍ଷଣି ॥

ଏଣେ ସେହି ବସୁଦେବ ସ୍ନେହାଧୀନ ଚିତ୍ତେ
ବିଦାୟ ଦେଲେ କୃଷ୍ଣଙ୍କୁ ଅଶ୍ରୁପୂର୍ଣ୍ଣ ନେତ୍ରେ ॥
ପୁଣି ବସୁଦେବ କୃଷ୍ଣେ ବୋଲନ୍ତି ବଚନ ।
ତୁମ୍ଭର ବିହୀନେ ଅମ୍ଭେ ଛାଡ଼ିବୁ ଜୀବନ ॥
ଦଶରଥ ଯେଉଁପରି ରାମ ବିଚ୍ଛେଦରେ ।
ଛାଡ଼ିଲେ ସେ ନିଜପ୍ରାଣ ଯାନ୍ତେ ସେ ବନରେ
ଦେଖୁଁ ଦେଖୁଁ ନ ଦେଖନ୍ତେ ଦଶରଥ ମଲେ
ଇନ୍ଦ୍ରର ସଭାରେ ଯାଇ ସ୍ୱର୍ଗଭୋଗ କଲେ ॥
ପୁଣି ଲଙ୍କାଗଡ଼ୁ ରାମ ଜାନକୀ ସହିତ ।
ଦେଖିଲେ ଯେ ଦଶରଥ ଦେବଙ୍କ ସଙ୍ଗତ ॥
ଏତେ କହି ଶ୍ରୀକୃଷ୍ଣଙ୍କୁ କଲେ ଆଲିଙ୍ଗନ ।
ନ ଛାଡ଼ନ୍ତି ପୁଣି ପୁଣି କୋଳରେ ଯାକିଣ ॥
ଶ୍ରୀକୃଷ୍ଣ ବୋଇଲେ ପିତା ରାମ ସଙ୍ଗେ ଯାଅ ।
ଅଳ୍ପଦିନେ ଆସିବ ଦ୍ୱାରକାପୁରେ ଥାଅ ॥
ଏତେ କହି ରାମଙ୍କୁ ସଙ୍ଗତେ ଘେନିକରି ।
କିଛିଦୂର ଯାଇ ଦେଖିଲେ ଏକ ପୋଖରୀ ॥
ପୋଖରୀର ଚାରିପାଖ ପ୍ରସ୍ତର ନିର୍ମିତ ।
ସୁବିସ୍ତୃତ ଘାଟମାନ ତହି ବିରାଜିତ ॥
ଲତା କୁଞ୍ଜମାନଙ୍କରେ ଚତୁର୍ଦ୍ଦିଗ ଶୋହେ ।
ଅନାଇଲା ମାତ୍ରକେ ସେ ଜନମନ ମୋହେ ॥
ରାଜହଂସ ବକ ପାତିହଂସ ଚକ୍ରବାକେ ।
ଦଳ ଦଳ ସୁଶୋଭିତ ଛନ୍ତି ଚତୁର୍ଦ୍ଦିଗେ ॥
ପଦ୍ମ କଇଁ ଆଦି ଫୁଲ ଅଛଇ ବହୁତ ।
ସୁଗନ୍ଧରେ ମୋହୁଅଛି ସମସ୍ତଙ୍କ ଚିତ୍ତ ॥
ଦିବସର ହେତୁ ପଦ୍ମ ଫୁଟି ବିରାଜଇ ।
ଭ୍ରମର ଯେ ତହିଁ ମଧ୍ୟେ ଯାଇଣ ଚୁମ୍ବଇ ॥
ପଦ୍ମ ଶୋଭା ଦେଖି ହରି ଅତି ଆନନ୍ଦରେ ।
ଗୋଟିଏ ପଦ୍ମ ଦଳକୁ ଆଣିଲେ ଶୀଘ୍ରରେ ॥
ପଦ୍ମକୁ କରରେ ଧରି କମଳ ଲୋଚନ ।
ରୁକ୍ମିଣୀଙ୍କ ଚାହିଁ ହାସେ ବୋଇଲେ ବଚନ ॥
ଶୁଣ ଆଗୋ ପ୍ରିୟତମା ବଚନ ମୋହର ।
ଦେଖ ପଦ୍ମ ମଧ୍ୟେ ଅଛି ଗୋଟିଏ ଭ୍ରମର ॥
ସୂର୍ଯ୍ୟର ବାନ୍ଧବ ବୋଲି ଜଗତେ କହନ୍ତି ।
ଦେଖ ଭ୍ରମର ସହିତ କପରି ପୀରତି ॥
ସ୍ତିରୀଙ୍କ ମାୟା ସଂସାରେ ଅଗମ୍ୟ ଅଟଇ ।
ନର କି ବୁଝିବ ତା ଦେବତା ନ ଜାଣଇ ॥
ନାନା ମିଷ୍ଟକଥାମାନ କହି ମନ ନ୍ୟନ୍ତି ।
ଅନ୍ୟ ପୁରୁଷଙ୍କଠାରେ ଥାଏ ତାର ମତି ॥
ସ୍ୱାମୀଙ୍କ ଠକାଇ କରି ଆପଣା ଇଚ୍ଛାରେ ।
ରତି ପର ପୁରୁଷର ସଙ୍ଗେ ଆମୋଦରେ ॥
ନାରୀଜାତି ଚରିତ ହାୟ ନର କିବା ଜାଣେ ।
ଜାଣି ନ ପାରଇ ବ୍ରହ୍ମା କିଛି ପରମାଣେ ॥
ଶତେ ଶତେ ପ୍ରବଞ୍ଚନା ଗୁଣରେ ପୂରିତ ।
ସର୍ବଦା କପଟ ପୂର୍ଣ୍ଣ ନାରୀଙ୍କର ଚିତ୍ତ ॥
ସ୍ୱାମୀ ଆଗେ ସତୀତ୍ୱର ଭାବକୁ ଦେଖାନ୍ତି ।
ନାନାଦି କଥା କହିଣ ମନକୁ ଲୋଭାନ୍ତି ॥
କହିବାରେ ନିପୁଣ ସେ ମଧୁର ବଚନ ।
ନାରୀ ଅବିଶ୍ୱାସୀ ବୋଲି ଜାଣେ ସର୍ବଜନ ॥
ଉଚ୍ଚ ଔରସରେ ଜନ୍ମ ସଙ୍ଗମ ନୀଚରେ ।
ତେଣୁ ନୀଚ କର୍ମ ନାରୀ କରେ ଏ ସଂସାରେ
ଅଙ୍ଗାରୁ ନ ଜନ୍ମେ କେବେ ସୁବର୍ଣ୍ଣ ଆକାରେ
ଏପରି ବିଷୟ ଜାଣିଛନ୍ତି ସର୍ବ ନରେ ॥
ପଙ୍କରୁ ଯେ କମଳିନୀ ହୋଇଅଛି ଜାତ ।
ପଙ୍କରେ ତାହାର ସଦା ବାସ ଅଟଇତ ॥
ପଦ୍ମିନୀର ପାପ କର୍ମେ ସେହି ହେତୁ ମତି ।
ଭଲପାଏ ତେଣୁକରି ଅନ୍ୟର ପୀରତି ॥
ଦେଖ ଦେଖ ନଳିନୀ ଯେ ଦିବସ ସମୟ ।
ସୂର୍ଯ୍ୟଙ୍କୁ ଦେଖିଣ ଭୟେ କମ୍ପିତ ହୃଦୟ ॥
ଥରୁଛି ଯେପରି ଏବେ ଦେଖିଣ ପତିରେ ।
ସେହିପରି ଥରେ ବେଗେ ମଧୁପ ବିହରେ ॥
ଚୌରୀ ପ୍ରୀତିର ଲକ୍ଷଣ ଏପରି ଅଟଇ ।
ପାପୀମାନଙ୍କର ଗତି ତେସନ ହୁଅଇ ॥
ପଷଣ୍ଡ ଲୋକ ମନରେ କିଛି ଭୟ ନାହିଁ ।
ସ୍ୱଚ୍ଛନ୍ଦରେ ସେହିମାନେ ଦିନକୁ କଟାଇ ॥
ପାପକର୍ମେ ରତ ଯେବେ ହୋଇଥାଏ ନର ।
ସର୍ବଦା ଥରଇ ଜାଣ ହୃଦୟ ତାହାର ॥
ପ୍ରକୃତି ବଶରେ ଯେବେ ଚୌର ଚୌରୀକରେ
ସଦା ଭୟ ହେଉଥାଏ ତାହାର ମନରେ ॥
ସେହିପରି ଏହି କାର୍ଯ୍ୟ ଦେଖ ଗୋ ସାକ୍ଷାତେ
ତେଣୁ ନାରୀ ଅବିଶ୍ୱାସୀ ଅଟଇ ଯୁକତେ ॥
ଶ୍ରୀକୃଷ୍ଣଙ୍କ ବାଣୀ ଶୁଣି ଦେବୀ କମଳିନୀ ।
ଅଳ୍ପହାସ୍ୟ କରି ଦେବୀ ବୋଇଲେ କି ବାଣୀ ॥

ଯା କହିଲେ ପ୍ରାଣେଶ୍ୱର ମୋତେ ଦେଖାଇଣ
ନ ବୁଝି କହିବ ଦୋଷ ଦିଅ ହେ ଆପଣ ॥
ପୁତ୍ର ପୌତ୍ର ଛାଡ଼ିଣ ସେ ପଦ୍ମିନୀର କାନ୍ତ ।
ଯେଣୁ ଅନ୍ୟ ନାରୀ ସଙ୍ଗେ ଗମଇ ସତତ ॥
କୁଟୁମ୍ବ ପୋଷି ନ କରି ପରଘରେ ଯାଇ ।
ନାନାଦି କାର୍ଯ୍ୟ କରଣ ଉଦର ପୋଷଇ ॥
ତଥାପି ପଦ୍ମିନୀ କୁଳ ଲାଜ ନ ଛାଡ଼ିଲା ।
ନିଜ ପୁତ୍ର ପୌତ୍ରୀଙ୍କି ଯେ ପୋଷିଣ ରହିଲା ॥
ଭ୍ରମରମାନଙ୍କୁ କୋଳେ ପୁତ୍ର ପ୍ରାୟେ କରି ।
ନିରନ୍ତରେ ପୁତ୍ର ସ୍ନେହ ହେତୁ ସେ ଆଦରି ॥
ଯେଉଁ ନାରୀ ପୁତ୍ର ପୌତ୍ରୀ କୁଟୁମ୍ବେ ଛାଡ଼ିଣ ।
ପତିକି ଭଜଇ ଏକା ନିଜର ସୁଖେଣ ॥
ପତିର ନିକଟେ ପୁତ୍ର ସେବନ କରନ୍ତି ।
ଯେଉଁ ନାରୀ ସ୍ନେହକରି ତାଙ୍କୁ ନ ବୋଧନ୍ତି ॥
ଏମନ୍ତ ନିଷ୍ଠୁର ବୁଦ୍ଧି ନୁହଇ ଏହାର ।
ପୁତ୍ର ପ୍ରାୟେ ସେବନ ଯେ କରଇ ଭ୍ରମର ॥
ସୁତ ସ୍ନେହ ବଶେ ତାଙ୍କୁ କୋଳରେ ଧରଇ ।
ସ୍ୱାମୀ ଥାଇ ଦେଖୁଥାନ୍ତେ ସୁଖେ ନିଦ୍ରାଯାଇ ॥
ଆଉରି ବୋଇଲେ ହେ କାନ୍ଦଇ ପ୍ରାଣଭୟେ
ସହଜେ ନାରୀକି ଛାଡ଼ି କାନ୍ତ ଯେବେ ଯାଏ ॥
ଦେଖି ନିଶାକାଳରେ ଯେ ପରନାରୀ ସଙ୍ଗେ
ତେଣୁକରି କମ୍ପେ ପଦ୍ମିନୀର ଅଙ୍ଗ ରାଗେ ॥
ଯେବେକାନ୍ତଠାରେତାର ସ୍ନେହ ଯେ ନଥାନ୍ତା
ସୂର୍ଯ୍ୟଙ୍କୁ ଦେଖିଣ କିପାଁ ଫୁଟିଣ ଉଠନ୍ତା ॥
ଦେଖ ଦେବ ସୂର୍ଯ୍ୟଅସ୍ତ ହୁଏ ଯେତେବେଳେ
ଦୁଃଖରେ ମୁଦ୍ରିତ ସେ ହୁଅଇ ତତକାଳେ ॥
ସ୍ୱାମୀ ଯେତେ ଦୋଷ ଯେ ପଛକେ କରିଥାଉ
ନିଜ ସ୍ନେହରେ ନଳିନୀ ନ ଛାଡ଼ଇ ଆଉ ॥
ଏଥକୁ ବିଚାରି ନାଥ ଦିଅ ହେ ଦୂଷଣ ।
ନାରୀ ଜାତି ନୁହଇ ଯେ କୁଟିଳତା ଜାଣ ॥
ଏ କଥାକୁ ହସି କିପାଁ କୁହ ଚକ୍ରଧର ।
ସର୍ବଦା ଦେଖିବ ଏ ତ ଅଛି ସଂସାରର ॥
ବୋଇଲେ ଯେ କାନ୍ତର ଆଗମ ବେଳ ଜାଣି
ଦେଖିଣ ହରଷଯୁକ୍ତା ହୁଅଇ ପଦ୍ମିନୀ ॥
ଯାହା କାନ୍ତ ଦୂର ପ୍ରବାସକୁ ଯାଇ ଥାଇ ।
ପୁଷ୍ପିତାଙ୍ଗୀ ଆପଣାର ମନ୍ଦିରେ ଅଛଇ ॥

ଦେଖିଲେ କି ଆନନ୍ଦ ନୁହଇ ପତ୍ନୀ ତାର ।
ଏଥିକି ଦୋଷ ଦେଲେ ହେ ନାରୀ ଅତ୍ୟାଗ୍ରହ
ପଙ୍କରୁ ଜନମ ବୋଲି ପଦ୍ମକୁ ନିନ୍ଦଲେ ।
ବରାହ ରୂପରେ ହରି ପୃଥ୍ୱୀ ଖୋଳିଥିଲେ ॥
ବିଷ୍ଣୁପାଦୁ ଗଙ୍ଗାଜଳ ପତିତ ହୋଇଲା ।
ସେ ପଙ୍କୁ ପଦ୍ମିନୀ ଜାତ କି ଦୋଷ ପାଇଲା ॥
ନାରୀ ହୁଏ ଅବିଶ୍ୱାସୀ ଜଗତ ମଧ୍ୟର ।
ନାରୀଜାତି କୁଟିଳତା ବୋଲେ ସର୍ବଜନ ॥
ପୁରୁଷର କପଟ ଆଶ୍ଚର୍ଯ୍ୟ ବ୍ୟବହାର ।
ଯେ ଭୋଗିଛନ୍ତି ସେମାନେ ଜାଣନ୍ତି ନିକର ॥
ଚିରକାଳ ସନ୍ଦେହରେ ଭୋଗ ଯେ କରନ୍ତି ।
କହୁଅଛି ଶୁଣ ଏବେ ପୁରୁଷଙ୍କ ରୀତି ॥
ହେ ପ୍ରାଣେଶ ଦେଖ ଭାବି ରାମ ଅବତାରେ ।
ବିଭାହୋଇଏତେଦୁଃଖଦେଲେବୈଦେହୀରେ
ଏକଦିନେ ସଙ୍ଗସୁଖେ ଭଲ କିବା ମନ୍ଦ ।
ଜାଣି ଦୂର ହୋଇଯାଏ ମନରୁ ବିଷାଦ ॥
ରାମଚନ୍ଦ୍ର ବୁଦ୍ଧିମାନ ଅତି ବିଚକ୍ଷଣ ।
ସନ୍ଦେହରେ ଜାନକୀଙ୍କି ପଠାଇଲେ ବନ ॥
ତେଣୁବରମାଗେସାତାଜନ୍ମେଜନ୍ମେଯେହେଁ
ହେ ରାମ ତୁମ୍ଭଙ୍କୁ ପତି ପାଇବି ନିର୍ବିଘ୍ନେ ॥
ଜୀବେଶ ଏପରି ନାରୀ ଜାତିର ଚରିତ୍ର ।
ଲୋକେ ବୁଝି ନ ପାରନ୍ତି ତଥାପି ଭାବିତ ॥
ଯାହା ହେଉ ବୃଥା କଥା:ବାର୍ତ୍ତାରେ କି ଫଳ ।
ଭଲ ରଙ୍ଗ ଲଗାଇଛ ପ୍ରକାଶ କୌଶଳ ॥
ପ୍ରାଣନାଥ ପୃଥିବୀରେ ଏପରି ପଦାର୍ଥ ।
ତୁମ୍ଭର ଆଶ୍ରୟ ବିନୁ ନାହିଁ କଦାଚିତ ।
ତୁମ୍ଭେ ସବୁଠାରେ ଅଛ ତୁମ୍ଭ ବିନୁ କିଏ ।
ଏହି ଦେହଧରି ରହି ନ ପାରେ କେବେହେଁ
ହେ ନାଥ ତୁମ୍ଭଙ୍କୁ ବୋଲେ ବିନୟ ବଚନ ।
ଅତ୍ରର ମଧ୍ୟ ଅଛଇ ଏଥି ଭୀମସେନ ॥
ମନଭାବ ହେ ଗୋବିନ୍ଦ ମୋର ବୁଝିବାରେ ।
ବୋଲେ ଦେଖି ଅହେହରି ନଜାଣ କାହାରେ
ଯେତେଠାରେ ତୁମ୍ଭେ ଥାଅ ତହିଁ ମୋର ବାସ
ଉଚିତ କହିଲ ଏଥେ ଅଛି କିବା ଦୋଷ ॥
ମୋହର ଚରିତ୍ର କି ତୁମ୍ଭଙ୍କୁ ଅଗୋଚର ।
ତୁମ୍ଭେ ତ ବ୍ରହ୍ମାଣ୍ଡକର୍ତ୍ତା ଜାଣନ୍ତି ସକଳ ॥

ଜଗତରେ ସତ୍ୟ ଯେବେ ନାରୀର ଗଣନା ।
ନରଙ୍କ ଅପେକ୍ଷା ବେଶୀ ଅଛି ଏହା ଜଣା ॥
ଯୁଗ ଆରମ୍ଭରୁ ନାଥ ତୁମ୍ଭେ ବିଧିମତେ ।
ଜାଣିଅଛ ବହୁ ପରୀକ୍ଷାରେ ପ୍ରଭୁ ମୋତେ ॥
ତୁମ୍ଭ ବିନୁ କାରେ ମୁହିଁ ନ କରେ ଦର୍ଶନ ।
ତୁମ୍ଭ ବିନୁକାରେ ମୁହିଁ ନ କରେ ସେବନ ॥
ଯେତେବେଳେ ଯେଣେଗୃହେଁତୁମ୍ଭଙ୍କୁଦେଖଇ
ତୁମ୍ଭରୂପ ନୟନରେ ସର୍ବଦା ନାଚଇ ॥
ରୁକ୍ମିଣୀ ବଚନେ କୃଷ୍ଣ ଆନନ୍ଦ ହୋଇଲେ ।
ଘୋଡ଼ାରୁ ଓହ୍ଲାଇ କୃତବର୍ମାଙ୍କୁ କହିଲେ ॥
ଶୁଣ ବୀର କୃତବର୍ମା ମୋହର ବଚନ ।
ପଥଶ୍ରାନ୍ତେ ଅଶକ୍ତ ହେଲେଣିଟି ସୈନ୍ୟ ॥
ଆଜିକ ଏହି ସ୍ଥାନରେ ବିଶ୍ରାମ କରିବା ।
କାଲି ପ୍ରଭାତରୁ ସର୍ବେ ସୁସ୍ଥଭାବେ ଯିବା ॥
ଏପରି ଘୋଷଣା ସର୍ବେ ଜଣାଅ ବହନ ।
କୃଷ୍ଣାଜ୍ଞାରେ ଘୋଷଣା ସେ ଦେଲେ ତତକ୍ଷଣ
ସେ ଦିନକ ରାତ୍ର ତହିଁ ସର୍ବେ କଟାଇଲେ ।
ପରଦିନ ପ୍ରଭାତରୁ ସମସ୍ତେ ଚଳିଲେ ॥
ଯାଉ ଯାଉ ପଥ ମଧ୍ୟେ ଯମୁନା ନଦୀକୁ ।
ଦେଖିଣ ସର୍ବେ ଚଳିଲେ ଶ୍ରୀବୃନ୍ଦାବନକୁ ॥
ବୃନ୍ଦାବନ ବନମଧ୍ୟେ ପ୍ରବେଶ ହୋଇଲେ ।
ଗଉଡ଼େ ଗୋରୁ ରଖିଣ ଅଛନ୍ତି ଦେଖିଲେ ।
ଗୋରୁ ରଖିଛନ୍ତି ସେ ଗୋପାଳ ସ୍ୱଏ ତହିଁ ॥
ଶିରରେ ଗୁଞ୍ଜାମାଳ ସିଂହା ବେଣୁ ବାଇ ॥
ସକଳ ଶରୀର ଶୋଭା ଅତି ମନୋହର ।
ହସ୍ତରେ ପାଞ୍ଚଣ ବାଡ଼ି ଅପୂର୍ବ ସୁନ୍ଦର ।
ଦୂରରୁ ଶ୍ରୀକୃଷ୍ଣ ରୂପ କରି ନୀରୀକ୍ଷଣ ।
ଆନନ୍ଦରେ ମତ୍ତ ହୋଇ କରିଲେ ଗମନ ॥
ବୋଇଲେ ଏ ନନ୍ଦ ପୁଅ ଆମ୍ଭ ପ୍ରାଣସଖା ।
ମଥୁରାକୁ ଗଲେ ଆମ୍ଭଙ୍କୁ କରିଣ ଏକା ॥
ନବଘନ ତନୁଦେଖ ଅପୂରୁବ ଶୋଭା ।
ଦେଖିଲାମାତ୍ରକେ ହେଉଅଛି ମନଲୋଭା ॥
ଶ୍ରୀକୃଷ୍ଣଙ୍କ ଆଗେ ଯାଇ ମିଳିଲେ ତ୍ୱରିତ ।
ବୋଇଲେ ଏ ଆମ୍ଭ ସଖା ଅଟେ ନନ୍ଦସୁତ ॥
ଅନେକ ଦିନ ହୋଇଲା ଦେଖି ନ ଥିଲୁଁ ।
ଆମ୍ଭଙ୍କୁ ଛାଡ଼ିଣ ଏ ମଥୁରା ଥିଲେ ରହି ॥
ପୂର୍ବେ ଏ କଂସର ବନ୍ଦଘରେ ଜାତ ହେଲେ ।
ବସୁଦେବ ଆଣି ନନ୍ଦଘରେ ଛାଡ଼ି ଗଲେ ॥
ଏକୁଡ଼ି ଶାଳରେ ଏ ମାଇଲେ ପୂତନାକୁ ।
ଯାଙ୍କ ପାଦ ବାଜି ଶକଟା ଗଲା ସ୍ୱର୍ଗକୁ ॥
ତୃଣାବର୍ତ୍ତ ବତ୍ସାସୁର ପକାଇଲେ ମାରି ।
ଚିରିଲେ ବକାସୁରକୁ ବେନି ଫାଳ କରି ॥
ଆମ୍ଭମାନଙ୍କୁ ଗିଳିଣ ଥିଲା ଅର୍ଘାସୁର ।
ତାକୁ ମାରି ଆମ୍ଭଙ୍କୁ ରଖିଲେ ବଂଶୀଧର ॥
ଷଣ୍ଢାସୁର ଦୈତ୍ୟକୁ ଧରିଣ କଚୁଡ଼ିଲେ ।
କେଶୀର ପେଟରେ ହାତ ପୂରାଇ ମନ୍ଥିଲେ ॥
ତାଳବନେ ଧେନୁକା ମାଇଲେ ଯାଙ୍କ ଭାଇ ।
ଆମ୍ଭେମାନେ ତାଳ ସବୁ ଆଣି ଖାଇଲୁଁ ॥
ବ୍ୟୋମାସୁର ହରଣ କଥା କି ପାଶୋରିଲ ।
ଏକା ମୁଥ ମାରି ତାର ଜୀବନକୁ ନେଲ ॥
କମଳ ତୋଳିଲୁ ଯାଇଁ କାଳନ୍ଦୀ ହ୍ରଦରେ ।
କୋପେ କାଳୀଦଂଶିଲା ଯେ କୋମଳପୟରେ
ତାହାର ଉପରେ ଉଠି ନାଚନ୍ତି ଶ୍ରୀହରି ।
ଅମୃତ କଲେ ଜଳକୁ ତାକୁ ଦୂର କରି ॥
ଇନ୍ଦ୍ରର ବିବାଦେ ବାମେ ଧରି ଗୋବର୍ଦ୍ଧନ ।
ରଖିଲ ଗୋରୁ ଗୋପାଳ ଗୋପୀଙ୍କ ଜୀବନ ॥
ସପ୍ତଦିନ କୋପେ ଇନ୍ଦ୍ରଜଳ ବୃଷ୍ଟି କଲା ।
ପଥର ସହିତେ ମହା ପବନ ବହିଲା ॥
ତୁମ୍ଭପାଦେ ଆସି ପଡ଼ିଲାକ ବଜ୍ରଧର ।
ଦୟା କରି ପୁଣି ତାକୁ ରଖିଲ ସ୍ୱର୍ଗର ॥
ଆମ୍ଭମାନଙ୍କ ସହିତେ ଭୁଞ୍ଜନ୍ତେ ମୁରାରି ।
ବ୍ରହ୍ମା ବତ୍ସା ବାଳକ କପଟେ ନେଲା ହରି ॥
ଅଦ୍ଭୁତ ଚରିତ ଏକା କଲ ନନ୍ଦସୁତ ।
ଅପଣାର ଦେହୁ ବତ୍ସା ବାଳ କଲ ଜାତ ॥
କମଣ୍ଡଳେ ବତ୍ସା ବ୍ରହ୍ମା ଲୁଚାଇ ରଖିଲେ ।
ବରଷେ ପର୍ଯ୍ୟନ୍ତ ତାହା କେହି ନ ଜାଣିଲେ ॥
ଦେଖିଲେକ ବ୍ରହ୍ମା ଦିନେ ବୃନ୍ଦାବନେ ହେରି
ଗୃହ ଗୃହ ଭ୍ରଜ ସ୍ତ୍ରୀ ବାଳକ ବାଛୁରୀ ॥
ଜ୍ଞାନ ହରାଇଣ ବ୍ରହ୍ମା ନିଜପୁରେ ଗଲେ ।
କମଣ୍ଡଳେ ବାଛୁରୀ ବାଳକ ସେ ଦେଖିଲେ ॥
ବରଷେ ପୂରିଲା ତାହା କେହି ନ ଜାଣିଲେ ।
ମାୟାଧର ପୁରୁଷ ବ୍ରହ୍ମାଙ୍କୁ ଦେଖାଇଲେ ॥

ପୁଣି ଅସି ବୃନ୍ଦାବନେ କୃଷ୍ଣପାଦେ ପଡ଼ି ।
ଉଠି ସ୍ତବକଲେ ସ୍ତୁତି ମୁଖେ କରଯୋଡ଼ି ॥
ଯେତେବେଳେ ବ୍ରହ୍ମା କୃଷ୍ଣ ପାଦରେ ପଡ଼ିଲେ
ଶିବ ମୁକୁଟ ଲାଗିଲା ଶ୍ରୀପାଦ ପଦ୍ମରେ ॥
ନଖମାନ ପ୍ରତିବିମ୍ବ ତହିଁରେ ହୋଇଲେ ।
ଦେଖି ତ୍ରିଭୁବନ ଲୋକେ ମୁକତି ଲଭିଲେ ॥
ସେ ହରି ବ୍ରହ୍ମାଙ୍କୁ ପୁଣି ପ୍ରସନ୍ନ ହୋଇଲେ ।
ନିଜ ପାଦ ଦେଇ ବ୍ରହ୍ମା ଲୋକରେ ରଖିଲେ ॥
ବନରେ ସମସ୍ତେ ହେଲେ କ୍ଷୁଧାରେ ଆକୁଳ ।
ବିପ୍ରଙ୍କ ଅମ୍ଭଙ୍କୁ ଯେ ପେଷିଲେ ନନ୍ଦବାଳ ॥
ବିପ୍ରେ ଯଜ୍ଞ କରୁଥିଲେ ଅରଣ୍ୟ ଭିତରେ ।
ଆପଣଙ୍କ ନାମେ ଅନ୍ନ ମାଗିଲୁ କ୍ଷୁଧାରେ ॥
କୋପକଲେ ନ ଜାଣି ତୁମ୍ଭଙ୍କୁ ନ ଚିହ୍ନିଲେ ।
ଲେଉଟି ଅଇଲୁ ଅନ୍ନ କେବେହେଁ ନ ଦେଲେ
ପୁଣି ତାଙ୍କ ଘରକୁ ଯେ ପେଷିଲେ ଶ୍ରୀହରି ।
ବୋଇଲେ ନାରୀଙ୍କୁ ମାଗ ମୋର ନାମ ଧରି ॥
ଯାଇଁ ବେଗେ ବିପ୍ରନାରୀମାନଙ୍କୁ ଦେଖିଣ ।
ବୋଇଲୁ ହେ କ୍ଷୁଧାରେ ଶ୍ରୀକୃଷ୍ଣ ଛନ୍ତି ବନ ॥
ଅନ୍ନ ମୁଠାଏକ ଦେବ ହେ ମାତା ଗୋସାଇଁ ।
ନୋହିଲେ ଘରକୁ ହରି ନ ପାରିବେ ଯାଇଁ ॥
ଶୁଣି ବିପ୍ରନାରୀ ଭକ୍ତିଭାବରେ ଭୁଞ୍ଜିଲେ ।
ପରମ ଆନନ୍ଦେ ଅନ୍ନବ୍ୟଞ୍ଜନ ଆଣିଲେ ॥
ନିଷେଧ କଲେକ ବିପ୍ର ବାଟରେ ଦେଖିଣ ।
ଆଣିଦେଲେ ବ୍ରାହ୍ମଣୀଏ ବୋଲ ନ କରିଣ ॥
ତୁମ୍ଭଙ୍କୁ ଅନ୍ନ ଆଣିଣ ଦେଲେ ବିପ୍ରନାରୀ ।
ଆମ୍ଭମାନଙ୍କ ସଙ୍ଗତେ ଖାଇଣ ମୁରାରି ॥
ବିପ୍ରନାରୀମାନେ ତୁମ୍ଭ ପାଦରେ ପଡ଼ିଲେ ।
ମୁକତି ଲଭିଣ ଯେହ୍ନା ମନ୍ଦିରକୁ ଗଲେ ॥
ଯେଉଁକାର୍ଯ୍ୟ କରିଛ ଦେବଙ୍କୁ ଅଗୋଚର ।
କେତେ ସେ କହିବା ତାହା ତୁମ୍ଭର ଅଗର ॥
ଏତେ କହି କୃଷ୍ଣଙ୍କୁ କରନ୍ତି ଆଲିଙ୍ଗନ ।
ବୋଲନ୍ତି ଅମ୍ଭଙ୍କୁ ଯାଇଥିଲ ହେ ଛାଡ଼ିଣ ॥
ତୁମ୍ଭ ଥିଲାବାକୁ ଦେଖ ବଂଶୀ ମୋ କରେଣ ।
ତୁମ୍ଭ ବଂଶୀ ଅଛି କାହିଁ ଦେଖାଅ ହେ ପୁଣ ॥
ସେ କଥାକୁ ମନେ ମୁହିଁ ରଖିଣ ଅଛଇ ।
ଅଇଲ ଯେ ନିକଟକୁ ଦେଖିବାର ପାଇଁ ॥
ଏବେ ବଡ଼ ବ୍ୟାଘ୍ରଭୟ ହୋଇଲା ବନରେ ।
ନ ଥିଲା ଏ ବନେ ତୁମ୍ଭ ଥିବାର କାଳରେ ॥
କୋଳାକୋଳି କହନ୍ତି ଶୁଣ ହେ ମୋହନ ।
କେହୁ ଦେଲା ଅଶ୍ୱଗଜ ଧନୁଶର ବାଣ ॥
କଉସ୍ତୁଭମଣି କେହୁ ଦେଲାକ ହୃଦରେ ।
ଏ ଗୁଞ୍ଜମଞ୍ଜୁଳା ହୋଇଥିଲା କେଉଁଠାରେ ॥
କାହିଁ ଯାଉଅଛ ତୁମ୍ଭେ କହ ନାରାୟଣ ।
କପଟ ନ କର କୁହ ଅମ୍ଭର ଆଗେଣ ॥
ତାହା ଶୁଣି ଅବର ଗୋପାଳେ ଚଳି କହି ।
ମୋହଠାରୁ ଶୁଣ ହୋ ନ ଜାଣି ତୁମ୍ଭେ ଭାଇ
ମଥୁରାକୁ ଯାଇ କଂସାସୁରକୁ ମାଇଲେ ।
ଯେତେ ଗଜ ଅଶ୍ୱ ଥିଲା ତାର ସବୁ ନେଲେ॥
ଆଣିଲେ ଭଣ୍ଡାରୁ ତାର କଉସ୍ତୁଭ ମଣି ।
ରତ୍ନମାଳା ଆଣି କଣ୍ଠେ ନାଇଛନ୍ତି ପୁଣି ॥
ଶ୍ରୀବତ୍ସ ବୋଲିଣ ବିପ୍ର ପାଦେକ ମାଇଲେ ।
ଭକ୍ତିଭରେ ହରି ତାହା ହୃଦରେ ବହିଲେ ॥
ଯେତେ ରାଜାମାନଙ୍କ ଦୁହିତା ବିଭାହୋଇ ।
ଷୋଳସହସ୍ର ଅଷ୍ଟୋତ୍ତର ପାଟରାଣୀ ଭାଇ ॥
ପୁତ୍ର ନାତି ବନ୍ଧୁ ଆଦି ହୋଇଲେ ବହୁତ ।
ସମସ୍ତଙ୍କୁ ଘେନି ଯାଉଛନ୍ତି କେଉଁ ଯାତ ॥
ଯେଉଁ ଦିନୁ ବିପ୍ରପାଦ ବହିଲେ ହୃଦରେ ।
ସେ ଦିନୁ ସମ୍ପତ୍ତି ହେଲା ଶୁଣିଲୁ କର୍ଣ୍ଣରେ ॥
ଗୋପାଳଙ୍କ କଥା କୃଷ୍ଣ ଏମନ୍ତ ଶୁଣିଲେ ।
ବହୁତ ଆଦରେ ସେମାନଙ୍କୁ ପୂଜା କଲେ ॥
ତାହାପରେ ଜାଣିଲେ ସକଳ ଗୋପୀଗଣ ।
ଅସମ୍ଭାଳେ ଧାଇଁଲେ ରାଧିକା ସଙ୍ଗତେଣ ॥
ଗୃହର ବେପାର ସେ ସକଳ ଯେତେ ଥିଲେ ।
ଲାଜଭୟ ମାନ ସବୁ ଛାଡ଼ିଣ ଧାଇଁଲେ ॥
କେଉଁ ଗୋପୀ ଗୃହର ମାର୍ଜ୍ଜନା କରୁଥିଲେ ।
ଶ୍ରୀକୃଷ୍ଣ ଅଇଲେ ବୋଲି ଛାଡ଼ିଣ ଧାଇଁଲେ ॥
କେହୁ ଅନ୍ନ ରନ୍ଧୁଥିଲା ଭୁଞ୍ଜୁଥିଲା କେହୁ ।
କୃଷ୍ଣକଥା ଶୁଣିଣ ଯେ ବେଗେ ଗଲା ସେହୁ॥
କେହୁ ପୁତ୍ର ଘେନିଣ ଦୋଳରେ ବସିଥିଲା ।
ସଖୀ ତାକୁ ଡ଼ାକନ୍ତେଣ ତଳେ ପକାଇଲା ॥
ପଲ୍ୟଙ୍କରେ ଶୋଇଥିଲେ କେଉଁ ଗୋପୀଗଣ
ବେଗେ ଉଠିଗଲେ 'କୃଷ୍ଣ ଅଇଲେ ବୋଲିଣ

କେଉଁ ଗୋପୀ ଘରେ ଛାର ଦୁହୁଁ ଥିଲା ଗାଈ
ଦହି ଦୁଧ ମନ୍ଥନ ଯେ କରୁଥିଲା କେହି ।
ଗୋପୀଙ୍କ ଯାଆନ୍ତେ ସବୁ ଶୁଭିଲାକ ଗୋଳ ।
ସବୁ ଛାଡ଼ି ଗୋପୀ ଯେ ଧାଇଁଲେ ଅନ୍ତରାଳ ॥
କେ ଗୋପୀ ପଦର ଧେନୁ ପାନ୍ତେ ସେ ବିକଣ
କୃଷ୍ଣ କଥା ଶୁଣି ଗଲା ବାଟରେ ରଖିଣ ।
କେ ଗୋପୀ ଗୋମୟ ଦେଇ ଗୃହ ଲିପୁଥିଲା
କୃଷ୍ଣ ଅଇଲାକ ଶୁଣି ସେହିରୂପେ ଗଲା ॥
ଏକ ଗୋପୀ କେହୁ ହୋଇଥିଲା ରଜୋବତୀ
ଶ୍ରୀକୃଷ୍ଣ ଅଇଲେ ବୋଲି ଯାନ୍ତେଣ ତଡ଼ତି ॥
ଆବର ଗୋପୀଏ ତାକୁ ଦେଖିଣ ଚଳିଲା ।
ଲାଜ ତୋତେ ନାହିଁ କିପାଁ ଯାଉଛୁ ବୋଇଲା
ସେ ବୋଇଲା ଲାଜେ ମୁହିଁ ମଳିନ ହୋଇଛୁ ।
ଏ ଜଳେ ଧୋଇଲେ ଶୁଦ୍ଧ ନୋହିବ ସେ କିଛୁ
ଶ୍ରୀକୃଷ୍ଣ ପଦ୍ମପାଦ ଶୀତଳ କରି ମୁହିଁ ।
ତହିଁ କାଶ ଧୋଇବି ମୁଁ ଗଙ୍ଗାଜଳେ ନେଇ ॥
ଏତେବୋଲି ଗଲା ବେଗେ କୃଷ୍ଣପଦ ଧ୍ୟାୟି ।
ଦର୍ଶନ କରନ୍ତେ କୋଟି ପାପ ହୁଗୁ ଦହି ॥
ଏମନ୍ତ ସକଳ ଗୋପୀ ପ୍ରବେଶ ହୋଇଲେ ।
ଯେହୁ ଯାହା ନେଇଥିଲେ କୃଷ୍ଣଙ୍କୁ ଯାଚିଲେ
କେ ବୋଇଲା କୃଷ୍ଣ ମୋର କଣ୍ଠ ରତ୍ନମାଳା ।
ଯତ୍ନ କରି ଗୁନ୍ଥିଥିଲି ଦେବି ତୁମ୍ଭ ଗଳା ॥
କେ ବୋଲେ ତୁମ୍ଭର ପାଇଁ ଅଣିଛୁ ଲବଣୀ
ବହୁତ ଅଣିଛୁ ଫୁଟି ଖାଅ ବେଗେ ପୁଣି ॥
ତୁଣ୍ଡ ବିସ୍ତାର କରି ମୁଁ ଦଅଇ ତୁଣ୍ଡରେ ।
ଯଶୋଦା ଜଗତ ଦେଖିଅଛୁ ଉଦରରେ ॥
ସେହି କଥା ବିଗୁରି ମୁଁ ଅଣିଛୁ ଲବଣୀ ।
ଖାଇକରି ଉଦରି ପ୍ରସରଅ କନା ପୁଣି ॥
କେ ବୋଲଇ ବନମାଳା ଅଣିଅଛୁ ମୁହିଁ ।
ବହୁତ ଯତନ କରି ଗୁନ୍ଥିଣ ଅଛଇ ॥
ଏ ତୁମ୍ଭ ଚୁଳରେ ମୁହିଁ ଦେବଇ ବାନ୍ଧିଣ ।
ହାତ ନ ପାଇବ କେବେ ବନ୍ଧକର ପୁଣ ॥
କେ ବୋଲଇ ଖାଇବାକୁ କଦଳୀ ପଣସ ।
ପକ୍ୱ ଅମ୍ବ ସହିତେ ଅଣିଛୁ ହୃଷୀକେଶ ॥
ଏହିଠାରେ ବସ ଏହା କର ହେ ଭୋଜନ ।
ତେବେସେ ମନ୍ତୋଷମନ ହେବ ମୋର ଜାଣ

କର୍ପୂର ଚନ୍ଦନ ଆଉ କସ୍ତୁରୀ ମିଶାଇ ।
କୃଷ୍ଣଙ୍କୁ ବୋଲନ୍ତି ହୃଦେ ଦେବି ମୁଁ ଲଗାଇ ॥
ବୋଲନ୍ତି ହେ କୃଷ୍ଣ ଏତେ ନିର୍ଦ୍ଦୟ ହୋଇଲ
ଆମ୍ଭଙ୍କୁ ଛାଡ଼ିଣ କିପାଁ ମଥୁରାକୁ ଗଲ ॥
ନାନାସେବା କରିଥିଲୁ ବାଳକ କାଳରେ ।
ପ୍ରାଣ ରକ୍ଷାକଲ ତୁମ୍ଭେ କେତେ ବିପତ୍ତିରେ ॥
ଜଳକ୍ରୀଡ଼ାକାଳେ ଆମ୍ଭ ବସ୍ତ୍ର କଲ ଚୋରି ॥
କେତେ ସ୍ନେହ ଛାଡ଼ିକରି ଗଲ ହେ ମୁରାରି ॥
ବୃନ୍ଦାବନେ ନିଶାରେ ମୁରଲୀ ବଜାଇଲ ।
ଜଣେ ଜଣେ ନାମ ଧରି ଡାକି ଘେନିଚଳ ॥
ଷୋଳସହ ରୂପକୁ ଆପଣେ ଧରି ହରି ।
ରମିଲ ଗୋପୀଙ୍କ ମନୋରଥ ପୂର୍ଣ୍ଣକରି ॥
ଯମୁନା ବଢ଼ାଇ ମିଛେ ନାବ ପାରି କଲ ।
ଆସିବା ବେଳକୁ ଘାଟଦାନ ଯେ ସାଧିଲ ॥
ଅକ୍ରୂର ପାମର କଂସ ଆଦେଶେ ଅଇଲା ।
ଆମ୍ଭଙ୍କୁ ବିଚ୍ଛେଦ କରି ତୁମ୍ଭଙ୍କୁ ସେ ନେଲା ॥
ଗୁରି ଦିନେ ଆସିବୁ ଆମ୍ଭଙ୍କୁ ଭଣ୍ଡିଗଲ ।
ଏତେଦିନେ ଆସିଣ ଶ୍ରୀମୁଖ ଦେଖାଇଲ ॥
ଆମ୍ଭେ କେବେ ତୁମ୍ଭଙ୍କୁ ଯେ ଛାଡ଼ିଣ ନ ଦେବୁ
ଯେ ଯାହାର ହୃଦୟରେ ବାନ୍ଧିଣ ରଖିବୁ ॥
ଏମନ୍ତ ବଚନ ଯହୁଁ ଗୋପୀଏ କହିଲେ ।
ଶ୍ରୀକୃଷ୍ଣ ସେ କଥା ଶୁଣି ହରଷ ହୋଇଲେ ॥
ଗୋପୀଙ୍କି ବୋଲନ୍ତି ପ୍ରଭୁ କମଳ ଲୋଚନ ।
କାହିଁ ପାଇଁ ତୁମ୍ଭେମାନେ ହୋଇଛ ବିମନ ॥
ଯେ ମୋତେ ମନ ମଧ୍ୟରେ ଭାବେ ନିରନ୍ତର
ସର୍ବଦା ମୁଁ ଥାଏ ଯାଇ ପାଶରେ ତାହାର ॥
ହୃଦୟର ସିଂହାସନେ ମୋତେ ରଖିକରି ॥
ବାକ୍ୟରେ କିପାଇଁ ମିଛେ କରୁଛ ଗୁହାରି ।
ଭକ୍ତିଭାବ ମୁକ୍ତି ମାର୍ଗଦେଇ ଉପଦେଶ ॥
ତହୁଁ କାଳନ୍ଦୀ କୂଳରେ ହେଲେ ପରବେଶ
କାମଭାବ ଭବପାଶ ହୋଇଲା ମୋଚନ ।
ଅଶ୍ରୁଧାରା ନୟନରୁ ବହେ ଅନୁକ୍ଷଣ ॥
ଦେଖନ୍ତି କାଳନ୍ଦୀ ହ୍ରଦ ଯମୁନା ପୁଳିନ ।
ମନେ ମନେ ଆନନ୍ଦିତ ହେଲେ ନାରାୟଣ ॥
ଦେଖି କାନନ ସୌନ୍ଦର୍ଯ୍ୟ ପ୍ରଭୁ ବନମାଳୀ ।
ଲଭିଲେ ପରମାନନ୍ଦ ହୋଇ କୁତୁହଳୀ ॥

ସୈନ୍ୟଗଣ ପ୍ରତି ଏହି ଅନୁମତି କଲେ ।
ଅମ୍ଭର ବଚନ ଏବେ ଶୁଣ ହେ ସକଳେ ॥
ସୁରମ୍ୟ ଉଦ୍ୟାନ ଦେଖ ଏ ଯମୁନା ତୀର ।
ଅନେକ ଦୂରରୁ ତୁମ୍ଭେ ଆସିଛ ଏଠାର ॥
ବିଶ୍ରାମ ଏଠାରେ କରି କ୍ଳାନ୍ତି ଦୂର କର ।
ପାନ ଭୋଜନାଦି ବଢ଼ାଇବ ଏ ସ୍ଥାନର ॥
କିଛିକ୍ଷଣ ରହି ଏଥି ପଥଶ୍ରାନ୍ତ ହର ।
ହସ୍ତିନା ମୁଖରେ ତହୁଁ ଯିବ ଯାତ୍ରା କର ॥
ମୁନି ଗୁରୁଜନ ଅମ୍ଭ ସଙ୍ଗତରେ ଛନ୍ତି ।
ଦେବକୀ ରୋହିଣୀ ଆଦି ସର୍ବେ ଅସୂର୍ଯ୍ୟମ୍ପଶ୍ୟା ॥
ଶ୍ରୀହରିଙ୍କ ବାଣୀ ଶୁଣି ସର୍ବେ ସେ ସ୍ଥାନରେ ।
ବିଶ୍ରାମ କରିଣ ସ୍ୱସ୍ଥ ଲଭିଲେ ସକଳେ ॥
ପାନ ଭୋଜନ ପ୍ରଭୃତି ସର୍ବ ଶେଷ କରି ।
ହରଷେ ଚଳନ୍ତି ସର୍ବେ ହସ୍ତିନା ନଗରୀ ॥
ପଥେ ତାଙ୍କ ସମସ୍ତଙ୍କୁ ଶ୍ରୀକୃଷ୍ଣ କହନ୍ତି ॥
ଆଉ ଅଳ୍ପଦୂରର ଅଛି ପାଣ୍ଡବ ବସତି ॥
କେହି ତାହା ସଙ୍ଗେ କଳି ଗୋଳ ନ କରିବ
ମାନ୍ୟ ଧର୍ମ କରି ମୋର ଗୌରବ ରଖିବ ॥
ଶୁଣ ସର୍ବେ ନାରୀଗଣେ ମୋହର ବଚନ ।
ହେ ମାତାଦେବକୀ ରୋହିଣୀ ଆଦି ଗୋ ଶୁଣ
ଯୁଧିଷ୍ଠିର ମାତା କୁନ୍ତୀ ଅଛନ୍ତି ସେଠାରେ ।
ଆଉର କେତେକ ବୃଦ୍ଧା ଛନ୍ତି ତାଙ୍କ ପୁରେ॥
ସେମାନଙ୍କୁ ସର୍ବେ ଯଥାବିଧି ମାନ୍ୟ କରି ।
ଯଜ୍ଞକାର୍ଯ୍ୟେ ଯୋଗ ଦେବ ରହି ଅନ୍ତଃପୁରୀ ॥
ଅରୁନ୍ଧତୀ ଅନୁସୂୟା ଆଦି ସ୍ତ୍ରୀ ଯେତେ ।
ଅତି ସ୍ନେହ ଭକ୍ତି ପାଦ ଅର୍ଚ୍ଚନ୍ତି ଯୁକତେ ॥
ସଦା କୃତାଞ୍ଜଳି ପୁଟେ ତାହାଙ୍କ ପାଶରେ ।
ତାହାଙ୍କ କଥାକୁ ନ ଲଙ୍ଘିବ କେତେବେଳେ
ନାରୀଙ୍କି ପ୍ରବୋଧି କୃଷ୍ଣ ପୁଣି ନାଥଗଣେ ।
ଡାକିଣ ବୁଝାଇ ଦେଲେ କରି ଜଣେ ଜଣେ
ସେ ସ୍ଥାନରେ ବୀର ଦର୍ପ କେହି ଦେଖାଇଣ
ନ ଲଭିବ ଅପମାନ ଅହେ ଯଦୁଗଣ ॥
ଜାଣ ବିଶେଷ ବିଜୟୀ ପାର୍ଥ ବୀରବର ।
ଆଉର ଅଛଇ ତହିଁ ଭୀମସେନ ବୀର ॥
ଅନେକ ଦେଶରୁ ରାଜା ଏ ଯଜ୍ଞ ନିମନ୍ତେ ।
ନିମନ୍ତ୍ରିତ ହୋଇଣ ଆସିବେ କେତେକେତେ
ରାଜା ମହାରାଜା ଆଉ ସୈନ୍ୟ କୋଳାହଳ ।
ସର୍ବଦା ପୂରି ରହିବ ହସ୍ତିନା ନଗର ॥
ଯୋଦ୍ଧାମାନଙ୍କର ତେଜେ ସୂର୍ଯ୍ୟତେଜ ଜାଣ ।
ନିଷ୍ପ୍ରଭ ନିଶ୍ଚୟ ହେବ ଅହେ ବୀରଗଣ ॥
କାଳାନ୍ତକାଳ ପରାୟେ କେତେ କେତେ ବୀର ।
ନିମନ୍ତ୍ରଣ ପାଇଣ ଆସିବେ ସେ ସ୍ଥାନର ।
ତୁମ୍ଭେମାନେ ଯାଇଁ ସର୍ବେ ମଣ୍ଡଳ ପ୍ରକାରେ ॥
ରକ୍ଷା କରିବ ଯଜ୍ଞକୁ ଯୁଧିଷ୍ଠି ସଙ୍ଗରେ ॥
ଧର୍ମଙ୍କୁ ଚୌଦିଗେ ଘେରି ରହିବ ନିଶ୍ଚିନ୍ତି ।
ଧର୍ମ ସବୁ ରକ୍ଷା ହେବ ନ ହୋଇବ କ୍ଷାନ୍ତ ॥
ଯେତେଯେତେ ବୀରଗଣେ ମୋ ବଚନ ଶୁଣ
ବୀରବର ଅର୍ଜ୍ଜୁନଙ୍କୁ କରିବ ପ୍ରଣାମ ॥
ପ୍ରଦ୍ୟୁମ୍ନ ତୁମ୍ଭଙ୍କୁ କହେ ଯଥାର୍ଥ ବଚନ ।
ନ ଲଙ୍ଘି ଅମ୍ଭ ଆଦେଶ କରିବ ପାଳନ ॥
ଯେଉଁ ପରି ଦ୍ୱାରକାକୁ ସାବଧାନ ହୋଇ ।
ରକ୍ଷାକଲ ବୀର ଅମ୍ଭ ଆଜ୍ଞା ଶିରେ ବହି ॥
ସେହିପରି ଯୁଧିଷ୍ଠିର ପୁରକୁ ରକ୍ଷଣ ।
କରିବ ହେ ବୀର ଶତ୍ରୁ ନ ପଶୁରି ଆନ ॥
ନିଜଦେଶେ ମାନ ଅପମାନ ହେବ ଯାହା ।
ସେଥି ଲଭ କ୍ଷତି ନାହିଁ ଜାଣିଛ ତ ତାହା ॥
ମାତ୍ର ସତର୍କ ଭାବରେ ଏଥି ରହିଥିବ ।
ଯେଉଁ ପରି କିଛି ଅପମାନ ନ ପାଇବ ॥
ନିଜ ନିଜ କାର୍ଯ୍ୟ ନିଜେ ହସ୍ତରେ କରିବ ।
କାହାରି ଉପରେ ବାବୁ ଭରସା ନ ଦେବ ॥
ଉତ୍ସବ କାଳରେ ନିଜ ଘରେ ବିଶେଷରେ ।
ନିଜର ଅଗିରେ ଯେହ୍ନ ଜଣାଶୁଣା କରେ ॥
ମାନ ଅଭିମାନ ଆଦି ସବୁ ଛାଡ଼ିକରି ।
ଆଦର କରେ ସମସ୍ତ ନମ୍ରଭାବ ଧରି ॥
ବଢ଼ଇ ସମ୍ମାନ ତାର ବଢ଼େ ପଦ୍ଧତି ।
ଲୋକେ ତାକୁ ପ୍ରଶଂସା ଯେ କରନ୍ତି ବିଶେଷ ॥
ବଡ଼ ହୋଇବାକୁ ଇଚ୍ଛା ଥାଏ ଯାର ଚିତ୍ତେ ।
ଆଗେ ଶ୍ରେଷ୍ଠହୁଏ ସେହି ସକଳ ସାକ୍ଷାତେ ॥
କାର୍ଯ୍ୟସିଦ୍ଧି କରେ ସେହୁ ଲୋକେ ଧନ୍ୟହୋଇ ।
କି ନ ଜାଣ ତୁମ୍ଭେ ବେଶୀ ବୁଝାଇବ ମୁହିଁ ॥
ତୁମ୍ଭର ଜନନୀ ଆଉ ସତ୍ୟଭାମା ପ୍ରଭୃତି ।
ଜଣାଇବ ଅମ୍ଭ ଆଜ୍ଞା ଯାଇଣ ତତ୍ପରତି ॥

ଧର୍ମପୁରେ ରହିଛନ୍ତି ଆମ୍ଭର ଭଗିନୀ ।
ସୁଭଦ୍ରା ଯା ନାମ ଯେହୁ ସ୍ତ୍ରୀଙ୍କ ଚୂଡ଼ାମଣି ॥
ତୁହେଁ ଆଗ ଯାଇଁ ସୁଭଦ୍ରାଙ୍କୁ ସସ୍ନେହରେ ।
ମିଷ୍ଟକଥା କହି ପ୍ରବୋଧନ ଦେବ ଶୀଘ୍ରେ ॥
ଯା ହେଉ ସମସ୍ତ ଆଗେ ହସ୍ତିନା ପୁରରେ ।
ମୋହର ଯିବା ଉଚିତ ଅଟଇ ଶୀଘ୍ରରେ ॥
ମୋତେ ନ ଦେଖିଣ ଧର୍ମରାଜ ନିରନ୍ତର ।
ଚିନ୍ତାକୁଳ ହେଉଥିବେ ସର୍ବଦା ମନର ॥
ଆମ୍ଭଙ୍କୁ ନ ଦେଖି ସେ ବିପଦ ମଣୁଥିବେ ।
ଅନିଷ୍ଟ ଘଟିବ ବୋଲି ଭୟ କରୁଥିବେ ॥
ଅଶ୍ୱମେଧ ଯଜ୍ଞ ଅଟେ ଅତି ଗୁରୁତର ।
ବଡ଼ଇ କଠିନ ସେହି ଅଟଇ ନିକର ॥
ହେ ପ୍ରଦ୍ୟୁମ୍ନ ସୈନ୍ୟ ନାରୀମାନଙ୍କୁ ଘେନିଣ
ପଛେ ଆସୁଥାଅ ତୁମ୍ଭେ ଭୀମ ସହିତେଣ ॥
କୃଷ୍ଣଚନ୍ଦ୍ର ଏହା କହି ଘୋଡ଼ା ଚଢି ଶୀଘ୍ରେ ।
ଶୀଘ୍ରଗଲେ ହସ୍ତିନାକୁ ଧର୍ମ ସାକ୍ଷାତରେ ॥
ସାମାନ୍ୟ ସଂଖ୍ୟକ ସୈନ୍ୟ ସଙ୍ଗେ ଚଳିଯାନ୍ତି
ହସ୍ତିନାରେ ପ୍ରବେଶିଲେ ପ୍ରଭୁ ଶ୍ରୀପତି ॥
କୃଷ୍ଣ ଦର୍ଶନରେ ହସ୍ତିନାର ବାସୀଗଣ ।
ଆନନ୍ଦ ସାଗରେ ସର୍ବେ ହୋଇଲେ ମଗନ ॥
ଦେଖି ମହାଜନମାନେ ଆନନ୍ଦ ହୋଇଲେ ।
ଯାଗନିକ ବ୍ରାହ୍ମଣ କୃଷ୍ଣଙ୍କୁ ସ୍ତୁତିକଲେ ॥
ବୋଇଲେ ଯଜ୍ଞରକର୍ତ୍ତା ହୋଇଲେ ପ୍ରବେଶ ।
ନ ଜାଣି କରନ୍ତି ଯଜ୍ଞ ଧର୍ମ ନର-ଈଶ ॥
ଯେବଣ ହରି ଅଟନ୍ତି ହର୍ତ୍ତା କର୍ତ୍ତା ଦୁଇ ।
ତାଙ୍କ ବିନା ଅନ୍ୟ କର୍ତ୍ତା ସଂସାରରେ ନାହିଁ ॥
ଆମ୍ଭେ ଅନ୍ଧଜନ ଅଟୁ ସର୍ବଦା ଅଜ୍ଞାନୀ ।
କୃଷ୍ଣ ବିନା ଭାବୁ ଅଛୁ ହେବୁ ସ୍ୱର୍ଗଗାମୀ ॥
ଯେ ଭକ୍ତବତ୍ସଳ ହରି ସଂସାରରେ ସାର ।
ପାର୍ଥ ସହିତ ଭକ୍ତ କରନ୍ତି ଯୁଧିଷ୍ଠିର ॥
ହରିଭକ୍ତ ଯୁଧିଷ୍ଠି ରାଜାଙ୍କ ଯଜ୍ଞବଳେ ।
ଦେଖିକରି ମୁକ୍ତହେବୁ କୃଷ୍ଣଙ୍କୁ ସକଳେ ॥
ମାନବ ଶରୀର କରି ଜଗତେ ଧାରଣ ।
କୃଷ୍ଣ ବିନା ବୈକୁଣ୍ଠରେ କିସ ପ୍ରୟୋଜନ ॥
ଯାଜ୍ଞିକ ବ୍ରାହ୍ମଣଙ୍କର ଅଟେ ଯଜ୍ଞପତି ।
ସନ୍ନ୍ୟାସୀମାନଙ୍କୁ ଦିଅ ହେଲେ ସଦଗତି ।

ଯୋଗୀ ଜ୍ଞାନୀ ଭକ୍ତସାଧୁ ସମସ୍ତଙ୍କ ମନେ ।
ମୋହନ ମଧୁର ମୂର୍ତ୍ତି ଜାଗୁ ଅନୁକ୍ଷଣେ ॥
ଗୋଲୋକ ବିହାରି ଘେନ ବିନତି ଆମ୍ଭର ।
ପାଦତଳେ ସ୍ଥାନ ଦେଇ ରଖ ଏକ ବାର ॥
ଏତେଦିନ ଆମ୍ଭେ କରି ଯଜ୍ଞ ଉପାସନା ।
ମାତ୍ର କିଛି ନୁହେଁ ତାହା କେବଳ ଯାତନା ॥
ଶଠ ଶିରୋମଣି ଏବେ ଜାଣିଲୁ ଅନଳ ।
ଘୃତାହୁତି ପାଇଲେହେଁ ନୁହଇ ଶୀତଳ ॥
ତେଣୁ ଶତଜିହ୍ୱା ନାମ ଅଟେ ଅନଳର ।
ତେଣୁ ତାହାଙ୍କ ପ୍ରକୃତି ଅଟେ ଚମତ୍କାର ॥
ସର୍ପ ଦୁଇଜିହ୍ୱା ହୋଇ କେତେ ହିଂସାକରେ
ତା ସମାନ ଅଛି କିଏ ସଂସାର ମଧ୍ୟରେ ॥
ଏଥେଁ କାହା ଦୋଷ ଦେବୁ ଆମ୍ଭର କପାଳ
ଏତେ ଦିନକେ ଦେଖିଲୁ ପ୍ରଭୁ ଆଦିମୂଳ ॥
କି ସ୍ଥିର ଗୋଲୋକ ପୁଣି ସ୍ୱର୍ଗପୁରେ ବାସ ।
ପୁଣି କ୍ଷୟହେଲେ ପୁଣି ଆସେ ମର୍ତ୍ତ୍ୟଦେଶ ॥
ବର୍ତ୍ତମାନ ହରି ଲଭି ମନର ସୁଖରେ ।
କାଳ କାଟିବୁ ଆନନ୍ଦେ ନିର୍ଭୟ ଅନ୍ତରେ ॥
ଏହିପରି କୁହାକୁହି ହୋଇଣ ସକଳେ ।
ଲୋଟିଲେ ଭକ୍ତିରେ ପଡ଼ି କୃଷ୍ଣ ପାଦତଳେ ॥
ବୋଇଲେ ରକ୍ଷାକର ଏ ଅଧମ ଜନରେ ।
ତୁମ୍ଭ ବିନୁ ଅନ୍ୟଗତି ନାହିଁ ଏ ସଂସାରେ ॥
ଆମ୍ଭେମାନେ ସନ୍ନ୍ୟାସୀ ତ ଆଶା ନାହିଁ ଧନେ
ମାତ୍ର ଆଶା ସଦା ପ୍ରଭୁ ତୁମ୍ଭ ଶ୍ରୀଚରଣେ ॥
ଯେପରି ଥରକୁ ଥର ଜନମ ମରଣ ।
କେବେ ନ ଭୋଗିବୁ ଦେବ ସଂହାର କାରଣ ॥
ବ୍ରାହ୍ମଣଙ୍କ ସ୍ତୁତି ଅଦ ଶ୍ରୀଧର ବିନତି ।
ପୁଣି ପାଦତଳେ କରିଛନ୍ତି ସେହି ସ୍ତୁତି ।
ଦେଖି ଦେଖି ରଜା ଅର୍ଘ୍ୟ କଲେ ନମସ୍କାର ।
ବିସ୍ମିତ ହୋଇଲେ ସର୍ବ ବ୍ରାହ୍ମଣ କୁମର ॥
କହିବାକୁ ଆରମ୍ଭିଲେ ବିନମ୍ର ବଚନ ।
ଆମ୍ଭମାନଙ୍କର ଦୁଃଖ ହର ଦୁଃଖୀ ଧନ ॥
ତୁମ୍ଭେ ଅଟ ନାରାୟଣ ବିଶ୍ୱର କାରଣ ।
କୋଟି କୋଟି ତୀର୍ଥ ପାଦ ରେଣୁର ସମାନ
ସ୍ୱେଚ୍ଛା ଅବତାର ତୁମ୍ଭେ ସୃଷ୍ଟିକର୍ତ୍ତା ନାଥ ।
ଲୀଳା କମେ ପାଳ ସର୍ବେ ହେ ପ୍ରଭୁ ଅନନ୍ତ

ନିଜ ଭକ୍ତିରେ ଯେ ଭଜେ ପ୍ରଭୁ ନାରାୟଣ ।
ସଦା ମନ ଥାଏ ଯାର ଶ୍ରୀପଦ୍ମ ପାଦେଣ ॥
ଜନମ ସାର୍ଥକ ତାର ଅଟେ ଦୟାମୟ ।
ବେଦ ବେଦାନ୍ତରେ ଯାହା ନ ହେଲା ନିଶ୍ଚୟ
ଆଗମ ନିଗମ ଆଉ ସଂହିତା ସକଳେ ।
ଯାହାଙ୍କର ସ୍ୱରୂପ ନ ଜାଣେ କେତେବେଳେ
ସେହି ପ୍ରଭୁ ସମ୍ମୁଖରେ କରଣ ଦର୍ଶନ ।
କି ଛାର ଯଜ୍ଞ ବେଦାନ୍ତ ପଠନ ଶ୍ରବଣ ॥
ଅହେ ପ୍ରଭୁ ତୁମ୍ଭ ତତ୍ତ୍ୱ ନ ପାରୁଁ ଜାଣି ।
ଚତୁର୍ମୁଖେ ବ୍ରହ୍ମା ଯାହା ନ ପାରେ ବଖାଣି ॥
ବିପ୍ରଗଣ ବାଣୀ ଶୁଣି ପ୍ରଭୁ ଜନାର୍ଦ୍ଦନ ।
କୋମଳ ମଧୁରସ୍ୱରେ କହିଲେ ବଚନ ॥
ସନ୍ନ୍ୟାସୀମାନଙ୍କ ଧର୍ମ ସନ୍ନ୍ୟାସ ଆଶ୍ରୟ ।
ସର୍ବତ୍ୟାଗୀ ଇଚ୍ଛାଶୂନ୍ୟ ପୂର୍ଣ୍ଣ ବ୍ରହ୍ମକାୟ ॥
ଆପଣାର ଇଷ୍ଟପୂଜା ବସ୍ତୁ ଆରାଧନା ।
ଥାଏ ନାହିଁକି ବ୍ରାହ୍ମଣ ନିଜପଣ ବିନା ॥
ଧ୍ୟାନବଳେ ଯୋଗବଳେ ସମସ୍ତ ଜଗତ ।
ବ୍ରହ୍ମାଣ୍ଡଯାକ ବସ୍ତୁରେ ହୋଇଛୁ ପୂରିତ ॥
ଏହିକ୍ଷଣି ଅମ୍ଭେ ଧର୍ମ ରାଜାଙ୍କ ପାଶକୁ ।
ଅଶ୍ୱମେଧ ପାଇଁ ଯାଉଅଛୁ ସେ ସ୍ଥାନକୁ ॥
ତୁମ୍ଭେମାନେ ସେ ଯଜ୍ଞକୁ ଯିବ ହେ ବହନ ।
ସେଠାରେ ମୋହର ସଙ୍ଗେ ହୋଇବ ମିଳନ
ଭାଷିଣ ଏମନ ହରି ହସ୍ତିନା ନଗରେ ।
କ୍ରମେ କ୍ରମେ ପଥ ବହିଯାନ୍ତି ଅତି ଖରେ ॥
ହସ୍ତିନା ପୁରର ସର୍ବ ନରନାରୀ ଜାଣି ।
ଲାଜ ଭୟ ଛାଡ଼ି ଦେଖିଲେ ସେ ଚକ୍ରପାଣି ॥
କୋଟିଏ ମଦନ ଯାର ସଙ୍ଗେ ସମ ନୁହେଁ ।
ସେ ନାଗର ଶିରୋମଣି ଦେଖି ନାରୀମୋହେ
କୁହାକୁହି ପରସ୍ପର ହେଲେ ସେହିକ୍ଷଣ ।
ଭକତଙ୍କ ମନୋରଥ କରିବାକୁ ପୂର୍ଣ୍ଣ ॥
ବିଜେକଲେ ମଦନମୋହନ ଗୋପୀନାଥ ।
ଦେଖି କେଉଁ ନାଗରୀ ଧରିବ ପତିବ୍ରତ ॥
ପଙ୍କଜ ନୟନ ହରି ଠକଙ୍କ ଅଗ୍ରଣୀ ।
କପଟୀ ମାୟାଙ୍କ ନାଗରଙ୍କ ଶିରୋମଣି ।
ନାରୀମାନଙ୍କର ଏହି ଅଟେ ଶତ୍ରୁରେ ।
ଦେଖି କାମେ ମୋହ ନୋହିବକେ ନାରୀଛାର

ଲକ୍ଷ୍ମୀଯାର ଦାସୀ ହେବା ପାଇଁ ବାଞ୍ଛାକରେ ।
ସେ ପଙ୍କଜ ମୁଖ ଅଜ ଦେଖି ନୟନରେ ॥
ଜନମ ସଫଳ ହେଲା ମତ ଛନ ଛନ ।
ଧନ୍ୟ ଗୋପାଙ୍ଗନା ଯାହା ରମିଲ ମୋହନ ॥
କେଉଁ ଜନ୍ମେ କେତେ ତୁମ୍ଭେ ତପସ୍ୟାକରିଲ
ମଦନ ମୋହନ ଲଭି କୋଳରେ ଧରିଲେ ॥
ଧନ୍ୟ ତୁମ୍ଭ ମୁଖ ଚୁମ୍ବି ଦେଲେ ପଦ୍ମମୁଖ ।
କୋଟି କୋଟି ଜନ୍ମର ଖଣ୍ଡିଲ ଭବଦୁଃଖ ॥
ନବଘନ ଶ୍ୟାମରୂପ ମଦନ ମୋହନ ।
କୋଟି କାମ ଗଞ୍ଜେ ଯାର ରୂପ ବିତପନ ॥
ଧନ୍ୟ ରାଧିକା ସୁନ୍ଦରୀ କେତେ ତପକଲ ।
ପ୍ରେମ ଫାଶେ ଜଗନ୍ନାଥଙ୍କୁ ବନ୍ଦୀ କଲ ॥
ଶୁଣି ଅଛୁ ତୁମ୍ଭ ପାଇଁ ପ୍ରଭୁ ଚକ୍ରଧର ।
ନିରନ୍ତର ବୃନ୍ଦାବନେ କରନ୍ତି ବିହାର ॥
କୁଳ ମାନ ଲାଜ ଛାଡ଼ି କୃଷ୍ଣ ଶ୍ରୀଚରଣ ।
ପୂଜାକର ପ୍ରୀତି ଦେଇ ତୋଷିଲ ମୋହନ ॥
କି କହୁଛ ନାରୀମାନେ ଶୁଣ ମୋ ଉତ୍ତର ।
ମଦନ ମୋହନ ଭଙ୍ଗୀ ଦେଖି ମୋହ ଗଲ ॥
ନାରୀର ପୁରୁଷ ଏହି ନୁହେ ଗୋ ସଙ୍ଗାତ ।
ପୁରାଣ ପୁରୁଷ ଏହି ସଂସାରରେ ଖ୍ୟାତ ॥
ପ୍ରଣୟର ଉପଯୁକ୍ତ କେବେହେଁ ନ ଭାବ ।
ପୁରାତନ ପ୍ରେମ କିପାଁ ଅକାରଣେ ହେବ ॥
ବୟସର ଅନୁରୂପ ସଙ୍ଗ ସୁଖ ହୁଏ ।
କି ସୁଖ ଲଭିବ ଭକ୍ତି କରି ଏହି ଦେହେଁ ॥
ଶୁଣିଛ ଯେ କର ଲାଗି ପୂତନା ମରିଲା ।
ସୁବାସ ଚନ୍ଦନ ସମ ଦେହ ତା ବାସିଲା ॥
ହୃଦ ସିଂହାସନେ ପ୍ରୀତି ପଥେ ତାଙ୍କୁ ରଖ ।
ଭବ ମାୟା ମୋହ ଆଦି ସକଳ ଉପେକ୍ଷ ॥
ଅସାର ସଂସାର ଏହି ପାତକର ଘର ।
ଏକମାତ୍ର ତାଣକର୍ତ୍ତା ପ୍ରଭୁ ଚକ୍ରଧର ॥
ଏପରି ଧନକୁ ଅମ୍ଭେ ଦେଖି ଗୋ ସଙ୍ଗାତ ।
ଇନ୍ଦ୍ରିୟର ବଶ ତୁମ୍ଭେ ହେଲ କି ନିମିତ୍ତ ॥
ଅନାଦି କାରଣ ଯେହୁ ଜଗତ ତାରଣ ।
ସୃଷ୍ଟିସ୍ଥିତି ଯାହାଙ୍କ ଇଚ୍ଛାରେ ହୁଏ ପୁଣ ॥
ତାଙ୍କ ତୁଲ୍ୟ ଶୁଦ୍ଧି କିଏ ହୋଇପାରେ ସେହି
ତାଙ୍କୁ ଦେଖି ଅଶୁଦ୍ଧ ଶରୀରେ ଭାବ ନାହିଁ ॥

ଦେବକୀଙ୍କ ସୁତ ବୋଲି ଯାହାକୁ ଭାବୁଛ ।
ସ୍ୱୟଂ ସୃଷ୍ଟି କର୍ତ୍ତା ଏହୁ ତଳେ ନୋହୁ ମିଛ ॥
ଶ୍ରୀକୃଷ୍ଣଙ୍କ ମାୟା ସର୍ବ ବୁଝିପାରେ କିଏ ।
ଯେ କର ଲଗନ୍ତେ କୁଜୀହେଲା ଶୋଭା କାୟେ
ପତିପଣେ ବରି କୋଳେ ଧେନାଲ ମୁରାରି ।
ଶୁଣି ଜାମ୍ବବତୀ ଅଟେ ଯାହାଙ୍କର ନାରୀ ॥
ସତ୍ୟା ଶଙ୍କାବତୀ ଅଦି ଯେତେକ ରମଣୀ ।
ବୋଲି ଥାନ୍ତି ଅମ୍ଭେ ସର୍ବେ କୃଷ୍ଣ ସୁହାଗଣୀ ॥
ମାତ୍ର ତାହା ନୁହେ ମାୟାଧର ମାୟାବଳେ ।
ମୋହିତ ହୋଇଣ ଥାନ୍ତି ରମଣୀ ସକଳେ ॥
ଯେତେବେଳେ ଯାହାଙ୍କର ପରେ ଶୁଭ ଦୃଷ୍ଟି
ଦିଅନ୍ତି ଏ ସଂସାରରେ ନୁହେ ସେହୁ କଷ୍ଟି ॥
ତାଙ୍କ ମନ କାର୍ଯ୍ୟ ଇଚ୍ଛା ଗତି କେଉଁ ସ୍ଥାନ ।
ସ୍ଥିର କେହି କରିଣ ଯେ ନ ପାଏ ସନ୍ଧାନ ॥
ନାରୀମାନଙ୍କର ମନଭାବ ଜାଣି ହରି ।
କ୍ରମେ କ୍ରମେ ଚଳି ଚଳି ଗଲନ୍ତି ମୁରାରି ॥
ଦେଖିଣ ଏସନ ଶୋଭା ପୁର ନାରୀଗଣ ।
ଭକ୍ତିଭରେ ପଦ୍ମପାଦେ କରଲେ ପ୍ରଣାମ ॥
କୃଷ୍ଣଙ୍କୁ ଦେଖିଣ ସର୍ବ ବୈତାଳିକ ଗଣ ।
ନିଜ ନିଜ କାର୍ଯ୍ୟ ସର୍ବେ କରଲେ ବନ୍ଦନ ॥
ସମସ୍ତଙ୍କ ମଧ୍ୟେ ଯେହୁ ବୟସରେ ବଡ଼ ।
ସ୍ତବ ସ୍ତୁତିରେ ନୁହଇ ଲେଶ ମାତ୍ର ମୂଢ଼ ॥
କୃଷ୍ଣେ ପ୍ରଣାମ କରିଣ ଯୋଡ଼ି ବେନିକର ।
କୋମଳ ଗମ୍ଭୀର ସ୍ୱରେ ବୋଲନ୍ତି ଯେ ଗିର
ମନ ପ୍ରାଣ ଜୀବନ ଅମ୍ଭର ଅଜ ନାଥ ।
ସାର୍ଥକ ହୋଇଲା ସର୍ବେ ହୋଇଲୁ ପବିତ୍ର ॥
ଦୟା ବାରି ବରଷିଣ ପାପ ତାପ ହରି ।
ନ ପାରୁଛୁ ସହି ଆଉ ଭବ ପାପଭାର ।
ରସରଙ୍ଗେ ବୃଥା ଦିନ କରିଅଛୁ କ୍ଷୟ ।
ବୃଦ୍ଧ ବୟସ ହେଲାଣି ଲାଗୁଅଛି ଭୟ ॥
କ୍ରୀଡ଼ା କୌତୁକରେ ବାଲ୍ୟକାଳ ଗତହେଲା ।
ଯୌବନ କାଟିଲୁ କରି ରସରଙ୍ଗ ଲୀଳା ॥
ଜରା ଜୀର୍ଣ୍ଣ ତନୁ ଦେହ ହୋଇଲା ଅବଶ ।
ଦୟା କରି ମୁକ୍ତି ଦିଅ ଅହେ ପୀତବାସ ॥
ଦେଖା ଦେଇ ପାପୀମାନେ ଦେଇ ଅଶାଦାନ
ଏ ମାୟା ସଂସାରୁ ମୋକ୍ଷ କର ନାରାୟଣ ॥
ସୁବୈଦ୍ୟ ଅଛିଲେ ରୋଗ ଚିହ୍ନିଣ ଔଷଧ ।
ଦେଇଣ ନାଶ କରଇ ଅହେ ରମାଧବ ॥
ଭାବୁଅଛୁ ପାପ ରୋଗେ ହୋଇଛୁ ପୀଡ଼ିତ ।
ନାମାମୃତ ଔଷଧକୁ ଦିଅ ଲକ୍ଷ୍ମୀକାନ୍ତ ॥
ଶେଷେ କଞ୍ଜଚରଣରେ ହୋଇବୁଁ ହେ ଲୀନ
ପାପ ବ୍ୟାଧି ଦୂରହେବ ଅହେ ନାରାୟଣ ॥
ସୃଷ୍ଟିକର୍ତ୍ତା ବିଧାତାଙ୍କୁ ସଂସାରର ଜନ ।
ଅତି ବୃଦ୍ଧ ବୋଲିଣ ଭାବନ୍ତି ମନେ ଜାଣ ॥
ମାତ୍ର କିଛି କାଳ ହୃଦେ ଅନ୍ଦୋଳନ କଲେ
ପ୍ରକୃତ ନୁହେ ବୋଲିଣ ଜାଣନ୍ତି ସକଳେ ॥
କ୍ଷୀର ସମୁଦ୍ରେ ଅନନ୍ତ ପରେ ଶୋଇଥିଲ ।
ନାଭି କମଳରୁ ବିରଞ୍ଚିଙ୍କୁ ଜାତ କଲ ॥
ସେ ଧାତା ଜଗତ ପିତା ପୃଥ୍ୱୀ ସର୍ଜ୍ଜିଲେ ।
ତୁମ୍ଭେ ତାହାଙ୍କର ପିତା ଅଟ କାଳେ କାଳେ ॥
ବୈକୁଣ୍ଠବିହାରୀ ସବୁଠାବରେ ବିଶ୍ରାମ ।
ମୁଁ କିସ କହିବି ଅହେ ପୁରୁଷ ଉତ୍ତମ ॥
ଯେହୁ ଚିହ୍ନିଛି ସେ ପ୍ରଭୁ କହିବ ସଂସାରେ ।
କାହା ପିତା ପିତାମହ ଶ୍ରୀକୃଷ୍ଣ ଧରାରେ ॥
ମାୟା ରୂପ ଧରି ପ୍ରଭୁ ହେଲେ ଅବତାର ।
ତେଣୁ ପିତା ପୁତ୍ରର ସମ୍ବନ୍ଧ ଯେ ତୁମ୍ଭର ॥
ପ୍ରକୃତରେ ସୂକ୍ଷ୍ମ ମର୍ମ ଜାଣେ ସେହୁ ଜନ ।
ପିତା ପୁତ୍ର ବୋଲି ସେ ନ କହିବ ବଚନ ॥
ଭକ୍ତର ମାନସ ଜାଣି ନାନା ରୂପ ଧର ।
ଯେ ଯାହା ଭାବଇ ତାହା ହୁଅ ଚକ୍ରଧର ॥
ଏହାର କାରଣ ଜଗତରେ ନ ଜାଣିଣ ।
କେହୁବୋଲେ ପୁତ୍ର କେହୁ ବୋଲେ ବନ୍ଧୁଗଣ
ପ୍ରକୃତ ଭାବକୁ ଜାଣି ଯେହୁ ଚିନ୍ତା କରେ ।
ଅକ୍ଷୟ ମୁକ୍ତି ଦେଇଣ ବସାଅ ସ୍ୱର୍ଗରେ ॥
ସମସ୍ତ ପାପକୁ ନାଶ କରେ ହରି ନାମ ।
ତା ଠାରୁ ବଳି କି ଅଟେ ଜପ ତପ ହୋମ ॥
ମୁହିଁ ଅତି ଦୀନ ହୀନ ସୁକୃତ ବିହୀନ ।
ତପସ୍ୟା ନାହିଁ ମୋହର ପାପରେ ମଳିନ ॥
ନାମର ମହିମା କହିବାକୁ ଶକ୍ତି ନାହିଁ ।
ଦୟାକରି ଏ ଦାସକୁ ରକ୍ଷାକର ସାଇଁ ॥
ଜ୍ଞାନହୀନ ବୁଦ୍ଧି ଶୂନ୍ୟ ଶାସ୍ତ୍ରକୁ ପଢ଼ିଲି ।
ସେ କାହିଁ ପାଇବ ବୃଥା ଭ୍ରମିଣ ମରଇ ॥

ଯାହାଙ୍କ ସମାନ ପୃଥିବୀରେ କେହି ନାହିଁ ।
ତାହାଙ୍କୁ ମାନବ ବୋଲି କହିପାରେ କେହି॥
ଶାସ୍ତ୍ରରେ ଶୁଣିଛୁ ରୂପ ଅତି ଅଗୋଚର ।
ସେହି ପରି ମୁଖ ଦେହ ମନୁଷ୍ୟ ଆକାର ॥
ନୃସିଂହ ବାମନ ପୁଣି ପର୍ଶୁରାମ ରୂପ ।
ଆବର ହୋଇଲେ ପ୍ରଭୁ ଶ୍ରୀରାମ ସ୍ୱରୂପ ॥
ଏହିପରି ଯୁଗେ ଯୁଗେ ଅବତାର ହୋଇ ।
ଭକ୍ତର ମାନସ ପୂର୍ଣ୍ଣକର ଭାବଗ୍ରାହୀ ॥
ମୋ ଭଳି ପାପୀର ତୁଣ୍ଡେ ନାମ ନ ଆସଇ ।
କି ଭକ୍ତି କରିବି ପ୍ରଭୁ ତଳେ ଜଣା ନାହିଁ ॥
କ୍ଷମାକର ଅପରାଧ ଅହେ ଦୟାମୟ ।
ତୁମ୍ଭ ଶ୍ରୀଚରଣ ତଳେ ମୋହର ଆଶ୍ରୟ ॥
ହରେକୃଷ୍ଣ ରାମନାମ ଶରଣ ମୋହର ।
ଯାହାଙ୍କ ନାମରେ ଭବସିନ୍ଧୁ ହେବ ପାର ॥
ଶରଣପଞ୍ଜର ନରହରି ମୋ ଭରସା ।
ଶେଷକାଳକୁ ମୋହର ଏକମାତ୍ର ଆଶା ॥
ହରିହର ଏକ ଆତ୍ମା ଜାଣନ୍ତି ସମସ୍ତେ ।
ପ୍ରଭୁଙ୍କ କୋପ ହୋଇଲେ କୋଧ ଶିବ ଚିତ୍ତେ
ବୋଇଲେ ଯେ ସନ୍ଥମାନେ ବିସ୍ମରଣ ମନେ ।
ମୋର ପାପ ମହେଶ୍ୱର ଦହିବେ ସେ କ୍ଷଣେ॥
ମାବ ଯେ ଯେପରି ଭାବେ ସେପରି ଶ୍ରୀହରି ।
ଭକ୍ତର ମାନସ ପୂର୍ଣ୍ଣ କର ଦଇତ୍ୟାରି ॥
ନାମର ମହିମା ପ୍ରଭୁ ନ ଜାଣଇ ମୁହିଁ ।
ଯାହା କିଛି କହିଗଲି ଜଗତ ଗୋସାଇଁ ॥
କ୍ଷମାକର ଦୋଷ ମୋର ଅହେ ଦାମୋଦର
ତୁମ୍ଭ ଶ୍ରୀଚରଣ ତଳେ ଭରସା ମୋହର ॥



ଶ୍ରୀକୃଷ୍ଣ

ହରେକୃଷ୍ଣ ରାମନାମ ଶରଣ ମୋହର ।
ଯାହା ଇଚ୍ଛା ତାହାକର ଆହେ ଚକ୍ରଧର ॥

କୃଷ୍ଣନାମେ ପାପନାଶେ ହରିନାମେ ତାପ ।
ରାମନାମ ମହାମନ୍ତ୍ରେ ବିନାଶ ଦୁଷ୍କୃତ ॥
ଯାହାଙ୍କ ନାମକୁ ସୁମରିଲା ମାତ୍ରେ ନର ।
ସର୍ବପାପ ନାଶି ଚଳେ ବଇକୁଣ୍ଠ ପୁର ॥
ଆଜ ମୋର ପୂର୍ବଜନ୍ମ ତପସ୍ୟାର ଫଳେ ।
ଭେଟିଲି ମୁଁ ଶ୍ରୀଚରଣ ଧର୍ମରାଜା ପୁରେ ॥
ଶୁଣିଣ ଏପରି ବାଣୀ ପ୍ରଭୁ ନାରାୟଣ ।
ଅଳପ ମଧୁର ହାସ୍ୟେ ବୋଇଲେ ବଚନ ।
ମନେ କିଛି ଭାବନା ନ କର ଅହେ ସୁତ ।
କୃତାର୍ଥ ହୋଇବ ତୁମ୍ଭେ ନାଶିଣ ଦୁଷ୍କୃତ ॥
ସାଧୁସଙ୍ଗ କର ସଦା ସତ୍ୟ କଥାକହ ।
ଧର୍ମେ ମନ ଦେଇ ଶେଷେ ବୈକୁଣ୍ଠକୁ ଯାଅ
ପାପୀ ତାଣ କରିବାକୁ ଜନମ ଆମ୍ଭର ।
ଧର୍ମ ସ୍ଥାପି ସଂସାରରେ ଯିବୁ ନିଜପୁର ॥
ଏସନ କହିଣ ହରି କମଳ ଲୋଚନ ।
ବୋଲନ୍ତି ସୁଖରେ କିବା ଦୁଃଖେ ଯେଉଁଜନ
ସମ୍ପଦେ ବିପଦେ ସଦା ହୃଦେ ନାମ ମୋର
ଭଜନ କରଇ ମୁହିଁ ଥାଏ ତା ପାଶର ॥
ଏତେ କହି ସ୍ୱର୍ଣ୍ଣମାଳା ସେମାନଙ୍କୁ ଦେଲେ ।
ଧର୍ମଙ୍କ ପୁରରେ ନାରାୟଣ ପ୍ରବେଶିଲେ ॥
ନଗରର ଯେତେ ଲୋକ ଯାଇ ଦେଖିଥିଲେ
କୃଷ୍ଣଙ୍କ ସହିତେ ସର୍ବେ ପୁର ମଧ୍ୟେ ଗଲେ ॥
ପୁରରେ ପ୍ରବେଶ ହେଲେ କମଳଲୋଚନ ।
ଦୀନ ମହାଦେବ ଭାବେ ସେ ପଦ୍ମଚରଣ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାରକଥା ପ୍ରବନ୍ଧେ
ନାମ ଏକାଦଶୋଽଧ୍ୟାୟଃ ।

———o———

## ଦ୍ୱାଦଶ ଅଧ୍ୟାୟ

ହେତୁର୍ଯଃ ସର୍ବଭୂତାନାଂ ସର୍ବେଷାଂପୁଲକସ୍ତଥା
ଯସ୍ମିନ୍‌ସର୍ବେପ୍ରଲୀୟନ୍ତେତସ୍ମୈ ସର୍ବାତ୍ମନେନମଃ

**ଯୁଧିଷ୍ଠିରଙ୍କ ପୁରେ ଶ୍ରୀକୃଷ୍ଣଙ୍କର ସମାଦର ଓ ଅନୁଶାଳ୍ୱଙ୍କ ହସ୍ତିନା ପ୍ରବେଶ ।**

ଜନ୍ମେଜୟ ପଚାରିଲେ ଅହେ ମୁନିବର ।
ଏଥଅନ୍ତେ କିସ ପୁଣ ହେଲା ସମାଚାର ॥

ସକଳ ବସ୍ତ୍ରାର ମୋତେ କୃଷ୍ଣ ଦୟାକର ।
ତୁମ୍ଭ ମୁଖୁଁ ଶୁଣି ମୁହିଁ ହେଲେ ଯିବ ତର ॥
ମୋ ପର ଅଜ୍ଞାନୀ କେହି ସଂସାର ମଧ୍ୟରେ ।
ଜନମ ନୋହିବେ ପ୍ରଭୁ ଦେଖେ ମୁଁ ନୟନରେ
ପିତୃ ପିତାମହଙ୍କର ଗୁଣ କୀର୍ତ୍ତିମାନ ।
କହିଣ ଆନନ୍ଦ କର ଗୁରୁରେ ଆମ୍ଭ ମନ ॥
ରାଜାଙ୍କ ବିନୟ ବାଣୀ ଜଇମିନୀ ଶୁଣି ।
ପରମ ସନ୍ତୋଷ ହୋଇ ବୋଇଲେ ସେ ବାଣୀ
ମନଦେଇ ଶୁଣ ରାଜା ଏଥୁ ଅନ୍ତେ ଯାହା ।
ଘଟିଲଣି ହସ୍ତିନାରେ କହୁଅଛି ମୁଁ ତାହା ॥
ଧର୍ମରାଜପୁରେ ଦେଖି ପ୍ରଭୁ ନାରାୟଣ ।
କେତେକ ବ୍ରାହ୍ମଣ ଆସି କରିଲେ ବନ୍ଦନ ॥
ନାନାସ୍ତୁତି କରି ସେହି ବଚନ ବୋଇଲେ ।
ଯଜ୍ଞ ପୂର୍ଣ୍ଣହେବ ଏବେ ହରି ବିଜେକଲେ ॥
ପ୍ରାୟଶ୍ଚିତ ନାନାମତେ ଯା ଅଛି ବହୁତ ।
ଅର୍ଥ ଗୀତ ନୀତ ଯଜ୍ଞ ଜପ ସମ୍ପାଦିତ ॥
ତେଣୁ କରି ଶ୍ରୀଚରଣ କରିଲୁ ଦର୍ଶନ ।
ଯଜ୍ଞ ଧର୍ମ ଅର୍ଥେ ତୁମ୍ଭ ଭୂତଳେ ଜନମ ॥
ଯେତେ ଯେତେ ପାପ ସଂସାରରେ କରନ୍ତି ।
ତୁମ୍ଭର ଦର୍ଶନେ ପ୍ରଭୁ ସକଳ ତେଜନ୍ତି ॥
ବ୍ରାହ୍ମଣଙ୍କୁ ପ୍ରବୋଧିଣ ପ୍ରଭୁ ଭାବଗ୍ରାହୀ ।
କ୍ରମେ ଅଗ୍ରସର ହେଲେ ଧର୍ମରାଜ ଯହିଁ ॥
ଦେଖିଲେ ନର୍ତ୍ତକୀ ନୃତ୍ୟ କରନ୍ତି ସଭାରେ ।
ରମ୍ଭା ମେନକା ସ୍ୱର୍ଗୁ କି ଆଇଲେ ସେଠାରେ
ଏପରି ସମୟେ ସେହି ନୃତ୍ୟକାରୀ ନାରୀ ।
ଶ୍ରୀକୃଷ୍ଣ ମୋହନରୂପେ କାମେ ହେଲେ ଘାରି
ଶ୍ରୀକୃଷ୍ଣ ମୁଖ ମଧୁର ପଦ୍ମକର ଶୋଭା ।
ଦେଖିଣ କାମିନୀଗଣ ଚିତ୍ତ ହେଲା ଲୋଭା ॥
ନ ଚଳିଲା ପାଦ ଘାରିଲା ଯେ ସୁର ରସ ।
ସ୍ତମ୍ଭୀଭୂତ ହୋଇ ତହିଁ ରହିଲେ ବାଳିଶ ॥
କେତେବେଳେ ମନୋନ୍ମାଦସମ୍ଭାଳି ନ ପାରି ।
କୃଷ୍ଣଙ୍କ ପାଦେ ପଡ଼ିଲେ ବେନିକର ଯୋଡ଼ି ॥
ବୋଇଲେ ହେ ନାଥ ତୁମ୍ଭେ ଜଗତ ଜୀବନ ।
ଏ ପାପୀ ଜନ୍ମରୁ ମୁକ୍ତି ଦିଅ ହେ ବହନ ॥
ଧନଲୋଭେମନଲୋଭେକେତେକେତେ ପାପ
କରୁଅଛୁ ଆହେ ପ୍ରଭୁ ଖଣ୍ଡ ସର୍ବ ତାପ ॥

ବୋଲନ୍ତି ନାଗରୀ ପ୍ରଭୁ ତୁମ୍ଭ ନାମ ଧରି ।
କେତେ କେତେ ପାପୀ ଚଳିଯାନ୍ତି ସ୍ୱର୍ଗପୁରୀ ॥
ଦାନ ଧ୍ୟାନ ଜ୍ଞାନ ଆଦି ତୀର୍ଥ ତପ ବ୍ରତ ।
ନୋହିବ ସମାନ ତୁମ୍ଭ ସମ ହେ ଅଚ୍ୟୁତ ॥
ସେ ସର୍ବରେ କିବା ଧର୍ମ ଏକା ତୁମ୍ଭ ନାମ ।
ଚତୁର୍ମୁଖେ ବେଦବ୍ରହ୍ମା ନ ପାରେ କହିଣ ॥
ଏମନ୍ତେ ସ୍ତୁତି କରିଣ ଅବଳା ନିକର ।
ପ୍ରେମେ ନାମ ଗାଇ ନୃତ୍ୟ କଲେ ସେଠାବର ॥
ମନ ବଚନରେ କୃଷ୍ଣେ ଲଗାଇଲେ ଲୟ ।
ଏକାଗ୍ରେ ଡାକିଲେ ତାହି କର ଦୟାମୟ ॥
ତାଙ୍କ ଭକ୍ତିଦେଖି ତୋଷ ହୋଇଲେ ମୁରାରି ।
ନିଜହୃଦୁ ମୁକ୍ତାମାଳା ତାଙ୍କୁ ଦେଇ କରି ॥
ବୋଇଲେ ମୋହର ନାମ ସର୍ବଦା ଗାଇବ ।
ଅନ୍ତମେ ମୋ ପୁରେ ଯାଇଁ ସୁଖେ ବିଳସିବ ॥
ଏମନ୍ତ କହିଣ କୃଷ୍ଣ ପ୍ରବୋଧିଣ ତାଙ୍କୁ ।
ବେଗେ ଚଳିଗଲେ ଧର୍ମ ରାଜାଙ୍କ ପାଶକୁ ॥
ଧୃତରାଷ୍ଟ୍ର କୃପାଚାର୍ଯ୍ୟ ମାନଙ୍କ ସହିତ ।
ଦେଖିଣ ସେଠାରେ ତାଙ୍କୁ ପ୍ରଭୁ ନନ୍ଦସୁତ ॥
ଶ୍ରୀକୃଷ୍ଣଙ୍କୁ ଦେଖିକରି ସକଳେ ନମିଲେ ।
ଶେଷେ ଜଗନ୍ନାଥ ଆସନରେ ବିଜେ କଲେ ॥
ଯୁଧିଷ୍ଠିର ରାଜାଙ୍କୁ ନମିଲେ ନାରାୟଣ ।
ପାର୍ଥ ଆସିଣ ବନ୍ଦିଲେ ଶ୍ରୀହରି ଚରଣ ॥
ନକୁଳ ସହଦେବ ଏ ଆସି ବେନିଭାଇ ।
ଶ୍ରୀକୃଷ୍ଣ ପାଦରେ ପଡ଼ିଲେକ ତତକାଳ ॥
ସମସ୍ତଙ୍କୁ ଆଲିଙ୍ଗନ କରି ନାରାୟଣ ।
ଯୁଧିଷ୍ଠିର ମୁଖ ଚାହିଁ ବୋଲନ୍ତି ବଚନ ॥
ତୁମ୍ଭମାନଙ୍କର ଦେଖା ପାଇଁ ଆଗେ ମୁହିଁ ।
ଆଇଲି ପଛେ ଆସନ୍ତି ଭୀମ ସର୍ବ ନେଇ ॥
ଦେବକୀ ରୁକ୍ମିଣୀ ଆଦି ରେବତୀ ସହିତ ।
ନାତି ପୁତ୍ରେ ସହିତରେ ହୁଅନ୍ତି ଆଗତ ॥
ପ୍ରଦ୍ୟୁମ୍ନ ଭୀମ ଏ ଦୁହେଁ ସେମାନଙ୍କୁ ଘେନି ।
ପଶ୍ଚାତରେ ଆସୁଛନ୍ତି ଆହେ ନୃପମଣି ॥
ନିଜପୁରୀ ଶୂନ୍ୟକରି କଲୁ ଆଗମନ ।
ସମସ୍ତେ ଆସୁ ଅଛନ୍ତି ହସ୍ତିନା ଭୁବନ ॥
ବୃକୋଦର ସଙ୍ଗେ ସର୍ବେ ଗଙ୍ଗାର ତଟରେ ॥
ବିଶ୍ରାମ କରିଣ ଆସୁ ଅଛନ୍ତି ସୁଖରେ ॥

ଶୁଣି ରାଜା ଯୁଧିଷ୍ଠିର ଆନନ୍ଦ ହୋଇଣ ।
ପାର୍ଥଙ୍କୁ ପାଶକୁ ଡାକି ବୋଇଲେ ବଚନ ॥
ଶୁଣିଲ ତ ବୀର ତୁମ୍ଭେ ଶ୍ରୀକୃଷ୍ଣଙ୍କ ବାଣୀ ।
ଗଙ୍ଗାକୂଳେ ରହିଛନ୍ତି ଦ୍ୱାରକା ରମଣୀ ॥
କୁନ୍ତୀ ଦ୍ରୌପଦୀ ସକଳ ନାରୀ ଘେନିଯାଅ ।
ଦ୍ୱାରକା ନାରୀମାନଙ୍କୁ ପାଛୋଟି ଆଣଅ ॥
ସମାଦର କରିଣ ଗୃହକୁ ବେଗେ ଆଣ ।
ଯେପରି ନ ହୁଏ ସେମାନଙ୍କୁ ଅପମାନ ॥
ଜନନୀ ଦ୍ରୌପଦୀ ସଙ୍ଗେ ଘେନି ପୁର ନାରୀ ।
ଶୀଘ୍ର ଯାଅ ଦେବକୀଙ୍କୁ ଅଭ୍ୟର୍ଥନା କରି ॥
ଏହିକଥା କହି ସର୍ବେ ଆନନ୍ଦେ ଉଠିଲେ ।
ଯାଦବେ ଆଣିବା ପାଇଁ ସକଳେ ଚଳିଲେ ॥
ଯୁବନାଶ୍ୱ ରାଜା ନିଜ ସଇନ ସହିତେ ।
ବାହାରିଲେ ସଙ୍ଗେଘେନି ସୈନ୍ୟସେନାପତେ
ପ୍ରଭାବତୀ ବୋଲି ଯୁବନାଶ୍ୱ ପାଟରାଣୀ ।
ଦ୍ରୌପଦୀର ସଙ୍ଗତରେ ଗଲେ ସେହୁ ପୁଣି ॥
ସୁବର୍ଣ୍ଣ କୁମ୍ଭ ପାଲିଙ୍କି ଘରେ ନାରାୟଣ ।
ପ୍ରବେଶ ହୋଇଲେ ଯାଇଁ ଗଙ୍ଗାର ତୀରେଣ ॥
ଗଜ ଅଶ୍ୱ ଚଢ଼ି ଧର୍ମ ରାଜାଙ୍କ ସହିତେ ।
ଯାଦବଙ୍କ ପାଶେ ଯାଇଁ ମିଳିଲେ ସମସ୍ତେ ॥
ଏକ ଏକ ପାଲିଙ୍କିରେ ବନ୍ଧୁ ନାରୀ ଛନ୍ତି ।
ଶତ ଶତ ପରିଚାରୀ ଚାମର ପକାନ୍ତି ॥
ଯୁଧିଷ୍ଠିର ଦେବକୀଙ୍କୁ ନମସ୍କାର କଲେ ।
କରଯୋଡ଼ି ଭୃତ୍ୟପ୍ରାୟ ଆଗେ ଉଭା ହେଲେ ॥
ଭୀମସେନ ପଦ୍ମନ ସହିତେ ଯେତେ ବୀର ।
ସମସ୍ତେ ପଡ଼ିଲେ ଯାଇଁ ଧର୍ମଙ୍କ ପଛର ॥
ଦେବକୀଙ୍କୁ ଅର୍ଜୁନାଦି ସମସ୍ତେ ନମିଲେ ।
ରେବତୀଙ୍କୁ ନମସ୍କାର କରି ଠିଆ ହେଲେ ॥
ପ୍ରଭାବତୀ ସଙ୍ଗତରେ ଦ୍ରୁପଦ ନନ୍ଦିନୀ ।
କୃଷ୍ଣମାତାମାନଙ୍କୁ ସେ କଲେକ ଦଣ୍ଡବତ ॥
ସତ୍ୟଭାମା ରୁକ୍ମିଣୀ କୃଷ୍ଣଙ୍କ ନାରାୟଣ ।
ପରିହାସେ ଦ୍ରୌପଦୀଙ୍କୁ ବୋଲନ୍ତି ବଚନ ॥
ସତ୍ୟଭାମା ବୋଲନ୍ତି ଗୋ ଶୁଣ ମୋ ଉତ୍ତର ।
ପାଞ୍ଚଗୋଟି ପତିଙ୍କୁ କେମନ୍ତ ବଶ କର ॥
ତହିଁରେ ମନ ତୁମ୍ଭର ଉପତି ନୁହଇ ।
ଆବର କୃଷ୍ଣଙ୍କୁ ବଶ କରୁ କାହିଁ ପାଇଁ ॥

ଏ ମୋହନ ମନ୍ତ୍ର ତୁମ୍ଭେ କାହିଁ ଶିଖିଥିଲ ।
ଆମ୍ଭର ଜୀବନଧନ ବାନ୍ଧିଣ ରଖିଲ ॥
ସର୍ବଦା ଘର ଛାଡିଣ ଆସନ୍ତି ଏ ପୁରେ ।
ଆମ୍ଭମାନଙ୍କ ସୁଖ ନ ରୁଚଇ ତାଙ୍କରେ ॥
ଦୟାକରି ସେ ମୋହନ ମନ୍ତ୍ର କହିଦିଅ ।
ଯେପରି ବଶ କରିବୁ ଆମ୍ଭେ ବଶ୍ୟଦେହ ॥
ଜଗତରେ ଅବଶ ଗୋ ଅଟଇ ଶ୍ରୀହରି ।
ତୁମ୍ଭ ମନ୍ତ୍ରବଳେ ଅବା ପାରୁ ବଶ କରି ॥
ତୁମ୍ଭେ ପୁଣି ତ ଲେଖାରେ କୃଷ୍ଣଙ୍କ ଭଗିନୀ ।
ଜୀବନ ନ ଧର ଦଣ୍ଡେ ତାଙ୍କ ବିନା ପୁଣି ॥
ପାଞ୍ଚଗୋଟି ଭର୍ତ୍ତା ନିତ୍ୟେ ତୁମ୍ଭ ଘରେ ଥାନ୍ତି
କେମନ୍ତେ କୃଷ୍ଣଙ୍କୁ ଘରେ କର ଗୋ ପୀରତି
ଲଜ୍ଜାକୁ କି ତୁମ୍ଭେ ଚକ୍ଷୁ କରିଣ ପିଇଲ ।
ସଂସାର ଲାଜକୁ ତିଳେହେଁ ନ ବିଚାରିଲ ॥
ଆମ୍ଭମାନଙ୍କ ଉପରୋଧ ନ ରଖିଣ ପୁଣି ।
ନିଶ୍ଚୟ ଜାଣିଲୁ ତୁମ୍ଭେ ହେଲ ସପତ୍ନୀ ॥
ଶୁଣିଣ ଦ୍ରୌପଦୀ ଦେବୀ ହସିଣ କହନ୍ତି ।
କପଟ ମୁଖରେ ଧର ଏ ପାପ ପ୍ରକୃତି ॥
ତୁମ୍ଭେମାନେ କି ତୁମ୍ଭର ଭାଇଙ୍କ ସଙ୍ଗତରେ ।
ରସକ୍ରୀଡ଼ା କରିଅଛ କୁହ ମୋ ଆଗରେ ॥
ନିଜେ କରିଥିବାରୁ ଅନ୍ୟଙ୍କୁ ମନେ କର ।
ସପତ୍ନୀ ବୋଲି କୁହ କେମନ୍ତ ପ୍ରକାର ॥
ଜାଣନା କି ନାରାୟଣ-ଜଗତର ପତି ।
ଜଗତରୁ କି ଅନ୍ତର ଅଟଇ ମୁଁ ସତୀ ॥
ହେବାରୁ ଅନେକ ରାଣୀ ସପତ୍ନୀ ଭାବେ ।
ଶ୍ରୀକୃଷ୍ଣଙ୍କୁ ଦୂର କରିଦିଅ ଗୋ ବିରାଗେ ॥
ନିଷ୍ଠୁର ବୁଦ୍ଧିରେ ତୁମ୍ଭେ ଭକ୍ତି କର ଦୂର ।
ଆମ୍ଭଙ୍କୁ ଯେ ଦୟା କରିଥାନ୍ତି ଚକ୍ରଧର ॥
ଜନ୍ମେ ଜନ୍ମେ ମୋତେ ସେହି ଦୟା କରିଥାନ୍ତି
ଭକତବତ୍ସଳ ନାଥ ଶ୍ରୀହରି ଅଟନ୍ତି ॥
ଦୁଃଶାସନ ପାମର ଉଲଗ୍ନ କଲା ବେଳେ ।
ଚିନ୍ତାକଲି ନାରାୟଣ ମିଳିଲେ ସେ କାଳେ ॥
ଅହା ସେ ଅଦ୍ଭୁତ ମାୟା କି ବର୍ଣ୍ଣିବ ମୁହିଁ ।
ବସ୍ତ୍ର ଅଙ୍ଗେ ଅଛି ଦୁଃଶା କାଢ଼ି ନ ପାରଇ ॥
ଦ୍ୱାଦଶ ଦଣ୍ଡ ପର୍ଯ୍ୟନ୍ତ ବସ୍ତ୍ରକୁ କାଢ଼ିଲା ।
ପର୍ବତ ସମାନ ତହିଁ ବସ୍ତ୍ର ଗଦା ହେଲା ॥

ତଥାପି ମୋହର ଦେହ ବସ୍ତ୍ରରେ ଅବୃତ୍ତ ।
କଣ୍ଠ ବୁଝି ନ ପାରଣ ହେଲ୍ ସ୍ତମ୍ଭୀଭୂତ ॥
ଧନ୍ୟ ସେହି ନାରାୟଣ ତାଙ୍କର କୃପାରେ ।
ଅନ୍ଧ ଚକ୍ଷୁପାଏ ପାପୀ ବସଇ ସ୍ୱର୍ଗରେ ॥
ଏପରି ପ୍ରଭୁଙ୍କୁ ତୁମ୍ଭେ ବଣ କରିଅଛ ।
ଅବର ଦେଖାଇ ମୋତେ କେତେଗୋଳକହୁଛ
ଥିଲ୍ ପରା ଏତେ ଲୋକ ଦ୍ୱାରକାରେ ରହି ।
ଖଣ୍ଡିଏ ବସ୍ତ୍ରତ କେହି ନ ଦେଲ୍ ପଠାଇ ॥
ବହୁତ ଦୂରରେ ଥିଲେ ସୁଦ୍ଧା ଚକ୍ରପାଣି ।
ଅନ୍ତର୍ଯ୍ୟାମୀ ନାଥ ସେ ଜାଣିଲେ ସେହିକ୍ଷଣି ॥

ପୁଣି ତୁମ୍ଭେମାନେ ପୁର୍ବେ ବଶକର ହରି ।
ଦେବଙ୍କ ପୁଷ୍ପ କମ୍ପାଇ ଅଣିଲ ଗୋ ହରି ॥
ଦେବତା ବ୍ରାହ୍ମଣ ଗୁରୁଜନଙ୍କ ବସ୍ତୁ ।
ଏହାକୁ ଯେ ହରେ ହୁଏ ନର୍କରେ ପତିତ ॥
ଜଗତ ପୁରୁଷ ସେ ଅନନ୍ତ ନାରାୟଣ ।
ଅନ୍ତର୍ଯ୍ୟାମୀ ପୁରୁଷ ସେ ସମସ୍ତଙ୍କ ଧନ ॥
ଦ୍ରୌପଦୀ ବଚନେ ସତ୍ୟଭାମା ତୋଷ ହୋଇ
କୁନ୍ତୀଙ୍କୁ ନମିଲେ ସେ ବହୁତ ବନ୍ଦୋଇ ॥
ଦେବକୀ ସହିତ କୁନ୍ତୀ ହୋଇ ଏକଠାରି ।
ଅଶ୍ୱକୁ ପୂଜିବା ଗୁଲ୍ ଭଲେକ ବିସ୍ତର ॥



ନାରାୟଣ ଏବଂ ଯୁଧିଷ୍ଠିର ପ୍ରଭୃତଙ୍କ ସାକ୍ଷାତେ ଯଜ୍ଞଅଶ୍ୱର ନୃତ୍ୟ ଓ

ଅନୁଶାଲ୍ୱ ଦ୍ୱାରା ଅଶ୍ୱ ହରଣ

ଏମନ୍ତେ ବଭ୍ରୁର କୃଷ୍ଣେ ଡାକଣ କହିଲେ ।
ଭେ ଯାଇଣ ବେଗେ ଯୁଧିଷ୍ଠିରଙ୍କୁ ବୋଇଲେ
ନାରାୟଣମାନେ ସର୍ବେ ପଙ୍କଲେ ଅଶ୍ୱକୁ ।
ଶୁଣି ଯୁଧିଷ୍ଠିର ଆଜ୍ଞାଦେଲେ ସମସ୍ତଙ୍କୁ ॥

ଗଜ ଅଶ୍ୱ ପଦାତ ଯେ ସୈନ୍ୟଙ୍କ ସହିତେ ।
ଗୃହ ପାର୍ଶ୍ୱଣରେ ବେଢ଼ି ରହନ୍ତୁ ସମସ୍ତେ ॥
ରହନ୍ତୁ ସକଳ ସୈନ୍ୟ ଯତ୍ନେ ବେଢ଼ିକରି ।
କବାଟକୁ ଫିଟାଇ ଦେଖନ୍ତୁ ସର୍ବନାରୀ ॥

ଅର୍ଘ୍ୟାଦ୍ୟ ପୂଜାକୁ କରନ୍ତୁ ହେ ଚନ୍ଦ୍ରଋଷି ।
ଅନ୍ୟଜନେ ଭକ୍ତିରେଣ ଯେମନ୍ତେ ନ ପଶି ॥
ଯୁଧିଷ୍ଠିର ବଚନରେ ସେହିରୂପେ କଲେ ।
ନାରୀମାନେ ଦେଖି ଅନ୍ତଃପୁରକୁ ସେ ଗଲେ ॥
ଏମନ୍ତ ସମୟେ ତହିଁ ହେଲା ଉପସ୍ଥିତ ।
ଶାଲ୍ୱ ଅନୁଚର ଭାଇ ଅନୁଶାଲ୍ୱ ଦୈତ୍ୟ ॥
ବୋଇଲା ଭାଇଙ୍କ ମୋର ମାରିଥିଲା ହରି ।
ତାହାକୁ ମାଇଲେ ଯିବ ବଇରି ମୋହର ॥
ପ୍ରଦ୍ୟୁମ୍ନ ସୈନ୍ୟ ଘେନି ହସ୍ତିନାକୁ ଗଲା ।
ଯୁଧିଷ୍ଠିରଙ୍କ ଅଶ୍ୱମେଧ ନିକଟେ ହୋଇଲା ॥
ମନେ ବିଚାରିଲା ଯଜ୍ଞ ସ୍ଥାନକୁ ମୁଁ ଯିବ ।
ଯଜ୍ଞ ଋଷିମାନଙ୍କୁ ମୁଁ ଧରିଣ ମାରିବ ॥
ଯଜ୍ଞଅଶ୍ୱକୁ ସେଠାରୁ ହରିଣ ଆଣିବ ।
କୃଷ୍ଣ ଅର୍ଜୁନ ଦୁହିଁଙ୍କ କୌଶଳେ ବାନ୍ଧିବ ॥
ଏମନ୍ତ ବିଚାର କରି ସୈନ୍ୟ ଘେନିଗଲା ।
ହସ୍ତିନା ଭୁବନେ ଯାଇ ପ୍ରବେଶ ହୋଇଲା ॥
ଶତ୍ରୁପୁର କରିଣ ବେଢ଼ିଲା ହସ୍ତିନାକୁ ।
ଯୁଧିଷ୍ଠିର ସତ୍ୱରେ ଡାକିଲା ଶ୍ରୀକୃଷ୍ଣଙ୍କୁ ॥
ଦେଖିଣ ଅନୁଶାଲ୍ୱକୁ ହସି ମଧୁହାରୀ ।
ବୋଲନ୍ତି ପୃଥ୍ୱୀଭାର ନାଶିବ ଯାକୁ ମାରି ॥
ଏମନ୍ତ ସେ ଦେଖୁ ଦେଖୁ ଦୈତ୍ୟ ବୀରବର ।
ଯଜ୍ଞଶାଳୁ ଅଶ୍ୱ ହରି ନେଲାକ ସତ୍ୱର ॥
ଅଶ୍ୱକୁ ରଥରେ ଆଣି କଲାକ ବନ୍ଧନ ।
କ୍ରୋଧଭରେ କମ୍ପେ ତାର ଅଙ୍ଗ ଘନ ଘନ ॥
ମନ୍ତ୍ରୀଗଣ ଆଦି ସର୍ବ ବୀରଙ୍କୁ ଡାକିଲା ।
ମାରମାର ବୋଲି କ୍ରୋଧେ ବଚନ ବୋଇଲା
ଶାଲ୍ୱନାମେ ଭାଇଙ୍କି ମୋ ମାରିଅଛି ହରି ।
ଆଜ ଭାଇ ଶତ୍ରୁକୁ ମୁଁ ନେବି ବାନ୍ଧିକରି ॥
ପ୍ରଦ୍ୟୁମ୍ନ ସହିତେଣ ଏଥେଁ ସେ ଅଛଇ ।
ଆଣିଛି ଯୁଧିଷ୍ଠିର ଯଜ୍ଞ କରିବାର ପାଇଁ ॥
ବେଗେ ମୁଁ ଆସିଲି ଏଥି ସେକଥା ଜାଣିଣ ।
କାଳେ ପଳାଇ ନ ଯାଏ ରାଧିକା ରମଣ ॥
ସେପରି ପଡ଼ନ୍ତେ ଅରଜୁନ ହରି ଦୁଇ ।
ଯେ ଦେଖିବ ସେ ଧରିବ ମୋତେଦେବ କହି
ଭୀମ ଆଦି ଯେତେବୀର ପକାଇବ ମାରି ।
କୃଷ୍ଣ ଅରଜୁନ ଦୁଇ ବାନ୍ଧେ ନେବି ଧରି ॥

ଦେଖିଲେ କୃଷ୍ଣଙ୍କୁ କେହି ଛାଡ଼ିଣ ନ ଦେବ ।
ନିଜେ ଧରି ନ ପାରିଲେ ମୋତେ ଡାକିଦେବ
ସେ ମୋହର ଭ୍ରାତୃହନ୍ତା ଜାଣ ସେ ଅବଶ୍ୟ
ନିଶ୍ଚୟ ତାହାକୁ ମୁଁ କରିବି ପ୍ରାଣେ ନାଶ ॥
ଆଜ ମୁଁ ଶ୍ରୀକୃଷ୍ଣଙ୍କୁ ଉଚିତ ଶିକ୍ଷାଦେବି ।
କେତେ ବଳ ଧରେ ସେହି ଆଜ ମୁଁ ଦେଖିବି
ଦେଖିବି ଅର୍ଜୁନ କୃଷ୍ଣ ଆଉ ଭୀମସେନ ।
ପ୍ରଦ୍ୟୁମ୍ନାଦି ଯେତେକ ଯାଦବ ଯୋଦ୍ଧାଗଣ ॥
ଧର୍ମଙ୍କ ସାକ୍ଷାତେ ହେବ ପ୍ରମାଣ ତାହାର ।
ଦେଖାଯିବ କେ ଯୁଝିବ ମୋହର ସଙ୍ଗର ॥
ଯେଉଁଲୋକ ବିନାଦୋଷେ ମୋ ଭାଇକୁ ହତ
କରିଛି ତାକୁ ଛାଡ଼ିବା ନୁହଇ ଉଚିତ ॥
ଭାଇହେଉ ବନ୍ଧୁହେଉ ଯୋଦ୍ଧାହେଲେ ହେଉ
ଯେ କୃଷ୍ଣଙ୍କୁ ନ ଧରିବ ସେ ମୋ ପାଶୁ ଯାଉ
ରଥ ଗଜ ସୈନ୍ୟେ ମୋର ନାହିଁ ପ୍ରୟୋଜନ
ଯେବେ ମୁଁ ନ ପାରେ ଯୁଦ୍ଧେ ରୁକ୍ମିଣୀରମଣ
ଯେବେ କେହି ମୋର ଅନୁଚର ଦୋଷକରେ
ସକଳ ସହିବ ଏହା କହୁଛି ମୁଁ ସ୍ଥିରେ ॥
ମାତ୍ର ଯେବେ କେହି କୃଷ୍ଣ ସଙ୍ଗେ ରଣକରି ।
ନ ଜିଣିବ ସେ ଲୋକକୁ ଦଣ୍ଡ ଦୂର କରି ॥
ମହାବୀର ବୋଲି ଯାର ହୋଇଅଛି ମାନ୍ୟ ।
କ୍ଷତ୍ରିୟ କୁଳରେ ଯେହୁ ଅଟେ ଅଗ୍ରଗଣ୍ୟ ॥
ଧିକ ତାର ଭୁଜବଳ ବୀରତ୍ୱ ତାହାର ।
କୃଷ୍ଣଙ୍କୁ ଯେ ନ ପାରିବ ଧରି ନିଜକର ॥
ଦୂର କରିବାକୁ ମୁହିଁ ପୂର୍ବ ଅଭିମାନ ।
କୃଷ୍ଣଜୟ ବିନା କିଛି ଚିନ୍ତା ନୋହେ ମନ ॥
ଯେ ମୋତେ ବାନ୍ଧିଣ ଧରି ଦେବ ଶ୍ରୀହରିଙ୍କୁ ।
ସେନାପତି କରି ଅର୍ଦ୍ଧେ ରାଜ୍ୟ ଦେବି ତାକୁ ॥
ଯେ ମୋତେ ଧରିଣ ଆଣି ଦେବ ଚକ୍ରଧର ।
ଅପରାଧ କେବେଁ ମୁହିଁ ନ ଧରିବି ତାର ॥
ତାହାକୁ ଦେଖିଣ ନ ଧରିବ ଯେହୁ ପୁଣ ।
ସର୍ବଦା ସେ ମୋର ଶତ୍ରୁ ଜାଣ ସୈନ୍ୟଗଣ ॥
ହରି ବିନା ଅନ୍ୟ ଶତ୍ରୁ ଦୈତ୍ୟଙ୍କର ନାହିଁ ।
ସର୍ବଦା ଅସୁର ଦେଖି ସଂହାର କରଇ ॥
ଏହୁ କଥା ବିଚାରିଣ ବେଗେ ଯୁଦ୍ଧ କର ।
ଯେ ଯେମନ୍ତେ ପାର ବେଗେ ଧର ଅବା ମାର

ତାର ମହିମା ସହଜେ ନୁହଇ ଗୋଚର ।
ପୁରାଣ ପୁରୁଷ ସେ ଅଟଇ ଚକ୍ରଧର ॥
ଜଳ ସ୍ଥଳ ନଦନଦୀ ପର୍ବତ କନ୍ଦର ।
ସର୍ବ ଠାବେ ପୂରିଥାଏ ସେହି ନିରନ୍ତର ॥
ବ୍ରହ୍ମାଦି ଦେବତା ଅନ୍ତ ନ ପାବନ୍ତି ତାର ।
ସର୍ବଦା ଅଶ୍ୱକୁ ଧରି ଥାଏ ସେ ହସ୍ତର ॥
ମହାପତି ଗରୁଡ଼ ଯା ବାହନ ଅଟଇ ।
ଦେବ ଦାନବ ରଥେ ଯେ ସର୍ବଦା ଭ୍ରମଇ ॥
ଅନନ୍ତ ଶକ୍ତି ଅଟଇ ଯେହୁ ପ୍ରଭୁଙ୍କର ।
ଭକତ ଭାବନା ମତେ ଧରେ ଯେ ଶରୀର ॥
ଏମନ୍ତ ବେହାର ହରିଙ୍କର ଅଛେ ଠାଣି ।
କେ ପୁଣି ଧରିବ ତାଙ୍କୁ ଭକ୍ତି ନ କରଣି ॥
କେବଳ ଭକତ ଭାବେ ହୁଅନ୍ତି ସେ ବଶ ।
ବଳ ବୀର୍ଯ୍ୟ ଯୁଦ୍ଧେ ସମାନ ହେବେ ତ୍ରିଦଶ ॥
ପୂର୍ବେ ଧ୍ରୁବ ପ୍ରହଲାଦ ବଳି ଦଣ୍ଡଧାରୀ ।
ବାନ୍ଧିଣ ରଖିଲେ ଭକ୍ତି ପାଶେ ନରହରି ॥
ଜଣେ ଅଛୁ ଶୂନ୍ୟରେ ଜଣେକ ପାତାଳରେ ।
ନିକଟରେ ନାହିଁ କେହି ତା ସମାନ ବୀରେ ॥
ବିଭୀଷଣ ଧରି ଜାଣେ ଲଙ୍କାରେ ଅଛଇ ।
ପ୍ରହ୍ଲାଦ ନାରଦ ଧରି ପାରନ୍ତି ଏ ଦୁଇ ॥
ସତ୍ୟଭାମା ନାମରେ ତାହାର ଏକ ନାରୀ ।
ବଶକରି ପାରିଜାତ ଆଣିଲା ସୁନ୍ଦରୀ ॥
ଇନ୍ଦ୍ରସଙ୍ଗେ ବାଦୀ ହୋଇ ପାରିଜାତ ନେଲେ
ପ୍ରେମରୂପ ଦଉଡ଼ିରେ ଗୋପୀ ବାନ୍ଧିଥିଲେ ।
କିଛି ଜାଣେ ଭଉଣଳ ବୀର ବିଭୀଷଣ ।
କୃଷ୍ଣଙ୍କୁ ସେ ବାନ୍ଧିଥିଲା ଭକ୍ତିପାଶେ ପୁଣି ॥
ପ୍ରହ୍ଲାଦ ନାମରେ ଦୈତ୍ୟ ହିରଣ୍ୟର ସୁତ ।
ତା ଭକ୍ତିରେ ବନ୍ଧୁଥାନ୍ତି ତା ତୁଲେ ଅଚ୍ୟୁତ ॥
କୃଷ୍ଣଙ୍କୁ ବଶ କରିବା ଶକ୍ତି ଜାଣେ ଏବେ ।
ଭକ୍ତିରେ କେବଳ ବଶ କହୁଛି ପ୍ରଭାବେ ।
ଯାହା ହେଉ ଆଜ ସେହି କୃଷ୍ଣ ମୋହ ତୁଲେ
କିପରି କରିବେ ଯୁଦ୍ଧ ଦେଖିବି ମୁ ଡୋଳେ ॥
ଭକ୍ତିବଳେ କୃଷ୍ଣପ୍ରତି ଶକ୍ତି ପ୍ରକାଶିବ ।
ଭକ୍ତବନ୍ଧୁ ଶ୍ରୀକୃଷ୍ଣଙ୍କୁ ଅବଶ୍ୟ ଧରିବ ॥
କହିଣ ଏସନ ବୀର ଧରି ଧନୁଶର ।
ଗୃଧ୍ରବ୍ୟୂହ କରିଣ ସେ ଚଳିଲା ସତ୍ୱର ॥
ଶ୍ୱେତଛତ୍ର ଅସଂଖ୍ୟ ପତାକା ଶୋଭାପାଏ ।
ସତେକି ସ୍ୱର୍ଗ ଛାଡ଼ିଲା ବଳେ ଦେବରାୟେ ॥
ପ୍ରଚଣ୍ଡ ବେଗରେ ଶୁଣ୍ଢ କରି ଉତ୍ତୋଳନ ।
ମଦ ମତ୍ତଭରେ ହସ୍ତୀ କରିଲେ ଧାବନ ॥
ରଥ ଗଜ ଅଶ୍ୱ ଆଦି ଯେତେ ସୈନ୍ୟସେନା
ବୀର ଦର୍ପେ କମ୍ପାଇଣ ଦେଲେ ସେ ହସ୍ତିନା
ଦିବ୍ୟ ଅସ୍ତ୍ର ଦିବ୍ୟ ଶସ୍ତ୍ର ଧାରଣ କରିଣ ।
ପ୍ରଚଣ୍ଡ ମାର୍ତ୍ତଣ୍ଡ ପ୍ରାୟେ ତେଜ ଶୋଭମାନ ।
ଅକସ୍ମାତେ ଏପରି ଦେଖିଣ ଅଶ୍ୱ ରୈସା ।
ବିଷାଦିତ ହୋଇଲେ ଯୁଧିଷ୍ଠିର ଦଣ୍ଡଧାରୀ ।
ଏଥୁଅନ୍ତେ ଯାହା ହେଲା ଶୁଣ ଦେଇ ମନ ।
ମହାଦେବ ବୋଲେ ରଖ ଶ୍ରୀରାଧାରମଣ ।

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାରକଥା ପ୍ରବନ୍ଧେ
ଦ୍ୱାଦଶୋଽଧ୍ୟାୟଃ ।

---

## ତ୍ରୟୋଦଶ ଅଧ୍ୟାୟ

ନମାମି ସୃଷ୍ଟିକର୍ତ୍ତାରଂ ସର୍ବେଷଂ ରକ୍ଷକଂବରଂ
ମୁକ୍ତିଦଂ ବନ୍ଦନୀୟଞ୍ଚ ଦେବଦେବଂ ଜଗଦ୍‌ଗୁରୁ

**ଅଶ୍ୱ ମୋଚନ ସକାଶେ ଯୁଦ୍ଧ ଓ
ଶ୍ରୀକୃଷ୍ଣଙ୍କ ପ୍ରତି ସତ୍ୟଭାମା ଉକ୍ତି**

ଜନ୍ମେଜୟ ପଚାରିଲେ ଶୁଣ ମୁନିବର ।
ଏଥୁଅନ୍ତେ କିସ ହେଲା କହ ମୋ ଆଗର ॥
ତବମୁଖୁ ଶୁଣି ମୁହିଁ ହୋଇବି ପବିତ୍ର ।
ଶୁଣିଣ ବୋଲନ୍ତି ମୁନି ଶୁଣ ନୃପନାଥ ॥
ଅନୁଶାଲ୍ୱ ଯଜ୍ଞ ଅଶ୍ୱ ହରଣ କରନ୍ତେ ।
ପାଣ୍ଡବେ ଚିନ୍ତିତ ହେଲେ ଅଶ୍ୱର ନିମନ୍ତେ ॥
ଦେଖିଲେ ଅଶ୍ୱକୁ ନେଉଅଛି ଅନୁଶାଲ୍ୱ ।
କ୍ରୋଧେ କେଶବ ସହିତେ ଗମିଲେ ସକଳ ॥
ଏ ଅଦ୍ଭୁତ କର୍ମ ଦେଖି ପ୍ରଭୁ ନାରାୟଣ ।
ଯୁଧିଷ୍ଠିରଙ୍କୁ ଡାକିଣ ବୋଲନ୍ତି ବଚନ ॥
ଶୁଣ ରାୟେ ଯୁଧିଷ୍ଠିର ଅବର ସମସ୍ତେ ।
ସ୍ତ୍ରୀ ପୁରୁଷ ଆଦି ଏଥେଁ ରହିଅଛ ଯେତେ ।
ପ୍ରଦ୍ୟୁମ୍ନାଦି ଯେତେ ବୀର ସର୍ବେ ଚାଲିଯାଅ ।
ସାବଧାନେ ନାରୀଗଣେ ରକ୍ଷା କରିଥାଅ ॥
ବୃକୋଦର ପାର୍ଥ ବୃଷକେତୁ ସଙ୍ଗେ ଘେନି
ଯାଉଅଛି ଅଶ୍ୱ ମୁଁ ଆଣିବି ଏହିକ୍ଷଣି ॥

ନ ହୁଅ ଶଙ୍କିତ ତୁମ୍ଭେ କେହି ନାରୀଗଣ ।
ପ୍ରାଣଥିଲେ ସହିବ କେ ଏଡ଼େ ଅପମାନ ॥
ପୁଣି ବୀରମାନଙ୍କୁ ପ୍ରବୋଧ କରି ହରି ।
ସମସ୍ତଙ୍କୁ ବୁଝାଇଣ କହନ୍ତି ଏପରି ॥
ଶୁଣ ଶୁଣ ବୀରମାନେ ଆମ୍ଭର ବଚନ ।
ଯଜ୍ଞ ଅଶ୍ୱ ଆଣ ବେଗେ କରି ଘୋର ରଣ ॥
ଯେ ଆଣିବ ଯଜ୍ଞଅଶ୍ୱ ଅସୁର କରରୁ ।
ଏ ମୁଦ୍ରିକା ନେବ ସେହି ମୋହର ହସ୍ତରୁ ॥
ବୀରମାନେ କୃଷ୍ଣବାଣୀ ଶୁଣିଣ ସେ କ୍ଷଣ ।
ମନେ ମନେ ଚିନ୍ତାନଳେ ହୋଇଲେ ଦହନ
କେହି ବାହାରିଲେ ନାହିଁ ହୋଇ ଆଗଭର ।
ଦେଖିଣ ସୈନ୍ୟଙ୍କ ଦଶା ଶ୍ରୀହରି ଆତୁର ॥
ନିଜର ସୁତ ପ୍ରଦ୍ୟୁମ୍ନେ ଆଗରେ ଦେଖିଲେ ।
ଡାକିଣ ତାହାଙ୍କୁ ପ୍ରଭୁ ବଚନ ବୋଇଲେ ॥
ବୀରମଧ୍ୟେ ବୀରବର ବୋଲି ଯେବେ ନାମ ।
ଏ ମୁଦ୍ରିକା ମୋ ହସ୍ତରୁ କରରେ ଗ୍ରହଣ ॥
ବୀରପଣ ଦେଖାଇଣ ସର୍ବ ସାକ୍ଷାତରେ ।
ମୋହର ଅଛିଡ ତୁ ରଖ ବାବୁ ଏବେ ବେଳେ
ତୋର ପୌରୁଷ ଦେଖିଣ ତୋଷ ମୁଁ ଲଭିବି
କୁଳମଣ୍ଡନ ବୋଲିଣ ତେବେ ମୁଁ ଜାଣିବି ॥
ପିତାଙ୍କ ବଚନ ଶୁଣି ପ୍ରଦ୍ୟୁମ୍ନ ହର୍ଷରେ ।
ବିଜୟ ମୁଦ୍ରିକା ନେଲେ ଆପଣାର କରେ ॥
ବୋଇଲେ ନ କର ଚିନ୍ତା କେହି ତୁମ୍ଭେମାନେ
ଯଜ୍ଞ ଅଶ୍ୱ ମୁକୁଳାଇ ଆଣିବି ଏକ୍ଷଣେ ॥
ଏସନ କହିଣ ବୀର ହୋଇ କୋପମତି ।
ଧନୁଟଙ୍କାରି ଧଇଲେ ଭୟଙ୍କର ମୂର୍ତ୍ତି ॥
ଗର୍ବଭରେ ତୁଚ୍ଛମଣି ଅନୁଶାଲ୍ୱ ବୀରେ ।
ରଥ ଚଢ଼ି ଧାଇଁ ବୀର ପବନହୁଁ ଖରେ ॥
ଏ ସମୟେ ଶ୍ରୀକୃଷ୍ଣ ବୋଇଲେ ବୀରେ ଶୁଣି
ଅଙ୍ଗ ଯୋଡ଼ିବ ମୁଦ୍ରିକା ମୋ କରେ ଅଛଇ ॥
ଶକ୍ତି ଯେବେ ଥାଏ କାରି ଏ ମୁଦ୍ରିକା ନିଅ
ଶତ୍ରୁ ନାଶି ଅଶ୍ୱ ଆଣି ଗୌରବ ବଢ଼ାଅ ॥
ଶୁଣିଣ ଏସନ ଗିର ବୃଷକେତୁ ବୀର ।
ରଥୁଁ ଓହ୍ଲାଇ ଚଳିଲେ ବେଗେ ଧୀର ଧୀର
କୃଷ୍ଣଙ୍କୁ ପ୍ରଣାମ କରି ମୁଦ୍ରିକା ଆଣିଲେ ।
ମହା ହର୍ଷେ ପ୍ରଦ୍ୟୁମ୍ନର ପଛରେ ଗମିଲେ ॥

ପ୍ରତିଜ୍ଞା କରି ବୋଲନ୍ତି ଶୁଣ ବୀରଗଣ ।
ଆଜ ଅନୁଶାଲ୍ୱ ବୀର କରିବି ବନ୍ଧନ ॥
ଆଣିବି ଏହା ଅଟଇ ମୋ ଦୃଢ଼ ବଚନ ।
ଯେବେ ନ କରିବି ନର୍କେ ହୋଇବି ପତନ ॥
ଶୁଣ ମୋହର ପ୍ରତିଜ୍ଞା କମଳା ରମଣ ।
ଦ୍ୱିଜନାରୀ ହରେ ଯେବେ ଶୂଦ୍ର ମୂଢ଼ଜନ ॥
ଯେଉଁ ପାପ ହୁଏ ତାର ନରେ ନର୍କସ୍ଥିତ ।
ପ୍ରତିଜ୍ଞା ବ୍ୟର୍ଥ ହୋଇଲେ ମୋର ସେହି ଗତି
ପିତୃ ପିତାମହ ଶ୍ରାଦ୍ଧ ଦିନ ଯେଉଁ ନର ।
ହରିନାମ ଛାଡ଼ି ରମେ କାମିନୀ ସଙ୍ଗର ॥
ସଂଯମ ଦିନରେ କରେ ନାରୀ ସହବାସ ।
ନିଶ୍ଚୟ ନରକେ ଯାଇ କରେ ସେହୁ ବାସ ॥
ଯେବେ ମୋର କଥା ମିଛ ହେବ ନାରିପୃଚ୍ଛ
ସେମାନଙ୍କ ସଙ୍ଗେ ମୁହିଁ ହୋଇବି ସମାନ ॥
ଯେବେ ଋତୁକାଳେ ପତ୍ନୀ ସହିତ ରମଣ ।
କରଇ ତାହାର ଗତି ପାଇବି ମୁଁ ପୁଣ ॥
ସ୍ନାନ ଦିନ ଜାଣି ପୁଣି ରମଣୀ ସଙ୍ଗରେ ।
ଯେବେ ନ ରମଇ ତେଜ୍ୟା କରଇ ବୃଥାରେ ॥
ଏଥିଁ ଯେଉଁ ପାପ ପ୍ରଭୁ ହୁଅଇ ତାହାର ।
ସେ ପାପ ହୋଇବ ନିଶ୍ଚେ ମୋର ଚକ୍ରଧର ॥
ଏହି କଥା କହି ବୀର କର୍ଣ୍ଣଙ୍କ କୁମର ।
ମୁଦ୍ରିକା ଘେନିଣ ରଣେ ହେଲେ ଅଗ୍ରସର ॥
ପ୍ରଦ୍ୟୁମ୍ନ ସହିତେ ଦୁହେଁ କରିଲେ ଗମନ ।
ଯେଉଁଠାରେ ଅନୁଶାଲ୍ୱ ଅଛି ବିଦ୍ୟମାନ ॥
ପ୍ରଦ୍ୟୁମ୍ନ ଦେଖିଣ କର୍ଣ୍ଣ କୁମରକୁ କହେ ।
ତୁମ୍ଭର ସଂଗ୍ରାମ ଏବେ କରିବାର ନୁହେଁ ॥
ଦେଖ ରଣ ମୋର ଭଳି ରହିଣ ଏ ସ୍ଥାନ ।
ଏକ୍ଷଣି ସାଧିବି କାର୍ଯ୍ୟ ନାଶି ଶତ୍ରୁଗଣ ॥
ଏପରି କହିଣ ବୀର ହେଲେ ଅଗ୍ରସର ।
ଦେଖି ପ୍ରଦ୍ୟୁମ୍ନଙ୍କୁ ବୋଲେ ଅନୁଶାଲ୍ୱ ବୀର ॥
ହସିକରି ପ୍ରଦ୍ୟୁମ୍ନଙ୍କୁ ବଚନ ବୋଇଲା ।
କି ସାହସେ ଯୁଦ୍ଧକରି ଆସୁ ତୁହି ଭଲା ॥
ଘରେ ମହା ସୁଖଭୋଗ ଛାଡ଼ି ଏ ବୟସେ ।
ରମଣୀ କୋଳ ଛାଡ଼ିଣ ଆସୁ ଯୁଦ୍ଧ ଆଶେ ॥
ଜାଣୁ ନାହିଁ ଯମ ପରେ ଯମ ଅନୁଶାଲ୍ୱ ।
ବାଳୁତ କୁମର ତୁହି ଏଥୁଁ ବେଗେ ଚଳ ॥

ହେ ଅନଙ୍ଗ ଅଙ୍ଗହୀନ ଶିବଙ୍କ କୋପରେ ।
କେ ନ ଜାଣେ ଏହା ଏହି ତ୍ରିଲୋକ ମଧ୍ୟରେ
ଆଜ ଅଙ୍ଗ ଧରଣ ଅଛୁ ତୁ ଯୁଦ୍ଧକର ।
ଦଗଧ ହୋଇ ମୋ ଶରେ ଯିବୁ ଯମପୁରୀ ॥
ଜାଣେ ମୁହିଁ ଭଲକରି ତୁମ୍ଭ ବଳ ବୀର୍ଯ୍ୟ ।
କେବଳ ପୁଷ୍ପକାଣ୍ଡରେ କରୁ ତୁ ଦହୁଯ୍ୟ ॥
ମାତ୍ର ଗୈଶ ରଣ ଜାଣୁ ଆରେ ବୀରମଣି ।
ମୋ ସମ୍ମୁଖେ ପଡ଼ିଲୁଣି ଯିବୁ ସଞ୍ଜୀବନୀ ॥
ଶୁଣି କ୍ରୋଧେ ପ୍ରଜ୍ୱଳିତ ପ୍ରଦ୍ୟୁମ୍ନ ତକ୍ଷଣେ ।
ହସ୍ତେ ଘେନି ଦିବ୍ୟବାଣ ଦିବ୍ୟ ଶରାସନ ॥
ପାଞ୍ଚଶର ବେଗେ ପ୍ରହାରିଲେ ବୀରବର ।
ଅନୁଶାଲ୍ୱର ତନୁକୁ କଲେ ଜରଜର ॥
ତଦେଖି ଅନୁଶାଲ୍ୱ ବୀର ପେଶି ତୀକ୍ଷ୍ଣଶର ।
ପ୍ରଦ୍ୟୁମ୍ନକୁ ଅଥୟ ସେ କରିଲେ ରଣର ॥
ପୁଣି ଏକଶର ବୀର ବେଗେ ପ୍ରହାରିଲା ।
ପ୍ରଦ୍ୟୁମ୍ନର ହୃଦସ୍ଥଳେ ସେ ଶର ପଡ଼ିଲା ॥
ଶର ଆଘାତରେ ସେ ପ୍ରଦ୍ୟୁମ୍ନ ବୀରବର ।
ଭ୍ରମି ଭ୍ରମିଣ ପଡ଼ିଲେ କୃଷ୍ଣଙ୍କ ପାଶର ॥
ପୁତ୍ରର ମୂର୍ଚ୍ଛିତ କୃଷ୍ଣ ଦେଖି ସେହିକ୍ଷଣେ ।
ମନେ ମନେ ବଡ଼ ଲଜ୍ଜା କଲେ ଜନାର୍ଦ୍ଦନ ॥
ସହି ନ ପାରିଣ କୃଷ୍ଣ ଅତ୍ୟନ୍ତ କୋପରେ ।
ବେଗେ ପଦାଘାତ କଲେ ପ୍ରଦ୍ୟୁମ୍ନର ଶିରେ
ଭର୍ତ୍ସନା କରି କହିଲେ ଧିକରେ ପ୍ରଦ୍ୟୁମ୍ନ ।
ମୋ ପୁତ୍ର ହୋଇଲୁ ଯାହା ନ ହେଲ ମରଣ
କ୍ଷତ୍ରିୟ କୁଳରେ ନିନ୍ଦା ତୋ ଯୋଗୁ ହୋଇଲା
ଏତେ ଦିନେ ବୀରପଣ ତୋର ଜଣାଗଲା ॥
କିଛି ମାତ୍ର ପୁରସ୍କାର ନାହିଁ ଯେ ତୋହର ।
ସମସ୍ତେ ହସିବେ ଦେଖି ସଂସାର ମଧ୍ୟର ॥
ଯା ହେଉ ଧୂଳିରେ ପଡ଼ି କିପାଁ ଅକାରଣ ।
ନ ମରି ବଞ୍ଚିଛୁ ଧିକ ଧିକ ତୋ ଜୀବନ ॥
ଜାଣୁ ତୁତ ନୁହେ ଏହି ଦ୍ୱାରବତୀପୁରୀ ।
ସହଜେ କରିବୁ କ୍ରୀଡ଼ା ଦେଖାଇ ଚାତୁରୀ ॥
ହସ୍ତିନା ନଗରୀ ଅଟେ ବୀରଙ୍କ ସଦନ ।
ଯୁଦ୍ଧକାର୍ଯ୍ୟ ପରୀକ୍ଷାର ଅଟଇ ଏ ସ୍ଥାନ ॥
ଏ ସ୍ଥାନରେ ବୀରପଣ ନ ଦେଖାଏ ଯେହି ।
ବଞ୍ଚିବାର ଅକାରଣ ମରିବା ଭଲ ହିଁ ॥

ତୋହ ଲଗି ଲାଜଭୟେ ଅନ୍ତର ମୋହର ।
ଛିନ୍ନ ଭିନ୍ନ ହେଉଅଛି କି କହିବ ଆର ।
କିପାଁ ଧନୁର୍ବିଦ୍ୟା ଅମ୍ଭେ ତୋତେ ଶିଖାଇଲୁ ।
ସଂସାର ମୁଖରେ ଆସି ନିନ୍ଦାକୁ ପାଇଲୁ ॥
ନାହିଁ ତୋହ ପରି ପୁତ୍ରଠାରେ କାର୍ଯ୍ୟ ମୋର
ଦ୍ୱାରକା ଛାଡ଼ିଣ ଯାଅ କାନନ ମଧ୍ୟର ॥
କ୍ଷତ୍ରି ବୃତ୍ତି ଛାଡ଼ିକରି ଋଷିବ୍ରତ ଧର ।
ଫଳମୂଳ ଭୋଜନରେ ଆତ୍ମା ତୃପ୍ତ କର ॥
ଜଗତେ ତୋର ରହିବା ନୁହଇ ଶୋଭନ ।
ବୈରାଗୀ ପଣରେ ତୁହି ଚଳ ବେଗେ ବନ
ଭକ୍ତିଭରେ ଯାଇ ଶଙ୍କରଙ୍କୁ ପୂଜାକର ।
ତାଙ୍କ ପ୍ରସନ୍ନରେ ଅବା ହୋଇପାରୁ ବୀର ॥
ଯେବେ ମାତାଙ୍କର ଗର୍ଭମଧ୍ୟେ ମରିଥାନ୍ତୁ ।
କାହିଁପାଇଁ ଆଜ ମୋତେ ଲଜ୍ଜାରେ ପକାନ୍ତୁ ॥
ଶ୍ରୀକୃଷ୍ଣଙ୍କ ବାଣୀ ଶୁଣି ବୀର ବୃକୋଦର ।
ବୋଇଲେ ବଚନ ତାଙ୍କୁ ହୋଇ ଅଗଭର ॥
ଅକାରଣ କୋପ ତୁମ୍ଭେ କରୁଛ ମୁରାରି ।
ହାରିବା ଜିଣିବା ରୀତି ଅଛଇ ସବୁରି ॥
ସତ୍ୟ ଅଟେ ପୁତ୍ରଠାରେ ପିତୃ ଅଧିକାର ।
ଅବଶ୍ୟ କହି ପାରନ୍ତି ଯା ଇଚ୍ଛା ତାଙ୍କର ॥
ବୃଦ୍ଧାବସ୍ଥା ହେଲେ ପୁତ୍ର ପିତା ନିକଟରେ ।
ବାଲ୍ୟଭାବେ କରଯୋଡ଼ି ଥାଏ ନିରନ୍ତରେ ॥
ପୁତ୍ରର ଅନ୍ୟାୟ କାର୍ଯ୍ୟ କରିଲେ ଦର୍ଶନ ।
ଶାସନ କରିବା ବିଧି ଅଟେ ସୁଶୋଭନ ॥
ମାତ୍ର ଅକାରଣ ତୁମ୍ଭେ ଏତେ କଟୁବାଣୀ ।
ସମସ୍ତ ସାକ୍ଷାତେ କିପାଁ କୁହ ଚକ୍ରପାଣି ॥
ତୁମ୍ଭେ କି ନ ଜାଣ ପ୍ରଭୁ ଶରୀର ବେଦନା ।
କଷ୍ଟର ବ୍ୟବସ୍ଥା ପ୍ରଭୁ କିସ ବା ଜାଣ ନା ॥
ବୃକୋଦର ବାଣୀ ଶୁଣି ପ୍ରଭୁ ନାରାୟଣ ।
ବୋଇଲେ ବଚନ ତାଙ୍କୁ ଉଚିତ ବିଧାନ ॥
ଯାହାହେଉ ତୁମ୍ଭେ ବୀରବର ଭୀମସେନ ।
ବର୍ତ୍ତମାନ କର ଯାତ୍ରା ସେ ସଂଗ୍ରାମ ସ୍ଥାନ ।
ଦେଖିଯାଇ ବେଗେ ତୁମ୍ଭେ ବୃଷକେତୁ ବୀର
ଏକାକୀ କରଇ ଯୁଦ୍ଧ ଚଳ ହେ ସତ୍ୱର ॥
ବୟସେ ନିତାନ୍ତ ଶିଶୁ ଯୁଦ୍ଧରେ ପ୍ରବୀଣ ।
ଦେଖ କିପରି କରୁଛି ଯୁଦ୍ଧ ସେ ବହୁଣ ॥

ପ୍ରବୃତ୍ତ ବୀରବର ପୁତ୍ର ବୀର ଶିରୋମଣି ।
ତା ସମାନ ଦେଖେ ନାହିଁ ମୁହିଁ ଏ ଅବନୀ ॥
ଶ୍ରୀକୃଷ୍ଣଙ୍କ ବାଣୀ ଶୁଣି ବୀର ଭୀମସେନ ।
ପ୍ରଦ୍ୟୁମ୍ନଙ୍କୁ ସଙ୍ଗେ ନେଇ କରିଲେ ଗମନ ॥
ସୈନ୍ୟନାଶ କରିଲେ ପ୍ରଚଣ୍ଡ ଗଦାଘାତେ ।
ଦେଖାଇଲେ ଦର୍ପବୀର ସମସ୍ତ ସାକ୍ଷାତେ ॥
ଅସୁର ସୈନକୁ ଗଦାଘାତରେ ପିଟିଲେ ।
ଅସଂଖ୍ୟ ସୈନ୍ୟ ଭୂମିରେ ଲୋଟିଣ ପଡ଼ିଲେ ।
ରଥୀ ସାରଥିମାନଙ୍କ ଉପରେ ପିଟନ୍ତି ।
କାଳାନ୍ତକ ଯମ ସମ ଭ୍ରମଣ କରନ୍ତି ॥
ଚେଡ଼େବଡ଼ ସୈନ୍ୟ ବୀର କ୍ଷଣକେ ମାଇଲେ
ଆବର ଯେତେକ ଥିଲେ ପାଦରେ ଦଳିଲେ
ହାତୀଙ୍କର ଶୁଣ୍ଢ଼ଧରି ହାତୀର ଉପରେ ।
କଚାଡ଼ନ୍ତେ ମେଦିନୀ କମ୍ପଇ ଥରହରେ ॥
ଏହିରୂପେ ସର୍ବ ସୈନ୍ୟ ନାଶକରେ ବୀର ।
ବହିଲା ଶୋଣିତ ନଦୀ ତହିଁ ଖରତର ॥
କୁଢ଼ କୁଢ଼ ହୋଇ ସୈନ୍ୟ ଗଲେକ ଭାସିଣ
କାହା ଶିର ନାହିଁ କଏ ପଡ଼ିଛି ଛିଡ଼ିଣ ॥
ଯେଉଁପରି ସର୍ପମାନେ ଜଳେ ଭାସିଯାନ୍ତି ।
ସେପରି ରକ୍ତ ନଦୀରେ ମଡ଼ାଏ ଭାସନ୍ତି ॥
ସୃଷ୍ଟି ପ୍ରଳୟ କାଳରେ ଯେହ୍ନେ ଭୟଙ୍କର ।
ତେସନ ଶବ୍ଦ କରନ୍ତି ପବନ କୁମର ॥
କୃତକେତୁ ବୀରବର ଯୁଦ୍ଧ କରୁଥିଲେ ।
ରଥ ଗଜ ଅଶ୍ୱ ସୈନ୍ୟ ଅନେକ ମାଇଲେ ॥
ଦେଖିଲେ ଭୀମଙ୍କ ଯୁଦ୍ଧ ଅତି ଅଗୋଚର ।
ଆଗେ ଉଭା ହୋଇ ତାଙ୍କୁ କହିଲେ ଉତ୍ତର ॥
ବୋଇଲେ ଏ ଯୁଦ୍ଧ ମୁହିଁ କରୁଅଛି ଜାଣ ।
କିପାଁ ମୋର ଯଶ ନାଶ କରୁଛ ଆପଣ ॥
କହିବେ ବାଳକ ପୁଅ ଫଳ ଘେନୁଥିଲା ।
ପିତା ଆସି ତାହାଠାରୁ ଛଡ଼ାଇଣ ନେଲା ।
ଏ ଫଳ ଲଭିଲେ କି ନୋହିବ ତୁମ୍ଭ ଯଶ ।
କରିବି ସଂସାର ମୁଖେ ହେବ ପରିହାସ ॥
ତୁମ୍ଭେ ବୀର ସିଂହ ଜାଣ ଶୃଗାଳ ଅସୁର ।
ତା ସଙ୍ଗେ ଯୁଦ୍ଧକରିବା ନୁହଇ ବଗୁର ॥
କୃତକେତୁ ବାଣୀ ବୀର ସେକ୍ଷଣି ଶୁଣିଲେ ।
ଅତ୍ୟନ୍ତ ଆନନ୍ଦ ହୋଇ ବଚନ କହିଲେ ॥

ବୋଇଲେ ଏ ଯୁଦ୍ଧ ଫଳ ଜିଣିକରି ମୁହିଁ ।
ଦେଇଯିବ ତୋର ହାତେ ନ ବଗୁର ତୁହି ॥
ଏମନ୍ତ ଅନୁଶାଲ୍ୱକୁ ବୀର ଯେ ଦେଖିଲେ ।
ଦେଖି ଅନୁଶାଲ୍ୱ ବେଗେ ବାଣ ପ୍ରହାରିଲେ
ସହି ସେହିବାଣ ଭୀମ ଶର ବୃଷ୍ଟିକଲେ ।
କ୍ରୋଧେ ଅନୁଶାଲ୍ୱ ବଜ୍ରଶରେକ ମାଇଲେ ॥
ଗଦା ଆଡ଼ କରିଣ ବଞ୍ଚିଲେ ବୀରବର ।
ଗଦାଘାତେ ସାରଥିକ କଲେ ଶତେ ଚୂର ॥
ଏସନ ଦେଖିଣ ଅନୁଶାଲ୍ୱ ବୀରବର ।
କାଳାନ୍ତକ ସମ ଶର କରିଲେ ପ୍ରହାର ॥
ସେ ଶର ଆଘାତେ ଭୀମ ହୋଇଲେ ଅଜ୍ଞାନ
ସଂଗ୍ରାମ ଭୂମିରେ ବୀର କରିଲେ ଶୟନ ॥
ଭୀମର ପଡ଼ିବା ଦେଖି କୃଷ୍ଣ କୋପଭରେ ।
ରଥ ଚଳାଇଣ ବେଗେ ସମରେ ପଶିଲେ ॥
କୃଷ୍ଣେଦେଖିଅନୁଶାଲ୍ୱବୋଲେକୋପେବାଣୀ
ମୋ ଭାଇଙ୍କ ନାଶ କରିଅଛୁ ଚକ୍ରପାଣି ॥
ଦେଖ ତୁମ୍ଭ ପଦ୍ମନଙ୍କୁ ମୋହ ମୁହିଁ କଲି ।
ଏକ ଶରେ ଭୀମଙ୍କୁ ଅଚେତ କରିଦେଲି ॥
ତୋତେ ଖୋଜୁଥିଲି ହରି ସବୁଅଡ଼େ ମୁହିଁ ।
ମୋହର ସମ୍ମୁଖେ ଦିନେ ନ ପଡ଼ିଲୁ ତୁହି ॥
ଆଜ ପଡ଼ିଅଛୁ ଭେଟ ମୋହର ଆଗରେ ।
ଏହିକ୍ଷଣି ପେଶିବ ମୁଁ ତୋତେ ଯମପୁରେ ॥
ପୂର୍ବେ ଶୁଣିଅଛି ମୁହିଁ ଏମନ୍ତ ବଚନ ।
ଶ୍ରୀକୃଷ୍ଣଙ୍କ ସମ୍ମୁଖେ ମରନ୍ତି ଯେତେଜନ ॥
କେବେହେଁ ସେମାନଙ୍କର ପତନ ନୁହଇ ।
ଏମନ୍ତ ବଚନ ପୁଣି ଶୁଣିଅଛି ମୁହିଁ ॥
ସହଜେ ଅଟ ହେ ତୁମ୍ଭେ କଳ୍ପାନ୍ତ ପୁରୁଷ ।
ମୁଁ ସାମାନ୍ୟ କ୍ଷତ୍ରୀ ରଣେ ଦେଇଅଛି ତ୍ରାସ ।
ଭକ୍ତିଭରେ ହରି ତୋତେ ଜିଣିବି ସମରେ ॥
କିପରି କରିବ ଯୁଦ୍ଧ ମୋହର ସଙ୍ଗରେ ॥
ଏହିକ୍ଷଣି ଶରେ ତୋତେ କରିବି ନିଧନ ।
ମୋ ଆଗରୁ ବର୍ତ୍ତିଣ ନ ଯିବୁ ନାରାୟଣ ॥
ଭକ୍ତ ମାନ ରକ୍ଷା ପାଇଁ ଜନମ ତୋହର ।
ବଳଦମ୍ଭେ କି କାର୍ଯ୍ୟ ବେଗେ ରହି ଯୁଦ୍ଧକର ॥
ଏତେ କହି କୃଷ୍ଣଙ୍କୁ ବନ୍ଧିଲା ଗୁରୁଶର ।
ମନେ ମନେ ଚିନ୍ତା କରେ କମଳାର ବର ।

ସେ ଶର ଆଘାତେ ହରି ଛନ୍ନ ଛନ୍ନ ହେଲେ ।
ରଥ ସହିତରେ ଶୂନ୍ୟ ଭୁବନେ ଯେମିଲେ ॥
ନ ଦେଖି ଯୁଦ୍ଧରେ କୃଷ୍ଣେ ଡ଼ାକଇ ଅସୁର ।
କିପାଇଁ ପଳାଇ ଯାଉଅଛ ଚକ୍ରଧର ॥
କେବଣ ପାତକ ମୁଁ ପୂର୍ବରେ କରିଥିଲି ।
ତୋହର ସଙ୍ଗତେ ଯୁଦ୍ଧ କରି ନ ପାରିଲି ॥
କେବଳ ମୋର ଅଧର୍ମ ଦୋଷୁ ପଦ୍ମମୁଖୀ ।
ଲୁଚିଗଲୁ ତୋ ଶ୍ରୀମୁଖ ରୁକ୍ମିଣୀ ନାୟକ ॥
ଜାଣି ଶୁଣି ମୁହିଁ ପାପ କେବେ କରି ନାହିଁ ।
କିପାଇଁ ମୋତେ ଦେଖା ନ ଦେଉ ଭବଗ୍ରାହୀ
କି ଅବା ମୋହର ରାଜ୍ୟେ ପାତକ ହୋଇଲା ।
ଶୂଦ୍ର ନାରୀମାନଙ୍କୁ କି ବ୍ରାହ୍ମଣ ହରିଲା ॥
କିବା ରଜସ୍ୱଳା ନାରୀ ବିବସନେ ହରି ।
ପ୍ରୀତ ପ୍ରେମ ତାହାରି କି ଗଲା ଛାଡ଼ିକରି ॥
ଯେଉଁ ଦୋଷ ମାନେ ପାପ ପୁଣ୍ୟ ଯେ କରନ୍ତି
ଷୋଡ଼ଶ ଅଂଶରେ ରାଜ୍ୟ ରାଜା ଯେ ପାଅନ୍ତି ॥
କି ଅବା ଦୁଷ୍କୃତ ମୋର ରାଜ୍ୟରେ ହୋଇଲା ।
ନୋହିଲେ କିପାଇଁ କୃଷ୍ଣ ଦର୍ଶନ ନ ଦେଲା ॥
ଯେବେ ପୂର୍ବଜନ୍ମେ ଥିବ ମୋହର ସୁକୃତ ।
ତେବେ ମୋ ସହିତ ଯୁଦ୍ଧ କରିବ ଅଚ୍ୟୁତ ॥
ବୋଲନ୍ତି ଯେ ଗଙ୍ଗାତୀର୍ଥେ ସ୍ନାନ ନ କରନ୍ତି ।
ପବିତ୍ର ହୁଅନ୍ତି ତହୁଁ ଉଦକ ପିଇଣ ॥
ସେହି ଜନମାନେ ନିଶ୍ଚେ ହରିଙ୍କି ଦେଖନ୍ତି ।
ତାହାର ସଙ୍ଗରେ ପ୍ରଭୁ ସମର କରନ୍ତି ॥
ଏମନ୍ତ ବଚନ ସେ ଯେ କହନ୍ତେ ଅସୁର ।
ଆଗରେ ତାହାର ଆସି ହେଲେ ଚକ୍ରଧର ॥
ହର୍ଷିଣ ପେଷିଲେ ତିନିଶର ଦଇତ୍ୟାରି ।
ହେଳେଣ ନାଶିଲା ତା ଅସୁର ବେଗକରି ॥
ପୁଣି ଦଶବାଣ ବେଗେ ବିନ୍ଧିଲା ଅସୁର ।
ତାହା ଏକ ଶରରେ ଛେଦିଲେ ଚକ୍ରଧର ॥
ବାଣ ବ୍ୟର୍ଥ ହୁଅନ୍ତେ ମାଇଲା ତୀକ୍ଷ୍ଣବାଣ ।
ସେ ବାଣ ପଡ଼ିଲା ବେଗେ ଶ୍ରୀହରି ହୃଦେଣ ॥
ସେ ଶର ଆଘାତେ ହରି ଭକ୍ତ ମନେ କରି ।
ମୂର୍ଚ୍ଛିତ ହୋଇଲେ ରଥେ ପ୍ରଭୁ ଚକ୍ରଧାରୀ ॥
ତୋଷ ହୋଇ ଅନୁଶାଲ୍ୱ ଉପରେ ଗୋବିନ୍ଦ
ରଥପଦେ ପିଚ୍ଛେ ପ୍ରମାଦ ଗଲେ ଅନିରୁଦ୍ଧ ॥

ଦେଖିଣ ସାରଥି ରଥ ବେଗେ ଘେନିଗଲା ।
ଯୁଧିଷ୍ଠିର ରାଜାଙ୍କ ସମ୍ମୁଖରେ ଜଣାଇଲା ॥
ସଭାଜନେ ଦେଖି ସର୍ବେ କଲେ ହାହାକାର
ପାଣ୍ଡବଙ୍କ ହେତୁ ହେ ବିପତ୍ତି ଶ୍ରୀକୃଷ୍ଣର ॥
ଯୁଧିଷ୍ଠିର ସୈନ୍ୟବଳ ସଂଗ୍ରାମେ ଯେ ଥିଲେ ।
ଶ୍ରୀକୃଷ୍ଣଙ୍କ ମୂର୍ଚ୍ଛା ଦେଖି ସର୍ବେ ପଳାଇଲେ ॥
ପିତା ପୁତ୍ର ବନ୍ଧୁ ଭ୍ରାତା ଯେପରି ଛାଡ଼ିଣ ।
ପଳାଇଲେ ସର୍ବେ ବିକଳରେ ଘେନି ପ୍ରାଣ ॥
ଶ୍ରୀକୃଷ୍ଣଙ୍କ କଥା ଯାଇଁ କହନ୍ତେ ପୁରେଣ ।
ରୁକ୍ମିଣୀ ସହିତେ ସବୁ ଅଇଲେ କାନ୍ଦଣ ॥
ସଚେତ ହୋଇଲେ କୃଷ୍ଣ ଚାହିଁଣ ତାହାଙ୍କୁ ।
ସତ୍ୟଭାମା ପାଦଧରି ବୋଇଲେ କୃଷ୍ଣଙ୍କୁ ॥
ଅହେ ନାଥ ଶୁଣ ତୁମେ ଏବେ ଦାସୀ ଗୀର ।
ବିଚିତ୍ର ମାୟା ତୁମ୍ଭର ଏ ମାୟା ଭଣ୍ଡାର ॥
ତିନି ଭୁବନରେ ଅଛି ତାହାର ଶବଦ ।
ଶତ୍ରୁମାନଙ୍କୁ ନାଶିବ ନୁହିବ ପ୍ରତୀତ ॥
ଏଥୁଁ ଜଣାଯାଏ ପ୍ରଭୁ ଅସୁର ଭକ୍ତରେ ।
ମୋହ ହୋଇ ଭକ୍ତମାନ ରଖିଲ ଧନ୍ଦରେ ॥
ମାନ ନାଥ ପ୍ରଦ୍ୟୁମ୍ନଙ୍କ ଭକ୍ତ କରେ ନାହିଁ ।
ଲୋକମୁଖେ ନିନ୍ଦା କଥା ଦେଲ ହେ ଗୋସାଇଁ
ପ୍ରଦ୍ୟୁମ୍ନର ଦଶା ଦେଖି ପାଦ ପ୍ରହାରିଲ ।
କେ ଜାଣେ ତୁମ୍ଭର ମାୟା ଆପେ ମୋହଗଲ ॥
ଅନଳ ନ ପାରେ ଦହି ବଜ୍ର କାଟେ ନାହିଁ ।
ସମୁଦ୍ର ନଖ କୋଣରେ ଯାଏ ଲୀନ ହୋଇ ॥
ଅମ୍ଭଙ୍କୁ ବିଧବା କରାଇବା ପାଇଁ ହରି ।
ଭାଳିଛ କି ନର ତନୁ ଦେବ ତ୍ୟାଗ କରି ॥
ସଦାବେଳେ ଦାସୀ ଅମ୍ଭେ ତୁମ୍ଭ ପାଦତଳେ ।
କିପାଁ ମାୟା ବିସ୍ତାରୁଛ ଏହି ସଙ୍କ ଛଳେ ॥
ଯା ଅଙ୍ଗରେ ଚନ୍ଦ୍ର ସୂର୍ଯ୍ୟ ହୁଏ ଅତ ଯାତ ।
ତାକୁ ରଣେ ପରାଜୟ ସାମାନ୍ୟ ଦଇତ ॥
ଜରା ମୃତ୍ୟୁ ବ୍ୟାଧି ଆଦି ନ ହୁଏ ଯା ଅଙ୍ଗ ।
ଅକାରଣେ ଛଳକରି ରଣେ ଦେଲ ଭଙ୍ଗ ॥
ଅନାଦି ଅକ୍ଷୟ ଯେତୁ ଜନ୍ମ ମୃତ୍ୟୁ ହୀନ ।
କି ଛାର ରାକ୍ଷସ ଜଣିବ ସେ ନାରାୟଣ ॥
କେତେ ଖେଳାଖେଳ ତୁମ୍ଭେ ଦେବ ଚକ୍ରପାଣି
କିବା ତାହା ଜାଣିବ ମୁଁ ସାମାନ୍ୟ ରମଣୀ ॥

ରାଧା କଳଙ୍କ ପସସ୍ତ କରିବାରେ ଦୂର ।
ଯେ ଲୀଳା କରିଲ ଗୋପେ ଅହେ ମାୟାଧର
ଏଥେ ସେହିପରି ଲୀଳା କରୁଛ ମୁରାରି ।
ବେଗେ ଯଜ୍ଞ ଅଶ୍ୱ ଆଣ ରାକ୍ଷସ ସଂହାରି ॥
ସତ୍ୟଭାମା ବାଣୀ ଶୁଣି ପ୍ରଭୁ ନରହରି ।
କୋପେ ବାହାର ହୋଇଲେ ଦୈତ୍ୟକୁ ସଂହାରି
ଦେଖୁ ଦେଖୁ ରୂପ ଦେଖାଗଲା ଭୟଙ୍କର ।
ସତେକି ବିଶ୍ୱର ଏବାବେଳେ ହେବ ଚୂର ॥
ଏସନ ଗତି ଦେଖିଣ ବୃଷକେତୁ ବୀର ।
କହିଁ ଏଡ଼େ କୋପ ପ୍ରଭୁ ମୋତେ ଆଜ୍ଞା କର ॥
ପ୍ରତିଜ୍ଞା କରୁଛି ମୁହିଁ ସକଳ ସାକ୍ଷାତେ ।
ଅସୁରକୁ ଜିଣି ମୁଁ ଆଣିବି ତୁରିତେ ॥
ଏସନ କହିଣ ବୀର ବେଗେ ଚଳିଗଲା ।
ରାକ୍ଷସର ଉପରେ ସେ ବାଣ ବୃଷ୍ଟି କଲା ॥
ବେନି ମହାବୀର କେହି ନୁହନ୍ତି ସାମାନ୍ୟ ।
ପରସ୍ପରେ ବାଣ ସେ ବର୍ଷନ୍ତି ଅନୁକ୍ଷଣ ॥
କେତେବେଳେ ମୋହଯାଏ କର୍ଣ୍ଣଙ୍କ ନନ୍ଦନ ।
ଚେତ ପୁଣି ଅସୁରକୁ କରେ ହତଜ୍ଞାନ ॥
ଏହିପରି ବେନିବୀର ସମର କରନ୍ତି ।
କେହି କାହାଠାରୁ ଊଣା ବିକ୍ରମେ ନୁହନ୍ତି ॥
କୋପେ ଅନୁଶାଲ୍ୱ ମାରେ ବଜ୍ରସମ ଶର ।
ସେ ଆଘାତେ ମୂର୍ଚ୍ଛାଗଲା ବୃଷକେତୁ ବୀର ॥
ଚେତ ଉଠି କୋପେ ବୀର ମାରେ ପାଞ୍ଚବାଣ ।
ଅଶ୍ୱ ସହ ସାରଥିର ଘେନିଲା ଜୀବନ ॥
ପୁଣି ଏକଶର ବୀର ମାରେ ଅଚମ୍ବିତେ ।
ଅସୁର ଧନୁ କାଟିଲା ଚକ୍ଷୁ ପାଲଟିତେ ॥
ବାଣ ବ୍ୟର୍ଥ ହେବା ଦେଖି ଅନୁଶାଲ୍ୱ ବୀର ।
ଡେଇଁପଡ଼ି ମାଲ୍ଲବନ୍ଧେ କଲକ ସମର ॥
କେହି କାହାଠାରୁ ଊଣା ନୁହେ ବିକ୍ରମରେ ।
ଦୁଇମତ୍ତ ସିଂହ ଯେହ୍ନେ ଲଢ଼ନ୍ତି କ୍ରୋଧରେ ॥
କେବେ ପଡ଼େ କେବେ ଉଠେ ଧସାମସା ହୋନ୍ତି ।
ଏହିପରି ବେନିବୀର ଯୁଦ୍ଧ କରୁଛନ୍ତି ॥
ଏ ସମୟେ ବୀରବର କର୍ଣ୍ଣଙ୍କ ନନ୍ଦନ ।
ଧରିଣ ଅନୁଶାଲ୍ୱକୁ ଘୋଷାଡ଼େ ବହନ ॥
ଟେକା ଖଣ୍ଡେ ପ୍ରାୟ ବୀର ହସ୍ତେ ବୁଲାଇଣ ।
ଫୋପାଡ଼ିଦିଅନ୍ତେ ପଡ଼ି ଅଚେତନ ହୁଅଇଣ ॥

ଦୂରେ ପଡ଼ି ଅନୁଶାଲ୍ୱ ମୂର୍ଚ୍ଛାଗତ ହେଲା ।
ବୃଷକେତୁ ବୀର ତାକୁ ଧରିଣ ଆଣିଲା ॥
ଶ୍ରୀକୃଷ୍ଣଙ୍କ ପାଦତଳେ ପକାଇଲା ନେଇ ।
ବୋଇଲା ମୋ ଦୋଷ ଖଣ୍ଡ ପ୍ରଭୁ ଯଦୁସାଇଁ ॥
ତୁମ୍ଭ କୃପାବଳେ ହରି ଅଜ୍ଞ ଏ ବାଳକ ।
ପଣ ରକ୍ଷା କଲା ଦେଖନ୍ତୁ ଏ ସର୍ବଲୋକ ॥
କର୍ଣ୍ଣସୁତ ବାଣୀ ଶୁଣି ବୋଲନ୍ତି କେଶବ ।
ସାଧୁ ବୀରବର ତୋର ମହିମା ଦୁର୍ଲ୍ଲଭ ॥
ଏଣେ ଅନୁଶାଲ୍ୱ କୃଷ୍ଣପଦ ସ୍ପର୍ଶ ମାତ୍ରେ ।
ଜ୍ଞାନଲାଭ କରିଣ ଚାହିଁଣ ଜ୍ଞାନନେତ୍ରେ ॥
ମୋହନ ମୁରଲୀଧାରୀ ପ୍ରଭୁ ବନମାଳୀ ।
ସମ୍ମୁଖେ ଦେଖିଣ ମନେ ହୋଇ କୁତୂହଳୀ ॥
ଘନଶ୍ୟାମ ରୂପ ଶୋଭା ଇନ୍ଦ୍ରଧନୁ ଜିଣି ।
ଦେଖିଣ ଅସୁର ତୋଷ ହେଲା ମନେ ଗୁଣି ॥
ପ୍ରଶଂସା କରିଲା ସେହି କର୍ଣ୍ଣ ନନ୍ଦନକୁ ।
ବୋଲେ ତୁମ୍ଭ ପ୍ରସାଦେ ପାଇଲି ଶ୍ରୀହରିଙ୍କୁ ॥
ତୁମ୍ଭ ଲାଗି ଦେଖିଲି ମୁଁ ଶ୍ରୀହରି ଚରଣ ।
ଯାହାର ଖଣ୍ଡନେ ଖଣ୍ଡେ ଅକାଳ ମରଣ ॥
ଯାହାଲାଗି ଭାଇବନ୍ଧୁ କୁଟୁମ୍ବେ ମୋହର ।
ମୁକ୍ତ ହୋଇ ସମସ୍ତେ ବସିଲେ ସ୍ୱର୍ଗପୁର ॥
ତୁମ୍ଭେ ମୋତେ ଶ୍ରୀହରିଙ୍କ ସଙ୍ଗ କରାଇଲ ।
ମୋ ସଙ୍ଗତେ ଶତ୍ରୁପଣ ସର୍ବ ଦୂର କଲ ॥
ଧନ୍ୟ ସେ ତୁମ୍ଭର ପିତା କର୍ଣ୍ଣଦାନୀ ଥିଲେ ।
ତାଙ୍କ ବାସନା ତୁମ୍ଭଙ୍କୁ ପ୍ରାପ୍ତ ହେଲା ଭଲେ ॥
ଶୁଣିଣ ବିସ୍ମୟ ଯେ ହୋଇଲେ କର୍ଣ୍ଣସୁତ ।
ଯେ ଭଜଇ ହରିଙ୍କି ସେ ହୁଅଇ ମୁକତ ॥
ଅସୁର ବୋଲଇ ପୂର୍ବେ ଧ୍ରୁବ କଲା ସ୍ତୁତି ।
ଏହି ହରି ତାକୁ କଲେ ଧ୍ରୁବଲୋକେ ସ୍ଥିତି ॥
ଯେତେଯେତେ ଶସ୍ତ୍ର କୃଷ୍ଣ ମୋତେ ପ୍ରହାରିଲେ
ତାଙ୍କର କୃପାରେ ନ ଭେଦିଲା ମୋ ଶରୀରେ ॥
ମୋ ଶସ୍ତ୍ର ଆଘାତେ ପ୍ରଭୁ ହୋଇଲେ ମୂର୍ଚ୍ଛିତ
କି ସ୍ଥିର ଶକତ ମୋର ତାଙ୍କ ଇଚ୍ଛାମତ ॥
ଏ ସକଳ ମାୟା ଜାଣ ଅଟଇ ତାହାର ।
ମୋହର ଶସ୍ତ୍ରରେ ମୋହ ହେଲେ ସେ ଅବର
ଏ ସକଳ ମାୟା ଜାଣ ତାହାଙ୍କର ପୁଣି ।
ଆପଣା ଇଚ୍ଛାରେ ଜନ୍ମ ମନୁଷ୍ୟ ରୂପେଣ ॥

ଗରୁଡ଼ ବାହାନେ ଶ୍ରୀବଧ୍ୱଜ ଯେ ଶୋଭଇ ।
ପୁଣି ନିଜରୂପ ଧରି ବୈକୁଣ୍ଠକୁ ଯାଇ ॥
ପୁଣି ଆସି ହୁଅ ନାଥ ନାନା ଅବତାର ।
ମତ୍ସ୍ୟ କୂର୍ମ ବରାହ ନୃସିଂହ ଦର୍ଶ୍ୟ ଧର ॥
ବ୍ରହ୍ମାଇନ୍ଦ୍ର ଯା ପ୍ରସାଦେ ବୋଲନ୍ତି ବିବେକ ।
ରମ୍ଭା ଆଦି ଅପସରା ସ୍ୱର୍ଗେ ହୋନ୍ତି ଠେକ ॥
ଗୋପାଳ ରୂପରେ ଗୋପେ ଗୋପୀଙ୍କି ମୋହିଲ
କୁବୁଜାକୁ ଅପୂର୍ବ ସୁନ୍ଦରୀ ତୁମ୍ଭେ କଲ ॥
ଦୁର୍ବାସାକୁ ମୋହିକଲ ଶାକ ଅନ୍ନ ଦେଇ ।
କୁରୁ ସଭାରେ ଦ୍ରୌପଦୀ ରକ୍ଷା କଲ ସାଇଁ ॥
ଭକ୍ତିରେ ସୁଦାମା ବିପ୍ର ତଣ୍ଡୁଳ ଖାଇଲ ।
କୋଟି କୋଟି ଧନବସ୍ତ୍ର ତାକୁ ପ୍ରଭୁ ଦେଲ ॥
ଚଉଦ ହରି ମହିମା ବ୍ରହ୍ମାକୁ ଅଗୋଚର ।
କି ବର୍ଣ୍ଣିବ ମୁଁ ରାକ୍ଷସ ଅଧମ ପାମର ॥
ଏମନ୍ତେ ଶ୍ରୀଧରଙ୍କି ବହୁତ ସ୍ତୁତିକଲା ।
ତାହା ଶୁଣି ଆନନ୍ଦ ହୋଇଲେ ନନ୍ଦବାଳା ॥
ଅନୁଶାଲ୍ୱକୁ ସଙ୍ଗରେ ନେଇଣ ଶ୍ରୀହରି ।
ପ୍ରବେଶ ହୋଇଲେ ଯହିଁ ଧର୍ମ ଦଣ୍ଡଧାରୀ ॥
ଅନୁଶାଲ୍ୱ ଯୁଧିଷ୍ଠିଙ୍କୁ ପ୍ରଣାମ କରିଲେ ।
ସମାଦରେ ଯୁଧିଷ୍ଠି ଆସନେ ବସାଇଲେ ॥
ଅନୁଶାଲ୍ୱକୁ ସମ୍ବୋଧି ଯୁଧିଷ୍ଠି ବୋଲନ୍ତି ।
ଆମ୍ଭ ଭ୍ରାତାସହ ଏଥି କରି ହେ ବସତି ॥
ଭୀମାର୍ଜ୍ଜୁନ ସହିତରେ ମିଳିକରି ରୁହ ।
ଯଜ୍ଞକାର୍ଯ୍ୟ କରି ତୁମ୍ଭେ ସର୍ବେ ଯଶ ପାଅ ॥
ଏପରି କହି ଯୁଧିଷ୍ଠି ଭୀମାର୍ଜ୍ଜୁନେ ଆଣି ।
ଅନୁଶାଲ୍ୱ ସହ ପ୍ରୀତି କରାଇଲେ ପୁଣି ॥
ପରସ୍ପରେ ଭ୍ରାତୃସ୍ନେହ ଭାବେ ମତ୍ତ ହୋଇ ।
ସେବାରେ ରହିଲେ ଦମ୍ଭ ଈର୍ଷା ଛାଡ଼ିଦେଇ ॥
ଏଣେ ବୃଷକେତୁ ବୀର ଶୀଘ୍ରେ ଚଳିଗଲା ।
ଅନୁଶାଲ୍ୱ ଅନୁଚରଗଣେ ଆଜ୍ଞାଦେଲା ॥
ତହୁଁ ଯଜ୍ଞ ଅଶ୍ୱକୁ ଆଣିଲେ ବୀରବର ।
ପ୍ରବେଶ ହୋଇଲେ ଆସି ଯୁଧିଷ୍ଠି ପାଶର ॥
ବୃଷକେତୁକୁ ଗ୍ରହିଣ ଧର୍ମ ନୃପବର ।
ଆଲିଙ୍ଗନ କରିଣ ବୋଲନ୍ତି ସ୍ନେହେ ଗାର ॥
ଆରେ ବୀର ବୃଷକେତୁ ତୋହର ଗୁଣରେ ।
ପବିତ୍ର ହୋଇଲି ମୁହିଁ ସର୍ବ ସାକ୍ଷାତରେ ॥
ତୋହପାଇଁ ଅନୁଶାଲ୍ୱ ସଙ୍ଗେ ମିତ୍ରଭାବ ।
ହୋଇଲାରେ ବତ୍ସ ଏ ମୋ କର୍ମର ସୁଭାଗ୍ୟ ॥
ଘଟିଗଲା ଅଘଟଣ ଅଭାଗ୍ୟ ଫଳରେ ।
ସମସ୍ତ କୃଷ୍ଣଙ୍କଲୀଳା କେବା ବୁଝିପାରେ ॥
ଏହା କହି ଧର୍ମରାଜ ଆନନ୍ଦିତ ମନେ ।
ଅଶ୍ୱସହ ପୁର ମଧ୍ୟେ ପ୍ରବେଶ ତକ୍ଷଣେ ॥
ଅର୍ଜ୍ଜୁନଙ୍କୁ ଆଜ୍ଞାଦେଲେ ଯୁଧିଷ୍ଠିର ଦେବ ।
କୃଷ୍ଣସଙ୍ଗେ ଅନୁଶାଲ୍ୱ ଯେତେ ବୀର ସର୍ବ ॥
ନିମନ୍ତ୍ରିତ ହୋଇଥିବା ନର ନାରୀଗଣ ।
ବ୍ରାହ୍ମଣ ପଣ୍ଡିତ ଆଦି ଆତ୍ମୀୟ ସ୍ୱଜନ ॥
ସମସ୍ତଙ୍କୁ ମହାଦରେ ସନ୍ତୋଷ ଭୋଜନ ।
ଅଗୁରୁ ସୁଗନ୍ଧ ମାଳା ସହିତେ ଚନ୍ଦନ ॥
ପିନ୍ଧିବାକୁ ମନୋହର ବସନ ଭୂଷଣ ।
ରହିବାକୁ ଦିଅ ପୁରି ଅତି ଶୋଭାବନ ॥
ଧର୍ମଙ୍କ ଆଦେଶ ପାଇ ବୀର ଅରଜୁନ ।
ବିଧି ଅନୁସାରେ ସମସ୍ତଙ୍କୁ କଲେ ମାନ୍ୟ ॥
ଏହିପରି ଧର୍ମରାଜ ପୁରେ ସମାଦରେ ।
ସମସ୍ତେ ରହିଲେ ଛିତି ମହାଦେବ ବୋଲେ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାର କଥା ପ୍ରବନ୍ଧେ
ନାମ ତ୍ରୟୋଦଶୋଽଧ୍ୟାୟ ।

—o—

## ଚତୁର୍ଦ୍ଦଶ ଅଧ୍ୟାୟ

ଅଜ୍ଞନାତ୍ମଯଦବାଜ୍ଞନାତ୍ମଦସ୍ୟୁଭିବେନନାପୁତ
କୃଷ୍ଣନାବୈବ ଯା ଚନ୍ତା ସଯାତ ପରମଂ ପଦଂ

### ଅଶ୍ୱ ସହିତେ ଅର୍ଜ୍ଜୁନଙ୍କର ମାହୀଷ୍ମତୀ ପୁରୀ ପ୍ରବେଶ

ଏଥୁଅନ୍ତେ ଜନ୍ମେଜୟ ଯୋଡ଼ି ବେନିକର
ବୋଇଲେ ହେ ମୁନି ମୋତେ କର ପ୍ରତିକାର
ଏହାପରେ କିସହେଲା କହ ମୋ ଆଗର ।
ତବ ମୁଖୁ ଶୁଣିଣ ମୁଁ ହୋଇବି ନିସ୍ତର ॥
ବୋଲନ୍ତି ଜୈମିନି ତୁମ୍ଭେ ଶୁଣ ନୃପବର ।
ଏଥୁଅନ୍ତେ ଯାହା ହେଲା ଶୁଣ ସେ ଖବର ।
ଯୁଧିଷ୍ଠିର ନୃପବର ବସାଇ ସଭାରେ ।
ବୋଲନ୍ତି ଶୁଣ ସକଳେ ସ୍ଥିର କରି ଚିତ୍ତ ॥

ସୁରେଶ୍ୱର ସହ ସର୍ବ ନାରୀଗଣ ଯାଅ ।
ଅଶ୍ୱ ବନ୍ଦାପନା କରି ହୁଳହୁଳି ଦିଅ ॥
ଦ୍ରୌପଦୀ ରୁକ୍ମିଣୀ ସତ୍ୟଭାମା ଆଦି ନାରୀ ।
ସ୍ନାନ କରି ଶୁଦ୍ଧ ଭାବେ ଯଜ୍ଞ ଅଶ୍ୱ ଧରି ॥
ଯଜ୍ଞ ଅଶ୍ୱକୁ ସ୍ନାହାନ କରାଇ ତକ୍ଷଣେ ।
ଆନନ୍ଦରେ ବନ୍ଦାପନା କଲେ ନାରୀଗଣେ ॥
ଶ୍ରୀକୃଷ୍ଣଙ୍କ ଆଜ୍ଞାକାରୀ ହୋଇ ବଂଶଧନ ।
ଚୈତ୍ର ମାସ ପୂର୍ଣ୍ଣିମାରେ ଶୁଭ ଅନୁଷ୍ଠାନ ॥
କରିଣ ସକଳେ ମହା ଆନନ୍ଦ ହୋଇଲେ ।
ତହିଁ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ପଚାରିଲେ ॥
ଜଗତକର୍ତ୍ତା ତୁମ୍ଭେ ଅନାଦି ଈଶ୍ୱର ।
କ'ଣ ହୋଇବ କାର୍ଯ୍ୟ କର ତା ବିଗ୍ରହ ॥
କୃଷ୍ଣ ବୋଇଲେ ଅଶ୍ୱକୁ କରାଅ ମଣ୍ଡନ ।
ଅଶ୍ୱରକ୍ଷା ପାଇଁ ସଙ୍ଗେ ଯାଉ ଅର୍ଜୁନ ॥
ମୁନିମାନେ ହର୍ଷମନେ ବେଦ ଉଚ୍ଚାରିଲେ ।
ନାନାବିଧ ନୃତ୍ୟ ଗୀତ ଆରମ୍ଭ କରିଲେ ॥
ଗୁଗୁଳ ଝୁଣା ଧୂପ ଜଳିଲା ବହୁତ ।
ଅଗୁରୁ ଚନ୍ଦନ ଗନ୍ଧେ ସର୍ବେ ଆନନ୍ଦିତ ॥
କୁସୁମ ଶୋଭିତ ହେଲା ଅଶ୍ୱ କଳେବର ।
ଗଳଦେଶେ ପୁଷ୍ପହାର ଦିଶଇ ସୁନ୍ଦର ॥
ଅଶ୍ୱ ବେନି ପାଶେ ପଡ଼େ ଅଲଟ ଚାମର ।
ନାନାଦି ଭୂଷଣ ମଣ୍ଡି ଅଶ୍ୱ କଳେବର ॥
ଅଗ୍ରଜଙ୍କ ଆଜ୍ଞା ପୁଣି କୃଷ୍ଣ ଅନୁମତ ।
ବିଜୟ ଗାଣ୍ଡିବ ସହ ସୁଭଦ୍ରାର ପତି ॥
ପ୍ରବନ୍ଧ ହୋଇଣ ସ୍ଥିରଭାବେ ଠିଆହେଲେ ।
ସମସ୍ତ ନାରୀଏ ମିଳି ଅର୍ଘ୍ୟ ବନ୍ଦାଇଲେ ॥
ତହୁଁ ଯୁଧିଷ୍ଠିର ଚାହିଁ ଅର୍ଜୁନ ବଦନ ।
ବୋଇଲେରେ ବାବୁ ଘେନିଯାଅ ସୈନ୍ୟଗଣ
ଏକବର୍ଷ ପର୍ଯ୍ୟନ୍ତେ ଅଶ୍ୱ ରକ୍ଷାକର ।
ଯେ ଧରିବ ଅଶ୍ୱ ତହୁଁ ତାକୁ ତୁ ଉଦ୍ଧାର ॥
କିଛି ନ ହେବ ବିପଦ ବିପଦ ନାଶନ ।
ସହାୟ ଅଛନ୍ତି ପାଶେ ଯାଅ ହେ ବହନ ॥
ଶ୍ରୀକୃଷ୍ଣଙ୍କୁ ସବୁବେଳେ କରିବୁ ସ୍ମରଣ ।
ତା ହେଲେ ସବୁ ବିପଦ ହୋଇବ ଖଣ୍ଡନ ॥
ଏସନ କହିଣ ଯୁଧିଷ୍ଠିର ନୃପବର ।
ପତ୍ରେକ ଲେଖିଲେ ତହୁଁ ଏହୁପରି ପୁଣ ॥

ଯୁଧିଷ୍ଠିର ନରବର ହସ୍ତିନାର ସାଇଁ ।
ଭାରତ ଯୁଦ୍ଧରେ ଲକ୍ଷେ ରାଜା ଜିଣିଲଇଁ ॥
ଜ୍ଞାତିବଧ ପାତକରୁ ମୁକ୍ତ ହେବା ପାଇଁ ।
ଅଶ୍ୱମେଧ କରିବାକୁ ଭାବିଛନ୍ତି ସେହି ॥
ସ୍ୱଇଚ୍ଛାରେ ଅଶ୍ୱ ଜଗତରେ ବୁଲୁଥିବ ।
ଯାର ବୀରପଣ ଥିବ ଅଶ୍ୱକୁ ଧରିବ ॥
ଅଶ୍ୱରକ୍ଷା ହେତୁ ସଙ୍ଗେ ଅଛନ୍ତି ଅର୍ଜୁନ ।
ଯାର ଶକ୍ତି ହେବ ସେ ଧରିବ ଅଶ୍ୱ ପୁଣ ॥
ହୀନବଳ ହେଲେ ଅଶ୍ୱ କେହି ନ ଧରିବ ।
ଆମନ୍ତ୍ରଣ ଘେନି ହସ୍ତିନାରେ ପ୍ରବେଶିବ ॥
ମହାରାଜାଧିରାଜ ଯୁଧିଷ୍ଠି ନୃପବର ।
ସଂସାରରେ ଏକ ବୀର ନାହିଁ ଆଉ ଆର ॥
ଏସନ ଲେଖିଣ ପତ୍ର ଅଶ୍ୱ ଶିରେ ଦେଲେ ।
ଅନୁଚର ସହ ପାର୍ଥ ପାଶେ ସମର୍ପିଲେ ॥
ଅଗ୍ରଜ ବଚନ ଶୁଣି ଅର୍ଜୁନ ତକ୍ଷଣେ ।
ପାଦତଳେ ପଡ଼ି ବିଦା ମାଗିଲେ ବହନ ॥
ଭୀମଙ୍କ ପାଦରେ ପଡ଼ି ବିଦାୟ ମାଗିଲେ ।
ନକୁଳ ସହଦେବଙ୍କୁ ଆଲିଙ୍ଗନ କଲେ ॥
ଶ୍ରୀକୃଷ୍ଣ ଚରଣ ତଳେ ପଡ଼ି ବୀରବର ।
ବୋଇଲେ ତୁମ୍ଭ ସେବକ ପାଞ୍ଚ ସହୋଦର ॥
ତୁମ୍ଭର ଦୟାରୁ ଅଶ୍ୱମେଧ ହୁଏ ହରି ।
ତହୁଁ ବିଦାୟ ହୋଇଲେ ସେ ଗାଣ୍ଡିବଧାରୀ ॥
ମାତା ଦେବକୀ ଯଶୋଦା ରୁକ୍ମିଣୀ ଗାନ୍ଧାରୀ ।
ବିଧି ଅନୁସାରେ ବୀର ମାନ୍ୟ ଧର୍ମକରି ॥
ଅନ୍ଧ ନୃପତିଙ୍କର ପାଦରେ ବୀର ପଡ଼ି ।
ବୋଇଲେ ଯାଉଛି ପିତା ମୁଁ ହସ୍ତିନା ଛାଡ଼ି ॥
ଅଶ୍ୱରକ୍ଷା କରିବାକୁ ଭ୍ରମିବି ଭୁବନ ।
ଆଶୀଷ କରନ୍ତୁ ମୋତେ ଏହି ନିବେଦନ ॥
ଏହିପରି ସମସ୍ତଙ୍କୁ ପ୍ରବୋଧି ଅର୍ଜୁନ ।
ବାହାରିଲେ ସଙ୍ଗେ ଘେନି ସୈନ୍ୟସେନାଗଣ ॥
ଅର୍ଜୁନଙ୍କୁ ସୁକଲ୍ୟାଣ କୁନ୍ତୀ ଯେ କରିଲେ ।
କେ କେ ତୁମ୍ଭସଙ୍ଗେ ଯାଉଛନ୍ତି ପଚାରିଲେ ॥
ଶୁଣିଣ ମାତାଙ୍କ ବାଣୀ ବୋଲନ୍ତି ଅର୍ଜୁନ ।
କିମ୍ପା ମାତା ସେଥିପାଇଁ ଚିନ୍ତାକର ମନ ॥
ଶ୍ରୀକୃଷ୍ଣଙ୍କ ପୁତ୍ରମାନେ ମୋହର ସଙ୍ଗରେ ।
ଯାଉଛନ୍ତି ଆଗୋ ମାତ ଅଶ୍ୱ ରଖିବାରେ ॥

ପୁଣି ବୃଷକେତୁ ବୀର ମୋର ସହିତରେ ।
କୃଷ୍ଣଙ୍କ ଆଦେଶେ ଯାଉଅଛଇ ସଙ୍ଗରେ ॥
ଏବମାତ୍ର ନନ୍ଦନ ସେ ପାଞ୍ଚ ଜଣଙ୍କର ।
କୁଳ ଉଦ୍ଧାରଣ ପୁତ୍ର ବୃଷକେତୁ ବୀର ॥
ସୈନ୍ୟଗଣ ସହ ସେହୁ କରଇ ଗମନ ।
ଅନୁଶାଲ୍ୱ ଯୌବନାଶ୍ୱ ଆଦି ବୀରଗଣ ॥
କପାଁ ମାତା ଚିନ୍ତା ତୁମ୍ଭେ କରୁଅଛ ମନେ ।
ଯାହାର ସହାୟ ଦୀନବନ୍ଧୁ ଅନୁକ୍ଷଣେ ॥
ଯାହାଙ୍କ ଆଶାରେ ଅଛୁ ଆମ୍ଭେ ପାଞ୍ଚଭାଇ ।
ବଦାକର ମୁଖେ ମାଛ କଢୁଅଛୁ ମୁହିଁ ॥
ଶୁଣିଣ ଅର୍ଜୁନ ବାଣୀ ବୋଲନ୍ତି ଯାଦବୀ ।
ଶୁଣ ମୋ ବଚନ ତୁହି ରେ ବାପ ଗାଣ୍ଡିବୀ ॥
ଜାଣେ ମୁହିଁ ଦୟାମୟ ସହାୟ ଯାହାର ।
କି ବିପଦ ଏ ସଂସାରେ ଅଛଇ ତାହାର ॥
ମାତ୍ର ଏକ କଥା ବାଛୁ କହୁଛୁ ମୁଁ ତୋତେ
କର୍ଣ୍ଣସୁତ ବୃଷକେତୁ ଯାଉଛି ସଙ୍ଗତେ ॥
ଏବେ ତ ବାଳକ ସେହି କୋମଳ ପ୍ରକୃତି ।
ପିଲାଦିନୁ ପିତୃଶୂନ୍ୟ ମୋ ନେତ୍ର ସମ୍ପତ୍ତି ॥
ମୋର ବଚନେ ତାହାକୁ ଯତନେ ରଖିବ ।
ମୋ ନେତ୍ରପ୍ରତିମା ସେହି ତା ସଙ୍ଗେ ମୋ ଜୀବ
ଏହା କହୁଁ କହୁଁ କୁନ୍ତୀ ଅଶ୍ରୁ ବୁହାଇଲେ ।
ପାର୍ଥେ ଆଲିଙ୍ଗିଣ ବୃଷକେତୁ କୋଳେନେଲେ
କୋଳେ ବସାଇଣ ମୁଖେ ଦିଅନ୍ତି ଚୁମ୍ବନ ।
ଆନନ୍ଦରେ ପ୍ରେମ ଅଶ୍ରୁ ବହେ ଘନ ଘନ ॥
ସନ୍ତୋଷ ମନେ ଅର୍ଜୁନ ଗଲେ ଅନ୍ତଃପୁରେ ।
ବୃଷକେତୁ ବୀରବର ମିଳେ ନିଜପୁରେ ॥
ବୃଷକେତୁର ରମଣୀ ନାମ ପ୍ରଭାବତୀ ।
ସ୍ୱାମୀଙ୍କ ଦେଖିଣ ସତୀ ହୋଇ ତୋଷମତି ॥
ଚରଣେ ପଡ଼ିଣ ସତୀ ପାଦ ଧୋଇଦେଲା ।
ପାଦୋଦକ ପାଇଣ ଆସ୍ଥାନେ ବସାଇଲା ॥
ଦେଖିଣ ତାହାର ଭକ୍ତି ବୃଷକେତୁ ବୀର ।
ବୋଇଲେ ଶୁଣ ଓଗୋ ସଖି ମୋହର ଉତ୍ତର
ବୀରବର ପାର୍ଥଙ୍କ ସହିତ ମୁହିଁ ଯିବ ।
ଯଜ୍ଞ ଅଶ୍ୱକୁ ଯତ୍ନରେ ରକ୍ଷା କରୁଥିବ ॥
ଯୁଧିଷ୍ଠି ଦେବ ଆଦର ଶ୍ରୀକୃଷ୍ଣ ଆଦେଶ ।
ପାଇଣ ଯାଉଛି ସଖି ନୋହିବୁ ବିରସ ॥

କୁନ୍ତୀ ଆଦି ଅଛନ୍ତି ଯେତେ ଗୁରୁଜନ ତୋର ।
ସମସ୍ତଙ୍କୁ ସେବା ତୁ କରିବୁ ନିରନ୍ତର ॥
ଶୁଣିଣ ସ୍ୱାମୀଙ୍କ ବାଣୀ ପ୍ରଭାବତୀ ନାରୀ ।
ବିନୟେ କହନ୍ତି ତାଙ୍କ ବେନିପାଦ ଧରି ॥
ମୋତେ ଛାଡ଼ିକରି ନାଥ କେଉଁ ଆଡ଼େ ଯିବ ।
ତୁମ୍ଭଙ୍କୁ ନ ଦେଖି ମୋର ଜୀବନ କି ଥିବ ॥
କିଦୋଷେତେଜିବମୋତେବୋଲହେକାରଣ
କିଣାଦାସୀକି କପାଁଇଁ କରିବେ ବର୍ଜନ ॥
ଯେବେ ନାଥ ପାଣ୍ଡବଙ୍କ ଅଶ୍ୱ ରକ୍ଷା ପାଇଁ ।
ଯିବ ସ୍ଥିରଚିତ୍ତେ ରକ୍ଷା କରିବ ଯେ ତହିଁ ॥
ଅଶ୍ୱ ଯେବେ ପଡ଼ିବ ହେ ବିପକ୍ଷ ହସ୍ତରେ ।
ସାବଧାନେ ଯୁଦ୍ଧ କରି ଆଣିବ ତାହାରେ ॥
କୀର୍ତ୍ତି ସ୍ଫୂର୍ତ୍ତି ପ୍ରାଣପଣେ ହେବ ଅଗ୍ରସର ।
ପ୍ରତାପୀ ବିପକ୍ଷ ଦେଖି ନ ହେବ କାତର ॥
ରଣେ ଭଙ୍ଗ ଦେବ ନାହିଁ ମୋହର ବିନତି ।
ରଖିବ କ୍ଷତ୍ରିୟ ଧର୍ମ ଆହେ ପ୍ରାଣପତି ॥
ଆପଣଙ୍କ ନିନ୍ଦା ଯେବେ ଶୁଣିବି ହେ ନାଥ ।
ମରଣୁ ବଳିବ, ଲଜ୍ଜା ହୋଇବ ବହୁତ ॥
ଦେଖିବେଯେକାଳେବୀରନାରୀମାନେମୋତେ
ସେମାନଙ୍କ ଠଟ୍ଟା ସହି ପାରିବି କି ସତେ ॥
ପ୍ରାଣ ଯାଉ ପଛେ ନାଥ କ୍ଷତ୍ରିୟ ଧରମ ।
ଛାଡ଼ି ପୃଷ୍ଠ ଭଙ୍ଗ ଦେବ ନାହିଁ ଗୁଣଧାମ ॥
ଶୁଣିଣ ପ୍ରିୟାର ବାଣୀ କର୍ଣ୍ଣଙ୍କ ନନ୍ଦନ ।
ଜଳଦ ଗମ୍ଭୀର ସ୍ୱରେ ବୋଇଲେ ବଚନ ॥
ସିଂହଠାରୁ ଶୃଗାଳ କି ଜନମ ହୁଅଇ ।
ମୁଁ କର୍ଣ୍ଣ ନନ୍ଦନ ବୋଲି ନ ଜାଣୁ କି ତୁହି ॥
ତ୍ରିଭୁବନ ଯାକ ଯେବେ ଏକତ୍ର ହୋଇଣ ।
ରଣ କରନ୍ତି ନ ଡରେ ମୁହିଁ କଦାଚନ ॥
ପାଣ୍ଡବଙ୍କ ପାଇଁ ମୁହିଁ ଏ ପ୍ରାଣ ନିଶ୍ଚୟ ।
ଅକ୍ଳେଶେ ଦେଇ ପାରଇ ତହିଁ କିବା ଭୟ ॥
ଶୁଣ ଆଗୋ ପତିପ୍ରାଣା କହୁଛି ତୁମ୍ଭଙ୍କୁ ।
ଶ୍ରୀକୃଷ୍ଣ କୃପାରେ ମୁହିଁ ନ ଡରେ କାହାକୁ ॥
ନିଶ୍ଚୟ ଜାଣିବ ତୁମ୍ଭେ ରମଣୀ ରତନ ।
ଯେବେ କର୍ଣ୍ଣସୁତ ରଣୁ କରେ ପଳାୟନ ॥
ଯେବେ ଏହି କଥା ଘଟେ ଜଗତ ମଧ୍ୟରେ ।
ଜାଣ ତେବେ କୃଷ୍ଣଭକ୍ତ କପାଁ ସଂସାରରେ ॥

ଏପରି ପ୍ରବୋଧ କରି ବୃଷକେତୁ ବୀର ।
ବେଗେ ପ୍ରବେଶ ହୋଇଲେ ପାର୍ଥଙ୍କ ପାଶର ॥
ସୈନ୍ୟଗଣ ସଙ୍ଗେ ଘେନି ବୀର ଅର୍ଜୁନ ।
କ୍ରମେ କ୍ରମେ ଚଳିଗଲେ ହୋଇ ହୃଷ୍ଟମନ ॥
ଦେଖୁ ଦେଖୁ ଯଜ୍ଞ ଅଶ୍ୱ ସୁନ୍ଦର ଗଡରେ ।
ମାହିଷ୍ମତୀ ପୁରୀ ମଧ୍ୟେ ପ୍ରବେଶ ହୋଇଲେ ॥
ନୀଳଧ୍ୱଜ ରାଜାଙ୍କର ଅଟଇ ସେ ପୁରୀ ।
ବିଷମ ପ୍ରାଚୀର ଅଛି ଚୌଦିଗେ ତାହାର ॥
ବହୁଲୋକ ସମାକୀର୍ଣ୍ଣ ବିଚିତ୍ର ନଗରୀ ।
ସର୍ବଦା ଉତ୍ସବେ ମତ୍ତ ସର୍ବ ନରନାରୀ ॥
ପୁରଅନ୍ତେ ଘେରିଛି ନର୍ମଦା ନାମେ ନଦୀ ।
ଦେଖିଲେ ମନ ନୟନ ତୃପ୍ତ ସେ ଶୋଭାଦି ॥
କିବା ମନୋହର ତହିଁ ଯେତେକ ନାରୀ ନର ।
ଦିବ୍ୟ ବେଶଭୂଷା ସର୍ବେ ଦିଶନ୍ତି ସୁନ୍ଦର ॥
ସମ୍ମୁଖରେ ଉପବନ ମନୋହର ଦିଶେ ।
ବିହଙ୍ଗାଦି ପକ୍ଷୀ ତହିଁ ଅଛନ୍ତି ହରଷେ ॥
ଏ ସୁନ୍ଦର ଉପବନେ ରାଜାଙ୍କ ନନ୍ଦନ ।
ବିହାର କରନ୍ତି ସଙ୍ଗେ ଘେନି ସୈନ୍ୟଗଣ ॥
ସମସ୍ତ ରମଣୀ ଭୁଲେ ନିଜ ଇଚ୍ଛାମତେ ।
ଅହର୍ନିଶି ବଞ୍ଚେ କାଳ ଭାସେ ସୁଖ ସ୍ରୋତେ ॥
ମନୋହର ଲତାକୁଞ୍ଜ ପୁଷ୍ପେ ସୁଶୋଭିତ ।
ତାହା ମଧ୍ୟେ ବାସ କଲେ ନୀଳଧ୍ୱଜ ସୁତ ॥
ପ୍ରବୀର ତାହାଙ୍କ ନାମ ମହା ବଳବାନ ।
ତେଜରେ ଗଞ୍ଜଇ ସେହୁ ମକରକେତନ ॥
ସୁନ୍ଦର ଆସନେ ବସି ମହା ହର୍ଷ ମନେ ।
ଘେରିଛନ୍ତି ପୁରଅନ୍ତେ କେତେ ବରାଙ୍ଗନେ ॥
ଅରୁଣ ଅଧରୀ ସର୍ବେ ବିଶାଳ ନୟନୀ ।
ନକ୍ଷତ୍ରେ ଚନ୍ଦ୍ରମା ପରି ଶୋଭେ ବୀରମଣି ॥
କପୋଳ ଉନ୍ନତ ବକ୍ଷ ଦିଶେ ସୁଶୋଭନ ।
ତିଳପୁଷ୍ପ ଜିଣି ନାସା ଦିଶେ ବିତପନ୍ନ ॥
ଅବର କେତେକ ନାରୀ ଛନ୍ତି ତହିଁ ବହୁ ।
ରମ୍ଭାଦି ତାଙ୍କ ସମାନ ନ ହୋଇବେ କେହୁ
ମଦନ ମଞ୍ଜରୀ ନାମେ ପ୍ରଧାନ ରମଣୀ ।
ସମସ୍ତଙ୍କୁ ବୋଇଲେ ହେ ଶୁଣ ମୋର ବାଣୀ
ଲତା କଶଳୟ ତୋଳି ଆଣ ହେ ସମସ୍ତେ ।
ପରିଧାନ କରି ଅତି ଆନନ୍ଦିତ ଚିତ୍ତେ ॥

ଅଙ୍ଗମାନେ ସଖୀମାନେ ପୁଷ୍ପ କଶଳୟ ।
ଅଣିଣ ଗୁନ୍ଥିଲେ ମାଳ ଅତି ଶୋଭାମୟ ॥
ପ୍ରାଣନାଥେ ପିନ୍ଧାଇଲେ ପ୍ରଣୟ କାରଣ ।
ମନେ ମହା ଆନନ୍ଦିତ ହେଲେ ସଖୀଗଣ ॥
ମଧୁର ସ୍ୱରରେ ତହିଁ ଆଳାପ କରନ୍ତି ।
ବୀଣାବିନିନ୍ଦିତ ସ୍ୱରେ ସମସ୍ତେ ଗାଆନ୍ତି ॥
ରାଜପୁତ୍ର ନିଜ ଭାର୍ଯ୍ୟା ସହ ସେଠାବରେ ।
ଆମୋଦରେ ମାତିଣ ଅଛନ୍ତି ନିର୍ଜ୍ଜନରେ ॥
ଏପରି ସମୟେ ରାଣୀ ଦେଖି ଅଶ୍ୱବର ।
ବୋଇଲେ ଦିଅନ୍ତୁ ମୋତେ ହେ ନୃପକୁମର ॥
ଅଦ୍ଭୁତ ଅଶ୍ୱଟି ଏହି ଦେଖ ବଗିଚାରେ ।
କେଉଁଠାରୁ ମିଳିଗଲା ଆସି ଏ ସ୍ଥାନରେ ।
ନାନାବିଧ ଅଳଙ୍କାରେ ହୋଇଛି ଭୂଷିତ ।
ଜଣାଯାଏ ଉଚ୍ଚୈଶ୍ରବା ବଂଶରେ ସମ୍ଭୂତ ॥
ପିନ୍ଧିଅଛି ବହୁ ମୂଲ୍ୟବାନ ମୁକ୍ତାମାଳ ।
ଅତ୍ୟନ୍ତ ଚିକ୍କଣ ଦେହ ଦିଶେ ମନୋହର
ହଂସ ପରି ଗତି କରେ ଦେଖ କି ବିଚିତ୍ର ।
କ୍ଷୀର ପରି କାନ୍ତି ତାର ଠାଣି ପୁଲ୍ଲଲିତ ॥
ଅଧର ଦିଶଇ ତାର ତାମ୍ର ବର୍ଣ୍ଣ ଜିଣି ।
ପୃଷ୍ଠଦେଶ ଶୋଭା ଦିଶେ ପୀତବର୍ଣ୍ଣ ପୁଣି ॥
ଶ୍ୟାମ ଚକ୍ଷୁ ରକ୍ତବର୍ଣ୍ଣ ଏହାର ରସନା ।
କେଉଁଠୁ ଆସିଲା ଏହା ନ ଯାଉଛି ଜଣା ॥
ତା ଲଲାଟେ ଦେଖାଯାଏ ଏ କିସ ବିଚିତ୍ର ।
ଏକ ପତ୍ର ଝୁଲୁଅଛି ପୁଣ ବୀରନେତ୍ର ॥
ଏଣୁ କରି ତୁମ୍ଭଙ୍କୁ କହୁଛି ପ୍ରାଣେଶ୍ୱର ।
ଏ ଦାସୀର ମନୋରଥ ବେଗେ ପୂର୍ଣ୍ଣ କର
କେବେ ଦାସୀ ମାଗି ନାହିଁ କିଛି ତୁମ୍ଭଠାଇଁ
ଏ ଆଶା ମୋର ପୂରାଅ ଆହେ ପ୍ରାଣସାଇଁ ॥
ଶୁଣିଣ ପ୍ରିୟାର ବାଣୀ ଅତି ଆନନ୍ଦରେ ।
ଶୀଘ୍ର ଯାଇଁ ବୀରବର ଅଶ୍ୱକୁ ଧରିଲେ ॥
ଯେପରି ପିଲାକୁ ବାପ ସଙ୍ଗେ ନେଇ ଚଳେ ।
ସେହିପରି ଅଶ୍ୱକୁ ଅଣିଲେ ବାହୁବଳେ ।
କପୋଳରେ ଯେଉଁ ପତ୍ର ଲେଖାଥିଲା ତାର
ପଢ଼ିଣ ଜାଣିଲେ ବୀର ବୃତ୍ତାନ୍ତ ସକଳ ॥
ଜାଣି ବୀରମଣି କ୍ରୋଧେ ହେଲେ କମ୍ପମାନ
ଅଶ୍ୱ ପଠାଇଣ ସେ ରହିଲେ ସେହି ସ୍ଥାନ ॥

ଏ ସମୟେ ନୀଳଧ୍ୱଜ ପୁରରେ ଅର୍ଜ୍ଜୁନ ।
ଅଶ୍ୱ ଖୋଜି ଖୋଜି ବୀର ପ୍ରବେଶ ବହନ ॥
ଅର୍ଜ୍ଜୁନଙ୍କୁ ଦେଖିଣ ସେ ରାଜାଙ୍କ କୁମର ।
ଦିବ୍ୟବେଶେ ବାହାରିଲେ ବେନି ଅନୁଚର ॥
ଦେଖିଲେ ସେ ବୀରବର ଅର୍ଜ୍ଜୁନ ବଦନ ।
ଶତ ସୂର୍ଯ୍ୟ ତେଜଠାରୁ ଦିଶଇ ବଳଣ ॥
ବେନି ପାଶେ ଛନ୍ତି ଯୁବନାଶ୍ୱ ଅନୁଶାଲ୍ୱ ।
ନିକଟେ ଛନ୍ତି ପ୍ରଦ୍ୟୁମ୍ନ ଆଦି ସର୍ବ ମଲ୍ଲ ॥
ଅଗ୍ରେ ଅଛି ବୃଷକେତୁ କର୍ଣ୍ଣଙ୍କ ନନ୍ଦନ ।
ଯା ନାମରେ ସ୍ୱର୍ଗେ କମ୍ପେ ଯମର ଆସନ ।
ନୀଳଧ୍ୱଜ ପୁତ୍ରେ ଦେଖି ବୃଷକେତୁ ବୀର ।
ସମରକୁ ସିଂହ ସମ ଚଳିଲେ ସତ୍ୱର ॥
ବୋଇଲେକ ଆହେ ବୀର ଆମ୍ଭ ଅଶ୍ୱବର ।
କେ ରଖିଛି ଡାକିଲାଣି ତାକୁ ଯମପୁର ॥
ଶୁଣି ପ୍ରବୀର ସ୍ୱଦର୍ପେ ବୋଲଇ ବଚନ ।
ମୁଁ ବାନ୍ଧିଛି ଅଶ୍ୱ ପଳା ଜୀବନ ଘେନିଣ ॥

ବୋଲେ କର୍ଣ୍ଣସୁତ ରହ ପ୍ରକାଶିବ ଅଣ ।
ଏ ବସ୍ତୁମେ ଯିବୁ ତୁହି ଶମନର ପାଶ ॥
ଅକାରଣେ ଦୁଷ୍ଟ ବୁଦ୍ଧି କଲୁ ଆରେ ବର ।
ରାଜ୍ୟସୁଖ ଛାଡ଼ି ଏବେ ଯିବୁ ଯମପୁର ॥
ବୃଷକେତୁ ବାଣୀ ଶୁଣି ପ୍ରବୀର କହଇ ।
ବୃଥା ଗର୍ବ କରୁ କର୍ପା ମୋ ଆଗରେ ତୁହି ॥
ଗର୍ଜିଲା ମେଘ କି କେବେ ବରଷଇ ପାଣି ।
ବୀର ସାଧ ତୋର ମେଣ୍ଟାଇବି ଏହିକ୍ଷଣି ॥
ନୀଚଜନେ ଗର୍ବରେ ଯେ ବଡ଼ିମା ଦେଖାନ୍ତି ।
ଶକ୍ତିମାନ ଲୋକ କେବେ ଗର୍ବ ନ କରନ୍ତି ॥
ଦେଖାଯିବ ଆଜି ତୁମ୍ଭମାନଙ୍କର ରଣ ।
କେତେ ଶକ୍ତି ଧର ତୁମ୍ଭେ କେଡ଼େ ବଳବାନ
ଏସନ କହିଣ ବୀର ଧନୁ ଟଙ୍କାରିଲେ ।
ସେ କାଳରେ ଚରାଚର କମ୍ପେ ଅବହେଳେ
ବୃଷକେତୁକୁ ମାରଇ କୋପେ ପାଞ୍ଚଶର ।
ସାରଥି ଅଶ୍ୱକୁ ମାରେ ପନ୍ଦର ପନ୍ଦର ॥



ନୀଳଧ୍ୱଜ ରାଜାଙ୍କର ଅର୍ଜ୍ଜୁନ ସହିତ ଘୋର ଯୁଦ୍ଧ

ଦେଖିଣ ଯେ ବୀରବର କର୍ଣ୍ଣଙ୍କ ନନ୍ଦନ ।
ଶର କାଟି ଅର୍ଦ୍ଧବାଟେ କଲେ ନିବାରଣ ॥

ତହୁଁ କୋପରେ ପ୍ରବୀର ପେଷେ ଅନ୍ୟଶର ।
ମୂର୍ଚ୍ଛିତ ହୋଇଲେ ତହୁଁ କର୍ଣ୍ଣଙ୍କ କୁମର ॥

ବୃଷକେତୁଙ୍କୁ ମୂର୍ଚ୍ଛିତ କରିଣ ପ୍ରବୀର ।
ଅନୁଶାଲ୍ୱ ଜଘରେ ସେ ପ୍ରହାରିଲେ ଶର ॥
ଅନୁଶାଲ୍ୱ ବୀରବର ସମରେ ନିପୁଣ ।
କୋପେ ପ୍ରହାରିଲେ ବେଗେ ବରୁଣାସ୍ତ୍ର ପୁଣ
ଗୃହ୍ଣୁ ଗୃହ୍ଣୁ ଶର ବେଗେ ଗଗନ ଘୋଟିଲା ।
ପ୍ରବୀରଙ୍କୁ ବନ୍ଧକରି ଅଚେତନ କଲା ॥
ପ୍ରବୀର ଅବସ୍ଥା ଦେଖି ସର୍ବ ଅନୁଚର ।
ଭୟେ ପଳାଇ ପଶିଲେ ନଗର ଭିତର ॥
ରାଣୀହଂସ ପୁରରେ ଉଠିଲା ଶୋକ ଘୋର ।
ସମ୍ଭାଳି ନ ପାରି ନୀଳଧ୍ୱଜ ନୃପବର ॥
ରଥ ଚଢି ସମରକୁ ଆଗଭର ହେଲେ ।
ଅନୁଶାଲ୍ୱ ସହିତ ସେ ବହୁ ଯୁଦ୍ଧ କଲେ ॥
ପୁତ୍ରକୁ ମୁକୁଳାଇଣ ନୀଳଧ୍ୱଜ ବୀର ।
ଅଗ୍ନି ସହ ପ୍ରବେଶିଲେ ରଣର ମଧ୍ୟର ॥
ବାଛି ବାଛି ମହାରାଜା ଶର ବୃଷ୍ଟି କଲେ ।
ପ୍ରତ୍ୟେକ ରଥୀଙ୍କୁ ଯୁଦ୍ଧେ ଅଥୟ କରିଲେ ॥
ପ୍ରାଣପଣେ ଯୁଦ୍ଧକରି ପାଣ୍ଡବ ସଇନ ।
ଛିନ୍ନଛନ୍ନ ହେଲେ ଏହା ଦେଖି ଅରଜୁନ ॥
ରହ ରହ ବୋଲି ବେଗେ ପାର୍ଥ ଡାକଦେଲେ
ଏକାବେଳେ ଅଗ୍ନି ସମ ଶରବୃଷ୍ଟି କଲେ ॥
ସୁରାସୁର ଯୁଦ୍ଧେ ଯାର ନିର୍ଭୟ ଶରୀର ।
କି ସ୍ଥିର ସେ ନୀଳଧ୍ୱଜ ରହିବ ଅଗର ॥
ଚକ୍ଷୁର ପଲକେ କୋଟି କୋଟି ବାଣମାନ ।
ଚୌଦିଗ ଅନ୍ଧାର କରି କରିଲେ ଗମନ ॥
ବାଣାଘାତେ ନୀଳଧ୍ୱଜ ଅଚେତନ ହେଲେ ।
ଦେଖି ସୈନ୍ୟଗଣେ ସର୍ବେ ମହାଭୟ କଲେ
ବୀରବର ଅର୍ଜ୍ଜୁନଙ୍କ ସୁତୀକ୍ଷ୍ଣ ବାଣରେ ।
ନୀଳଧ୍ୱଜର ଶରୀର ଲୋଟିଲା ଭୂମିରେ ॥
କେତେକ୍ଷଣ ପରେ ରାଜା ପାଇଲେ ଚେତନ
ଦେଖିଣ ଆନନ୍ଦ ହେଲେ ସର୍ବ ସୈନ୍ୟଗଣ ॥
କୋପେ ନୀଳଧ୍ୱଜ ହୋଇ ଅତି ରାଗାନ୍ୱିତ ।
ଅଗ୍ନିଶର ନିକ୍ଷେପଣ କରିଲେ ତ୍ୱରିତ ॥
ଚୌଦିଗେ ଜଳିଲା ଅଗ୍ନି ପ୍ରଚଣ୍ଡ ବେଗରେ ।
ଦେଖି ପାଣ୍ଡବଙ୍କ ସୈନ୍ୟ ଶଙ୍କିତ ଚିତ୍ତରେ ॥
ଛିନ୍ନ ଭିନ୍ନ ହୋଇଗଲେ ପାଣ୍ଡବଙ୍କ ବଳ ।
ଅଗ୍ନି ଦେବ କୋପ କରି ନାଶିଲେ ସକଳ ॥
ଚିତ୍କାର କରିଣ ବଡ଼ ବଡ଼ ହସ୍ତୀଗଣ ।
ଶୁଣ୍ଡ ଟେକି ରଣସ୍ଥଳୁ କଲେ ପଳାୟନ ॥
ରଥ ରଥୀ ଅଶ୍ୱ ଆଦି ଅଗ୍ନିର ତେଜରେ ।
ଛନ୍ନଭଙ୍ଗ ଦେଲେ ସେହୁ ପଡ଼ି ବିପଦରେ ॥
ପ୍ରାଣ ରଖିବାକୁ ସର୍ବେ ଯାଆନ୍ତି ପଳାଇ ।
କେତେ କେତେ ବୀର ପ୍ରାଣ ଦେଲେ କହରାଇ
ଏକେ ହୁତାଶନ ପୁଣି ହେଲେ ସେ ଭୀଷଣ ।
ଦେଖିଣ ଏସନ ରୀତି ବାସବ ନନ୍ଦନ ॥
ବରୁଣାସ୍ତ୍ର କଲେ କୋପେ ଧନଞ୍ଜୟ ବୀର ।
ତଥାପି ନୋହିଲେ ଶାନ୍ତ ଦେବ ବୈଶ୍ୱାନର
ଦେଖିଣ ଅଗ୍ନିଙ୍କ କାର୍ଯ୍ୟ ପାର୍ଥ ବୀରବର ।
ଧନୁ ଛାଡ଼ି ସ୍ତବକଲେ ଅଗ୍ନିଙ୍କ ବିସ୍ତର ॥
ନମୋ ନମୋ ମହାଅଗ୍ନି ସର୍ବ ଭୂତବାସୀ ।
ସଦୟ ହୋଇଣ ଦେବ ଶୀତଳ ହୁଅସି ॥
ତୁମ୍ଭର ଦୟାରେ ମୁହିଁ ବିଜୟ ଗାଣ୍ଡିବ ।
ଧନୁଶର ରଥ ଆଦି ପାଇଅଛୁ ସର୍ବ ॥
ଖାଣ୍ଡବ ଦହନ କଥା ଭୁଲିଲ କି ନାଥ ।
ତୁମ୍ଭ ଚରଣେ ଶରଣ ମୋହର ନିୟତ ॥
ଶ୍ରୀକୃଷ୍ଣଙ୍କ ଆଜ୍ଞାରେ ଯୁଧିଷ୍ଠି ନରବର ।
ଅଶ୍ୱମେଧ କରିଣ ତୋଷିବେ ବୈଶ୍ୱାନର ॥
ତୁମ୍ଭ ତୃପ୍ତି ପାଇଁ ଦେବ ଏତେ ଆୟୋଜନ ।
ଚରଣ ଧରି ମାଗୁଛୁ ନ ନାଶ ମୋ ସୈନ୍ୟ ॥
ତୁମ୍ଭେ ଦେବ ସଂସାରରେ ଏକମାତ୍ର ଗତି ।
କିପାଇଁ ମୋଠାରେ ପ୍ରଭୁ ଏତେ଼କ ଅହିତ ॥
ଏହିପରି ସ୍ତବ ସ୍ତୁତି ଅର୍ଜ୍ଜୁନ କରିଲେ ।
କ୍ଷାନ୍ତ ନୋହି ଅଗ୍ନି ଦେବ କୋପରେ ଜଳିଲେ
ଦେଖି ଅଗ୍ନିଙ୍କର ରୀତି ବାସବ ନନ୍ଦନ ।
ଗୃହ୍ଣୁ ଗୃହ୍ଣୁ ହେଲେ କ୍ରୋଧେ କାଳର ସମାନ
ବୋଇଲେ ହେ ଅଗ୍ନି ଦେବ ନ ଶୁଣ ମୋ ଗୀର
ଦୁଷ୍ଟ ବୁଦ୍ଧି ଧରି ନାଶ ସୈନ୍ୟଙ୍କୁ ମୋହର ॥
ଏବେ ଦେଖାଇବି ତୋର କେତେ ବଳ ଅଛି
ଅଗ୍ନି ନାମ ସଂସାରରୁ ଦେବି ମୁହିଁ ପୋଛି ॥
ଏପରି କହିଣ ବୀର ନାରାୟଣ ଶର ।
ତୂଣୀରୁ ବାହାର କରି ଧଇଲେ ହସ୍ତର ॥
ଅର୍ଜ୍ଜୁନ ହସ୍ତରେ ନାରାୟଣ ଶର ଗୃହି ।
ଶାନ୍ତହୋଇ ଅଗ୍ନି ଦେବ ବୋଇଲେ କିନସ୍ୱୀ

ହେ ସଖା ଅର୍ଜ୍ଜୁନ ତୁମ୍ଭେ ଶୁଣ ମୋର ଗୀର ।
ଅପରାଧ କ୍ଷମା ମୋର କର ବୀର ବର ॥
ଅଗ୍ନି ବାଣୀ ଶୁଣି ବୀର ଶସ୍ତ୍ର ସମ୍ଭାରିଲେ ।
ତହୁଁ ଜନ୍ମେଜୟ ଜଇମିନିଙ୍କି ପୁଚ୍ଛିଲେ ॥
କୁହ କୁହ ଋଷିବର ସଦୟ ହୋଇଣ ।
କି ନିମନ୍ତେ ପାର୍ଥେ ଅଗ୍ନି ହେଲେ କୋପମନ
ପୂର୍ବରେ ଅର୍ଜ୍ଜୁନ ବୀର କଲେ ଉପକାର ।
ସେ ସବୁ କିପରି ଭୁଲିଗଲେ ବୈଶ୍ୱାନର ॥
ଏଥିଅନ୍ତେ ଶୁଣ ଜନେ ଅପୂର୍ବ ରହସ୍ୟ ।
ଉପାଧ୍ୟାୟ ମହାଦେବ ବୋଲଇ ଏ ଭାଷ ॥



**ନୀଳଧ୍ୱଜକନ୍ୟା ସ୍ୱାହାଙ୍କରଅଗ୍ନିଙ୍କ**
ସହବିବାହନୀଳଧ୍ୱଜଙ୍କ ପରାଜୟେ ନୀଳଧ୍ୱଜର
ସ୍ତ୍ରୀ ଅର୍ଜ୍ଜୁନଙ୍କୁ ଶାପ ଦେବା ।

ଜୈମିନି ବୋଲନ୍ତି ଶୁଣ ନୃପତି ଶେଖର ।
ଯେଉଁ କାରଣରେ ଅଗ୍ନି କଲେ ଯୁଦ୍ଧ ଘୋର
ନୀଳଧ୍ୱଜ ରାଜାଙ୍କର ଅଟନ୍ତି ସେ ଜୋଇଁ ।
ତେଣୁ କରି ଯୁଦ୍ଧ କଲେ ଅଗ୍ନି କୋପହୋଇ
ଶୁଣିଣ ବୋଲେ ରାଜନ ଅସମ୍ଭବ ବାଣୀ ।
ଦେବ ମନୁଷ୍ୟର କାହିଁ ବିଭା ହୁଏ ପୁଣି ॥
ଜୈମିନି ବୋଲନ୍ତି ତୁମ୍ଭେ ଶୁଣ ନୃପବଳା ।
ନୀଳଧ୍ୱଜ ରାଜାଙ୍କର ରାଣୀ ନାମ ଜ୍ୱାଳା ॥
ପରମା ସୁନ୍ଦରୀ ସେହୁ ସ୍ୱାମୀ ଅନୁଗତ ।
ସମୟରେ କନ୍ୟା ଏକ କଲା ସେହୁ ଜାତ ॥
ଆଶ୍ଚର୍ଯ୍ୟ ରୂପ ତାହାର ଭୁବନ ମୋହିନୀ ।
ସ୍ୱାହା ବୋଲି ନାମ ତାର ଦେଲେ ରାଜାରାଣୀ
ଶଶୀକଳା ସମ କନ୍ୟା ବଢିଲା ସୁଖରେ ।
କ୍ରମେ ଯୁବାବସ୍ଥା ଆସି ହୋଇଲା ତାହାରେ ॥
ଅପୂର୍ବ ଲାବଣ୍ୟ ତନୁ ଜନମନ ହରେ ।
ବ୍ରହ୍ମଜ୍ଞାନୀ ଟଳିଯିବେ ଦେଖି କାମ ଶରେ ॥
ନାହିଁ ନ ଥିବ ଧରାରେ ଏପରି ସୁନ୍ଦରୀ ।
ସତୀ ସାବିତ୍ରୀ ଯେ ସମ ନୋହିବେ ତାହାର
କନ୍ୟାର ବିଭା ନିମିତ୍ତ ରାଜା ଏକ ଦିନେ ।
ଡକାଇଣ ଅଣାଇଲେ ଆପଣା ସଦନେ ॥
ବୋଇଲେ ଶୁଣ ମୋବାଣୀଅଗୋସ୍ୱାହା ତୁହି
ବିବାହ ସମୟ ତୋର ଆସିଣ ଅଛଇ ॥
କାହାକୁ ତୁ ମନମଧ୍ୟେ କରିଅଛୁ ସ୍ଥିର ।
କି ଅବା କରିବି ତୋ ନିମିତ୍ତ ସ୍ୱୟମ୍ବର ॥
ଯେବେ ମୋତେ ମନକଥା କରିବୁ ଗୋପନ
ବିବାହ ହେଲେ ନରକେ ହୋଇବତୋ ସ୍ଥାନ ॥
ଏହା ଶୁଣିକରି ବାଳୀ ସଙ୍କୋଚରେ ବୋଲେ
ନରଲୋକେ ପତି ମୁଁ ନ ଦେଖେ ନୟନରେ
ଦେବତାଙ୍କ ମଧ୍ୟେ ମୁହିଁ ବିବାହ କରିବି ।
ଭାଗ୍ୟରେ ଯା ଥିବ ତାହା ଅବଶ୍ୟ ଭୋଗିବି ॥
ଦୁହିତାର ବାଣୀ ତହୁଁ ଜନକ ଶୁଣିଣ ।
ହସିଣ ତାହାର ପ୍ରତି ବୋଇଲେ ବଚନ ॥
ଦେବରାଜ ଦେବପୁରୀ ପରିତ୍ୟାଗ କରି ।
ବିଭା ହେବାକୁ ଆସିବେ ମର୍ତ୍ତ୍ୟକୁ ସୁନ୍ଦରୀ ॥
ଏପରି ଉଚ୍ଚ ଆଶା ତୁ ଛାଡ଼ି ମନୁ ତୋର ।
ଶୁଣିଣ ବୋଲଇ ସ୍ୱାହା ଶୁଣ ମୋର ଗୀର ॥
ଦେବରାଜଙ୍କୁ ବରଣ କରି ମୁଁ ନ ପାରେ ।
ଦୁଷ୍ଟଜନ ବୋଲି ସେହି ବିଖ୍ୟାତ ସଂସାରେ ॥
ଗୁରୁପତ୍ନୀ ପ୍ରତି ଯାର ଦୁଷ୍ଟ ବ୍ୟବହାର ।
କରିଛନ୍ତି ସେ କି ସ୍ୱାମୀ ହୋଇବେ ମୋହର
ବିଭା ହେବାକୁ ନରଙ୍କ ମଧ୍ୟେ ନାହିଁ ମନ ।
ହୃଦ ମଧ୍ୟେ ସ୍ଥିର ମୁହିଁ କରିଅଛି ଜାଣ ॥
ମନମଧ୍ୟେ ସ୍ଥିର ମୁହିଁ କରିଛି ଏଥର ।
ସଂସାରର ମୋକ୍ଷକର୍ତ୍ତା ଦେବ ବୈଶ୍ୱାନର ॥
ତାହାଙ୍କ ସଙ୍ଗରେ ମୋର ବିବାହ କରିବ ।
ଏହି କଥା ମନେ କରିଅଛି ପିତୃଦେବ ॥
ନାରୀଙ୍କ ଦେବତା ସ୍ୱାମୀ ଜାଣେ ସର୍ବଜନରେ ।
ସେହୁ ସ୍ୱାମୀ ଅନୁଗତ ଅଗ୍ନିଙ୍କ ଆଗରେ ॥
ଅତଏବ ସେ ପାବକ ଦର୍ଶନ କରିଣ ।
ଅନ୍ୟ ବର କରିବାକୁ ନୁହେ ମୋର ମନ ॥
ଅଗ୍ନି ବିନା ଅନ୍ୟଦେବେ ମୋରବାଞ୍ଛା ନାହିଁ
ନିୟମ କରିଛି ମୁହିଁ ଅହେ ନୃପସାଇଁ ॥
ଦେବ ଦାନବ ମାନବ ଯକ୍ଷ ବିଦ୍ୟାଧର ।
ଅଗ୍ନି ବିନା କାହାଠାରେ ନ ବଳେ ଅନ୍ତର ॥
ଅନ୍ୱେଷିଣ ଅନଳକୁ ବିନୟ ବଚନେ ।
ମୋତେ ବିଭା ହେବ ପିତା ହର୍ଷଯୁକ୍ତ ମନେ ॥
ଶୁଣିଣ କନ୍ୟାର ବାଣୀ ରାଜା ନୀଳଧ୍ୱଜ ।
ବିସ୍ମିତ ହୋଇଣ ମନେ ବୋଲେ ମହାରାଜ
ଦେଖିଣ କନ୍ୟାର ଏହି ନିଦାରୁଣ ପଣ ।
ମହାକୋପେ ନରପତି ବୋଇଲେ ବଚନ ॥

ଯାହାଁ ପାଇଁ ଏତେ ଜିଦ କର ଗୋ କୁମାରୀ
ଅଗ୍ନିକି ବରିବା ପାଇଁ ଶକ୍ତି କି ତୋହର ॥
ଜଗତ ପୋଡ଼ଣ ଯେହୁ ସୃଷ୍ଟି କରେ ନାଶ ।
ଯାହାର ଦୃଷ୍ଟିରେ ଭସ୍ମ ହୁଅଇ ପ୍ରକାଶ ॥
ନାମ ଯାର କୃଷ୍ଣବର୍ତ୍ମ କୁତ୍ସିତ କରମ ।
ତାକୁ ବରଣ କରିବୁ ନ ପାଉ ସରମ ॥
ଏକେ ସେ କଦର୍ଯ୍ୟରୂପ ଅଟେ ବୈଶ୍ୱାନର ।
ସାତଜିଭ ବିକଟାଳ ମୁଖ ଅଟେ ତାର ॥
ବୁଝିଲି ମୁଁ ଏତେଦିନେ ନାରୀଙ୍କର ଗତି ।
କୁତ୍ସିତ କୁରୂପ ସଙ୍ଗେ ପାନ୍ତି ବହୁ ପ୍ରୀତି ॥
ଦେଖଦେଖ ଜହ୍ନୁକନ୍ୟା ତ୍ରିଲୋକ ତାରଣୀ ।
ନୀଚ ସଂସର୍ଗରୁ ତାର ତେଜ ହୁଏ ହାନି ॥
ପିତାଙ୍କର ବାକ୍ୟ ଶୁଣି ଦୁଃଖେ ସ୍ୱାହା ସତୀ ।
ଉତ୍ତର ନ ଦେଇ ଗୃହେ କଲେ ବେଗେ ଗତି
ନିର୍ଜ୍ଜନ ସ୍ଥାନରେ ବସି ଅଗ୍ନି ଆରାଧିଲେ ।
ବିଧିମତେ ବାରମାସ ଯାଗ ପୂଜା କଲେ ॥
ଅଗ୍ନି ତପ ଅଗ୍ନି ଜପ ଅଗ୍ନିଙ୍କୁ ସେ ଧ୍ୟାନ ।
ଏହା ଭିନ୍ନ ଅନ୍ୟ କିଛି ନ ଥାଇ ତା ମନ ॥
ଦ୍ୱିଜ ସଙ୍ଗେ ଉପବନେ ଆନନ୍ଦେ ଅର୍ଚ୍ଚନ ।
ନାନାଦ ଭୋଗ ଦେଇଣ ପଶଇ ଶରଣ ॥
ଅଗୁରୁ ଚନ୍ଦନ ଆଦି ସୁଗନ୍ଧ ପ୍ରଦାନ ।
ମିଷ୍ଟାନ୍ନ ପଦାର୍ଥ କ୍ଷୀର ପ୍ରଭୃତି ବ୍ୟଞ୍ଜନ ॥
ହୃଦୟ ସମର୍ପି ପୂଜା କରେ ନିରନ୍ତରେ ।
ଦଣ୍ଡେ ମାତ୍ର ନ ଭୁଲଇ ନାମ ସେ ମୁଖରେ
ଏହିପରି କିଛିଦିନ ବ୍ରତ ସେହି କଲା ।
କଠୋର ତପେ ଅଗ୍ନିଙ୍କ ଆସନ ଟଳିଲା ॥
ମନମଧ୍ୟେ ଦେବ ହୁତାଶନ ଚିନ୍ତା କଲେ ।
କିଏ ମୋତେ ମର୍ତ୍ତ୍ୟପୁରେ ଭାବୁଛି ଭାବିଲେ ॥
ଏ ସମୟେ ନାରଦ ମୁନି ଯେ ପ୍ରବେଶିଲେ ।
ଅଗ୍ନି ପୁରୁଷଙ୍କୁ ସେହି ସମସ୍ତ କହିଲେ ॥
ବୋଇଲେ ମର୍ତ୍ତ୍ୟରେ ରାଜା ନୀଳଧ୍ୱଜ ନାମ ।
ସ୍ୱାହା ବୋଲି ଅଟେ ତାଙ୍କ ଦୁହିତା ପ୍ରଧାନ ॥
ଅତ୍ୟନ୍ତ ସୁନ୍ଦରୀ ସେହି ତ୍ରିପୁର ମୋହିନୀ ।
ରତି ଶଚୀ ସମାନ ନୋହିବେ ତାକୁ ପୁଣି ॥
ଦିନେ ତା ପିତର ଡାକ ବୋଇଲେ ତାହାକୁ
ମନରେ ସ୍ଥିର କରିଛୁ ବରିବୁ କାହାକୁ ॥
ପିତାଙ୍କ ବଚନ ଶୁଣି ବୋଲେ ସ୍ୱାହାଦେଈ ।
ଅଗ୍ନି ଦେବତାଙ୍କୁ ମୁଁ ବରିଛି ସ୍ୱାମୀ ପାଇଁ ॥
ଏସନ ସମାଚାର ଶୁଣି ସେ ଅଗ୍ନି ପୁରୁଷ ।
ବ୍ରାହ୍ମଣର ବେଶ ଧରି ଆସିଲେ ସେ ଦେଶ ॥
ନୀଳଧ୍ୱଜ ରାଜାପୁରେ ପ୍ରବେଶ ହୋଇଲେ ।
ବ୍ରାହ୍ମଣଙ୍କୁ ଦେଖି ନୀଳଧ୍ୱଜ ମାନ୍ୟକଲେ ॥
ପାଦଧୋଇ ଦେଇଣ ସେ ଆସନେ ବସାଇ ।
କୋମଳ ସ୍ୱରେ ବୋଲନ୍ତି ଆସିଲେ କପାଁଇ
ରାଜା ବାଣୀ ଶୁଣିଣ ବୋଲନ୍ତି ବୈଶ୍ୱାନର ।
ଯେ ଯୋଗୁ ଆସିଲି ମୁହିଁ ଶୁଣ ନୃପବର ॥
ଶାଣ୍ଡିଲ୍ୟ ଗୋତ୍ରେ ମୋ ଜନ୍ମ ବ୍ରହ୍ମାଙ୍କନନ୍ଦନ
ଶୁଣିଛୁ କୁମାରୀ ତବ ଗୃହେ ବିଦ୍ୟମାନ ॥
ବିବାହ ନିମିତ୍ତ ଆମ୍ଭେ ଏଠାକୁ ଆସିଲୁ ।
ସଂସାର କରିବା ପାଇଁ ମନେ ସ୍ଥିର କଲୁ ॥
ଏହା ଛଡ଼ା କିଛି ମୋର ନାହିଁ ପ୍ରୟୋଜନ
ଯା ଇଚ୍ଛା ତୁମ୍ଭର ରାଜା କହନ୍ତୁ ବହନ ॥
ଶୁଣି ରାଜା ବିନୟରେ ବୋଇଲେ ତାହାଙ୍କୁ ।
କନ୍ୟାର ନିୟମ ମୁହିଁ କହୁଛି ତୁମ୍ଭଙ୍କୁ ॥
କନ୍ୟା ମୋର ଗୃହେ ଅଛି ନୁହେ ବିବାହିତ
ମନୁଷ୍ୟରେ ବିଭା ପାଇଁ ନ ବଳେ ତା ଚିତ୍ତ ॥
ଏକମାତ୍ର ଇଚ୍ଛା ତାର ଶୁଣ ଦ୍ୱିଜବର ।
ଅଗ୍ନିଙ୍କି ପତି ପଦରେ ବରିବ ନିକର ॥
କଠୋର ବ୍ରତ କରଇ ଅଗ୍ନି ବରିବାରେ ।
ସୁର ନର ଭେଦାଭେଦ କିଛି ନ ବିଚାରେ ॥
ସ୍ୱାହାବିନୁ ଅନ୍ୟକନ୍ୟା ବରିବାକୁ ଯେବେ ।
ଇଚ୍ଛା ଥାଏ ଆମ୍ଭକୁ ହେ ଫେଡ଼ି କହ ତେବେ
କରିବି ତୁମ୍ଭର ହସ୍ତେ ତାହାଙ୍କୁ ପ୍ରଦାନ ।
ଦ୍ୱିଜେ କନ୍ୟା ଦାନ ଦେଲେହୁଏ ବହୁପୁଣ୍ୟ
ଶୁଣି ବିପ୍ରରୂପୀ ଅଗ୍ନି ବୋଲନ୍ତି ବଚନ ।
ସ୍ୱାହା ଭିନ୍ନ ଅନ୍ୟଠାରେ ନାହିଁ ମୋର ମନ
ହୁତାଶନ ପରିଚୟ ପାଇ ନୃପବର ।
କିଛି ନ କହିଣ ହେଲେ ମଉନ ଅନ୍ତର ॥
ସ୍ୱାହାର ହୃଦୟେ ହେଲା ଆନନ୍ଦ ସଞ୍ଚାର ।
ଜାଣିଲା ଅଗ୍ନିଙ୍କ କୃପା ହୋଇଛି ଏଥର ॥
ବାରବ୍ରତ ଉପବାସ କାତ୍ୟା ଆରାଧନା ।
ଏତେ ଦିନରେ ଫଳିଲା ତାହାର କାମନା ॥

ସଭାମଧ୍ୟେ ରାଜା ପାଚ ମନ୍ତ୍ରୀଙ୍କି ଗୃହିଁଣ ।
ବୋଇଲେ ଏ ଅଗ୍ନିଦେବ ଅଟନ୍ତି କି ମନ୍ତ୍ରେ ॥
ଶୁଣି ଏ ବଚନ ଏକ ବୃଦ୍ଧ ମନ୍ତ୍ରୀବର ।
ପରୀକ୍ଷା ପାଇଁ ଅଗ୍ନିଙ୍କୁ କହିଲେ ଏ ଗୀର ॥
ଶୁଣିବା ମାତ୍ରକେ ଅଗ୍ନି ମନେ ରୋଷ ବହି ।
ଦଗ୍ଧକଲେ ସେ ବୃଦ୍ଧଙ୍କୁ ସଭାମଧ୍ୟେ ତହିଁ ॥
ରାଜାଙ୍କର ବାକ୍ୟେ ଅଗ୍ନି ସନ୍ତୁଷ୍ଟ ହୋଇଲେ ।
ରାଜାଙ୍କର ଶାଳୀ ତହିଁ ବଚନ ବୋଇଲେ ॥
ଏ ବ୍ରାହ୍ମଣ ଭୋଜବିଦ୍ୟା ଅବା ଥିବ ଜାଣି ।
ପରୀକ୍ଷା କରିବ ମୁହିଁ ଆହେ ନୃପମଣି ॥
ଏହା କହି ଅଗ୍ନିଙ୍କୁ ସେ ନବରକୁ ନେଲେ ।
ପରୀକ୍ଷା ନିମନ୍ତେ ତହୁଁ ବଚନ ବୋଇଲେ ॥
ଶୁଣି ଅଗ୍ନିଦେବ ତାଙ୍କ ପୁର ଦେଲେ ଦହି ।
ବଚବ ମନ୍ଦିର ଉପବନ ସହିତେ ହିଁ ॥
ଦେଖିଣ ଏସନ ରୀତ ରାଜାଙ୍କର ଶାଳୀ ।
ରାଜାଙ୍କ ପାଶକୁ ଯାଇ ଊର୍ଦ୍ଧ୍ୱଶ୍ୱାସେ ମିଳି ॥
ବୋଇଲେ ହେ ମହାରାଜା ଶୁଣ ମୋ ବଚନ ।
ବେଗେ ଶାନ୍ତକର ପୁର ହୋଇଲା ଦହନ ॥
ଶୁଣି ରାଜା ଅଗ୍ନି ପାଶେ ଯାଇ ପ୍ରବେଶିଲେ ।
ବହୁ ସ୍ତବ ସ୍ତୁତିକରି ସନ୍ତୋଷ କରିଲେ ॥
ତହିଁପରେ ସ୍ୱାହାଙ୍କର କନିଷ୍ଠା ଭଗିନୀ ।
ପରୀକ୍ଷା ପାଇଁ ଅଗ୍ନିଙ୍କୁ ବୋଇଲେ ସେ ବାଣୀ ॥
କହୁଁ କହୁଁ କୋପନେତ୍ରେ ଗୃହିଁଲେ ପାବକ
ଦଗ୍ଧକଲେ ତାଙ୍କ ପୁର ଦେବ ହୁତଭୁକ ॥
ବସ୍ତ୍ରରେ ଲାଗନ୍ତେ ନିଆଁ ଉଲଗ୍ନ ହୋଇଣ ।
ପିତା ପାଶେ ପ୍ରବେଶିଲେ ଯାଇଁ ସେ ବଦନ ॥
ବୋଇଲେ ତୁମ ଜାମାତା ଏତେ ଦଶାଦେଲେ
ମନ୍ଦିର ପୁର ସହିତେ ସବୁ ଦଗ୍ଧ କଲେ ॥
ଶାନ୍ତକର ତାଙ୍କୁ ରାଜା ବେଗେ ବିଭାଦିଅ ।
ନ ହେଲେ ପୁର ସହିତ ସବୁ ହେବ କ୍ଷୟ ॥
ସନ୍ତୁଷ୍ଟ ହୋଇଣ ରାଜା ଅଗ୍ନିଙ୍କୁ ଡାକିଲେ ।
ବିଧିମତେ ସ୍ୱାହା କନ୍ୟା ବିବାହ ସେ ଦେଲେ
ଜ୍ୱାଳାବତୀ ରାଣୀଙ୍କର ପରାମର୍ଶ ପାଇ ।
ଘରଜୋଇଁ କରିଣ ରଖିଲେ ନୃପସାଇଁ ॥
ସେ ହେତୁ ଅର୍ଜୁନ ସଙ୍ଗେ ଅଗ୍ନି କଲେ ରଣ ।
ପୂର୍ବର ସମ୍ବନ୍ଧ ସବୁ କରି ବିସ୍ମରଣ ॥

ଅର୍ଜୁନଙ୍କଠାରୁ ଅଗ୍ନି ପରାଜୟ ପାଇ ।
ନୀଳଧ୍ୱଜ ରାଜାପୁରେ ପ୍ରବେଶିଲେ ଯାଇଁ ॥
ଅଗ୍ନିଙ୍କ ଦେଖିଣ ରାଜା ସନ୍ତୋଷ ହୋଇଲେ
ଅର୍ଜୁନେ ପରାସ୍ତ କରି ଆସିଲ ତ ଭଲେ ॥
ରାଜାଙ୍କର ବାଣୀ ଶୁଣି ଦେବ ବୈଶ୍ୱାନର ।
କୋମଳ ଗମ୍ଭୀର ସ୍ୱରେ ବୋଲନ୍ତି ଉତ୍ତର ॥
ଯାର ସଖା ନାରାୟଣ ଦେବ ମଧୁହାରୀ ।
ଧନୁର୍ଦ୍ଧର ପଣେ ଯାରେ ଇନ୍ଦ୍ର ନୁହେ ସରି ॥
ତ୍ରିଭୁବନ ଏକତ୍ରିତ ହୋଇଲେ ସମରେ ।
ଏକାକୀ ଅର୍ଜୁନ ନାତ୍ରି ପାରେ ସହଜରେ ॥
କି ଛାର ଅନଳ ମୁହିଁ ଦେବ ସୁରପତି ।
ଯମ ବରୁଣ କୁବେର ଆଦି ରକ୍ଷପତି ॥
ଖାଣ୍ଡବ ଦହନେ ସର୍ବେ ଏକତ୍ରିତ ହୋଇ ।
ପରାସ୍ତ ହୋଇଲେ ଯୁଦ୍ଧେ ଅର୍ଜୁନର ଠାଇଁ ॥
ସେ ବୀରକୁ ଜିଣିବାକୁ ତିନି ଭୁବନରେ ।
ଅଛି କେଉଁବୀର ମୁହିଁ ନ ଦେଖେ ନେତ୍ରରେ
ଯେବେ ଆପଣା ମଙ୍ଗଳ ଗୃହ ନରବର ।
ଅଶ୍ୱ ସମର୍ପିଣ ତୁମ୍ଭ ରାଜ୍ୟ ରକ୍ଷାକର ॥
ଏ ବଚନ ଶୁଣି ରାଜା ଶଙ୍କିତ ମନ ।
ଜ୍ୱାଳାବତୀ ରାଣୀ ତହୁଁ ବୋଇଲେ ବଚନ ॥
କ୍ଷତ୍ରିୟ ହୋଇଣ କିପାଁ ଅଶ୍ୱ ଫେରାଇବ ।
କାପୁରୁଷ ବୋଲି ଲୋକେ ନିନ୍ଦିତହୋଇବ ॥
ପୁତ୍ର ଅମାତ୍ୟ ଆଦି ଛତ୍ର ବୀରଗଣ ।
ଏମାନଙ୍କୁ ସଙ୍ଗେ ନେଇ ବେଗେ କର ରଣ ।
ରାଣୀଙ୍କର ବାକ୍ୟେରାଜା ସନ୍ତୋଷ ହୋଇଲେ
ସୈନ୍ୟଘେନି ଅର୍ଜୁନର ଆଗରେ ମିଳିଲେ ॥
କହୁ କହୁ ସିଂହରଡ଼ ଦେଲେ ସୈନ୍ୟଗଣ ।
କୋପଭରେ ପାର୍ଥ ହସ୍ତେ ନେଲେ ଶରାସନ ॥
ବିଜୟ ଗାଣ୍ଡିବେ ବୀର ଯୋଖି ତୀକ୍ଷ୍ଣ ଶର ।
ଶ୍ରାବଣର ଧାରା ପ୍ରାୟେ ବରଷିଲେ ଶର ॥
ନାହିଁ ଦଗବିଦଗ ନାହିଁକି ଅବସର ।
ନିରନ୍ତରେ ବାଣ ମାରେ ପାଣ୍ଡବ ସୁନ୍ଦର ॥
ନୀଳଧ୍ୱଜ ସୈନ୍ୟଗଣେ ଯମାଳୟେ ଗଲେ ।
ପୁତ୍ର ଅମାତ୍ୟ ତହିଁ ମରଣ ଲଭିଲେ ॥
କୋପେ ନୀଳଧ୍ୱଜ ବର୍ଷେ ତୀକ୍ଷ୍ଣ ଶରମାନ ।
ସିଂହ ସଙ୍ଗେ ଶଶା କାହୁଁ ହୋଇବ ସମାନ ॥

ଶେଷେ ଅର୍ଜ୍ଜୁନର ଶରେ ହୋଇଣ ପୀଡ଼ିତ ।
ନଗରକୁ ପଳାଇଣ ଗଲେ ନରନାଥ ॥
ଯେ ସକଳ ସୈନ୍ୟଗଣ ଜୀବନରେ ଥିଲେ ।
ଜୀବନର ଆଶେ ସର୍ବେ ତହୁଁ ପଳାଇଲେ ॥
ବହୁକ୍ଷଣ ପରେ ରାଜା ଶାନ୍ତକର ମନ ।
ରାଣୀକି ଡାକିଣ ପାଶେ କରନ୍ତି ଭର୍ତ୍ସନ ॥
ସ୍ତ୍ରୀ ବୁଦ୍ଧି ପ୍ରଳୟ ଅଟେ ଶାସ୍ତ୍ରର ପ୍ରମାଣ ।
ତୋ ବୁଦ୍ଧିରେ ହରାଇଲି ପୁତ୍ରପୌତ୍ର ଗଣ ॥
ଯେଉଁ ବୀର ତିନି ଭୁବନରେ ଏକେଶ୍ୱର ।
ଦେବ ଗନ୍ଧର୍ବ ଯା ନାମେ ହୋନ୍ତି ଥରହର ॥
ଯା ହେବାର ହେଲା ଆଜ ତୋର ମୁଖ ମୁହିଁ ।
ନ ଚାହିଁବ ଯେଣେ ଇଚ୍ଛା ତେଣେ ଯାଅ ତୁହି
ରାଣୀକି ଭର୍ତ୍ସନା କରି ନୀଳଧ୍ୱଜ ବୀର ।
ଅଶ୍ୱସହ ପ୍ରବେଶିଲେ ଅର୍ଜ୍ଜୁନ ପାଶର ॥
ଅଶ୍ୱକୁ ସମର୍ପି ଦେଇ ବିନୟେ ବୋଲନ୍ତି ।
ସର୍ବ ଅପରାଧ କ୍ଷମ ବାସବ ସନ୍ତନ୍ତି ॥
ନ ଜାଣିଣ ଦୋଷ ମୁହିଁ କରିଛି ବହୁତ ।
ନିଜଗୁଣେ କ୍ଷମା ମୋତେ ଦିଅ କୁନ୍ତୀସୁତ ॥
ଶୁଣିଣ ଅର୍ଜ୍ଜୁନ ମହା ଆନନ୍ଦ ହୋଇଲେ ।
ସମାଦର କରିଣ ରାଜାଙ୍କୁ ବସାଇଲେ ॥
ନିଜ ଅସ୍ଥାନେ ବସାଇ ବିନୟେ ବୋଲନ୍ତି ।
ଅଶ୍ୱମେଧ ଯାଗ ହେବ ଆହେ ନରପତି ॥
ବଚ୍ଛେଷ ଯାଗ ଅଶ୍ୱ ରକ୍ଷାର କାରଣ ।
ମୋ ସହିତ ଚାଲ ରାଜା ଅଶ୍ୱ ରକ୍ଷାର୍ଥେଣ ॥
ଅର୍ଜ୍ଜୁନଙ୍କ ଠାରୁ ରାଜା ସମ୍ମାନ ପାଇଣ ।
ପାର୍ଥଙ୍କ ସହିତ ଗଲେ ଅଶ୍ୱକୁ ରକ୍ଷିଣ ॥
ଏଣେ ଜ୍ୱାଲାବତୀ ରାଣୀ ଅପମାନ ପାଇ ।
ନିଜ ଭାଇ ଉଲ୍ମୁକର ପାଶେ ଗଲା ସେହି ॥
ଏବେ ବଡ଼ ଅଭିମାନ ତହିଁରେ ଭର୍ତ୍ସନା ।
ପତିଙ୍କ ନିକଟୁ ରାଣୀ ପାଇଛି ଲାଞ୍ଛନା ॥
ବୋଇଲା ସଭାରେ ଶୁଣ ମୋର ନିବେଦନ ।
ମାନ ଭିକ୍ଷାକର ଭାଇ ମାନି ମୋ ବଚନ ॥
ଅର୍ଜ୍ଜୁନ ଆସିଣ ପୁତ୍ର ନାତି ମୋର ନାଶି ।
ରାଜ୍ୟଧ୍ୱଂସ କଲା ମୋର ଜନ୍ମେ ଦୁଃଖରାଶି ॥
ଅର୍ଜ୍ଜୁନ ବିନାଶି ଭାଇ ରଖ ମୋର ମାନ ।
ଶୁଣିଣ ଉଲ୍ମୁକ ବୋଲେ ତାହାକୁ ବଚନ ॥
ଶାନ୍ତହୋଇ ରହ ସମୟ ପାଇଲେ ମୁହିଁ ।
ତୋର ମାନ ଫେରାଇଣ ଦେବି ଶୁଦ୍ଧମୁହିଁ ॥
ସମ୍ମୁଖ ଯୁଦ୍ଧରେ ଅର୍ଜ୍ଜୁନଙ୍କୁ କେଉଁ ବୀର ।
ପରାଜିତ କରିବ ଏ ତିନି ଭୁବନର ॥
ଅକାରଣ ବାଧା ହୋଇ ଜୀବନ ତେଜିବ ।
ଶୁଣି ଜ୍ୱାଲାବତୀ ବୋଲେ କିପାଁ ରଖୁ ଜୀବ ॥
କ୍ଷତ୍ରିୟ ଔରସେ ଜନ୍ମି ଏତେ ହୀନବଳ ।
କିପାଇଁ ଧରାରେ ବୋଲାଉଛ ମହୀପାଳ ॥
ଶୁଣିଣ ଉଲ୍ମୁକ ବହୁ ଧିକ୍‌କାର କରିଲା ।
ରକ୍ତବର୍ଣ୍ଣ ଚକ୍ଷୁ କରି ଭଗ୍ନୀକି ବୋଇଲା ॥
ତୋର ଯୋଗୁ ମାହିଷ୍ମତୀପୁର ନଷ୍ଟ ହେଲା ।
ତୋର ଯୋଗୁ ରାଜ୍ୟଯାକ ଉଚ୍ଛନ୍ନ ହୋଇଲା ॥
କିପାଁ ତୁ ବଳାଉ ମୋର ଧନ ନାଶ ଯାଇଁ ।
କହମୋତେ କେଉଁ ଦୋଷେ ଦୋଷୀ ଅଟେ ମୁହିଁ
ତୋ ନିଜଦୋଷରୁ ସ୍ୱାମୀ ଦେଲେ ଅପମାନ ।
ତୋତେ ଛାଡ଼ିଗଲେ ସେହି ଅର୍ଜ୍ଜୁନ ପଛେଣ
ଧିକ ତୋର ଜନ୍ମ ଧିକ ତୋହର ପ୍ରକୃତି ।
ଯେଣେ ଇଚ୍ଛା ତେଣେ ଯାଅ କହୁଛି ସମ୍ପ୍ରତି ॥
ଭାଇର ମୁଖରୁ ଯହୁଁ ଏସନ ଶୁଣିଲା ।
ତହୁଁ ଜ୍ୱାଲାବତୀ ଅପମାନ ପାଇଗଲା ॥
ଗଙ୍ଗାତୀରେ ପ୍ରବେଶିଣ ଅତି ଦୁଃଖଭରେ ।
ନାବର ଉପରେ ଚଢ଼ିଲା ସେ ଅତି ଖରେ ॥
ଦୈବେ ଗଙ୍ଗାଜଳ ଆସି ପଡ଼ନ୍ତେ ତା ପର ।
କ୍ରୋଧରେ ବୋଇଲେ ଜ୍ୱାଳା କପାପ ମୋହର
କି ଦୁର୍ଯୋଗେ ଏଥେଁ ଆସି ପହଞ୍ଚିଲି ମୁହିଁ ।
କେଉଁ ଦାଷୁଁ ଗଙ୍ଗାଜଳ ଲାଗିଲା ମୋ ଦେହୀ ॥
କି ଦୋଷେ ଏ ଅପବିତ୍ର ଜଳକୁ ଛୁଇଁଲି ।
ପୂର୍ବର ସୁକୃତ ନାଶି ପାପୀ ମୁଁ ହୋଇଲି ॥
ଶୁଣି ଏ ବଚନ ବୋଲେ ଅନ୍ୟ ଏକନାରୀ ।
ଗଙ୍ଗାଜଳ ନିନ୍ଦା କଲୁ ତୁହି ଲୋ ପାମରୀ ॥
ଯା ଜଳ ଛୁଇଁବା ମାତ୍ରେ ସର୍ବପାପ ଦୂର ।
କି ନିମନ୍ତେ ନିନ୍ଦା ତୁହି କରୁ ଲୋ ଏ ନୀର ॥
ଜ୍ୱାଲା ବୋଲେ ପୂର୍ବେ ଗଙ୍ଗା ଶାନ୍ତନୁଙ୍କ ନାରୀ
ହୋଇଥିଲା ସାତ ସୁତ ଜନ୍ମିଲେ ଏହାରି ॥
ଛଅ ପୁତ୍ର ନାଶିଥିଲା ଏହି ଦୁରାଚାରୀ ।
ଭୀଷ୍ମ ନାମେ ଏକପୁତ୍ର ଥିଲା ଯେ ଏହାରି ॥

ତାକୁ ରଣରେ ଅର୍ଜ୍ଜୁନ କରିଲା ନିଧନ ।
ଅଣ୍ଡକୁଡ଼ା ଦୋଷେ ଅପବିତ୍ର ହୁଏ ଜାଣ ॥
ଶୁଣି ଗଙ୍ଗାଦେବୀ କ୍ରୋଧେପାର୍ଥେଶାପଦେଲେ
ବଭ୍ରୁବାହାନର ହସ୍ତେ ମରିବୁ ତୁ ଭଲେ ॥
ଶାପଦେଇ ଗଙ୍ଗାଦେବୀ ହେଲେ ଅନ୍ତର୍ଦ୍ଧାନ ।
ତହୁଁ ଜ୍ୱାଳା କ୍ରୋଧେ କଲା ଅଗ୍ନି ଆରୋପଣ
ଗଙ୍ଗାଜଳେ ପ୍ରବେଶିଣ ଅଗ୍ନି ଅରୋପିଲା ।
ଧର୍ମେ ସାକ୍ଷୀକରି ପାର୍ଥେ ଶାପ ସେହୁ ଦେଲା
ଯେପରି ସମରେ ପଡ଼ିଲା ମୋ ପୁତ୍ର ଶିର ।
ସେହୁପରି ତୋ ମୁଣ୍ଡ ପଡିବ ବୀରବର ॥
ଏପରି ଶାପ ଦେଇଣ ଅଗ୍ନିରେ ପଶିଲା ।
ଗୃହୁଁ ଗୃହୁଁ ରାଣୀ ତହୁଁ ଭସ୍ମ ହୋଇଗଲା ॥
ନାଶ ହୋଇ ଏଡ଼େ ବଡ଼ ତାର ଅଭିମାନ ।
କୃଷ୍ଣପଦ ଚିନ୍ତି ବୋଲେ ମହାଦେବ ଦୀନ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାର କଥା ପ୍ରବନ୍ଧେ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

—o—

## ପଞ୍ଚଦଶ ଅଧ୍ୟାୟ

ରାଜ୍ୟନ୍ୟା ଖଙ୍କ୍ମାତ୍ ଦୋର୍ଦ୍ଦଣ୍ଡ ପାର୍ଥିତସଙ୍କୁଳା ଲ୍
କ୍ଲାଦନ୍ୟଃ କୋହକ୍ର ତାନଃ ପାତକନାଂସଦାଗତଃ

### ସୌଭରୀଙ୍କ ଆଶ୍ରମରେ ଅର୍ଜ୍ଜୁନର ପ୍ରବେଶ ଯଜ୍ଞ ଅଶ୍ୱର ଶିଳା ମୁକ୍ତ ଓ ଶିଳାରୂପୀ ବ୍ରାହ୍ମଣୀର ମୁକ୍ତି

ଜୈମିନି ବୋଲନ୍ତି ଶୁଣ ରାଜା ଜନ୍ମେଜୟ
ଏଥୁଅନ୍ତେ ଅଶ୍ୱସହ ପଣ୍ଡୁଙ୍କ ତନୟ ॥
ସୈନ୍ୟଘେନିବେଗେ ସେହୁ ଅଗ୍ରସର ହେଲେ
ନିବିଡ଼ ବନମଧ୍ୟରେ ଯାଇ ପହଞ୍ଚିଲେ ॥
ଦେଖିଲେ ସେ ବନଶୋଭା ଅତି ମନୋହର
ହିଂସ୍ର ଅହିଂସ୍ରକ ଭାବେ ବୁଲନ୍ତି ସେଠାର ॥
ପୁଣ୍ୟମୟ ପବିତ୍ର ଅଟଇ ସେ ସ୍ଥାନ ।
ତହିଁ ମଧ୍ୟେ ଅଶ୍ୱ ବେଗେ କରଇ ଗମନ ॥
ଯାଉଁ ଯାଉଁ ସେହୁ ଅଶ୍ୱ ପଥର ମଧ୍ୟରେ ।
ବଡ଼ ଏକ ଶିଳା ପାଶେ ମିଳିଲା ସତ୍ୱରେ ॥

ଯୋଜନେକ ଆୟତନ ଅଟେ ସେ ଶିଳାର ।
ତହିଁରେ ଲାଗିଲା ଦେହ ବେଗେ ସେ ଅଶ୍ୱର
ଛୁଇଁବା ମାତ୍ରକେ ଶିଳା ଅଶ୍ୱ ଦେହେ ଲାଗେ
ଛଡ଼ି ନ ପାରିଣ ଅଶ୍ୱ ଗୃହେଁ ସୈନ୍ୟଦଳେ ॥
ଅଶ୍ୱର ଏସନ ଗତି ଦେଖି ସୈନ୍ୟଗଣ ।
ବେଗେ ଯାଇ ଅର୍ଜ୍ଜୁନଙ୍କୁ ବୋଇଲେ ବଚନ ॥
ଅସି ଦେଖ ବୀରବୀର ଅଶ୍ୱବର ଗତି ।
ଶୁଣି ଅର୍ଜ୍ଜୁନ ଆସିଲେ ପ୍ରଦ୍ୟୁମ୍ନ ସହିତ ॥
ମହା ବିସ୍ମୟରେ ଏବେ ପଡ଼ି ଅର୍ଜ୍ଜୁନ ।
ଦେଖିଣ ଅଶ୍ୱ ଅବସ୍ଥା ସଶଙ୍କିତ ମନ ॥
ସମସ୍ତ ସୈନ୍ୟଙ୍କୁ ଗୃହିଁ ଅର୍ଜ୍ଜୁନ ବୋଇଲେ ।
ଅଶ୍ୱକୁ ସର୍ବେ ଉଦ୍ଧାର କର ଅବହେଳେ ॥
ଶୁଣି ସର୍ବ ସୈନ୍ୟଗଣ ଅଶ୍ୱକୁ ଧରିଣ ।
ଓଟାରିଲେ ଯଥାଶକ୍ତି ଦେଖାଇ ବିକ୍ରମ ॥
ଯେତେ ଓଟାରିଲେ ହେଲେ ଅଶ୍ୱ ନ ଚଳଇ ।
ହେଟ ମୁଖ ହୋଇ ସୈନ୍ୟ ରହିଲେକ ତହିଁ ॥
ଦେଖିଣ ଏସନ ରୀତି ପାଣ୍ଡବ ଅର୍ଜ୍ଜୁନ ।
ଦେଖିଲେ ନିକଟେ ଅଛି ଏକ ତପୋବନ ॥
ଶାନ୍ତିମୟ ନିର୍ଜ୍ଜନତା ଅଟଇ ସେ ସ୍ଥାନ ।
ପୁଣି ଦେଖା ଯାଉଅଛି ଋଷିଙ୍କ ଆଶ୍ରମ ॥
ଗୃହଅଡ଼େ ଗଛ ସବୁ ଶୋଭଇ ବିସ୍ତର ।
ପୀତବର୍ଣ୍ଣ ଦେଖାଯାଏ ଶରୀର ତାଙ୍କର ॥
ଶାଳ ପିଆଶାଳ ଶିଶୁ ଅଶନ ଚନ୍ଦନ ।
ଯାମୁ ବରକୋଳି ଆମ୍ବଗଛ ଶୋଭାବନ ॥
କି ଶୋଭା ଦିଶୁଅଛି ଅହା ଏ ପବିତ୍ର ସ୍ଥଳ ।
ଗୃହଅଡେ ଶୋଭା ଦିଶେ କନିଅର ଫୁଲ ॥
ବକୁଳ ତଗର ଆମ୍ବ ଶୋଭେ ଗୃହଭିତ ।
ଚମ୍ପା ନାଗେଶ୍ୱର ଆଦ ହୋଇଛି ବିଦିତ ॥
ପଶୁ ପକ୍ଷୀମାନେ ହିଂସା ଭାବ ଛାଡ଼ି ଦେଇ ।
ଅତ୍ୟନ୍ତ ଆନନ୍ଦେ କ୍ରୀଡ଼ା କରୁଛନ୍ତି ତହିଁ ॥
ମହାମୁନି ସୌଭରଙ୍କ ତପର ବଳରେ ।
ସିଂହ ବ୍ୟାଘ୍ର ବୁଲୁଛନ୍ତି ଛେଳି ସହିତରେ ॥
ଅନୁଚରେ ସଙ୍ଗେ ନେଇ ସେ ବନକୁ ଗଲେ ।
ଋଷିବର ଜପ କରୁଛନ୍ତି ସେ ଦେଖିଲେ ॥
ଅତ୍ୟନ୍ତ ପବିତ୍ର ସ୍ଥଳ ଦେଖି ବୀରବର ।
କ୍ରମେ କ୍ରମେ ଅଗ୍ରସର ହେଲେ ସେ ସ୍ଥାନର ॥

ଋଷିଙ୍କ ପାଦରେ ପଡ଼ି ପାର୍ଥ ବୀରବର ।
ଆପଣା ବୃତ୍ତାନ୍ତ ସବୁ କଲେକ ବିସ୍ତାର ॥
ଅର୍ଜୁନଙ୍କ ଭକ୍ତିଭାବ ଦେଖି ତପୀସାଇଁ ।
ବୋଲନ୍ତି ଜାଣିଲି ଯୋଗେ ତୁ ଯୁଧିଷ୍ଠି ଭାଇ
କରିବା ପାଇଁକି ଅଶ୍ୱମେଧ ଯୁଧିଷ୍ଠିର ।
ଅଶ୍ୱରକ୍ଷା ଅର୍ଥେ ତୋତେ ପଠାଇଲେ ବୀର
ଶୁଣିଣ ପାର୍ଥ ବୋଇଲେ ଅହେ ମୁନିବର ।
ଅଦ୍ଭୁତ ଘଟଣା ଏକ ଘଟିଲା ଏଠାର ॥
ଆନନ୍ଦ ମନରେ ଯାଗ ଅଶ୍ୱ ଆସୁଥିଲା ।
କ୍ରମେ ଆସି ଏ ବନରେ ଉପସ୍ଥିତ ହେଲା ॥
ଶରୀର ଘଷନ୍ତେ ଅଶ୍ୱ ଶିଳା ଏକ ପରେ ।
ଅସ୍ୱାଭାବିକ ଭାବରେ ଲାଗି ରହିଲା ସେଠାରେ ॥
ସୈନ୍ୟସହ ଯେତେ ଆମ୍ଭେ କଉଶଳ କଲୁ ।
ତଳେହେଁ ଅଶ୍ୱକୁ ତହୁଁ କାଢ଼ି ନ ପାରିଲୁ ॥
ଅହେ ମୁନିବର ମୋର ଶୁଣ ଏ ବଚନ ।
ଯଜ୍ଞ ଅଶ୍ୱ ମୁକୁଳାଇ ଦିଅହେ କହନ ॥
ଅର୍ଜୁନର ଭକ୍ତି ଦେଖି ସେ ମୁନି ପୁଙ୍ଗବ ।
ବୋଇଲେ ଶୁଣ ମୋ ବାଣୀ ହେ ବୀରପାଣ୍ଡବ
ଧ୍ୟାନବଳେ ଜାଣିଲି ମୁଁ କୁରୁକ୍ଷେତ୍ରଠାରେ ।
ଜ୍ଞାତିବଧ କରିଅଛ ରାଜ୍ୟ ନିମିତ୍ତରେ ॥
ସେ ପାପରୁ ମୁକ୍ତ ହେବା ପାଇଁ ଯୁଧିଷ୍ଠିର ।
ଅଶ୍ୱମେଧ ଆରମ୍ଭ ସେ କରିଛନ୍ତି ବୀର ॥
ଯଜ୍ଞକର୍ତ୍ତା ନାରାୟଣ ଅଛନ୍ତି ତା ପୁରେ ।
ଆଉ କି ଯଜ୍ଞ କରୁଚ କୁହ ମୋ ଆଗରେ ॥
ତପ ଯଜ୍ଞ ତୀର୍ଥ ବ୍ରତ ସବୁ ବିଡ଼ମ୍ବନା ।
ଶ୍ରୀହରିଙ୍କ ପାଦପଦ୍ମ ସାର ଏକା ଜିନା ॥
ଯାହାଙ୍କ ଦର୍ଶନେ ପାପୀ ମୁକତି ଲଭନ୍ତି ।
ଅନ୍ତେ ବୈକୁଣ୍ଠ ପୁରରେ ଯାଇଣ ବସନ୍ତି ॥
ଯା ଦର୍ଶନେ ସବୁ ପାପ ହୁଅଇ ଦହନ ।
ଯା ଦର୍ଶନେ ତ୍ରୟତାପ ଘୁଞ୍ଚିଯାଏ ପୁଣ ॥
ସମସ୍ତେ ହେଁ ଜ୍ଞାନ ଛାଡ଼ି ବାଇ ତୁମ୍ଭେ ହେଲ
ବୃଥା ପରିଶ୍ରମ କରି ଯାଗ ଆରମ୍ଭିଲ ॥
ସଂସାରେ ଜୀବର ଶକ୍ତି କିଛି ମାତ୍ର ନାହିଁ ।
ଯେଣିକି ବିଧାତା ନିଏ ତହିଁକି ଚଳଇ ।
ହରିର ମାୟାରେ ଏ ସଂସାର ଅଛି ଯାତ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ସହିତ ॥
ଅନିତ୍ୟ ସଂସାର ଏହି ନୁହଇ ଯେ ସ୍ଥିର ।
ଏକା ନିତ୍ୟ ସନାତନ ଅଟନ୍ତି ଶ୍ରୀଧର ॥'
ଶତେ ଅଶ୍ୱମେଧ କଲେ ଯେ ଫଳ ନୁହଇ ।
ଏକା କୃଷ୍ଣ ଦର୍ଶନେତ ଜୀବ ଧନ୍ୟ ହୋଇ॥
ଜାଣ ହେ କେବଳ ଏଥେ ଅଛି ଅଭିମାନ ।
ବୁଝି ନ ପାରନ୍ତି ଜୀବମାନେ ଏହି ଜ୍ଞାନ ॥
ମୁଖ ମଧ୍ୟେ ମୁହିଁ ଯାହା କରେ ଉଚ୍ଚାରଣ ।
ଜୀବାତ୍ମା ସ୍ୱରୂପେ ବ୍ରହ୍ମ ପ୍ରକାଶେ ତତ୍‌କ୍ଷଣ ॥
ଦେହଭେଦେଜ୍ଞାନଭେଦେଜାଣ ହେ ନିଶ୍ଚୟେ
ମାତ୍ର ବ୍ରହ୍ମ ଆତ୍ମାରୂପେ ସମଭାବେ ରହେ ॥
ମହାଅଗ୍ନିଠାରୁ ଯଥା ଦୀପର ଜନମ ।
ଈଶ୍ୱରଙ୍କଠାରେ ତେହ୍ନେ ଜୀବ ଆଗମନ ॥
ଫୁଲ ଯେପରି ନାନାଦି ଜାତିରେ ଫୁଟଇ ।
ମାତ୍ର ସୁଗନ୍ଧ ସମସ୍ତଠାରେ ରହିଥାଇ ॥
ଋଷିଙ୍କ ବଚନ ଶୁଣି ବୋଲନ୍ତି ଅର୍ଜୁନ ।
କୁରୁକ୍ଷେତ୍ରେ ଯୁଦ୍ଧେ କିଛି କରିଛୁ ଶ୍ରବଣ ॥
ମାତ୍ର ତାଙ୍କ ଉପଦେଶ ମତେ ଧର୍ମରାଜ ।
ଅଶ୍ୱମେଧ କରିବାକୁ ହେଉଛନ୍ତି ସଜ ॥
କେ ବୁଝିବ. ବିଷ୍ଣୁ ଚକ୍ର ବୈଷ୍ଣବୀ ବାସନା ।
ତାହାଙ୍କ ଇଚ୍ଛାରେ ଜୀବ କରେ କାର୍ଯ୍ୟନାନା
ହେ ଋଷି ପୁଙ୍ଗବ ଆଜ ତୁମ୍ଭ ସୁଦୟାରେ ।
ବୁଝିଲି ସକଳ ସନ୍ଦେହ ମୋ ଗଲା ଦୂରେ ॥
ହେ ଦେବ ପଶୁରୁଅଛି ଶିଳା ପରିଚୟ ।
କିପରି ତା ଜନ୍ମ କିପରି ସେ ହେବ ଲୟ ॥
ଏତକ ପ୍ରାର୍ଥନା ଦେବ ଚରଣେ ତୁମ୍ଭର ।
ଏ ବିଷୟ କହି ଶତ୍ରୁ ଚିନ୍ତା ଦୂର କର ॥
ଶୁଣିଣ ସୌଭରି ଋଷି ଅର୍ଜୁନେ ବୋଇଲେ
ଶୁଣ ମଧ୍ୟମ ପାଣ୍ଡବ ସେ ବିଷୟ ଭଲେ ॥
ଏହି ଯେ ପଥର ଏକ କରୁଛ ଦର୍ଶନ ।
ପୂର୍ବକାଳେ ଥିଲା ଏହି ବ୍ରାହ୍ମଣ ସନ୍ତାନ ॥
ତହିଁର ବୃତ୍ତାନ୍ତ ପାର୍ଥ ଶୁଣ ମନ ଦେଇ ।
ଉଦ୍ଧାଳକ ଋଷିଙ୍କର ପତ୍ନୀ ସେ ଅଟଇ ॥
ଚଣ୍ଡୀ ବୋଲି ନାମ ତାର ପ୍ରଚଣ୍ଡ ମୂରତି ।
ପିଲାଦିନୁ ଦୁଷ୍ଟା ସେହି ବଡ଼ କ୍ରୋଧମତି ॥
ଉଦ୍ଧାଳକ ଋଷି ତାହାକୁ ଯେ ବିଭାହେଲେ ।
ବେଦପାଠରେ ବ୍ରାହ୍ମଣେ ଯେ କଲ୍ୟାଣ କରିଲେ

ବ୍ରାହ୍ମଣେ ବୋଇଲେ ଅଗୋ ଚଣ୍ଡୀତୁମ୍ଭେ ଶୁଣ
ସ୍ୱାମୀ ଆଜ୍ଞା ମାନି ସୁଖେ କାଟ ତୁହି ଦିନ ॥
ଇତ୍ୟାଦି କଲ୍ୟାଣ ବାଣୀ ଶୁଣି ସେ କୁମାରୀ ।
ବୋଇଲେ କେବେ ନୋହିବ ସ୍ୱାମୀସେବାକାରୀ
ଏସନେକ ବହୁବିଧି ସାରି ସର୍ବେ ଗଲେ ।
ଉଦ୍ଦାଳକ ମନମଧ୍ୟେ ବିଚାର ଏହି କଲେ ॥
ବାଳିକା ବୟସ ହେତୁ ଏମନ୍ତ ବୋଲଇ ।
ବଡ଼ହେଲେ ବୁଦ୍ଧି ତାର ଯିବ ଭଲହୋଇ ॥
ଏହିପରି କ୍ରମେ ହେଲା ଯୌବନ ସମୟ ।
ଋଷିଙ୍କ ଆଜ୍ଞା ଅବଜ୍ଞା କରଇ ସେ ଝିଅ ॥
ଯେପରି ଆନନ୍ଦରେ ଋଷି ବୋଲନ୍ତି ବଚନ ।
ବିପରୀତ କାର୍ଯ୍ୟ ଚଣ୍ଡୀ କରେ ତା ଶୁଣିଣ ॥
ଏହିପରି ବହୁକଷ୍ଟେ ଉଦ୍ଦାଳକ ଋଷି ।
ସଂସାର କାଟନ୍ତି ଦୁଃଖେ ଯେଜନିଣ ପ୍ରେୟସୀ ।
ଦିନେଋଷି ବୋଇଲେଗୋ ଚଣ୍ଡୀ ଶୁଣ ବାଣି
ସ୍ନାନକରି ନିତ୍ୟ କମଣ୍ଡଳେ ଦିଅ ପାଣି ॥
ଋଷିଙ୍କ ବଚନ ଶୁଣି ଚଣ୍ଡୀ କୋପେ ଗଲା ।
କମଣ୍ଡଳ ଆଣି ଅଗଣାରେ ପିଟିଦେଲା ॥
ଏହିପରି ଋଷିବର ବିଷନ୍ନ ମନରେ ।
ଥାନ୍ତି ଦିନେ କୌଣ୍ଡିଲ୍ୟ ମିଳିଲେ ଆଶ୍ରମରେ॥
ନିଜର ଦୁଃଖ ବିଷୟ ସର୍ବ ମୁନିବର ।
କୌଣ୍ଡିଲ୍ୟଙ୍କ ଆଗେ ସେହି କହିଲେ ସକଳ॥
ଶୁଣିଣ କୌଣ୍ଡିଲ୍ୟ ଋଷି ବୋଇଲେ ବଚନ
ବିପରୀତ ଭାବେ ତାକୁ କହିବ ବଚନ ॥
ତେବେ ସେ ପ୍ରକୃତ କଥା କରିବ ହେ ଯତି
ପ୍ରକୃତିର ସ୍ୱଭାବ ତାର ଅଛଇ ଏ ମତି ॥
ଏକ ଦିନେ ଋଷିଙ୍କର ପିତୃଶ୍ରାଦ୍ଧ ହେଲା ।
ଚଣ୍ଡୀକି ବୋଇଲେ ଋଷି ଶୁଣ ଗୋ ଅବଳା।
ଆଜଦିନ ପିତୃଶ୍ରାଦ୍ଧ ହୋଇବ ଆମ୍ଭର ।
ମାଂସ ସୁରା ଆଦି ଆଣି ରଖିବୁ ସତ୍ୱର ॥
ଏ ବଚନ ଶୁଣି ଚଣ୍ଡୀ ବୋଲେ ମୃଦୁବାଣୀ ।
ବାତୁଳ ହେଲକି ତୁମେ ଅହେ ଋଷିମଣି ॥
ପିତୃ ଯଜ୍ଞ ଶୁଭଦିନ ଅଟଇ ଆମ୍ଭର ।
ଅମେଧ୍ୟ ପଦାର୍ଥମାନ ତୁମ୍ଭେ ତ୍ୟଜ୍ୟ ଧର ॥
ଏସନ କହିଣ ପାୟସାଦି ମିଷ୍ଟଅନ୍ନ ।
ସଜାଡ଼ିଣ ଚଣ୍ଡୀ ଡାକି ଆଣିଲା ବ୍ରାହ୍ମଣ ॥

ବିଧିମତେ ପିତୃକାର୍ଯ୍ୟ ସମାପନ କଲା ।
ପିଣ୍ଡକୁ ନେବା ସକାଶେ ବେଗେ ବାହାରିଲା॥
ଏ ସମୟେ ଉଦ୍ଦାଳକ ବୋଇଲେ ବଚନ ।
ଗଙ୍ଗାଜଳ ମଧ୍ୟେ ପିଣ୍ଡ ନକାଅ ବହନ ॥
ଶୁଣି ଚଣ୍ଡୀ କୋପଭରେ ଧାଇଁକାରେ ଗଲେ।
ଗୋବର ଖାତରେ ନେଇ ପିଣ୍ଡ ପକାଇଲେ ॥
ଦେଖିଣ ଏସନ ରୀତି ଋଷି କୋପ କଲେ ।
କ୍ରୋଧଭରେ ଚଣ୍ଡୀକି ସେ ଅଭିଶାପ ଦେଲେ
ବୋଇଲେ ଲୋ ଚଣ୍ଡୀ ତୋର ଏଡ଼େ ଦୁଷ୍ଟବୁଦ୍ଧି
ପାଷାଣ ହୁଅ ତୁ ବେଗେ ଯାଇଣ ଅବଧି ॥
ଶାପ ଶୁଣି ଚଣ୍ଡୀ ତହୁଁ ହେଲା ଥରହର ।
ବୋଇଲା ହେ ମୁନି ମୋତେ କର ପ୍ରତିକାର
ଭାର୍ଯ୍ୟା ଦୋଷ କରିଲେ ସ୍ୱାମୀ ତା ସହଇ।
ଏକ ଅପରାଧେ ପ୍ରଭୁ ଭୃତ୍ୟେ କି ତେଜଇ ॥
ଅଲଙ୍ଘ୍ୟ ତୁମ୍ଭର ବାକ୍ୟ କେବା ଲଙ୍ଘିପାରେ ।
ମୁକ୍ତିର ଉପାୟ କୁହ ଦୟାକରି ମୋରେ ॥
ଚଣ୍ଡୀର ବିନୟ ବାଣୀ ଶୁଣି ଋଷିବର ।
ବୋଇଲେ ମୋର ବଚନ ଶୁଣ ନାରୀବର ॥
ପାଷାଣ ହୋଇଣ ତୁହି ବନସ୍ତରେ ଥିବୁ ।
ଅର୍ଜୁନ କର ଲାଗନ୍ତେ ମୁକତ ହୋଇବୁ ॥
ଶୁଣିଲ ଅର୍ଜୁନ ତୁମ୍ଭେ ଶିଳାର ଚରିତ ।
ବେଗେ ଯାଇ ଅଶ୍ୱ ଛୁଇଁ କର ତାକୁ ମୁକ୍ତ ॥
ଋଷିଙ୍କର ବାଣୀ ଶୁଣି ବୀର ଅରଜୁନ ।
ଶୀଘ୍ରଗତିରେ ଛୁଇଁଲେ ଶିଳାକୁ ଯାଇଣ ॥
ଅର୍ଜୁନ କର ଲାଗନ୍ତେ ଅଶ୍ୱ ମୁକ୍ତ ହେଲା ।
ଦିବ୍ୟ ମନୋହର ନାରୀ ଶିଳା ଯେ ଧଇଲା ॥
ମୁକତି ପାଇଣ ଚଣ୍ଡୀ ଦିବ୍ୟ ବୁଦ୍ଧି ଧରି ।
ଉଦ୍ଦାଳକେ ସେବାକରି ରହିଲା ସୁନ୍ଦରୀ ॥
ସ୍ୱାମୀ ସଙ୍ଗେ ଆନନ୍ଦରେ ସମୟ କାଟିଲା ।
ସ୍ୱାମୀକି ସେବିଣ ତହିଁ ଚଣ୍ଡୀ ଯେ ରହିଲା ॥
ଯଜ୍ଞ ଅଶ୍ୱ ଆନନ୍ଦରେ ତହୁଁ ଗଲା ଚଳି ।
ବୋଲେ ମହାଦେବ କୃଷ୍ଣପଦ ମନେ ଭାଳି ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସାମୃତ ସାରକଥା ପ୍ରବନ୍ଧେ ନାମ
ପଞ୍ଚଦଶୋଽଧ୍ୟାୟଃ

—✻—

## ଷୋଡ଼ଶ ଅଧ୍ୟାୟ

ନମସ୍ତେ ଭଗବାନ୍‌ଦ୍ରଷ୍ଟା ନୃସିଂହ ବପୁଷେନମଃ ।
ତ୍ୱଦ୍‌ଭକ୍ତୋହଂ ସୁରଶ୍ରେଷ୍ଠପାହିମାଂ ଭବବନ୍ଧନାତ୍ ॥

### ହଂସଧ୍ୱଜପୁରେ ଅର୍ଜ୍ଜୁନଙ୍କ ଯାଗ ଅଶ୍ୱ ପ୍ରବେଶ ଓ ହଂସଧ୍ୱଜଙ୍କ ସହିତ ବିବାଦ

ଏଥୁଅନ୍ତେ ଜନ୍ମେଜୟ ଯୋଡ଼ି ବେନିକର
ବୋଇଲେ ହେ ମୁନି ମୋତେ କର ପ୍ରତିକାର
ଏଥୁଅନ୍ତେ କିସ ହେଲା କୁହ ଦୟାକରି ।
ଶୁଣି ସକଳ ପାତକ ଖଣ୍ଡିବଇଁ ମୁହିଁ ॥
ଜୈମିନି ବୋଲନ୍ତି ଶୁଣ ଆହେ ନରବର ।
ଏଥୁଅନ୍ତେ ଯାହା ହେଲା ଶୁଣ ସମାଚାର ॥
ଯାଗ ଅଶ୍ୱ ଶିଳାରୁ ବାହାର ହୋଇଗଲା ।
ହଂସଧ୍ୱଜ ପୁର ଚମ୍ପାନଗରେ ମିଳିଲା ॥
ଋଷିଙ୍କଠାରୁ ବିଦାୟ ନେଇଣ ଅର୍ଜ୍ଜୁନ ।
ସୈନ୍ୟ ସହ ଅଶ୍ୱ ପଛେ କରିଲେ ଗମନ ॥
ଚମ୍ପକ ନାମରେ ଏକ ପୁର ମନୋହର ।
ଶୋଭାରେ ସମ ନୋହିବ ତାକୁ ସ୍ୱର୍ଗପୁର ॥
ଯୁବା ନାରୀ ଯେଉଁପରି ପ୍ରିୟ ଯୁବାଜନେ ।
ସେପରି ନଗର ପ୍ରିୟ ରାଜାଙ୍କ ଦର୍ଶନେ ॥
ନଗରର ଶୋଭା ଦେଖି ଧନଞ୍ଜୟ ବୀର ।
ପ୍ରଶଂସା କରିଣ ଯାନ୍ତି ଅଶ୍ୱର ପଛର ॥
ସେ ରାଜାର ଦୂତମାନେ ବୀର ବେଶ ଧରି ।
ଦଳ ଦଳ ହୋଇଣ ବୁଲନ୍ତି ସେ ନଗରୀ ॥
ସେ ରାଜାର ଦୂତେ ଯଜ୍ଞ ଅଶ୍ୱକୁ ଦେଖିଲେ ।
ହଂସଧ୍ୱଜ ଆଗେ ଯାଇ ସମସ୍ତ କହିଲେ ॥
ଶୁଣି ନରପତି ପାତ୍ର ମନ୍ତ୍ରୀଙ୍କୁ କହିଲା ।
କି ବୁଦ୍ଧି କରିବା ଏବେ କୁହ ହେ ବୋଇଲା
ଯୁଧିଷ୍ଠିର ନରସାଇଁ ଧର୍ମ ଅବତାର ।
ଆବର ଅଶ୍ୱକୁ ରକ୍ଷା କରେ ପାର୍ଥବୀର ॥
ନିଜେ ନାରାୟଣ ଯଜ୍ଞ କରୁଛନ୍ତି ତହିଁ ।
ଅଶ୍ୱକୁ ଧରିଲେ କୃଷ୍ଣ ଭେଟ ପାଇବଇଁ ॥
ଶ୍ରୀହରିଙ୍କର ଅର୍ଜ୍ଜୁନ ଅଟେ ନିଜ ଦେହ ।
ଯହିଁ ପାର୍ଥ ତହିଁ ହରି ନାହିଁତ ସନ୍ଦେହ ॥
ଏତେଦିନେ ଭାଗ୍ୟଶଶୀ ଉଦେ ମୋ ହୋଇଲା
ଦେଖିବି ବୈକୁଣ୍ଠନାଥ ମୋର ଚିନ୍ତା ଗଲା ॥
ଏସନ ବିଚାରି ରାଜା ଡାକି ସୈନ୍ୟଗଣ ।
ବୋଇଲା ମୋହର ରାଜ୍ୟେ ଦିଅହେ ଘୋଷଣ
ଅର୍ଜ୍ଜୁନ ସୈନ୍ୟ ସହିତ ରହିଛନ୍ତି ବାହାରେ ।
ବେଗେ ଯୁଦ୍ଧ କରିବା ହେ ତାହାର ସଙ୍ଗରେ
ଆଜ୍ଞାକୁ ଅବଜ୍ଞା ମୋର କରିବ ବା ଯେହୁ ।
ତପ୍ତତୈଳକୁଣ୍ଡେ ପକାଇବି ତାକୁ ନେଇ ॥
ଏମନ୍ତ ଘୋଷଣା ରାଜା ନଗ୍ର ମଧ୍ୟେ ଦେଲା ।
ବେଗେ କୃଷ୍ଣ ନାମ ସ୍ମରି ଯୁଦ୍ଧକୁ ଆସିଲା ॥
ରାଜା ରଖିଥିଲେ ଯେ ଅସଂଖ୍ୟ ମହାରଥୀ ।
ଏକ ଏକ ଜଣକର ସହସ୍ରେକ ହସ୍ତୀ ॥
ପ୍ରତ୍ୟେକର ପାଶେ ରଥ ଅୟୁତେ ଅୟୁତେ ।
ରଥୀ ପଦାତି ଥାଆନ୍ତି ସଂଖ୍ୟା ନାହିଁ କେତେ ॥
ସମସ୍ତେ ବୈଷ୍ଣବ ବିଷ୍ଣୁଭକ୍ତି ପରାୟଣ ।
ଏକପତ୍ନୀ ବ୍ରତ ସମସ୍ତଙ୍କ ଅଟେ ଜାଣ ॥
ଅନ୍ୟ ନାରୀମାନଙ୍କର ମୁଖ ନ ଦେଖନ୍ତି ।
ଅନ୍ୟାୟ ପାପାଦି କାର୍ଯ୍ୟ କେହି ନ କରନ୍ତି ॥
ଦାସଦାସୀମାନେ ସଦା ନ୍ୟାୟ ପରାୟଣ ।
ପତିବ୍ରତା ସ୍ତିରି ଥାନ୍ତି ସମସ୍ତ ଗୃହେଣ ॥
ମନ୍ତ୍ରୀ ଛନ୍ତି ତାହାର ଯେ ସୁବୁଦ୍ଧି ସୁଜାଣ ।
ଧର୍ମେ ରାଜା ଜନ ପ୍ରଜା କରଇ ପାଳନ ॥
ବିଦ୍ୟୁରଥ ଚନ୍ଦ୍ରସେଣା ଚନ୍ଦ୍ରକାନ୍ତ ବୀର ।
ଗୁରୁଭାଇ ତାହାର ସମସ୍ତେ ବୀରବର ॥
ସୁଧନ୍ୱା ସୁବଳ ସୁରସେନ ଯେ ସୁରଥ ।
ସୁଦ୍ୟୁମ୍ନ ଆଦି ତାହାର ଅଟେ ପାଞ୍ଚସୁତ ॥
ସଜ ହେଲେ ବୀରେ ଯେ ଯାହା ଆୟୁଧ ଘେନି
ରାଜା ବେଗେ ଗଲେ ତେଣେ ପୂଜିବାକୁ ବହ୍ନି
ଅଗ୍ନି ତର୍ପଣ କରିଣ ବାହାର ହୋଇଲେ ।
ନଗର ପ୍ରାନ୍ତରେ ଯାଇ ଅର୍ଜ୍ଜୁନେ ଭେଟିଲେ ॥
ନଗରର ନାରୀମାନେ ଏକ ଜୁଣ୍ଡ ହୋଇ ।
ଜଗତ ଅଟ୍ଟାଳିକାରେ ଆରୋହିଲେ ଯାଇଁ ॥
ଏକଜୁଣ୍ଡ ହୋଇଣ ସେ ସକଳ ସୁନ୍ଦରୀ ।
ଏକକୁ ଆରେକ ଚାହିଁ ବକ ହାସ୍ୟ କରି ॥
କେ ବୋଲେ ଦେଖଗୋ ସଖି ଅର୍ଜ୍ଜୁନବଦନ
କି ସୁନ୍ଦର ରୂପରାଶି ଅହୋ କି ଲାବଣ୍ୟ ॥
ଧନ୍ୟରେ ବିଧାତା କେତେକାଳ ବସି ତୁହି ।
ଏ ରୂପ ଗଢ଼ିଲୁ ତ୍ରିଭୁବନେ ଦେଖା ନାହିଁ ॥

ଯାହା ହେଉ ଅଛ ଅମ୍ଭମାନଙ୍କର ସାଇଁ ।
ଅର୍ଜ୍ଜୁନ ସଙ୍ଗେ ଯୁଝିଣ ମୁକ୍ତ ହେବେ ସେହି ॥
ଶୁଣିଅଛୁ ଦ୍ୱିଜ ନାରାୟଣ ପାର୍ଥ ତନୁ ।
ଯା ଦର୍ଶନେ ପାପ ତାପ ହଟିଯାଏ ମନୁ ॥
ଦେଖ ଦେଖ ସଖି ତୋ ଗଣ୍ଡରେ କସ ଚିହ୍ନ ।
ରାତ୍ରେ କାହା ସଙ୍ଗେ ବସି ହରାଇଲୁ ଜ୍ଞାନ ॥
ମନ ମଧ୍ୟେ କୃଷ୍ଣଙ୍କୁ ବା ଆରାଧନା କଲୁ ।
ବାହାର କରଣ ତୁଯେ ଦୋଗୁଣ୍ୟ ହୋଇଲୁ ॥
ଏହିପରି ପରସ୍ପରେ ହସ କଉତୁକେ ।
ସୌଧଉପରେ ଚଢ଼ିଣ ଦେଖନ୍ତି ଏକମୁଖେ ॥
ଏ ସମୟେ ରାଜନ ବୋଲନ୍ତି ମର୍ନ୍ୟାଗତଣ ।
ତପ୍ତତୈଳ ଭାଣ୍ଡ ଆଣ ମୋର ସନ୍ନିଧାନେ ॥
ଦେଖ ଏ ସ୍ଥାନକୁ କେଉଁ ନର ଆସି ନାହିଁ ।
ବେଗେତାଙ୍କୁ ଆଣି ତପ୍ତତୈଳେ ପକା ନେଇ ॥
ଭାଇବନ୍ଧୁ ପୁତ୍ର ଆଦି ଯେ ହେଉ ମୋହର ।
ଆଜ୍ଞାକୁ ଲଙ୍ଘିଣ ଥିଲେ ପକାଅ କୁଣ୍ଡର ॥
ରାଜା ଆଜ୍ଞା ପାଇ ମନ୍ତ୍ରୀ ତପ୍ତ ତୈଳକୁଣ୍ଡ ।
ନେଇଣ ସେଠାରେ ରଖି ସର୍ବେହେଲେ ଜୁଣ୍ଡ
ଦେଖିଲେ ସୈନ୍ୟରେ କେଉଁ ବୀର ଆସି ନାହିଁ
ଖୋଜ ଖୋଜ ଦେଖିଲେ ସୁଧନ୍ୱାବୀର ନାହିଁ ॥
ନୃପତ ଦେଖିଣ ନିଜ ପୁତ୍ର ଅବହେଳା ।
କ୍ରୋଧେ ବୋଇଲେ ତାହାର କାଟିଆଣ ଗଳା ।
କିବା ଜୀବନରେ ଧର ଆଣ ମୋର ପାଶ ।
ତପ୍ତତୈଳ କୁଣ୍ଡରେ ପକାଇ ବେଗେ ନାଶ ॥
ମୋ ବଂଶ୍ୟୁ ଜନମି ସେହି ଏଡେ ମୂଢ଼ମତି ।
କୃଷ୍ଣ ଦର୍ଶନ ପାଇଁ ନ ବଳେ ତା ପ୍ରକୃତି ॥
ଏମନ୍ତ ବୋଲିଣ ରାଜା କାଳଦେବ ପରି ।
ଯବନଙ୍କୁ ପେଶିଲେ ସେ ବେଗେ କୋପକରି
ଏଥୁଅନ୍ତେ ଯାହାହେଲା ଶୁଣ ସେ ବିଧାନ ।
କୃଷ୍ଣ ପଦ ଚିନ୍ତି ବୋଲେ ମହାଦେବ ଦୀନ ॥

## ସୁଧନ୍ୱାର ମାତା ଓ ସ୍ତ୍ରୀଠାରୁ ବିଦାୟ ତପ୍ତତୈଳ କୁଣ୍ଡରେ ପ୍ରବେଶ ଓ ଉଦ୍ଧାର

ଏଥୁଅନ୍ତେ ଜୈମିନ ଯେ ବୋଲନ୍ତି ବଚନ
ମନଦେଇ ଶୁଣ ତୁମ୍ଭେ ଅହେ ନୃପମଣି ॥
ପିତାଙ୍କ ଆଦେଶ ପାଇ ସୁଧନ୍ୱା କୁମର ।
ମାତାଙ୍କ ପାଶେ ପ୍ରବେଶ ହୋଇଲେ ସତ୍ୱର ॥
ଚରଣେ ପଡ଼ିଣ ବେଗେ ହସ୍ତକୁ ଯୋଡ଼ିଲେ ।
ଯୁଦ୍ଧକୁ ଯାଉଛି ବୋଲି ତାଙ୍କୁ ଜଣାଇଲେ ॥
ଆଶୀର୍ବାଦ କର ମା ଗୋ କୃଷ୍ଣ ଅର୍ଜ୍ଜୁନରେ ।
ଧରି ଆଣି ଦେବି ମାତ ତୁମ୍ଭର ପାଶରେ ॥
ଶୁଣିଣ ବୋଲନ୍ତି ମାତା ପ୍ରେମୋଲ୍ଲାସ ହୋଇ ।
ସତେ କି ଆଣିବୁ ବାପ ତୁହି ଲକ୍ଷ୍ମୀସାଇଁ ॥
ନାରଦଙ୍କ ମୁଖୁ ମୁହିଁ ଶୁଣୁଛିରେ ବାବୁ ।
ବ୍ରହ୍ମାଣ୍ଡ କରତା ହରି ଅଟନ୍ତି ସେ ପ୍ରଭୁ ॥
ତାଙ୍କର ଦର୍ଶନେ ସର୍ବ ପାତକ ହରଇ ।
ଯା ନାମ ଧଇଲେ ପାପୀ ସ୍ୱର୍ଗଭୋଗ ପାଇ ॥
ମୋରସ୍ୱାମୀ ପୂର୍ବେ ସଙ୍ଗେ ଘେନି ସୈନ୍ୟଗଣ
କୃଷ୍ଣ ବିନୁ ଜୟ କରଥିଲେ ତ୍ରିଭୁବନ ॥
ବଇଷ୍ଣବମାନଙ୍କରେ ଅଟନ୍ତି ସେ ଶ୍ରେଷ୍ଠ ।
ଅହର୍ନିଶି ହରି ନାମ କରଥାନ୍ତି ଇଷ୍ଟ ॥
କେବେହେଁ କୃଷ୍ଣ ତାହାଙ୍କୁ ପ୍ରସନ୍ନ ନୋହିଲେ
ଏତେଦିନେ ଅହା ଭାଗ୍ୟରବି ଉଦେହେଲେ ॥
ଜାଣ ବାବୁ ଅର୍ଜ୍ଜୁନ ହରିର ଭେଦ ନାହିଁ ।
ନରନାରାୟଣ ରୂପ ବହିଛନ୍ତି ସେହି ॥
ପୂର୍ବେ ମୁଁ ଶାସ୍ତ୍ରର ବାଣୀ ଶୁଣିଛି କୁମର ।
ଭକ୍ତଠାରୁ କ୍ଷଣେ ଭିନ୍ନ ନୁହଇ ଶ୍ରୀଧର ॥
ଅର୍ଜ୍ଜୁନ ସହ ସମରେ ପଡ଼ିଲେ ଯୁଦ୍ଧରେ ।
ପରମାନନ୍ଦଙ୍କୁ ଲଭ କରିବୁ ଅନ୍ତରେ ॥
ପାର୍ଥଠାରୁ ପ୍ରାଣଭୟେ ରେ କୁମରମଣି ।
ନ ଆସିବୁ କେବେ ମୋର ଶୁଣିଥାଅ ବାଣୀ ॥
କୃଷ୍ଣ ବିନା ସଂସାରରେ ମୃତ୍ୟୁ ହେଲେ ଘୋର ।
ଲାଜ ମୋତେ ହେବ ବାବୁ ଜଗତମଧ୍ୟର ॥
ଯାଅ ବାବୁ କଲ୍ୟାଣ କରୁଛି ଶୁଭେ ଆସ ।
ଅର୍ଜ୍ଜୁନ କୃଷ୍ଣ ଜିଣି ମହୀରେ ରଖ ଯଶ ॥
ମାତା ଏସନ କହିଣ ବିଦାୟ କରିଲେ ।
କୁବଳା ନାମରେ ତାର ଭଗ୍ନୀ ଆସି ମିଳେ ॥
ଅର୍ଘ୍ୟଥାଳୀ ଘେନି ସେହି ବନ୍ଦାପନା କରି ।
ଫୁଲମାଳ ନେଇ କଣ୍ଠେ ଦେଲା ସେ ସୁନ୍ଦରୀ ॥
ବୋଇଲା ମୁଁ ଥିଲି ଭାଇ ଅସୁରର ଘରେ ।
ବନ୍ଧୁତ କରିଣି ଆସି ପଡ଼ିଲି ସେଠାରେ ॥

ବୋଲନ୍ତି ତୋହର ପିତା ପୂର୍ଣ୍ଣ ସେ ଅଟନ୍ତି ।
କାଶୀରାଜା ଜଣି ମତେନ ଗର୍ବ ସେ କହନ୍ତି ॥
କହନ୍ତି ଦ୍ୱାରକା ପୁରେ ଶ୍ରୀକୃଷ୍ଣଙ୍କୁ ରଣେ ।
ଯେ. ଜଣିବ ବୀରମଧ୍ୟେ ବୀର ବୋଲି ଗଣେ ॥
ଏହି ଦୁଃଖ ମନ ମଧ୍ୟେ ଅଛି ଯେ ମୋହର ।
କୃଷ୍ଣଙ୍କୁ ଜିଣିଣ ମୋତେ ଲଜ୍ଜ୍ୟାରୁ ଉଦ୍ଧାର ॥
କୁବଳା ବଚନ ଶୁଣି ସ୍ୱଧନ୍ୱା ବୋଲଇ ।
ଆଜ କୃଷ୍ଣେ ଜିଣି ତୋର ମାନ ମୁଁ ଦେବଇଁ ॥
ଏମନ କହିଣ ବୀର ଉଠୁଁ ବାହାରିଲା ।
ନିଜ ଶୟନ ମନ୍ଦିରେ ପ୍ରବେଶ ହୋଇଲା ॥
ସୁବର୍ଣ୍ଣ ଥାଳୀରେ ଅର୍ଘ୍ୟ ଘେନ ପ୍ରଭାବତୀ ।
ସ୍ୱାମୀ ଅପେକ୍ଷାରେ ଦ୍ୱାରେ ଥିଲା ମହାସତୀ ॥
ଏ ସମୟେ ସୁଧନ୍ୱାଙ୍କୁ ଦେଖି ନାରୀବର ।
ବନ୍ଦାପନା କରି ବେଗେ ଧୋଇଲା ପୟର ॥

କରି ପାଦୋଦକ ସତୀ ଗର୍ଭକୁ କ୍ଷେପିଲେ ।
ଦିବ୍ୟାସନେ ବସାଇଣ କୋମଳେ ପୁଛିଲେ ॥
ହେ କାନ୍ତ ଶୁଣନ୍ତୁ ଏହି ଦାସୀର ଭାରତ ।
କୃଷ୍ଣ ଦରଶନେ ତୁମ୍ଭେ ଅତି ବ୍ୟଗ୍ର ମତ ॥
ଯାଅ ନାଥ ତହିଁ ମୁହିଁ ନ କରେ ବାରଣ ।
ଅଭାଗୀ କି ଅପରାଧ କରିଛି ଚରଣ ॥
ଅନାଥିନୀ କରି ନାଥ କରୁଛ ଗମନ ।
ଦାସୀ ଦୋଷୀ ଚରଣରେ ବୋଲି କି କାରଣ
ତୁମ୍ଭ ବିନା ନାଥ ମୁଁ ନ ଜାଣଇ କାହାରେ ।
ଆତ୍ମା ସହ ସମର୍ପିଛି ତୁମ୍ଭର ପୟରେ ॥
ରସବତୀ ରୂପବତୀ ରମଣୀ ପାଇଣ ।
ଆମ୍ଭଙ୍କୁ ତେଜିଣ ଯିବା ପାଇଁ କର ମନ ॥
ମୋଠାରୁ ସୁନ୍ଦରୀ ନାରୀ ଶତେକ ପାଇବ ।
ହେଲେହେଁ ମୋ ପରି କେହି ସେବା ନ କରିବ



ଏହିକ୍ଷେ ମୋହର ଆଜ ଶୁଦ୍ଧସ୍ନାନ କାଳ ।
ପୀତଦାନ ଦେଇ ନାଥ ଯୁଦ୍ଧେ ବେଗେ ଚଳ ॥

ପିତାଙ୍କ ଆଦେଶ ପୁଣି ଏ ସାରଭ ଧର୍ମ ।
ସମସ୍ତ କ୍ଷତ୍ରିଙ୍କ ଚଳ ଆସୁଛି କାରଣ ॥

କାଳ ବିଳମ୍ବର ନାଥ ନୁହଇ ସମୟ ।
କୃପାକରି ଏ ଦାସୀକି ପୁତ୍ରଦାନ ଦିଅ ॥
ବଂଶ ରକ୍ଷାକରି ନାଥ ସମରକୁ ଚଳ ।
ତୁହେଁ ପିଣ୍ଡ ପାଇ ରକ୍ଷାହେବା ଯେ ପ୍ରକାର ॥
ଏପରି ବିନୟ ବାଣୀ ଶୁଣି ବୀରବର ।
ମନମଧ୍ୟେ ଚିନ୍ତାକରି କରିଲା ସେ ସ୍ଥିର ॥
ଏଣେ ପିତାଙ୍କର ଆଜ୍ଞା ତେଣେ ନାରୀ ବାଣୀ
ଉଭୟ ବିପଦେ ପକାଇଲେ ଚକ୍ରପାଣି ॥
ଯେବେ ନ ରଖିବି କଥା ତେଜିବେ ପରାଣ ।
ସ୍ତ୍ରୀହତ୍ୟା ଦୋଷ ମୋର ହୋଇବତ ପୁଣ ॥
ଶିକ୍ଷିତା ହୋଇଲେ ମଧ୍ୟ ନାରୀଙ୍କର ରୀତି ।
ଅଭିମାନ ସମୁଦ୍ରରେ ସଦା ଭାସୁଥାନ୍ତି ॥
ଯା ଭାଗ୍ୟରେ ଥିବ ହେବ ତୁମ୍ଭର ଭିଆଣ ।
ଏପରି ଭାବିଣ ବୀର ହୋଇଲା ମଗନ ॥
ସ୍ୱାମୀକି ମଗନ ଦେଖି ପ୍ରଭାବତୀ ନାରୀ ।
ଭୁଜେ ଭିଡ଼ି ଆଲିଙ୍ଗନ କଲାକ ଚତୁରୀ ॥
ପଟମ୍ବରେ ବେନିଜନ ଆନନ୍ଦେ ଭାସିଲେ ।
ଚଉଷଠି ବନ୍ଧେ ତହିଁ କ୍ରୀଡ଼ାରସ କଲେ ॥
ପ୍ରୀତଶେଷେ ବୀରବର ଅଙ୍ଗ ଶୌଚକରି ।
ରଥେ ଚଢିଯାଏ ଯେହ୍ନେ ବଙ୍କିମ କେଶରୀ ॥
ବେଗେ ରଥ ଚଳାଏ ସୁଧନ୍ୱା ବୀରବର ।
ପଥମଧ୍ୟେ ଡଗରକୁ ଭେଟିଲା ସତ୍ୱର ॥
ଦେଖି ରାଜପୁତ୍ରେ ତୁଷ୍ଟ ଯବନ ତକ୍ଷଣି ।
ନତଶିରେ କରଯୋଡ଼ି ବୋଲଇ ବଚନ ॥
ଆମ୍ଭେମାନେ ଶରଦନ ସେବକ ତୁମ୍ଭର ।
ଯେତେବେଳେ ଯେଆଦେଶ ପାଳୁ ତା ସତ୍ୱର
ମାତ୍ର ଯାହା ଆଜ୍ଞା କରିଛନ୍ତି ନୃପବଣ ।
କିପରି କରିବୁ ତାହା ନ ଆସେ ମୁତେଖଣ ॥
ଧିକ ଧିକ ଆମ୍ଭ ଜନ୍ମ ଆମ୍ଭ ବ୍ୟବସାୟ ।
କି କୁକର୍ମେ ଧାତା ସର୍ଜିଅଛି ଆମ୍ଭ ଦେହ ॥
ଶୁଣ ଯୁବରାଜ ନୃପ ତୁମ୍ଭର ଉପରେ ।
କୋପେ ଯା ବୋଲିଅଛନ୍ତି ନ ଆସେ ମୁଖରେ
ନୃପତିଙ୍କ ଆଦେଶରେ ହେଲା କି କାରଣ ।
ଜାଣି ଶୁଣି କରିଲ ହେ ନୃପତି ନନ୍ଦନ ॥
କହିଛନ୍ତି ଧରିଆଣ ସୁଧନ୍ୱାକୁ ମୋର ।
ତପ୍ତତୈଳ କୁଣ୍ଡେ ନେଇ ପକାଅ ସତ୍ୱର ॥

ମାତ୍ର ପ୍ରାର୍ଥନା କରୁଛୁ ଆହେ ବୀରବର ।
ରାଜାଙ୍କ ପାଶକୁ ବେଗେ ଯାଇ ଦେଖାକର ॥
ଦେଖିଲେ ବା ତାଙ୍କ ଦୁଃଖ ହୋଇବ ମୋଚନ
ସମ୍ମୁଖେ କହିଲେ ସେହୁ ଏପରି ବଚନ ॥
ଶୁଣିଣ ଏସନ ବାଣୀ ବେଗେ ବୀରବର ।
ରାଜାଙ୍କ ପାଶରେ ଯାଇଁ ମିଳିଲେ ସତ୍ୱର ॥
ଭକ୍ତିଭରେ ପ୍ରଣିପାତ ହୋଇ ଯୋଡ଼ିକର ।
ଛିଡ଼ାହେଲେ ନୃପତି ଆଗରେ ବୀରବର ।
ଦେଖିଣ ପୁତ୍ରର ମୁଖ ନୃପତି ଶେଖର ।
ବୋଇଲେକି ମନ୍ଦ ବୁଦ୍ଧି କଲୁରେ କୁମର ॥
ମୋର ଆଜ୍ଞା ଅବଜ୍ଞା ତୁ କଲୁରେ ପାମର !
ମରିବାକୁ ଆଶା କମା କଲୁ କୁଳାଙ୍ଗାର ॥
ରାଜାଙ୍କ ଭର୍ତ୍ସନା ଶୁଣି ସୁଧନ୍ୱା ବୋଲଇ ।
ତହିଁର କାରଣ ଶୁଣ ଆହେ ନୃପସାଇଁ ॥
ଶୁଣି ଆପଣଙ୍କ ଆଜ୍ଞା ଆସିବା କାଳରେ ।
ମୋର ନାରୀ ପ୍ରଭାବତୀ ଅତି ବିନୟରେ ॥
ଦଇବେ ତା ଋତୁକାଳ ଶୁଦ୍ଧ ସ୍ନାନ ଦିନ ।
ପୁତ୍ରାର୍ଥେ ପ୍ରିୟା ମାଗିଲା ମୋତେ ରତିଦାନ ॥
ସେଥିଯୋଗୁ ମହାରାଜା ବିଳମ୍ବ ହୋଇଲା ।
ସ୍ତ୍ରୀହତ୍ୟା ଭୟେ ମନ ତହିଁ ମୋ ଦ୍ରବିଲା ॥
ଶୁଣି କୋପେ ରକ୍ତବର୍ଣ୍ଣ ରାଜାଙ୍କ ନୟନ ।
କ୍ରୋଧେ ବୋଇଲେ ଧିକରେ ତୋହର ଜନମ
ସଭା ମଧ୍ୟେ କହିବାକୁ ଲଜ୍ଜ୍ୟା ନ ପାଇଲୁ ।
କୁଳାଙ୍ଗାର ପୁତ୍ର ମୋର କୁଳ ନଷ୍ଟ କଲୁ ॥
କୃଷ୍ଣକାର୍ଯ୍ୟେ ମନ ତୋର ନ ହୋଇଲା ଦୃଢ଼
ସଂସାର ସୁଖରେ ଆଶାକଲୁ ସ୍ତ୍ରୀହୋଡ଼ ॥
ଏକ୍ଷଣି ଏ ତପ୍ତ ତୈଳ କୁଣ୍ଡର ମଧ୍ୟରେ ।
ପକାଇଣଦେବି ତୋତେ ସ୍ମର ତୋ ଭାର୍ଯ୍ୟାରେ
ଆସିଣ କରିବ ରକ୍ଷା ଏଥେ ତୋର ନାରୀ ।
କୃଷ୍ଣନାମ ଛାଡ଼ି ଯାହା ସ୍ନେହେ ଗଲୁ ଭୁଲି ॥
ଏପରି କହିଣ ରାଜା ପୁରୋହିତ ଆଣି ।
ଆବର ଭାଇମାନଙ୍କୁ ଡକାଇଣ ପୁଣି ॥
ସମସ୍ତଙ୍କୁ ଚାହିଁଣ ବୋଇଲେ ନୃପବର ।
ସୁଧନ୍ୱା କରିଛି ହେଳା ଆଜ୍ଞାକୁ ମୋହର ॥
ତୁମ୍ଭେ ଦୁଇଭାଇ ମୋର ପ୍ରାଣର ସମାନ ।
ଏ ବିପଦେ କି କରିବ କୁହ ହେ ବହନ ।

ପ୍ରତିଜ୍ଞା ଭଗ୍ନ ହୋଇଲେ ନର୍କରେ ପଡ଼ିବ ।
ଏ ଦଗେ ପୁତ୍ରକୁ ନିଶ୍ଚେ ଅଜ ହରାଇବ ॥
ଅର୍ଜ୍ଜୁନାଦି ଶତ୍ରୁଗଣେ ଛନ୍ତି ଉପସ୍ଥିତ ।
କି କରିବି କହ ତୁମ୍ଭେ ମୋର ବେନିଭ୍ରାତ ॥
ଶୁଣି ରାଜାଙ୍କର ବାଣୀ ଲିଖିତ କହଇ ।
ସତ୍ୟ ପରି ଧର୍ମ ଆଉ ସଂସାରରେ ନାହିଁ ॥
ପ୍ରତିଜ୍ଞା ଯା କରିଛନ୍ତି ନ କଲେ ପାଳନ ।
ଲୋକେ ନିନ୍ଦିବେ ନରକେ ହୋଇବ ପତନ
ପୂର୍ବେ ସତ୍ୟ ପାଇଁ ରାମ ଲକ୍ଷ୍ମଣେ ଛାଡ଼ିଲେ ।
ଗର୍ଭବତୀ ସୀତାଙ୍କୁ ଅରଣ୍ୟେ ନିବାସିଲେ ॥
ହରିଶ୍ଚନ୍ଦ୍ର ନରପତି ସତ୍ୟରକ୍ଷା ପାଇଁ ।
ଦାର ସୁତ ଛାଡ଼ି କେତେ କଷ୍ଟ ଛନ୍ତି ପାଇ ॥
ସତ୍ୟେ ମନଥିଲେ ନିଶ୍ଚେ ରଖିବେ ମୁରାରି ।
ଏଥି ପାଇଁ ଚିନ୍ତା କ୍ଷମା କର ଦଣ୍ଡଧାରି ॥
ଯେବେ ପୁତ୍ର ସ୍ନେହେ ରାଜା ନ କରନ୍ତି ଏହା
ନରକ ଯନ୍ତ୍ରଣା ଭୋଗିବ ହେ ନରନାହା ॥
ଲୋକ ମୁଖେ ଅପଖ୍ୟାତି ବହୁତ ପାଇବ ।
ଶେଷେ ଯମପୁରେ ଯାଇ ନରକ ଭୋଗିବ ॥
ଏସନ ଶୁଣିଣ ରାଜା ଆନନ୍ଦିତ ମନେ ।
ଶ୍ରୀହରି ସୁମରି ବୋଇଲେ ସେ ତତକ୍ଷଣେ ॥
ଆହେ ପୁରୋହିତ ସର୍ବେ ମନ୍ତ୍ର ପାଠକରି ।
ସୁଧନ୍ୱାକୁ ତପ୍ତ ତୈଳ କୁଣ୍ଡ ନେଇ ଭରି ॥
ରାଜାଙ୍କର ବାଣୀ ଶୁଣି ସର୍ବ ମନ୍ତ୍ରୀଗଣ ।
ସୁଧନ୍ୱାର ପାଶେ ଯାଇ ବୋଇଲେ ବଚନ ॥
ରାଜାଙ୍କ ଆଦେଶ ହେଲା ଆସ ବେଗ ହୋଇ ।
ତପ୍ତତୈଳ କୁଣ୍ଡେ ବୀର ପଡ଼ିବ ହେ ଯାଇଁ ॥
ଶୁଣିଣ ମନ୍ତ୍ରୀଙ୍କ ବାଣୀ ସୁଧନ୍ୱା ସୁଧୀର ।
ହର୍ଷମନେ ବୋଲେ ବାଣୀ ଶୁଣ ମନ୍ତ୍ରୀବର ॥
ଯାହାଙ୍କଠାରୁ ଏ ଦେହ ହୋଇଅଛି ଜାତ ।
ତାଙ୍କର କାର୍ଯ୍ୟରେ ଆଜି ହେବ ନିଯୋଜିତ ॥
ଏଥିରୁ କି ଭାଗ୍ୟ ମୋର ଅଛି ଆଉ ପୁଣି ।
ନ ଜାଣ କି ପିତୃ ସତ୍ୟ ପାଳି ରାମରାଣ ॥
ରାଜଦଣ୍ଡ ସିଂହାସନ ଛାଡ଼ିବନେ ଗଲେ ।
ସଂସାରେ ଯଶରଖି ସୁପୁତ୍ର ବୋଲାଇଲେ ॥
ଏସନ କହିଣ ବୀର ଆନନ୍ଦେ ଉଠିଲା ।
ଫୁଲସାରି ମାଳ କଣ୍ଠେ ନେଇ ଲମ୍ବାଇଲା ॥
ଶ୍ରୀହରିମନ୍ଦିର ଚିତା ମସ୍ତକେ କାଟିଣ ।
ହରି ମୃତ୍ତିକାରେ ଦେହ କରିଲା ଭୂଷଣ ॥
ପିତା ଖୁଡ଼ୁତାଙ୍କୁ ବୀର ପ୍ରଦକ୍ଷିଣ କଲା ।
ଦଶଦିଗପାଳଙ୍କୁ ସେ ମନେ ସ୍ତୁତିକଲା ॥
ଅନ୍ତରାତ୍ମାସହ ଜପି ଶ୍ରୀହରି ଶ୍ରୀଧର ।
ତୈଳକୁଣ୍ଡ ମଧ୍ୟେ ପଡ଼ିଗଲା କୁଁରବର ॥
ତୈଳକୁଣ୍ଡେ ପଡ଼ିଣ ସୁଧନ୍ୱା ବୀରବର !
ହରି ହରି ବୋଲିଣ ଡାକଇ ବାରବର ॥
ସଂସାର ଭୟରୁ ରକ୍ଷାକର ବାସୁଦେବ ।
ତୁମ୍ଭ ବିନା ପ୍ରଭୁ ଆଉ କିଏ ସେ ତାରିବ ॥
ଆହେ ଜନାର୍ଦ୍ଦନ ଆହେ ଭକ୍ତ ଉଦ୍ଧାରଣ ।
ତୁମ୍ଭ ଦୟାରେ କି ଭୟ ତପ୍ତତୈଳ ଜାଣ ॥
ମରିବାକୁ ଚିନ୍ତା ମୋର ନାହିଁ ନରହରି ।
ଯାହା ପାର୍ଥ ସଙ୍ଗେ ଯୁଦ୍ଧ ନ ହେଲା ମୋହରି ॥
ସଂସାରେ ହୋଇବ ନିନ୍ଦା ମୋହର ଏତିକି ।
ଅସ୍ତ୍ର ନ ମାରି ଯେ ମଲା ସୁଧନ୍ୱା ଧାନୁକୀ ॥
ଯାହା ହେଉ ଦୟାମୟ କରିଣ କରୁଣା ।
ଅଗ୍ନି ମଧ୍ୟୁ ରକ୍ଷାକର ନ ଦିଅ ଯାତନା ॥
ସଭାମଧ୍ୟେ ରକ୍ଷାକଲ ଦ୍ରୌପଦୀ ସୁନ୍ଦରୀ ।
ଭରତିଆ ପକ୍ଷୀ ରକ୍ଷାକଲ ମଧୁହାରି ॥
ସେହିପରି ରକ୍ଷାକର ମୋତେ ନାରାୟଣ ।
ଅଗ୍ନିଭୟୁ ମଧ୍ୟୁ ରଖ ମୋହର ଜୀବନ ॥
କହୁଁ କହୁଁ ତପ୍ତତୈଳ ସୁଧନ୍ୱା ଶରୀରେ ।
ଅଗୁରୁ ଚନ୍ଦନ ସମ ଲାଗିଲା ସେଠାରେ ॥
ସୁଶୀତଳ ଜଳ ପ୍ରାୟେ ହୋଇଲା ଅନଳ ।
କୋଡ଼ରେ ଧରି ଅଛନ୍ତି ପ୍ରଭୁ ଆଦିମୂଳ ॥
ଦେଖିଣ ସୁଧନ୍ୱା ବହୁ ସ୍ତବ ସ୍ତୁତି କଲା ।
ଭକ୍ତିଭରେ ଦ୍ୱିନୟନୁ ଲୋତକ ଝରିଲା ॥
ସୁଧନ୍ୱା ପଡ଼ିବା ଦେଖି ସର୍ବ ବୀରଗଣ ।
ନୃପତିଙ୍କ ନିନ୍ଦାକରି ବୋଇଲେ ବଚନ ॥
ସର୍ବେ ହାହାକାର ଧ୍ୱନି କରିଲେ ସେଠାରେ
ଏ ଦାରୁଣ ଶୋକେ କିଏ ହୃଦ ଧରିପାରେ ॥
ଏ ସମୟେ ପୁରୋହିତେ ରାଜାଙ୍କୁ କହିଲେ ।
ସୁଧନ୍ୱାଗତି ଦେଖିବା ଚାଲ ହେ ଅଗ୍ନିରେ ॥
ଏହା କହି ନୃପ ସହ କୁଣ୍ଡପାଶେ ଗଲେ ।
ଆନନ୍ଦେ ସୁଧନ୍ୱା ତହିଁ ବସିଛି ଦେଖିଲେ ॥

ଅଶ୍ଚର୍ଯ୍ୟ ହୋଇଣ ତହୁଁ ବୋଇଲେ ସକଳେ ।
ତେଲ କିବା ତପ୍ତ ହୋଇ ନ ଥିଲା ହେ ବୀରେ
କପଟେ ବସିଛି ବୀର ସୁଧନ୍ୱା ସୁମତି ।
ପରୀକ୍ଷା କରିବା ତେଲ ଅହେ ନରପତି ॥

ଏହାପରେ କହି ତହୁଁ ଅଗ୍ନି ଜାଳିଦେଲେ ।
ତେଲ ତାତି ଧୂମଶିଖା ଉଠେ ଆକାଶରେ ॥
ଦେଖିଲେ ମଧ୍ୟେ ବସିଛି ନୃପତି ନନ୍ଦନ ।
ତହୁଁ ନୃପତି ହୋଇଲେ ସବିସ୍ମୟ ମନ ॥



ପିତାଙ୍କ ଅଙ୍କରେ ସୁଧନ୍ୱା ତପ୍ତତେଲେ ନିକ୍ଷେପ ଓ ମୁକ୍ତିଲାଭ ।

ଏ ସମୟେ ଶଙ୍ଖ ବୋଲେ ହେ ନୃପ ଶେଖର
ପୂର୍ବରୁ ଦ୍ୱିଗୁଣ ତେଜ ଧରଇ କୁମର ॥
କିବା ତାତି ନାହିଁ ତେଲ କିବା ମାୟାକାଣେ
କିବା ଶ୍ରୀହରି କରୁଣା ଦେଖିବା ଏକ୍ଷଣେ ।
ଏହା କହି କୁଣ୍ଡେ ପାଣି ପକାଇ ଦଅନ୍ତେ ।
ଟକ ଟକ ହୋଇ ତେଲ ଫୁଟିଲା ତୁରିତେ ॥
ଶଙ୍ଖ ଲିପ୍ତ ହୁଇ ଋଷି ସେଠାବରେ ଥିଲେ ।
ବସ୍ତ୍ର ମାୟାବଶେ ତେଲ ପଡ଼ିଲା ଅଙ୍ଗରେ ॥
ତେଲ ପଡ଼ନ୍ତେଣ ଋଷି ଛଟପଟ ହେଲେ ।
ସୁଧନ୍ୱା କର ବଢ଼ାଇ ତାହାଙ୍କୁ ଧରିଲେ ॥

ସୁଧନ୍ୱା କର ଲାଗନ୍ତେ ହୋଇଲା ଶୀତଳ ।
ଦେଖିଣ ଋଷି ଶକ୍ରନ୍ତ ପ୍ରଭୁ ଅଦମୂଳ ॥
ବୋଇଲେ ସୁଧନ୍ୱା ତୋର ପିତାମାତା ଧନ୍ୟ
କେତେ ତପେ ମନାଇଲୁ କମଳ ଲୋଚନ ॥
ଏସନ କହିଣ ସର୍ବେ ଆନନ୍ଦ ହୋଇଲେ ।
ହର୍ଷେ ମହାରାଜା ପୁତ୍ରେ କୋଳାଗତ କଲେ ।
ବୋଇଲେ ଧନ୍ୟ କୁମର ଧନ୍ୟ ଧନ୍ୟ ମୁହିଁ ॥
ତୋପରି କୁମର ଭାଗ୍ୟବଳେ ପାଇଲଇଁ ॥
ଯୋଗୀ ଋଷିମାନେ ଯାର ନ ପାଆନ୍ତି ଅନ୍ତ ।
ତୋତେ ଏତେ ଦୟା କରିଛନ୍ତି ସେ ଅନନ୍ତ

ତୋହର ଯୋଗୁଁ ବଂଶ ମୋର ପବିତ୍ର ହୋଇଲା
ତୋହର ଯୋଗୁଁ ଯଶ ମୋର ପୃଥିବୀ ଘୋଷିଲା
ତୋହର ଯୋଗୁଁ ଦେଖିବି ମୁଁ ନିଶ୍ଚେ ନାରାୟଣ
ବୋଲେ କୃଷ୍ଣପାଦ ଚିନ୍ତି ମହାଦେବ ଦ୍ୱିଜ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାରକଥା ପ୍ରବନ୍ଧେ ନାମ
ଷୋଡ଼ଶୋଽଧ୍ୟାୟଃ ।

---

## ସପ୍ତଦଶ ଅଧ୍ୟାୟ

ନରହିଂହ ରମାକାନ୍ତ ଭକ୍ତାନାଂ ଭୟନାଶନ
ଶ୍ରୀରାମୁଖ ନବାସଚଂ ସଦା ପାହି ଜନାର୍ଦ୍ଦନ

### ରାଜାଙ୍କ ଆଦେଶରେ ସୁଧନ୍ୱାର ପାଣ୍ଡବ ସୈନ୍ୟ ସହ ଯୁଦ୍ଧ

ଜୈମିନି ବୋଲନ୍ତି ଶୁଣ ରାଜା ଜନ୍ମେଜୟ
ସୁଧନ୍ୱାକୁ ଚାହିଁଣ ବୋଲନ୍ତି ନୃପରାୟ ॥
ଏବେ ଶୁଣ ମୋ ବଚନ ରେ କୁମରମଣି ।
ଯୁଦ୍ଧେ ବେଗେ ଯାଅ ବାବୁ ଚିନ୍ତି ଚକ୍ରପାଣି ॥
ଯେଉଁ ଭକ୍ତିବଳେ ତୈଳକୁଣ୍ଡୁ ହେଲୁ ରାହି
ସେ ଭକ୍ତିରେ ପାର୍ଥ ସହ ଯୁଦ୍ଧକର ଯାଇ ॥
ଶୁଣିଣ ପିତାଙ୍କ ବାଣୀ କୋପେ ବୀରବର ।
ନମସ୍କାର କରି ଆରୋହିଲା ରଥବର ॥
ସୈନ୍ୟ ସେନାପତି ରଥ ରଥୀଗଣ ସହ ।
ସମରେ ଚଳିଲା ବୀର ଧାଇଁ ଦସ୍ୟୁମୟ ॥
ସୈନ୍ୟ ସଙ୍ଗତରେ ଯେ ବାଜଇ ବୀରତୁର ।
ପ୍ରଳୟ କାଳେ ଗର୍ଜ୍ଜନ ଯେହ୍ନେ ମେଘମାଳ ॥
ସୈନ୍ୟ ପାଦ ଘାତେ ଧୂଳି ଆକାଶେ ଉଡ଼ଣ
ସୂର୍ଯ୍ୟଙ୍କର ତେଜ ତହିଁ ହୋଇଲା ମଳିନ ॥
ରଥ ଗଜ ଅଶ୍ୱ ହେଷା ଅସ୍ତ୍ର ଝନ ଝନ ।
ବୀରଙ୍କ ଗର୍ଜ୍ଜନ ନାଦେ କମ୍ପିଲା ଭୁବନ ॥
ସୁଧନ୍ୱା ବୋଇଲେ ବୀରମାନଙ୍କୁ ଡାକିଣ ।
ବେଗେ ଯାଇ ଯଜ୍ଞ ଅଶ୍ୱ କର ହେ ବନ୍ଧନ ॥
ତାହା ଶୁଣି ବୀରମାନେ ବେଗ ହୋଇ ଗଲେ
ଯୁଧିଷ୍ଠିରଙ୍କ ଯଜ୍ଞ ଅଶ୍ୱ ବାନ୍ଧିଣ ଆଣିଲେ ॥
ଅଶ୍ୱକୁ ପଠାଇ ଦେଲେ ଆପଣା ନଗରେ ।
ସିଂହନାଦ କରି ବୀର ଧାଇଁ କୋପଭରେ ॥
ଚରେ ବେଗେ ଅର୍ଜ୍ଜୁନଙ୍କୁ ଯାଇ ଜଣାଇଲେ ।
ହଂସଧ୍ୱଜ ରାଜା ପୁତ୍ର ଅଶ୍ୱ ଧରିନେଲେ ॥
ଶୁଣିଣ ବାସବୀ କୋପେ ସୈନ୍ୟେ ଆଜ୍ଞା ଦେଲେ
ଚମ୍ପାବତୀ ନଗ୍ର ନାଶ କର ଯା ସକଳେ ॥
ଯେ ଅଧମ ଯଜ୍ଞ ଅଶ୍ୱ ଧରିଅଛି ମୋର ।
ଯଜ୍ଞ ଅଶ୍ୱ ଉଦ୍ଧାରିଣ ବେଗେ ତାକୁ ମାର ॥
ଯେଉଁକ୍ଷଣି ଅର୍ଜ୍ଜୁନଙ୍କ ଆଦେଶ ଶୁଣିଲେ ।
ପାଣ୍ଡବ ସୈନ୍ୟ ସମସ୍ତେ ମାତିଣ ଉଠିଲେ ॥
ଅଶ୍ୱ ଗଜ ରଥ ସୈନ୍ୟ କଳନା ନ ଯାନ୍ତି ।
ଦୁନ୍ଦୁଭି ପଟହ ଢୋଲ ଡିଣ୍ଡିମ ବଜାନ୍ତି ॥
ଭେରୀତୁରୀ ଆଦି ବାଦ୍ୟ ବାଜେ ଅଗଣନ ।
ସୈନ୍ୟଙ୍କ ସିଂହ ନାଦରେ ପୂରିଲା ଗଗନ ॥
ଅର୍ଜ୍ଜୁନ ସୈନ୍ୟ ସମସ୍ତେ ବାହାର ହୋଇଲେ
ସମୁଦ୍ର ପ୍ରାୟେକ ରାଜା ସୈନ୍ୟକୁ ଦେଖିଲେ
ତିନି ଭାଗ କରି ସୈନ୍ୟ ବାଣ୍ଟିଲେ ଅର୍ଜ୍ଜୁନ ।
ବାମ ଭାଗେ ଗଲେ ନୀଳଧ୍ୱଜ ନୃପରାଣ ॥
ଅନିରୁଦ୍ଧର ସହିତେ ଯୁବନାଶ୍ୱ ବୀର ।
ଅନୁଶାଲ୍ୱ ସହିତେ ରହିଲେ ପଶ୍ଚିମର ॥
ଦକ୍ଷିଣେ କର୍ଣ୍ଣର ସୁତ ପଦ୍ମନ ରହିଲେ ।
ଆଉର ଯେତେକ ବୀର ସର୍ବେ ଠଣା ହେଲେ
ମଧ୍ୟଭାଗେ ଅର୍ଜ୍ଜୁନ ରହିଲେ ରଥ ଘେନି ।
ପଡ଼ିଲେକ ମାଡ଼ି ହଂସଧ୍ୱଜର ସଇନି ।
ବୃଷକେତୁ ପଦ୍ମନକୁ କହିଲେ ଚାହିଁଣ ।
ସମ୍ଭାଳି ସମର ଆଜ କର ହେ ଅର୍ଜ୍ଜୁନ ॥
ଆଜ ବଡ଼ ସଂଗ୍ରାମ ହୋଇବ ମହାଘୋର ।
ସୈନ୍ୟ କୋଳାହଳେ ଦିଗ ଦିଶଇ ଅନ୍ଧାର ॥
ଏ ବାଣୀ ଶୁଣି ପଦ୍ମନ କୋପେ ବୋଲେ ବୀର
ହଂସଧ୍ୱଜ ସହ ଆଜ ନାଶିବି ସତ୍ୱର ॥
ଆସିଣ ଅଛଇ ମୁହିଁ ଶ୍ରୀକୃଷ୍ଣ ଆଜ୍ଞାରେ ।
ସୁଧନ୍ୱା ସହିତେ ଆଜ ନାଶିବି ମୁଁ ହେଳେ ॥
ପଦ୍ମନ ପ୍ରତିଜ୍ଞା ଶୁଣି କୋପେ କର୍ଣ୍ଣସୁତ ।
ସର୍ବେ ଥାଅ ସମରକୁ ଯାଉଅଛି ମୁଁ ତ ॥
ସିମ୍ଫୁଡ଼ି ମାରିବା ପାଇଁ କାଣ୍ଡେ ଖଣ୍ଡା ଧରି ।
ଏ ସ୍ଥିର ଦିଶନ୍ତି ମୋତେ ପତଙ୍ଗ ପ୍ରକାର ॥
କପି ସର୍ବେ ବ୍ୟଗ୍ର ହୁଅ ଦଣ୍ଡେ ହୁଅ ସ୍ଥିର ।
ସମସ୍ତଙ୍କୁ କରିବି ମୁଁ ଏକାକେ ସଂହାର ॥

ହେ ମିତା ଅର୍ଜ୍ଜୁନ ବୀରେ ଯେବନ ସେ ବନତ
ତୁମ୍ଭେ କର୍ଣ୍ଣ ଯିବ ତାତ ସୁଧନ୍ୱାର କତ ॥
ଯାହାର ପ୍ରତାପେ କମ୍ପେ ସପତ ସାଗର ।
ସାମାନ୍ୟ ବାଳକ ସଙ୍ଗେ କି ଯୁଦ୍ଧ ତାହାର ॥
ଅଜ୍ଞ ଯେବେ ବୃଷକେତୁ ଚଢ଼ି ରଥବର ।
ଧନୁ ଟଙ୍କାରଲେ ବୀର ଗର୍ଜ୍ଜିଣ ଦର୍ପର ॥
ଧନୁ ଟଙ୍କାର ନାଦରେ ପୃଥ୍ୱୀ ଚମକିଲା ।
ଦେଖିଣ ସୁଧନ୍ୱା ବୀର ଆଗଭର ହେଲା ॥
ସାରଥିକୁ ବୋଇଲା ତୁ ବାହା ମୋର ରଥ ।
ଏହ ବୀର ଆସଇ ଯୁଦ୍ଧ ହେବ ତା ସହିତ ॥
ଶୁଣିଣ ସାରଥି ବେଗେ ରଥ ବାହି ନେଲା ।
ବୃଷକେତୁର ଆଗରେ ରଥକୁ ରଖିଲା ॥
ଦେଖି ପଚାରିଲା ସେ ସୁଧନ୍ୱା ବୀରବର ।
କାହାର ନନ୍ଦନ ତୁହୋ କି ନାମ ତୋହର ॥
ଆଗହୋଇ ଯୁଦ୍ଧକୁ ଆଇଲୁ ଯେବେ ତୁହି ।
ଦଣ୍ଡେମାତ୍ର ମୋର ସଙ୍ଗେ ଯୁଝ ସ୍ଥିର ହୋଇ ॥
ବୃଷକେତୁ ବୋଲେ ଆଦିତ୍ୟ ବଂଶରେ ଜାତ
ନାମ ମୋର ବୃଷକେତୁ କର୍ଣ୍ଣ ବୀର ସୁତ ॥
ଯାର ପାଦ ଭାର ପୃଥ୍ୱୀ ସହି ନ ପାରଇ ।
ଲକ୍ଷେ ଭାର ସ୍ୱର୍ଣ୍ଣ ତାଙ୍କୁ ନିତ୍ୟେ ଲାଗି ଦେଇ॥
ବୀରଙ୍କ ଉପରେ ଯେ ବୋଲାଏ ବୀରବର ।
ତାହାଙ୍କ କୁମର ମୁହିଁ ଶୁଣରେ ପାମର ॥
ଆହୁ ଯୁଦ୍ଧକର ବୀରପଣ ତୋ ଦେଖିବ ।
ତୋ ସଙ୍ଗରେ ଆଜ ମୁହିଁ ସମର କରିବ ॥
ଶୁଣି ବୃଷକେତୁ ବୋଲେ ସୁଧନ୍ୱାକୁ ଚାହିଁ ।
କାହାର ନନ୍ଦନ ତୁ ହୋ କି ଗୋତ୍ର ଅଟଇ ॥
ସୁଧନ୍ୱା ବୋଇଲେ ମଧୁବ୍ରତ ନାମେ ଯତ ।
ତାହାଙ୍କ ବଂଶରେ ମୋର ହୋଇଛି ଉତ୍ପତ୍ତ ॥
ହଂସଧ୍ୱଜ ନାମେ ମୋର ଜନକ ଅଟଇ ।
ସୁଧନ୍ୱା ବୋଲିଣ ନାମ ତାଙ୍କ ପୁତ୍ର ମୁହିଁ ॥
ତୁମ୍ଭର ଉପର ବଂଶେ ଯେସନେ ଆଦିତ୍ୟ ।
ମହା ଘୋର ଅନ୍ଧକାର ନାଶଇ ତ୍ୱରିତ ॥
ସେହିରୂପେ ତୋର ସୈନ୍ୟ ଦିଶୁଅଛି ମୋତେ
ନିମିଷରେ ମାରିବି ମୁଁ ତୋହର ସାକ୍ଷାତେ ॥
ଏ ମୋର ଆଗରେ କାହିଁ ତୁହି ଗର୍ବ କରୁ ।
ତୋ ବକ୍ଷ ସୁମର ରକ୍ଷା ନୋହିବୁ ମୋ କରୁ

ଅଶ୍ୱକୁ ବାନ୍ଧିଲ ତୁମ୍ଭେ ଯାଅ ହେ ଫେରିଣ ।
ଅକାରଣେ କାହିଁ ଏଥି ତେଜିବ ପରାଣ ॥
ତୋତେ ମାରି କସ ଯଶ ଲଭିବ ସଂସାରେ ।
ଅର୍ଜ୍ଜୁନକୁ ଡାକ ଯୁଦ୍ଧ ହେବ ତା ସଙ୍ଗରେ ॥
ଶୁଣିଅଛୁ କୁରୁକ୍ଷେତ୍ରେ ମହାବୀର ସେହୁ ।
ଅଜ ତାର ବୀରପଣ ଦେଖିବ ମୁଁ ଭଲଇ ॥
ଏହା ଶୁଣି ବୃଷକେତୁ ବୋଲଇ ଉତ୍ତର ।
ଅକାରଣେ କେତେ ଗର୍ବ ଦେଖାଉ ପାମର
ମିଥ୍ୟା ନୁହେଁ କହୁଅଛୁ ଶୁଣ ମୋ ବଚନ ।
ଶରେ ତୋର ସୈନ୍ୟ ଉଡ଼ାଇବି ମୁଁ ଗଗନ ॥
ଦଣ୍ଡେ ମାତ୍ର ସ୍ଥିର ହୁଅ ବିନାଶ ହୋଇବୁ ।
ତଳ୍ପଶଯ୍ୟା ତେଜି ରଣ ଭୂମିରେ ଶୋଇବୁ ॥
ମୁହିଁ କର୍ଣ୍ଣସୁତ ବୋଲି ନ ଜାଣୁରେ ବାଇ ।
ମୋ ଆଗରେ କେତେ ତୁହି କରୁଛୁ ବଡ଼ାଇ
ଏମନ୍ତ ବୋଲିଣ ଧନୁ ଟଙ୍କାରିଣ ବୀର ।
ମନ୍ତ୍ରିଣ ବିନ୍ଧିଲେ କୋପେ କୋଟି କୋଟି ଶର
ବାଣ ବର୍ଷାରେ ଆକାଶ କରି ଅନ୍ଧକାର ।
ସୁଧନ୍ୱାର ସୈନ୍ୟ ସବୁ କଲା ନାରଖାର ॥
ଯେତେ ସୈନ୍ୟ ଆସିଥିଲେ ସର୍ବେ ଶରଘାତେ ।
ରକ୍ତରେ ଜର୍ଜ୍ଜର ହୋଇ ରହିଲେ ତରସ୍ତେ ॥
ରଥଗଜ ସୈନ୍ୟ ଆଦି ଲୋଟିଲେ ଭୂମିରେ ।
ଖଣ୍ଡ ଖଣ୍ଡ କରି ବୀର କାଟେ ତୀକ୍ଷ୍ଣ ଶରେ ॥
ଅନେକ ସଂଗ୍ରାମ ଯେ କଲେକ ବୀରପଣେ ।
କେହି ତାକୁ ଜିଣନ୍ତା ନୋହିଲେ ସେହିସ୍ଥାନେ
ରଥିମାନଙ୍କର ରଥ ଖଣ୍ଡ ଖଣ୍ଡ କଲା ।
ରଥି ସଙ୍ଗେ ଅଶ୍ୱଙ୍କର ଶିର ସେ ଛେଦିଲା ॥
ବୀରଙ୍କ ଭୂଷଣ ବଜ୍ର କବଚ ସହିତେ ।
ସମସ୍ତ କାଟିଲା ବୃଷକେତୁ କୋପ ଚିତ୍ତେ ॥
ସୁଧନ୍ୱାକୁ ତିନିଶର ବିନ୍ଧିଲେକ ବୀର ।
ଅଶ୍ୱ ସାରଥି ମାରି ପେଶିଲା ଯମପୁର ॥
ପୁଣି ପାଞ୍ଚଶର ବେଗେ ମାରିଲା ସେ ବୀର ।
ସୁଧନ୍ୱାର ଦେହୁଁ ଫୁଟି ବହେ ରକ୍ତଧାର ॥
ଶର ବୃଷ୍ଟି କଲା ତହିଁ କର୍ଣ୍ଣର ନନ୍ଦନ ।
ସୂର୍ଯ୍ୟଦେବ ଢାଙ୍କହେଲେ ଦିଶିଲେ ମଳିନ ॥
ପୁଣି ଏକ ତୀକ୍ଷ୍ଣ ବାଣ ମାରି କର୍ଣ୍ଣସୁତ ।
ସୁଧନ୍ୱା ହାତରୁ ଧନୁ କାଟିଲା ତ୍ୱରିତ ॥

ଏସ୍ତୁ କାମ୍ବୁଜନ୍ମ ସେ ଗର୍ଜ୍ଜଇ ମହାବୀର ।
ଚହୁର ପଲକେ ବନ୍ଧେ ଲକ୍ଷ ଲକ୍ଷ ଶର ॥
ସଙ୍ଗା ସୈନ୍ୟମାନ ଭଙ୍ଗବଶି ମନେ କର ।
ଦହ ପକାଇଲେ ତହିଁ କୋପେ ଧନୁ ଧର ॥
ଦେଖିଣ ସୁଧନ୍ୱା ତାଙ୍କୁ ପ୍ରଶଂସା କରଇ ।
ଧନ୍ୟ ଧନ୍ୟ ବୀରବର ପୁତ୍ର ଅଟୁ ତୁହି ॥
ଏତେବେଳ ଯାଏ ତୁହି କଲୁରେ ସମର ।
ସମସ୍ତ ସୈନ୍ୟଙ୍କୁ ମୋର କଲୁ ନାରଖାର ॥
ଏତେ ବୋଲି ଆନ ଧନୁ ବେଗେ ସେ ଧଇଲା
ମନ୍ତ୍ରି ପାଞ୍ଚଶର କୃଷ୍ଣକେତୁକୁ ମାଇଲା ॥
ବେଗେ ଆଉ ପାଞ୍ଚଶର ମାରେ ଅଚମ୍ବିତେ ।
ତୂଣ ଧନୁ ଅଦ କାଟେ ସାରଥି ସହିତେ ॥
ପୁଣି କୋପେ ପ୍ରହାରିଲା ଏକବିଂଶ ବାଣ ।
କୃଷ୍ଣକେତୁ ସହ ରଥ ଭ୍ରମଇ ଶୂନ୍ୟେଣ ॥
କର୍ଣ୍ଣପୁତ୍ର ଦୁଇଘଡ଼ି ଆକାଶେ ବୁଲିଲା ।
ମୂର୍ଚ୍ଛାଯାଇ ସୈନ୍ୟ ମଧ୍ୟେ ଆସିଣ ପଡିଲା ॥
ଚେତନା ଲଭିଣ ବୀର କୋପେ ମାରେ ଶର
ସୁଧନ୍ୱାକୁ ବାଣଘାତେ କଲା ଜର ଜର ॥
କ୍ରୋଧଭରେ ସୁଧନ୍ୱା ଘେନିଲା ତୀକ୍ଷ୍ଣଶର ।
କୃଷ୍ଣକେତୁ ବକ୍ଷସ୍ଥଳେ କଲା ସେ ପ୍ରହାର ॥
ଶରବାଜି କୃଷ୍ଣକେତୁ ଅଜ୍ଞାନ ହୋଇଲା ।
ପଦ୍ମନ ଆପଣ ବେଗେ ଯୁଦ୍ଧ ଆବୋରିଲା ॥
ରହ ରହ ବୋଲି ତାଙ୍କୁ ଡାକେ ବୀରମଣି ।
ସୁଧନ୍ୱାକୁ ପାଞ୍ଚବାଣ ବିନ୍ଧିଲାକ ଟାଣି ॥
ସାରଥି ସହିତେ ସେ ଛେଦିଲା ଅଶ୍ୱଶିର ।
ପୁଣି କୋପେ ମନ୍ତ୍ରିଣ ବିନ୍ଧିଲା ଦଶଶର ॥
ସାତ ଶରେ ରଥ ତାର ଖଣ୍ଡ ଖଣ୍ଡ କଲା ।
ତିନିବାଣେ ହସ୍ତ ଶର ଛେଦ ପକାଇଲା ॥
କୋପରେ ସୁଧନ୍ୱା ନେଲା ଅନ୍ୟ ଧନୁଶର ।
ଚୋଖାଚୋଖା ବାଣ ବେଗେ ମାରେ ବୀରବର
ପୁଣି ଦିବ୍ୟ ଶର ଧରି ଗୁଣେ ଚଢ଼ାଇଲା ।
ସେହି ବାଣେ ପ୍ରଦ୍ୟୁମ୍ନର ଶରକୁ କାଟିଲା ॥
କାଟିଣ ସାରଥି ମୁଣ୍ଡ ପକାଇଲେ ତଳେ ।
ବଜ୍ରସମ ଶର ମାରେ ପ୍ରଦ୍ୟୁମ୍ନଙ୍କୁ ହେଳେ ॥
ଭୀମ ସମ ରଡ଼ି କରି କଟରେ ଗରଜନ ।
ସେ ଶବ୍ଦରେ କମ୍ପମାନ ସର୍ବ ସୈନ୍ୟଗଣ ॥

ଦୁହେଁ ମହା ବଳବାନ ସମରେ ନିପୁଣ ।
ଜଣା ଯାଉନାହିଁ କିଏ ଜିଣିବ ସଂଗ୍ରାମ ॥
କେତେବେଳେ ଧରଣୀରେ କେବେ ଗଗନରେ
ମାୟାବୀ ସମାନ ଯୁଝୁଛନ୍ତି ଦୁଇ ବୀରେ ॥
ଏହିପରି ବେନି ବୀରେ ସମର କରନ୍ତି ।
କେହି କାହାଠାରୁ ଊଣା କଦମେ ନୁହନ୍ତି ॥
କୋପେ ସୁଧନ୍ୱା ମାରିଲା ନଅଗୋଟି ଶର ।
ଦୂରୁ କୃତବର୍ମା ବୀର କାଟିଲା ସତ୍ୱର ॥
ପଦ୍ମନଙ୍କୁ ଛାଡ଼ି କୃତବର୍ମାର ଉପରେ ।
ଚୋଖା ଚୋଖା ବାଣ ବୀର ମାରିଲା କ୍ରୋଧରେ
ସୁଧନ୍ୱାର ଶର କୃତବର୍ମା ନ ସହିଣ ।
ସମର ଭୂମିରୁ ଗଲେ ବେଗେ ପଳାଇଣ ॥
ଦେଖିଣ ଏସନ ସୁତ ଅନୁଶାଲ୍ୱ ବୀର ।
ଯମ ସମ ପ୍ରବେଶିଲେ ସଂଗ୍ରାମ ଭିତର ॥
କ୍ରୋଧେ ବୋଲେ ଶୁଣ ବୀର ମୋହର ବଚନ
ସମ ଯୋଦ୍ଧା ସଙ୍ଗେ ଯୁଦ୍ଧ ଶାସ୍ତ୍ରରେ ଲିଖନ ॥
ଦେଖାଯିବ ବୀର ଆଜି ବୀରପଣ ତୋର ।
କିପରି ବଞ୍ଚିବୁ ଆଜି ସହି ମୋର ଶର ॥
ଏତେବୋଲି କୋପେ ବୀର ଅଗ୍ନି ସମ ହୋଇ
ଛୁଟାଇ ଛୁଟାଇ ବାଣ ବିନ୍ଧେ କୋପ ବହି ।
ସେ ଶର ନାଶିବା ପାଇଁ ଯେତେ ପ୍ରତିଶର ।
କରିଲା ସୁଧନ୍ୱା ସର୍ବ ହୋଇଲା ବିଫଳ ॥
ନ ମାନିଣ ବାଣ ବେଗେ ଗର୍ଜ୍ଜି ଛୁଟି ଗଲା ।
ସୁଧନ୍ୱାର ବକ୍ଷସ୍ଥଳେ ଯାଇଣ ପଡ଼ିଲା ॥
ସେ ଆଘାତେ ବୀରବର ହେଲେ ଅଚେତନ
ସୈନ୍ୟଙ୍କୁ ମର୍ଦ୍ଦନ କରେ ଅନୁଶାଲ୍ୱ ପୁଣ ॥
ବାଣେ ବାଣେ ସୈନ୍ୟଗଣେ କରିଲା ଜର୍ଜ୍ଜର ।
ପଡିଲେ ଅସଂଖ୍ୟ ସୈନ୍ୟ ସଂଗ୍ରାମ ଭିତର ॥
ନଅଶରେ ସୁଧନ୍ୱାର ସାରଥିର ଶିର ।
କାଟି ପକାଇଲେ ଅନୁଶାଲ୍ୱ ବୀରବର ॥
ଗର୍ଜ୍ଜିଣ କୋପରେ ପୁଣି ମାରେ ତୀକ୍ଷ୍ଣଶର ।
ଶସ୍ତ୍ରଘାତେ ସୈନ୍ୟ ସବୁ ହୋଇଲେ ଅସ୍ଥିର ॥
ଅଳ୍ପକ୍ଷଣରେ ସୁଧନ୍ୱା ଚେତନା ପାଇଣ ।
ଗର୍ଜ୍ଜିଣ ଉଠିଲେ କୋପେ ଘେନି ଶରାସନ ॥
ନିଦାରୁଣ ଶର ମନ୍ତ୍ରପୂତ କରି ବୀର ।
ଅନୁଶାଲ୍ୱ ଉପରକୁ ମାଇଲେ ସତ୍ୱର ॥

ସେହି ଶରଘାତେ ଅନୁଶାଲ୍ୱ ବୀରବର ।
ମୂର୍ଚ୍ଛାଗତ ରଥ ପରେ ପଡ଼ିଲେ ସେଠାର ॥
ଅନୁଶାଲ୍ୱଙ୍କୁ ମୂର୍ଚ୍ଛିତ ସୁଧନ୍ୱା କରିଣ ।
ପାଣ୍ଡବ ସୈନ୍ୟଙ୍କୁ ମାରି କଲା ରଣଭଣ ॥
ମୃହୁଁ ମୃହୁଁ ରକ୍ତନଦୀ ପ୍ରବାହିତ ହେଲା ।
ରଥ ଗଜ ଶବ ଆଦି ତହିଁରେ ଭାସିଲା ॥
ଦେଖୁଦେଖୁ କ୍ରୋଧେ ବୀର ମାରେ ତୀକ୍ଷ୍ଣଶର
ପାଣ୍ଡବ ସୈନ୍ୟଙ୍କୁ ରଣେ କରିଲା ଅସ୍ଥିର ॥
ରଥ ଗଜ ଅଶ୍ୱ କେତେ ନିଧନ ହୋଇଲେ ।
କେତେ ମହାବୀର ପ୍ରାଣ ଭୟେ ପଳାଇଲେ ॥
ଏହିପରି ଶର ବୀର ମାରେ ଅନିବାର ।
ଦେଖି ସମସ୍ତ ପାଣ୍ଡବ ସଇନ ସକଳ ॥
ପ୍ରାଣ ରକ୍ଷାର ଉପାୟ ନ ପାଇଣ ଘୋରେ ।
ଉର୍ଦ୍ଧ୍ୱଶ୍ୱାସେ ଡାକ ଦେଲେ ପାର୍ଥ ଧନୁର୍ଦ୍ଧରେ
ସୈନ୍ୟଙ୍କ ଦୁର୍ଦ୍ଦଶା ଏଣେ ଆର୍ତ୍ତନାଦ ବାଣୀ ।
ଶୁଣିଣ ଧାଇଁଲେ କୋପେ ପାର୍ଥ ବୀରମଣି ॥
ସୈନ୍ୟଙ୍କୁ ଭରସା ଦେଇ ଆଗେ ଉଭାହେଲେ
କ୍ରୋଧେ ଗାଣ୍ଡିବ ଧନୁକୁ ଟଙ୍କାର କରିଲେ ॥
ଧନୁର ଟଙ୍କାର ନାଦ ଶଙ୍ଖର ଗର୍ଜ୍ଜନ ।
ସତେ କି ପ୍ରଳୟ ହେବ ଏ ମଧ୍ୟ ଭୁବନ ॥
ଶବ୍ଦ ଶୁଣି ଚମ୍ପାନଗ୍ର ଲୋକେ ସ୍ତବ୍ଧ ହେଲେ
ଧନ୍ୟ ଧନ୍ୟ ଅରଜୁନ ବୋଲି ପ୍ରଶଂସିଲେ ॥
କ୍ରୋଧେ ସୁଧନ୍ୱାକୁ ମୃହୁଁ ପାର୍ଥବୀର ବୋଲେ ।
ରହି ଦଣ୍ଡେ ଯୁଦ୍ଧକର ତୁ ମୋହର ତୁଲେ ॥
ଏସନ କରିଣ ବୀର ଛାଡ଼େ ସିଂହରଡ଼ି ।
କୃଷ୍ଣ ଧାଇ ମହାଦେବ ବୋଲେ ପଦଯୋଡ଼ି ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି ରସଲୀଳା
ସାର କଥା ପ୍ରବନ୍ଧେ ନାମସପ୍ତଦଶୋଽଧ୍ୟାୟଃ

---

## ଅଷ୍ଟାଦଶ ଅଧ୍ୟାୟ

ନମୋଽସ୍ତୁ ପୀତବର୍ଣ୍ଣାୟ ପୀତାମ୍ବର ଧରାୟଚ
ପୀତଧ୍ୱଜ ପତାକାୟ ପୀତବସ୍ତ୍ରାନୁଲେପନେ ।

### ଅର୍ଜ୍ଜୁନ ସହ ସୁଧନ୍ୱାଙ୍କ ଯୁଦ୍ଧ ଓ ବୀନାଶ

ଜୈମିନି ବୋଲନ୍ତି ଶୁଣ ରାଜନ ମୋ ବାଣୀ
ଦୁଃଖ ତୁଟିଯିବ ତୋର ଶୁଣି ଏ କାହାଣୀ ॥
ତହୁଁ କରଯୋଡ଼ି ରାଜା ବୋଲନ୍ତି ବଚନ ।
ସଦୟେ କହନ୍ତୁ ସୁଧନ୍ୱାଙ୍କ ବିବରଣ ॥
କୁରୁକୁଳେ ଜନ୍ମ ମୁହିଁ ଅଟଇ ମୂରୁଖ ।
ବଂଶାନୁ ଚରିତ କହି ତୁଟାଅ ମୋ ଦୁଃଖ ॥
କିପରି ଅର୍ଜ୍ଜୁନ ସହ ସୁଧନ୍ୱା ଯୁଝିଲେ ।
ତାହା ସବୁ ବିସ୍ତାରିଣ କୁହ ମୋ ଆଗରେ ॥
ରାଜା ବାଣୀ ଶୁଣି ମୁନି କହନ୍ତି ହରଷେ ।
ସୁଧନ୍ୱା ଅନୁଶାଲ୍ୱଙ୍କୁ ଜିଣି ମହାରୋଷେ ॥
ରଣକ୍ଷେତ୍ରେ ବୁଲେ ଯେସନେ ପ୍ରମତ୍ତ କେଶରୀ
କେହି ବୀର ଆଗରେ ନୁହନ୍ତି ତାହାରି ॥
ସୈନ୍ୟଙ୍କ ଦୁର୍ଦ୍ଦଶା ଦେଖି ସାତ୍ୟକୀ ଦୁର୍ଜ୍ଜୟ ।
ଅର୍ଜ୍ଜୁନଙ୍କୁ ପଛକରି କଲା ସେ ବିଜୟ ।
ସୁଧନ୍ୱାକୁ ଡାକି କୋପେ ବୋଲେ ରହ ରହ
ଯମପୁରେ ଯିବୁ ଦଣ୍ଡେ ମାତ୍ର ସ୍ଥିର ହୁଅ ॥
ଏକ୍ଷଣି ଜାଣିବା ତୋର କେତେ ବୀରପଣ ।
କି ସାହସେ ଯୁଦ୍ଧକରୁ ରେ ମୂର୍ଖ ଅଜ୍ଞାନ ॥
କହୁଁ କହୁଁ ସାତ୍ୟକିର ଚକ୍ଷୁ ରଙ୍ଗ ବର୍ଣ୍ଣ ।
ସତେ କି ଯମ ଦେବତା ତହିଁ ବିଦ୍ୟମାନ ॥
ଆକର୍ଣ୍ଣ ଓଟାରି ବୀର ଛାଡ଼େ ବାଣଗଣ ।
ଅର୍ଦ୍ଧ ପଥରେ ସୁଧନ୍ୱା କାଟେ ଅନୁକ୍ଷଣ ॥
ଏହିପରି ଦୋନି ବୀରେ କରିଲେ ସମର ।
ଶେଲ ଶୂଳ ଯଠି ଚକ୍ର ତୋମର ମୁଦ୍‌ଗର ॥
ଯେସନ ଶ୍ରାବଣ ମାସେ ବରଷଇ ଜଳ ।
ଦୁହିଁଙ୍କ ବାଣେ ଅଦୃଶ୍ୟ ଗଗନ ମଣ୍ଡଳ ॥
କୋପେ ସୁଧନ୍ୱା ଯୋଗଣ ଖରସାଣ ବାଣ ।
ସାତ୍ୟକିର ରଥ ଅଶ୍ୱ କରିଲା ଦହନ ॥
ବୃଷ୍ଣି ମାନେ ଅନ୍ୟ ରଥ ଯୋଗାଏ ସାରଥି ।
ପୁନରପି ଯୁଦ୍ଧ କଲେ ସେହି ଦୁଇ ରଥୀ ॥
କେହି କାହାଠାରୁ ଊଣା ନୁହନ୍ତି ସମରେ ।
କିବା ଇନ୍ଦ୍ର ସଙ୍ଗେ ବୃତ୍ରାସୁର ଯୁଦ୍ଧକରେ ॥
ବାଣ ଶବ୍ଦ ସୁଧନ୍ୱା ଯେ ଚକିତ ହୋଇଲା ।
ଅତି କୋପେ ବଜ୍ରସମ ଶକତି ଧଇଲା ॥
ମନ୍ତ୍ରେ ଅଭିଷେକ କରି ଛାଡ଼ଇ ଶକତି ।
କୋପେ ଗରଜନ କରେ ଯେସନେ ମତ୍ତହସ୍ତୀ
ଶକ୍ତିର ତେଜରେ ଦିନକର ତେଜ ନ୍ୟୂନ ।
ଦେଖୁ ଦେଖୁ ସାତ୍ୟକିର ନେଲା ଜୀବନ ॥

ସାତ୍ୟକିଙ୍କୁ ଜାଣିଣ ସୁଧନ୍ୱା ବୀରବର ।
ଯମ ସମ ନାଶକଲେ ସଇନ ସକଳ ॥
ସାତ୍ୟକି ପଡ଼ିବା ଦେଖି ମଧ୍ୟମ ପାଣ୍ଡବ ।
କୋପେ ଟଙ୍କାର କରିଲେ ଅକ୍ଷୟ ଗାଣ୍ଡିବ ॥
କ୍ରୋଧେ ସୁଧନ୍ୱାକୁ ଡ଼ାକି ବୋଇଲେ ବଚନ
ଧନ୍ୟ ତୋର ବୀରପଣ ଧନ୍ୟ ତୋ ଜନମ ॥
ଦେବ ଦାନବଙ୍କ ସଙ୍ଗେ ବହୁ ରଣ କଲି ।
ଭୀଷ୍ମଦ୍ରୋଣ କର୍ଣ୍ଣ ଆଦି ବୀରଙ୍କୁ ଜିଣିଲି ॥
କିରାତରୂପରେ ଜୟ କଲି ତ୍ରିଲୋଚନ ।
ନ ଦେଖିଲି ତୋ ସମାନ ବୀର କାହିଁ ପୁଣ ॥
ଅର୍ଜ୍ଜୁନଙ୍କ ବାଣୀ ଶୁଣି ସୁଧନ୍ୱା ଭାଷଇ ।
ତୋର ବୀରପଣ ଭଲେ ଜାଣିଅଛୁ ମୁହିଁ ॥
ଶ୍ରୀକୃଷ୍ଣଙ୍କ କରୁଣାରୁ ବୀରପଣ ତୋର ।
ନୋହିଲେ ଭୀଷ୍ମେ ଜିଣନ୍ତୁ କି ଶକ୍ତି ତୋହର
ଦେଖାଯିବ ଆଜ ତୋର କେଡ଼େ ବୀରପଣ ।
ପ୍ରାଣେ ଆଣା ଥିଲେ ଚିନ୍ତ ଶ୍ରୀମଧୁସୂଦନ ॥
ତୋ ଅଶ୍ୱକୁ ବାନ୍ଧି ରଖିଛନ୍ତି ପିତା ମୋର ।
ତହିଁରେ କରିବେ ଅଶ୍ୱମେଧ ନୃପବର ॥
ଦୈବେ ମିଳିଅଛୁ ତାହା କେ ଛାଡ଼ି ପାରଇ ।
ଦେଖା ତୋର ବୀରପଣ ବିଳମ୍ବ କପାଇ ॥
ସୁଧନ୍ୱାର ବାଣୀ ଶୁଣି କୋପେ ପାର୍ଥବୀର ।
ଭୀମ ବେଗେ ଭୀମ ଶର କରିଲେ ପ୍ରହାର ॥
ଚକ୍ଷୁର ପଲକେ କାଟେ ସୁଧନ୍ୱା ସେ ବାଣ ।
ପକୋପେ ପାର୍ଥ ପ୍ରହାରିଲେ କୋଟିକୋଟିବାଣ
ନାହିଁ ଦିଗ ବିଦିଗ ନାହିଁକି ଅବସର ।
ବାଣରେ ଅଦୃଶ୍ୟ ହେଲେ ଦେବ ଦିବାକର॥
କତୁରୀ ବାଣରେ ତାହା ସୁଧନ୍ୱା କାଟିଣ ।
ମହାକ୍ରୋଧେ ପ୍ରହାରିଲେ ତିନିକୋଟି ବାଣ ॥
ବାଣ କାଟି ପାର୍ଥ ଅଗ୍ନି ଶରକୁ ପେଷିଲେ ।
ଦେଖିଣ ସୁଧନ୍ୱା ମେଘାଣର ପ୍ରହାରିଲେ ॥
ଅଗ୍ନି ଲିଭି ଘୋରବୃଷ୍ଟି ହୋଇଲା ସେଠାରେ
ଶୀତବାତେ କମ୍ପମାନ ହୋଇଲେ ସକଳେ ।
ପ୍ରବଳ ବରଷା ଦେଖି କ୍ରୋଧରେ ଅର୍ଜ୍ଜୁନ ।
ପବନାସ୍ତ୍ର ପେଷିଦେଲେ ଅତି କ୍ରୋଧମନ ॥
ପବନରେ ମେଘମାନେ ଉଡ଼ିଲେ ସକଳେ ।
ଗଜଅଶ୍ୱ ସୈନ୍ୟ ଉଡ଼ି ପଡ଼ନ୍ତି ସେଠାରେ ॥
ଛତ୍ର ଭଙ୍ଗ ସୈନ୍ୟହତ ସୁଧନ୍ୱା ଦେଖିଣ ।
ଅର୍ଦ୍ଧଚନ୍ଦ୍ର ବାଣ ତହୁଁ କରିଲେ ଧାରଣ ॥
ଅଧର କମ୍ପାଇ ରୋଷେ ଛାଡ଼ିଲେ ସେ ଶର ।
ପବନାସ୍ତ୍ର କାଟି କାଟିଲା ସାରଥି ଶିର ॥
ଅସ୍ତ୍ର ହୀନ କରିଣ ଅର୍ଜ୍ଜୁନେ କହେ ବୀର ।
ବଞ୍ଚିବାର ଆଶା ଥିଲେ ଚିନ୍ତ ଚକ୍ରଧର ॥
ଶୁଣି କୋପେ ଅର୍ଜ୍ଜୁନ ଯେ ପେଷେ ତୀକ୍ଷ୍ଣଶର
ମନ ମଧ୍ୟେ ଚିନ୍ତା କଲେ କମଳାର ବର ॥
ଜୟ ଜୟ ନାରାୟଣ ଜୟ ରମାପତି ।
ଏ ବିପଦେ ରକ୍ଷାକର ଅହେ ଦାଶରଥି ॥
କେତେ କେତେ ସଙ୍କଟରୁ ରଖିଛ ମୁରାରି ।
ତୁମ୍ଭ ପାଦେ ଦାସ ଦୋଷୀ ନୁହେ ଚକ୍ରଧାରି
ପାଣ୍ଡବଙ୍କ ନାଥ ବୋଲି ସମସ୍ତେ ଜାଣନ୍ତି ।
ରକ୍ଷା ନ କରିଲେ ପ୍ରଭୁ ମରଣ ନିଶ୍ଚିତ ॥
ଅର୍ଜ୍ଜୁନ ବିପଦ ଜାଣି କମଳ ଲୋଚନ ।
ପ୍ରବେଶ ହେଲେ ରଥରେ ଆସି ତତକ୍ଷଣ ॥
ରଥପରେ ଶ୍ରୀକୃଷ୍ଣଙ୍କୁ ଦେଖି ବୀରବର ।
ଭକ୍ତିଭରେ ପ୍ରଣିପାତ ହେଲେ ଚରଣର ॥
ରଥରେ ଶ୍ରୀକୃଷ୍ଣ ରୂପ ସୁଧନ୍ୱା ଦେଖିଣ ।
ଭକ୍ତିଭରେ ଆନନ୍ଦାଶ୍ରୁ ବହଇ ନୟନ ॥
କରଯୋଡ଼ି ବୋଇଲେ ପ୍ରଭୁ ସଫଳ ମୋ ଜନ୍ମ
କୃତାର୍ଥ ହୋଇଲି ଦେଖି ଶ୍ରୀରଙ୍ଗା-ଚରଣ ॥
ଧନ୍ୟ ପାର୍ଥ ଧନ୍ୟ ତୁହି ଧନ୍ୟ ତୋର ଭକ୍ତି
କେତେ ତପେ ମନାଇଛୁ କମଳାର ପତି ।
ଯା ଦର୍ଶନ ପାଇଁ ଯୋଗୀ ତପୀ ଅନୁକ୍ଷଣ ।
ସଦା ତପସ୍ୟାରେ ମଗ୍ନ ନ ପାନ୍ତି ଦର୍ଶନ ॥
ସେହୁ ବିଶ୍ୱପତି ଆଜି ତୁମ୍ଭ ରକ୍ଷା ପାଇଁ ।
ସାରଥି ରୂପରେ ରଥେ ବିଜେ ଭାବଗ୍ରାହୀ ॥
ହେ କେଶବ ମୋତେ ଜାଣି ଅର୍ଜ୍ଜୁନର ପ୍ରାଣ ।
ରକ୍ଷା କରିବ ଭାବିଛ ଶ୍ରୀମଧୁସୂଦନ ॥
ମାତ୍ର ମୁଁ ପ୍ରତିଜ୍ଞା କରେ ହେ ରୁକ୍ମିଣୀସାଇଁ ।
ପ୍ରାଣପଣେ ଯୁଝି ସାଧ ମେଣ୍ଟାଇବି ମୁହିଁ ॥
ଶୁଣି ଏମନ ବଚନ କ୍ରୋଧରେ ଅର୍ଜ୍ଜୁନ ।
ବୋଇଲେ ମୋର ପ୍ରତିଜ୍ଞା ସୁଧନ୍ୱା ତୁ ଶୁଣ ॥
ଦଶଦିଗପାଳ ଆଦି ସର୍ବ ଦେବଗଣ ।
ସାକ୍ଷୀ ଥାନ୍ତୁ ଆଜି ଯାହା କରୁଛି ମୁଁ ପଣ ॥

ନୁହେ ମିଥ୍ୟା କେତେ ଜାଣ ପାର୍ଥର ବଚନ ।
ତନବାଣେ ନିଶ୍ଚେ ତୋର ନେବ ଜୀବନ ॥
ଯେବେ ତନଶରେ ତୋତେ ନାଶି ନ ପାରିବ
ପୂର୍ବ ବଂଶସହ ମୁହିଁ ନରକ ଭୋଗିବି ॥
କହ କି ପ୍ରତିଜ୍ଞା ତୋର ଅଛିରେ ବର୍ବର ।
ଶୁଣି କହେ କୋପରେ ସୁଧନ୍ୱା ବୀରବର ॥
କୃଷ୍ଣ ସାକ୍ଷୀରୂପରେ ଦେଖିଛୁ ରଥେ ଥାଇ ।
ନିଶ୍ଚେ କାଟି ପକାଇବି ତୋର ଶର ମୁହିଁ ॥
ଯେବେ ବ୍ୟର୍ଥ ନ କରି ପାରିବି ତୋର ବାଣ ।
ତେବେ ନିଶ୍ଚେ ମୋର ଶିର କରିବୁ ଛେଦନ ॥
ଯେବେ ତୋର ଶର ମୁହିଁ ନାଶି ନ ପାରିବି ।
ସର୍ବ ପୁଣ୍ୟ ତେଜି ଘୋର ନରକ ଭୋଗିବି ॥
ପିତୃ ପିତାମହମାନେ ମୋ ହସ୍ତରୁ ଜଳ ।
କେବେ ନ ପାଇବେ ସଙ୍ଗୀ ହେବି ପାପୀଙ୍କର
ଏମନ୍ତ କହି କୋପେ ବାଣ ସୁଧନ୍ୱା ବିନ୍ଧିଲା ।
ସେ ଆଘାତେ ରଥ ଶୂନ୍ୟ ଭୁବନେ ଘୂରିଲା
ବିଶ୍ୱସ୍ତମ୍ଭ ସମ ହରି ସହ ରଥ ବର ।
ଅବିରତ ଘୂରେ ଦେଖି ପାର୍ଥ ଚିନ୍ତାତୁର ॥
ବହୁ କଷ୍ଟେ ରଥ ଚାପି କମଳଲୋଚନ ।
ବୋଲନ୍ତି ଶୁଣ ଅର୍ଜୁନ ମୋହର ବଚନ ॥
ଏପରି ପଣ କରିବା ନୁହଇ ଉଚିତ ।
ଜୟଦ୍ରଥ ବଧକଥା ଭୁଲିଲ କି ଚିତ୍ତ ॥
କେତେ କଉଶଳରେ ରଖିଲି ତୋର ପଣ ।
ନ ଭାବି କହିଲେ ଫଳ ଘଟଇ ଏସନ ॥
ବିଷମ ଦୁର୍ଜ୍ଜୟ ଶତ୍ରୁ ସୁଧନ୍ୱା ଅଟଇ ।
ଧର୍ମବଳେ ବଳୀୟାର ଅଟଇ ଯେ ସେହି ॥
ତୁମ୍ଭେ ଆମ୍ଭେ ମିଳି ତାକୁ ନ ପାରିବା ବଳେ ।
ସଦାଭୟ ଜାତହୁଏ ମୋହର ମନରେ ॥
ଶ୍ରୀକୃଷ୍ଣଙ୍କ ବାଣୀ ଶୁଣି ଅନନ୍ଦେ ଅର୍ଜୁନ ।
କହେ ଯାର ଆଶ୍ରେ ଅଛି ଶ୍ରୀରଙ୍ଗା ଚରଣ ॥
ଏ ମହୀମଣ୍ଡଳେ ତାର କି ଭୟ କାହାରେ ।
ଦେଖନ୍ତୁ ଆଜ ପ୍ରତିଜ୍ଞା ମୋହର ଏଠାରେ ॥
ତୁମ୍ଭ କୃପ ବଳେ ପ୍ରଭୁ ସହସ୍ର ସୁଧନ୍ୱା ।
ଜିଣି ମୁଁ ପାରିବି ହେଲେ ହେଉ ଛଇଳକନ୍ଧା ॥
ଏତେ କହି କ୍ରୋଧେ ଗର୍ଜି ମଧ୍ୟମ ପାଣ୍ଡବ ।
ବାରମ୍ବାର ଟଙ୍କାରିଲେ ଅକ୍ଷୟ ଗାଣ୍ଡିବ ॥

ମନେ ଅଭିଷେକ କରି ଭୟଙ୍କର ବାଣ ।
ଛାଡ଼ନ୍ତେ ସୂର୍ଯ୍ୟର ତେଜ ହୋଇଲା ନିଭନ ॥
ଦେବଗଣମାନେ ସ୍ୱର୍ଗେ ରଣ ଦେଖୁଥିଲେ ।
ବାଣ ତେଜ ସର୍ବେ ପ୍ରାଣଭୟେ ପଳାଇଲେ
ବାଣନାଶେ ବସ୍ୱରବ କମ୍ପିଲା କହିଲେ ।
କ୍ରୋଧେ ସୁଧନ୍ୱା ବୋଇଲେ ଶୁଣି ଶ୍ରୀହରିରେ
ଗୋବର୍ଦ୍ଧନ ଟେକି ରଖିଥିଲେ ଗୋପୀପ୍ରାଣ ।
ଏବେ ରକ୍ଷାକର ପ୍ରଭୁ ଅର୍ଜୁନ ଜୀବନ ॥
ଏହା କହି ବାଣ ତେଜ କରି ନିରୀକ୍ଷଣ ।
ଭାବେ ଧର୍ମବଳେ ଏହା କରିବି ଦହନ ॥
ଶ୍ରୀହରି ସୁମରି ବୀର ଯୋଖି ତୀକ୍ଷ୍ଣଶର ।
ଅର୍ଜୁନର ବାଣ କାଟି କଲା ଶତେ ଚୂର ॥
ବାଣବ୍ୟର୍ଥ ହେବା ଦେଖି ପାର୍ଥବୀର ମନେ ।
ସୁଧନ୍ୱାକୁ ପ୍ରଶଂସା କରିଲେ ସେହିସ୍ଥାନେ ॥
ବାଣ ବ୍ୟର୍ଥ ହେବା ଦେଖି ପାର୍ଥ ବୀରବର ।
କାଳାନ୍ତକ ସମ ଶର ଯୋଖିଲେ ଧନୁର ॥
ପାଣ୍ଡବଙ୍କ ହିତ ପାଇଁ ଶ୍ରୀମଧୁସୂଦନ ।
କାଳରୂପେ ବାଣମୁଖେ ହେଲେ ବିଦ୍ୟମାନ ॥
ଦେଖିଣ ସୁଧନ୍ୱା ବୋଲେ ଅହେ ପଦ୍ମନାଭ
ଭକ୍ତିବଳେ କାଟିବି ଏ ଶରକୁ କେଶବ ॥
ଦେଖ ତୁମ୍ଭ ଆଗେ ନ ରହିଲା ପାର୍ଥପଣ ।
ପୁନଶ୍ଚ ଏ ଶର କାଟି ପକାଇବି ଜାଣ ॥
ଧନ୍ୟ ଅର୍ଜୁନ ତୋ ରକ୍ଷା ପାଇଁ ନାରାୟଣ ।
ନିରନ୍ତର ଚିନ୍ତା କଲେ କମଳ ଲୋଚନ ॥
ହେ ପ୍ରଭୁ ସଜୀବ ନେବ ମୋ ବିନାଶ ପାଇଁ ।
ବାଣ ମୁଖେ କାଳରୂପେ ବଜେ ଭବଗ୍ରାହୀ ॥
କହୁଁ କହୁଁ ବୀର କ୍ରୋଧେ ଅରୁଣ ଲୋଚନ
ଗର୍ଜି ନାରାୟଣ ଅସ୍ତ୍ର କରିଲା ସନ୍ଧାନ ॥
ଅର୍ଜୁନର ଶର କାଟି ଦେଲା ଖଣ୍ଡ କଲା ।
ଆବର ଗାଣ୍ଡିବ ଧନୁ ଗୁଣକୁ କାଟିଲା ॥
ଦେଖିଣ ଅମରେ ବହୁ ପ୍ରଶଂସା କରିଲେ ।
ଧନ୍ୟ ଧନ୍ୟ ସୁଧନ୍ୱା ତୁ ବୋଲିଣ ବୋଇଲେ
ଯେହୁ ବୀର ତ୍ରିଭୁବନ ଜୟ କରେ ଏକା ।
ତା ସହ ଯୁଦ୍ଧରେ ତୁହି ହୋଇଲୁ ନିଶଙ୍କା ॥
ଆବର କାଟିଲା ବୀର ଅକ୍ଷୟ ଗାଣ୍ଡିବ ।
ଯେ ଧନୁର ତେଜ ସହି ନ ପାରେ ବାସବ ॥

ପ୍ରଳୟ କାଳରେ ଯେଉଁ ଧନୁ ସୃଷ୍ଟି ହେଲା ।
ବଜ୍ରରେ ତାହା ଶମ୍ଭୁର ବ୍ରହ୍ମା ନିର୍ମାଣିଲା ॥
କୋଟି ପ୍ରଳୟରେ ଯାର ନୁହଇ ବିନାଶ ।
ଧନ୍ୟ ବୀର ଭକ୍ତିବଳେ କଲୁ ତାକୁ ନାଶ ॥
ଦେଖିଣ ଏସନ ସ୍ତୁତି ବୋଲନ୍ତି କେଶବ ।
ଅସ୍ତ୍ର ସମ୍ବରଣ କରହେ ବୀର ଗାଣ୍ଡୀବ ॥
ଧର୍ମ ବଳେ ବଳୀୟାର ସୁଧନ୍ୱା ଅଟଇ ।
ତୁମ୍ଭହାତେ ତାର ମୃତ୍ୟୁ କେବେ ହେବନାହିଁ ॥
ଧନୁ ଛାଡ଼ ମୋ ପଛରେ ଆସ ହେ ବହନ ।
ଉପାୟେ ନାଶ କରିବ ସୁଧନ୍ୱା ଜୀବନ ॥
ମହା ଦୁର୍ଜ୍ଜୟ ଶତ୍ରୁ ଏ ସୁଧନ୍ୱା ଅଟଇ ।
ତୁମ୍ଭ ହିତପାଇଁ ଏ କୌଶଳ ଭାବିଲଇଁ ॥
ଯେତେ ଦ୍ୱାର ପାର ଅସ୍ତ୍ର କରିଲ ସନ୍ଧାନ ।
ପଣ ଅନୁସାରେ କାର୍ଯ୍ୟ ନୁହେ ଏଥେ ଜାଣ
ଏହା କହି ଅନ୍ତର୍ଯ୍ୟାମୀ ଦେବଦତ୍ତ ଧରି ।
ବଜାନ୍ତେ କମ୍ପିତ ହେଲା ପୃଥ୍ୱୀ ଆଦିକରି ॥
ତହିଁପଛେ ପାଞ୍ଚଜନ୍ୟ ବାଇଲେ ଅର୍ଜ୍ଜୁନ ।
ଦୁହିଁଙ୍କର ଶବ୍ଦେ ପୃଥ୍ୱୀହେଲା କମ୍ପମାନ ॥
ଧନୁ ଉଚ୍ଛୁଳିଲା ଜୀବେ ସ୍ତବଧ ହୋଇଲେ ।
ଦେବଲୋକ ମୂକ ପରି ଅନାଇ ରହିଲେ ॥
ଏ ସମୟେ ଅର୍ଜ୍ଜୁନଙ୍କୁ କହିଲେ ଶ୍ରୀହରି ।
ସୁଧନ୍ୱାକୁ ନାଶ ଏତେବେଳେ ଧନୁ ଧରି ॥
ପୂର୍ବେରେ ବ୍ରହ୍ମାଙ୍କୁ ରଣ ମଧ୍ୟେ ଶୂଳପାଣି ।
କାଳ ଦେବତାଙ୍କୁ ଅସ୍ତ୍ର ମୂଳେ ଥୁଅ ଆଣି ।
ଚଉଷଠି ଯୋଗିନୀ ତାର ଫଳାରେ ରଖିଣ ।
ମହା ବ୍ରହ୍ମଶର ବେଗେ ପେଶ ତୁ ଅର୍ଜ୍ଜୁନ ॥
ଦେବତାଦି ନବଗ୍ରହେ ଶର ଆବୋରନ୍ତୁ ।
ବିରାଟ ରୂପକୁ ସ୍ମରି କରିଥାଅ ହେତୁ ॥
କୃଷ୍ଣ ବର୍ଣ୍ଣ ଶୁଣିଣ ଅର୍ଜ୍ଜୁନ ବୀରବର ।
ଧନୁର୍ଦ୍ଧରେ ବ୍ରହ୍ମଶର ବସାନ୍ତେ ଗୁଣର ॥
ଏସନ ସ୍ଥିତି ଦେଖିଣ ସର୍ବେ ଚମକିତ ।
ଭାବିଲେ ସୁଧନ୍ୱା ଏବେ ହୋଇଲା ନିହତ ॥
ହା ହା କାର କରି ସର୍ବେ ଅନାଇ ରହିଲେ
ଶ୍ରୀକୃଷ୍ଣଙ୍କୁ ଦୃଷ୍ଟିକି ସୁଧନ୍ୱା ସ୍ତୁତିକଲେ ।
ଜୟ ଜୟ ନାରାୟଣ ଜଗତ ଜୀବନ ।
ଅର୍ଜ୍ଜୁନେ ରଣ ଜାଣିବ କି ହେତୁ ମୋ ପ୍ରାଣ
ମାଗେ ଏତକ ଭିକ୍ଷା ହେ ତବ ପାଦଗତେ ।
ସମ୍ମୁଖ ରଣରେ ନାଶ କର ପ୍ରଭୁ ମୋତେ ॥
ଶୁଣିଣ ଅର୍ଜ୍ଜୁନ ବୀର ଆରକ୍ତ ଲୋଚନ ।
ସୁଧନ୍ୱାକୁ ଡାକ କୋପେ ବୋଲନ୍ତି ବଚନ ॥
ଦୁଇବାର ମୋର ଶର ଛେଦିଲୁ ତୁ ହେଳେ ।
ଏ ଶରେ ତୋହର ମୁଣ୍ଡ ପକାଇବ ତଳେ ॥
ପ୍ରତିଜ୍ଞା କରୁଛି କେବେ ଏ ମିଥ୍ୟା ନୁହଇ ।
ଏ ଶର କାଟିବା ପାଇଁ କ୍ଷମ ନୋହୁ ତୁହି ॥
ବେଳ ଥାଉଁ ଥାଉଁ ତୋର ଇଷ୍ଟଙ୍କୁ ସୁମର ।
ଭାବିଲେ କି ହେବ ନିଶ୍ଚେ ଯିବୁ ଯମପୁର ॥
ହରିହର ଏକ ଆତ୍ମା ନୁହେ ଭିନ୍ନାଭିନ୍ନ ।
ଯେ ଭିନ୍ନ କରଇ ସେହି ଅଟଇ ଅଧମ ॥
ମୂର୍ଖପଣେ ଯେଉଁ ଲୋକ ହରି ନିନ୍ଦାକରେ ।
ଶିବଙ୍କୁ ପୂଜଣ ଠେକ କରଇ ସଂସାରେ ॥
ମାତ୍ର ଶିବ ତା ଉପରେ ନୁହନ୍ତି ପ୍ରସନ୍ନ ।
ବିଷ୍ଣୁ ପୂଜି ଶିବ ନିନ୍ଦା କରିଲେ ଏସନ ॥
ନୁହନ୍ତି ସନ୍ତୋଷ କେବେ କମଳାର ପତି ।
ଶେଷେ ନର୍କଭୋଗ କରି ପାଏ ଅଧୋଗତି ॥
ହରିହର ସ୍ୱରୂପ ନ ଜାଣି ପାପମତି ।
ଇଚ୍ଛାରେ ପଡ଼ିଣ ନରକରେ କରେ ଗତି ॥
ବାକ୍ୟ ନଷ୍ଟହେଲେ ନିଶ୍ଚେ ନରକ ଭୋଗିବି ।
ଏହି ଶରେ ନିଶ୍ଚେ ତୋର ମସ୍ତକ ଛେଦିବି ॥
ଅର୍ଜ୍ଜୁନର ବାଣୀ ଶୁଣି ସୁଧନ୍ୱା ଭାଷଇ ।
ଏତେବେଳେ ବୃଥା ଠାଣ କରୁ କାହିଁ ପାଇଁ ॥
କାଶୀକ୍ଷେତ୍ରେ କପିଳାସ ଯାଇଁ ଶିବତୋଷ ।
ମଣିକର୍ଣ୍ଣିକାରେ ଝାମ୍ପି କଲ୍ମଷ ବିନାଶ ॥
ହରିହର ଭେଦାଭେଦ ଫଳ ଏଥି ନାହିଁ ।
ସତ୍ୟଧର୍ମବଳେ ନର ସକଳ ଲଭଇ ॥
ଯେବେ ହରିହର ଅସ୍ତ୍ର ହୋଇବ ଅଗତ ।
ଧର୍ମବଳେ କାଟିବି ମୁଁ ଶୁଣ ପାଣ୍ଡୁସୁତ ॥
ମିଥ୍ୟା ନୋହେ ମୋର ବାକ୍ୟ ଦେଖିବୁ ଏକ୍ଷଣ
ବିଲମ୍ବ କିପାଇଁ ଶର ପେଶ ତୁ ବହନ ॥
ଶୁଣି ପାର୍ଥ କୋପେ ସିଂହ ସମ ଫୁଲିଯାଇ ।
ବୀରଦର୍ପେ ଶର ଛାଡ଼େ ପୃଥ୍ୱୀ କମ୍ପାଇ ॥
ଚଉଦିଗେ ଶର ମୁଖୁ ବର୍ଷେ ଅଗ୍ନି କଣା ।
ଚରାଚର ଦହିଲା ପଶିବେ ଯାଏ ଜଣା ॥

ଭୀମ ରବେ କଟାକ୍ଷ ଧଇଲା ଅକୁଳ ସାଗର ।
ତେଜ ଦେଖି ଦେବଗଣେ କଲେ ହାହାକାର ॥
ବାସୁକୀ ନାଗର ଫଣା ହୁଏ ଟଳମଳ ।
ଅସ୍ଥାନ ତେଜ ପଳାଏ ସର୍ଜ୍ଜୀବନୀପାଳ ॥
ଅକାଶେ ଦେବତାଗଣେ ରହି ନ ପାରିଲେ ।
ବାଣତେଜେ ସୂର୍ଯ୍ୟଦେବ ମେରୁରେ ଲୁଚିଲେ ॥
ଶର ଗତି ଦେଖିଣ ସୁଧନ୍ୱା ସ୍ତମ୍ଭୀଭୂତ ।
ଶାରଙ୍ଗ୍ୱ ପରକାଶିବ ଦେଖନ୍ତୁ ଜଗତ ॥
ଧର୍ମବଳେ ଭବଗ୍ରାହ୍ୟ ଅଚେ ଛନ୍ତି ରହି ।
କି ଦୁଃଖ ମରଣେ ଯହିଁ ଥିବେ ଜଗନ୍ନାଇଁ ॥
କେଉଁ ଜନ୍ମେ କେତେ ପୁଣ୍ୟ ମୁହିଁ କରିଥିଲି ।
ମରଣ ସମୟେ ପାଦପଦ୍ମକୁ ଦେଖିଲି ॥
ପିତା ମାତା ଅଟନ୍ତି ମୋ ଧର୍ମ ପରାୟଣ ।
କେଉଁଦୋଷେ ନ ଦେଖିଲେ ଏ ରଙ୍ଗାଚରଣ ॥
ଧାର୍ମିକ ଅଟଇ ପ୍ରଭାବତୀ ପତ୍ନୀ ମୋର ।
ପଦ୍ମପାଦ ନ ଘଟିଲା ଦର୍ଶନ ତାହାର ॥
କୁଟୁମ୍ବ ଅଟନ୍ତି ମୋର ଧାର୍ମିକ ବିବେକ ।
କେଉଁଦୋଷେ ନ ଦେଖିଲେ ଏ ପଙ୍କଜମୁଖ ॥
ହେ ପ୍ରଭୁ କରୁଣାସିନ୍ଧୁ ଜଗତର ପତି ।
ଶ୍ରୀଚରଣେ ସ୍ଥାନ ଦିଅ ଏତିକ ବିନତି ॥
ହୃଦ ମନ୍ଦିରରେ ବିଜେ କର ବଂଶୀପାଣି ।
ଅନ୍ତର ବେଦନା ଜାଣ ବୋଲି ଅନ୍ତର୍ଯାମୀ ॥
ନ କର ନିରାଶ ପ୍ରଭୁ ବିନତି ମୋ ଏତେ ।
ଏ ଦାସ ପାଇବ ସ୍ଥାନ ଶ୍ରୀଚରଣ ପ୍ରାନ୍ତେ ॥
ଏପରି ବନ୍ଦନା କରି ମନର ଆନନ୍ଦେ ।
ପ୍ରେମ ଅଶ୍ରୁ ବର୍ଷି ସେହି ଭକ୍ତ ଗଦଗଦେ ॥
ଶ୍ରୀକୃଷ୍ଣ ଲାବଣ୍ୟ ମୂର୍ତ୍ତି କରଇ ଦର୍ଶନ ।
ଅର୍ଜ୍ଜୁନ ଶରକୁ ଅଧେ କାଟିଲା ତକ୍ଷଣ ॥
ସଂସାର ଦହନ ଶର ଅର୍ଦ୍ଧକଟା ଦେଖି ।
ଶଚୀଦେଶ ବିବୁଧାଦିଏ ବୁଜିଦେଲେ ଆଖି ॥
ଏସନ ଅବସ୍ଥା ଦେଖି ସୁଭଦ୍ରା ରମଣ ।
ଲଜ୍ଜାଭରେ ତାଙ୍କ ମୁଖ ହୋଇଲା ମଳିନ ॥
ଦେଖ ଦଇବର ବଳ ବାକି ଅର୍ଦ୍ଧ ଶର ।
କଣ୍ଠରି ସହି କାଟିଲା ସୁଧନ୍ୱାର ଶିର ।
ଚକ୍ରଧର ଚକ୍ରରେ ରଖିଲେ ପାର୍ଥପଣ ।
ଅତି ଆନନ୍ଦିତ ହେଲେ ପାଣ୍ଡବ ସଇନ ॥
ସୁଧନ୍ୱା ସକାଶେ ସର୍ବେ କଲେ ହାହାକାର ।
ସମରେ ପାଣ୍ଡବ ବୋଲି ନ ଥିଲା ମନର ॥
କେବଳ ଦୟାମୟଙ୍କ ସୁଦୟାର ବଳେ ।
ଅର୍ଜ୍ଜୁନ ହୋଇଲା ଜୟୀ ମହାଦେବ ବୋଲେ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାର କଥା ପ୍ରବନ୍ଧେ
ନାମ ଅଷ୍ଟାଦଶୋଽଧ୍ୟାୟଃ ।

——○——

## ଊନବିଂଶ ଅଧ୍ୟାୟ

ପୀତାମ୍ବର ମହାବକ୍ଷୋପ୍ରଲ୍ହାଦ ଭୟନାଖ୍ୟୃତ
ଡମ୍ବମୁଦ୍ଧର ଦେବେଶ ଦୁଃଖଦ ଭବସାଗରାତ୍

### ସୁରଥଦ୍ୱାରା ପାଣ୍ଡବ ସୈନ୍ୟର ପରାଜୟ ଓ ଅର୍ଜ୍ଜୁନ ସହିତ ଯୁଦ୍ଧ ।

ଏଥୁଅନ୍ତେ ଜନ୍ମେ ଜୟ ଯୋଡ଼ି ଦେଇକର
ବୋଲନ୍ତି ଭୋ ମୁନି ମୋତେ କର ପ୍ରତିକାର ॥
ସୁଧନ୍ୱା ବିନାଶ ପରେ କି ହେଲା ଘଟଣା ।
ତାହା ମୋତେ ବିସ୍ତାରଣ କୁହ ମହାମନା ॥
ରାଜାଙ୍କ ବିନୟ ଦେଖି ବୋଲନ୍ତି ଜୈମିନି ।
ଏଥୁଅନ୍ତେ ଯାହା ହେଲା ଶୁଣ ସେ କାହାଣୀ ॥
ସୁଧନ୍ୱାର କଟା ମୁଣ୍ଡ ଅତି ହର୍ଷଭରେ ।
କୃଷ୍ଣନାମ ଉଚ୍ଚାରଣ ଗଡ଼େ ରଣସ୍ଥଳେ ॥
ମୁଣ୍ଡର ଅଘାତେ କେତେ କେତେ ସୈନ୍ୟଗଣ
ରଣସ୍ଥଳେ ଅକାରଣେ ତେଜିଲେ ପରାଣ ॥
ଦେଖିଣ ଏସନ ରୀତି ପ୍ରଭୁ ବାସୁଦେବ ।
ସୁଧନ୍ୱାର କଟାମୁଣ୍ଡ ଧଇଲେ କେଶବ ॥
ମୁହିଁ ମୁହିଁ ସେ ମୁଣ୍ଡରୁ ବାହାରିଲା ତେଜ ।
ସେ ତେଜ ଦେଖି ଆଶ୍ଚର୍ଯ୍ୟ ହେଲେ ଦେବରାଜ
ମୁହିଁ ମୁହିଁ ସେହି ଜ୍ୟୋତି ଶ୍ରୀକୃଷ୍ଣ ଅଙ୍ଗରେ ।
ପ୍ରବେଶ କରିଲା ଦେଖୁଥିଲେ ସର୍ବସୁରେ ॥
ଅତି ବଡ଼ ଭକ୍ତ ଜାଣି ପ୍ରଭୁ ମହାନନ୍ଦେ ।
ସେ ତେଜ ବିଲୟ କଲେ ଆପଣାର ହୃଦେ ॥
ତହୁଁ ବାସୁଦେବ ସୁଧନ୍ୱାର ଶିର ଧରି ।
ହଂସଧ୍ୱଜ ରଥେ ନିକ୍ଷେପିଲେ ଶୀଘ୍ରକରି ॥
ପୁତ୍ର ମୁଣ୍ଡ ଦେଖି ରାଜା ଅତ୍ୟନ୍ତ ବିକଳେ ।
ମୂର୍ଚ୍ଛା ଯାଇ ରଥପରୁ ପଡ଼ିଲା ସେ ତଳେ ॥

କେତେବେଳେ ଚେତନା ପାଇଣ ନୃପରାଣ
ହା ହା ପୁତ୍ର ବୋଲି ଉଚ୍ଚେ କରିଲେ ରୋଦନ
କି ଯୋଗରେ ପାର୍ଥସହ ଯୁଝିଗଲୁ ରଣେ ।
କି ପାତକ ବନ୍ଧୁ ପ୍ରାଣ ତେଜିଲୁ ସେ ସ୍ଥାନେ
ଏକମାତ୍ର ଭରସା ତୁ ଥିଲୁରେ କୁମର ।
ତୋ ବାହୁକୁ ଆଶ୍ରା କରି ବଞ୍ଚିଥିଲି କାଳ ॥
କିଏ ଜାଣିଥିଲା ଏବେ ଏପରି ଦୁର୍ଦ୍ଦଶା ।
ସରିଲା ମୋ ବଡ଼ପଣ ସରିଲା ମୋ ଆଶା ॥
ବାତୁଳପରାୟେ ରାଜା କଣ୍ଠମୁଣ୍ଡ ଗୃହି ।
ବୋଲେ କାହିଁକିରେ ବଳା ମାନ କରୁ ତୁହି
ଚଞ୍ଚଳ ତଇଲେ ପକାଇଲି ବୋଲି ଧନ ।
ସେ ଦୋଷେ କି ଛାଡ଼ିଗଲୁ ମୋତେ ତୁ ବହନ
ତୋ ସମ ବୀରତ୍ୱ କିଏ ପ୍ରକାଶ କରିବ ।
ନର ନାରାୟଣଙ୍କୁ କେ ସମରେ ତୋଷିବ ॥
ଯୁଦ୍ଧ ଯାତ୍ରାକାଳେ ତୋର ନାରୀ ପ୍ରଭାବତୀ ।
ତା ଆଶା ପୂରଣ କରି ରଖିଲୁ ସନ୍ତତି ।
ଉଠ ଉଠ ବଳା ଆଉ ବିଳମ୍ବ ନ କର ।
ତୋ ବିଚ୍ଛେଦେ ଭାଇମାନେ ହୁଅନ୍ତି ଆକୁଳ ॥
ଜାଣିଲିଣି ଏବେ ପୂରିଲାଣି ମୋ ଆୟୁଷ ।
ସକୁଟୁମ୍ବେ ପ୍ରେତପୁରେ କରିବି ମୁଁ ବାସ ॥
ପିତାକୁ ଶୋକେ ଏପରି କାତର ଦେଖିଣ ।
ଆକୁଳେ ସୁରଥ ବୀର କଲା ଆଗମନ ॥
ବିନୟ ବଚନେ କହେ ଅହେ ନୃପମଣି ।
କିପାଇଁ ରୋଦନ ଏତେ କପାଇଁ ଭାଳେଣି ॥
ପୁଅ ମୁଣ୍ଡ ଧରି କିମ୍ପା ନୀଚଲୋକ ପରି ।
ସମର ଭୂମିରେ କାନ୍ଦୁଅଛ ଦଣ୍ଡଧାରୀ ॥
ଯୋଗୀ ଋଷିମାନେ ଯାକୁ ଦିବାନିଶି ଧ୍ୟାନ୍ତି ।
ସେ ପ୍ରଭୁ ପାଦରେ ଲୀନ ଦୁଃଖ କାହିଁପାଇଁ ॥
ସୁରଥ ବଚନ ଶୁଣି ବୋଲନ୍ତି ରାଜନ ।
ଦୁଃଖକରେ କିମ୍ପା ପଦେ ନୋହିଲା ସେ ଲୀନ
ବିନା ସୁକୃତରେ କେହି ହରି ପାଦେ ସ୍ଥାନ ।
ପାଆନ୍ତି ନାହିଁ ଅଟେ ଏ ଶାସ୍ତ୍ରର ବଚନ ॥
କି ପାପରୁ ସୁଧନ୍ୱାର ଶିର ଲୀନ ନୋହି ।
ମୋହ ହାତକୁ ଆସିଲା ଦୁଃଖ ଏଥି ପାଇଁ ॥
ଏହା କହି ନରପତି ଅତି ଆକୁଳରେ ।
ପୁତ୍ର କଣ୍ଠ ମୁଣ୍ଡ ପକାଇଲେ କୃଷ୍ଣପରେ ॥

ଭକ୍ତବର ଜାଣି ହରି ସୁଧନ୍ୱାର ଶିର ।
ଆକାଶକୁ ପକାନ୍ତେଣ ହେଲା ତହିଁ ସ୍ଥିର ॥
ଦେଖିଣ ଏସନ ରୀତ ସୁରଥ କହଇ ।
କୃଷ୍ଣାର୍ଜ୍ଜୁନେ ବିନାଶିବ ଅଧୈର୍ଯ୍ୟ କିପାଇଁ ॥
ଚକ୍ରଧର ଚକ୍ରରେ ନାଶିଲେ ଭ୍ରାତା ମୋର ।
ବୀରଦର୍ପେ ଘୁଞ୍ଚାଇବି ଚକ୍ର ମୁଁ ତାଙ୍କର ॥
କୃଷ୍ଣ ପାର୍ଥ ସହ ଯେବେ ସର୍ବ ଦେବଗଣ ।
ମୋ ସଙ୍ଗେ ଯୁଝିବେ ନିଶ୍ଚେ ଲଭିବେ ମରଣ
କହୁଁ କହୁଁ ବୀର ହେଲା କ୍ରୋଧେ କମ୍ପମାନ ।
ରଥ ଚଢ଼ି ସମରକୁ କରିଲା ଗମନ ॥
ସୈନ୍ୟ ସେନାପତିମାନେ ଧାଆନ୍ତି ପଛରେ ।
ଯମ ସମ ମିଳିଲେକ ପାର୍ଥର ଆଗରେ ॥
ଧନୁ ଟଙ୍କାରିଣ ବୀର ଛାଡ଼େ ସିଂହରଡ଼ି ।
ସତେ କି ମନ୍ଦର ଗିରି ପଡ଼ିଅଛି ଝଡ଼ି ॥
ରଥ ସମ୍ମୁଖୀନ କରି ବେଗେ ଅର୍ଜ୍ଜୁନର ।
କହେ ଛଡ଼ାଇବି ବୀର ଦର୍ପ ଆଜ ତୋର ॥
ରେ ପାର୍ଥ ଆଜ ସମରେ କେ ରଖିବ ତୋତେ
ଯମପୁରେ ପଠାଇବି କୃଷ୍ଣଙ୍କ ସାକ୍ଷାତେ ॥
ଶ୍ରୀକୃଷ୍ଣ ଅଟନ୍ତି ପରା ନ୍ୟାୟର କରତା ।
କିପରି ସେ ମରାଇଲେ ମୋର ଜ୍ୟେଷ୍ଠଭ୍ରାତା ॥
ମୋର ହାତେ ତୋ ମରଣ ମଧ୍ୟମ ପାଣ୍ଡବ ।
ଜାଣିଥାଅ କେବେ ଏହା ଆନ ନ ହୋଇବ
ମୁହୂର୍ତ୍ତିକ ପାଇଁ ଯେବେ ସମ୍ଭାଳ ମୋ ବାଣ ।
ତେବେ ବୀରମଧ୍ୟେ ତୋତେ କରିବି ଗଣନ ॥
ହେ ଲବଣୀଚୋର ରାଧାଦେବୀ ପ୍ରାଣଧନ ।
କୌଶଳେ ଏବେ ରଖନ୍ତୁ ଅର୍ଜ୍ଜୁନ ଜୀବନ ॥
ଆପଣ କୌଶଳ କରି ଭାଇକି ମୋହର ।
ପଠାଇଛ ଯମପୁର ହେ କମଳାବର ॥
ଯେଣୁ କରିଅଛ ଶିଶୁ ପରାଏ କରମ ।
ଲୋପ କରାଇଛ ହରି ନିଜ ଗୁଣ ଗ୍ରାମ ॥
ମୋତି ମୂଲ୍ୟ ନ ଜାଣିଣ ଦାନବେ ଯେସନ ।
ମୋତି ବଦଳାଇ ଗୁଞ୍ଜା କରନ୍ତି ଗ୍ରହଣ ॥
ତେସନ ପୁଣ୍ୟ କର୍ମକୁ ଛାଡ଼ି ନାରାୟଣ ।
କୁଚକ୍ରରେ ହରିଲ ମୋ ଭାଇର ଜୀବନ ॥
ଦେଖିବି ଆଜ କିପରି ପାଣ୍ଡବେ ରଖିବ ।
ମୋର ପରିଚୟ ତୁମ୍ଭେ କାହୁଁ ବା ଜାଣିବ ॥

ସୁରଥ ବଚନ ଶୁଣି ଶଙ୍କିତ ଅଚ୍ୟୁତ ।
ଅର୍ଜ୍ଜୁନଙ୍କୁ ବୋଲନ୍ତି ଶୁଣ ହେ କୁନ୍ତୀ ସୁତ ॥
ମହାବୀରବର ଏହି ସୁରଥ ଅଟଇ ।
ଯା ସହ ସମର କଲେ ଜୟ ହେବ ନାହିଁ ॥
ସ୍ୱଭାବର ବଳେ ସେ ପରଚଣ୍ଡ ମୂର୍ତ୍ତି ତାର ।
ଅତି ବଳବାନ ପୁଣି ଯୁଦ୍ଧେ ସୁଚତୁର ॥
ତୁମ୍ଭେ ଗଲେ ଅମଙ୍ଗଳ ହେବ ଧନଞ୍ଜୟ ।
ଅନ୍ୟ ରଥୀ ଯାନ୍ତୁ ଯୁଦ୍ଧେ ଅପସର ରହ ॥
ଶ୍ରୀକୃଷ୍ଣ ବଚନ ଶୁଣି ଆନନ୍ଦେ ଅର୍ଜ୍ଜୁନ ।
କପାଁଇ ଏତେ ଅଧୈର୍ଯ୍ୟ ହୁଅ ଭଗବାନ ॥
କି ଅବା ନ ଜାଣ ନାଥ ଜଗତର ସାଇଁ ।
ତୁମ୍ଭେ ଥାଉଁ ବିପଦ ପାଣ୍ଡବେ ଅଛୁ କାହିଁ ॥
ଯା ନାମ ସ୍ମରଣେ ସର୍ବ ଦୁରିତ ବିନାଶ ।
ଯା ନାମ ସ୍ମରଣେ ସର୍ବ ପାପ ହୁଏ ଧ୍ୱଂସ ॥
ସେ ମଙ୍ଗଳମୟ ଥାଉଁ ରଥରେ ମୋହର ।
ଏ ସଂସାର ମଧ୍ୟେ କିବା ଅମଙ୍ଗଳ ତାର ॥
ଦୟାବହି ବାସୁଦେବ କହନ୍ତୁ ଆପଣ ॥
ନୁହନ୍ତି କି ପାଣ୍ଡବଙ୍କ ଗତି ହେ ମୋହନ ॥
ମଧ୍ୟମ ପାଣ୍ଡବ ବାଣୀ ଶୁଣି ରମାବର ।
ଶାନ୍ତ୍ୱନା ଦେଇ ତାହାଙ୍କୁ ଭାଷନ୍ତି ଏ ଗିର ॥
ସୁରଥ ଅଜେୟ ବୀର ସଂସାରେ ଅଟଇ ।
କି ଭାବି ତା ସଙ୍ଗେ ଇଚ୍ଛା ଯୁଝିବାର ପାଇଁ ॥
ଦେଖ ବୀର ତେଜ ତାର ନିନ୍ଦେ ଦିନକର ।
କ୍ରୋଧ ହେଲେ ସଞ୍ଜୀବନୀ ଛାଡ଼େ ନାଶକର ॥
ବ୍ରହ୍ମା ଭୟକରେ ମୋର ସୃଷ୍ଟି ଏ ନାଶିବ ।
ଭୟେ କମ୍ପମାନ ସ୍ୱର୍ଗେ ହୁଅଇ ବାସବ ॥
ଭୟଙ୍କର କାଳାନଳ ପ୍ରାୟ ମୂର୍ତ୍ତି ଧରି ।
ନିର୍ଭୟେ ଆସଇ ରଣେ ନ ହେବ ନିବାରି ॥
ତେଣୁ କରି କହୁଅଛି ଆଜିକାର ରଣେ ।
ପ୍ରଦ୍ୟୁମ୍ନାଦି ବୀରେ ଯୁଦ୍ଧ କରନ୍ତୁ ତା ସନେ ॥
ପଶ୍ଚାତେ ଉପାୟ ତାର କରିବା ବିହିତ ।
ପୁଣ୍ୟବଳ ଯୋଗୁଁ ଭୟ ହୁଏ ମନେ ଜାତ ॥
ଜାଣିଅଛ ସୁଧନ୍ୱାର ନାଶ ପାଇଁ ମୁହିଁ ।
ଆପଣା ସୁକୃତ ଦେଇ ବିନାଶି ଅଛଇ ॥
ଧର୍ମବଳ ପୁଣ୍ୟବଳ ନ ହୋଇଲେ କ୍ଷୀଣ ।
ବିନାଶ ନ ହେବ ଶତ୍ରୁ ଏ ନୀତି ବଚନ ॥

ଏଣୁ କରି ଶାସ୍ତ୍ରମଧ୍ୟେ ହୋଇଅଛି ଲିଖିତ ।
ପୁଣ୍ୟବଳ ଥିବାଯାଏ ନୁହଇ ପତିତ ॥
ଦେଖ ଯେତେ ପ୍ରାଣୀଙ୍କର ପୁଣ୍ୟ କ୍ଷୟଯାଏ ।
ଅଳ୍ପକାଳ ମଧ୍ୟେ ସେହୁ ଯାନ୍ତି ଯମାଳୟେ ॥
ପୁଣ୍ୟହୀନ ଲୋକ ଖଣ୍ଡ ଅଗ୍ନି ବ୍ୟାଘ୍ର ହାତେ ।
ସମସ୍ତ ହରାଇ ନାଶ ହୁଅଇ କଷ୍ଟେତେ ॥
ଭଲକରି ଚିନ୍ତ ମନେ ମଧ୍ୟମ ପାଣ୍ଡବ ।
ପୁଣ୍ୟକ୍ଷୟ ନ ହୋଇଲେ ନ ମରେ ଏ ଜୀବ ॥
ପୁଣି କହନ୍ତି କେଶବ କୁମରଙ୍କୁ ଡାକି ।
କପାଁ ବିଳମ୍ବ ସମରେ ଆଗେ ଶତ୍ରୁ ଦେଖି ॥
ଯାଅ ବାବୁ ବୀର ମଦେ ମାତି ଶତ୍ରୁ ମାର ।
ସୈନ୍ୟ ସେନା ଆଦି ଘେନି ଚଳ ତୁ ସତ୍ୱର
ଶ୍ରୀକୃଷ୍ଣଙ୍କ ଆଜ୍ଞା ପାଇ ସର୍ବ ବୀରଗଣେ ।
ବୀରମଦେ ମାତି ଚଳିଗଲେ ରଣାଙ୍ଗନେ ॥
ଯେଉଁଠାରେ ସୈନ୍ୟମାନେ ଯାଇଁ ଯୁଦ୍ଧକଲେ
ସେଠାରୁ ଜୟ ଯୋଜନେ କୃଷ୍ଣାର୍ଜ୍ଜୁନ ଥିଲେ
ଭ୍ରାତୃ ଶୋକରେ ସୁରଥ ସମର ଭୂମିରେ ।
ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ନ ଦେଖିଣ ସମରେ ॥
ବୀରଗର୍ବେ ବୋଲେ ମୋର ଭୟରେ ଅର୍ଜ୍ଜୁନ
କୃଷ୍ଣ ସହ ଲୁଚି ରହିଛନ୍ତି ସେହୁ ପୁଣି ॥
ବାଳକର ସଙ୍ଗତରେ କିବା ରଣ ମୋର ।
ଏଥିରେ କି ଯଶ ପୁଣି ହୋଇବ ମୋହର ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ବା ରସାତଳ ଆଦି ।
ଯେଉଁଠାରେ ଥିଲେ ନିଶ୍ଚେ ପକାଇବି ଛେଦି
ଏସନ କହିଣ ବୀର ସୈନ୍ୟଙ୍କୁ ଡ଼ାକିଣ ॥
ବୋଲେ ମୋର ଭୟେ ପଳାଇଲେ କୃଷ୍ଣାର୍ଜ୍ଜୁନ
ମନେ ମନେ ଭାବିକରି ପରାକ୍ରମ ମୋର ।
ଭୟରେ ପଳାଇ ଗଲେ ସେହି ଦୁଇ ବୀର ॥
ଏହା ଶୁଣି ପ୍ରଦ୍ୟୁମ୍ନାଦି ବୋଲନ୍ତି ବଚନ ।
ବୃଥା କପାଁଇରେ ମୂର୍ଖ କହୁ ତୁ ଏସନ ॥
ଆଗେ ଆମ୍ଭମାନଙ୍କର ହସ୍ତୁ ରକ୍ଷା ପାଅ ।
ପଶ୍ଚାତେ ଦେଖିବୁ ଯାଇ କୃଷ୍ଣ ପାର୍ଥ ସହ ।
ନୀଚ ଲୋକ ପର ମୁଖେ ଆପଣା ବଡ଼ିମା ।
କେତେ ବଖାଣି ହେଉଛୁ ରେ କ୍ଷତ୍ରୀ ଅଧମା ॥
କହୁଁ କହୁଁ ପ୍ରଦ୍ୟୁମ୍ନାଦି ସର୍ବ ବୀରଗଣ ।
ବଜ୍ର ସମ ଶର ସର୍ବେ କରିଲେ ସନ୍ଧାନ ॥

ଦେଖିଣ ଏସନ ଗତି ସୁରଥ ତାଙ୍କର ।
ମହାକୋପେ ପ୍ରହାରିଲ ବ୍ୟୂହଭେଦ ଶର ॥
ଅନନ୍ତ ପୂରିତ କରି ବୀର ଛାଡ଼େ ଶରଗଣ ।
ଶରଜାଳେ ଅନ୍ଧକାର ହେଲା ସେହି ସ୍ଥାନ ॥
ଯେସନେ ଶ୍ରାବଣ ମାସେ ବରଷଇ ନୀର ।
ସମସ୍ତଙ୍କ ଶର କାଟି ମାରଇ ତୀକ୍ଷ୍ଣ ଶର ॥
ଅହୋ କେତେ କେତେ ବୀର ସୁରଥର ବାଣେ
ଅକାଳେ ତେଜିଲେ ପ୍ରାଣ ସମର ପ୍ରାଙ୍ଗଣେ ।
ରଥି ମହାରଥି ଆଦି ନାଶେ ବୀରଗଣ ।
ତିନି ଯୋଜନ ମାଡ଼ିଣ ପଡ଼ିଲେ ସଇନ ॥
ସର୍ବ ସୈନ୍ୟ ନାଶ କରି ସୁରଥ ଦୁର୍ଜ୍ଜୟ ।
ତଥାପି ନ ଦେଖେ ବୀର ଶ୍ରୀକୃଷ୍ଣ କୌନ୍ତେୟ ॥
ଏହାପରେ ସୈନ୍ୟ ଗଣ ନାଶି ନାଶି ବୀର ।
ଅନେକ ଦୂରେ ଦେଖିଲା ପାର୍ଥ ଚକ୍ରଧର ॥
ଦେଖିଲା ମାତ୍ରକେ ଶର କଲା ବରଷଣ ।
ଶର ନ ଆସୁଣୁ ତାହା କାଟିଣ ଅର୍ଜ୍ଜୁନ ॥
ବାଛି ବାଛି ତୀକ୍ଷ୍ଣବାଣ କରିଲେ ସନ୍ଧାନ ।
ଆକାଶ ଛାଇଣ କଲେ ବାଣ ବରଷଣ ॥
ଚାହିଁ ଚାହିଁ ସୁରଥର ଅଶ୍ୱ ରଥ ଧନୁ ।
ଖଣ୍ଡ ଖଣ୍ଡ କରି କାଟିଲେ ପାଣ୍ଡବ ସୁନୁ ॥
ଲଜ୍ଜାଭରେ ସୁରଥ ଯେ ଅନ୍ୟ ରଥ ଚଢ଼ି ।
ବିଶେଷ ଧନୁ ଧରିଣ ଛାଡ଼େ ସିଂହ ରଡ଼ି ॥
ଏହାପରେ ବେନି ବୀର କରନ୍ତି ସମର ।
ତିଳେ ମାତ୍ର ଅବସର ନାହିଁ ଦୁହିଁଙ୍କର ॥
କେହି କାହାଠାରୁ ଊଣା ନୁହନ୍ତି ସମରେ ।
ଡାକ ହାକ ଅସ୍ତ୍ର ପ୍ରହାରନ୍ତି ବେନି ବୀରେ ॥
ଉଭୟ ପକ୍ଷ ସଇନ ଦେଖିଣ ଏସନ ।
ଧନୁଶର ଛାଡ଼ି ସର୍ବେ ରହିଲେ ସେ ସ୍ଥାନ ॥
ପାଣ୍ଡବ ପକ୍ଷ ଚିନ୍ତନ୍ତି ଅର୍ଜ୍ଜୁନର ଜୟ ।
ସୁରଥ ପକ୍ଷ ଭାବନ୍ତି ସୁରଥ ବିଜୟ ॥
ଦେଖଣାହାର ପ୍ରାୟେ ଉଭୟ ସୈନ୍ୟଗଣେ ।
ଚାହିଁ ନ ପାରିଲେ ତହିଁ ବାଣର ଗହଣେ ॥
ଶୂନ୍ୟପଥରୁଦ୍ଧ ହେଲା ନ ଚଳେ ପବନ ।
ଦେଖି ତ୍ରିଦଶ ବିବୁଧେ ସଶଙ୍କିତ ମନ ॥
ଏ ସମୟେ ଶ୍ରୀକୃଷ୍ଣ କହନ୍ତି ଅର୍ଜ୍ଜୁନକୁ ।
ସୁରଥ ସମାନ ବୀର ନ ଦେଖେ କାହାକୁ ॥
ସୁରଥର ସମକକ୍ଷ ଯୋଦ୍ଧା କେଉଁ ସ୍ଥାନ ।
ନ ଦେଖିଛୁ ଏହା ସତ୍ୟ ହେ ବୀର ଅର୍ଜ୍ଜୁନ ॥
ଦେଖ ନୟନରେ ଚାହିଁ ଶରକୁ ତାହାର ।
ତିନି ଲୋକ କମ୍ପମାନ ଭୟରେ ଅସ୍ଥିର ॥
ଶ୍ରୀକୃଷ୍ଣଙ୍କ ବାଣୀ ଶୁଣି ବୀର ଫାଲଗୁନି ।
କୃତାଞ୍ଜଳି ପୁଟେ କହେ ଅହେ ବଂଶୀପାଣି ॥
କି ଛାର ସୁରଥ ବୀର ସମ୍ମୁଖେ ମୋହର ।
ଯାହାର ସହାୟ ନିଜେ ଅଖିଳ ଈଶ୍ୱର ॥
ତୁମ୍ଭ ପରସାଦେ ଅହେ କମଳଲୋଚନ ।
କୋଟି ସୁରଥ ହୋଇଲେ ନ ଗଣେ ଅର୍ଜ୍ଜୁନ ॥
ଦେଖ ନାଥ ଦୟାବଳେ ଏହି ତୁମ୍ଭ ଦାସ ।
ଏହିକ୍ଷଣି ସୁରଥକୁ କରିବ ବିନାଶ ॥
ଏତେ କହିଣ ଅର୍ଜ୍ଜୁନ ପ୍ରଣମି କୃଷ୍ଣରେ ।
ନିଦାରୁଣ ଶରମାରେ ସୁରଥ ଉପରେ ॥
ହସିଣ ସୁରଥ ବୀର ଅର୍ଜ୍ଜୁନଙ୍କୁ ଚାହିଁ ।
ତୁମ୍ଭ ରଥ ପ୍ରତି ଶର ଯୋଚୁଅଛି ମୁହିଁ ॥
ପାର ଯେବେ ରକ୍ଷାକର ହେ ବୀର ଅର୍ଜ୍ଜୁନ ।
ଏଥେ ସାକ୍ଷୀ ରହିଛନ୍ତି ପ୍ରଭୁ ନାରାୟଣ ॥
କହୁ କହୁ ଶର ଆସି ରଥର ଉପରେ ।
ପଡ଼ନ୍ତେ ଅସ୍ଥିର ହୋଇ ରଥ ଶୂନ୍ୟେ ଘୂରେ ॥
ଦେଖିଣ ବିସ୍ମୟ ଚିତ୍ତେ ପାର୍ଥ ବୀରବର ।
ଭାବେ କେଡ଼େ ବଳୀୟାର ଏ ସୁରଥ ବୀର ॥
ଏଥିଁ ରଥୀ ମୁହିଁ ପୁଣ ଶ୍ରୀକୃଷ୍ଣ ସାରଥି ।
ରୁଦ୍ରରୂପୀ ହନୁମାନ ବିଦ୍ୟମାନ ଏଥି ॥
ସର୍ବ ଦେବଗଣ ରହି ଅଛନ୍ତି ଅବର ।
ତଥାପି ରଥ ଘୂରଇ ମଣ୍ଡଳ ଆକାର ॥
ଦେଖିଣ ରଥର ଗତି କମଳଲୋଚନ ।
ପାଦ ଚାପି ରକ୍ଷା କଲେ ରଥକୁ ବହନ ।
ତଥାପି ନ ହୁଏ ସ୍ଥିର ଦେଖି ବିଶ୍ୱପତି ॥
ପାଞ୍ଚଜନ୍ୟ ଶଙ୍ଖ ଶବ୍ଦ କରିଲେ ଉଦ୍ଧତ ।
ଅର୍ଜ୍ଜୁନଙ୍କୁ ଦେବଦତ୍ତ ନେବାକୁ କହିଲେ ।
ଦୁଇଶଙ୍ଖ ନାଦେ ସର୍ବେ ଅସ୍ଥିର ହୋଇଲେ ॥
ପବନ ରୁଦ୍ଧ ହୋଇଲା ସୂର୍ଯ୍ୟ ଲୋକ ସ୍ଥିର ।
ବାସୁକୀ ନାଗର ଫଣୀ ହେଲା ଟଳମଳ ॥
ବ୍ରହ୍ମଲୋକ ନରଲୋକ ଧ୍ରୁବଲୋକ ଆଦି ।
ଶଙ୍ଖ ଶବ୍ଦେ ଅସ୍ଥିର ହୋଇଲେ ଗିରି ନଦୀ ॥

ଏ ସମୟେ ଅର୍ଜୁନେ କହିଲେ ନାରାୟଣ ।
ବିରଥ କର ସୁରଥେ ମାରି ତୀକ୍ଷ୍ଣ ବାଣ ॥
ଶୁଣିଣ କୃଷ୍ଣଙ୍କ ବାଣୀ ତକ୍ଷଣେ ଅର୍ଜୁନ ।
ବିଜୟ ଗାଣ୍ଡିବେ ଶର କରିଲେ ସନ୍ଧାନ ॥
ସୁରଥର ରଥ ଅଶ୍ୱ ପତାକା ସହିତ ।
ଆବର ଧନୁକୁ କାଟି କଲେ ଭସ୍ମୀଭୂତ ॥
ଏ ସମୟେ ହନୁମାନ ବେଢ଼ାଇ ଲାଙ୍ଗୁଡ଼ ।
ସ୍ଥିର କରିଣ ରଥକୁ ରଖିଲେ ସେଠାରେ ॥
ବିଶ୍ୱମ୍ଭର ନାରାୟଣ ପାଦ ଚାପି ଖରେ ।
ଅଚଳ କଲେ ରଥକୁ ସମର ଭୂମିରେ ॥
ଦେଖିଣ ଏସନ ରୀତି ସୁରଥ ଦୁର୍ଜ୍ଜୟ ।
ଉଚ୍ଚସ୍ୱରେ ଡାକି କହେ ହେ ଦେବାଧିରାୟ ॥
ହନୁମାନ ସହ ପ୍ରଭୁ ରକ୍ଷା କଲ ରଥ ।
ପାର୍ଥେ ରଖିବାକୁ ଚେଷ୍ଟା କର ହେ ଅଚ୍ୟୁତ
ଦେଖନ୍ତୁ ଏଥର ପ୍ରଭୁ କରୁଛି ମୁଁ ପଣ ।
ତ୍ରିଲୋକ ସହିତ ଯେବେ ଆସନ୍ତି ଆପଣ ॥
ଏକତ୍ର ହୋଇଣ ଯେବେ କରିବ ସମର ।
ସୁରଥ ହସ୍ତରୁ କେବେ ନୋହିବ ନିସ୍ତାର ॥
ଏମନ୍ତ କହିଣ ବୀର ଭଗ୍ନରଥ କରେ ।
ଉତ୍ତୋଳନ କରି ଗର୍ବେ ମହାକ୍ରୋଧଭରେ ॥
ହାଣିଣ ପାଣ୍ଡବ ପ୍ରତି ବୋଇଲେ ଏ ଭାଷ ।
ଏ ରଥ ନିକ୍ଷେପି ପୂରିବ ମୋ ଅଭିଲାଷ ॥
ରକ୍ଷାକର ବୀରପଣ ଦେଖାଯିବ ତୋର ।
ଯହିଁକି କହିବ ତହିଁ ପେଶିବି ନିକର ॥
ସମୁଦ୍ର ଗର୍ଭକୁ କିବା ତ୍ରିଲକ୍ଷ ଯୋଜନେ ।
ଶୂନ୍ୟରେ ରଖିବି କିବା ଧରା ଶେଷଧାମେ ॥
ହସ୍ତିନା ବାରୁଣୀ କିବା ଦ୍ୱାରକାର ପ୍ରତି ।
ଯହିଁକି କହିବ ତହିଁ ପେଶିବି ତତ୍କ୍ଷଣ ॥
ଶୁଣିଣ ଏସନ ବାଣୀ କ୍ରୋଧରେ ଅର୍ଜୁନ ।
ବଜ୍ରସମ ପାଞ୍ଚବାଣ କରିଲେ ସନ୍ଧାନ ॥
ଅର୍ଦ୍ଧପଥେ ସୁରଥର କାଟି ଭଗ୍ନରଥ ।
ପୁନର୍ବାର ଶର ପ୍ରହାରିଲେ ବୀରପାର୍ଥ ॥
ନିଦାରୁଣ ଶର ଆହା ସୁରଥ ବକ୍ଷରେ ।
ବାଜନ୍ତେ ଅଚେତେ ବୀର ପଡ଼ିଲା ଭୂମିରେ ॥
କିଛୁକ୍ଷଣେ ସଂଜ୍ଞା ଲଭି ସୁରଥ ଦୁର୍ଜ୍ଜୟ ।
ଅନାଇ ରଥଚଡି ବୀର ଗର୍ଜ୍ଜେ କାଳ ପ୍ରାୟ ॥

ଦୁଇବାରେ ତୀକ୍ଷ୍ଣ ବାଣ କଲେ ବରଷଣ ।
ଅର୍ଦ୍ଧଚନ୍ଦ୍ର ଶିଳୀମୁଖ କଙ୍କପକ୍ଷବାଣ ॥
ନାରାଚ କ୍ଷୁରପ ଆଦି ଭିନ୍ଦିପାଳ ଅସ୍ତ୍ର ।
ଶେଲଶୂଳ ଚକ୍ରକାଣ୍ଡ ମାରନ୍ତି ଦୁରନ୍ତ ॥
ନିଶ୍ୱାସ ନେବାକୁ ନାହିଁ ତହିଁ ଯେ ବିଶ୍ରାମ ।
ବେନି ବୀରେ ପ୍ରହାରିଲେ କ୍ରୋଧେ ଅସ୍ତ୍ରଗଣ ॥
ବେନିଏ ଅସୀମ ଯୋଦ୍ଧା କେହି ନୁହେ ସାନ
ଉଭୟେ କରାଳ ମୂର୍ତ୍ତି କାଳାନ୍ତକ ଯମ ॥
ଏପରି ସଙ୍କଟ କାଳେ ରାଜାଙ୍କ ତନୟ ।
ଡାକିଣ କହିଲେ ଆହେ ଶୁଣ ଧନଞ୍ଜୟ ॥
ଯାହା କହୁଅଛି ତାହା ଘେନ ହେ ଶତ୍ରୁରେ
ପ୍ରତିଜ୍ଞା କରିବା ଦୁହେଁ ସକଳ ଗୋଚରେ ॥
ତୁମ୍ଭର ପ୍ରତିଜ୍ଞା ବ୍ୟର୍ଥ ନୁହେ କଦାଚନ ।
ପ୍ରତିଜ୍ଞାର ପରିଚୟ ଦିଅ ହେ ଅର୍ଜୁନ ॥
ଏହିପରି ବେନି ବୀରେ ସମ୍ମତ ହୋଇଲେ ।
ଧର୍ମକୁ ସାକ୍ଷୀ କରିଣ ପ୍ରତିଜ୍ଞା ସେ କଲେ ॥
ନାରାୟଣଙ୍କୁ ମଧ୍ୟସ୍ଥ କରି ବେନି ଜଣ ।
ମହାଦେବ ବୋଲି କଲେ ପ୍ରତିଜ୍ଞା ନିୟମ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସାମୃତ ସାର କଥା ପ୍ରବନ୍ଧେ
ନାମ ଊନବିଂଶୋଽଧ୍ୟାୟଃ ।

---

## ବିଂଶ ଅଧ୍ୟାୟ

ଯଃ ପଠନ୍ତି ସଦା ସାଙ୍ଖ୍ୟାଶ୍ଚିନ୍ତୟନ୍ତି ଚ ଯୋଗିନଃ
ପରଂ ପ୍ରଧାନ ପୁରୁଷମଧିଷ୍ଠାତ ରମୀଶ୍ୱରମ୍ ॥

### ସୁରଥ ଓ ଅର୍ଜୁନର ପ୍ରତିଜ୍ଞା ଏବଂ ସୁରଥର ମୃତ୍ୟୁ

ଜୈମିନି ବୋଲନ୍ତି ରାଜା ଜନ୍ମେଜୟ ଶୁଣ
ଏଥୁଅନ୍ତେ ଯାହା ହେଲା କହୁଛି ମୁଁ ପୁଣ ॥
ବେନିବୀରେ ଡାକ ହାକ ସମର ଭୂମିରେ ।
ପ୍ରତିଜ୍ଞା କରିଲେ ସେହି କୃଷ୍ଣ ସାକ୍ଷାତରେ ॥
ସୁରଥର ବାଣୀ ଶୁଣି ଅର୍ଜୁନ ବୋଲଇ ।
ମୋହର ପ୍ରତିଜ୍ଞା ଏବେ ଶୁଣ ମନଦେଇ ॥
କ୍ରୋଧରେ ଗରଜି ବୀର ପାଣ୍ଡୁଙ୍କ ନନ୍ଦନ ।
ଏହି ବାଣୀ ଉଚ୍ଚ ସ୍ୱରେ କହିଲେ ତକ୍ଷଣେ ॥

ତୁମ୍ଭ ପିତା ଆଗେ ମୁହିଁ ତୁମ୍ଭର ବିନାଶ ।
କରିବି ମୋହର ପଣ ଜାଣିଥା ଅବଶ୍ୟ ॥
ପଶ୍ଚିମେ ଉଇଁବ ସୂର୍ଯ୍ୟ ପଦ୍ମ ପର୍ବତରେ ।
ଫୁଟିବ ଦିବସେ ଚନ୍ଦ୍ର ଅଗ୍ନି ସମୁଦ୍ରରେ ॥
କେବେହେଁ ଅର୍ଜୁନପଣ ମିଥ୍ୟା ଯେ ନୋହିବ
ଏଥେ ରହିଛନ୍ତି ସାକ୍ଷୀ ପ୍ରଭୁ ବାସୁଦେବ ॥
ଯେବେ ତୁମ୍ଭ ପିତା ଆଗେ ତୁମ୍ଭଙ୍କୁ ହେ ବୀର
ନାଶି ନ ପାରିବି ନିଶ୍ଚେ ଯିବି ନର୍କ ଘୋର ॥
ବିଧବା ସ୍ତ୍ରୀଙ୍କ ହରିଲେ ଯେଉଁ ପାପ ହୁଏ ।
ସେ ପାପରେ ଭାଗୀ ମୁହିଁ ହୋଇବି ନିଶ୍ଚୟେ
ଯେତେକ ସୁକୃତମାନ ଅଛଇ ମୋହର ।
ସେ ସକଳ ନାଶ ହେବ ଯିବି ପ୍ରେତପୁର ॥
ଏସନ କହିଣ ପାର୍ଥ ହୋଇଲେ ମଉନ ।
ଶୁଣିଣ ଅର୍ଜୁନ ବାକ୍ୟ ସୁରଥ ତକ୍ଷଣ ॥
ଶୁଣିଲୁ ପ୍ରତିଜ୍ଞା ଘୋର ତୁମ୍ଭର ଅର୍ଜୁନ ।
ମୋହର ପ୍ରତିଜ୍ଞା କିଛି କର ହେ ଶ୍ରବଣ ॥
ରଥ ଭୂମି ତଳରେ ଯେ ତୁମ୍ଭଙ୍କୁ ପତିତ ।
କରିବି ବାସବୀ ଜାଣ ଏ କଥା ନିଶ୍ଚିତ ॥
ଯେବେ ନ ପାରିବି ଜାଣ ମୋହର ସୁକୃତ ।
ସର୍ବନାଶି ପାଇବି ମୁଁ ନିଶ୍ଚେ ନର୍କଗତ ॥
ଜୈମିନି କହନ୍ତି ଶୁଣ ରାଜା ଜନ୍ମେଜୟ ।
ଏସନ କହିଣ ବେଗେ ନୃପତି ତନୟ ॥
ଶର ଜାଲେ ଆଚ୍ଛାଦିଲା ପାଣ୍ଡବ ସଇନ ।
ରଣମଧ୍ୟେ ମୂର୍ତ୍ତି ତାର ହୋଇଲା ଭୀଷଣ ॥
ଅର୍ଜୁନ ଦେଖିଣ କ୍ରୋଧେ ଧରି ଶରାସନ ।
ମହାକ୍ରୋଧେ ପ୍ରହାର କରିଲେ ଅସ୍ତ୍ରଗଣ ॥
ସୁରଥର ଶରକାଟି ସୈନ୍ୟଗଣ ନାଶି ।
ସାରଥି ସହିତ ରଥ ଦେଲେ ସେ ବିନାଶି ॥
କୋପେ ଅନ୍ୟରଥ ଚଢ଼ି ସୁରଥ ଧୀମାନ ।
ଅର୍ଦ୍ଧଚନ୍ଦ୍ର ନାମେ ଶର ଧଇଲା ବହନ ॥
ମନ୍ତ୍ରେ ଅଭିଷେକ କରି ବେଗେ ପ୍ରହାରିଲା ।
ଶରଘାତେ ଅର୍ଜୁନଙ୍କୁ ଜର୍ଜ୍ଜର କରିଲା ॥
ତହିଁ କ୍ରୋଧେ ମହାକାଳ ଅସ୍ତ୍ର ପାର୍ଥ ଧରି ।
ପ୍ରହାର କଲେ ସୁରଥେ ମନ୍ତ୍ରପୂତ କରି ॥
ଯେତେ ଯେତେ ପ୍ରତିଶର ସୁରଥ ବିନ୍ଧିଲା ।
କୌଣସି ପ୍ରକାରେ ତା ନିବାରି ନ ପାରିଲା ॥

ଗୃହ୍ଣିଁ ଗୃହ୍ଣିଁ ମହାକାଳ ନିଦାରୁଣ ଶର ।
ସୁରଥ ଦକ୍ଷିଣ ହସ୍ତ କାଟିଲା ସତ୍ୱର ॥
ହସ୍ତ କଟାଗଲା ତେବେ ନ ହୋଇ ଶଙ୍କିତ ।
ବାମହସ୍ତେ ଭୀମ ଗଦା ଧଇଲା ତୁରିତ ॥
ଗଦାଧରି ବୀରବର ଧାଏଁ କୋପମନେ ।
ପାଣ୍ଡବ ସୈନ୍ୟଙ୍କୁ ନାଶ କରିଲା ବହନେ ॥
କେତେ କେତେ ସୈନ୍ୟ ଅଶ୍ୱ ଆଦି କେତେ ସେନାପତି
ଗଦାର ପ୍ରହାରେ ନାଶେ ସୁରଥ ଧୀମତି ॥
ବୀର ଗର୍ବେ ରଣଭୂମି ଚମତ୍କୃତ କଲା ।
କାଳଦେବତା ପରାୟେ ତହିଁ ବିରାଜିଲା ॥
ତିଷ୍ଠ ତିଷ୍ଠ ରଣ ବୋଲି ପାଣ୍ଡବ ଫାଲ୍‌ଗୁନି ।
ଡାକନ୍ତି କୌତୁକେ ପ୍ରଭୁ ଦେବ ଚକ୍ରପାଣି ॥
ଶୁଣିଣ ଅର୍ଜୁନ ବୀର ଅତି କ୍ରୋଧଭରେ ।
ଦିବ୍ୟ ଅସ୍ତ୍ରେ ବାମଭୁଜ କାଟିଲେ ସତ୍ୱରେ ॥
ଦୁଇହସ୍ତ କଟା ହେଲା ତେବେ ଅର୍ଜୁନଙ୍କୁ ।
ମହା ରୋଷଭରେ ବୀର କହୁଛି ତାହାଙ୍କୁ ॥
ବଞ୍ଚାଅ ଆପଣା ପ୍ରାଣ ଆଜ ରଣ କ୍ଷେତ୍ରେ ।
ମୋହର ହସ୍ତେ ପଡ଼ିଛ ବଞ୍ଚିବ କେମନ୍ତେ ॥
ଏ ଘୋର ସଙ୍କଟେ ତୁମ୍ଭର ନିସ୍ତାର ନାହିଁ ।
ମନୁଷ୍ୟର ସାଧ୍ୟ କାହିଁ ବଞ୍ଚାଇବା ପାଇଁ ॥
ଜନମର ସାଧ ତୁମ୍ଭ ଘୁଞ୍ଚିବ ଏକ୍ଷଣି ।
ଇଷ୍ଟ ସୁମରଣା କର ପାଣ୍ଡବ ଫାଲ୍‌ଗୁନି ॥
ଏମନ୍ତ ଗର୍ବିତ ବାଣୀ ଶୁଣିଣ ଅର୍ଜୁନ ।
କ୍ରୋଧରେ ଧଇଲେ ବୀର ଇନ୍ଦ୍ରଦତ୍ତବାଣ ॥
ନିକ୍ଷେପିଲେ ବୀରବର ସୁରଥ ଉପରେ ।
ସେହି ବାଣେ ଦୁଇପାଦ କାଟିଲେ ସତ୍ୱରେ
ହସ୍ତଗଲା ପାଦଗଲା ତେବେ ବୀରବର ।
ଅର୍ଜୁନଙ୍କ ପ୍ରତି ଧାଏଁ ଅତ୍ୟନ୍ତ ସାଗର ॥
ଦେଖିଣ ଅର୍ଜୁନ ହାତେ ନୀଳବାଣ ଧରି ।
କ୍ରୋଧଭରେ ଛାଡ଼ି ଦେଲେ ମନ୍ତ୍ରପୂତ କରି ॥
କୁଣ୍ଡଳ ସହିତ ମୁଣ୍ଡ ପଡ଼େ ରଣସ୍ଥଳେ ।
ଅପୂର୍ବ ଆଲୋକ ଦିଶେ ବଦନ ମଣ୍ଡଳେ ॥
ଦେଖୁ ଦେଖୁ ମୁଣ୍ଡ ତାର ଅର୍ଜୁନ କପାଳେ ।
ପତିତ ହୋଇଲା ଦେଖୁଛନ୍ତି ସର୍ବସୁରେ ॥
ପୂର୍ଣ୍ଣ ମାତ୍ରେ ବୀର ପାର୍ଥ ହୋଇଲେ ମୂର୍ଚ୍ଛିତ ।
ରଥରୁ ପଡ଼ିଣ ଗଲେ ଭୂମିରେ ତୁରିତ ॥
ଏ ସମୟେ କଟାମୁଣ୍ଡ ହୋଇ ଉଚ୍ଛଳିତ ।
ଶ୍ରୀକୃଷ୍ଣଙ୍କ ପଦ୍ମପାଦେ ହୋଇଲା ପତିତ ॥

ଦେଖିଣ ଏସନ ସ୍ତୁତି ସର୍ବ ଦେବଗଣ ।
ଆକାଶେ ରହିଣ କଲେ ପୁଷ୍ପ ବରଷଣ ॥
ଧନ୍ୟ ଧନ୍ୟ ସୁରଥ ତୁ ସାର୍ଥକ ଜୀବନ ।
ଭବ ପାପତାପ ତୁହି ଛେଦିଲୁ ବନ୍ଧନ ॥
ସକଳ ସଂସାର ଘୋଷିବେ ତୋ ଯଶଗୁଣ ।
ନ ହୋଇବେ କେହି ଭକ୍ତ ତୋହର ସମାନ
ଧ୍ରୁବ ପ୍ରହ୍ଲାଦ ସଙ୍ଗେ ତୁମ୍ଭର ସେ ନାମ ।
ଚିରଦିନ ଅକ୍ଷୟ ରହିବ ଧରା ଧାମ ॥
ଏହିପରି ନାନା ସ୍ତୁତି ଦେବଗଣ କଲେ ।
ହରି ଶିବ ଉପାଧ୍ୟାୟ ମହାଦେବ ବୋଲେ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାରକଥା ପ୍ରବନ୍ଧେ ନାମ
ବିଂଶୋଽଧ୍ୟାୟଃ ।

—୦—

## ଏକବିଂଶ ଅଧ୍ୟାୟ

ଉତ୍ତଫଂସ୍ତୌଚବନାକ୍ଷେତ୍ରକାରଣଂଯାବଦ୍ଭୂବ୍ରଂ
ଦେବାସୁରମୁନୀନାଞ୍ଚ ପରଂସସ୍ନାନ୍ନବଦ୍ୟତେ ॥

### ସୁରଥର ମସ୍ତକ ପ୍ରୟାଗରେ ପତନ

ଜୈମିନି ବୋଲନ୍ତି ଶୁଣ ଅହେ ନରନାଥ ।
ଏଥୁଅନ୍ତେ ଯାହା ହେଲା ଶୁଣ ସେ ଚରିତ ॥
ଶ୍ରୀହସ୍ତରେ ସୁରଥର ମୁଣ୍ଡ ଧରି ହରି ।
ଅଚେତନ ଧନଞ୍ଜୟେ ତୋଳି ଯତ୍ନକରି ॥
ରଥପରେ ବସାଇଣ କହନ୍ତି ଏସନ ।
ସୁରଥର ପରାକ୍ରମ କଲୁ ଦରଶନ ॥
ଅତି ବଡ଼ ବୀର ଧର୍ମଶୀଳ ସୁରବନ୍ତ ।
ସୁରଥ ସମାନେ ବୀର ନ ଦେଖେ ମୁଁ ପାର୍ଥ ॥
କରିଥିଲା ପଣ ବୀର ସମର ସ୍ଥାନରେ ।
ଯୁଦ୍ଧେ ପତିତ କରିବ ବୋଲିଣ ତୁମ୍ଭରେ ॥
ଦେଖ କେଡ଼େ ସତ୍ୟବାଦୀ ଅଟଇ ସୁରଥ ।
ମୃତ୍ୟୁକାଳେ ଯୁଦ୍ଧ କଲା ତୁମ୍ଭଙ୍କୁ ପତିତ ॥
ଶୁଣିଣ ଏ ବାଣୀ କର ଯୋଡ଼ି କହେ ପାର୍ଥ ।
କେ ବୁଝିବ ତୁମ୍ଭ ମାୟା ଅହେ ଲକ୍ଷ୍ମୀକାନ୍ତ ।
ରୁଦ୍ର ବ୍ରହ୍ମା ଦେବ ମୁନି ଋଷି ସିଦ୍ଧଗଣ ।
ତୁମ୍ଭ ମାୟାବଳେ ଅଛନ୍ତି ହେ ମୋହନ ॥
କାହାକୁ ଇନ୍ଦ୍ରତ୍ୱ ଦିଅ କାହାରେ କର ଦୁଃଖୀ ।
କାହାପାରେ ଦୟା କଠୋରତା ପଦ୍ମଆଖି ॥

ତୁମ୍ଭ ମାୟା ବଚନେ ମୁଁ ନ ପାରିବି କହି ।
ଯୁଦ୍ଧେ ଜାଣି ପଡ଼ିଲି ଧରାରେ ଅମି ମୁହିଁ ॥
ପୁଣି ତୁମ୍ଭ କୃପାବଳେ ହେ ଦୟା ସାଗର ।
ପୁନରପି ଜ୍ଞାନ ଲାଭ ହୋଇଲା ମୋହର ॥
ଯା ହେତୁ ସୁରଥ ନୁହେ ସାମାନ୍ୟ ମାନବ ।
ଯାର ମୃତ ପିଣ୍ଡ ହସ୍ତେ ଧରିଲ କେଶବ ॥
ଏହାଠାରୁ ଭାଗ୍ୟବନ୍ତ ପୁଣ୍ୟବନ୍ତ ଜନ ।
ସଂସାର ମଧ୍ୟରେ କେହି ନ ହେବେ ଜନମ
ଯା ହେତୁ କରୁଣା କରି ଅହେ ପଦ୍ମନାଭ ।
ମୁକ୍ତକର ବୈକୁଣ୍ଠେ ବସାନ୍ତୁ ଏହା ଜୀବ ॥
ମୋର କରେ ଦିଅ ହରି ଥାଏ ସ୍ପର୍ଶ କରି ।
ସାଧୁ ସ୍ପର୍ଶ କଲେ ଯିବ ପାପ ତାପ ହରି ॥
କୃଷ୍ଣ କରୁ କଟା ମୁଣ୍ଡ ଧରିଣ ଅର୍ଜୁନ ।
ସ୍ପର୍ଶନ୍ତେ ବୈରାଗ୍ୟ ଜାତ ହୋଇଲା ହୃଦେଣ
କୃତାଞ୍ଜଳି ପୁଟେ ସ୍ତବ କରିଣ ସୁରଥେ ।
ଫେରାଇଣ ଦେଲେ ମୁଣ୍ଡ ଶ୍ରୀକୃଷ୍ଣଙ୍କ ହସ୍ତେ ॥
ଘେନିଣ ସେ ଭକ୍ତ ମୁଣ୍ଡ ଭକ୍ତ ଉଦ୍ଧାରଣ ।
ମନମଧ୍ୟେ ଗରୁଡ଼ଙ୍କୁ କରିଲେ ସ୍ମରଣ ॥
ରମ୍ୟକ ଦ୍ୱୀପରେ ଯେ ଗରୁଡ଼ ରହିଥିଲା ।
ସ୍ମରଣ ମାତ୍ରକେ ତାର ଆସନ କମ୍ପିଲା ॥
ଯୋଗବଳେ ଜାଣିଲା ମେ ସ୍ମରନ୍ତି ହରି ।
ଶୂନ୍ୟେ ବିକମିଣ ଗଲା ଡେଣାକୁ ବିସ୍ତାରି ॥
ମୁହୂର୍ତ୍ତକେ ଶ୍ରୀକୃଷ୍ଣଙ୍କ ପାଖରେ ମିଳିଣ ।
ପାଦେ ପଡ଼ି ଉଠି କହେ କରକୁ ଯୋଡ଼ିଣ ।
ଆଶ୍ୱାସ କରିଣ ପ୍ରଭୁ ନଖରାଜ ପ୍ରତି ।
କହିବାକୁ ଆରମ୍ଭିଲେ ମଧୁର ଭାରତି ॥
ଶୁଣ ବାବୁ ଗରୁଡ଼ ତୁ ମୋହର ବଚନ ।
ଏହି ମୁଣ୍ଡ ପ୍ରୟାଗରେ ପକାଅ ବହନ ॥
ଶ୍ରୀକୃଷ୍ଣଙ୍କ ବାଣୀ ଶୁଣି ବୋଲେ ପକ୍ଷୀରାଜ ।
ଏ କି ଚମତ୍କାର କଥା କୁହ ଦେବରାଜ ॥
ତ୍ରିଲୋକ ତାରଣୀ ଗଙ୍ଗା ଯେଉଁ ମାହେଶ୍ୱରୀ ।
ଯହିଁ ସରସ୍ୱତୀ ଯମୁନା ସଙ୍ଗେ ବିହରି ॥
ସେ ସ୍ଥାନ ପବିତ୍ରମୟ ଅଟଇ ନିକର ।
ତହିଁ ପକାଇଲେ ମୁଣ୍ଡ କି ଯଶ ତାହାର ॥
ଜାଣେ ମୁହିଁ ସୁରଧୁନୀ ସକଳଙ୍କ ତାପ ।
ନାଶକରେ ଜହ୍ନୁ କନ୍ୟା ଦୁଃଖ ମନସ୍ତାପ ।

ଗଙ୍ଗା ନୀରକୁ ଛୁଇଁଲେ ପାପତାପ ନାଶେ ।
ଶାସ୍ତ୍ରରେ ଏହା କହିଣ ଅଛନ୍ତି ବହୁତେ ॥
ସୁରଥର ତେଜ ନାଥ ତୁମ୍ଭ ବଦନରେ ।
ବଖାଣି ଦଣଇ ପ୍ରଭୁ ଜାଣେ ମୁଁ ହୃଦରେ ॥
ତେଣୁ ଭାବେ ସୁରଥ କ ମୁକ୍ତି ହୋଇବାହିଁ ।
କିହ କପାଁ ପ୍ରୟାଗରେ ପକାଇବ ନେଇ ।
ଏହାର କାରଣ ମୋତେ କହନ୍ତୁ ଆପଣ ।
ତବ ମୁଖ ଶୁଣି ହେବ ସନ୍ଦେହ ମୋଚନ ।
ଶୁଣିଣ. ଗରୁଡ଼ ବାଣୀ କମଲ ଲୋଚନ ।
ଜଳଦ ଗମ୍ଭୀର ସ୍ୱରେ କହନ୍ତି ବଚନ ॥

ଶୁଣ ବାହୁ ଖଗବର ଏଥିର କାରଣ ।
ସୁରଥ ଶିର ପଡ଼ନ୍ତେ ପ୍ରୟାଗ ତୀର୍ଥେଣ ॥
ପରମ ପବନ ତୀର୍ଥ ପ୍ରୟାଗ ହୋଇବ ।
ତୀର୍ଥ ମହିମା ଜଗତେ ବଖ୍ୟାତ ଦଶିବ ॥
ଶ୍ରୀକୃଷ୍ଣଙ୍କ ବାଣୀ ଶୁଣି ବିନତା କୁମର ।
ସୁରଥ ମସ୍ତକ ନେଇ ଗଲା ପ୍ରୟାଗର ॥
ଗମନ କରେ ଶୂନ୍ୟରେ ମନର ହରଷେ ।
ପବନ ସମାନ ଗମିଯାଏ ସେ ଅକ୍ଳେଶେ ॥
ଏ ସମୟେ ମହାଦେବ ପାର୍ବତୀ ସଙ୍ଗରେ ।
ବୃଷାରୂଢ଼େ ଗମନ ସେ କରନ୍ତି ଶୂନ୍ୟରେ ॥



ଶିବ ପାର୍ବତୀଙ୍କ କଥୋପକଥନ

ଦେବଙ୍କ ଅସାଧ ଶମ୍ଭୁ ତ୍ରିଶୂଳ ଧାରକ ।
ବରଦାତା ସଂସାରର ଅଭୟ ଦାୟକ ॥
ତ୍ରିଲୋକ ପାଳନ କର୍ତ୍ତା ସଂସାର କାରଣ ।
ମହାଭୋଳା ପୁରୁଷ ସେ ଯୋଗରେ ନିପୁଣ
ଦେଖିଲେ ଶୂନରେ ଦେବ ପାର୍ବତୀ ସହିତ
ଗମନ କରେ ଗରୁଡ଼ ମୁଣ୍ଡ ଘେନି ହସ୍ତ ।
ଶ୍ରୀହରିଙ୍କ ଆଦେଶରେ ପ୍ରୟାଗ ତୀର୍ଥେଣ ॥
ପକାଇବ ନନ୍ଦୀ ତୁମ୍ଭେ ଯାଅ ରେ ବହନ ।
ମୋର ଆଜ୍ଞା ଗରୁଡ଼କୁ କହିବୁ ବୁଝାଇ ।
ଗରୁଡ଼ର ନିକଟରୁ ମୁଣ୍ଡ ଆଣ ଯାଇ ॥

ଶୁଣିଣ ଶିବଙ୍କ କଥା ପାର୍ବତୀ ସେକ୍ଷଣି ।
ବନ୍ଦିଣ ତାହାଙ୍କ ପ୍ରତି ବୋଲନ୍ତି ଏ ବାଣୀ ॥
କହନ୍ତୁ ହେ ପ୍ରାଣନାଥ ଅନୁଗ୍ରହ କରି ।
କପାଁ ମୁଣ୍ଡ ଧରି ଯାଏ ପନ୍ନଗ ଅରି ॥
ଜାଣିବାକୁ ବଡ଼ ଇଚ୍ଛା ହେଉଅଛି ମୋହର ।
ସଂଶୟ ଫିଟାଇ ମୋତେ କୁହ ପ୍ରାଣେଶ୍ୱର ॥
ଶୁଣିଣ ପାର୍ବତୀ ଗିର ଦେବ ପଶୁପତି ।
ସହାସ୍ୟେ ମଧୁର ସ୍ୱରେ ବୋଲନ୍ତି ଗୋ ସତୀ ॥
ସ୍ଥିର ମନେ ଶୁଣ ସଖି ତାହାର ବୃତ୍ତାନ୍ତ ।
ପରମ ଧାର୍ମିକ ଅଟେ ଏ ସୁରଥ ଭକ୍ତ ॥

ଯୁଦ୍ଧରେ ଅର୍ଜୁନ ଯାଙ୍କୁ କରନ୍ତି ନିଧନ ।
ଶ୍ରୀକୃଷ୍ଣ ଆଦେଶେ ମୁଣ୍ଡ ନିଏ ପକ୍ଷୀଗଣ ॥
ପ୍ରୟାଗରେ ପକାଇବ ବୋଲି ଯାଉଅଛି ।
ତେଣୁ ଏ ମୁଣ୍ଡ ଆଣିବା ପାଇଁ ମୁଁ କହୁଛି ॥
ପୂର୍ବେ ଏହା ବଡ଼ଭାଇ ସୁଧନ୍ୱା ଯେ ବୀର ।
ତାହାର ମୁଣ୍ଡକୁ ଆଣି କରିବି ମୁଁ ହାର ॥
ଏହାର ମୁଣ୍ଡକୁ ଆଣି ମାଳା ମୁଁ କରିବି ।
ତେଣୁ ଭୃଙ୍ଗୀକି କହିଲି ଶୁଣ ଅଗୋ ଦେବୀ ॥
ରୁଦ୍ରାକ୍ଷ ତୁଳସୀ ମାଳ କଲେ ପରିଧାନ ।
ଭକ୍ତମୁଣ୍ଡ ମାଳା ତହୁଁ ଅଟେ ବଡ଼ ଜାଣ ॥
ଇହକାଳ ପରକାଳ ମୁକ୍ତିର ନିମିତ୍ତ ।
ଏକମାତ୍ର ଭକ୍ତ ସଖା ଅଟନ୍ତି ଅନନ୍ତ ॥
ମହାଦେବଙ୍କ ଆଜ୍ଞାରେ ଭୃଙ୍ଗୀ ବେଗେ ଯାଇ ।
ବାଟରେ ଗରୁଡ଼ଙ୍କୁ ସେ ଦେଖିଣ ବୋଲଇ ॥
ଗରୁଡ଼ଙ୍କୁ ଦେଖି ଭୃଙ୍ଗୀ କହଇ ବଚନ ।
ଶୁଣ ଶୁଣ ପକ୍ଷୀରାଜ ମୋର ନିବେଦନ ॥
ଜାଣ ତ ମୁଁ ଶିବଙ୍କର ଅଟେ ଅନୁଚର ।
ଯୋଗାରୂଢ଼ ପୁରୁଷ ସେ ଅଟନ୍ତି ଶଙ୍କର ॥
ମୋତେ ପଠାଇଲେ ଶମ୍ଭୁ ତୁମ୍ଭ ପାଶେ ।
ବୋଇଲେ ମୋ ଆଜ୍ଞା କହ ଯାଇଁ ଖଗ ଈଶେ ॥
ଭକ୍ତମୁଣ୍ଡ ନେଉଅଛ ପ୍ରୟାଗ ତୀର୍ଥେଣ ।
ସେ ମୁଣ୍ଡ ମାଳା କରିବେ ପ୍ରଭୁ ତ୍ରିଲୋଚନ ॥
ଶିବଙ୍କ ଆଦେଶ ମାନି ମୁଣ୍ଡ ମୋତେ ଦିଅ ।
ଆନନ୍ଦରେ ଖଗପତି ଗୃହେ ଫେରିଯାଅ ॥
ଜାଣ ତ ହରିହରଙ୍କ ଭେଦାଭେଦ ନାହିଁ ।
ଯେ ଭେଦ କରଇ ସେହି ନର୍କରେ ପଡ଼ଇ ॥
ଭୃଙ୍ଗୀର ବଚନ ଶୁଣି ଗରୁଡ଼ କହଇ ।
ପ୍ରଭୁଙ୍କ ଆଦେଶ ନାହିଁ କିପରି ଦେବଇଁ ॥
ଶୁଣି ଭୃଙ୍ଗୀ ବୋଲେ ମୁଣ୍ଡ ନ ଦେଲେ ମୋତେ
ବାହୁବଳେ ଛଡ଼ାଇ ମୁଁ ନେବି ସହଜରେ ॥
ସର୍ପମାନେ ଯିନା ଦେଖି ତୁମ୍ଭଙ୍କୁ ଡରିବେ ।
ମୁହିଁ ଶିବଭକ୍ତ ଭୟ ନ କରିବି କେବେ ॥
ପ୍ରବଳ ଯେ ଦୁର୍ବଳଙ୍କୁ ଭୟ ନ କରଇ ।
ନ ଜାଣ କି ମୋର ବଳ ଅଟେ ପକ୍ଷୀସାଇଁ ॥
ଭଲ ଯେବେ ଥିଲେ ମୁଣ୍ଡ ଦିଅ ହେ ବହନ ।
ନ ଦେଲେ ପ୍ରମାଦ ନିଶ୍ଚେ ଘଟିବ ତ ଜାଣ ॥

ଭୃଙ୍ଗୀର ବଚନ ଶୁଣି କ୍ରୋଧେ ଖଗବର ।
ଭୃଙ୍ଗୀକୁ ତୁଚ୍ଛ ମଣିଣ ଗର୍ଜିଲେ ସତ୍ୱର ॥
ପକ୍ଷ ସଞ୍ଚାଳନରେ ଯେ ଗିରିବର ନାଶେ ।
ସହି ନ ପାରିଣ ସେହି ଉଡ଼ିଲେ ଆକାଶେ ॥
ସମୁଦ୍ର ଗର୍ଜନ ପରି ଶୁଭଇ ଚହଳ ।
ଦିଗ ଅନ୍ଧକାର ଯେହ୍ନେ ପ୍ରଳୟର କାଳ ॥
ପକ୍ଷ ବାତାଘାତେ ଉଡ଼ି ଉଡ଼ି ଭୃଙ୍ଗୀବୀର ।
ଶିବଙ୍କ ପାଶରେ ଆସି ପଡ଼ିଲେ ସତ୍ୱର ॥
ଉଠି କର ଯୋଡ଼ି ବୋଲେ ଶିବଙ୍କ ପାଶରେ ।
କି ମୁଣ୍ଡ ଆଣିବି ଉଡ଼ି ପଡ଼ିଲି ଏଠାରେ ॥
ଅନେକ ପ୍ରକାରେ ମୁହିଁ କହିଲି ବୁଝାଇ ।
ନ ମାନିଲା ମୋର କଥା ମଦନାର ସାଇଁ ॥
ତହୁଁ ଅସ୍ତ୍ର ବ୍ୟସ୍ତେ ଧମକାଇଣ କହିଲି ।
ପକ୍ଷାଘାତେ ଏତେ ଦୂରେ ଆସିଣ ପଡ଼ିଲି ॥
ଭୃଙ୍ଗୀକୁ ଦେଖିଣ ହସି ବୋଲନ୍ତି ପାର୍ବତୀ ।
ନ ଜାଣ କି ବସ୍ତୁ ଭକ୍ତ ଭଣ୍ୟପର ନାତି ॥
ମହାଯୋଦ୍ଧା ଜିତେନ୍ଦ୍ରିୟ ହରିଙ୍କ କିଙ୍କର ।
ଜଗତ ମଧ୍ୟେ ପ୍ରଧାନ ଯେଉଁ ପକ୍ଷୀବର ॥
ତାଙ୍କ ସଙ୍ଗେ ବିବାଦ କରିଲ ତୁମ୍ଭେ ଯାଇ ।
ଶେଷେ ଅପମାନ ପାଇ ଆଇଲ ପଳାଇ ॥
ଭୃଙ୍ଗୀର ପରାସ୍ତ ଦେଖି ଦେବ ପଶୁପତି ।
ନନ୍ଦୀ ବୃଷଭଙ୍କୁ ଡାକି ପ୍ରବୋଧି ବୋଲନ୍ତି ॥
ଯାଅ ତୁମ୍ଭେ ମୋହ ଆଜ୍ଞା କହ ଗରୁଡ଼ଙ୍କୁ ।
ପ୍ରବୋଧ କରିଣ ଆଣ ମୁଣ୍ଡ ମୋ ପାଖକୁ ॥
ଶିବଙ୍କ ଆଜ୍ଞା ପାଇଣ ବେନି ବୀରବର ।
ମୁଣ୍ଡ ଉଦ୍ଦେଶ୍ୟରେ ଗଲେ ଗରୁଡ଼ ପଛର ॥
ଗରୁଡ଼ଙ୍କୁ ବିନୟ ସେ ହୋଇଣ କହିଲେ ।
ତୁମ୍ଭ ପାଶେ ମୁଣ୍ଡ ପାଇଁ ଶିବ ପଠାଇଲେ ॥
ଯେତେ ଯେତେ କହିଲେ ସେ ଗରୁଡ଼ଙ୍କୁ ପୁଣି
କେତେବେଳେ ମୁଣ୍ଡ ଦେଲା ନାହିଁ ପକ୍ଷୀମଣି ॥
ତହୁଁ କ୍ରୋଧେ ନନ୍ଦୀ ବୃଷଭ ଯେ କୋପ କଲେ
ଦେଖି ଏ ଖାତି ବିନତା ନନ୍ଦନ କୋପିଲେ ॥
ମନମଧ୍ୟେ କେଶବଙ୍କୁ କରିଣ ସ୍ମରଣ ।
କ୍ଷଣେ ପୁରତ ଧରି ପକ୍ଷ ବିସ୍ତାରିଣ ॥
ସମୁଦ୍ର ଗର୍ଜନ ପ୍ରାୟେ ଶବଦ ଶୁଭିଲା ।
ଶତ୍ରୁବଳ ଏକାବେଳେ କି ଅବା ଖଡ଼ିଲା ॥

ଗରୁଡ଼ ସୁରଥ ମୁଣ୍ଡ ପ୍ରୟାଗରେ ପକାଇବା ବେଳେ ଶିବଙ୍କ ଦୂତ
ଗୁପ୍ତରେ ସେ ମୁଣ୍ଡକୁ ଆଣି ଶିବଙ୍କୁ ଦେବା



ଗରୁଡ଼ର ପକ୍ଷବାତ ସହି ନ ପାରନ୍ତି ।
ଭୂମିରେ ପଡ଼େ ବୃଷଭ ମୁହିଁକୁ ମାଡଣ ॥
ପକ୍ଷର ପବନଘାତେ ବୃଷଭ ପଡ଼ିଲା ।
ଯାଇଣ ଶିବଙ୍କ ପାଶେ ପଡ଼ି ମୋହଗଲା ॥
ମୋହ ଛେକ ହେଁ ମୁଖ ହୋଇ କହେ ବାଣୀ
ଯେତେ ବୁଝାଇଲି ନ ଦେଲା ସେ ପକ୍ଷୀମଣି ॥
ଶୁଣି କ୍ରୋଧେ ତା ସହିତ ଯୁଦ୍ଧ ମୁହିଁ କଲି ।
ପକ୍ଷ ବାତାଘାତେ ଉଡ଼ି ଏଠାରେ ପଡ଼ିଲି ॥
ନନ୍ଦୀକେଣେ ଗଲା ଦେବ ମୋତେ ଜଣାନାହିଁ
ଅପରାଧ କ୍ଷମାକର ପାର୍ବତୀର ସାଇଁ ॥
ଗରୁଡ଼ର କୋଧ ଦେଖି ନନ୍ଦୀ ସୁଚତୁର ।
ଅଦୃଶ୍ୟ ଭାବରେ ଗଲା ଗରୁଡ଼ ପଛର ॥

ଏଣେ କ୍ରୋଧେ ପକ୍ଷୀବର କରଇ ଗମନ ।
ଚରାଚର କମ୍ପମାନ ହୁଏ ସେ ଶବ୍ଦେଣ ॥
କ୍ଷଣେକ ମଧ୍ୟରେ ପ୍ରୟାଗରେ ପ୍ରବେଶିଲା ।
କୃଷ୍ଣଙ୍କ ଆଜ୍ଞାରେ ମୁଣ୍ଡ ତହିଁ ଫୋପାଡ଼ିଲା ॥
ସୁରଥମସ୍ତକ ପ୍ରୟାଗରେ ଫୋପାଡ଼ନ୍ତେ ।
ଶିବଙ୍କର ଅନୁଚର ଥିଲା ସେ ଗୁପତେ ॥
ପକାଇବା ମାତ୍ରେ ମୁଣ୍ଡ ଶିବଚର ଯାଇ ।
ଜଳମଧ୍ୟୁ ଉଠାଇଣ ଆନନ୍ଦେ ଆସଇ ॥
ମହାଦେବଙ୍କ ପାଶରେ ପ୍ରବେଶ ହୋଇଲା ।
ମୁଣ୍ଡ ଶ୍ରୀକରେ ଦେଇଣ ସମସ୍ତ କହିଲା ॥
ଦେଖିଣ ଭକ୍ତର ମୁଣ୍ଡ ଦେବଦେବ ହର ।
ହାର କରି ପିନ୍ଧିଲେ ସେ ଆପଣା ଗଳାର ॥

କୁଣ୍ଡଳ ସହିତ ମୁଣ୍ଡ ଦିଶେ ଶୋଭାବନ ।
ଶିବକଣ୍ଠେ ବହୁ ତେଜ ହୋଇଲା ଦ୍ୱିଗୁଣ ॥
ଭକ୍ତ ମାନ ବଢ଼ାଇବା ପାଇଁ ନାରାୟଣ ।
ଶିବଙ୍କ ଗଳାରେ ମୁଣ୍ଡ କଲେ ପରିଧାନ ॥
ଏଣେ ବଜାଙ୍ଗ କୁମର ଫେରିଣ ହରଷେ ।
ପ୍ରବେଶ ହୋଇଲା ବେଗେ ଶ୍ରୀକୃଷ୍ଣଙ୍କ ପାଶେ ॥
ପ୍ରଣିପାତ୍ୟ ହୋଇ କୃତାଞ୍ଜଳି ପୁଟେ ବୋଲେ
ସୁରଥ ମସ୍ତକ ପକାଇଲି ପ୍ରୟାଗରେ ॥
ଗଲାବେଳେ ଶିବଦୂତ ଆସି ମୋ ସହିତ ।
ମୁଣ୍ଡ ନେବା ପାଇଁ ଦ୍ୱନ୍ଦ କଲେ ସେ ବହୁତ ॥
ମାତ୍ର ତୁମ୍ଭର କୃପାରୁ ଅହେ ନାରାୟଣ ।
ସମସ୍ତଙ୍କୁ ପରାଜିତ କରିଲି ମୁଁ ଜାଣ ॥
ପରାଜୟ କରି ମୁଣ୍ଡ ଘେନି ବେଗେ ଗଲି ।
ପବିତ୍ର ପ୍ରୟାଗ ନୀରେ ପକାଇଣ ଦେଲି ॥
ଭକ୍ତ ମୁଣ୍ଡ ପ୍ରୟାଗରେ ପକାଇବା ମାତ୍ରେ ।
ଶିବଙ୍କର ଦୂତମାନେ ଥିଲେ ଯେ ଗୁପତେ ॥
ଜଳମଧ୍ୟୁ ମସ୍ତକକୁ ଉଠାଇଣ ନେଲେ ।
ଆନନ୍ଦ ମନରେ ଶିବ ପାଶେ ସମର୍ପିଲେ ॥
ମୋହଠାରୁ ନେବା ପାଇଁ ଯେତେ କଲେବଳ
ଆପଣଙ୍କ ଦୟାରୁ ସେ ହାରିଲେ ସକଳ ॥
ଏଥୁଅନ୍ତେ ଜନ୍ମେଜୟ ବୋଲନ୍ତି ବଚନ ।
ଏହାପରେ କି ଘଟିଲା କହ ମୁନିରାଣ ॥
ରାଜାଙ୍କ ବଚନ ଶୁଣି ବୋଲନ୍ତି ଜୈମିନି ।
ସାବଧାନେ ଶୁଣ ଅହେ ପାଣ୍ଡୁ କୁଳମଣି ॥
ସୁଧନ୍ୱା ସୁରଥ ମୃତ୍ୟୁ ହଂସଧ୍ୱଜ ଦେଖି ।
ପୁତ୍ରଶୋକେ କୃତାନ୍ତକ ପ୍ରାୟ କଲେ ଆଖି ॥
କ୍ରୋଧଭରେ ଅଙ୍ଗ କମ୍ପେ କମ୍ପେ ବାହୁବେନି
ଧନୁ ଟଙ୍କାରିଲେ ରାଜା କରି ଶଙ୍ଖଧ୍ୱନି ॥
ଦିବ୍ୟରଥେ ଆରୋହଣ ନୃପକୁଳ ରାହୁ ।
ସୈନ୍ୟ ସହିତରେ ରଥେ ଆସେ ଗୃହୁଁ ଗୃହୁଁ ॥
ସୈନ୍ୟଙ୍କର ମୁଖଗୋଳ ରଥ ଗର୍ଜ୍ଜନରେ ।
ପୃଥିବୀ କମ୍ପିତ ହେଲା ମେରୁ ସହିତରେ ॥
ଅନନ୍ତ ନାଗର ଫଣା ଟଳମଳ ହେଲା ।
ସର୍ବେ ଭାବିଲେ କିବା ଏ ପ୍ରଳୟ ହୋଇଲା ॥
ଆକାଶେ ଅଦୃଶ୍ୟ ହେଲେ ଦେବ ଦିବାକର ।
ରୁଧିର ବରଷା ହେଲା ଶୂନ୍ୟରୁ ଅବର ॥

କ୍ରୋଧେ ରାଜା ଟଙ୍କାରିଲେ ଧରିଣ ଶାୟକ ।
ସ୍ୱର୍ଗେ କମ୍ପମାନ ହେଲେ ଅମର ନାୟକ ॥
କାଳଦେବ ସମ ଦେଖି ରାଜାଙ୍କୁ ରଥର ।
ଅର୍ଜ୍ଜୁନଙ୍କ ରକ୍ଷା ପାଇଁ ଦେବ ଦାମୋଦର ॥
ରଥରୁ ଉତୁରି ପ୍ରଭୁ ରୁକ୍ମିଣୀ ରମଣ ।
ଭୂମିରେ ଉଭା ହୁଅନ୍ତେ ଦେଖିଣ ରାଜନ ॥
ରଥୁ ଡେଇଁ ନମସ୍କାର କରି ବୋଲେ ବାଣୀ
କି ଦୋଷେ ମୋ ପୁତ୍ର ନାଶ କଲ ଚକ୍ରପାଣି
ଯାହା ପାଇଁ ନାଶ କଲ ମୋ ବେନିକୁମର ।
ଏବେ ତାକୁ ରକ୍ଷାକର ପ୍ରଭୁ ଚକ୍ରଧର ॥
କେଉଁ ଜନ୍ମେ କେତେ ମୁଁ ତପସ୍ୟା କରିଥିଲି
ଅନାଦିନାଥଙ୍କୁ ଆଜ ନୟନେ ଦେଖିଲି ॥
ଯାହାଙ୍କ ଦର୍ଶନେ ସର୍ବପାପ ଦୂର ହୁଏ ।
ତାହାଙ୍କ ଦର୍ଶନେ ନର ଦେବ ଦେହପାଏ ॥
ସେହି ପ୍ରଭୁ ସମ୍ମୁଖରେ ଅଛନ୍ତି ମୋହର ।
କି ଛାର ପୁତ୍ର କୁଟୁମ୍ବ କି ଛାର ସଂସାର ॥
ଯୋଗୀ ଯାଙ୍କୁ କୋଟି କଳ୍ପ ଦେଖି ନ ପାରନ୍ତି
ମୋ ପୁରେ ଉଦୟ ପ୍ରଭୁ ଦେଖି ମୋର ଭକ୍ତି
ଜଣାଏ ଛଦ ନାରାୟଣ ମୋ ବେନି କୁମର ।
କେଉଁ ଦୋଷେଦୋଷୀ ତୁମ୍ଭ ଶ୍ରୀଚରଣ ତଳ ॥
କି ପାପରେ ସେହୁମାନେ ନିହତ ହୋଇଲେ
ଫଣୟ ଫିଟାଇ ପ୍ରଭୁ କୁହ ଦାସଠାରେ ॥
ଏସନ ବଚନ ଶୁଣି ବୋଲନ୍ତି କେଶବ ।
ଶୁଣ ଭକ୍ତ ହଂସଧ୍ୱଜ କହୁଛି ସରବ ॥
ପାପହୀନ ପୁଣ୍ୟବନ୍ତ ସତ୍ୟ ଧର୍ମ ପ୍ରିୟ ।
ପବିତ୍ର ତୁମ୍ଭର ମତ ଜାଣେ ମୁଁ ନିଶ୍ଚୟ ॥
ପୁତ୍ରଶୋକ ଭୁଲିଯାଅ ଅହେ ମହାମତ ।
ରଣ ଆଶା ଛାଡ଼ ଦିଅ ଶୁଣ ମୋ ଉକତ ॥
ଧାର୍ମିକ ପ୍ରବର ତୁମ୍ଭ ଦୁଇଟି ନନ୍ଦନ ।
ଭକ୍ତିବଳେ ଲଭିଲେ ସେ ବଇକୁଣ୍ଠ ସ୍ଥାନ ।
ଭକ୍ତ ଜାଣି ମହାଦେବ ତୁମ୍ଭ ପୁତ୍ର ଶିର ।
ମାଳକରି ଲମ୍ବାଇଲେ ଆପଣା ଗଳାର ॥
ଏଥୁ ବଳି କେଉଁ ଯଶ ଲଭିବ ରାଜନ ।
ପୁତ୍ରଶୋକ ଛାଡ଼ି ରାଜା ମାନ ମୋ ବଚନ ॥
କୃଷ୍ଣଙ୍କର ବାଣୀ ଶୁଣି ରାଜା ହଂସଧ୍ୱଜ ।
ପାଦତଳେ ପଡ଼ି ବୋଇଲେ ରଖ ଦେବରାଜ ॥

ରାଜାଙ୍କୁ କୋଳ କରିଣ ବୋଲନ୍ତି ଶ୍ରୀହରି ।
ସର୍ବକଷ୍ଟ ଦୂର ହେବ ଆଶିଷେ ମୋହର ॥
ଅଙ୍ଗ ସ୍ପର୍ଶମାତ୍ରେ ରାଜା ଭକ୍ତିଭାବ ଭୋଳେ ।
ହସ୍ତଯୋଡ଼ି ସ୍ତବ କରେ ସାନନ୍ଦ ମନରେ ॥
ହେ କରୁଣାସିନ୍ଧୁ ତୁମ୍ଭଠାରୁ ଆଉ ଧନ ।
ଅଛି କି ସଂସାରେ ସ୍ଥିର ଜାଣୁ ପ୍ରସମାନ ॥
ଯା ଦର୍ଶନ ପାଇଁ ଯୋଗୀ ଯୋଗ କରି କରି ।
ଦେଖା ନ ପାଆନ୍ତି ସର୍ବେ ହେ ମୁରଲୀଧାରୀ
ସେ ପ୍ରଭୁଙ୍କୁ ଦେଖି ଆଉ କି ଦୁଃଖ ମୋହର
ଜାଣିଲି ଭାଗ୍ୟ ମୋହର ଅଟେ ବଳୀୟାର ॥
ରାଜାଙ୍କ ସ୍ତବରେ ତୁଷ୍ଟହୋଇ ନାରାୟଣ ।
କୋମଳ ମଧୁର ସ୍ୱରେ କହନ୍ତି ବଚନ ॥
ଜାଣ ନରପତି ମୁଁ ପାଣ୍ଡବ ହିତ ପାଇଁ ।
ଜୀବନ ଧନ ସହିତ ମମତ୍ୱ ଦେବଇଁ ॥
ସମସ୍ତ ତେଜି ପାରଇ ପାଣ୍ଡବ ନିମିତ୍ତ ।
ପାଣ୍ଡବଙ୍କ ହିତ ପାଇଁ ଅନୁକ୍ଷଣେ ରତ ॥
ପିତା ଯେପରି ସୁତଙ୍କୁ ପାଳଇ ଯତ୍ନରେ ।
ପାଣ୍ଡବଙ୍କୁ ରକ୍ଷା କରେ ମୁହିଁ ସେପରିରେ ॥
ଛାଡ଼ ଅଭିମାନ ରାଜା ଯଜ୍ଞ ଅଶ୍ୱ ଦିଅ ।
ଅର୍ଜୁନ ସହିତ ମିଳି ବନ୍ଧୁ ଭାବ ବହ ॥
ଧର୍ମଙ୍କ ସହିତ ମୁଁ ସାକ୍ଷାତ କରାଇବି ।
ଏମନ୍ତ ପ୍ରବୋଧ କରି କହିଲେ ଯାଦବି ॥
ଶୁଣିକରି ହଂସଧ୍ୱଜ ଆନନ୍ଦ ହୋଇଲେ ।
ଅର୍ଜୁନ ଯାଇ ରାଜାଙ୍କୁ ପ୍ରଣାମ ଯେ କଲେ ॥
ହର୍ଷେ ରାଜା ନର ନାରାୟଣଙ୍କୁ ଘେନିଣ ।
ଆପଣା ପୁର ମଧ୍ୟକୁ କରିଲେ ଗମନ ॥
ପଞ୍ଚରାତ୍ରି ହଂସଧ୍ୱଜପୁରେ ହରି ରହି ।
ଯଜ୍ଞାଶ୍ୱ ସହିତ ବାହାରିଲେ ବେଗେ ତହିଁ ॥
ତହୁଁ ହରି ହଂସଧ୍ୱଜ ଅର୍ଜୁନେ ବିଦାୟ ।
ଦେଇ ଚଳିଲେ ହସ୍ତିନା ସାନନ୍ଦ ହୃଦୟ ॥
ହସ୍ତିନା ପ୍ରବେଶି ଯୁଧିଷ୍ଠିରେ ସର୍ବ କହି ।
ଦ୍ୱାରକାକୁ ଗଲେ ପ୍ରଭୁ ଆନନ୍ଦିତ ହୋଇ ॥
ଶ୍ରୀନୀଳାଦ୍ରିନାଥ ପାଦେ କରି ନମସ୍କାର ॥
ଉପାଧ୍ୟାୟ ମହାଦେବ ବୋଲେ ଯୋଡ଼ି କର

## ଯଜ୍ଞାଶ୍ୱ ଘୋଟକୀ ଓ ବ୍ୟାଘ୍ର ରୂପ ପାର୍ବତୀଙ୍କ ଶାପ ଦେବା ପ୍ରଭୃତି

ଏଥୁ ଅନନ୍ତରେ କଥା ଶୁଣ ହେ ରାଜନ
ଏଣେ ଯଜ୍ଞ ଅଶ୍ୱବର ହୋଇଣ ମୋଚନ ॥
ପଶ୍ଚିମ ଦିଗକୁ ଚଳିଯାଏ ଅଶ୍ୱବର ।
ଅର୍ଜୁନର ସୈନ୍ୟ ଯାନ୍ତି ପଛରେ ତାହାର ॥
ଅର୍ଜୁନ ପଶ୍ଚାତେ ଯାନ୍ତି ସର୍ବ ଅନୁଚର ।
ନୀଳଧ୍ୱଜ ହଂସଧ୍ୱଜ ଆଦି ନୃପବର ॥
ପ୍ରଦ୍ୟୁମ୍ନ ପ୍ରମୁଖ ବୃଷକେତୁ ଆଦି ବୀରେ ।
ଅଶ୍ୱ ରକ୍ଷାର୍ଥେ ଚଳନ୍ତି ସାନନ୍ଦ ମନରେ ॥
ଶୀଘ୍ରଗତି ଯାଏ ଅଶ୍ୱ ଉତ୍ତର ଦିଗରେ ।
ଆଗରେ ଦେଖିଲା ସେ ଅପୂର୍ବ ସରୋବରେ ॥
ସୁଗନ୍ଧ ପୁଷ୍ପ ସମୂହ ତହିଁ ବିରାଜଇ ।
ସ୍ଫଟିକ ପାହାଚ ତହିଁ ଉଜ୍ଜ୍ୱଳ ଦିଶଇ ॥
ନାନା ଜାତି ପକ୍ଷୀମାନେ ଆନନ୍ଦେ କ୍ରୀଡ଼ନ୍ତି ।
ମତ୍ସ୍ୟମାନେ ଏଣେତେଣେ ପହଁରି ବୁଲନ୍ତି ॥
ଅତ୍ୟନ୍ତ ବିଶୁଦ୍ଧ ଜଳ ଦେଖି ଅଶ୍ୱବର ।
ପିଇବା ପାଇଁକି ଗଲା ପୋଖରୀ ଭିତର ॥
ସେହି ପୋଖରୀରେ ଅଶ୍ୱ ସ୍ନାହାନ କରନ୍ତେ ।
ଘୋଟକୀ ରୂପ ଧଇଲା ତହୁଁ ଅକସ୍ମାତେ ॥
ଦେଖିଣ ଏସନ ରୀତି ସର୍ବ ଯୋଦ୍ଧାଗଣ ।
ଆଶ୍ଚର୍ଯ୍ୟ ହୋଇଣ ସର୍ବେ ବୋଲନ୍ତି ବଚନ ॥
ଦେଖ ଏ ବିଚିତ୍ର କଥା କି କାରଣ ଏହି ।
ଏ ଜଳ ଛୁଅନ୍ତେ ପୁଂସ ଗଲା ନାରୀ ହୋଇ ॥
ଏପରି ଗମନ୍ତେ ଅଶ୍ୱ ତହିଁ କିଛି ଦୂର ।
ଦେଖିଲା ପୁଷ୍କରିଣୀଏ ଅଛି ମନୋହର ॥
ସେ ପୋଖରୀ ଶୋଭା ଆହା କି କହିବି ମୁହିଁ ।
ଯାହାର ଦର୍ଶନେ ଚିତ୍ତ ଉଲ୍ଲସି ଉଠଇ ॥
ତହିଁରେ ସ୍ନାନ କରନ୍ତେ ଯଜ୍ଞ ଅଶ୍ୱବର ।
ହେଲା ପ୍ରକାଣ୍ଡ ଶାର୍ଦ୍ଦୂଳ ରୂପ ଭୟଙ୍କର ॥
ଦେଖିଣ ଏସନ ରୀତି ସର୍ବ ସୈନ୍ୟଗଣ ।
ପରସ୍ପରେ କୁହାକୁହି ହେଲେ ସେହି କ୍ଷଣ ॥
ଦେଖ କି ଅଦ୍ଭୁତ କଥା ଏଠାରେ ଘଟିଲା ।
ଅଶ୍ୱ ଅଶ୍ୱୀ ହେଲା ପୁଣି ଶାର୍ଦ୍ଦୂଳ ସେ ହେଲା ॥
ଶୁଣି ଏ ବଚନ ଜନ୍ମେଜୟ ନୃପବର ।
ବୋଲନ୍ତି ଭୋ ମୁନି କହ କାରଣ ଏହାର ॥
ଘୋଟକ ଘୋଟକୀ ହେଲା ପୁଣି ସେ ଶାର୍ଦ୍ଦୂଳ
କିପରି ଲଭିଲା ପୁଣି ନିଜ କଳେବର ॥

ଏ ସବୁ କାରଣ ମୋତେ କହ ତପସିଆଁ ।
ତବ ମୁଖୁଁ ଶୁଣି ମୋର ସନ୍ଦେହ ଯିବଇଁ ॥
ଭକତ ଦେଖି ଜୈମିନି ବୋଲନ୍ତି ବଚନ ।
ଶୁଣ ସ୍ଥିରମନେ ରାଜା ଏହାର କାରଣ ॥
ପୂର୍ବକାଳେ ଏଠି ତପ କଲେ ଉମା ସତୀ ।
ପାଇବାକୁ ପତିପଦେ ଦେବ ପଶୁପତି ॥
ଉଗ୍ରତପ କଲେ ଦେବୀ ପାଇବାକୁ ହର ।
ଚିରକାଳ ରହିବେ ଶିବଙ୍କ ସଙ୍ଗର ॥
ଅହେ ସ୍ୱାମୀ ଜଗତ-ସ୍ୱାମୀ ମୋର ଦୁଃଖ ନାଶ
ଏପୁରୀର ପୂର୍ଣ୍ଣକର ମୋର ଅଭିଳାଷ ॥
ମଦନ ଜ୍ୱଳନେ ଦେବୀ ଅରାଧନ୍ତି ହର ।
ପତ୍ର ପବନକୁ ଦେବୀ କରନ୍ତି ଆହାର ॥
ଏ ସମୟେ ଏକ ଦୈତ୍ୟ ପ୍ରବେଶ ସେଠାରେ ।
ତପ ଭଗ୍ନ କରିବାକୁ ହୃଦରେ ବିଗୃରେ ॥
ପ୍ରବେଶ ହୋଇଲା ଯହିଁ ଛନ୍ତି ନାରୀମଣି ।
ମଧୁର ସ୍ୱରେ ରାକ୍ଷସ କହଇ ଦମ୍ଭିନୀ ॥
ହେ ପୂର୍ଣ୍ଣଚନ୍ଦ୍ର ଆନନା କାହିଁ ପାଇଁ ତପ ।
କରଣ ଗୋ ଘୋର କଷ୍ଟ ଲଭୁଛୁ ଅମାପ ॥
କି ଅଭାବ ବାଳାମଣି କହ ମୋ ଆଗର ।
ତୋ ରୂପ ଦର୍ଶନେ ହୃଦ ଦହେ କାମଶର ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଯେତେ ଜୀବଗଣ ।
ଭୋଗ ବିଳାସ ସମସ୍ତେ କରନ୍ତି ଶନ୍ତନ ॥
ଅକଳଙ୍କ ରୂପ ତୋର ତପ୍ତ ହେମକାନ୍ତି ।
ଦେଖିଲା ବେଳୁଛି ତୋର କିଣା ହେଲି ସତୀ
ଅହେ ବରାଙ୍ଗନେ ହେନ ଦମ୍ଭିନ ମୋହର ।
ପତି ପଦରେ ବରଣ କର ସମାଦର ॥
ଏସନ ପାପ ଦୂଷିତ ବାଣୀ ଶୁଣି ସତୀ ।
ମନମଧ୍ୟେ ହୋଇଲେ ସେ ଅତି କ୍ରୋଧମତି ॥
ଘୂର୍ଣ୍ଣି ଘୂର୍ଣ୍ଣି ଘୂର ଚକ୍ଷୁ ହୋଇଲା ଅରୁଣ ।
କୋପେ ଆରମ୍ଭିଲେ ଶିବା ଏସନ ବଚନ ॥
ଅରେ ରେ ପାମିଷ୍ଠ ଏ କୁବାସନା ତୋହର ।
ନିଶ୍ଚୟ କରିବ ଆଜ ତୋତେ ନାରଖାର ॥
ପାଞ୍ଜଣ ହୋଇ ଭୂମିରେ ପଡ଼ିବୁ ଏକ୍ଷଣି ।
ଅନ୍ୟଥା କେବେ ନୋହିବ ମୋହର ଏ ବାଣୀ
କହୁଁ କହୁଁ ଭସ୍ମ ହୋଇଗଲା ସେ ରାକ୍ଷସ ।
ବନଦେବୀ ପ୍ରତି ଦେବୀ ବୋଲନ୍ତି ଏ ଭାଷ ।
ଆଜୁ ଏହି ପୁଷ୍କରଣୀ ନୀରେ ଯେଉଁଜନ ।
ସ୍ନାନ କରିବା ନିମନ୍ତେ କରିବେ ଗମନ ॥

ସତ୍ୟ ସତ୍ୟ ସେ ପୁରୁଷ ରମଣୀ ହୋଇବ ।
ମୋହର ଏ ବାକ୍ୟ ଯୁଗେ ଯୁଗେ ରହିଥିବ ॥
ଦେବୀ ଅଭିଶାପ ଯୋଗୁଁ ଯକ୍ଷ ଅଷ୍ଟବର ।
ଧରିଲା ସେ ନାରୀରୂପ ଶୁଣ ନୃପବର ॥
ଯେ ନିମିତ୍ତ ବ୍ୟାଘ୍ର ଦେହ ଧରେ ଅଷ୍ଟବର ।
ତହିଁରେ କାରଣ କହୁଅଛି ତୋ ଆଗର ॥
ପୂର୍ବେ ଅକୃତବ୍ରଣ ନାମେ ବିପ୍ର ବର ।
ଥିଲା ଏକ ଖ୍ୟାତଶୀଳ ଧାର୍ମିକ ପ୍ରବର ॥
ତୀର୍ଥ ଯାତ୍ରା ଆଶେ ଅତି ବ୍ୟାକୁଳ ତା ମନ ।
ବିଷୟ ରସରେ ସେହି ନୁହଇ ମଗନ ॥
ପୂର୍ବ ଯୋଗେ ଶୁଭ କ୍ଷଣେ ସେହି ବିପ୍ରମଣି ।
ବାହାର ହୋଇଲା ସ୍ମରୁ ଶଙ୍ଖ ଚକ୍ର ପାଣି ॥
ଗୋଟି ଗୋଟି କରି ତୀର୍ଥ ବୁଲି ସନ୍ତ୍ରିବାର ।
ପ୍ରବେଶ ହୋଇଲା ଆସି ଏ ସ୍ଥାନେ ଅବର ॥
ଦେଖିଲା ଏ ମନୋହର ଦିବ୍ୟସରୋବର ।
ଆନନ୍ଦ ଚିତ୍ତରେ ସ୍ନାନ ପାଇଁ ଦ୍ୱିଜବର ॥
ତପଶୌଚ ବିଧିମତେ ସମାପତି କରି ।
ପୋଖରୀ ମଧ୍ୟେ ପ୍ରବେଶ କଲା ବେଗ କରି ॥
ଜଳମଧ୍ୟୁ ଏକ ଜୀବ ଆସିଣ ସତ୍ୱରେ ।
ଧରିଲା ବ୍ରାହ୍ମଣ ପାଦ ଜଳର ମଧ୍ୟରେ ॥
କି ଅଦ୍ଭୁତ କଥା ମୁହିଁ ଦେଖିଲି ଏ ସ୍ଥାନେ ।
କେଉଁ ଦୁଷ୍ଟପ୍ରାଣୀ ମୋର ପାଦଧରି ଟାଣେ ॥
ମାୟାରୂପୀ ଦାନବ କି ଅବା ଜଳଚରେ ।
ଅଥବା ରାକ୍ଷସ କେହି ଜଳର ମଧ୍ୟରେ ॥
ମୋତେ କରି ହିଂସା କରି ଏତେ କଷ୍ଟକରେ
ନିଶ୍ଚୟ କିଛି କୌଶଳ ଅଛଇ ଏଥିରେ ॥
କୋପେ ଜର ଜର ହୋଇ ବ୍ରାହ୍ମଣ ତକ୍ଷଣେ
ଅଭିଶାପ ଦେଲା ସେହି ପୁଷ୍କରଣୀ ସ୍ଥାନେ ॥
ଅହେ ପୁଷ୍କରଣୀ ତୋର ଜଳେ ଆଜଠାରୁ ।
ସ୍ନାନ ଯେ କରିବ ବ୍ୟାଘ୍ର ହେଲେବ ଧରୁ ॥
ମୋହର ଏ ବାଣୀ ମିଥ୍ୟା ନୁହଇ ନିଶ୍ଚୟ ।
ଏଥିରେ ତିଳେ ମାତ୍ରକ ନ ରହୁ ସନ୍ଦେହ ॥
ଏତେ ବୋଲି ଦ୍ୱିଜବର ନିଜ ଭଙ୍ଗିବଳେ ।
ଜଳଜନ୍ତୁକୁ ଛଡ଼ାଇ ଉଠିଲାକ କୂଳେ ॥
ସେହିଦିନୁ ଏ ପୋଖରୀ ଅଭିଶାପ ପାଇ ।
ଦୂଷିତ ହୋଇଲା କେହି ସ୍ନାନ ନ କରଇ

ଯାହା ମୋତେ ନରମଣି ଥିଲ ପଚାରଣ ।
ସେ ସର୍ବ ବୃତ୍ତାନ୍ତ ମୁଁ କହିଲ ବୁଝାଇଣ ॥
ଶୁଣ ଏବେ ଅନ୍ୟ କଥା ଅହେ ଦଣ୍ଡଧର ।
ଅଶ୍ୱ ଯହୁଁ ବ୍ୟାଘ୍ର ମୂର୍ତ୍ତି ଧଇଲା ସେଠାର ॥
ଯେତେବେଳେ ଧନଞ୍ଜୟ ନିଜ ଅଶ୍ୱବର ।
ଦେଖିଲେ ଧରଣି ଅଛି ଶାର୍ଦ୍ଦୂଳ ଆକାର ॥
ବିସ୍ମୁ ବିରସ ମନେ ସୁଭଦ୍ରା ରମଣ ।
ମନମଧ୍ୟେ ଶ୍ରୀହରିଙ୍କି କରିଣ ସ୍ମରଣ ॥
ଧାଇଁ ଯାଇଁ ବୀର ପରଶିଲେ ଅଙ୍ଗ ତାର ।
ବେଗେ ଘୁଞ୍ଚିଗଲା ତାର ବ୍ୟାଘ୍ର କଳେବର ॥
ବ୍ୟାଘ୍ର କଳେବର ତେଜି ଅଶ୍ୱ ଇଚ୍ଛାମତେ ।
ଦେଶ ଦେଶାନ୍ତରେ ଭ୍ରମେ ଅନାହତ ଗତେ ।
କେତେ ନଦ କେତେ ନଦୀ କେତେ ତରୁବର
ଦେଖି ଦେଖି ସୁଖେ ଯାଏ ଯଜ୍ଞ ଅଶ୍ୱବର ॥
ଚଳେ ମାତ୍ର ନାହିଁ ଇସ୍ତ ଗମେ ବାୟୁ ସମ ।
ପଛେ ଧାଇଁଛନ୍ତି ବୀରେ ଭୀମ ପରାକ୍ରମ ॥
ତାହାର ଶକତ ଅଜ୍ଞ ରୋଧିବ ତା ପଥ ।
ଧରିଲେ ତାହାକୁ ହେବ ସମୂଳେ ନିପାତ ॥
ଅକାରଣେ ବଳୀ ସଙ୍ଗେ କେ ବାଦ ଆଚରେ
ଜାଣୁ ଜାଣୁ ବିପଦ ଡକେ ଅଲିଙ୍ଗନ କରେ ॥
ଯେଉଁମାନେ ବୀରବର ଭୀମ ପରାକ୍ରମ ।
ସହି କି ପାରିବେ ସେହି ଅନ୍ୟର ବିକ୍ରମ ॥
ବୀରମଦେ ମତ୍ତ ଯେଣୁ ଛନ୍ତି ଦିବାନିଶି ।
ନ ମାରନ୍ତି କାହାକୁ ସେ ଅସୀମ ସାହସୀ ॥
ଯେତେବେଳ ଯାଏ ଅଛି ଶରୀରରେ ବଳ ।
ଅଧୀନ ହୋଇଲେ ବୀର ଗମେ ନର୍କଘୋର
ଦେଖ ଯେସନେ ତରୁଗଣେ ଲଭି ପଣ କର ।
ଶୁଷ୍କହେଲେ ସୁଦ୍ଧା ନ ହୁଡନ୍ତି ସେ ନିକର ॥
ପୁଣି ଦେଖ ସୂର୍ଯ୍ୟରଶ୍ମି ସମସ୍ତ ଋତୁରେ ।
ନିଜ ତେଜକୁ କି ଛାଡ଼ି ପାରେ ସହଜରେ ॥
ମେଘ ଯେବେ ବଳେ ଆସି ଢାଙ୍କଇ ତାହାକୁ
ତଥାପି ଫୁଟିଣ ଉଠେ ଦଶେ ପୃଥିବୀକୁ ॥
ସେହିପରି ବୀରମାନଙ୍କର ବୀର ଦର୍ପ ।
ସହଜେ କି ଘୁଞ୍ଚିଯାଏ ଶୁଣ ଅହେ ନୃପ ॥
କ୍ରମେ କ୍ରମେ ଗମି ଅଶ୍ୱ ରମଣୀଙ୍କ ପୁରେ ।
ସହସା ପ୍ରବେଶ ହେଲା ଯାଇଣ ସେଠାରେ ॥

ବିରଞ୍ଚି ରଚିତ ଅଛି ସେହି ମହାପୁରୀ ।
ସେ ଦେଶରେ ବାସ କରନ୍ତି ସର୍ବ ନାରୀ ॥
ପୁରୁଷ ନାହାନ୍ତି ନାହିଁ ପୁରୁଷ ବସତି ;
କେବଳ ଅବଳାଗଣ ଛନ୍ତି ଦିବାରାତି ॥
ହାଟବାଟ ବେପାରାଦି ସର୍ବ କାରବାର ।
ରମଣୀମାନେ ସେଠାରେ କରନ୍ତି ସକଳ ॥
ରାଜା ପାତ୍ର ମନ୍ତ୍ରୀ ସୈନ୍ୟ ସେନାପତି ଆଦି ।
ସମସ୍ତେ ରମଣୀ ତହିଁ ସମ୍ପାଦନ୍ତି ବିଧି ॥
ଅବଲାଗଣ ଯେ ସେହି ପୁରେ ରହିଛନ୍ତି ।
ପୁରୁଷ ପରାଏ ସବୁ କାର୍ଯ୍ୟ ଯେ କରନ୍ତି ॥
ଶାନ୍ତି ରକ୍ଷା ରାଜ୍ୟ ରକ୍ଷା ବିଚାରର କାର୍ଯ୍ୟ ।
ଯୁଦ୍ଧ କାର୍ଯ୍ୟ କରନ୍ତି ସେ ନାରୀ ସମାଜ ॥
ନାନାବିଧ ବୀର ଧର୍ମ ରଣେ ଆୟୋଜନ ।
କରନ୍ତି ଅବଳାମାନେ ସବଳା ହୋଇଣ ॥
ପୁରାଣେ ବର୍ଣ୍ଣିତ ଅଛି ଦେବୀ ଆଦ୍ୟାଶକ୍ତି ।
ମହାଦୈତ୍ୟ ସଂହାର କରନ୍ତି ଭଗବତୀ ॥
ପ୍ରଚଣ୍ଡ ଚଣ୍ଡିକା ରୂପ ବିକଟାଳ ମୂର୍ତ୍ତି ।
ଘୋରରଣେ ଶତ୍ରୁଗଣେ ନିର୍ଦ୍ଦୟେ ନାଶନ୍ତି ॥
ସଇନ ସାମନ୍ତ ସହ ଶୁମ୍ଭ ନିଶୁମ୍ଭଙ୍କୁ ।
ସହସା ନାଶିଲେ ଦେବୀ ମହିଷାସୁରଙ୍କୁ ॥
କିନ୍ତୁ ଏହି ଦେଶଯାକ ସର୍ବେ ନାରୀଗଣ ।
ଶାସନ କରନ୍ତି ରାଜ୍ୟ ଅପୂର୍ବ ଭାବେଣ ॥
ନାରୀୟେ ଧରନ୍ତି ରଥି ବୀରଙ୍କ ଶକତି ।
ବୀର ପରକାରେ କରେ ଥାଏ ଶେଲ କାତି ॥
ନାଗ ନର ସୁରଲୋକେ ନ ଡରନ୍ତି କାକୁ ।
ନାରୀୟେ ନିର୍ଭୟେ ରକ୍ଷା କରନ୍ତି ଦେଶକୁ ॥
ଦେବ ନର ରକ୍ଷ ଯକ୍ଷ ପିଶାଚାଦି କରି ।
ନାମ ଶୁଣି ଭୟେ ସର୍ବେ ଯାନ୍ତି ଅପସରି ॥
ସମସ୍ତ ସଂସାର ମଧ୍ୟେ ଯେତେ ବୀରବର ।
ରମଣୀ ସଙ୍ଗତେ ଯୁଦ୍ଧ ଅପମାନ ତାର ॥
ନାରୀମାନଙ୍କ ମଧ୍ୟରେ ପ୍ରମିଳା ସୁନ୍ଦରୀ ।
ସର୍ବାଧିକାରିଣୀ ସେହି ଅଛି ରାଜେଶ୍ୱରୀ ॥
ସେ ପ୍ରମିଳା ଦେବ କୃପାବଳେ ଶକ୍ତିଶାଳୀ ।
ସଂସାର ମଧ୍ୟେ ନ ଗଣେ କାହାକୁ ସେ ବଳୀ ;
ଯମଦେବ ସମ ତେଜ ସର୍ବ ନାରୀଗଣ ।
ଅସୀମ ସାହାସ ସର୍ବେ ସମରେ ନିପୁଣ ॥

ସଂଗ୍ରାମ ସମୟେ ତାଙ୍କ ବିକଟ ଗର୍ଜନ ।
ଧନୁଘୋଷ ବାହାନାଦେ କମ୍ପଇ ଭୁବନ ॥
ହର୍ଯ୍ୟକ୍ଷ ବିକ୍ରମ ଧରି ଅବଳା ନିଚୟ ।
ପ୍ରୀତିରେ ସନ୍ତୋଷ ଅତି ବିଶେଷ ବିସ୍ମୟ ॥
ସାଧୁଜନ ସହ ପ୍ରୀତି ସରଳ ଅନ୍ତରେ ।
ଶରଣାଗତେ ପାଳନ୍ତି ଅତି ଯତନରେ ॥
ଯେ ଦର୍ପ ଦେଖାଏ ତାଙ୍କୁ ଦୟାମାୟା ନାହିଁ ।
ବିକଟ ମୂର୍ତ୍ତି ଧରନ୍ତି ଯେହ୍ନେ ମହାମାୟୀ ॥
ଏ ସମୟେ ଅଶ୍ୱବରେ ଦେଖି ନାରୀଗଣ ।
ଧରିବା ଆଶେ କରନ୍ତି ସହସା ଗମନ ॥
ଅଶ୍ୱକୁ ଦେଖିଣ ନାରୀ ଆନନ୍ଦ ହୋଇଲେ ।
କୃଷ୍ଣପାଦ ଚିନ୍ତି ଦୀନ ମହାଦେବ ବୋଇଲେ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାର କଥା ପ୍ରବନ୍ଧେ ନାମ
ଏକବିଂଶୋଽଧ୍ୟାୟଃ ।

—○—

# ଦ୍ୱାବିଂଶ ଅଧ୍ୟାୟ

ତ୍ୱମେକୋହ୍ୟାସ୍ୟସର୍ବସ୍ୟବିଧାନସ୍ୟ ସ୍ୱୟମ୍ଭୁବଃ
ଅଚିନ୍ତ୍ୟସ୍ୟପ୍ରମେୟସ୍ୟକାର୍ଯ୍ୟତତ୍ତ୍ୱାର୍ଥବିତ୍ପ୍ରଭୋ

## ପ୍ରମିଳାପୁରେ ପାର୍ଥ ପ୍ରବେଶ ବିବାହ

ଏଥୁଅନ୍ତେ କରଯୋଡ଼ି ବୋଲନ୍ତି ରାଜନ ।
ଏ ଆଶ୍ଚର୍ଯ୍ୟ କଥା ମୁନି କୁହ ମୋତେ ପୁଣ ॥
ଦେଶଯାକ ନାରୀମୟ ନାହାନ୍ତି ପୁରୁଷ ।
ଏଥିର କାରଣ ମୋତେ କୁହ ମୁନିଈଶ ॥
ନାରୀମାନେ ଅସ୍ତ୍ରଶସ୍ତ୍ର ବିଦ୍ୟାରେ ନିପୁଣ ।
କପରି ହୋଇଲେ ମୁନି କୁହ ଫିଟାଇଣ ॥
କିବା କେଉଁ ଦେବ ଶାପ କିବା ସ୍ଥାନଗୁଣ ।
ଆଶ୍ଚର୍ଯ୍ୟ ଲାଗଇ ଶୁଣି ଏ ସବୁ ବଚନ ॥
ସୂର୍ଯ୍ୟରଶ୍ମି ତେଜ ଯେହ୍ନେ ଚନ୍ଦ୍ରଙ୍କର ନାଶେ ।
ସକଳ କଲ୍ମଷ ଖଣ୍ଡ କହିଣ ହରଷେ ॥
ରାଜାର ବିନୟ ଭକ୍ତି ଜଇମିନି ଶୁଣି ।
କୋମଳ ମଧୁର ସ୍ୱରେ କହନ୍ତି ସେ ବାଣୀ ॥
ମନସ୍ଥିର କରିଣ ହେ ଶୁଣ ନୃପବର ।
ବୁଝାଇ କହୁଅଛି ମୁହିଁ ସବୁ ସମାଚାର ।
ନାରୀଦେଶେ ଅଶ୍ୱ ଯହୁଁ କରିଲା ଗମନ ।
ପାର୍ଥ ସହ ସେ ସ୍ଥାନକୁ ଗଲେ ସୈନ୍ୟଗଣ ॥
ଦେଖିଣ ଏସନ ରୀତି ଅବଳା ସମୂହ ।
ସଂସେ ରଣ କରିବାକୁ ହୋଇଣ ଉତ୍ସାହ ॥
ଫିଟିଲା କବେରୀ ଖୋଷି ମୁକୁଟ ପିନ୍ଧିଣ ।
ଅସ୍ତ୍ରଶସ୍ତ୍ର ଧରି ବେଗେ ଧାଇଁଲେ ସେ ପୁଣ ॥
ଭ୍ରୂଭଙ୍ଗେ ମୋହି ପାରନ୍ତି ସମସ୍ତ ଜଗତ ।
ସେମାନଙ୍କ ସଙ୍ଗେ ରଣେ ହେବ କେ ଅଗତ
ପୁରୁଷର ବେଶ ଧରି ବୀର ଗର୍ବଭରେ ।
ମାରମାର ଶବ୍ଦେ କମ୍ପାଇଲେ ସେ ସତ୍ୱରେ ॥
ନେତ୍ରବାଣେ ପୁରୁଷଙ୍କୁ ଜିଣିବା ଆଶାରେ ।
ଲଜ୍ଜା ତେଜି ସୀମନ୍ତିନୀ ଗମନ୍ତି ସତ୍ୱରେ ॥
ଅଶ୍ୱ ଦେଖି ନାରୀଗଣ ଅତି ହର୍ଷଭରେ ।
ଅଶ୍ୱକୁ ଧରିଣ ଲେଖା ଦେଖି ଭାଲେ ତାରେ
ଲେଖା ଦେଖି ଯଜ୍ଞ ଅଶ୍ୱ ଧରିନେଲେ ସେହୁ
ପ୍ରମିଳା ପାଶେ ପ୍ରବେଶ ହୋଇଲେକ ଯାଇଁ ॥
ଶୁଣ ଶୁଣ ସୁନ୍ଦରୀ ଗୋ ଆମ୍ଭ ନିବେଦନ ।
ଯୁଧିଷ୍ଠିର ନାମେ ରାଜା ହସ୍ତିନା ଭୁବନ ॥
ଅଶ୍ୱମେଧ ଯଜ୍ଞ କରୁଛନ୍ତି ସେ ରାଜନ ।
ତାଙ୍କ ଯଜ୍ଞ ଅଶ୍ୱ ଆସି ମିଳିଲା ଏ ସ୍ଥାନ ॥
ଯୁଧିଷ୍ଠିଙ୍କ ସାନଭାଇ ନାମ ତା ଅର୍ଜ୍ଜୁନ ।
ସୈନ୍ୟସହ ଯଜ୍ଞ ଅଶ୍ୱ କରେ ସେ ରକ୍ଷଣ ।
ଦିନ ରାତି ନିଦ୍ରା ତେଜି କରେ ଧନୁ ଧରି ।
ଅଶ୍ୱରକ୍ଷା କରନ୍ତି ସେ ଅତି ଯତ୍ନ କରି ॥
ଦେଖ ଅଶ୍ୱଶିରେ ଲେଖା ହୋଇଛି ପତର ।
ବୀର ହୋଇ କେ ସହିବ ବ୍ରହ୍ମାଣ୍ଡ ମଧ୍ୟର ॥
ତେଣୁ ଏ ଅଶ୍ୱକୁ ଧରି ଆଣିଲୁ ପାଶକୁ ।
କି ବିଗ୍ରହ କରି ଆଜ୍ଞା ଦିଅ ଗୋ ଆମ୍ଭଙ୍କୁ ॥
ନାରୀଙ୍କ ବଚନ ଶୁଣି ପ୍ରମିଳା କହଇ ।
ଯୁଦ୍ଧ କରିବାକୁ ହୀନବଳ ମୁଁ ନୁହଇ ॥
ଯାହା କରିଅଛ ତାହା ଉଚିତ ଅଟଇ ।
ବୀର ହୋଇ ଏ ବଚନ ସହୁ ହେବ ନାହିଁ ॥
ଆଗୋ ବରାଙ୍ଗନେ ତୁମ୍ଭେ ଯେବେ ଅଶ୍ୱବର
ନ ଆଣି ଥାଆନ୍ତ ଲଜ୍ଜା ହୋଇଥାନ୍ତା ମୋର
ମୋହର ଗରବ ସବୁ ହୋଇଥାନ୍ତା ଚୂନା ।
ଆବର ଦୁର୍ନାମ ଲୋକେ କରନ୍ତେ ରଟନା ॥
ଅନ୍ୟ ଲୋକେ ଶୁଣିଣ ମୋ ସ୍ୱବକୁ ଲଙ୍ଘନ୍ତେ
ଉଦେ ହେବା ଭାଗ୍ୟରେ ପାଆନ୍ତା କାହିଁତେ ॥

କି ଦେଇ ସୁଝିବି ତୁମ୍ଭ ଏହି ଉପକାର ।
ତ୍ରିପୁରରେ ଯଶ ମୋତେ ଦେଲ ନାରୀବର ॥
ଜାଣେ ମୁହିଁ ତ୍ରିଲୋକର ପତି ନାରାୟଣ ।
ତାହାଙ୍କର ସଖା ସଖି ଅଟନ୍ତି ଅର୍ଜୁନ ॥
ନର ନାରାୟଣ ରୂପେ ମର୍ତ୍ତ୍ୟେ ଅବତାର ।
ତାଙ୍କ ଦର୍ଶନେ ସଫଳ ହେବ ଜନ୍ମ ମୋର ॥
ଭାଗ୍ୟବଳେ ଏତେଦିନେ ଏ ଅମୂଲ୍ୟ ନିଧି ।
ମୋ ପୁରେ ପ୍ରବେଶ ହେଲେ ଘଟାଇଲେ ବିଧି
ଏହା କହି ଜଣେ ଜଣେ ପାଶକୁ ଡାକିଣ ।
ଆଶ୍ୱାସ ବଚନ କହି କଲା ଆଲିଙ୍ଗନ ॥
ଏଣେ ପାର୍ଥ ଅନୁଚର ଅଶ୍ୱ ନ ଦେଖିଣ ।
ପଶିଲେ ସେ ବେଗେ ଅନ୍ତଃପୁରର ମଧ୍ୟେଣ ॥
ଅନ୍ତଃପୁର ଶୋଭା ଦେଖି ଆଶ୍ଚର୍ଯ୍ୟ ହୋଇଲେ
ଉଚ୍ଚୈଃଶ୍ରବା ସମ ଅଶ୍ୱ ସେଠାରେ ଦେଖିଲେ ॥
କାହିଁ ଗଜେ ବଜ୍ରସମ ଗର୍ଜନ କରନ୍ତି ।
କାହିଁ ରଥମାନ ଦେଖାଯାଏ ପନ୍ତି ପନ୍ତି ॥
ଅତି ଉଚ୍ଚ ଶିଖେ ତହିଁ ପତାକା ଉଡ଼ାଇ ॥
ଘଣ୍ଟା ଘଣ୍ଟି ସ୍ୱନେ କର୍ଣ୍ଣ ବଧିର ହୁଅଇ ॥
ପୁରଦ୍ୱାର ଦେଖାଯାଏ ଅତି ମନୋହର ।
ଦୁର୍ଗକୁ ଦେଖିଲେ କମ୍ପେ ଶତ୍ରୁର ଅନ୍ତର ॥
ଜଗିଛନ୍ତି ଯନ୍ତ୍ରୀଗଣ ପ୍ରାୟ ନାରୀ ସୈନ୍ୟ ।
ମାଛିଟିଏ ପଶିବାକୁ ନାହିଁ ତହିଁ ସ୍ଥାନ ॥
ଏ ସର୍ବ ଦେଖିଣ ବୀରେ ନଗରର ରୀତି ।
ଅର୍ଜୁନଙ୍କ ଆଗେ ସବ ବୃତ୍ତାନ୍ତ କହନ୍ତି ॥
ସମସ୍ତ ଶୁଣିଣ ପାର୍ଥ ହୋଇଲେ ଚିନ୍ତାଭର ।
କି ବିପଦ ହେବ ଏଥି ନୁହଇ ଗୋଚର ॥
କେତେପୁର ବୁଲିଛି ମୁଁ ନ ଦେଖେ ଏପର ॥
କାହିଁ ନାରୀ ଯୁଦ୍ଧ କରେ ଶୁଣିଲେହେଁ ନ ଶୁଣି
ପୁରୁଷେ ପୁରୁଷେ ଯୁଦ୍ଧ ଏ ଶାସ୍ତ୍ର ବଚନ ।
ହାରୁ ଅବା ଜିଣୁ ହୁଏ ଗୌରବ ବର୍ଦ୍ଧନ ॥
ମାତ୍ର ନାରୀସହ ଯୁଦ୍ଧ ବଡ଼ ଅସମ୍ଭବ ।
ଜିଣିଲେ ସଂସାରେ କେବେ ନୋହିବ ଗୌରବ ।
ହାରିଲେ ମରଣୁ ଲଜ ମରିବାଟା ସାର ।
କିପାଁ ମୋର ହୃଦ ଥରେ ଅହେ ଚକ୍ରଧର ॥
ତନୟର ଜଣିପାରେ ହେ ସାରଙ୍ଗପାଣି ।
ତୁମ୍ଭ ମାୟା ଅସୀମ କି ବୁଝିବ ଫାଲ୍‌ଗୁନି ॥

ସୁର ନର ବୀରଗଣେ ମୁହିଁ ତୁଚ୍ଛ ମଣେ ।
ନିବାତ କବଚ ଶିବ ସହ ଜିଣେ ରଣେ ॥
ଇଚ୍ଛାକଲେ ରଣ ପାଇଁ ଶତ୍ରୁ ମୋର ଡରେ ।
ଚଞ୍ଚଳ ହୁଅଇ ମନ କି ଅଛି ଭାଗ୍ୟରେ ॥
ଯେତେ ଯେତେ ସ୍ଥାନେ ମୁହିଁ କରଛି ଭ୍ରମଣ
କାହିଁ ମୋର ଭୟ ଜାତ ନ ହୁଅଇ ପୁଣ ॥
କି କରିବି ବୁଦ୍ଧି ମୋତେ ନ ଦିଶେ କେଶବ
ଯାହା ତୁମ୍ଭ ଇଚ୍ଛା ତାହା କରନ୍ତୁ ମାଧବ ॥
ଜଣାଯାଏ ଯଜ୍ଞ ନାଶ ଅର୍ଥେ ଜନାର୍ଦ୍ଦନ ।
କରୁଛ ଏପରି ଲୀଳା ହେ ନନ୍ଦନନ୍ଦନ ॥
ଏସନ ଭାବିଣ ପାର୍ଥ ଡାକି ସୈନ୍ୟଗଣେ ।
ଏ ବିପଦେ ବୁଦ୍ଧି ମୋତେ ଦିଅ ବୀରମାନେ
ଏ ବିପଦେ ତୁମ୍ଭେମାନେ ଭରସା ମୋହର ।
ମଉନେ ରହିଛ କିପାଁ ନ ଦିଅ ଉତ୍ତର ॥
ହେ ପ୍ରଦ୍ୟୁମ୍ନ ଅନୁଶାଲ୍ୱ ବୃଷକେତୁ ବୀର ।
ପଗୃରେ ମୁଁ କି କରିବି କୁହ ମୋ ଆଗର ॥
ମିଳି କାର୍ଯ୍ୟ କରେ ସର୍ବେ ସ୍ଥିରମତି ହୋଇ ।
ଏତେ କାଳରେ ବିପତ୍ତି ଘଟାଇଛି ବିହି ॥
ଲଭିବି ମୁଁ ପରାଜୟ ଛାର ନାରୀହାତେ ।
ଜୀବନେ କି କାର୍ଯ୍ୟ ମୋର ଆଉ ଏ ଜଗତେ
ଅର୍ଜୁନଙ୍କ ବାଣୀ ଶୁଣି ପ୍ରଦ୍ୟୁମ୍ନାଦି ବୀରେ ।
କହନ୍ତି ବଚନ ତାଙ୍କୁ ନିର୍ଭୟ ଅନ୍ତରେ ॥
ତ୍ରିଭୁବନ ଜିଣିପାରେ ଯାହାଙ୍କର ଶର ।
ଛାର ନାରୀମାନେ ତହିଁ କେତେକ ମାତର ॥
କାହିଁକି ଚିନ୍ତା କରୁଛ ଅହେ ବୀର ବର ।
ଆଜ୍ଞା ଦିଅ ଆମ୍ଭେମାନେ କରିବୁ ସମର ॥
ପ୍ରଦ୍ୟୁମ୍ନ ବୋଲଇ ମୋର ଭାଗେ ସର୍ବନାରୀ ॥
କାମାନଳେ ସେମାନଙ୍କୁ ଦେବି ଦଗ୍ଧ କରି
ପୁଷ୍ପଧନୁ ଶାୟକ କି ମୋ କରରେ ନାହିଁ ।
ନାରୀ ମାନ ପାଇଁ ଚିନ୍ତା ବାସବ-ତନୟ ॥
ଛାର ନାରୀ ଜାତି ଏଥେ ପ୍ରୀତି ଉକାରୁଣୀ ।
ପ୍ରୀତରେ ମୋହିବ ସମସ୍ତଙ୍କୁ ବୀରମଣି ॥
ଶୁଣ ବୀରେ ମୁହିଁ କହୁଣଲେ ନାରୀଗଣେ ।
ପ୍ରୀତରସେ ପଦାନତ କରିବ ଏକ୍ଷଣେ ॥
ପ୍ରଦ୍ୟୁମ୍ନର ଏ ବଚନ ଅନୁଶାଲ୍ୱ ଶୁଣି ।
ନାକେ ହାତ ଦେଇ ବୀର ହଂ ବୋଇଲ ବାଣୀ।

ସିଂହ ଯେସନ୍ତେ ପର ପଶୁଦଳ ନାଶ କରେ ।
ତେଣୁ ତା ଗୌରବ ହୁଏ ଖ୍ୟାତ ଏ ସଂସାରେ
ହୀନବଳ ବଳିଆ ଯେପରି କୌଶଳରେ ।
ପର ମୁଖୁଁ ଖାଦ୍ୟ ନିଏ ଅତି ସହଜରେ ॥
ସେପରି କାର୍ଯ୍ୟରେ କେଭେ ନ ହୁଅଇ ଯଶ ।
ବରଂ ନିନ୍ଦା ଘୋଷନ୍ତି ତାହାର ଏ ତ୍ରିଦଶ ॥
ତେବେ ଯାହା ହେଉ ଧନୁର୍ବାଣ କରେ ଧରି ।
ନାଶ କରିବି ହେଉନ୍ତୁ ପଛକେ ସେ ନାରୀ ॥
କାଣ୍ଡ ଫୁଲଶର ଧରି କରି ହରବର ।
ସେହି ବିକ୍ରମ କି ଶୋହେ ବୀର ସମାଜର ॥
ଧାର୍ମିକ ଜନ ବୋଲିବେ ଏହି କଥା ଶୁଣି ।
ହିଂସା ଚୌର୍ଯ୍ୟ ବ୍ରତେ କି ହେ ଯଶ ବୀରମଣି ।
ତସ୍କରେ ବୋଲିବେ ମନ ଖୋଲି ନିଜଖ୍ୟାତି
ଦୋଷ ସେ ବହିବେ ଧର୍ମଶୀଳ ଲୋକ ପ୍ରତି ॥
ସକଳେ ନିଜ କର୍ମକୁ ପ୍ରଶଂସା କରନ୍ତି ।
ଜ୍ଞାନୀମାନେ ନିଜର ସମ୍ମାନ ନ କରନ୍ତି ॥
ଅନୁଶାଲ୍ୱ ବାଣୀ ଶୁଣି ବୃଷକେତୁ ଭାଷେ ।
ଧନ୍ୟ ଅନୁଶାଲ୍ୱ ତୁମ୍ଭେ ସାଜ ରଣ ଆଶେ ॥
ଏହା କହି ବୀରମଦେ କ୍ରୋଧଭର ହୋଇ ।
ସୈନ୍ୟ ସହିତେ ଚଳରେ ସିଂହରଡ଼ି ଦେଇ ॥
ମୁହୁର୍ମୁହୁ ଗରଜନ ଯେହ୍ନେ ସିଂହରଡ଼ି ।
ପ୍ରଳୟ ସମ ସଇନେ ବାହାରିଲେ ମାଡ଼ି ॥
ଧନୁ ଧରି କେଉଁବୀର ଚଢ଼ି ଅଶ୍ୱବର ।
ଶେଲ ଶୂଳ ଧରି ବେଗେ ଗମିଲେ ସତ୍ୱର ॥
ସୈନ୍ୟଙ୍କ ଶବଦେ ଯମ ଆସନ କମ୍ପିଲା ।
ପାଦରେଣୁରେ ଆକାଶ ଅଦୃଶ୍ୟ ହୋଇଲା ॥
ଧନୁ ଟଙ୍କାରେ ପୂରିଲା ପୃଥିବୀ ଆକାଶ ।
ଘନ ଘନ ବାଦ୍ୟନାଦେ କମ୍ପେ ଦଶଦିଶ ॥
ଭୟଙ୍କର ରଣବାଦ୍ୟ ଶୁଣି ନାରୀଗଣ ।
ଉଗ୍ରଚଣ୍ଡୀ ବେଶ କଲେ ରଣକୁ ଗମନ ॥
ସ୍ତ୍ରୀମାନଙ୍କ କୋପମୂର୍ତ୍ତି ପୁଣି ବୀରନାଦ ।
ଶୁଣିକରି ଚରାଚର ଗଣିଲେ ପ୍ରମାଦ ॥
ସେହିକାଳେ ସାଗରର ଜଳ ଆନ୍ଦୋଳିତ ।
ତ୍ରିଶୃଙ୍ଗ ଉପୁଡ଼ିଲା ସର୍ବେ ହେଲେ ତ୍ରସ୍ତ ॥
ଦେବାସୁର ରଣ ସମ ସେ ରଣ ଦେଖିଣ ।
ଅକାଳେ ପ୍ରଳୟ ହେବ ସର୍ବେ ଭୀତ ମନ ॥

ଦେବମାନେ ଯକ୍ଷରକ୍ଷ ଗନ୍ଧର୍ବ କିନ୍ନରେ ।
ଭାବିଲେ ଦୂରରେ ଅଛୁ କିସ ହୋଇପାରେ ॥
ଗୃହୁଁ ଗୃହୁଁ ଧରା ଯେ ହୋଇଲା ଥରହର ।
ମେରୁ ସହିତେ କମ୍ପିଣ ଉଠିଲା ଶଇଳ ॥
ବାସୁକୀ ଶିର କମ୍ପିଲା ଗିରି ଉପୁଡ଼ିଲା ।
ଭୟେ ପଳାଇଲେ ସର୍ବେ ସିନ୍ଧୁ ଉଚ୍ଛୁଳିଲା ॥
କମ୍ପେ ବସୁମତୀ ସୈନ୍ୟ କଲେ ସିଂହ ରଡ଼ି ।
ଭାବିଲେ ନିରାଶେ କାହିଁ ପଳାଇବୁ ସର୍ବ ॥
ଏହିପରି ବୀରମଦେ ବେନିଥାଟ ଭେଟ ।
ନାରୀଙ୍କ ମୋହନ ମୂର୍ତ୍ତି ଦେଖି କୁନ୍ତୀ ସୁତ ।
ଭାବିଲେ ଗୃହିଣୀ ଏହାଙ୍କର ଯଉବନ ॥
ମୋହେ ଯୁଝି ନ ପାରିବେ ମୋର ସୈନ୍ୟଗଣ
ଏସନ ଭାବି ଅର୍ଜୁନ ଦେବଦତ୍ତ ଧରି ॥
ଫୁଙ୍କିଲେ ଆନନ୍ଦେ ଚକ୍ରଧରଙ୍କୁ ସୁମରି ।
ଦେବଦତ୍ତ ଶବ୍ଦେ ସର୍ବେ ଅଥୟ ହୋଇଲେ
ସାରଥି ଅର୍ଜୁନ ରଥ ସମ୍ମୁଖେ ରଖିଲେ ॥
ଅର୍ଜୁନଙ୍କ ରୂପ ଦେଖି ସର୍ବ ନାରୀଗଣ ।
ବୀରଦର୍ପ ଘୁଞ୍ଚିଗଲା ଘାରିଲା ମଦନ ॥
ସ୍ତମ୍ଭୀଭୂତ ହୋଇ ସର୍ବେ ଅନାଇ ରହିଲେ ।
ପତି ରୂପେ ପାଇବାକୁ ଶତେ ଚିନ୍ତାକଲେ ॥
ଅଙ୍ଗ ହୋଇଲା ଶିଥିଳ ଥରିଲା ଅଧର ।
ମନ୍ଦ କଟାକ୍ଷେ ଦେଖନ୍ତି ଅର୍ଜୁନ ଶରୀର ॥
ନାରୀଙ୍କ ଦଶା ଦେଖିଣ ପାର୍ଥ ବୀରବର ।
ବୋଇଲେ ଗୋ ବରାଙ୍ଗନେ ଶୁଣ ମୋର ଗୀର
କି ଫଳ ଲଭିବ ତୁମ୍ଭେ ମୋହ ସଙ୍ଗେ ରଣେ
ବୃଥା ବାଦ ନ ଭିଅ ଶୁଣ ନାରୀଗଣେ ॥
ରଣ କରିବାର ଏଥେଁ ମୁହିଁ ଆସି ନାହିଁ ।
ଆସିଅଛି ଯୁଧିଷ୍ଠି ଯଜ୍ଞ ଅଶ୍ୱ ରକ୍ଷା ପାଇଁ ॥
ବୁଲି ବୁଲି ବହୁ ଦେଶେ ଏଥେ ମୁଁ ପ୍ରବେଶ ।
କାହିଁ ପାଇଁ ରଣେ ସଜ ହୁଅ ହେ ନାରୀଶ ॥
ସତ୍ୟ ସତ୍ୟ ବାଣୀ ମୋ ପ୍ରମିଳା ଦେଖାପାଇଁ
ସୁଖ୍ୟାତି ଶୁଣିଣ ଏଥେ ଆସିଅଛି ମୁହିଁ ।
କେତେକାଳୁ ତାକୁ ଦେଖିବାକୁ ମନେକରି ।
ଏ ସ୍ଥାନେ ଆସିଲି ଶୁଣ ଆଗୋ ସର୍ବନାରୀ ॥
ଅର୍ଜୁନ ବଚନ ଶୁଣି ଦେଖି ରୂପଠାଣି ।
କି ଯୁଦ୍ଧ କରିବେ କାମେ ପୀଡ଼ିତ ରମଣୀ ॥

ମନ ମଧ୍ୟେ ପତିରୂପେ କରଣ ବରଣ ।
ଲଜ୍ଜା ଅବନତ ମୁଖେ ବୋଲନ୍ତି ବଚନ ॥
କାମେ ମତ୍ତ ହୋଇ ରୂପ ନିରୀକ୍ଷଣ କରି ।
ଚିତ୍ର ଭୁଲା ପରାଏ ହେଲେ ସର୍ବନାରୀ ॥
ନାରୀମାନଙ୍କର ଶୋଭା କି ବର୍ଣ୍ଣିବି ମୁହିଁ ।
ମୁଖଚନ୍ଦ୍ର ସୁନିର୍ମଳ ସିଂହମଧ୍ୟା ସେହି ॥
ଉଚ୍ଚ କୁଚ ଭାବେ ଗତି ମନ୍ଥର ଗମନ ।
ନୀଳମେଘ ସମାନରେ ଦିଶେ କେଶମାନ ॥
ମୁନି ଋଷି ଦେଖି ହେବେ କାମରେ ଆତୁର
ଧନ୍ୟ ପାର୍ଥ ତୁମ୍ଭ ରୂପେ ସମସ୍ତେ ଅସ୍ଥିର ॥
ଏପରି ସୁନ୍ଦରୀ ସର୍ବେ ପାର୍ଥ ରୂପ ଚାହିଁ ।
ଯେସନ୍ତେ ଗୋପେ ବ୍ରଜାଙ୍ଗନା ହୋଇଥିଲେ ବାଇ
ପତି ପୁତ୍ରେ ତେଜି ଯଥା କୃଷ୍ଣ ପ୍ରେମେ ମତ୍ତ ।
ଅର୍ଜୁନେ ଦେଖି ଅବଳା ହେଲେ ସେହିମତ ॥
ଧୈର୍ଯ୍ୟ ବୀର ଦର୍ପ କେତେଣେ ଉଭାଇଣ ଗଲା ।
ଧନୁଶର ଅସ୍ତ୍ର ଶସ୍ତ୍ର ହସ୍ତରୁ ଖସିଲା ॥
କାମାତୁରେ ଚଉଦିଗେ ଚାହିଁ ଶୁଭ୍ରକେଶୀ ।
ଭାଳନ୍ତି କପରି ଆମ୍ଭେ ହୋଇବୁ ଏହା ଦାସୀ ॥
କାମେ ଜର ଜର ନାରୀ ପ୍ରମିଳାକୁ ଯାଇ ।
ବୋଲନ୍ତି ହୋଇଣ ସର୍ବେ କାମାତୁରେ ବାଇ
ଅହା ସେ ଲାବଣ୍ୟ ମୂର୍ତ୍ତି କର ଦରଶନ ।
କେଉଁ ଅବଳା ଧରିବ ଅବା ତହିଁ ପ୍ରାଣ ॥
ଯେତେ ଚେଷ୍ଟା କଲୁ ଆମ୍ଭେ ଯୁଝିବା ନିମିତ୍ତ
ରୂପ ଦେଖି ଧରି ନ ପାରିଲୁ ଅସ୍ତ୍ର ଶସ୍ତ୍ର ॥
କି କୋମଳ ବାଣୀ ତାଙ୍କ ଅହା କି ସୁନ୍ଦର ।
କହିଲେ ବଦାରେ ବୁଲୁ ଏ ମାର ପାମର ॥
ଯା ରୂପ ଦେଖିଣ ମନେ ଆନନ୍ଦ ଜନ୍ମଇ ।
ଆଲିଙ୍ଗନେ କେତେ ସୁଖ ମିଳିବ ବା ନାହିଁ ॥
ଜନମ ସାର୍ଥକ ଏତେ ଦିନେ ଆମ୍ଭ ହେଲା ।
ଅପୂର୍ବ ଲାବଣ୍ୟ ମୂର୍ତ୍ତି ବିହି ଦେଖାଇଲା ॥
କହୁଁ କହୁଁ ବାଳାଗଣେ କାମୋନ୍ମତ୍ତ ହୋଇ
ପାଗଳିନୀ ପରି ସର୍ବେ ହେଲେ ଚାହିଁ ଚାହିଁ ॥
ସପତ୍ନୀ ଭାବେ ସର୍ବେ ଭାବନ୍ତି ଅନ୍ତର ।
କପରି କରିବ ଆଗେ ତା ସଙ୍ଗେ ବିହାର ॥
ତା ମୋହନ ମୂରତି ସଙ୍ଗତେ ନିଜେ କାମ ।
ଶୋଭିବେ ନୋହିବ ସେହୁ କେବେ ସରିସମ

ଅଜଯାଏ ଦେଖି ନାହିଁ କାହାର ନୟନ ।
ତା ସମ ସୁବାହୁଶାଳ ସୁଷମା ସମ୍ପନ୍ନ ॥
ବଳମ୍ବରେ କିବା ଆଉ ଅଛୁ ଦରକାର ।
ଆସ ଗୋ ପ୍ରିୟେ ପ୍ରମିଳେ ସଙ୍ଗତେ ଆମ୍ଭର ॥
ଭୁବନ ମୋହନ ଛବି ପାର୍ଥ ରୂପ ଚାହିଁ ॥
ନୟନେ ନିରେଖି ଦାସୀ ଯୋଗ୍ୟ ହେବୁ ତୁହି
ତାର ଦର୍ଶନରେ ମନୋବାଞ୍ଛା ପୂରି ଯିବ ।
ଚକ୍ଷୁ ଏତେଦିନେ ତୋର ସଫଳ ହୋଇବ ।
ଅଉ ଯେତେକାଳ ପିଣ୍ଡେ ଥିବ ତୋ ଜୀବନ
ରୂପର ଗରବ ସଖି ନ ବହିବୁ ମନ ॥
ମଣିବୁ ତୁ ରାଜ୍ୟ ଦାସ ଦାସୀ ସବୁ ଛାର ।
ଦେଖିଲା ମାତ୍ରକେ ବିକା ହେବୁ ତା ପାଦର ॥
ଏସନ ଶୁଣି ପ୍ରମିଳା ସଖିଙ୍କ ସହିତେ ।
ପାର୍ଥଙ୍କ ପାଶେ ପ୍ରବେଶ ହୋଇଲେ ତୁରିତେ
ମଧ୍ୟମ ପାଣ୍ଡବେ ଦେଖି ନାରୀ ଶିରୋମଣି ।
ମଣିହରା ଫଣି ପ୍ରାୟେ କାମେ ହେଲେ ପୁଣି ॥
ଅହା କି ଲାବଣ୍ୟ ମୂର୍ତ୍ତି ବିଧି କେତେ କାଳେ
ବସି ଗଢ଼ିଅଛି ନାରୀ ଜୀବନ ନେବାରେ ॥
ତ୍ରିଜଗତରେ ଯେତେ ଅଛି ସକଳ ସୁନ୍ଦର ।
ସବୁ ନେଇ ଗଢ଼ିଅଛି ଏହାଙ୍କ କଳେବର ॥
ଅନେକ ଦେଶ ବୁଲିଛି କେତେ ବନଗିରି ।
କାହିଁ ନ ଦେଖିଛି ମୋହନ ମୂର୍ତ୍ତି ଏପରି ॥
ଏହାଙ୍କ ଚନ୍ଦ୍ରମା ମୁଖ କରି ଦରଶନ ।
ଯେତେ ସତୀ ହେଲେ ଭୁଲିଯିବ ସହଜେଣ
ଯେବେ ମୋର ପୂର୍ବଜନ୍ମ ସୁକୃତ ଥିବ ।
କୋଳେ ଧରି ସୁଖେ ଦିନ ନେବି କରି ଧବ
ଏସନ ଭାବି ପ୍ରମିଳା ସୁବର୍ଣ୍ଣ ଥାଳରେ ।
ପାଦ୍ୟ ଅର୍ଘ୍ୟ ଘେନି ବେଗେ କରିଲେ ସଧୀରେ
ଏକ ପଦେ ଅନ୍ୟ ସଖୀ ଠିଆ ହୋଇକରି ।
ପ୍ରଣମିଲେ ପାର୍ଥ କଞ୍ଜ ଚରଣକୁ ଧରି ॥
ବିନୟ ବାକ୍ୟରେ ପାର୍ଥେ ତୋଷି ନାରୀଗଣ
ସୁରମ୍ୟ ଆସନେ ନେଇ ବସାଇଲେ ପୁଣ ॥
ନାରୀମାନଙ୍କ ଦେଖିଣ ଏସନ ଭକତି ।
ଅତ୍ୟନ୍ତ ଆନନ୍ଦ ହେଲେ ସୁଭଦ୍ରାର ପତି ॥
ସୀମନ୍ତିନୀମାନଙ୍କର ମାନ ରକ୍ଷା ପାଇଁ ।
ରସିକ ପାର୍ଥ ବସିଲେ ଅସ୍ଥାନରେ ଯାଇଁ ॥

ଜୈମିନୀ ଭାରତ

ପୃ ୧୩୧ ସ୍ନା

ପ୍ରମିଳା ଓ ଅର୍ଜୁନ



ପାର୍ଥ ରୂପ ଦେଖି ବାଳୀ କାମେ ହୋଇ ବାଇ ।

ସଖି ସହ ପାଶେ ଯାଇ ବିନୟେ କହଇ ॥

ମଧ୍ୟେ କେଶର ସମାନ ବିଜେ ଫାଲ୍‌ଗୁନ ।
ପଦ୍ମଦଳ ସମ ତାଙ୍କ ଚୌଦିଗେ କାମିନୀ ॥
ଏମନ୍ତ ଅପୂର୍ବ ଛବି ବିଶ୍ୱ ବିମୋହନ ।
କେବେ କେଉଁଜନ କରିଅଛି ବିଲୋକନ ॥
ତେଜ ନିନ୍ଦାକରେ ଯେ କୋଟିଏ ସୂର୍ଯ୍ୟଜ୍ୟୋତି
ମଧ୍ୟେ ବସେ ବୀର ଗୋପେଁ ଯେହ୍ନେ ସୁଧାପତି
ପାର୍ଥେ ବସାଇ ନାରୀଏ ସମସ୍ତ ବସିଲେ ।
ତହୁଁ କୋମଳେ ଅର୍ଜୁନ ବଚନ କହିଲେ ॥



ପ୍ରମିଳା ସହିତ ଅର୍ଜୁନର କଥୋପକଥନ ।

ଧୀରେ ଧୀରେ ପଚାରନ୍ତି ବାସବ କୁମର ।
ମୋ ସନ୍ଦେହ ଦୂରକର ଅଗୋ ସମାବର ॥
ନାନା ଦେଶେ ଭ୍ରମିଅଛି ମୁହିଁ ବହୁଦିନ ।
ଏପରି ଘଟଣା ଦେଖି ନାହିଁ ମୋ ନୟନ ॥
ସମସ୍ତ ସଂସାରେ ଦେଖେ ନାରୀ ଓ ପୁରୁଷ ।
ମାତ୍ର ଏଠାରେ ଦେଖିଲି ଅଦ୍ଭୁତ ରହସ୍ୟ ॥
ନାରୀ ବିନା ପୁରୁଷର ଗତି ଅଛି କାହିଁ ।
ପୁରୁଷ ବ୍ୟତୀତ ନାରୀ ରହି ନ ପାରଇ ॥
ବିଧାତାର ସୃଷ୍ଟି ଏହି ନାରୀ ପୁଂସ ଦୁଇ ।
ନ ହେଲେ ସୃଷ୍ଟି କିପରି ଥାନ୍ତା ଆଜି ରହି ॥
ଜାଣ ଗୋ ସଂସାର ଚଳେ ଦୁଇଶକ୍ତି ଘେନି ।
ଯାର ଇଚ୍ଛାବଳେ ସୃଷ୍ଟି ହୋଇଛି ସଙ୍ଗିନୀ ॥
ମାତ୍ର ଏଥେ ବିପରୀତ ଦେଖେ ଗୋ ସଙ୍ଗାତ
ପ୍ରକୃତ କାରଣ କହି ତୋଷ ମୋର ଚିତ୍ତ ॥
କିପାଁ ପୁଂସ ଅଧିକାର ଏ ସ୍ଥାନରେ ନାହିଁ ।
ସଂଶୟ ମୋଚନ କରି କୁହ ପ୍ରାଣସଖି ॥
କୁହ ସେ ବିଷୟ ଅହେ ଅବଳା ନିକର ।
ମନରୁ ସଂଶୟ ମୋ'ର ବେଗେ ଦୂରକର ॥
ଅର୍ଜୁନଙ୍କ ବାଣୀ ଶୁଣି ଅତ୍ୟନ୍ତ ହରଷେ ।
ଚତୁରୀ ପ୍ରମିଳା ଏହା ଭାଷଇ ଉଲ୍ଲାସେ ॥
କେ ଅଛି ବିଶ୍ୱରେ ମୋର ସମ ଭାଗ୍ୟବତୀ ।
ପାଇଅଛି କୋଳେ ଯେଣୁ ସୁଭଦ୍ରାର ପତି ॥
ପୂର୍ବ ପୁଣ୍ୟ ଆଜି ମୋର ହେଲ ଫଳବାନ ।
ତୁମ୍ଭ ଦର୍ଶନେ ମୋହର ସଫଳ ଜୀବନ ॥
ଦେଖି ତୁମ୍ଭ ଚନ୍ଦ୍ର ମୁଖ ବିହି କରୁଣାରେ ।
ଲେଶମାତ୍ର ଦୁଃଖ ରହୁନାହିଁ ମୋ ଅନ୍ତରେ ॥
ଘୁଞ୍ଚାଇଛନ୍ତି ମାନସ କାଳିମା ମା କାଳୀ ।
ସଦା କରନ୍ତି କରୁଣା ମୋତେ ବନମାଳୀ ॥

ନୋହିଲେ କି ଘରେ ବସି ଏ ଅମୂଲ୍ୟ ନିଧି ।
ପାଇ ଜୀବନ ସାର୍ଥକ ହୁଅନ୍ତା ଅବଧି ॥
ଦୁଃଖ ସହି ଧର୍ମେ ରତ ହୋଇଥିଲେ ପ୍ରାଣୀ ।
ସ୍ୱର୍ଗ ସୁଖ ପଗପଡ ହୁଅଇ ଯେ ପୁଣି ॥
ଜାଣିଲି ମୁଁ ମୋର ମନ୍ଦ ଦଶା ଶେଷହେଲା ।
ଯେଣୁ ପାଇଲି ତୁମ୍ଭଙ୍କୁ କର ଗଳାମାଳା ॥
କେତେଦିନ ହେଲା ନାଥ ମୋ ବାମ ନୟନ ।
ମୁହୁର୍ମୁହୁ ଥରୁଅଛି ଦେଖିଣ ଏସନ ॥
ଭାବିଥିଲି କି ସୌଭାଗ୍ୟ ଘଟିବ କର୍ମରେ ।
ଘଟିଲା ତୁମ୍ଭଙ୍କୁ ବସାଇଲି ମୁଁ କୋଳରେ ॥
ଶୁଣ ଶୁଣ ପ୍ରାଣନାଥ ମୋର ନିବେଦନ ।
ଏ ଦେଶ ବୃତ୍ତାନ୍ତ ମୁହିଁ କରୁଅଛି ବଖାଣ ॥
କାହିଁ ପାଇଁ ଏହି ଦେଶଯାକ ନାରୀମୟ ।
ନାରୀଏ ବହନ୍ତି କର୍ମ କାର ଭାବଚୟ ॥
ମାୟା ସଂସାରଟା ଯାକ କର୍ମଫଳ ଭୋଗୀ ।
ମୁହୂର୍ତ୍ତେକ ପାଇଁ କେହି ନୁହେ ତାହା ତ୍ୟାଗୀ ॥
ନୋହିଲେ କି ଆକାଶରେ କୁମୁଦନୀ ଧନ ।
ଧରନ୍ତି ରାହୁର ଗ୍ରାସେ ହୁଅନ୍ତେ ମଳିନ ॥
ଥାଉ ... ନ କଥା ନିଜେ ପରଂବ୍ରହ୍ମ ହର ।
କର୍ମଫଳେ ଶୟନ କରନ୍ତି ଧର୍ପୋପର ॥
ଯୋଗୀଶ୍ରେଷ୍ଠ ଜିତେନ୍ଦ୍ରିୟ ଦେବଦେବ ହର ।
ସେହିବେ କର୍ମଫଳେ ତାଙ୍କ ବାସ ଶ୍ମଶାନର ॥
ତେଣୁ କର୍ମଫଳ ମାନବର ଚିର ସଙ୍ଗୀ ।
ପର ଚେଷ୍ଟାକଲେ ତାହା କେବେନୁହେଁ ଭଙ୍ଗୀ ॥
କାରମର ଫଳେ ଅମ୍ଭେମାନେ ନାରୀ ହୋଇ ।
ରହିଅଛୁ ବନ୍ଧୁଦନ୍ତୁ ବାସବ ତନୟୀ ॥
ଏତେଦିନ ଯାଏ ତାହା ଗୋପନରେ ଥିଲା ।
ଆଜ ଆପଣଙ୍କ ଆଗେ କହୁଛି ସେ ଲୀଳା ॥
ଶୁଣ ଶୁଣ ପ୍ରାଣନାଥ ମନ ସ୍ଥିର କର ।
ଏଥିର କାରଣ ଦାସୀ କହଇ ବିସ୍ତାର ॥
ଇକ୍ଷ୍ୱାକୁ ବଂଶରେ ଜନ୍ମ ଦିଲ୍ଲୀପ ନୃପତି ।
ମୃଗୟା କାରଣେ ସେହି ବଳାଇଣ ମତି ॥
ସଙ୍ଗରେ ଘେନିଣ ସଜା ଅନୁଚରଗଣ ।
ଗଜରଥ ସୈନ୍ୟସହ ଆସିଲେ ସେ ବନ ॥
ତାଙ୍କର ଆଦେଶେ ମୁହିଁ ଏଥେ ଆସିଥିଲି ।
ସର୍ବ ସୈନ୍ୟଗଣ ସଙ୍ଗେ ଥିଲି ଯେ ମୋହର

ଦେଖିଣ ଏଠାରେ ଏକ ନିର୍ଜ୍ଜନ କାନନ ।
ଦେବ ଦେବ ମହାଦେବ ଭ୍ରମିବା କାରଣ ॥
ସଙ୍ଗତେ ଘେନିଣ ହର ଜଗତର ମାତ ।
ଏଠାରେ ପ୍ରବେଶ ହେଲେ ଆସି ବିଶ୍ୱନାଥ ॥
ମନ୍ଦ ମନ୍ଦ ସମୀରଣ ବହେ ଏ ବନରେ ।
ଶୁକ କୋକିଳର ରବ ମନ ମୁଗ୍ଧ କରେ ॥
ଫୁଲମାନଙ୍କ ଗନ୍ଧରେ ଚିତ୍ତ ଆମୋଦଇ ।
ଅଦିନେ ବସନ୍ତ ଏଥି ସଦା ବିରାଜଇ ॥
ଏପର ସୁରମ୍ୟ ସ୍ଥାନ ଦେଖି ତ୍ରିଲୋଚନ ।
ପାର୍ବତୀ ସହିତେ ବସି ଆନନ୍ଦିତ ମନ ॥
ନିଜ ପ୍ରିୟା ପାଶେ ତୋଷେ ରମିଲେ ଶଙ୍କର
ରସ ରଙ୍ଗରେ ମାତିଲେ ହୋଇ ପ୍ରେମାତୁର ॥
ପ୍ରଣୟିନୀ ବିନା ଏଥି କାହାକୁ ନ ଦେଖି ।
ଅପୂର୍ବ ରସେ ଆନନ୍ଦେ ମାତି ହେଲେ ସୁଖୀ ॥
ଲଜ୍ଜା ଆଦି ସବୁ ଏଡ଼ିଦେଲେ ଦେବୀ ହେଲେ
ପ୍ରେମେ ବିହରିଲେ ଶିବ ସଙ୍ଗେ କୁତୁହଳେ ॥
ଏହିକାଳେ ଅକସ୍ମାତେ ମୋହର ରୂପକୁ ।
ଦେଖି ପାର୍ବତୀ ଲଜ୍ଜାରେ ଲଭିଲେ ଦୁଃଖକୁ ।
ପ୍ରଣୟ ଭଙ୍ଗ ଭୟରେ କୋପେ ହୈମବତୀ ।
ଶାପଦେଲେ ମନମଧ୍ୟେ ହୋଇ କୋପମତି ॥
ଯେଣୁ ନିର୍ଜ୍ଜନରେ ଅମ୍ଭେ ବେନି ପରାଣୀଙ୍କି ।
ଲଜ୍ଜାଦେଲ ପ୍ରଣୟରେ ଲଜ୍ଜାକୁ ନ ରଖି ॥
ଅନୁଚରେ ସହ ସର୍ବେ ହୁଅ ନାରୀମୟ ।
ତେଣୁ ନାଥ ଘଟିଲାକି ଏ ଦଶା ନିଶ୍ଚୟ ॥
ସେହି ଦିନଠାରୁ ଅମ୍ଭେ ନିର୍ଜ୍ଜନ ବନରେ ।
ଭ୍ରମୁଅଛୁ ସର୍ବେ ନାଥ ନାରୀ କଳେବରେ ॥
ଆସିବାକୁ ଏହି ସ୍ଥାନେ ଭୀତ ନରଗଣ ।
ସ୍ଥିର ନର କଥା କିବା ନିଜେ ଜନ୍ତୁଗଣ ॥
ଯକ୍ଷ ରକ୍ଷ କିବା ନର କିନ୍ନର ଅସୁରେ ।
ଏଠାକୁ ଆସିବେ ସାଧ୍ୟ ଅଛଇ କାହାରେ ॥
ପାର୍ବତୀଙ୍କ ଶାପବଳେ ଭୟ ଏଥେ ଆସିବ ।
ମୋର ପରତାପେ ତାଙ୍କ ପ୍ରାଣ କି ରହିବ ॥
ଯାଏ ଅଛି ତିନି ଭୁବନରେ ମୋର ସଙ୍ଗେ ।
ଲଭିବ ଯଶ ହେ ଧୀରେ ମାତି ରଣରଙ୍ଗେ ॥
ଆଜି ଆନକଥା ସ୍ୱୟଂ ଦେବେ ମୋର ଉତ୍ତରେ
ଗଣନ୍ତି ବିପଦ ନ ଆସନ୍ତି ଏ ବନରେ ॥

ହେ ପ୍ରାଣନାଥ ଦେଖୁଛ ଯେତେ ନାରୀଜନ ।
ଏମାନଙ୍କ ପରତାପେ ଭୀତ ଜନ୍ତୁଗଣ ॥
ଯେତେବେଳେ ଯୁଦ୍ଧପାଇଁ ହେବେ ସୁଶୋଭିତ
ତାଙ୍କର ବିକ୍ରମେ ତିନିପୁର ହେବେ ଭୀତ ॥
ମୋ କଥାରେ ସାକ୍ଷାତ ପ୍ରମାଣ ଦେଖ ବୀର ।
ଯେତେବେଳେ ପ୍ରବେଶିଲେ ଏଠେଁ ଅଶ୍ୱବର
କାହା ଅଶ୍ୱ କପାଁ ଏଥେ କରୁଛ ନ ବିଗ୍ରହ ।
ଅବହେଳେ ତାକୁ ବାନ୍ଧି ରଖିଛନ୍ତି ନାରୀ ॥
ଦମ୍ଭବଳେ ବାନ୍ଧି ରଖିଛନ୍ତି ନାରୀମାନେ ।
ତୁମ୍ଭ ପରାକ୍ରମ ପାଇଁ ଭୟ ନାହିଁ ମନେ ॥
ମାତ୍ର ତୁମ୍ଭର ଶ୍ରୀମୁଖ ଦେଖି ନାରୀଗଣ ।
କାମେ ବୁଡ଼ି ଦାସୀହେବା ପାଇଁ କଲେମନ ॥
ମନମଧ୍ୟେ ପତିରୂପେ ବରିଣ ତୁମ୍ଭଙ୍କୁ ।
ପ୍ରାଣ ବିକ ଦେଇଅଛୁ ଦେଖି ଶ୍ରୀମୁଖକୁ ॥
ତେଣୁ ବଳାଙ୍ଗୀ ସବୁ ନାହିଁ ଯେ ଅମ୍ଭର ।
କାମାନଳେ ପଡ଼ି ଅସ୍ତ୍ର ଧରି ନୁହେ କର ॥
ଏ ଦାସୀ ବିନତି ନାଥ କର ହେ ଗ୍ରହଣ ।
ହୃଦେ ଭିଡ଼ି ଆଲିଙ୍ଗିଣ ରଖ ଅମ୍ଭ ପ୍ରାଣ ॥
ମୋତେ ଯେବେ ନାଥ ନିରାଶ କରିବ ତୁମ୍ଭେ
ନାରୀହତ୍ୟା ଦୋଷ ନେବ ପ୍ରାଣଦେବୁ ଅମ୍ଭେ
କରୁଣା ସାଗର ନନ୍ଦ ଦୁଲ୍ଲାଳ ସୁହୃଦ ।
ବହୁଦିନୁ ଦାସୀ ଲକ୍ଷ୍ୟଅଛୁ ପଦେ ହୃଦ ॥
ସତତ ବିନୟ ନାଥ ଚରଣେ ଏତିକି ।
ଦାସୀରୂପେ ଘେନ ପାର୍ଥ ଏ ଅଭାଗିନୀକି ॥
ପତ୍ନୀଯୋଗ୍ୟା ନୁହେ ଯେବେ ସୁଭଦ୍ରା ରମଣ ।
ଦାସୀଙ୍କର ପଦ ସେବା ପାଇଁ ଦିଅ ସ୍ଥାନ ॥
ଦେଖିଲୁ ବେଳରୁ ମାର କରଇ ଦହନ ।
ଆଲିଙ୍ଗନ କରି ନାଥ ଦିଅ ଜୀବଦାନ ॥
ଏସନ କହି ପ୍ରମିଳା ଧରିଣ ଚରଣ ।
ପ୍ରେମୋଲ୍ଲାସେ ପାର୍ଥ ମୁଖେ ଦେଲାକ ଚୁମ୍ବନ ॥
ପ୍ରମିଳାକୁ କୋଳ କରି ପାର୍ଥ ବାରବର ।
କୋମଳ ବଚନେ କହିଲେ ସେ ଗମ୍ଭୀର
ଶୁଣ ପ୍ରାଣ ସଙ୍ଗାତୁଣୀ ମୋର ନିବେଦନ ।
କିପାଇଁ ଅଥୟ ଏତେ ଅଗୋ ଜୀବଧନ ॥
ସ୍ନେହେ ବାନ୍ଧି ରଖିଲୁ ଗୋ ମନକୁ ମୋହର
କହିବାକୁ ତୁଣ୍ଡରୁ ମୋ ନ ଆସେ ଉତ୍ତର ॥
ଯେବେ ମୋହର ମଙ୍ଗଳ ଗୃହ ପ୍ରାଣମିତ ।
ସ୍ତ୍ରୀ ରୂପେ ଗ୍ରହଣ କଲି ଥୟକର ଚିତ୍ତ ॥
ଏହନ କହିଣ ପାର୍ଥ ଗନ୍ଧର୍ବ ବିଧାନେ ।
ପ୍ରମିଳା ସହ ବିବାହ ହେଲେ ସେହିସ୍ଥାନେ ॥
ବିଭାହୋଇ ବୋଲେ ବସାଇଣ ବାରବର ।
କହନ୍ତି ଗୋ ସଖି ଶୁଣ ମୋହର ଉତ୍ତର ॥
ବିବାହ ତୁମ୍ଭ ସହିତ ନ ପାରିବ କରି ।
ଅସମୟ ଅଟେ ଏହି ଆଗୋ ଜୀବେଶ୍ୱରୀ ॥
ଭ୍ରାତୃଦେବ ଆଜ୍ଞା ମୁହିଁ ଘେନି ମସ୍ତକରେ ।
ଅଶ୍ୱ ସଙ୍ଗେ ଭ୍ରମୁଅଛୁ ଦେଶ ଦେଶାନ୍ତରେ ।
ଯେତେ ଦିନ ଯାଏ ଭାଇଙ୍କ ଆଦେଶ ମୋର
ସଫଳ ନୋହିଛି ସଚିନ୍ତିତ ମୋ ଅନ୍ତର ॥
ବରଷେ ପର୍ଯ୍ୟନ୍ତ ଅଶ୍ୱ ରକ୍ଷା ମୁଁ କରିବି ।
ତାହାପରେ ହସ୍ତିନା ନଗରେ ଫେରିଯିବି ॥
ପ୍ରତିଜ୍ଞା କରିଛି ଏହି ବରଷ ମଧ୍ୟରେ ।
ନାରୀସଙ୍ଗ ନ କରିବି ମୁହିଁ କେତେବେଳେ ॥
ଯେବେ ସଖି ବାଧେ ତୁମ୍ଭ ସହିତ ବିହାର ।
କରିବି ପ୍ରତିଜ୍ଞା ନଷ୍ଟ ହୋଇବ ମୋହର ॥
ସେ ପାପେ ସଜନି ମୁହିଁ ନର୍କ ଭୋଗିବି ।
ଇହ ପରକାଳେ ଯେତେ ସୁକୃତ ନାଶିବ ॥
ତେଣୁ ରାମାମଣି ବରଷକ ପରେ ମୁହିଁ ।
ତୁମ୍ଭମାନଙ୍କ ସଙ୍ଗେ ବିହାର କରିବଇଁ ॥
କହ ଗୋ ଭାବିନୀ କେଉଁ ଇଚ୍ଛା ଯେ ତୁମ୍ଭର
ଭାବିଣ କହିବ ଯେହ୍ନେ ଦୋଷ ନୁହେ ମୋର
ମାନିକର ପ୍ରାଣପ୍ରିୟେ ମୋହର ବଚନ ।
ସର୍ବେ ଚଳିଯାଅ ଏବେ ମୋହର ଭୁବନ ॥
ପାଳନ କରିଣ ମୁହିଁ ଭାଇଙ୍କ ଆଦେଶ ।
ଯେତେବେଳେ ହସ୍ତିନାରେ ହୋଇବି ପ୍ରବେଶ
ପୂରଣ କରିବି ମୁହିଁ ମାନସ ତୁମ୍ଭର ।
ଏତିକି ପ୍ରାର୍ଥନା ମୋର ଅଗୋ ରାମାବର ।
ଏଥି ପାଇଁ ତିଳେମାତ୍ର ଚିନ୍ତା କର ନାହିଁ ।
ଅଳ୍ପଦିନେ ମିଳନ ହେବ ଗୋ ଚନ୍ଦ୍ରମୁହିଁ ॥
ମଧ୍ୟମ ପାଣ୍ଡବ ମୁଖୁଁ ଶୁଣିଣ ଏ ବାଣୀ ।
ବଙ୍କହାସ୍ୟେ ନମସ୍କାର କରିଣ କାମିନୀ ॥
ବୋଇଲେ ହେ ନାଥ ଯାହା କହିଲ ଉଚିତ ।
ସ୍ୱାମୀ ସୁଖେ ସୁଖୀ ସିନା ନାରୀଙ୍କ ବିହିତ ॥

ଯେହୁ ପତିବ୍ରତା ପୁଣି ସ୍ୱାମୀ ସେବାକାରୀ ।
ସ୍ୱାମୀର ମଙ୍ଗଳ ସେହୁ ଥାଏ ଅନୁସରି ॥
ସ୍ୱାମୀନିନ୍ଦା ସ୍ୱାମୀ ଅମଙ୍ଗଳ ଯେହୁ କରେ ।
ଜନ୍ମ ଜନ୍ମାନ୍ତରେ ସେହି ପଡ଼େ ନରକରେ ॥
ବୀରମଣି ନୁହେଁ ମୁହିଁ କୁଳଟା ରମଣୀ ।
ଯାହା ଆଜ୍ଞା ଦେବ ତା ପାଳିବି ଏହିକ୍ଷଣି ॥
ଏହା କହିଣ ପ୍ରମିଳା ସର୍ବନାରୀ ଘେନି ।
ପାର୍ଥେ ବନ୍ଦାପନା କରି ହୋଇଲେ ମେଳଣି ॥
ହସ୍ତିନାକୁ ଗଲେ ତହୁଁ ମହା ଆନନ୍ଦରେ ।
ଗଜ ଅଶ୍ୱ ରଥ ଧନ ସୈନ୍ୟ ସହିତରେ ॥
ଗୃହୁଁ ଗୃହୁଁ ହେଲେ ଯାଇଁ ହସ୍ତିନା ନଗରେ
ନାନା ଅପରୂପମାନ ଦେଖିଲେ ସେଠାରେ ॥
ହିଂସା ଦ୍ୱେଷ ଈର୍ଷାଆଦି ସେ ସ୍ଥାନରେ ନାହିଁ
ସିଂହାସନେ ଧର୍ମ ବସିଛନ୍ତି ସୁଖେ ତହିଁ ॥
ଦେବ ବିପ୍ର ସେବା ସଦା ସର୍ବେ ସତ୍ୟବନ୍ତ ।
ଇଷ୍ଟମନ୍ତ୍ର ତପ ଜପ ତର୍ପଣେ ସୁରତ ॥
କଉତୁକେ ମନସୁଖେ ଦେବା ବିଭାବରୀ ।
ଭୁଞ୍ଜନ୍ତି ସକଳେ ତହିଁ ସୁଖ ଶାନ୍ତି ଭାରି ॥
ପୁଣ୍ୟ ଧର୍ମ ଶାନ୍ତ ତହିଁ ସଦା ବିଦ୍ୟମାନ ।
ଏହା ଦେଖି ବିସ୍ମୟେ ବୁଡ଼ିଲେ ନାରୀଗଣ ॥
ତଲେ ଶଙ୍କା ନ ବହିଣ କୁନ୍ତୀ ପାଦତଳେ ।
ପ୍ରଣାମ କରିଲେ ହର୍ଷେ ଯାଇଣ ସକଳେ ॥
ଶୁଣ ଗୋ ଜନନୀ ତୁମ୍ଭ ପୁତ୍ର ଅମ୍ଭପୁରେ ।
ପ୍ରବେଶିଣ ବିବାହ ସେ ହୋଇଲେ ଆମ୍ଭରେ
ଆମ୍ଭଙ୍କୁ ଏ ସ୍ଥାନେ ନାଥ ବିଦାୟ କରିଣ ।
ସର୍ବ ସୁଖେ ଅଶ୍ୱସହ ଗଲେ ଅନ୍ୟସ୍ଥାନ ॥
ହୋଇଲୁ ସକଳେ ଦାସୀ ଚରଣେ ତୁମ୍ଭର ।
କି କରିବୁ ଜନନୀ ଗୋ ବେଗେ ଆଜ୍ଞା କର ॥
ଏ ବିଷୟେ ଚିନ୍ତା ତବ ନୁହଇ ଉଚିତ ।
କି କାର୍ଯ୍ୟ କରିବୁ ଆଜ୍ଞା ଦିଅ ଆଗୋ ମାତ ॥

ପ୍ରମିଳା ତୁଣ୍ଡରୁ କୁନ୍ତୀ ଶୁଣି ଏ ବଚନ ।
ହରଷରେ କହିଲେ ସେ ଶୁଣ ବଧୂଗଣ ॥
ଅଶ୍ୱମେଧ ଯଜ୍ଞ ଏଥେଁ ହେବ ନିକଟରେ ।
ସାହାଯ୍ୟ କରିବ ତହିଁ ସକଳେ ସେଥିରେ ॥
ହେଲେ ଯଶ ଅବା ଅପଯଶ ସେ ଯଜ୍ଞରେ ।
ତୁମ୍ଭେ ଅମ୍ଭେ ଦୁହେଁ ଭାଗୀ ହୋଇବୁ ତହିଁରେ
ତେଣୁ ବିଳମ୍ବ ନ କରି କରିଣ ଯତନ ।
ନିଜ କାମ ମଣି ମାଗୋ କରିବ ସାଧନ ॥
ଭାଷିଣ ଏସନ କୁନ୍ତୀ ଅତି ସ୍ନେହ ଭରେ ।
ଆଲିଙ୍ଗିଲେ ଏକ ଏକ ନାରୀ ଘେନି କୋଳେ
ଯୁଧିଷ୍ଠିରଙ୍କର ପାଶେ ହୋଇଲେ ପ୍ରବେଶ ।
ସମସ୍ତ କହିଲେ କୁନ୍ତୀ ଅର୍ଜୁନ ସନ୍ଦେଶ ॥
ବୀରବର ଅର୍ଜୁନଙ୍କ ଦେଶ ଜୟ ବାଣୀ ।
ଶୁଣିଣ ଆନନ୍ଦ ହେଲେ ଧର୍ମ ନୃପମଣି ॥
ତହୁଁ ଦ୍ରୌପଦୀ ସୁଭଦ୍ରା ଶୁଣି ସର୍ବବାଣୀ ।
ଆନନ୍ଦରେ ବେନି ନେତ୍ରୁ ବୁହାଇଲେ ପାଣି ॥
ପ୍ରମିଳାର ପାଶେ ଆସି ପ୍ରବେଶ ହୋଇଲେ ।
ଯଥା ବିଧି ମାନ୍ୟ ଯେ ଯାହାରେ ତହିଁ କଲେ
ପ୍ରମିଳାକୁ ସମାଦରେ ଦ୍ରୌପଦୀ ସୁନ୍ଦରୀ ।
ସର୍ବ ନାରୀସହ ଘେନିଗଲେ ଅନ୍ତଃପୁରୀ ॥
ରହିବାକୁ ଏକ ଦିବ୍ୟ ଘର ତାଙ୍କୁ ଦେଲେ ।
ସମସ୍ତ ନାରୀଙ୍କ ସହ ପ୍ରମିଳା ରହିଲେ ॥
ଏଣେ ଯଜ୍ଞ ଅଶ୍ୱ ଘେନି କରି ଆଗମନ ।
ପଶ୍ଚିମଦିଗକୁ ସେହି କଲେକ ଗମନ ॥
ଏଥଅନ୍ତେ ଯାହା ହେଲା ଶୁଣ ସେ ଚରିତ ।
ଉପାଧ୍ୟାୟ ମହାଦେବ କରଇ ଉକତ ॥
ବ୍ରହ୍ମାନନ୍ଦ ସୁତ ଧୂଳୀଶ୍ୱର ଅଟେ ଘର ।
କଟକ ନଗରୀଠାରୁ ଅଟେ ଅଳ୍ପଦୂର ॥
ନିରଞ୍ଜନ ଗୋସାଇଁ ସଦା ବ୍ରହ୍ମେ ଥାଏ ଅଶ ।
ମନର ବାସନା ପୂର୍ଣ୍ଣକର ଜଗଦୀଶ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତ ରସଲୀଳା ସାର କଥା ପ୍ରବନ୍ଧେ ନାମ ଦ୍ୱାବିଂଶୋଽଧ୍ୟାୟଃ

ପ୍ରଥମ ଖଣ୍ଡ ଜୈମିନି ଭାରତ ସମାପ୍ତ ।

### ସଚିତ୍ର ଓ ବୃହତ୍

# ଜୈମିନି ଭାରତ

## ଦ୍ୱିତୀୟ ଖଣ୍ଡ

### ମଙ୍ଗଳାଚରଣ

ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ॥
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଅଦୌ ଗୃନ୍ତେ ଚ ମଧ୍ୟେ ଚ ହରିଃ ହର୍ବନ୍ତ ଗୀୟତେ ॥
ତଂ ବେଦଶାସ୍ତ୍ର ପରିନିଷ୍ଠିତ ଶୁଦ୍ଧବୁଦ୍ଧିଂ
ଚର୍ମାମ୍ବରଂ ସୁରମୁନୀନ୍ଦ୍ର ନୁତଂ କବୀନ୍ଦ୍ରଂ ॥
କୃଷ୍ଣତ୍ୱିଷଂ କନକପିଙ୍ଗଳ ଜଟାକଲାପଂ
ବ୍ୟାସଂ ନମାମି ଶିରସାତିଲକଂ ମୁନୀନାଂ ॥
ଅଦୌତଦ୍ଭୃତବସ୍ତ୍ର ପାଣ୍ଡୁ ଜନନଂ ଲାକ୍ଷାଗୃହେ ଦହନଂ ।
ଦ୍ୟୂତେ ସ୍ତ୍ରୀ ହରଣଂ ବନେ ବିହରଣଂ ମତ୍ସ୍ୟାଳୟେ ଗୋପନଂ ॥
ଲୀଳା ଗୋହରଣଂ ହୟେନେନ ତରଣଂ ସନ୍ଧିକ୍ରିୟା କୃଷ୍ଣଣଂ ।
ଭୀଷ୍ମ ଦ୍ରୋଣ ଦୁର୍ଯ୍ୟୋଧନାଦ ଦଳନଂ ଏତନ୍ମହାଭାରତଂ ॥
ଭୀଷ୍ମ ଦ୍ରୋଣ ତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା ।
ଶଲ୍ୟ ଗ୍ରାହବତୀ କୃପ ପ୍ରବହଣୀ କର୍ଣ୍ଣେନ ବେଳାକୁଳା ॥
ଅଶ୍ୱତ୍ଥାମବିକର୍ଣ୍ଣ ଘୋରମକରା ଦୁର୍ଯ୍ୟୋଧନା ବର୍ତ୍ତିନୀ ।
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃକୁରୁନଦୀ ଯତ୍ର କର୍ଣ୍ଣଧାରୋ ହରିଃ ॥
ଭାରତ ଶ୍ରୁତମାତ୍ରେଣ ଗଙ୍ଗାସ୍ନାନେନ ମାନବଃ
ବସ୍ତୁ ସ୍ମରଣମାତ୍ରେଣ ସର୍ବ ପାପୈଃ ପ୍ରମୁଚ୍ୟତେ ।

# ତ୍ରୟୋବିଂଶ ଅଧ୍ୟାୟ

ଯଂବ୍ରହ୍ମାବରୁଣେନ୍ଦ୍ରରୁଦ୍ରମରୁତଃ ସ୍ତୁନ୍ୱନ୍ତିଦିବ୍ୟୈଃ
ସ୍ତବୈ, ର୍ବେଦୈଃସାଙ୍ଗପଦକ୍ରମୋପନିଷଦୈ
ର୍ଗାୟନ୍ତି ଯଂ ସାମଗାଃ ॥ ଧ୍ୟାନାବସ୍ଥିତତଦ୍‌ଗତେନ
ମନସା ପଶ୍ୟନ୍ତି ଯଂଯୋଗିନୋ, ଯସ୍ୟାନ୍ତଂନ
ବିଦୁଃସୁରାସୁରଗଣା ଦେବାୟ ତସ୍ମୈ ନମଃ ॥

## ଉଗ୍ର ନାମକ ଅସୁର ରାଜ୍ୟରେ ଅର୍ଜ୍ଜୁନଙ୍କ ସୈନ୍ୟମାନେ ପ୍ରବେଶ ଓ ଉଗ୍ର ରାଜ୍ୟର ବିନାଶ ଏବଂ ଅର୍ଜ୍ଜୁନଦ୍ୱାରା ମୃତ୍ୟୁ

ଏଥୁଅନ୍ତେ ଜନ୍ମେଜୟ ଯୋଡ଼ି ଦେନିକର
ବୋଇଲେ ହେ ମୁନି ମୋତେ କର ପ୍ରତିକାର
ପ୍ରମିଳାକୁ ହସ୍ତିନା ପଠାଇ ପାର୍ଥବୀର ।
ତାହାପରେ ଗଲେ ସେହି କେବଣ ରାଜ୍ୟର ॥
ଏ ସବୁ ଘଟଣା ମୋତେ ଅନୁଗ୍ରହ କର ।
କହନ୍ତୁ ହେ ମୁନିଈଶ ଯେହେ ଯିବ ଡର ॥
ରାଜାଙ୍କ ବଚନ ଶୁଣି ବୋଲନ୍ତି ଜୈମିନି ।
ଏଥୁଅନ୍ତେ ଯାହାହେଲା ଶୁଣ ସେ କାହାଣୀ ॥
ପ୍ରମିଳା ପୁରରୁ ଅଶ୍ୱ ହୋଇଣ ବାହାର ।
କ୍ରମେ କ୍ରମେ ଗଲା ସେହି ପଶ୍ଚିମ ଦିଗର ॥
କେତେ କେତେ ଦେଶ ଗମି ଗଲା ଅଶ୍ୱବର ।
କେତେ ମହାନଦୀ କେତେ କାନନ ପ୍ରାନ୍ତର ॥
ନିରାପଦେ ଚଲେ ତଲେ କାହାକୁ ନ ମାନି ॥
ତା ପଛେ ଅର୍ଜ୍ଜୁନ ଯାନ୍ତି ସଙ୍ଗେ ସୈନ୍ୟଘେନି
କାଳେ ଦୈବର ବଳେ କିଛୁ ଘଟିପାରେ ।
ଏଥିପାଇଁ ସର୍ବେ ଯାନ୍ତି ଅଶ୍ୱ ପଶ୍ଚାତରେ ॥
ବୀରମଦେ ଯାନ୍ତି ବୀର ଅଶ୍ୱ ଅନୁସରି ।
ବାଧାବିଘ୍ନ ପାଇଁ ଶତ୍ରୁ ସୁମରି ମୁରାରି ॥
ଯୁଧିଷ୍ଠିରଙ୍କର ଆଜ୍ଞା ମନେ କରି ସର୍ବେ ।
ତିଳେ ବିଶ୍ରାମ ନ କରି ଚଳିଯାନ୍ତି ବେଗେ ॥
ଶ୍ରୀକୃଷ୍ଣଙ୍କ ବାଣୀ ଜାଗି ସର୍ବେ ଅନ୍ତରରେ ।
ନିର୍ଭୟେ ଗମନ୍ତି ତହୁଁ ଅଶ୍ୱର ସଙ୍ଗରେ ॥
ଆଉରି ସଙ୍ଗେ ଅଛନ୍ତି ଧାନୁକୀ ଅର୍ଜ୍ଜୁନ ।
ବୁଦ୍ଧିବଳ କଉଶଳେ ଯେ ଅଟେ ନିପୁଣ ॥
ଏ ଦେଶ ସେ ଦେଶ ଭ୍ରମି ଯଜ୍ଞ ଅଶ୍ୱବର ।
ଶେଷେ ପ୍ରବେଶିଲା ଏକ ଅସୁର ରାଜ୍ୟର ॥
କେ କରିବ ସେହି ରାଜ୍ୟ ସୀମାକୁ କଳନ ।
ଜଗିଛନ୍ତି ଚତୁପାଶେ ରକ୍ଷ ଅଗଣନ ॥
ଏଡ଼େକ ଦୁର୍ଭେଦ୍ୟ ଗଣ ଦେଖି ମାଡ଼େ ଡର
ଅଦ୍‌ଭୁତ ପ୍ରକାରଣେ ପାଇଛନ୍ତି ବର ॥
ଦିନରାତି ସବୁବେଳେ ହିଂସାରେ ପ୍ରବୀଣ ।
ଜୀବହିଂସା କରିଣ ବୁଲନ୍ତି ସାରାଦିନ ॥
ଅଳପକେ ତାହାଙ୍କର ନ ପୂରଇ ପେଟ ।
ଏଥିପାଇଁ ଶିବ ମନେ ହୁଅଇ ଉଚ୍ଚାଟ ॥
ରହିବ ଧରଣୀ ରକ୍ଷେ ଲଭିବେ ଭୋଜନ ।
ଏହା ଭାବି ଶିବ କଲେ ଏ ଉପାୟ ମାନ ॥
ପ୍ରଭାତେ ଫୁଟିବେ ଫଳ ଫୁଲ ଅଗଣିତ ।
ମଧ୍ୟାହ୍ନେ ମାନବ ରୂପେ ହେବେ ପରିଣତ ॥
ଅଳପ କରିଣ ଶ୍ରମ ଏଣୁ ନିଶାଚରେ ।
ପୋଷନ୍ତି ଉଦର ତହିଁ ହରଷ ଅନ୍ତରେ ॥
ତେଣୁ ଜୀବ ହିଂସା ନୁହେଁ ମାତ୍ର ପେଟ ପୂରେ
ଏଣୁ ହିଂସା ନ କରନ୍ତି କାହାକୁ ଅସୁରେ ॥
ପ୍ରଭାତେ ଯା ଥାଏ ଫୁଲ ହରଙ୍କ କୃପାରେ ।
ମଧ୍ୟାହ୍ନେ ତା ପରିଣତ ହୁଅଇ ମାଂସରେ ॥
ଏକାଧାରେ ଏକେ ଏକ ପଦାର୍ଥ ପାଇଣ ।
କେ ବର୍ଣ୍ଣିବ ଧାତା ସୃଷ୍ଟିକରେ ଯା ସାଧନ ॥
ଧନ୍ୟ ଧନ୍ୟ ବିଧାତାର ବିଚିତ୍ର ଭିଆଣ ।
ଛାର ନର କି ବର୍ଣ୍ଣିବ ତାହାର ବିଧାନ ॥
ସାରା ପୃଥିବୀରେ ଯାହା ଦେଖାଯାଏ ନାହିଁ ।
ଏହିଭଳି ସେ ସ୍ଥାନକୁ ରଖିଲେ କିମ୍ପାଇଁ ॥
କେଉଁଦିଗେ ଗତି କରୁଅଛି ଧାତା ମନ ।
ସେ କର୍ମ ବୁଝିବା ବଡ଼ କଠିନ ବିଧାନ ॥
ଏ ସ୍ଥାନେ ବସନ୍ତି ବହୁବିଧ ନିଶାଚରେ ।
ଜାଣି ଏହା ବହୁ ବୃକ୍ଷ ଜନ୍ମିଛି ଏଠାରେ ॥
ଯେତେ ଜାତି ଗଛ ବହି ଏଥେଁ ଉପୁଜାନ୍ତି ।
ସେ ସକଳ ବୁଝିବାକୁ କାହିଁ ନର ଶକ୍ତି ॥
ଜଗତ ମୋହନ ଛବି ଧରିଛି ଏ ସ୍ଥାନ ।
ଶ୍ୱେତପକ୍ଷୀ ରକ୍ତପୁଷ୍ପେ ପୂର୍ଣ୍ଣ ବୃକ୍ଷମାନ ॥
ଦେଖି ଏ ମୋହନ ଶୋଭା ମନକୁ ଆସଇ ।
ସମସ୍ତ ବିଶ୍ୱର ଶୋଭା ଅଛି ଏଠି ହୋଇ ॥

ଅଥବା ସୃଷ୍ଟି କୌଶଳ ଜଣାଇବା ଆଶେ ।
ସର୍ବ ଶୋଭା ଧାତା ଆଣି ସଞ୍ଚିଅଛୁ ମଝେ ॥
ଯତନରେ ଥାପି ପ୍ରୀତ ପୂର୍ଣ୍ଣ ଦ୍ରବ୍ୟମାନ ।
ଏକସରେ ରଖିଛନ୍ତି ପ୍ରଭୁ ନିରଞ୍ଜନ ॥
ଏମନ୍ତ ପୁରରେ ସୈନ୍ୟ ବେଗେ ପ୍ରବେଶିଣ
ଧୀରେ ଧୀରେ ପରସ୍ପର ଭାଷନ୍ତି ବଚନ ॥
ବୁଲିଲୁ ତିନି ଭୁବନେ ବହୁ ଦୁଃଖ ସହି ।
ନାନାଦି ପ୍ରକାରେ ସ୍ଥାନ ଦର୍ଶନ କଲୁଁ ॥
କିନ୍ତୁ କାହିଁ ନ ଦେଖିଲୁ ନୟନ ଅମ୍ବର ।
ବୃକ୍ଷମାନଙ୍କରେ ଫଳେ ମନୁଷ୍ୟ ଶରୀର ॥
ଶୁଣିଅଛୁ ନିଶାଚରେ ମାୟାବୀ ପ୍ରଧାନ ।
ମାୟାବଳେ ଅବା ହୋଇ ଅଛଇ ଏମାନ ॥
ନାନାଦି ମାୟା ଜାଣନ୍ତି ସମସ୍ତ ଅସୁର ।
ଏ ମାୟା ରଚନା ଦେଖି ଲାଗେ ଚମତ୍କାର ॥
ଶୁଣିଅଛ କେବେ କାହିଁ ବୃକ୍ଷ ଲତାଗଣ ।
ଜନ୍ମାନ୍ତି ନରକୁ ତାହା ପୁଣି ହୁଏ ଅନ ॥
ଦେଖି କରଣ ଏ ସର୍ବ ନୟନେ ସକଳେ ।
ବୁଦ୍ଧି ହଜିଗଲା ବୁଡ଼ିଲୁ ବିସ୍ମୟ ଜଳେ ॥
କ୍ରମେ କ୍ରମେ ଯହୁଁ ପାର୍ଥ ଅନୁଚରଗଣ ।
ହେଲେ ଅଗଭର ଭୟେ ଭୀତ ସର୍ବଜନ ॥
ଦେଖିଲେ ଚୌଦିଗେ ପୂର୍ଣ୍ଣ ସୈନ୍ୟ ଅକଳିତ
ଜଳସ୍ଥଳ ଅନ୍ତରୀକ୍ଷ ଆଦି ପରବତ ॥
କି ଭୀଷଣ ଦିଶୁଅଛି ଆକାର ତାଙ୍କର ।
କେତେ ଭୟଙ୍କର ମୁଖ କରନ୍ତି ହୁଙ୍କାର ॥
ଏପରି ଅବସ୍ଥା ସୈନ୍ୟ କରଣ ଦର୍ଶନ ।
ଭୟେ ପାର୍ଥ ଅନୁଗତ ହେଲେ ସର୍ବସୈନ୍ୟ
ହସ୍ତ ଯୋଡ଼ିଣ ବୋଲନ୍ତି ଶୁଣ କୁନ୍ତୀସୁତ ।
ବୃକ୍ଷଦେଶରେ ଦେଖିଲୁ ଦୃଶ୍ୟ ବିପରୀତ ॥
ଯୁଦ୍ଧ କରି କରି ଗଲା ଆୟୁଷ ଅମ୍ବର ।
ଏପରି ଭୟ ନ ହୁଏ ଆମ୍ଭର ଅନ୍ତର ॥
ସ୍ଥେଷ୍ଟ ବଡ଼ କେତେ ବୀର ସଙ୍ଗେ ରଣ କରି
ଦେଖାଇଅଛୁ ଅନେକ ବୀରତ୍ୱ ଆମ୍ଭର ॥
କିନ୍ତୁ ଆସୁ ଅସୁ ପୁରେ ଲାଗେ ବଡ଼ ଡ଼ର ।
ବଡ଼ ଆଚମ୍ବିତ କଥା ଜାଣ ଅହେ ବୀର ॥
ସୈନ୍ୟଙ୍କ ବଚନ ଶୁଣି ରାଧେୟ ନନ୍ଦନ ।
ଜଳଦ ଗମ୍ଭୀର ସ୍ୱରେ ବୋଲନ୍ତି ବଚନ ॥
କି ଭୟ ହେ ବୀରେ ଆମ୍ଭେ ସଂଗ୍ରାମ ମଧ୍ୟରେ ।
କିମ୍ପା ଭୟ କରୁଅଛ ସମସ୍ତେ ଅନ୍ତରେ ॥
କ୍ଷତ୍ରିୟ ଔରସେ ଜନ୍ମ ଯୁଦ୍ଧେ କଲେ ଭୟ ।
ବଡ଼ ନୀଚ କଥା ଏହା ମରିବାର ଶ୍ରେୟ ॥
ବାନ୍ଧ ହୋ ସାହସ ବୀରେ ଉଠ ଅସ୍ତ୍ର ଘେନି
କିପାଁ ଭୟ କର ଯେଉଁପରି ହୀନ ପ୍ରାଣୀ ॥
ଜାଣ ତ ବୀରଙ୍କ ଧର୍ମ ଜୀବନେ ମରଣେ ।
କର୍ତ୍ତବ୍ୟ କର୍ମକୁ ନ ଛାଡ଼ିବ ଅନୁକ୍ଷଣେ ॥
ଜନମ କ୍ଷତ୍ରିୟ ବଂଶେ ଧରି ବୀର ବ୍ରତ ।
ତେଜୋମୟ ବୀରାନଳ ଜଳିଲା ହୃଦଗତ ॥
ଭୀମବେଗେ ଦାନରୀତି ସର୍ବେ କର ଗତ ।
ଏପରି ବଚନ କହ ଯେହ୍ନେ ନୀଚ ମତ ॥
ଜନ୍ମିଲେ ମରଣ ଧ୍ରୁବ ଏ ତ ସାରକଥା ।
କର୍ତ୍ତବ୍ୟ ଛାଡ଼ିଣ କିମ୍ପା ଲଭିବ ଲଜ୍ଜିତା ॥
ମାରି ଅବା ମରି ତହିଁ ପୌରୁଷ ଅଛଇ ।
ବୀରମାନଙ୍କର ଧର୍ମ ଏହା ଶାସ୍ତ୍ର କହଇ ॥
ନ ବୁଝି ଏ ଗୁଢ଼ ମର୍ମ ତୁମ୍ଭେ ବୀରଗଣେ ।
ବୀରର ସନ୍ତାନ ହୋଇ ଡ଼ର କି କାରଣେ ॥
କି ବାଳକ କିବା ଯୁବା କି ଅବା ସ୍ଥବୀର ।
ଉଣା ଅଧିକେ ସାହସ ପୋଷ ହେ ଅନ୍ତର ॥
ତେବେ କିପାଁ ବୀରେ ତୁମ୍ଭେ ସମ୍ମୁଖ ରଣରେ
ହୀନବଳ ହୁଅ ଏହା ଲଜ୍ଜା ନିଷ୍ଠୟରେ ॥
ସମ୍ମୁଖ ଯୁଦ୍ଧେ ମରନ୍ତେ ବଇକୁଣ୍ଠ ଗତି ।
ଜିଣିଲେ ଗୌରବ ବଢ଼େ ଉଭୟରେ କୀର୍ତ୍ତି
ଦେଖିଅଛ କହେ ବୀରେ ଅବା କେଉଁଠାରେ
ଶୁଣିଅଛ ବୀର ବିନା ପ୍ରଶଂସା କାହାରେ ॥
ଦେଖିଥିଲେ ଶୁଣିଥିଲେ ବେଗ କରି କହ ।
ସନ୍ଦେହ ମୋହ ମନରୁ ସତ୍ୱର ଘୁଞ୍ଚାଅ ।
ବୀରବାଣୀ ଶୁଣି ସୈନ୍ୟ ହରଷ ଅନ୍ତରେ ॥
ଭୀମ ଗରଜନ କରି ଧାଇଁଲେ ସତ୍ୱରେ ॥
ଧୂଳିରାଶି ଉଡେ ପାର୍ଥ ସୈନ୍ୟ ପାଦଭରେ ।
ଘୂରିଁ ଘୂରିଁ ଘୋଡ଼ାଇଣ ଦେଲା ସେ ଅମ୍ବରେ
ଘୋର ଦିଗ ଅନ୍ଧକାର ମାର ମାର ରବେ ।
କମ୍ପାଇଲେ ମହୀ ସର୍ବେ ମତ୍ତ ବୀର ଗର୍ବେ ॥
ଘନ ଘନ ଝନ ଝନ ଅସ୍ତ୍ରର ନାଦରେ ।
କମ୍ପିଲା ଅବନୀ ବ୍ୟାପିଗଲେ ସେ ସତ୍ୱରେ ॥

ମାତଙ୍ଗ ତୁରଙ୍ଗ ରଥରଥୀ ସହିତରେ ।
ଗମନ କଲେ ଅର୍ଜ୍ଜୁନ ରାକ୍ଷସର ପୁରେ ॥
ଅଗେ ଅଗେ ଗଜାରୋହୀ ପ୍ରଚଣ୍ଡ ବେଗେଣ
ତହିଁ ପଛେ ଅଶ୍ୱାରୋହୀ ହେଲେ ଧାବମାନ
କେ ପାରିବ ଗଣି ତାଙ୍କ ପ୍ରଚଣ୍ଡ ବାହିନୀ ।
ମହା ଉତପାତ କିବା ଘୋଟିଲା ମେଦିନୀ ॥
ଅତ୍ୟନ୍ତ ସ୍ଥୂଳ ଦେହ ଶୁଣ୍ଡ ଲମ୍ବମାନ ।
ମଧ୍ୟେ ମଧ୍ୟେ ଗରଜନ୍ତି ମେଘର ସମାନ ॥
ସର୍ବ ପଛେ ପଦାତିକ ଚଳନ୍ତି ସତ୍ୱରେ ।
ଅଶ୍ୱଙ୍କର ହ୍ରେଷାରବେ ସସାଗରା ଥରେ ॥
ଘୋଟକଙ୍କ ରୂପ ଦେଖି ହୁଏ ଅନୁମିତ ।
କିବା ଉଚ୍ଚୈଃଶ୍ରବା ଅଶ୍ୱ ସ୍ୱର୍ଗରୁ ଆଗତ ॥
ଶରଜାଲେ ପୃଥିବୀକୁ କରି ଆବରଣ ।
କମ୍ପାନ୍ତି ବୀରେ ଆକାଶୁ କି ବଜ୍ର ପତନ ॥
ନାନା ରଙ୍ଗରେ ପତାକା ଉଡ଼େ ଚଉକତି ।
ଅମର ତେଜ କି ବଳେ କରେ ଶଚୀପତି ॥
ଦୀର୍ଘତମ ଗିରିଶିଖା ଆକାଶ ସ୍ପର୍ଶଇ ।
ସମୁଦ୍ର ଲହରୀ ପରି ସୈନ୍ୟଗଣେ ତହିଁ ।
ତୀକ୍ଷ୍ଣ ଧନୁଶର କରେ ତାର ପଛେ ରଥୀ ।
ବୀର ବେଶେ କୁଳଚନ୍ଦ୍ର ନିର୍ଭୟରେ ଅତି ॥
ଏଣେ ଏତେ ଏତେ ସୈନ୍ୟ କରି ନିରୀକ୍ଷଣ
ରକ୍ଷକୁଳ ପୁରୋହିତ ମାୟାବୀ ପ୍ରଧାନ ॥
ରକ୍ଷକୁଳ ଅମଙ୍ଗଳ ଦେଖିଣ ସେ ବୀର ।
ମାୟାବଳେ ଦିବ୍ୟରୂପ ଧଇଲା ସେଠାର ॥
କପୋଳେ ଚିହ୍ନିଲା ବୀର ନରମୁଣ୍ଡ ରକ୍ତ ।
ଗଳାରେ ସେ ହାରକଲା ନରମୁଣ୍ଡ ବକ୍ତ ॥
ନର ରକ୍ତ କପୋଳେ ସିନ୍ଦୁର ପ୍ରାୟ ମଣ୍ଡି ।
ଅର୍ଦ୍ଧପରି ଦିଶେ ମୁଣ୍ଡ ଯେସନ୍ତେ ମେରୁଗଣ୍ଡି ॥
କର୍ଣ୍ଣରେ କୁଣ୍ଡଳ ଗଳେ ପଦକ ଲମ୍ବାଇ ।
କରମାଳା ନରମୁଣ୍ଡ କଲା ବେଗେ ନେଇ ॥
ଯଜ୍ଞ ପଇତା ଶୋଭଇ ହସ୍ତରେ ତାହାର ।
କୃଷ୍ଣାଜିନ ପିନ୍ଧି ଦିଶେ ଯେସନ୍ତେ ଦିଗମ୍ବର ॥
ନର ରକ୍ତରେ ବସ୍ତ୍ରକୁ ବୁଡ଼ାଇଣ ବୀର ।
ଇଷ୍ଟମନ୍ତ୍ର ସ୍ମରି ଗମେ ରାଜାଙ୍କ ପାଶର ॥
ନରପତି ଆଜ୍ଞା ପାଳି ଯାଏ ତନପୁରୀ ।
ଆଶୀଷ କରେ ରାଜନେ ମଙ୍ଗଳ ଉଚ୍ଚାରି ॥

ସେ ଦିନେ ସେ ନଗରକୁ ଯାଉଥିବା ବେଳେ
ସୈନ୍ୟ ସବୁ ଦେଖି ଭାବେ ଆପଣାମନରେ ॥
ମନ ମଧ୍ୟରେ ଭାବିଲା ରାଜାଙ୍କୁ କହିଣ ।
ବହୁ ପୁରସ୍କାର ପାଇ କରିବ ପ୍ରୟାଣ ॥
ତେଣୁ ଖରତରେ ଛାଡ଼ି ଶ୍ୱାସ ବାୟୁମାନ ।
ମହୋତ୍ସାହେ ନଗରକୁ କରିଲା ଗମନ ॥
କୁଳ ପୁରୋହିତ ଦେଖି ତହୁଁ ନୃପଗଣ ।
ବସିବା ପାଇଁକି ଦେଲେ ସୁବର୍ଣ୍ଣ ଆସନ ॥
ପାଦ୍ୟ ଅର୍ଘ୍ୟ ଦେଇ ତାଙ୍କୁ ବହୁପୂଜା କଲା ।
ସାଷ୍ଟାଙ୍ଗେ ପଡ଼ିଣ ପାଦେ ବଚନ ବୋଇଲା ॥
ଧନ୍ୟ ମୁହିଁ ହେଲି ଆଜ ବଢ଼ିଲା ମୋ ମାନ
ଯେଣୁ ମୋ ପୁରେ ପଡ଼ିଲା ଗୁରୁ ଶ୍ରୀଚରଣ ॥
ଦିଅ ପଦରେଣୁ ତରି ଯାନ୍ତୁ ରକ୍ଷବର୍ଗ ।
ଧିକ ମୋ ଜନମ ନ ଛାଡ଼ିଲି ପାପମାର୍ଗ ॥
ଜାଣିଲି ନିଶ୍ଚୟ ମୋର ପୂର୍ବ ପୁଣ୍ୟ ଫଳ ।
ତେଣୁ ମୋ ପୁରେ ପଡ଼ିଲା ଶ୍ରୀପଦକମଳ ॥
କହ ଗୁରୋ କିସ ଆଜ୍ଞା ପାଳିବ ଏ ଦାସ ।
ପ୍ରାଣପଣେ ପାଳିବ ଏ ନୋହିଣ ବିମର୍ଷ ॥
ଯେବେ ମନ ପ୍ରାଣ ମୋର ତବ କାର୍ଯ୍ୟେ ରତ
ହେ ପ୍ରଭୁ ନିଶ୍ଚୟ ମୁହିଁ ହୋଇବି କୃତାର୍ଥ ॥
ନୋହିଲେ ଯାବତ ପିଣ୍ଡେ ବହେ ପ୍ରାଣବାୟୁ
ଏ କିଙ୍କର ଶାନ୍ତି କେବେ ନ ଲଭିବ ଆଉ ॥
ଛାର ରାଜ୍ୟ ଛାର ଧନ ସମସ୍ତ ଅସାର ।
ଅସାର ସଂସାରେ କିଛି ନାହିଁ ଦରକାର ॥
ତେବେ ତୁମ୍ଭ ଆଜ୍ଞା ଦାସ ନ କଲା ପାଳନ ।
ଯେବେ ଜାଣ ଜନମଟି ଗଲା ଅକାରଣ ॥
ତାର ଭକ୍ତିପୂର୍ଣ୍ଣ କଥା ଶୁଣିଣ ଅନ୍ତରେ ।
ଆନନ୍ଦ ହୋଇଣ ଗୁରୁ ବୋଇଲେ ସେଠାରେ
ହସିଣ ତାହାଙ୍କୁ ଗୃହିଁ ବୋଲନ୍ତି ବଚନ ।
ମୁଖରେ ପୂରିଛି ହାସ ନରରକ୍ତେ ମନ ॥
ଶୁଣ ରାଜେ କିଛି ଦୁଃଖ ନ ଭାବ ମନରେ ।
ଯେବଣ କାରଣେ ମୋର ଆଗମ ଏଠାରେ
ମଦବାର ଇଚ୍ଛା କରି କାହିଁ ବହୁ ନରେ ।
ପ୍ରବେଶ କରିଅଛନ୍ତି ତୁମ୍ଭର ରାଜ୍ୟରେ ॥
ଅଗଣନ ଅଶ୍ୱ ହସ୍ତୀ ସଙ୍ଗେ ଦେଖାଯାଏ ।
ନର ସୈନ୍ୟଙ୍କର ତେଜ ମୁଖେ କହି ନୁହେଁ

ଭାଗ୍ୟକ୍ରମେ ସର୍ବେ ଉପସ୍ଥିତ ଏହିଠାରେ ।
ତାହା ଦେଖି ପ୍ରଫୁଲ୍ଲିତ ହୋଇଛୁ ମନରେ ॥
ପୂର୍ବରେ ପ୍ରସଙ୍ଗ ମୋର ମନରେ ପଡ଼ିଲା ।
ଯେଉଁ ପରି ଗୋଟିଏ ଘଟଣା ଘଟିଥିଲା ॥
ରାବଣ ଯେ କାଳେ ନରମେଧ ଅୟୋଜନ ।
କରିଲା ବହୁତ ଅଡ଼ମ୍ବର ତାହା ଶୁଣ ॥
ନରମାଂସ ମନ ପୂରାଇଣ ଖାଇଥିଲୁ ॥
ସେ ସ୍ଥାନରେ ଯେତେସୁଖ ଆମ୍ଭେଯେ ଭୋଗିଲୁ
ନରରକ୍ତେ ସ୍ନାନ ଆମ୍ଭେ କଲୁ ସେ ସ୍ଥାନରେ
ନରଶିରେ ପୁଣି ତୃପ୍ତ ହେଲୁ ନିରନ୍ତରେ ॥
କେତେଦିନ ନରମାଂସ ପାଇଁ ଅଭିଳାଷ ।
ପୂର୍ଣ୍ଣ କରିଅଛୁ ମନ ସୁଖରେ ବିଶେଷ ॥
ସେ ଘଟଣା ବହୁଦିନ ହୋଇ ତ ଗଲାଣି ।
ମାତ୍ର ଏପରି ସୁଖ ନ ପାଉ ନୃପମଣି ॥
ଆଜ ବହୁ କୃପାକରି ସକଳ ଆହାର ।
ଭାଗ୍ୟବଳେ ପାଶେ ଆଣି ଦେଲେଣି ହେ ବୀର
ବହୁ ପରିଶ୍ରମ ସାଧେ ମିଳିପାରେ ଯାହା ।
ଘରେ ବସି କରି ଏବେ ପାଇଲୁଣି ତାହା ॥
ସକଳ. କରମ ଫଳ କରମ ସୂତ୍ରରେ ।
ଏ ସଂସାରେ ଭୋଗାଭୋଗ କରନ୍ତି ସକଳେ ॥
ଅଦୃଷ୍ଟେ ଯାହା ନ ଥାଇ ଭୋଗନୁହେ ତାହା ।
କର୍ମଫଳେ ବିହି ଘଟାଇଛି ଅଣି ଏହା ॥
ଥିଲେ ଅଦୃଷ୍ଟରେ ଭୋଗ ସହଜେ ମିଳଇ ।
ପୂର୍ବରୁ ଏହା ମହତ ଜନେ ଛନ୍ତି କହି ॥
ରହିଅଛୁ ସର୍ବେ ଆମ୍ଭେ ନିଶ୍ଚିନ୍ତେ ଏ ପୁରେ ।
କାହିଁ ଆମ୍ଭ ଭକ୍ଷ ଭୋଜ୍ୟ ଆସିଲା ଏଠାରେ
ଅଛୁ ବହୁଦିନ ନର ରକ୍ତ ଉପବାସୀ ।
ଶୁଣି ନୃପତି ଶେଖର ବୋଲେ ମନ୍ଦେ ହସି ॥
ଇଚ୍ଛା ଅନୁସାରେ କରି ନରରକ୍ତ ପାନ ।
ସନ୍ତୋଷ କରିବ ସର୍ବେ ଆପଣାର ମନ ॥
ଯେ କାରଣୁ ଅହେ ଗୁରୁ ଊର୍ଦ୍ଧ୍ୱ ଶ୍ୱାସେ ଅସ ।
ତୁମ୍ଭର ସନ୍ତାପ ଘୁଞ୍ଚାଇବି ମୁଁ ଅବଶ୍ୟ ।
ତୁମ୍ଭେ ପ୍ରସନ୍ନ ହୋଇଲେ ଅମ୍ଭେମାନେ ତୃପ୍ତ
ମୋକ୍ଷ ହେବୁ ବୋଲିକରି ଘୋଷୁ ଇଷ୍ଟମନ୍ତ୍ର ॥
ଗୁରୁ କହେ ଚିରକାଳ ତୁମ୍ଭ ଉପକାର ।
ଆମ୍ଭେ ସଦା ତୁମ୍ଭ ହିତକାରୀ ନୃପବର ।
ସର୍ବଦା କାମନା କରୁ ମଙ୍ଗଳ କାରଣ ।
ଦିନ ରାତି ଭାବୁଥାଏ ତୁମ୍ଭର କଲ୍ୟାଣ ॥
କେଉଁ ରାଜପୁତ୍ର ତୁମ୍ଭ ରାଜ୍ୟକୁ ଆସିଛି ।
ଅଗଣିତ ନର ସୈନ୍ୟ ସଙ୍ଗରେ ଆଣିଛି ॥
କେ ଜାଣେ କି ଇଚ୍ଛା କରି କରିଛନ୍ତି ଠଣା
ତାହା ଜାଣିବାର ସିନା ଅତି ଦୁର୍ଘଟଣା ॥
ଦେଖିଲା ମାତ୍ରକେ ଚିତ୍ତେ ଆନନ୍ଦ ହୁଅଇ ।
ବଚନରେ ସେ ଆନନ୍ଦ କହିତ ନୁହଇ ॥
ଅହା କିପରି ସୁକୃତି ନୃପତି ତୁମ୍ଭର ।
ଗୁଣରେ କିଏ ସେ ବର୍ଣ୍ଣିପାରେ ସୀମା ତାର
ଧନ୍ୟ ଧନ୍ୟ ରାଜା ପ୍ରକୃତ ଧୂର୍ଜ୍ଜଟୀବର ।
ପ୍ରକୃତରେ ଭୋଗହୁଏ ହେ ରାକ୍ଷସେଶ୍ୱର ॥
ମୋହର ଜୀବନେ କିଛି କିଛି ଦେଖିଅଛି ।
ଆଉର ଅନେକ ଲୋକ ମୁଖରୁ ଶୁଣିଛି ॥
ଦିବ୍ୟବର ପାଇଅଛ ଘୋର ତପ କରି ।
ଯଣ ତୁମ୍ଭର ଯେ ଘୋଷୁଅଛୁ ନିତ୍ୟ ପୁରୀ ॥
ସୁଖେ ଅମ୍ଭେ ନରମାଂସ ପାଇବା ମାନସେ ।
ଆସିଅଛୁ ହେ ରାଜନ ଆଜ୍ଞ ତବ ପାଶେ ॥
ଯାର ନାମେ ଚରାଚର ହୁଏ କମ୍ପମାନ ।
କିପାଇଁ ମନରେ ଶଙ୍କାକର ହେ ରାଜନ ॥
ସୁରାସୁର ନର ଆଦି ଦଶଦିଗପାଳ ।
ଯା ନାମ ଶ୍ରବଣେ ଭୟ କରନ୍ତି ସକଳ ।
ଏପରି ନୃପତି ଥାଉ ରାଜ୍ୟରେ ଆମ୍ଭର ॥
ନରମାଂସ ପକ୍ଷେ ଅଉ କିପାଁ ଶଙ୍କା ମୋର ।
ଗୁରୁଙ୍କ ବଚନ ଶୁଣି ରକ୍ଷଙ୍କ ରାଜନ ।
ଜଳଦ ଗମ୍ଭୀର ସ୍ୱରେ ବୋଲଇ ବଚନ ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ମୋ ସମାନ ବୀର ।
କାହିଁ ଦେଖିଛକି ଗୁରୁ କିପାଁ ଶଙ୍କାକର ॥
ତିନିପୁର ଯାକ ଯେବେ ରଣ ଆସେ ମୋର
ପାଶେ ପ୍ରବେଶିବେ ଚିବେ ସେହି ପ୍ରେତପୁର
ଦେବତା ମନୁଷ୍ୟ ଯକ୍ଷ ବିଦ୍ୟାଧର କେହି ।
ଆସିଥିଲେ ତାହାଙ୍କର ଏଥେ ରକ୍ଷା ନାହିଁ ॥
ନିଶ୍ଚୟ ମାରିବି ତାଙ୍କୁ ଏ ପ୍ରତିଜ୍ଞା ମୋର ।
କେବେ ମିଛ ନ କହଇ ଏ ରକ୍ଷ ଈଶ୍ୱର ॥
ଆଜ ଆମ୍ଭ ବନ୍ଧୁ ବାନ୍ଧବାଦି ସର୍ବ ଗୋଷ୍ଠ ।
ପାନ କରି ତୃପ୍ତ ହେବେ ନରର ଶୋଣିତ ।

ରକ୍ତମାଂସ ଖାଇ ସର୍ବେ ହୋଇ କୁତୂହଳୀ ।
ନାଚିବେ ଆନନ୍ଦେ ବେନିବାହୁ ଊର୍ଦ୍ଧ୍ୱେ ତୋଳି
ଯଜ୍ଞଭୂମି ସ୍ଥିରକର ମାନ ଅମ୍ଭ ଗିର ।
ଅତ୍ୟନ୍ତ ବେଗରେ ମୋତେ ଦୀକ୍ଷିତ ଯେ କର
ନରମେଧ ଯଜ୍ଞ କରିବାକୁ ସମାପନ ।
ଅମ୍ଭର ଇଚ୍ଛା ହୁଅଇ ଗୁରୁଦେବ ଶୁଣ ॥
ଯଜ୍ଞରେ ଯେତେ ପଦାର୍ଥ ଲୋଡ଼ା ଯେ ହୁଅଇ
ସେ ସକଳ ଆୟୋଜନ କର ତୁମ୍ଭେ ଯାଇ ॥
ଯଜ୍ଞଭୂମିକୁ ଶୋଧନ ଆଗେ କର ଯାଇ ।
ପୂର୍ଣ୍ଣ କୁମ୍ଭ ରମ୍ଭାବୃକ୍ଷ ତୋରଣ ସଜାଇ ।
ତୁମ୍ଭେ ହୋତା ହୋଇ ଯଜ୍ଞ କର୍ମକୁ କରିବ
ତେବେ ମୋର ବଳବସ୍ତୁ ଆୟୁଷ ବଢ଼ିବ ॥
ଶୁଣ ଗୁରୁଦେବ ତୁମ୍ଭେ ପୂର୍ଣ୍ଣାହୁତି ଦେଲେ ।
ଯଜ୍ଞ ସମାପତ ହୋଇଯିବ ଅକ୍ଳେଶରେ ॥
ଏତେକ କହୁଣ ମହାତେଜା ବଳୀୟାନ ।
କିଛିକ୍ଷଣ ଯାଏ ମନ ମଧ୍ୟରେ ଭାବିଣ ॥
ରଣସଜ୍ଜା ଘେନି ଏଥେ ଆସେ କେଉଁଜନ ।
ଚର ପଠାଇ ବୁଝିବା ଆଗେ ଏ ସନ୍ଧାନ ॥
ଦେବ କି ଦାନବ ଅବା ଗନ୍ଧର୍ବ କିନ୍ନର ।
କି କାରଣେ ଆସିଅଛି ସେ ମୋହର ପୁର ॥
ଶତ୍ରୁଭାବେ କିବା ମିତ୍ରଭାବେ ଅ..ଛନ୍ତି ।
କି ଅବା ଉପୁରେ ସେହୁ ଶରଣ ଗୃହାନ୍ତି ॥
କେତେ ବୁଦ୍ଧି କେତେ ବଳ ଧରନ୍ତି ସେ ନରେ
ପୁରେ ପ୍ରବେଶ କରିଲେ ନ ଡ଼ର ମନରେ ॥
ଚର ପଠାଇ ବୁଝିବା ଏ ସର୍ବ ସନ୍ଧାନ ।
ତେବେ ପଛର ଯେଉଁପରି କରିବା ବିଧାନ ॥
ଏତେ ବୋଲି ନରପତି ଚରବର୍ଗ ଚାହିଁ ।
ଦେଖେ କେ ଲୋକ ସନ୍ଧାନ ଆଣିଣ ପାରଇ
ଏପରି ସମସ୍ତେ ..ର ଦେଖିଲା ସେଠାରେ ।
ଏକ ନାରୀ ହସ୍ତଯୋଡ଼ି ଉଭା ତା ଆଗରେ ॥
ଅତିଶୟ ବୁଦ୍ଧିମତୀ ଅଟଇ ସେ ନାରୀ ।
ଦେବତା ହେଲେ ହେଁ ତାହା କଳିତ ନ ପାରି
ଦୈତ୍ୟ .. ମଧ୍ୟରେ ପଣ୍ଡିତା ତାହା ପାରି ।
ନାହିଁ କେହୁ ଶତ୍ରୁମର୍ମ ବୁଝିବାକୁ ସରି ॥
ଅଙ୍ଗ ଭଙ୍ଗୀ ଗତି ଦେଖି ମନର ମାନସ ।
ସହଜରେ ବୁଝିପାରେ ସେହି ନାରୀବର ॥

ଏକମାତ୍ର ପ୍ରବୀଣା ସେ ତା ସମାନ କେହୁ ।
ଦଇତ୍ୟପୁର ମଧ୍ୟରେ ଗୁପ୍ତଚର ନାହିଁ ॥
ଗତି ତାର ଯେପରି ସେପରି ବୁଝିବଳ ।
ଚତୁରତା ଦକ୍ଷ ପୁଣି ଦିବ୍ୟ ଜ୍ଞାନ ତାର ॥
ଅଛି ବାକ୍ୟ ବଳ ପୁଣ ଅଟେ ମାୟାବିନୀ ।
ସହଜରେ ଶତ୍ରୁ ମର୍ମ ବୁଝେ ସେ ରମଣୀ ॥
ଦେଖି ସେହୁ ନାରୀବରେ ବିନୟ କରିଣ ।
ଅଳପ ମଧୁରେ ରାଜା ବୋଲଇ ବଚନ ॥
ଶୁଣ ଶୁଣ ଅଗୋ ଗୁରୁକୁନ୍ତଳା ମୋ ବାଣୀ
ଗୋଟିଏ କାର୍ଯ୍ୟ କି କରିପାରିବୁ ରମଣୀ ॥
କାହିଁ ଆସିଣ ଅସଂଖ୍ୟ ନର ସୈନ୍ୟଚୟ ।
ରଥ ଗଜ ବାଜି ସହ ହୋଇଲେ ଉଦୟ ॥
କି କାରଣେ ଅମ୍ଭପୁରେ ଆସିଛନ୍ତି ସେହି ।
ତହିଁର କାରଣ କିଛି ମୁହିଁ ନ ଜାଣଇଁ ॥
ନର ହୋଇ ସୈନ୍ୟସହ ମୋହର ପୁରକୁ ।
ଆସିଛନ୍ତି ସାମାନ୍ୟ ମୁଁ ନ ମଣେ ତାହାଙ୍କୁ ॥
ତେଣୁ ତୋତେ କହୁଅଛି ମୋର ହିତପାଇଁ
ସମସ୍ତ କାରଣ ବୁଝିଆସ ତୁମ୍ଭେ ଯାଇ ॥
ଅବିଳମ୍ବେ ଅମ୍ଭ କାର୍ଯ୍ୟ କର ସମାପନ ।
ବିଳମ୍ବ ନ କର ଚଳି ଯାଅ ଗୋ ବହନ ॥
ମୋ ଆଦେଶେ ଯାଅ ଚଳି ଅଲକ୍ଷ ଭାବରେ
ଜାଣି ଶୁଣି ଆସ କିବା କାରଣ ଏଥିରେ ॥
ଶୁଣିଣ ରାଜାଙ୍କ ବାଣୀ ନାରୀ ଚିତ୍ତେ ହର୍ଷେ ।
ରାଜାଙ୍କୁ ପ୍ରଣମି ଚଳେ ସନ୍ଧାନର ଆଶେ ॥
ପ୍ରଦକ୍ଷିଣ କରିଣ ହେ ଊର୍ଦ୍ଧ୍ୱ ଶ୍ୱାସେ ଧାଇଁ ।
ଯେଉଁଠାରେ ନର ସୈନ୍ୟଠଣା କରି ରହେ ॥
ନଗର ଆକୃତି ଧରି ମଧ୍ୟରେ ପଶିଲା ।
ଗୋଟି ଗୋଟି କରି ସର୍ବ ବୀରଙ୍କୁ ଦେଖିଲା ॥
ସର୍ବଙ୍କ ଅଟଇ ସେହୁ ପୃଥିହିଁ ଚତୁରେ ।
ସନ୍ଧାନ କରିଲା ସର୍ବ ଆପଣା ଦୃଷ୍ଟିରେ ॥
ଦେଖିଣ ସୈନ୍ୟଙ୍କ ରୂପ ପୁଣି ତେଜଗୁଣ ।
ଗଜ ଅଶ୍ୱ ଆଦି ଯେ ଅସଂଖ୍ୟ ସୈନ୍ୟଗଣ ॥
ଶେଷେ ଦୂରେ ଠିଆହୋଇ ଦେଖିଲା ସୁନ୍ଦରୀ
ଲଙ୍କାପୋଡ଼ା ଅଛି ତହିଁ ସୈନ୍ୟଙ୍କୁ ଅଗୋର ॥
ମନରେ ବ୍ୟାକୁଳ ହେଲା ଦେଖି ହନୁଦେହ
ଭାବିଲା ପ୍ରମାଦ ଏଥେ ପଡ଼ିବ ନିଶ୍ଚୟ ॥

ମଧୁବନ ଭାଙ୍ଗି ଲଙ୍କା ଘରଖାର କଲା ।
ତାହାର ଗତି କପଟ ଏ ସ୍ଥାନକୁ ହେଲା ॥
ଅବଧି ରାବଣପୁରେ ସର୍ବେ ଯାର ନାମ ।
ଶୁଣିକରି ଜାଆନ୍ତି ଅକୂଳେ ଯାଇ ଝାମ ॥
ପତି ପୁତ୍ରର ଉଦ୍ଦେଶେ ଅନାଥିନୀ ପରି ।
ଶୋକାବେଗ ହୋଇଣ ପଡ଼ନ୍ତି କେତେ ନାରୀ
ହନୁ ଭୟେ ଭୀତ ମତ ଲଙ୍କାପୁରେ ସ୍ଥିତ ।
ସଂଖ୍ୟାକରି ହେବ ନାହିଁ କେତେ ରହିଛନ୍ତି ॥
କେଉଁଠାରୁ ବୀରମଣି ଆସି ଏ ଦେଶରେ ।
ଉପସ୍ଥିତ ହୋଇଛନ୍ତି କେଉଁ କାରଣରେ ॥
ଅନୁମାନ ହୁଏ କିବା କରିଛନ୍ତି ପଣ ।
ସଂସାରରେ ନାଶିବାକୁ ସବୁ ରକ୍ଷଗଣ ॥
ସନ୍ଧି ବିସନ୍ଧିରେ ବୁଲି ବୁଲି ତ୍ରିଭୁବନ ।
ଏଠାବକୁ ଆସିଅଛି ପବନ ନନ୍ଦନ ॥
ନରଙ୍କ ସହିତେ ମିଶି ଆସିଛି ଏଠାରେ ।
ଲଙ୍କାର ଦୁର୍ଦ୍ଦଶା ପରି ଜଣାଯାଏ ମୋରେ ॥
ସର୍ବଂଶେ ମରିବୁ ସର୍ବେ ନାହିଁଟି ଉପାୟ ।
ଏମାନଙ୍କ ହାତେ ପ୍ରାଣ ରହିବା ସଂଶୟ ॥
ପଳାଇଲେ ରକ୍ଷା ନାହିଁ ଅହୋ କି କରିବୁ ।
ସନ୍ଧାନ ନ ପାଉ କେଉଁଠାକୁ ପଳାଇବୁ ॥
ହନୁ ପଶ୍ଚାତରେ ପୁଣି ଅତି ସୁଖ ମନେ ।
ନିଶାଚର ମେଘବର୍ଣ୍ଣ ଅଛି ଯେ ଏ ସ୍ଥାନେ ॥
ନରରେ ସହିତ ମିଶି ଆସେ ଆନନ୍ଦରେ ।
ବିଭୀଷଣ ଯଥା ରାମ ସଙ୍ଗତେ ବିହରେ ॥
ଏହା ଦେଖି ନିଶାଚରୀ ଅତି ଭୟଙ୍କର ।
ଧାଇଁଲା ସେଠାରେ ଛନ୍ତି ରକ୍ଷ ଦଣ୍ଡଧାରୀ ॥
ପ୍ରାଣଭୟେ ଫେରି ଫେରି ପଛକୁ ଚାହିଁଣ ।
ଉପସ୍ଥିତ ହେଲା ଯହିଁ ଛନ୍ତି ନୃପଗଣ ॥
ମୁଖୁ ନ ସ୍ଫୁରଇ ଭାଷା ଘନ ଘନ ଶ୍ୱାସେ ।
ଜଡ଼ପ୍ରାୟ ଠିଆ ହୋଇ ରହିଲା ନିରାଶେ ॥
କିସ ଅଦ୍ଭୁତପ୍ରାୟ ବୋଲି ଯେତେ ପୃଚ୍ଛା କରେ
କିଛି କଥା କହି ନ ପାରଇ ସେ ଭୟରେ ॥
ତୁଣ୍ଡରୁ ତାହାର ବାକ୍ୟ ନ ସ୍ଫୁରେ ବଧିରେ
ଅନବରତରେ ନେତ୍ରୁ ଅଶ୍ରୁ ଧାରା ଝରେ ॥
କେତେକେତେବେଳେ ଦେହ କମ୍ପିତ ହୁଅଇ
ଦଶଦିଗେ ଚାହିଁ ଘନ ନିଶ୍ୱାସ ପକାଇ ॥

ତାର ଭାବ ଗତି ଶକ୍ତି ଦେଖି ଏ ପ୍ରକାର ।
ବଡ଼ ଭୟ ଜାତହେଲା ରାଜାଙ୍କ ଅନ୍ତର ॥
ଅକସ୍ମାତ ଦେଖିଣ ଏପରି ବିଲକ୍ଷଣ ।
ବୋଇଲେ ବୁଝିଲି ନିଶ୍ଚେ ଅଶୁଭ ଲକ୍ଷଣ ॥
କଷ୍ଟେ ନିଶାଚରୀ କର ଯୋଡ଼ି କହେ ଧୀରେ
ଆଦ୍ୟ ପ୍ରାନ୍ତ କରଣ କହିଲା ନୃପତିରେ ॥
ଜାଣ ଜାଣ ମହାରାଜା ବିପଦ ଏଠାରେ ।
ଉପସ୍ଥିତ ହେଲା ଯାହା ଦେଖିଲି ନେତ୍ରରେ ॥
ହସ୍ତିନା ପୁରର ମହାତେଜା ଯୁଧିଷ୍ଠିର ।
ଅଶ୍ୱମେଧ କରିବାକୁ ବାସନା ତାଙ୍କର ॥
ଯଜ୍ଞ ଅଶ୍ୱ ସଙ୍ଗେ ସହୋଦର ଅରଜୁନ ।
ପଠାଇ ଅଛନ୍ତି ଯୁଦ୍ଧେ ଅଟେ ସେ ନିପୁଣ ॥
ସୁରାସୁର ଯକ୍ଷ ରକ୍ଷ ତ୍ରିଦଶ ମିଳିଲେ ।
ଅର୍ଜୁନ ହାତରୁ ରକ୍ଷା ନ ପାଇବେ ଭଲେ ॥
ଜାଣ ରାଜା ପାର୍ଥ ଅସମ୍ଭବ ଶକ୍ତିଧରେ ।
ବହୁ ସୈନ୍ୟଗଣ ଛନ୍ତି ତାହାଙ୍କ ସଙ୍ଗରେ ॥
ବହୁ ରଥ ରଥୀ ଦେଖି ଯମ ପାଏ ଭୟ ।
ଏକଥା ମିଥ୍ୟା ନୁହଇ ଜାଣ ହେ ନିଶ୍ଚୟ ॥
ପୁଣି ଆସିଛି ତା ସଙ୍ଗେ ବୀର ହନୁମାନ ।
ଯାହାର ପ୍ରତାପେ ଲଙ୍କା ହୋଇଲା ଦହନ ॥
ଏ ପର୍ଯ୍ୟନ୍ତ ଯାର ନାମେ କମ୍ପେ ଲଙ୍କାପୁର ।
ଯମ ପରେ ଦ୍ୱିତୀ ଯମ ପବନ କୁମର ॥
ଅସ୍ତ୍ର ଶସ୍ତ୍ର ମୁଦ୍‌ଗରାଦି ବାଜି ଯା ଦେହରେ ।
ଧୂଳିହୋଇ ଯାଏ ମୁହିଁ ଦେଖିଛି ନେତ୍ରରେ ॥
ତ୍ରିଭୁବନେ ତାହା ସମ ନାହିଁ କେହି ବୀର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ମୁଁ ନ ଦେଖେ ନେତ୍ରର ॥
ଯାର ପାଦଭରେ ଗିରି ପାତାଳେ ଗମଇ ।
ବାୟୁ ପରି ଯେହୁ ଶୂନ୍ୟେ ଗମନ କରଇ ॥
ଯା ଯୋଗୁଁ ସମୁଦ୍ରେ ବନ୍ଧ ବାନ୍ଧିଲେ ଶ୍ରୀରାମ ।
ତା ସଙ୍ଗେ କିସ କରିବ ଯାଇଣ ସଂଗ୍ରାମ ॥
ମୋହ ପରି କେତେ ଅଭାଗିନୀ ଲଙ୍କାପୁରେ ।
ବିଧବା ଯନ୍ତ୍ରଣା ଭୋଗୁଛନ୍ତି ନିରନ୍ତରେ ॥
ଅଦ୍ଭୁତ ପୁଣି ଦେଖିଲି ଆଶ୍ଚର୍ଯ୍ୟ ଘଟଣା ।
ମେଘବର୍ଣ୍ଣ ରକ୍ଷ ତହିଁ ଦେଉଅଛି ଠଣା ॥
ରାକ୍ଷସ ସଙ୍ଗେ ମାନବେ ପ୍ରଣୟ ଯେ ଘୋର ।
ଖାଦ୍ୟ ଖାଦକର ପ୍ରୀତି ଏ କି ଚମତ୍କାର ॥

ମେଘ ବର୍ଣ୍ଣ ମହାବଳୀ ହୋଇ କୁତୁହଳୀ ।
ପରମ ସନ୍ତୋଷେ ବୀର ତହିଁ ଅଛୁ ମିଳି ॥
ସ୍ୱଜାତି ତ୍ୟାଗ କରଣ ସ୍ନେହ ମନୁଷ୍ୟରେ ।
କିବା ଅଭିପ୍ରାୟ କଣା ନ ଯାଏ ଏଥିରେ ॥
ଏଥିରେ ଗୌରବ କିବା ଜାଣ ଅପମାନ ।
ଶରଦନ ଘୋଷିବେ ସେ ସକଳ ପୁରାଣ ॥
ଆତ୍ମଣୁ ଭଗ୍ନ ବିକମ ନିଜେ ଅଳ୍ପ ଜାଣି ।
ମାନବ ସହିତ ମିଶିଅଛୁ ବୀରମଣି ॥
ଦେଖିଲେ ବିସ୍ମିତ ଶତ୍ରୁ ପ୍ରାଣ ବିଚଳିତ ।
ହୁଅଇ ହେ ନୃପବର ଭାବନ୍ତୁ ଉଚିତ ॥
ମିଶିଅଛୁ ବୀରବର କି କାରଣ ପାଇଁ ।
ଦେଖିଣ ଏସନ ରୀତି ହୃଦୟ କମ୍ପଇ ॥
ଦେଖିଣ ଏହି ଘଟଣା ମୁହିଁ ସେଠାବରେ ।
ନାନା ଭୟ ଜାତ ହେଉଅଛି ମୋ ମନରେ ॥
ଅରେ ଭାବ ମନେ ବୁଝ ବିଧି ନିଦାରୁଣ ।
ଯେପରି ନର ବାନର ପ୍ରଭାବେ ରାବଣ ॥
ସଗୋଷ୍ଠ ସହିତ ମଲା ଅହେ ରକ୍ଷସାଇଁ ।
ସେହିପରି ଭୟ ମୋର ମନରେ ହୁଅଇ ॥
ଏ କାରଣୁ ଭୟଙ୍କର ମଳିନ ବଦନ ।
ଦୈବ ଇଚ୍ଛା କି ବିପଦ ଘଟିବ ଏ ସ୍ଥାନ ॥
ଦେଖିଅଛୁ ଅନେକ ଘଟଣା ବୟସରେ ।
ମାତ୍ର ଦେଖି ନାହିଁ ମୁଁ ବିପଦ ଏ ପ୍ରକାରେ ॥
ସ୍ୱପନେହେଁ ନ ଦେଖି ଜ୍ଞାନନେହେଁ ଦେଖେମୁହିଁ
ସେହିହେତୁ ମନେ ମୋର ଭୟ ଜାତହୋଇ
ତୁମ୍ଭେ ବୀର ବିଚକ୍ଷଣ ନୃପ ଜ୍ଞାନବାନ ।
ସୁପଣ୍ଡିତ ରାଜନୀତି ବିଷୟେ ନିପୁଣ ॥
ମୋହର ବିନତି ଘେନ ନ କର ହେ ରଣ ।
କରିଲେ ଶେଷରେ ନାଥ ହୋଇବ ମରଣ ॥
ଯେଉଁପରି କୁଲକ୍ଷଣ କଲି ଦରଶନ ।
ନିଃସନ୍ଦେହରେ ଅଶୁଭ ଘଟିବଟି ଜାଣ ॥
ଜାଣି ଶୁଣି ରକ୍ଷବର ବେଗେ କାର୍ଯ୍ୟକର ।
ଯେପରି ବିପଦ ତଳେ ନ ହେବ ଅସ୍ଥିର ॥
ଯୁଦ୍ଧ ଇଚ୍ଛା ଯେବେ କରିବ ହେ ରକ୍ଷସାଇଁ ।
ସଗୋଷ୍ଠ ସହିତେ ଆଉ ନ ବଞ୍ଚିବେ କେହି ॥
ରାଜ୍ୟ ଧନ ଦାସ ଦାସୀ ଛାଡ଼ି ରକ୍ଷବର ।
ତଳେ ବିଳମ୍ବ ନ କର ଯାଅ ହେ ସତ୍ୱର ॥
ପର୍ବତ ଗୁହାରେ କିବା ପାତାଳ ଭୁବନେ ।
କିବା ଅନ୍ତରୀକ୍ଷେ ରାଜା ରହ ହେ ଗୋପନେ
ନହେଲେ କେବେହେଁ ଆଉ ରକ୍ଷା ନାହିଁ ବୀର
ଚରଣ ଧରି କହୁଛି ଘେନ ଦାସୀ ଗୀର ॥
ତୁମ୍ଭେ ସୁଖେ ଥିଲେ ଅମ୍ଭେମାନେତ ସୁଖରେ ।
କାଳ ବିତାଇବୁ ଜାଣ ଏହି ସଂସାରରେ ॥
ଏଣୁକରି ଆମ୍ଭ ବାଣୀ ମାନ ନୃପବର ।
କେନ୍ତତବେଳେ ଇଚ୍ଛା କର ନାହିଁ ହେ ସମର
ଗ୍ରହ କୁପିତ ଏକ୍ଷଣି ଜାଣୁଛି ମନରେ ।
ଏଣୁକରି କୁଫଳ ଘଟିବ ଏ ରଣରେ ॥
ବିମାନେ ବିମାନବାସୀ ଯେବେ ରଣରଙ୍ଗ ।
ହୁଅନ୍ତେ ଅଗ୍ନି ତୁମର ନିକଟରେ ଠିକ ॥
ତା ହେଲେ ରାକ୍ଷସ ସ୍ୱାମୀ କେତେବେଳେ ମୁହିଁ ।
ନ କରନ୍ତି ନିଷେଧ ଯେ ନିଶ୍ଚୟ କହଇ ॥
ତୁମ୍ଭବଳ ଭଲରୂପେ ଜାଣିଅଛି ମୁହିଁ ।
ଦେବଦୈତ୍ୟ ତୁମ୍ଭ ଆଗେ ନରହିବେ କେହି
ଶୁଣିଲେ ତୁମର ଗତି ଦେବତା ଶମନ ।
ଆସ୍ଥାନ ତେଜିଣ କରିବେ ସେ ପଳାୟନ ॥
କାଳହନ୍ତା ସହୋଦର ତାହାର ସଙ୍ଗର ।
ନାନାଦେଶ ବୁଲି ରହି ଅଛଇ ଅବର ॥
ଗର୍ବ ଅହଙ୍କାର ଏଥେଁ ନ କର ରାଜନ ।
କୌଶଳ କରିଣ ବଞ୍ଚାଅ ହେ ନିଜ ପ୍ରାଣ ॥
ଛାଡ଼ ରାଜା ଏହି ଦେଶ ଯାଅ ହେ ବେଗରେ
ଏକ୍ଷଣି ପ୍ରବେଶ କର ପାତାଳ ବିବରେ ॥
ଅଥବା ଗିରିଗୁହାରେ ଗୁପତ ଭାବରେ ।
ନିଜ ଜୀବନକୁ ରକ୍ଷାକର ହେ ସତ୍ୱରେ ॥
କିବା କାରେ ନ କହିଣ ଏ ଶୂନ୍ୟପଥରେ ।
ଚଳିଯାଅ କହୁଦୂର ଅତି ଚଞ୍ଚଳରେ ॥
ତା ହେଲେ ଜୀବନରକ୍ଷା ପକ୍ଷରେ ସହଜ ।
ନ ଥିବ ଯେ ଆଉ କିଛି ଅହେ ମହାରାଜ ॥
ବିପକ୍ଷ ଯେ ଚଳିଯିବେ ବଞ୍ଚିବେ ସକଳେ ।
ସବୁଦେଶ ସେହିପରି ରହିବ ନିଶ୍ଚଳେ ॥
କୌଶଳେ କାର୍ଯ୍ୟ ସାଧନ କର ହେ ସହିଧା
ଏତିକି ଉପାୟ ମନେ ହୁଏ ମୋର ଆଶା ॥
ଏପରି ଉପାୟେ ଆଉ ବିଳମ୍ବ ନ କର ।
ଅନ୍ୟ ପଥେ ମନକୁ ନ ଦିଅ ନୃପବର ॥

ଶୁଣି ରାକ୍ଷସୀ ବଚନ ରାକ୍ଷସ ରାଜନ ।
ରକ୍ତିମା ଶରୀର କଲା ଧାରଣ ଲକ୍ଷଣ ॥
ଦନ୍ତ କଡ଼ମଡ଼ କରି ଉଠେ ଶିରଘୂର୍ଣ୍ଣି ।
ଏକାବେଳେ ରସାତଳ ହେବ କି ଧରଣୀ ॥
କଦଳୀ ପତ୍ରର ପ୍ରାୟେ ଦେହ ଥରେ ତାର ।
ରାଗରେ ଜର୍ଜ୍ଜର ହେଲା ରାକ୍ଷସ ଈଶ୍ୱର ।
ଦେଖିଣ ଭୀଷଣ ରୂପ ନିକଟରେ କେହି ।
ଭୟ ବିହ୍ୱଳରେ ନ ପାରିଲେ ଠିଆ ହୋଇ ॥
ଏହିପରି କିଛିକାଳ ହୋଇଲା ଅତୀତ ।
କ୍ରମେ କ୍ରମେ ଶାନ୍ତ ହେଲା ରକ୍ଷକୁଳନାଥ ॥
କେତେବେଳେ ମୃଦୁବାଣୀ ବୋଲେ ବୀରମଣି
ମନଯୋଗ ଦେଇ ଶୁଣ ଗୋ ରକ୍ଷ ରମଣୀ ॥
ଯେଣେ ଦେଖ ଅନାଇଲେ ସର୍ବ ବିଧି ସୃଷ୍ଟି ।
କଉଶଳେ ଜାଲମାଳା ରହିଅଛି ଘୋଟି ॥
ଜଳେ ସ୍ଥଳେ ଉପବନେ ଶୂନ୍ୟେ ଅରଣ୍ୟରେ
ପ୍ରାଣୀ ମାନେ ଭିନ୍ନ ଭିନ୍ନ ଆକୃତିକୁ ଧରେ ॥
ଯେ ଯେତିକ ଭଳି ତାହା ଦଇବ ନିର୍ବନ୍ଧ ।
ମାତ୍ର ନୀଚ କେବେ ହୋଇପାରେ ଉଚ୍ଚ କନ୍ଧ ॥
ସମୁଦ୍ରରେ ଯେତେ ଜଳ ଧରଣ ଅଛଇ ।
ପୁଷ୍କରିଣୀ ସେତେ ଜଳ ଧରି କି ପାରଇ ॥
ପାହାଡ଼ଯେତେକ ଉଚ୍ଚହେଲେ ପୃଥିବୀରେ ।
ପର୍ବତ ସହିତ କେବେ ସମ ନୋହି ପାରେ ॥
ସୃଷ୍ଟିର କାର୍ଯ୍ୟର ତାରତମ୍ୟ ଏହିପରି ।
ଅବଶ୍ୟ ଗୂଢ଼ କାରଣ ଅଛି ଗୋ ସୁନ୍ଦରୀ ॥
ଯେଉଁ ବୃଦ୍ଧି ଗୃହିଣୀର ଗୃହ କାର୍ଯ୍ୟେ ଥାଏ ।
ପୁରୁଷ ଦ୍ୱାରା କି ତାହା କେବେ କରି ହୁଏ ॥
ଯେ ବିଷୟଜ୍ଞାନ ଥାଏ ପୁରୁଷରଠାରେ ।
ନାରୀଠାରେ ଦେଖିବାକୁ ତା କି ମିଳିପାରେ
ଚେଷ୍ଟାକଲେ ବାରମ୍ବାର ରମଣୀର ଭାର ।
ପାଇବାର ବୁଝି ବିଧି ବାଦୀ ଯେ ତହିଁର ॥
ତୁମ୍ଭେ ତ ପାରିବ ନାହିଁ ବୋଲି ବରାଙ୍ଗନେ ।
ସେଥି ପାଇଁ ଭୟ ଜାତ ହୁଏ ତବ ମନେ ॥
କିପରି ସାହସ ବାକ୍ୟ ପଉରୁଷ ଯଶ ।
ଦେଖାଇବ ଦେଶମଧେ ପୁରୁଷଙ୍କ ପାଶ ॥
ପୁରୁଷର ପୁରୁଷାର୍ଥ ଅବଳା ପାଶରେ ।
ଆମ୍ଭେ ମନେକରୁ ଯେବା ବ୍ୟର୍ଥ ହୋଇପାରେ

ନାନାସ୍ଥାନେ ବୁଲିଅଛ ଅଟ ବଡ଼ ଜ୍ଞାନୀ ।
ସମସ୍ତ ବିଷୟ ଜାଣ ତାହା ଆମ୍ଭେ ଜାଣି ॥
ମାତ୍ର ଯାହା ବୋଇଲ ହେ ପଳାଇବା ପାଇଁ
ପୁରୁଷ ହୋଇଣ କେହୁ ଏପରି କରଇ ॥
ଜନେ ତ ମରିବ ଏହା ନିଶ୍ଚୟ ଅଟଇ ।
କେଉଁ କାରଣରୁ ପଳାଇଣ ଯିବ ମୁହିଁ ॥
ଘୋଷିବେ ସଂସାରଜନେ ଅଖ୍ୟାତି ଅମ୍ଭର ।
ବଞ୍ଚିବା ମରଣୁ ବଳି ପଡ଼ିବ ନିକର ॥
ପୁରୁଷ ହୋଇଣ ଯେବେ କେହି ଅମ୍ଭଠାରେ
ଏପରି କହନ୍ତା ସେହି ମରନ୍ତା ସତ୍ୱରେ ॥
ମାତ୍ର ତୁମ୍ଭେ ନାରୀଜାତି ବୋଲି ଏତେବେଳ
ପର୍ଯ୍ୟନ୍ତେ ପ୍ରାଣ ରହିଛି ହୃଦୟରେ ଭାଳ ॥
ବୀର ନାରୀ ନୁହଁ ତୁମ୍ଭେ ବୀରର ଜନନୀ ।
ସେଥିଯୋଗୁ କହିଲ ଏ ଅସମ୍ଭବ ବାଣୀ ।
ଦଅନ୍ତ ମୁଁ ଦଣ୍ଡ ନିନ୍ଦା ହୋଇବ ସଂସାରେ ।
ତେଣୁ ତୋତେ ଛାଡ଼ିଦେଲି ପଳା ଯା ସତ୍ୱରେ
ଧର୍ମଦ୍ରୋହୀ ହୋଇ ତୁହି ପାପରେ ମରିବୁ ।
ଶେଷରେ ଅଶେଷ ନର୍କ ଭୋଗ ତୁ କରିବୁ ॥
ଏ ଦୁଃଖ ଭୋଗିବୁ ତୁହି ଥିବାଯାଏ ପ୍ରାଣ ।
ପ୍ରାଣାନ୍ତେ ନରକେ ନିଶ୍ଚେ ହୋଇବୁ ପତନ ॥
ସମରକୁ ଯେବେ ମୁହିଁ ହୋଇବି ନିରତ ।
କାହିଁ କେ ବୋଲିବ ମୋତେ ଆଜ ରକ୍ଷନାଥ
ଯେଉଁମାନେ ରାକ୍ଷସମାନଙ୍କର ଭୋଜନ ।
ତାଙ୍କ ସଙ୍ଗେ ଯୁଝିବାକୁ ଡରେ ରକ୍ଷରାଣ ॥
ଦେବ ଦାନବ ଗନ୍ଧର୍ବ ଘୋଷିବେ ମୋ ନିନ୍ଦା
ଏଥିରେ କି ଯଶ ମୋର କହ ଗୋ ପ୍ରମଦା ॥
ଏତେହୀନତେଜ ହେଲେ କେ ବୋଲିବ ରାଜା ।
ଅକର୍ମଣ୍ୟ ବୋଲି ବଜାଇବେ ନିନ୍ଦା ବାଜା ॥
ଧିକ ମାନ ନାମ ମୋର ଧିକ ବାହୁ ବଳ ।
ଧିକ ମୋର ରାଜ୍ୟ ଧିକ ସମ୍ପଦ ସକଳ ॥
ଜନ୍ମି ଦୈତ୍ୟକୁଳେ ନାମେ ଖ୍ୟାତ ଭୂମଣ୍ଡଳ ।
ନରେ ଭୟ କଲେ ହସିବ ଯେ ଆଖଣ୍ଡଳ ॥
ଯେବେ ମୁହିଁ ନାରୀବଶେ ରହିବ ଏଠାରେ ।
ସଂସାରରେ କିଏ ମୋତେ ବୀର ବୋଲିପାରେ
ଅକାତରେ ସୈନ୍ୟଗଣ ଘେନି ସଙ୍ଗତରେ ।
ନିଜର ବିକ୍ରମ ଦେଖାଇବି ଜଗତରେ ॥

ନିର୍ଲୋକ ଏକର ହେଲେ କାର ରକ୍ଷା ନାହିଁ ।
ଗର୍ବଭରେ ଏହିପରି ବାକ୍ୟ ମୁଁ କହଇ ॥
ଏଥେ ଯୁଝିବାକୁ ନର ସଙ୍ଗେ ଦିଗପାଳେ ।
ଆସିଲେ ନାଶିବି ମୁହିଁ ସର୍ବେ ଏକାବେଳେ ॥
ଦେଖାଇ ପ୍ରତାପ ତାଙ୍କୁ କେଭେ ନ ଛାଡ଼ିବି ।
ସେମାନଙ୍କୁ ସମୁଚିତ ଫଳ ନିଶ୍ଚେ ଦେବି ॥
ଯେବେ ଅରାତିଙ୍କୁ ମୁହିଁ ନାଶ ନ କରିବି ।
ତେବେ ବୃଥା ଉଗ୍ର ନାମ କପାଇଁ ବହିବି ॥
ଏହି କଥା ସତ୍ୟ ଜାଣ ମୋହର ବଚନ ।
କେତେବେଳେ ଅନ୍ୟଥା ନୋହିବ ତାହାପୁଣ
ବୁଝିଲିଣି ଏତେଦିନେ ବାଞ୍ଛା ହେବ ପୂର୍ଣ୍ଣ ।
ଏଥିତଯାଗୁ ବଡ଼ ଆନନ୍ଦିତ ଅମ୍ଭ ମନ ॥
ଧନ୍ୟ ବିଧାତାର ଦୟା ଘରେ ବସି ମୁହିଁ ।
ବକହନ୍ତା କିବା ତାର ସହୋଦର ଭାଇ ॥
ଦୁହିଁକି ବିନାଶି ପିତୃ ଋଣକୁ ସୁଝିବି ।
ସୈନ୍ୟସହ ଭୀମାର୍ଜ୍ଜୁନେ ବିନାଶ କରିବି ॥
ମୋର ପିତା ଭୀମ ହସ୍ତେ ହୋଇଛନ୍ତି ହତ ।
ସେହିଦିନୁ ପ୍ରତିଜ୍ଞା ମୋ ଅଛଇ ନିଯୁତ ॥
ଯହିଁ ତହିଁ ଦେଖିଲେ ମୁଁ ଭୀମାର୍ଜୁନ ମାରି ।
ପିତୃ ତରପଣ କରି ହେବି ବ୍ରତାଗୁରୀ ॥
କୁହ ତୁମ୍ଭେ ପିତାଶତ୍ରୁ ନୁହେ କି ଫାଲ୍‌ଗୁନି
ଶୁଣିଛି ମୁଁ ଭୀମାର୍ଜୁନ ଏକ ଆତ୍ମା ବେନି ॥
ଅର୍ଜୁନ ବଧିଲେ ଭୀମ ସହଜେ ମରିବ ।
ବିନାଯୁଦ୍ଧେ ମୋର କାର୍ଯ୍ୟ ସଫଳ ହୋଇବ ॥
ଶାସ୍ତ୍ରେ ଏ ବଚନ ଅଛି ବିପକ୍ଷ ବଂଶରେ ।
ଯେ ଥିବ ତାହାକୁ ନାଶ କରିବ ସତ୍ୱରେ ॥
ସେଥିରେ ବହୁତ ଧର୍ମ ଅଛି ଗୋ ସୁନ୍ଦରୀ ।
ତେଣୁକରି କହିଲି ମୁଁ ଆଗରେ ତୋହରି ॥
ଭୀମ ଅର୍ଜୁନ ଯାହାକୁ ସାକ୍ଷାତ କରିବ ।
ସେକ୍ଷଣି ତାହାଙ୍କୁ ନାଶି ରୋଷ ଧୁଆଁଇବ ॥
ପାଣ୍ଡବ ମାରଣେ ଯେବେ ବଞ୍ଚେ କିଛିକ୍ଷଣ ।
ସେଥିରେ ପ୍ରଶଂସା ହେବ ନିଶ୍ଚେ ମୋରଜାଣ
ଯେବେ ସେଥିରେ ନ ପାରେ ବୃଥା ଏ ଜୀବନ
ଧିକ ବଳ ବୀର୍ଯ୍ୟ ମୋର ଧିକ ଉଗ୍ରନାମ ॥
ଏତେକ ବୋଲିଣ ଉଗ୍ର ଅତି ହର୍ଷମନେ ।
ବାହାରିଲା କ୍ରୋଧ ହୋଇ ବିପକ୍ଷ ଦଳନେ ॥

ହନୁମାନେ ଦଣ୍ଡିବାକୁ ବଡ଼ ଗର୍ବମନେ ।
ଘନଘନ ଉଚ୍ଚେ ଡ଼ାକ ଦେଲା ସୈନ୍ୟଗଣେ
ଶୁଣିଣ ରାଜାଙ୍କ ଆଜ୍ଞା ଅନେକ ସଇନ ।
ଅସ୍ତ୍ର ଶସ୍ତ୍ର ସହ ଆସି ମିଳିଲେ ପାଶେଣ ॥
ନିଜ ନିଜ ଇଚ୍ଛାସୁଖେ ବାହନ ଆରୋହି ।
ବାହାରିଲେ ରକ୍ଷସୈନ୍ୟ ସିଂହନାଦ ଦେଇ ॥
ପଙ୍ଗପାଳ ପରି ସୈନ୍ୟ ଚୌଦିଗେ ଶୋଭିତ
ମଧ୍ୟେ ବାଳ ଅର୍କ ପ୍ରାୟେ ଦଶେ ଦୈତ୍ୟନାଥ
ଦିଗ ଅନ୍ଧକାର ହେଲା ଦୃଷ୍ଟି ରୋଧ ହେଲା ।
ସୈନ୍ୟଙ୍କ ପାଦଧୂଳିରେ ଆକାଶ ଘୋଟିଲା ॥
ସୈନ୍ୟ କୋଳାହଳେ ଦିଗ ହୋଇଲା କମ୍ପିତ
ଅସ୍ତ୍ରତେଜ ଦେଖାଯାଏ ଯେହ୍ନେ ଉଲ୍‌କାପାତ
କେହୁ ଗଜେ କେହୁରଥେକେହୁ ବା ପାଦରେ
ବିକଟ ହୁଙ୍କାର କରି ଚଳିଲେ ସତ୍ୱରେ ॥
ଶୂକର ମହିଷେ କେହୁ ବିକଟ ଶରୀରେ ।
ଗମନ କରୁଅଛନ୍ତି ଉର୍ଦ୍ଧ୍ୱେ ନିଶାଚରେ ॥
କେହି ଶୂନ୍ୟପଥେ ଧାଏଁ କେହି ରସାତଳେ
ଯାର ମାୟାରେ ଶଙ୍କିତ ମାନବ ସକଳେ ॥
ହସ୍ତରେ ଖଣ୍ଡା ଧନୁ ତନୁ ବର୍ମାବୃତ ।
ଉର୍ଦ୍ଧ୍ୱାନିକ ତେଜ ଧରି ଧାଆଁନ୍ତି ଦଇତ ॥
କାଳାନ୍ତକ କାଳ ପ୍ରାୟେ ରକ୍ଷ ସୈନ୍ୟଗଣେ ।
କିପରି ଅଦ୍ଭୁତ ସେମାନଙ୍କ ରୂପ ବର୍ଣ୍ଣେ ॥
କିବା ଭଙ୍ଗି ଚମତ୍କାର କି ଅବା ଭୀଷଣ ।
ରୂପ ଦେଖିଲେ ମନରେ ଭୟ ଜାତ ଜାଣ ॥
କାହାର ଦୀର୍ଘ ଜିହ୍ୱା ଲହ ଲହ ପ୍ରଭକ୍ଷଣ ।
କଡ଼ମଡ଼ କରେ ଦନ୍ତ ମେଘ ଗରଜନ ॥
ଶରୀର ରୁଧିରମୟ ଭୟଙ୍କର ଶବ୍ଦ ।
ପଦଭରେ ବସୁଧା ଯେ ଲଭଇ ବିଷାଦ ॥
ଧାଉଁଛନ୍ତି ପଲ ପଲ ନାଚି ଥେଇ ଥେଇ ।
କାଳଫଣୀ ପ୍ରାୟେ ଗରଜନ ଯେ ଶୁଭଇ ॥
ରକ୍ତ ମାଂସେ କ୍ରୀଡ଼ା ପ୍ରୀତ ଜୀବ ହିଂସା ନୀତ ।
ତାଙ୍କର ଭୟେ ଅଥୟ ହୋନ୍ତି ଋଷି ଯତି ॥
ଶୁଣ ଶୁଣ ସୈନ୍ୟଗଣେ ଅମ୍ଭର ବଚନ ।
ମାରି ବେଗେ ଦେବ ଯହିଁ ପାଣ୍ଡବ ଅର୍ଜୁନ ।
ଆସିଅଛି ଯମପୁରେ ବିନାଶ କୌଶଳେ ।
ମୋହର କାର୍ଯ୍ୟରେ ଯତ୍ନ କର ହେ ସକଳେ

ସମସ୍ତେ ଦେଖୁଛନ୍ତି ଏ ସଙ୍କଟ ପଡ଼ିଛଇ ।
ସମୁଚିତ କାର୍ଯ୍ୟ କରିବାକୁ ମୁଁ କହଇ ॥
ଯେଉଁ ଗୂଢ଼ଚରେ ପ୍ରଶ୍ନ ହୋଇବ ରହିତ ।
ଦେଖାଅ ସେ ଗୂଢ଼ଚରଟି ବେଗେ ବିଧିମତ ॥
ଛଳେ ବଳେ କଉଶଳେ ଜୟଲାଭ ଯେମନ୍ତେ ।
ହୋଇପାରେ ତାହାର ଉପାୟ ଚିନ୍ତ ମନେ ॥
ନ କରିଲେ ରକ୍ଷା ନାହିଁ ମାନବ ହାତରେ ।
ପରାଭବ ହେବ ପଡ଼ିଅଛୁ ବିପଦରେ ॥
ଅମ୍ଭ ବଚନାନୁଯାୟୀ ଯମ ସମ ମୂର୍ତ୍ତି ।
ଧରି ଗ୍ରାସ କର ଶତ୍ରୁମାନଙ୍କୁ ଝଟତି ।
ଶତ୍ରୁକୁଳ ନିର୍ମୂଳ କରଣ କ୍ଷୁଧା ନାଶ ।
ପୂର୍ଣ୍ଣ ହେଉ ସମସ୍ତଙ୍କ ସର୍ବ ଅଭିଳାଷ ॥
ତ୍ରୁଟି ନ କରି ଦେଖାଅ ପରତାପ ଘୋର ।
ଯେତେ ଯେତେ ଶକ୍ତିବଳ ଅଛଇ ତୁମ୍ଭର ॥
ତୁଚ୍ଛଜ୍ଞାନ କରି ତାଙ୍କୁ ମାତ ହେ ସମରେ ।
କି ଜାଣି ବିପଦ ପଣ୍ଡାନ୍ତରେ ଘଟିପାରେ ॥
ସେଥିପାଇଁ ଭୟ କରୁଅଛୁ ମନେ ମନେ ।
ଶୁଣ ଶ୍ରେଷ୍ଠ ବଡ଼ ଯେତେ ଅଛ ବୀରମାନେ ॥
ଅମ୍ଭର ବଚନ ଘେନି ସବେ ଏକଚିତ୍ତ ।
ହୋଇ ସଂଗ୍ରାମ ସକାଶେ ହୁଅ ସୁସଜ୍ଜିତ ॥
ଅମ୍ଭର ମଙ୍ଗଳ ହେଲେ ମଙ୍ଗଳ ତୁମ୍ଭର ।
ନୁହଇ ଅନ୍ୟଥା ଏହି କଥା ମନେ କର ॥
ଅମ୍ଭର ଅଶୁଭ ଯେବେ ଘଟିବ କାଳରେ ।
ତୁମ୍ଭମାନଙ୍କ ଦୁର୍ଗତି ହେବ ପ୍ରକୃତରେ ॥
ସମ୍ମୁଖ ସମର କରି ହୋଇଲେ ମରଣ ।
କି ଖେଦ ତହିଁରେ ଯିବ ବଇକୁଣ୍ଠ ସ୍ଥାନ ॥
ତା ନ ହେଲେ ଶତ୍ରୁ ଅମ୍ଭ ସ୍ତ୍ରୀ ଧନ ପ୍ରାଣ ।
ନାରଖାର କରନ୍ତେ ସେ ଯେ ଇଚ୍ଛା ତାଙ୍କର
ତାଙ୍କୁ ବାଧାଦେବ କିଏ କହ ସେହିକ୍ଷଣେ ।
ଏ ଲାଞ୍ଛନା ସହିବ କି ରାକ୍ଷସ ପରାଣେ ॥
ଜନ୍ମିଲେ ମରଣ ଧ୍ରୁବ ବୃଥା ଭୟ ମାନ ।
ତେବେହେଁ ଅମ୍ଭର ମନେ ବଡ଼ ଖେଦ ଜାତ ॥
ବିଧାତା ମନେ କି ଅଛି ଜାଣିବୁ କପର ।
ମାନବ ହାତରେ ପରାଜୟ କି ବିଚିତ୍ର ॥
ଏହାଠାରୁ ଅପମାନ ଅପଯଶଚୟ ।
ଆଉ ଅଧିକରେ କିବା ଅଛି ସୁନିଶ୍ଚୟ ।
ଦେଶବିଶ୍ୱ ନ ମାରିଲେ କଳଙ୍କ ହୋଇବ ।
ଆଉ ରକ୍ଷା ନାହିଁ ଏବେ ମନରେ ଜାଣିବ ॥
ଶୁଣିଣ ରାଜାଙ୍କ ଗୀର ବଡ଼ ବଡ଼ ବୀର ।
ଗରବରେ କହି ଆରମ୍ଭିଲେ ଏ ପ୍ରକାର ॥
ଏତେ କିଙ୍କର ଥାଉଣୁ କିପାଁ ଚିନ୍ତାନ୍ୱିତ ।
ମନରେ ଆଶଙ୍କା ଜାତ କର ନରନାଥ ॥
ଏକ୍ଷଣି ଆଦେଶ ମାତ୍ରେ ସମସ୍ତେ ବେଗରେ ।
ଆରମ୍ଭ କରିବେ ଯୁଦ୍ଧ ଯାଇଣ ସେଠାରେ ॥
ତ୍ରିଲୋକ ହେଲେ ସହାୟ କେବେ ରକ୍ଷା ନାହିଁ
ସମସ୍ତେ ଶତ୍ରୁଙ୍କୁ ବିନାଶିବୁ ନିଶ୍ଚେ ଯାଇ ॥
ଏତେ ବୋଲି ନିଶାଚର ଉଚ୍ଚରବ କଲେ ॥
ଯହିଁ ପାର୍ଥ ଥିଲେ ଘୋର ବେଗେ ଯାଇଁ ହେଲେ
ଦଳବଳେ କଳିକଳା ନାଦ କରି କରି ।
ଦ୍ରୁତପଦେ ଯହିଁ ପାର୍ଥ ତହିଁଟି ଉତ୍ତରି ॥
ହାତେ ଶୂଳ ବାଣ ଜାଠ ଜାଠି ଧରି ପୁଣ ।
ଭିନ୍ଦିପାଳ ପରଶୁ ଇତ୍ୟାଦି ଅସ୍ତ୍ରଗଣ ॥
ଗଦା ନାଗଫାଶ ଶର ଶୋଭେ ନିରନ୍ତର ।
ଘୋର ଭୟଙ୍କର ବେଗେ ସହର୍ଷ ଅନ୍ତର ॥
ବଡ଼ବଡ଼ ରଥୀ ଥିଲେ ଅର୍ଜ୍ଜୁନ ସହିତ ।
କାମଦେବ ଅନୁଶାଲ୍ୱ କର୍ଣ୍ଣବୀର ସୁତ ॥
ନୀଳଧ୍ୱଜ ଯୌବନାଶ୍ୱ ହଂସଧ୍ୱଜ ପୁଣ ।
ସାତ୍ୟକୀ ଆଦି କରଣ ଯେତେ ଯଦୁଗଣ ॥
ଯୁଦ୍ଧେ ସୂର୍ଯ୍ୟତେଜ ରାଜା ଦେଶ ବିଦେଶର ।
ଅସୀମ ପ୍ରତାପ ଥିଲା ଯେଉଁମାନଙ୍କର ॥
ଯୁଦ୍ଧ ଆୟୋଜନ ଦେଖି ଧୀରବର ସନ୍ତୋଷ
ପ୍ରକାଶିବାକୁ ନିଜର ପ୍ରାକର୍ମ ବିଶେଷ ॥
କରିଲେ ବୀରେନ୍ଦ୍ରଗଣ ସିଂହ ଗରଜନା
ରସାତଳେ ବାସୁକି ସେ ଶବ୍ଦେ କମ୍ପମାନ ।
ହିମାଦ୍ରିଶିଖରେ ଥରେ ଦିଗ୍‌ଗଜ ଚମକେ ।
ବାରିନିଧି ସେ ସମୟେ ଉଚ୍ଛୁଳେ ଧମକେ ॥
ପ୍ରଳୟକାଳ ଲକ୍ଷଣ ହେଲା ପ୍ରମାଣିତ ।
ମଧନରେ ସ୍ୱର୍ଗ ମର୍ତ୍ତ୍ୟ ହୋଇଲା କମ୍ପିତ ॥
ବୀରେ ଶରଜାଳେ ମଧ୍ୟାକାଶ ଆଚ୍ଛାଦିଲେ ।
ବାଣବରଷଣେ କ୍ଷାନ୍ତ କେବେହେଁ ନୋହିଲେ
ଦୈବେ କୁତ୍ସିତ ଆକାର ମୁଖ ଚମତ୍କାର ।
ଦେଖିଲା ପାଣ୍ଡବ ସୈନ୍ୟ ପ୍ରାଣୀ ବିଶେଷର ॥

ବିନାଶିବା ପାଇଁ ଅତି ଆନନ୍ଦ ମନରେ ।
ରଣ୍ଡ ଛତ୍ରେ ଲୋଟାଇବାକୁ ଧରଣୀରେ ।'
ପଛେ ଥିଲା ମେଘବର୍ଣ୍ଣ ଘୃବେଗ ସହିତ ।
ଅସି ଉତ୍ତୋଳିଲା ରଣ କ୍ଷେତ୍ରରେ ଭ୍ରମିତ ॥
ଦେଖିଣ ସ୍ୱର୍ଗଜାତଗଣ ବଡ଼ ହର୍ଷମନ ।
ଆପଣାର ମାୟା ଦେହ ବସ୍ତ୍ରରେ ବହନ ॥
କେବେ ଅନ୍ଧକାର ଅଂ କେବେ ସୂର୍ଯ୍ୟୋଦୟ ହେଲା
ଦିବସରେ ରଜନୀର ସଞ୍ଚାର ହୋଇଲା ॥
ରଜନୀରେ ଦିବାକର ଉଦୟ ଆକାଶେ ।
ଦିବାକାଳେ ନିଶା ଅଧିକାର କିବା ଦିଶେ ।
ଆବର ନିଜର କାୟା ମାୟା ପ୍ରକାଶିଣ ।
ସ୍ୱର୍ଗଜାତଙ୍କ ସହିତରେ କରଇ ସେ ରଣ ॥
ଅନୁରୋଧ ନ ମାନନ୍ତି ଅସ୍ତ୍ର ନ ଜାଣିଲା ।
ସେମାନଙ୍କୁ ଯଥାସାଧ୍ୟ ଶକ୍ତି ଦେଖାଇଲା ॥
ପ୍ରଦ୍ୟୁମ୍ନ କର୍ଣ୍ଣ ନନ୍ଦନ ଧନୁ ଟଙ୍କାରିଣ ।
ଶ୍ରେଣୀ ଶ୍ରେଣୀ ଶର ନିକ୍ଷେପିଲେ ତତକ୍ଷଣ ॥
ଅଗ୍ନି ଶିଖା ପ୍ରାୟ ନାନାଦିଗେ କେତେ ଶର
ପତିତ ହୋଇଲା ଦୈତ୍ୟ ସୈନ୍ୟଙ୍କ ଉପର ॥
ମଧ୍ୟେ ମଧ୍ୟେ ସିଂହ ଗରଜନ ଶୁଣାଯାଇ ।
ଘୋର ପରମାଦ କି ଘଟିବ ଅବା ତହିଁ ॥
ଅର୍ଜ୍ଜୁନ ସୈନ୍ୟ ସହିତ ଧାଇଁ ଦୈତ୍ୟଦେତ ।
ମନରେ ଉଦିତ ନ ହୋଇଲା କିଛି ଭୀତି ॥
ଯେତେ କ୍ଷତ୍ରିକୁଳ ଶତ୍ରୁ ଦଳିବାରେ ସାଧ ।
ଗଲେ ସେମାନଙ୍କ ମୁଖେ ନାହିଁଟି ବିଷାଦ ॥
ମାର ମାର ଅନିବାର ସେ ଉଗ୍ର ହୁଙ୍କାର ।
ଶୁଣିଣ କୃତାନ୍ତ ଦେବ ଦେଖେ ଭୟଘୋର॥
ପଶ୍ଚାତେ ଅର୍ଜ୍ଜୁନ ଠିଆହୋଇ ଏତେକ୍ଷଣେ ।
ସ୍ଥିରଭାବେ ବୀରବର ଥିଲେ ସେହି ସ୍ଥାନେ ॥
ଦେଖିଲେ ସାଜେ ପ୍ରଚଣ୍ଡ ଦଇତ ସମାଜ ।
ନିଜେ ଅଗ୍ରସର ହେଲେ ପଣ୍ଡୁଙ୍କ ତନୁଜ ॥
ଘୃଣା ବିବେଚନା କଲେ ସାମାନ୍ୟ ବୋଲିଣ
କି ଜାଣି କିପ ଘଟିବ ଭାବିହେଲେ ମନ ॥
ଏହି ହେତୁ ଅର୍ଜ୍ଜୁନଙ୍କ ସ୍ଥିର ନୋହେ ମନ ।
ଧାବମାନ ହେଲେ ପଣ୍ଡୁ ନନ୍ଦନ ବହନ ॥
ଭୀମ ବେଗେ କାଳାନ୍ତକ କାଳ ପ୍ରାୟହୋଇ।
ବାହାରିଲେ ମାନଧର ତ୍ରିଲୋକ ବିଜୟୀ ॥

ଦେବଦତ୍ତ ଶଙ୍ଖଧ୍ୱନି କରି ଫାଲଗୁନି ।
ସମ୍ମୁଖରେ ଠିଆହୋଇ ରହିଲେ ସେ ପୁଣି ॥
ନାଗ ନର ଭୟଙ୍କର ହାତେ ଧନୁଶର ।
ଯେତେବେଳେ ଭୀମବେଶେ ଧନଞ୍ଜୟ ବୀର॥
ଠିଆହେଲେ ଲୋକଗଣ ମଧ୍ୟରେ ଯେପରି ।
ଦୈତ୍ୟରାଜ ଅର୍ଜ୍ଜୁନଙ୍କୁ ଦେଖି ଭୟଙ୍କର ॥
ଭାବିଲେ ଯଥା ତନୁ ଲୌହ ପରି ଦୃଢ଼ତର ।
ଜଣାଯାଏ ଶରୀର ଯେ ଅଟେ ସେ ପ୍ରକାର ॥
ଏହାର ସମ୍ମୁଖେ ରହିବାକୁ ରଣକରି ।
ରହି ନ ପାରିବେ କେହି ସଇନ ମୋହରି ॥
ଦେଖିଣ ପିନାକପାଣି ଏହିପରି ମନେ ।
କୃଷ୍ଣିନାଶ ଏକାନ୍ତ କାମନା ଅନୁମାନେ ॥
ଅସ୍ମମନେ ହୁଏ ନୁହେ ଏ ନର ସମାନ୍ୟ ।
ଇନ୍ଦ୍ର ଧୂର୍ଜଟି ସମାନ ସମରେ ପ୍ରବୀଣ ॥
ଯାହାହେଉ ରକ୍ଷକୁଳେ ଜାତ ହୋଇକରି ।
ଇଚ୍ଛା ପୂର୍ଣ୍ଣ କରିବୁ ଯେ ବିଶେଷେ ଅସୁର॥
ଲୋକ ବଳବାନ ଜାଣି ମାନନ୍ତି ସକଳେ ।
ଆଜ ଆମ୍ଭେ ଦେଖାଇବୁ ତାହା ଏ ଶଯ୍ୟଳେ ॥
ଯେ ପର୍ଯ୍ୟନ୍ତ ଶରୀରରେ ଥିବ ଅସ୍ମ ପ୍ରାଣ ।
ରଣେ ଭଙ୍ଗ ନ ଘଟିବ କେବେହେଁ କଦାଚନ ॥
ଏଥିରେ ଅଦୃଷ୍ଟେ ଯାହା ଅଛି ନିର୍ଦ୍ଧାରିତ ।
ତାହା କେତେବେଳେ ହୋଇନପାରେ ଖଣ୍ଡିତ
ଏତେକ ଭାବିଣ ବୀର ଜଳଦ ଗର୍ଜ୍ଜୀରେ ।
ସୈନ୍ୟଗଣ ପ୍ରତି ବୋଇଲେକ ଏପରିରେ ॥
ସମ୍ମୁଖେ ଏ ବୀରବର ଦେଖି ଅନୁଚରେ ।
ସର୍ବେ ଭୀତମତ ହୁଅ କେଉଁ କାରଣରେ ॥
ତୁମ୍ଭମାନଙ୍କର ବଳ ବୁଦ୍ଧି ଯେ ସମ୍ପୃଦ୍ଧି ।
ସବୁ ହୋଇଲା କି ବିସ୍ମରଣ ଏ ଅବଧି ॥
ଦେଖି ପଶୁରାଜ ପଶୁଦଳ ମୃଗଶାଳ ।
ସେ କି କେବେ ମନେ ଚିନ୍ତାକରଇ ବିଫଳ ॥
କିବା ସର୍ବେ ଲକ୍ଷକରି ବୋଲି ଦେଖି ମୋତେ
କାହିଁ ପାଇଁ ସଚିନ୍ତିତ ଏଥିର ନିମନ୍ତେ ॥
ଦେଖୁଅଛି ବହୁସୈନ୍ୟ ଚତୁର୍ଦ୍ଦିଗ ଛନ୍ନ ।
ଶର ସହ ରଜ୍ଜୁବେଗେ କରନ୍ତି ବେଷ୍ଟନ ॥
ମନେ ବିବେଚନା କରି ଦେଖ ସର୍ବଜନ ।
ଯତେ ହେଉ ନା ସେମାନେ ତୁଳାରାଶିଜାଣ

ଅନଳ ପବନ ସଙ୍ଗେ ସାକ୍ଷାତ ଯେ କ୍ଷଣ ।
ଲଣ୍ଡ ଭଣ୍ଡ କରେ ପୋଡ଼େ ସମସ୍ତ ଯେସନ ॥
ସେପରି ଅସଂଖ୍ୟ ନରେ ଦେଖିଣ କି ଭୟ ।
ଅନ୍ତରେ ପାଉଛ ତୁମ୍ଭେ ନିଶାଚର ଚୟ ॥
ପ୍ରାଣପଣେ କର ରଣ ତହିଁରେ ପତିତ ।
ହେଲେ ଅପଯଶ ନ ହୋଇବ କଦାଚିତ ॥
ବରଞ୍ଚ ବୀରର ଧର୍ମ କର୍ମ ଜଣାଇଣ ।
ଭୁବନ ମଧ୍ୟରେ ନାମ କରିବ ଗ୍ରହଣ ॥
ରଣେ ଯେହୁ ଧର୍ମଶାୟୀ ସେହୁ ଭାଗ୍ୟବାନ ।
କହ ମୋତେ କେହୁ ହୁଏ ତାହାର ତୁଳନ
ଏତେକ ବୋଲନ୍ତେ ରକ୍ଷେ ଅତି ଆନନ୍ଦରେ
ମଦମତ୍ତଭରେ ଯୁଦ୍ଧେ ଗର୍ଜିଲେ ସକଳେ ॥
ଏକେ ଭୀମ କଳେବର ଉଗ୍ର ଆଜ୍ଞା ଶୁଣି ।
ତେଣୁ କରି ସେମାନେ କରନ୍ତି ସିଂହଧ୍ୱନି ॥
ଏହାପରେ କେତେ ସୈନ୍ୟ କେ କରେ ଗଣନ
ଧାଇଁଛନ୍ତି ବୀରମାନେ ଯୁଦ୍ଧର କାରଣ ॥
ସଙ୍ଗେ ଉପସ୍ଥିତ ଦେଖି ରାଜା ପ୍ରଫୁଲ୍ଲିତ ।
ବୋଇଲେ ଗମ୍ଭୀର ସ୍ୱରେ ବଚନ ଏମନ୍ତ ॥
ଶୁଣ ଶୁଣ ସୈନ୍ୟଗଣ ଆମ୍ଭର ବଚନ ।
ନାଶକର ବେଗେ ଯାଇଁ ପାଣ୍ଡୁ ସୈନ୍ୟଗଣ ॥
ଆସିଅଛୁ ଯମପୁରେ ମରିବାର ପାଇଁ ।
ମାରବେଗେ ଯାଇଁ ତାଙ୍କୁ ଉପ୍ରୋଧ ନ ବହି ॥
ଦେନିପକ୍ଷ ନାନା ବାଣ କଲେ ବରଷଣ ।
କେହି କାହାଠାରୁ ଯୁଦ୍ଧେ ନୁହନ୍ତି ନିଉନ ॥
ଉଗ୍ରବୀର ବୃଷକେତୁ ଯୁଦ୍ଧ ଗୁରୁତର ।
ପରସ୍ପରେ ଶର ବର୍ଷୁଛନ୍ତି ଅନିବାର ॥
ଶ୍ରାବଣ ବରଷା ଜାଣି ପଡୁଅଛୁ ବାଣ ।
କେହୁ କାହାଠାରୁ ଯୁଦ୍ଧେ ନୁହନ୍ତି ନିଉନ ॥
ଶରେ ଶର ଅତିଶୟ ହୁଏ ପରତାଳ ।
ଅଗ୍ନିକଣା ତହିଁ ବାହାରଇ ଅବିରଳ ॥
କ୍ରୋଧେ ଅର୍ଦ୍ଧଚନ୍ଦ୍ର ଧରି ଉଗ୍ର ବୀରବର ।
ବୃଷକେତୁ ଉପରକୁ କରିଲା ପ୍ରହାର ॥
ହସ୍ତରୁ ଛାଡ଼ନ୍ତେ ବାଣ ଉଲ୍କା ସମାନ ।
ତା ତେଜରେ ସୂର୍ଯ୍ୟଦେବ ହୋଇଲେ ନିଉନ
ଯେତେ ପ୍ରତିଅସ୍ତ୍ର କଲା ବୃଷକେତୁ ବୀର ।
ନ ମାନି ଶର ପଡ଼ିଲା ତା ଦକ୍ଷ ହସ୍ତର ॥

ଅଚେତନ ହେଲା ବେଗେ ବୀର କର୍ଣ୍ଣସୁତ ।
ହାହାକାର କଲେ ସୈନ୍ୟ ଦେଖି ଏ ଚରିତ
ଅନୁଶାଲ୍ୱ ବୀର ଦେଖି ଏହାପରି ରଣ ।
ଦିବ୍ୟଶର ସନ୍ଧାନ କରିଲା ତତକ୍ଷଣ ॥
ବୋଇଲାରେ ନିଶାଚର ହୁଅ ଅଗ୍ରସର ।
ଜାଣ ନାହିଁ କାଳସମ ଅଛୁ ଅନୁଶାଲ୍ୱ ॥
ଜୀବନ ଘେନିଣ ଯିବୁ ତ୍ୟାଗକର ଆଶା ।
ଶରଜାଳେ ଭସ୍ମ ଆଜ କରିବି ସହସା ॥
ବଞ୍ଚିବାର ଇଚ୍ଛାଥିଲେ ଅଧୋମୁଖେ ଯାଅ ।
ଦେଶ ଛାଡ଼ି ନିର୍ଜନ କାନନେ ବୁଲୁଥାଅ ॥
ନ ହେଲେ ଆଜରେ ପ୍ରାଣ ଯିବ ତୋ ନିଶ୍ଚୟ
ସୁମରଣା କର ଇଷ୍ଟ ବାନ୍ଧବ ସମୂହ ॥
ଅନୁଶାଲ୍ୱ ବାଣୀ ଶୁଣି ବିକଟାକ୍ଷ ବୋଲେ ।
ଛାର ନର ହୋଇ ଗର୍ବ କରୁ ମୋ ଆଗରେ ॥
ଦୀପ ଅଗ୍ନି ପାଶରେ ପତଙ୍ଗ ଯେଉଁପରି ।
ମରନ୍ତି ସେପରି ବୀର ଯିବୁ ଯମପୁରୀ ॥
ନିଶ୍ଚୟ କହୁଛୁ ଆଜ ନାହିଁ ପରିତ୍ରାଣ ।
ଡ଼ାକ ଆସି ରକ୍ଷାକରୁ ତୋ ବାପ ଅର୍ଜୁନ ॥
ଏତେ ବୋଲି ନିଶାଚର ନେଇ ଧନୁଶର ।
ଗୁଣଦେଇ ପେଷେ ବେଗେ ଭୟଙ୍କର ଶର ॥
ରାକ୍ଷସଙ୍କ ବାଣୀ ଶୁଣି ଅନୁଶାଲ୍ୱ ବୀର ।
କ୍ରୋଧଭରେ ଦେଖାଗଲେ ଯେହ୍ନେ ନାଶକର
ଦୁର୍ଜ୍ଜୟ ରାକ୍ଷସ ଯେତେ ଶର ବରଷିଲା ।
କତୁରୀ ବାଣରେ ଅନୁଶାଲ୍ୱ ତା କାଟିଲା ॥
ବାଣ କାଟି ଖଳ ଖଳ ହସେ ବୀରବର ।
ବୋଇଲା ରାକ୍ଷସ ସ୍ଥିର ହୋଇ ଯୁଦ୍ଧକର ॥
କ୍ରୋଧଭରେ ଅନୁଶାଲ୍ୱ ନିଦାରୁଣ ଶର ।
ତୂଣିରୁ ବାହାର କରି ପେଷିଲା ସତ୍ୱର ॥
ଶର ତେଜେ ଘନ ଘନ ଉଲ୍କାପାତ ହେଲା
ପାତାଳେ ବାସୁକୀ ନାଗ ଫଣା କମ୍ପିଗଲା ॥
ଆସ୍ଥାନ ଛାଡ଼ିଣ ଦେବଗଣ ପଳାଇଲେ ।
ପୃଥିବୀ ପ୍ରଳୟ ହେବ ଅମର ଭାବିଲେ ॥
ଭୂଧର କମ୍ପିତ ହୁଏ ଉର୍ମ୍ମି ସମୁଦ୍ରରେ ।
ପ୍ରଳୟ ଲକ୍ଷଣ ଦେଖାଗଲା ସେ କାଳରେ ॥
ବାୟୁବେଗେ ସେ ବାଣକୁ ଦେଖି ରକ୍ଷବୀର ।
ତଳ ତଳ କରି କାଟି କଲା ଚୂରମାର ॥

ବାଣ ବ୍ୟର୍ଥ ଦେଖି କୋପେ ଅନୁଶାଲ୍ୱ ବୀର
ତୂଣୀରୁ ଅକ୍ଷୟଶର କାଢ଼ିଲେ ସତ୍ୱର ॥
ମନ୍ତ୍ରେ ଅଭିଷେକ କରି କୋପେ ଦେଲେ ଛାଡ଼ି
ବାଣାଘାତେ ରାକ୍ଷସ ପଡ଼ିଲା ମୁହଁ ମାଡ଼ି ॥
ଦରପ ହରାଇ ବୀର ଭୂମିରେ ପଡ଼ିଲା ।
ରାକ୍ଷସ ସୈନ୍ୟରେ ମହା ଆତଙ୍କ ହୋଇଲା ॥
ଚେତ ଜଡ଼ି ବୃଷକେତୁ ରାକ୍ଷସ ବିନାଶେ ।
ଜର ଜର ଅଙ୍ଗ ତାର ଦଶେ ଶରେ ରୋଷେ
ଅନୁଶାଲ୍ୱ ବୀରେ ଚାହିଁ ବୋଲନ୍ତି ବଚନ ।
କ୍ଷାନ୍ତହୁଅ ଅନୁଶାଲ୍ୱ କ୍ଷତ୍ରୀୟ ପ୍ରଧାନ ॥
ତ୍ରିଲୋକେ ତୁମ୍ଭର ପ୍ରାୟ କାହାକୁ ଦେଖେନା
ତୁମ୍ଭର ମହତ୍ତ୍ୱ ଅଦ୍ଭୁତ ଅଟେ ମନା ॥
ରଖ ଅନୁରୋଧ ବାରେ ଯେବେ ମୋର ବୀର
କ୍ଷଣେହେଁ ବିଶ୍ରାମ କର ଯୁଦ୍ଧ ପରିହରି ॥
ତୁମ୍ଭର ଗୁଣ କେବେହେଁ ନୋହିବ ପାଶୋର
ଭ୍ରମି କେତେ ଦେଶ କ୍ଲେଶ ଭୋଗିଲ ସଙ୍ଗର ॥
ତେଜି ଅର୍ଥାସ୍ୱ ସ୍ୱଜନ ସୁହାଗିନୀ ନାରୀ ।
ଭିକାରୀ ପ୍ରାୟେ ବୁଲୁ ପାଣ୍ଡବେ ଅନୁସରି ॥
ବହୁ ଦିନ ଭୋଗୁଅଛ ନ ହେଲା ମେଣ୍ଟଣ ॥
ସଙ୍ଗେ ରହି ଭୋଗକର ବିଷମ କଷଣ ॥
ଅମ୍ଭୀୟ ଜନର ରୀତି ଜାଣ ଭଲ ନୀତି ।
ତବଗୁଣ ସଂସାରରେ ଅକ୍ଷୟ କୀରତି ॥
ମୁହିଁ ଅତି ଅଭାଜନ କରନ୍ତୁ ମାନସ ।
ପ୍ରତିଶୋଧ ନେବାକୁ ରାକ୍ଷସେ ସବିଶେଷ ॥
ତୁମ୍ଭେ ଏବେ ହୁଅ ଶାନ୍ତ ଦୈତ୍ୟମାନଙ୍କର ।
ପ୍ରାଣ ଶେଷ କରିବାକୁ ଅଭିଲାଷ ମୋର ॥
ତୁମ୍ଭେ ଯଦି ମୋର ପ୍ରତି ସ୍ନେହ ନୟନରେ
ନ ଚାହିଁବ ତେବେ ଜାଣ ପ୍ରୟାସ ବୃଥାରେ ॥
ବୃଷକେତୁର ବଚନେ ଅନୁଶାଲ୍ୱ ବୀର ।
ସ୍ଥିର ହୋଇ ରହିଲା ସେ ସମର କ୍ଷେତର ॥
ଏଣେ ରକ୍ଷସେନା ଚେତା ପାଇ ତତକ୍ଷଣି ।
ଅଗ୍ରସର ହେଲେ ପୁଣି ସଂଗ୍ରାମ କାରଣ ॥
ଚକ୍ଷୁକର୍ଣ୍ଣ ନାସିକା କମ୍ପିଲା ରାଗଭରେ ।
କୋପେ ଭୟଙ୍କର ମୂର୍ତ୍ତି ଧଇଲେ ବେଗରେ ॥
ମଧ୍ୟାହ୍ନ ସୂର୍ଯ୍ୟ ପରାୟେ ତେଜ ପ୍ରକାଶିତ ।
ଅଗ୍ରସର ହୋଇବାକୁ କାହାର ସାଧ୍ୟ ତ ॥
ଦେଖି ଅସୁରଙ୍କୁ ଆଗେ ବୀର କର୍ଣ୍ଣସୁତ ।
କ୍ରୋଧଭରେ ଦଶବାଣ ମାଇଲେ ତୁରିତ ॥
ଦେଖୁ ଦେଖୁ ବାଣ ବେଗେ ଶୂନ୍ୟପଥେ ଗଲା
ରାକ୍ଷସ ଉଦରେ ପଡ଼ି ଛିନ୍ନ ଭିନ୍ନ କଲା ॥
ଯେପରି ବୃକ୍ଷ ନିବାରି ସେପରି ସେ ଶର ।
ନିକ୍ଷେପିଲା ଯମ ସମ ବୃଷକେତୁ ବୀର ॥
ସୁରାସୁର ଭୟଙ୍କର ଭୂଚର ଖେଚର ।
ସୈନ୍ୟଗଣ ଦେଖି ସର୍ବେ ହୋଇଲେ କାତର
ସେହି ବାଣେ ରକ୍ଷସୈନ୍ୟ ଗଲେ ଯମାଳୟ
କୁଢ଼ କୁଢ଼ ମଡ଼ା ପଡ଼େ ମେରୁଗିରି ପ୍ରାୟ ॥
ରକ୍ଷକୁଳ ଧୂମକେତୁ ବୃଷକେତୁ ବୀର ।
ବାଣାଘାତେ ରାକ୍ଷସଙ୍କୁ କରିଲା ଅସ୍ଥିର ॥
ନିରନ୍ତର ଜୟ ଜୟ ଶବ୍ଦେ କମ୍ପେ ମହୀ ।
ଧନଞ୍ଜୟ ସୈନ୍ୟ ଅତି ଆନନ୍ଦିତ ହୋଇ ॥
ରାକ୍ଷସର ଅନୁଚର ଥିଲେ ଯେତେ ବୀର ।
ପ୍ରାଣଭୟେ ଛିନ୍ନ ଛିନ୍ନ ହେଲେ ସେଠାବର
ଉର୍ଦ୍ଧ୍ୱଶ୍ୱାସେ ରଣସ୍ଥଳୁ ଛତ୍ରଭଙ୍ଗ ହୋଇ ।
ପ୍ରାଣ ଭୟରେ ଗଲେକ ସକଳେ ପଳାଇ ॥
ହେଲା ସ୍ଥାନ ଶୂନ୍ୟ ଦଶଦିଗ ସେ କାଳେ ॥
ଉର୍ଦ୍ଧ୍ୱଶ୍ୱାସେ ରକ୍ଷସୈନ୍ୟ ପଳାଇଲେ ଡରେ ।
ଅର୍ଜ୍ଜୁନଙ୍କ ସୈନ୍ୟ ତାଙ୍କ ପଛେ ଗୋଡ଼ାଇଲେ
ଉତ୍ପ୍ରୋଧ ଉପେକ୍ଷି ବେଗେ ଶର ପ୍ରହାରିଲେ ॥
ଶରଜାଲେ ତତକ୍ଷଣେ କଲେ ଆଚ୍ଛାଦନ ।
ଅତି ଆନନ୍ଦ ମନରେ ଅର୍ଜ୍ଜୁନଙ୍କ ସୈନ୍ୟ ॥
ସୈନ୍ୟଙ୍କର ଉଗ୍ରମୂର୍ତ୍ତି ଅସ୍ତ୍ରଙ୍କର ତେଜ ।
ଦେଖିଣ ପ୍ରାଣ ଭୟରେ ରାକ୍ଷସ ସମାଜ ॥
ପ୍ରାଣରକ୍ଷା ପାଇଁ ନ ଦେଖିଣ ଉପାୟକୁ ।
ସାହସେ ରାକ୍ଷସ ଗଣ ଫେରିଲେ ଯୁଦ୍ଧକୁ ॥
ଗିରିବର ସମ ନିଜ ଦେହକୁ ଫୁଲାଇ ।
ମାଡ଼ି ବସିଲେ ରାକ୍ଷସେ ସମରର ପାଇଁ ॥
ଯଥାସାଧ୍ୟ ନିରନ୍ତର କରନ୍ତି ସମର ।
ଉଇରେ ଶୁଭଇ ଶବ୍ଦ ବେଗେ ମାର ମାର ॥
ଦେବପକ୍ଷ ସୈନ୍ୟଗଣ ଯୁଝି ସାହସରେ ।
ନିରନ୍ତର ଶରବୃଷ୍ଟି କରନ୍ତି ସେଠାରେ ।
କେତେ କେତେ ବେଳେ ବୃକ୍ଷମାନ ବରଷିଣ
କରୁଛନ୍ତି କେବେ ପୁଣି ପାଷାଣ କ୍ଷେପଣ ॥

କେବେ ଦିବ୍ୟ ମାୟାଧରି କାୟା ଆପଣାର ।
ଲୁଚାଇ କେବେ ବା ଦୃଶ୍ୟ କେବେ ଗୋପନର
ଏହିପରି କରି ରଣ କ୍ରମଶଃ ପଡ଼ିଲ ।
ହୋଇଲେ ରାକ୍ଷସକୁଳ ସଇନ ସମସ୍ତ ॥
ମାନବ ସଂଗ୍ରାମେ ସର୍ବେ ପରାଭବ ପାଇ ।
ଜୀବନେ କେବେ ପଡ଼ିଲେ ମୃତ୍ୟୁଭାବ ବହି ॥
ସମୁଦ୍ର ଲହରୀ ସମ ରାକ୍ଷସଙ୍କ ସୈନ୍ୟ ।
ମାଡ଼ି ଆସିବାରୁ ଦେଖି କୋପେ ହନୁମାନ ॥
ମୁଖେ ଜୟରାମ କହି କୁତୂହଳୀ ହୋଇ ।
ରଥରୁ ଓହ୍ଲାଇ ବୀର ଅଧର କମ୍ପାଇ ॥
କ୍ରୋଧେ ହନୁମାନ ନିଜକାୟା ବଢ଼ାଇଣ ।
ରାକ୍ଷସ ସୈନ୍ୟରେ ମାଡ଼ି ପଡ଼ିଲା ବହନ ॥
ଦେନି ଭୁଜେ ଦରାଣ୍ଡି ଧରଇ ଦଶ ବଂଶ ।
ମରରେ ରାକ୍ଷସ ବୋଲି ହୁଅଇ ହରଷ ॥
ପଦାଘାତେ କେତେ ସୈନ୍ୟ ମର୍ଦ୍ଦନ କଲା ।
ଲାଙ୍ଗୁଡ଼େ ଗୁଡ଼ାଇ କେତେ ପିଟିଣ ମାଇଲା ॥
ନାଶିଣ ଅସଂଖ୍ୟ ସୈନ୍ୟ ଗଣନା କେ କରେ
ମହା ଆତଙ୍କ ପଡ଼ିଲା ରାକ୍ଷସ ସୈନ୍ୟରେ ॥
ଏତିକରେ କ୍ଷାନ୍ତ ନୋହି ପୁଣି କ୍ରୋଧେ ମାରେ
ଅସଂଖ୍ୟ ରାକ୍ଷସ ମୁଣ୍ଡ ମୋଡଇ ସେଠାରେ ॥
ହନୁମାନ ମୁଖ ଦେଖି ଦୁର୍ଜୟ ରାକ୍ଷସ ।
ବାସଭଗ୍ନ ପକ୍ଷୀ ପ୍ରାୟ ଲଭିଲେ ତରାସ ॥
ସୈନ୍ୟଙ୍କ ନାଶ ଦେଖିଣ ଦୈତ୍ୟକୁଳପତି ।
ଉଗ୍ରତେଜା ଉଗ୍ରନାମ ବହୁଛି ସେ ଅତି ॥
ଭୟରେ ଯୁଦ୍ଧ ଭୂମିରୁ ପଳାଇଣ ଗଲା ।
ମାୟାରେ ତପସ୍ୱୀ ରୂପ ତହିଁ ସେ ଧଇଲା ।
ଦିବ୍ୟମାୟା ପ୍ରକାଶିଲା ରାକ୍ଷସ ରାଜନ ।
ଅବସନ୍ତେ ବସନ୍ତ ବହିଲା ସେହି ସ୍ଥାନ ॥
ଷଡ଼ଋତୁ ଆବିର୍ଭାବ ସେସ୍ଥାନେ ହୋଇଲା ।
ମନୋହର ଲତାକୁଞ୍ଜେ କୁସୁମ ଫୁଟିଲା ॥
ଫୁଲର ଆମୋଦେ ଦିଗ ଚହଟି ଉଠଇ ।
ଗୁଞ୍ଜୁ ଗୁଞ୍ଜୁ ଶବ୍ଦକରି ଭ୍ରମର ବୁଲଇ ॥
ଦୂତ ଯେ ଚନ୍ଦନ ଅଧି ଗନ୍ଧ ଆମୋଦରେ ।
ନନ୍ଦନ କାନନ ସମ ନୋହିବ ତା ତୁଲେ ॥
ସାରି ଶୁକପକ୍ଷୀ ମୃଗ ସମ୍ବର ହରଷେ ।
ତଳେ ହଂସା ନାହିଁ କ୍ରୀଡ଼ାକରନ୍ତି ସେ ସ୍ଥାନେ
ହିଂସା ଦ୍ୱେଷ କପଟତା କାମ ମୋହ ଆଦି ।
ଦେଖା ନ ଯାଏ ସେ ସ୍ଥାନେ ସମ୍ପାଦନ୍ତି ବିଧି
ଯୋଗବଳେ ଫଳଫୁଲେ ପୁଷ୍ପ ସୁଶୋଭିତ ।
ପାଦପ ନିକର କରଛନ୍ତି ଶିର ନତ ॥
ବିକଟ ଗର୍ଜନ ହିଂସ୍ରଜନ୍ତୁ ଆଦି କେହି ।
ପାପ ତାପ ସେମାନଙ୍କ ହୃଦେ ଛୁଇଁ ନାହିଁ ॥
'ଦେଖିଲେ ବିସ୍ମୟ ଜାତ ମନେ ସହଜରେ ।
ମଜ୍ଜିଯାଏ ଧନ୍ୟ ସେହି ରାକ୍ଷସ ମାୟାରେ ॥
ଏଣେ ପାର୍ଥ ସୈନ୍ୟ ଜୟୋଲ୍ଲାସେ ମତ୍ତହୋଇ
ଅସୁର ଜିଣିଣ ସର୍ବେ ଗଲେକ ପଳାଇ ॥
ମାୟାବି ସ୍ଥାନେ ଯାଇଣ ରଥ ବାଦ୍ୟମାନ ।
ଦେଖି ସରବେ ହୋଇଲେ ସମ୍ପ୍ରୀତ ସେକ୍ଷଣ ॥
ଭାବିଲେ ଘୋର କାନନେ କେଉଁ ଋଷିବର ।
ନିର୍ଜନ ବନରେ ତପ କରନ୍ତି ଏଠାର ॥
ଦେଖି ନାହିଁ ନେତ୍ର ଏହିପରି ରମ୍ୟସ୍ଥାନ ।
ଧନ୍ୟ ଋଷିବର ଯୋଗେ ହୋଇଛନ୍ତି ମଗ୍ନ ॥
କିବା ତାଙ୍କ ଅଭିପ୍ରାୟ ବୁଝି ପାରିବାକୁ ।
ଅତଏବ ଶ୍ରଦ୍ଧା ଜାତ ଦେଖିଣ ତାହାଙ୍କୁ ॥
ତୃପ୍ତିମଧ୍ୟେ ମନ ମଧ୍ୟେ ହୁଅଇ ବିଚାର ।
କି ଅପୂର୍ବ ତେଜ ଧରିଛନ୍ତି ଋଷିବର ॥
ଚରଣେ ପ୍ରଣାମ କରି ମନୋବାଞ୍ଛା କହି ।
ସୈନ୍ୟସହ ବେଗେ ଏଥୁ ଯିବାକ ପଳାଇ ॥
ତାଙ୍କ କଲ୍ୟାଣରେ ଆମ୍ଭ ସର୍ବ ଜୟହେବ ।
ସକଳ ବିପଦ ଯିବ ଅଶୁଭ ନାଶିବ ॥
ଏତେବୋଲି ସର୍ବେ ଗଲେ ହୋଇ ଆନନ୍ଦିତ
ସେମାନଙ୍କ ଆଗେ ଚଳନ୍ତି ଯେ ପାଣ୍ଡୁସୁତ ॥
ଋଷିଙ୍କ ନିକଟେ ଯାଇ ପ୍ରବେଶ ହୋଇଲେ ।
ସୈନ୍ୟ ସହିତ ଅର୍ଜ୍ଜୁନ ଚରଣେ ପଡ଼ିଲେ ॥
ଉଠି କୃତାଞ୍ଜଳି ହୋଇ ବୋଲନ୍ତି ବଚନ ।
ଆଶୀଷ କରନ୍ତୁ ଋଷି ଯିବୁ ଅନ୍ୟସ୍ଥାନ ॥
ସମ୍ମୁଖେ ଦେଖିଣ ବୋଲେ ମାୟା ଋଷିବର ।
ପ୍ରୀତହେଲୁ ବଡ଼ଭାଗ୍ୟ ଆଜ ତ ଆମ୍ଭର ॥
ଆଶ୍ରମେ ଆସିଛ ଯେଣୁ ଆମ୍ଭେ ଧନ୍ୟ ହେଲୁ ।
ଏତେ ଦିନେ ଅତିଥିକୁ ନୟନେ ଦେଖିଲୁ ॥
ଜପ ତପ ଯଜ୍ଞ ମୋହଠାରୁ ଶ୍ରେଷ୍ଠତର ।
କହନ୍ତି ବ୍ରହ୍ମା ଅଟେ ଅତିଥି ସତ୍କାର ॥

ରସନା ତୃପ୍ତି ସାଧକ ସ୍ୱନଗର ବାସୀ ।
ତୁମ୍ଭେମାନେ ଅଟ ସୁଖଭୋଗ ଅଭିଳାଷୀ ।
ନାନାବିଧ ଉପଭୋଗରେ ସର୍ବଦା ସଂଯୋଗ ॥
ଯେତେ କିଛି ସର୍ବ ଆସ୍ୱାଦନର ସୁଯୋଗ ।
ଆମ୍ଭେମାନେ ପ୍ରକୃତରେ ଅଟୁ ବନବାସୀ ।
ଯାହା ପାଉ ତାହା ଖାଉ ନୋହୁ ଜୀବଦ୍ୱେଷୀ ।
ବନ୍ଧୁପ୍ରାୟ ସେବା ଯେବା କରେ ଅତିଥିରେ ।
ଦୋଷ କିଛି ନ ଥାଇ ପ୍ରଶଂସା ଜଗତରେ ॥
ଧ୍ୟାନଯୋଗେ ଏ ବିଷୟ ଆମ୍ଭର ମନରେ ।
ଏ ଚିନ୍ତା ଉଦିତ ହେଉଥିଲା ନିରନ୍ତରେ ॥
ଅତିଥି ସତ୍କାର ନୋହିବାରୁ ମୋ ମଠରେ ।
ଚିତ୍ତ ସଦା ବ୍ୟସ୍ତଥିଲା ଏହି କାରଣରେ ॥
ଜାଣି ମୋର ମନଭାବ ଦୟାମୟ ହରି ।
ପଠାଇ ଦେଇଅଛନ୍ତି ତୁମ୍ଭଙ୍କୁ ଏ ପୁରୀ ॥
ରଖିବାକୁ ଅତିଥିର ଧର୍ମ ଆମ୍ଭ କର୍ମେ ।
ସୁଯୋଗେ ମିଳିଲ ଆସି ତୁମ୍ଭେ ଏହିସ୍ଥାନେ ॥
ଶୀଘ୍ର ସ୍ନାନକରି ବେଗେ ଜଳଯୋଗ କର ।
ଏତିକି ମାତ୍ରକ ଅନୁରୋଧ ଯେ ଆମ୍ଭର ॥
ଜୟଲାଭ ହେବ ରକ୍ଷାକଲେ ଆମ୍ଭ ଗୀର ।
ବିଳମ୍ବ ନ ସହେ କିପାଁ ଭାବତ ଅନ୍ତର ॥
କାଲିଠାରୁ ଏକାଦଶୀ ଅଛୁ ଉପବାସୀ ।
ଅତିଥିଙ୍କୁ ଭୋଜନ ଦେବାକୁ ଅଭିଳାଷୀ ॥
ଅତିଥି ଭୋଜନ ପରେ ଆମ୍ଭେ ଜଳପାନ ।
କରିବୁ ଏ କଥା ସତ୍ୟ ଜାଣ ହେ ସୁମନ ॥
ତୁମ୍ଭେ ଭୋଜନ କଲେ ଯେ ବ୍ରତ ମୋ ସଫଳ
କିପାଁଇ ବିଳମ୍ବ କର କୁହ ହେ ଚଞ୍ଚଳ ॥
ନିଜ ଆତ୍ମାର ମଙ୍ଗଳ ଅନ୍ୟ ଉପକାର ।
କରିବା ପାଇଁକି କିପାଁ ଭାବତ ଅନ୍ତର ॥
ଶୁଣି ତାହାଙ୍କ ବଚନ ପାର୍ଥ ବୀରବର ।
ବୋଇଲେ ସଂଯମ ପ୍ରତି ବିନୟ ଉତ୍ତର ॥
ଗୁରୁତର କାର୍ଯ୍ୟେ ଆସି ଗୁରୁ ଆଦେଶରେ ।
ଭୁଲିଅଛି ଦେଖି ମୁହିଁ ପ୍ରତି ଦିବସରେ ॥
ଯାହା କି ଭୋଗ କାମନା ସର୍ବ ବିଡ଼ମ୍ବନା ।
ଗୁରେ ତୁମ୍ଭେ ଶୁଣ ମୋତେ ଏହା ଅଛି ଜଣା
ହେ ମହାତ୍ମା ଯେ ପର୍ଯ୍ୟନ୍ତ ନ ହୋଇଛି ଯାଗ
ମୁହିଁ ବିଶେଷ ଅକ୍ଷମ ଜାଣ ମହାଭାଗ ॥

ଏଥି ପାଇଁ ଜଳପାନେ ମୋର ଇଚ୍ଛା ନାହିଁ ।
କାଳେ ଆମ୍ଭ ବ୍ରତ ଗୋଟି ଭଗ୍ନ ହୋଇବଇଁ ॥
ସେହି କାରଣରୁ ମୁହିଁ ଅନୁରୋଧ କରେ ।
ଆପଣଙ୍କ ଉପରୋଧ ରଖିଣ ନ ପାରେ ॥
ଆହାର ବିନା ଯାହା ଉଚିତ ଋଷି ମୋତେ ।
ସାଧ ଅନୁସାରେ ତାହା କରିବ ତୁରିତେ ॥
ଅର୍ଜୁନଙ୍କ ବାଣୀ ଶୁଣି ବୋଲେ ମାୟାଯତି ।
ବିନୟ କରିଣ ବୋଲେ ଶୁଣ ହେ ଧୀମତି ॥
ପ୍ରକାଶ କରିଣ ସର୍ବ କୁହ ହେ ଯତନେ ।
ମୁକ୍ତଭାବେ ଜଣାଇଲେ ପାଣ୍ଡୁର ନନ୍ଦନେ ॥
ଶୁଣି ଋଷି ବୋଇଲେ ଯେ ଅଦ୍ୱିତୀୟ ବୀର ।
ଶିକ୍ଷା ଦୀକ୍ଷା ଗୁଣେ ତୁମ୍ଭେ ଅଟ ବଳୀୟାର ॥
ଦେବ ଦ୍ୱିଜଭକ୍ତ ତୁମ୍ଭେ ପରହିତେ ରତ ।
ଦୟା ଧର୍ମ ଆଦି ସର୍ବ ଗୁଣରେ ଭୂଷିତ ॥
ଦେଖିଣ ଆକୃତି ତବ ମନରେ ଆମ୍ଭର ।
ସ୍ଥିର ତର ଅଛୁ ତୁମ୍ଭେ ଅଟ ଗୁଣାଧାର ॥
ମନ ଭଲ ହୁଏ ଯାର ସୁଖଟି ତାହାର ।
ନ ଥାଏ ସନ୍ଦେହ କିଛି ଏଥିରେ ନିଜର ॥
ତ୍ରିଲୋକେ ସମାନ ଯଶ ବୃଦ୍ଧିହିଁ ତାହାର ।
ନିରନ୍ତର ସିଦ୍ଧି ହୁଏ ସର୍ବକାର୍ଯ୍ୟ ତାର ॥
ରମାପତି ସଦା ଥାନ୍ତି ତାହାର ସଙ୍ଗରେ ।
ଶାସ୍ତ୍ରର ବଚନ କେହୁ ଅନ୍ୟଥା ବା କରେ ॥
କରୁଅଛୁ ଆଶୀର୍ବାଦ ଭାବନା କିମ୍ପାଇ ।
ନିଶ୍ଚେ ଯଜ୍ଞ ପୂର୍ଣ୍ଣ ହେବ ଚିନ୍ତାକର ନାହିଁ ॥
ଏତେକାଳ ତପକରି ଯେ ସୁକୃତ ଯୋଗ ।
ସେଥିରେ କିପାଁ ବାଧା ଦେଉଛ ମହାଭାଗ ॥
ତୁମ୍ଭଙ୍କୁ କଲ୍ୟାଣ କରୁଅଛି ଅକାତରେ ।
ମୋ ବାକ୍ୟେ ସର୍ବ ବିପଦ ଯିବ ଯାଉ ଦୂରେ
କିଛି ବିପଦ ନ ହେବ ପ୍ରଭୁଙ୍କ କୃପାରେ ।
ବିଘ୍ନ ବାଧାମାନ ଅବସାନ ହେବ ତୋରେ ॥
ଋଷି ବାକ୍ୟ ମିଥ୍ୟା ନୁହେ ଶୁଣ ଅରଜୁନ ।
ସୁଖେ ଜଳପାନ କର ଦୁଃଖ କି କାରଣ ॥
ଯେଉଁମାନଙ୍କର ଆଶୀର୍ବାଦରେ କଷଣ ।
ଦୂର ହୋଇ ବଳ ଯଶ ହୁଅଇ ବର୍ଦ୍ଧନ ॥
ତାଙ୍କ କଥା ଅନୁଯାୟୀ କୌଣସି ପ୍ରକାରେ ।
ସନ୍ଦେହ ନ କର ପାର୍ଥ ଜାଣ ହେ ମନରେ ॥

ତୁମ୍ଭେ ଅତି ଗୁଣବାନ ଲୋକଙ୍କ ମଧ୍ୟର ।
ଯୋଗବଳେ ଜାଣେ ମୁହିଁ ଶୁଣ ଅହେ ବୀର ॥
ସୁମେରୁ ଯେବେ ବା ଘୁଞ୍ଚେ ଚନ୍ଦ୍ରସୂର୍ଯ୍ୟନାଶେ
ଯେବେ ପଦ୍ମ ପରବତ ଶିଖରେ ବିକାଶେ ॥
ଜନ୍ମାନ୍ଧ ଯେବେ ନୟନେ ଦେଖଇ ସକଳ
ତେବେ ଅମ୍ଭ ବାକ୍ୟ କେବେ ନୋହିବ ବିଫଳ
ଈଷ୍ଟମନ୍ତ୍ର ଆରାଧନା ତପସ୍ୟାର କ୍ଲେଶ ।
ଏତେ ଯେ ସହିଲୁ ଚିରକାଳ ସବିଶେଷ ॥
ସମସ୍ତ କି ବ୍ୟର୍ଥ ହେବ ବ୍ରହ୍ମାଣ୍ଡ ବିନାଶ ।
ଏହା ତୁମ୍ଭେ ଭାବୁଅଛ ଜଞ୍ଜାଳ ବିଶେଷ ॥
ଯେଉଁ ଋଷିମାନେ ଯୋଗବଳେ ଅସମ୍ଭବ ।
ସମ୍ଭବ କରନ୍ତି ତୁମ୍ଭେ ଜାଣ ତ ପାଣ୍ଡବ ॥
ସେମାନଙ୍କ ବାକ୍ୟ କେବେ ଦେଖିଅଛ ବ୍ୟର୍ଥ
ଶୁଣିଅଛ କେବେ କାହା ତୁଣ୍ଡରୁ ହେ ପାର୍ଥ ॥
ଋଷିବାକ୍ୟ ଶୁଣି କିପାଁ ଏତେ ଦୁଃଖ ମତ ।
ସେ ସବୁ ଛାଡ଼ିଣ ପାଳ ଅମ୍ଭର ଉକତ ॥
ଏହିପରି ବାଣୀ ଶୁଣି ପାଣ୍ଡବ ସୁନ୍ଦର ।
ମନମଧ୍ୟେ ଚିନ୍ତା କଲେ କାରଣ ଏହାର ॥
ଯେପରି ସୁମିଷ୍ଟ କଥା କହୁଛନ୍ତି ଏହି ।
ମନ ମଧ୍ୟେ ମୋର କିପାଁ ସନ୍ଦେହ ଜନ୍ମଇ
ଋଷିତୁଲ୍ୟ ବ୍ୟବହାର କଥା କହିବାରେ ।
ଅମ୍ଭ ପ୍ରତି ଅମୃତର ଧାରା ସଦା ଝରେ ॥
ଅବଶ୍ୟ ଏହାର ଗୂଢ଼ କାରଣ ଅଛଇ ।
ପରେ ପାଇବ କଷଣ ସନ୍ଦେହ ଲାଗଇ ॥
ବାହ୍ୟେ ସାଧୁ ଜ୍ଞାନ ହୁଏ ମାତର ମନରେ ।
କପଟ ଥିଲା ପରାୟେ ଜଣାଯାଏ ମୋରେ ॥
କନ୍ଦମୂଳ ଫଳ ଭୋଜି ମିଥ୍ୟା ସଂସାରର ।
ଭୋଗ ତେଜିଅଛୁ କିପାଁ ଭାବେ ମୁଁ ମନର ॥
ମୋର ପ୍ରତି ଗୃହେ କିପାଁ ଏହି ଅନୁକ୍ଷଣେ ।
ଏ ହେତୁ ସନ୍ଦେହ ଜାତ ହେଉଅଛି ମନେ ॥
ମୁଖରେ ବଡ଼ ମଧୁର ହୃଦେ ହଳାହଳ ।
ଦୃଢ଼ଥାଏ ଏ ସ୍ୱଭାବ ଅଟେ ତସ୍କରର ॥
ପ୍ରକୃତରେ ଯେବେ ଏହି ଋଷି ହୋଇଥାନ୍ତା ।
କିପାଁଇ କରନ୍ତା ମୋତେ ଏତେ ଯେ ବାଧତା
ମୁନି ଯେବେ ହୋଇଥାନ୍ତା ମୋହର ବାକ୍ୟରେ
ରାଜି ହୋଇ ହର୍ଷେ ଆଜ୍ଞା ଦଅନ୍ତା ଯିବାରେ ॥

ଯାଗ କଥା ଶୁଣି ହର୍ଷେ କଲ୍ୟାଣ କରଣ ।
ବିଦାୟ ଦଅନ୍ତା ବାଧ କରେ କି କାରଣ ॥
ଏପରି କହୁଣ ମିଛ ବାକ୍ୟ କହି ମୋର ।
କାହିଁ କିପାଁ ବାଧା ଦଏ ଭାବିତ ଅନ୍ତର ॥
ଏଥୁ ଜଣାଯାଏ ଏହୁ ସନ୍ନ୍ୟାସୀ ନୁହଇ ।
ଦୈତ୍ୟପତି ମାୟା କରିଅଛି ମୁନି ହୋଇ ॥
ଯାହା ହେଉ ବୀର ଦର୍ପ ଦେଖାଇବି ଥରେ ।
ମୁନି ହେଲେ ନ ଟଳିବ ମୋହର ବାକ୍ୟରେ
ରାକ୍ଷସ ହୋଇଥିଲେ ସେ ମନେ ଭୟ କରି ।
ମୁନିର ସ୍ୱରୂପ ଛାଡ଼ିବ ଏ ଦୁରାଗ୍ରହୀ ॥
ଏତେକ କହିଣ ପାର୍ଥ ହୋଇ କୋପମତି ।
ସଗର୍ବେ ବୋଇଲେ ଶୁଣ ଅହେ ମହାଯତି ॥
ପାର୍ଥ ପାଖେ ଛଳନା କି କେହୁ କରି ପାରେ ।
ଠକାଇବା ପାଇଁ ଆସିଅଛ ଏହି ଠାରେ ॥
ଏସନ କହନ୍ତେ କୋପେ ପାର୍ଥ ଧନୁର୍ଦ୍ଧର ।
ରାକ୍ଷସର କଳେବର ଭୟେ ଥରହର ॥
ଦେଖିଣ ଏସନ ରୀତି ଇନ୍ଦ୍ରଙ୍କ କୁମର ।
ବିଜୟ ଗାଣ୍ଡିବେ ଶର ଯୋଖିଲେ ସତ୍ୱର ॥
କୋପେଣ ଗର୍ଜିବୋଇଲେ ଅରେରେ ପାଷାଣ୍ଡ
ଅର୍ଜ୍ଜୁନ ଆଗରେ ତୁହି ଦେଖାଉଛୁ ଭଣ୍ଡ ॥
କେ ବଞ୍ଚିବ କହ ଶୁଣି ନାହୁଁ ତୁ କର୍ଣ୍ଣରେ ।
ଅର୍ଜ୍ଜୁନକୁ ପ୍ରତାରଣ ଜଗତ ମଧ୍ୟରେ ॥
ବ୍ରାହ୍ମଣ ମୂରତି ଧରି କୁଫାନ୍ଦ ପାତିଲୁ ।
ଶେଷରେ ମୋହର ଶରେ ପରାଣ ତୁ ଦେଲୁ
ଇନ୍ଦ୍ରଚନ୍ଦ୍ର ବାୟୁ ଯମ ମୋର ପରାକ୍ରମ ।
ସମସ୍ତେ ଜାଣନ୍ତି ମୋତେ ବଧିବୁ ଅଧମ ॥
ଜାଣିନାହୁଁ କାଳଦେବ ପରେ ମୁହିଁ କାଳ ।
ଏବେ ନିଶ୍ଚିନ୍ତେ ଚଳ ତୁ ଶମନର ଆଳ ॥
ଶୃଗାଳ ଯେପରି ଆପଣାର ନାଶ ପାଇଁ ।
ପଶୁରାଜ ସିଂହ ସଙ୍ଗେ ବିବାଦ କରଇ ॥
କେ ରଖିବ ତୋତେ ଆଜି ଏ ତିନି ଭୁବନେ
ଇଷ୍ଟକୁ ସୁମରି ଆଜି ଯିବୁ ଯମ ସ୍ଥାନେ ॥
ଗାଣ୍ଡିବ ବିମୁକ୍ତ ଶରେ ସର୍ବ ସୁର ନରେ ।
ଭୟେବେ କମ୍ପି ଉଠନ୍ତି ପୁଣି ଚରାଚରେ ॥
ପାଣ୍ଡବେ ହିଂସା କରିଣ ହେଲୁ ଧର୍ମ ଅରି ।
ମରଣକୁ ସ୍ୱଇଚ୍ଛାରେ ଆଣିଲୁ ତୁ ବରି ॥

ଏକ୍ଷଣି ଶରେ ମରିବୁ କେ ନିସ୍ତାର କରେ ।
ଆଜ ନିଦ୍ରା ଯିବୁ ତୁ ଅନନ୍ତ ଶୟନରେ ॥
ସ୍ୱଜନ ବାନ୍ଧବ ତେଜ ପୁଣି ଯମାଳୟ ।
ଯିବୁ ଏକ୍ଷଣିରେ ବୀର ନାହିଁକ ସନ୍ଦେହ ॥
ସାଧୁଙ୍କୁ ଠକାଇ ଯାହା କଲୁ ମନ୍ଦ କାର୍ଯ୍ୟ ।
ଏକ୍ଷଣି ପ୍ରାଣେ ମରିବୁ ହେଲୁ ଏ ନିଧାର୍ଯ୍ୟ ॥
ଏତେ ବୋଲି ଧନଞ୍ଜୟ ଗାଣ୍ଡିବ ଘେନିଲେ ।
ଉଗ୍ର ବୀର ଦେଖି ତାହା ଅତି ଭୟକଲେ ॥
ଭାବେ ଦୁଷ୍ଟ ମନେ ମନେ କି ବୁଦ୍ଧି ଏକ୍ଷଣ ।
ପାର୍ଥ ସମ୍ମୁଖରେ ମାୟା କରିବି କି ପୁଣ ॥
ମୁକତି ମୋ ନାହିଁ କେହ୍ନେ ରକ୍ଷା ପାଇବଇଁ ।
ଆଜ ତ ନାଶିବ ମୋତେ ସୁଭଦ୍ରାର ସାଇଁ ॥
ଧରିଲେ ସ୍ୱରୂପ ମୁହିଁ ଯେବେ ଭୟକରେ ।
ତେବେ ମୁହିଁ ଅକ୍ଲେଶରେ ବଞ୍ଚିବ ପ୍ରାଣରେ ॥
ଛଳକରି ଚଳିଯିବ ଅଜଣା ସ୍ଥାନରେ ।
ଏପରି କଲେ ବା ମୁହିଁ ରକ୍ଷା ହୋଇପାରେ ॥
ଏପରି ବିଚାରି ମନେ ରାକ୍ଷସ ପ୍ରଧାନ ।
ମୁହୁଁ ମୁହୁଁ ବ୍ରହ୍ମମୂର୍ତ୍ତି କଲା ଅନ୍ତର୍ଦ୍ଧାନ ॥
ଉଗ୍ରଦୈତ୍ୟ ଉଗ୍ରମୂର୍ତ୍ତି ଧରେ ନିଜ କାୟା ।
ସହସା ବିନାଶି ଦେଖି ତା ସକଳ ମାୟା ॥
ବିକଟ ଭୀଷଣ କାୟା ନରେ ଅଗୋଚର ।
ପୃଥିବୀକୁ କମ୍ପାଇଲା ତେଜରେ ତାହାର ।
ତାଳଗଛ ସମ ହାତ ମୂଳା ପ୍ରାୟେ ଦାନ୍ତ ॥
ବିକଟ ଗର୍ଜ୍ଜନ କରି ଉଠିଲା ଦଇତ ।
ଦୀର୍ଘ ଲଲ୍ଲଜିହ୍ୱା ଗୋଟି ଲହ ଲହ ହୁଏ ।
ରୁଧିରର ସ୍ରୋତ ତହିଁ ଧାର ଧାର ବହେ ॥
କୁଲାର ସମାନ କର୍ଣ୍ଣ ମେଘ ସମ ବର୍ଣ୍ଣ ।
କରାଙ୍ଗୁଳି ଦେଖାଯାଏ ସର୍ପର ସମାନ ॥
ଶରୀର ସୁଦୀର୍ଘ ତାର ପାଣ୍ଡୁ ବର୍ଣ୍ଣ କେଶ ।
ମଦ୍ୟ ମାଂସ ବୋଲି ସର୍ବ ଅଙ୍ଗରେ ବିଶେଷ ॥
ପ୍ରଚଣ୍ଡ ମୂରତି ଦୈତ୍ୟ ତହିଁ ଦେଖାଯାଏ ।
ନାସିକାର ପବନରେ ବୃକ୍ଷ ଭାଙ୍ଗିଯାଏ ॥
ପର୍ବତ ସମାନ ଦୈତ୍ୟ ଦିଶେ ବିତପନ ।
ମେଘ ସମ ଗରଜନ କରେ ରକ୍ଷଗଣ ॥
ତେକ୍ଷଣି ସକଳ ମାୟା ଧରେ ନିଜମୂର୍ତ୍ତି ।
ଦେଖିଣ ପାଣ୍ଡବଗଣ କମ୍ପିଲେ ଚକିତ ॥

ବିକଟାଳ ରୂପ ଦେଖି ସର୍ବ ସୈନ୍ୟଗଣ ।
ଠଣା ଭାଙ୍ଗି ପଳାଇଲେ ହୋଇ ଭୀତ ମନ ॥
ତଥାପି ଅର୍ଜ୍ଜୁନ ବୀର ଗାଣ୍ଡିବରେ ଶର ।
ଯୋଜଣ ଚୌଦଶ ପଥ ରୋଧିଲେ ତାହାର
ଶ୍ରାବଣ ବରଷା ଧାରା ସମ ବାଣଗଣ ।
କ୍ରୋଧରେ ପ୍ରହାର କଲେ ଧାନୁକୀ ଅର୍ଜ୍ଜୁନ ॥
ବାଣ ଗହଳରେ ଶୂନ୍ୟ ପଥ ରୁଦ୍ଧ ହେଲା ।
ଆକାଶରେ ସୂର୍ଯ୍ୟଦେବ ଅଦୃଶ୍ୟ ହୋଇଲା ॥
ଚଉଦିଗ ଅନ୍ଧକାର କରି ବୀରବର ।
ଅସଂଖ୍ୟ ଅସଂଖ୍ୟ ଶର କରିଲେ ପ୍ରହାର ॥
କ୍ରୋଧେ କମ୍ପେ ପାର୍ଥ ତନୁ ଭୟଙ୍କର ରୂପ ।
ମଣ୍ଡଳାକାର ଦିଶଇ ତହିଁ ପାର୍ଥ ଚାପ ॥
ଆକର୍ଷି ଟଙ୍କାର ବାଣ ମାରୁ ସେ କ୍ରୋଧରେ
ଉଲ୍‌କା ସମ ବାଣ ପଡ଼େ ରାକ୍ଷସ ଉପରେ ॥
ଗିରି ପରେ ବାରି ଧାରା ସମ ବାଣ ଧାର ।
ପଡ଼ୁ ଅଛି ନିରନ୍ତରେ ସହେ ରକ୍ଷ ବୀର ॥
ଗାଣ୍ଡିବ ନିର୍ଘୋଷ ଧ୍ୱନି ପାଣ୍ଡୁ ସୈନ୍ୟ ଶୁଣି ।
ଚଳିଲେ ସେ ଆଡ଼େ ଯହିଁ ଛନ୍ତି ଫାଲ୍‌ଗୁନି ॥
ଅନୁଶାଲ୍ୱ ମହାରାଜା ମେଘବର୍ଣ୍ଣ ସହ ।
ଚଳିଲେ ଯୁଦ୍ଧ କରଇ ଯହିଁ ଧନଞ୍ଜୟ ॥
ବୃଷକେତୁ କାମଦେବ ଆଦି ବୀରବର ।
ମାରୁତ ସଙ୍ଗେ ଚଳିଲେ ଅର୍ଜ୍ଜୁନ ପାଶର ॥
ମହାରାଜା ହଂସଧ୍ୱଜ ସାତ୍ୟକୀଙ୍କୁ ଘେନି ।
ପ୍ରବେଶ ହୋଇଲେ ଯହିଁ ଛନ୍ତି ଫାଲଗୁନୀ ॥
ବିଷମ ସଂଗ୍ରାମ ଚଳେ ଅବିଶ୍ରାନ୍ତ ଶର ।
ପଡ଼ଇ ଦେଖି ଭୟରେ ସର୍ବେ ଥରହର ॥
ଅର୍ଜ୍ଜୁନର ବାଣାଘାତେ ଉଗ୍ର କଳେବର ।
ଅବିଶ୍ରାନ୍ତ ରକ୍ତ ଧାରା ବହେ ଝର ଝର ॥
ଗିରିରେ ନଦୀ ପରାୟେ ରାକ୍ଷସ ଶରୀର ।
ଶୋଭଇ ରକ୍ତ ଧାରା ବହେ ଧାର ଧାର ॥
ଦୁର୍ଦ୍ଦାନ୍ତ ସେ ରକ୍ଷବୀର ତଥାପି ନିର୍ଭୟ ।
ଅର୍ଜ୍ଜୁନର ଉପରେ ବରଷେ ଶିଳାଚୟ ॥
ବାଣ ବର୍ଷି ଧନଞ୍ଜୟ ସର୍ବକ୍ଷୟ କଲେ ।
ଉଡ଼ାଇ ଉଡ଼ାଇ ଶର ରାକ୍ଷସେ ବିନ୍ଧିଲେ ॥
ହୋଇଲା ବିଷମ ରଣ ଗଣନା କି କରେ ।
ପୁଣି ଗଦାଘାତେ ଯୁଦ୍ଧ କରନ୍ତି ସେଠାରେ ॥

ମଣ୍ଡଳ କରଣ ଗଦା ରାକ୍ଷସ ଉପରେ ।
କୋପେ ହଂସଧ୍ୱଜ ପିଟିଲେକ କ୍ରୋଧଭରେ ॥
ଗଦାର ଅଘାତେ ବୀର ଭୂମିରେ ପଡ଼ିଲା ।
ତାହାପରେ ଯୁବନାଶ୍ୱ ଗଦା ପ୍ରହାରିଲା ॥
ଏ ସମୟେ ଶତ୍ରୁହନ୍ତା ଧନଞ୍ଜୟ ବୀର ।
ଅର୍ଦ୍ଧଚନ୍ଦ୍ର ବାଣ ବେଗେ କରିଲେ ପ୍ରହାର ।
ବିଜୁଳିର ତେଜ ଜିଣି ଅସ୍ତ୍ର ଚାଲିଗଲା ।
ଡ୍ରେବର ଉଗ୍ର ମୁଣ୍ଡକୁ ବେନିଖଣ୍ଡ କଲା ॥
ଉଗ୍ରକୁ ନାଶ କରିଣ ଅର୍ଜୁନ ଆନନ୍ଦ ।
ଆକାଶରୁ ପୁଷ୍ପ ବୃଷ୍ଟି କଲେ ଦେବବୃନ୍ଦ ॥
ତହୁଁ ସର୍ବେ ଶାନ୍ତ ଲଭି ଅଶ୍ୱ ସହିତରେ ।
ବେଗେ ଚାଲିଗଲେ ମହାଦେବ ରସେବୋଲେ

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାର କଥା ପ୍ରବନ୍ଧେ
ନାମ ତ୍ରୟୋବିଂଶୋଽଧ୍ୟାୟଃ

---

# ଚତୁର୍ବିଂଶ ଅଧ୍ୟାୟ

ଅଚିନ୍ତ୍ୟ ବ୍ୟକ୍ତରୂପାୟ ନିର୍ଗୁଣାୟ ଗୁଣାତ୍ମନେ ।
ସମସ୍ତ ଜଗଦାଧାରମୂର୍ତ୍ତୟେ ବ୍ରହ୍ମଣେ ନମଃ ॥

## ଅର୍ଜ୍ଜୁନର ମାୟାପୁରୀ ପ୍ରବେଶ

ଏଥୁଅନ୍ତେ ଶୁଣ ଜନେ ଅପୂର୍ବ ଚରିତ ।
ଜୈମିନିଙ୍କ ଚରଣରେ ପଡ଼ି ନୃପନାଥ ॥
ବୋଲନ୍ତି ହେମୁନି ମୋତେ କର ପ୍ରତିକାର
ତବ ମୁଖୁ ଶୁଣି ମୁହିଁ ହୋଇବି ନିସ୍ତାର ॥
ଉଗ୍ରକୁ ନାଶ କରିଣ ମୋର ପିତାମହ ।
ତଦପରେ କେଉଁରାଜ୍ୟେ ଗଲେ ସେହୁ କୁହ ॥
କି କି ଘଟିଲା ସେଠାରେ କୁହନ୍ତୁ ଫିଟାଇ ।
ଶୁଣିବାକୁ ମୋର ବଡ଼ ଇଚ୍ଛା ହୋଇଛଇ ॥
ନାରାୟଣଙ୍କର ଏଥେ ମହିମା ଅପାର ।
ପ୍ରକାଶ ହୋଇଲା ମୋତେ କୁହ ଦୟାକରି ॥
ରାଜାଙ୍କ ବିନୟ ଭକ୍ତି ଦେଖି ଋଷିବର ।
ଆନନ୍ଦ ମନେ ବୋଲନ୍ତି ଶୁଣ ନୃପବର ॥
ଉଗ୍ରକୁ ନାଶ କରିଣ ବୀର ଧନଞ୍ଜୟ ।
ଗମିଲେ ସେ ପଶ୍ଚିମ ଦିଗରେ ସୈନ୍ୟସହ ॥
ଯଜ୍ଞ ଅଶ୍ୱ ମୁକ୍ତ ହୋଇ ଆନନ୍ଦ ମନରେ ।
କ୍ରମେ କ୍ରମେ ଗଲା ସେହି ପଶ୍ଚିମ ଦିଗରେ ॥
ଅଶ୍ୱର ପଛରେ ସୈନ୍ୟ ଆନନ୍ଦେ ଚଳନ୍ତି ।
ଅସ୍ତ୍ରଶସ୍ତ୍ର ଧରିଣ ସତର୍କେ ରହିଥାନ୍ତି ॥
ବିବିଧ ନଗର କେତେ ଅତିକ୍ରମ କରି ।
ନଦ ନଦୀ ପାର ହୋଇ ଅଶ୍ୱ ଗତି କରି ॥
ଦେଖାଯାଏ କେତେକେତେ ଗିରି ମନୋହର
ବନ ଉପବନ ଶୋଭା ଅତୀବ ସୁନ୍ଦର ॥
ପ୍ରକୃତି ସୁନ୍ଦରୀ କଥା କହି ନ ହୁଅଇ ।
ଦେଖିଲେ ମନ ନୟନ ଯାଏ ମୁଗ୍ଧ ହୋଇ ॥
ନାନାଦି ଫୁଲରେ ଶୋଭା ଦେଖି ଉପବନ ।
ସୁଗନ୍ଧ ଶୀତଳ ବାୟୁ ବହି ମୋହେ ପ୍ରାଣ ॥
ଭ୍ରମରମାନେ ଝଙ୍କାର ଚୌଦିଗେ ବୁଲନ୍ତି ।
ପୁଷ୍ପରୁ ସେ ଅନ୍ୟ ପୁଷ୍ପେ ମଧୁକୁ ଚୁମ୍ବନ୍ତି ॥
ଅଶୋକ ଚମ୍ପକ ମଲ୍ଲୀ କିଆ କନିଅର ।
ଲୁରିଅନା ଜୁଈ ଜାଇ ତଗରି ତଗର ॥
ଗଙ୍ଗଶିଉଳୀ ରଙ୍ଗଣୀ ପାଟଳୀ ସେବତୀ ।
ଲବଙ୍ଗ ଗୋଲାପ ହେନା ସୁଗନ୍ଧ ମାଳତୀ ॥
ଏହିପରି ନାନାଫୁଲେ ଉପବନ ଶୋଭା ।
ତହିଁମଧ୍ୟେ ପୁଷ୍କରିଣୀ ମନମୀନ ଲୋଭା ॥
ସୁଧାଧାରା ସମ ସ୍ୱଚ୍ଛଜଳ ଶିଖରରୁ ।
ଝରି ଅବିରତେ ଆସି ପଡ଼େ ସେ ସ୍ଥାନରୁ ॥
ହଂସ ସାରସ ଡାହୁକ କାକାତୁଆ ଆଦି ।
ଚକୁଆ ଟେକାଇ ବଣି ମୟୂରଙ୍କ ଚେନ୍ଦି ॥
ଏହିପରି ନାନା ପକ୍ଷୀ ତହିଁର ଉପରେ ।
ସନ୍ତରଣ କରିବାରୁ ଜନମନ ହରେ ॥
ଉପବନ ଶୋଭା ତଥା ବନଶୋଭା ପୁଣି ।
ଶାଳ ପିଆଶାଳ ଅସନ ବଦରି ଧେନି ॥
ଶିମ୍ବୁ ଚନ୍ଦନ ସୁଆଁଶ ଅବଲିଣ ବେତ ।
ନାନାଦି ବୃକ୍ଷରେ ବନ ହୋଇଛି ପୂରିତ ॥
କେଉଁଠାରେ ଆମ୍ବଗଛ ସଦା ଫଳେ ଫଳ ।
ସତ୍ୟାମ୍ବା ବୋଲିଣ ଲୋକେ ହୋଇଛି ପ୍ରଚଳ
କେଉଁଠାରେ ଚିକୁଲି କେଉଁଠି ନାରିକେଳ ।
କେଉଁଠାରେ ପଣସ କେଉଁଠାରେ ଜମ୍ବୁଲ ॥
କେଉଁଠାରେ କରମଙ୍ଗା କେଉଁଠି କେଉଟ ।
କେଉଁଠାରେ ଠେଲ୍ଲା ନାରଙ୍ଗ ଆଦି ସମ୍ପୁଟ ॥

ଏହିପରି ଗଛମାନ ପୂର୍ଣ୍ଣ ସେ ବନରେ ।
ଦେଖିଲେ ନୟନ ମନ ଅଟକେ ସେଠାରେ ॥
ତହିଁମଧ୍ୟେ ମୃଗ ଗଣ୍ଡା ଗୟଳ ଶୂକର ।
ସିଂହ ବ୍ୟାଘ୍ର ଆଦି ହିଂସ୍ର ଅଛନ୍ତି ସକଳ ॥
କେଉଁଠାରେ ମୁନିମାନେ ଯୋଗଲୟେ ବସି
ଈଶ୍ୱରଙ୍କୁ ସେବା କରୁଥାନ୍ତି ଦିବା ନିଶି ॥
ଋଷିଙ୍କର ପ୍ରଭାବରେ ହିଂସ୍ର ଅହିଂସ୍ରକେ ।
ବିଶ୍ରାମ କରନ୍ତି ବନ୍ଧୁ ଭାବ ବହି ଥୋକେ ॥
ତହିଁପରେ ଦେଖାଯାଏ ପୁର ମନୋହର ।
ଶତସ୍ୱର୍ଗ ସମ ନୋହେ ଶୋଭାକୁ ତାହାର ॥
କାହିଁ ଦ୍ୱିତଳ ପ୍ରସାଦ କାହିଁ ବା ତ୍ରିତଳ ।
କାହିଁ ଚତୁଃତଳ ପୁଣି କାହିଁ ବନସ୍ଥଳ ॥
କ୍ରମେ କ୍ରମେ କୋଠା ଦେଖାଯାଏ ଚମତ୍କାର
କି ଛାର ତୁଳନା ତାକୁ ଦେବା ସ୍ୱର୍ଗପୁର ॥
କିବା ବୈକୁଣ୍ଠ କି ଅବା ଅନନ୍ତ ଭବନ ।
କି ଅବା ଚତୁରାନନ ପୁର ସେହି ଜାଣ ॥
ମର୍ତ୍ତେ ଦ୍ୱାରକା ଲଙ୍କା ଯେ ଆଉର ହସ୍ତିନା ।
ସେପୁର ଶୋଭାକୁ କେହି ନୋହିବେ ତୁଳନା ।
ଆଉର ସେ ପୁର ଦେଖାଯାଏ ଚମତ୍କାର ।
ପୁରୁଷ ଆକୃତି ଯେହ୍ନେ ଦେବ ଦିବାକର ॥
ତେଜ ବଳ ଦୀପ୍ତିକାନ୍ତି ଗଠନ ଦେଖିଣ ।
ଅନ୍ୟନାରୀ ପୁରୁଷେ ନ ଧରିବେ ପରାଣ ॥
ସଂସାରେ କହନ୍ତି କାମଦେବ ଯେ ସୁନ୍ଦର ।
ମାତ୍ର ସରି ନ ହେବ ସେ ପଦକୁ ତାଙ୍କର ॥
ନାରୀଙ୍କ ମୋହନ ମୂର୍ତ୍ତି ଅତି ଅନୁପମ ।
ରମ୍ଭା ରତି ମେନକାଦି ନ ହୋଇବେ ସମ ॥
ବଦନ ଚନ୍ଦ୍ରମା ଜିଣି ଓଷ୍ଠ ବାଳ ରବି ।
ଛବି ଦେଖି ଦ୍ରବିଯିବେ ଯେତେ ବଡ଼ କବି ॥
ସମସ୍ତେ ପଦ୍ମିନୀ ମୁଖୁ ପଦ୍ମ ଗନ୍ଧ ସ୍ଫୁରେ ।
ଭ୍ରମରେ ଗୋଡ଼ାନ୍ତି ତାଙ୍କୁ ମଧୁ ଆଶୟରେ ॥
କ୍ଷୀଣମଧ୍ୟା ନିତମ୍ବିନୀ ପୃଥୁଳ ଉରଜ ।
ଉଲଟ ରମ୍ଭାର ସମ ଦୁଇଜାନୁ ଉଜ ॥
ନେତ୍ରଚ୍ଛଟା ବକ୍ରହାସ୍ୟ ଛଟକ ଗୃହିଣୀ ।
ବାରାଙ୍ଗନା ବରାଙ୍ଗନା ନ ଥିବେ ତା ଜାଣି ॥
ହିରଣ୍ୟଗର୍ଭ ଲିଙ୍ଗର ପ୍ରାୟେ ନାଭିସ୍ଥଳ ।
କେତେ ଦୂରେ ଲିଙ୍ଗଶକ୍ତି ରହିଛି ଉପର ॥

ତିଳପୁଷ୍ପ ନାସା ଗୃହୁ ସୁଦୀର୍ଘ କୁନ୍ତଳ ।
କୁଞ୍ଚିତ ଥିବାରୁ ଦେଖାଯାଏ ଢଳ ଢଳ ॥
ନାଗଫେଣି ତୁଲ୍ୟ ବେଣୀ ପୃଷ୍ଠେ ଶୋଭାବନ
ଊର୍ଦ୍ଧ୍ୱବାହୁ ଊର୍ଦ୍ଧ୍ୱରେ ତା ପଡ଼ିବେ ତଳିଣ ॥
ବର୍ଣ୍ଣର ତେଜରେ ଅନଙ୍ଗଙ୍କୁ ନିନ୍ଦାକରେ ।
ସୁନା ରୁପା କିବା ଛାର ହୀରା ତୁଚ୍ଛକରେ ॥
ପ୍ରତିଗୃହେ ପୂର୍ଣ୍ଣକୁମ୍ଭ ସୁବର୍ଣ୍ଣ କଳଶ ।
ବୈଦୁର୍ଯ୍ୟରେ ବନ୍ଧା ହୀରା ନୀଳାରେ ପାବଚ୍ଛ ॥
ସ୍ୱଚ୍ଛ ସ୍ଫଟିକରେ ରାଜପଥ ଯେ ନିର୍ମିଣ ।
ନ ହୋଇବ ନ ଥିବ ଯେପରି ତ୍ରିଭୁବନ ॥
ସମସ୍ତ ସଂସାର ଶୋଭା ବହି ଏକାକର ।
ରହିଅଛି ଏମାନଙ୍କ ପାଶେ ଯତ୍ନକର ॥
ନୋହିଲେ କି ପ୍ରକୃତି ସୁନ୍ଦରୀ ଗର୍ବଭରେ ।
ଅଧର ଫୁଲାଇ ବସିଥାନ୍ତା ଆନନ୍ଦରେ ॥
ଏ ସବୁ ସମ୍ପତ୍ତି କୋଡ଼େ କରିଣ ସ୍ଥାପନ ।
ଗରବ ଦେଖାଏ ନାରୀ ଅନନ୍ତ ଗଗନ ॥
ଶୁକସାରୀ କୋକିଳାଦି କରୁଛନ୍ତି ତାନ ।
ପଞ୍ଚମ ସ୍ୱରରେ କରୁଛନ୍ତି ମିଷ୍ଟଗାନ ॥
ସ୍ୱଭାବେ ସୌନ୍ଦର୍ଯ୍ୟ ତହିଁ ଦେଖି ସର୍ବଜନ ।
ସେହିଠାରେ ରହିବାକୁ କରିଲେ ଯେ ମନ ॥
ଦେଖୁ ଦେଖୁ ଦିବସରେ ପଥିକ ସମାନ ।
ଦିନମଣି ସଙ୍ଗେ ଯେନ କରିଲେ ଗମନ ॥
ଆଇଲା ସହସା ନିଶା ଘୋଟିଣ ସଂସାର ।
ମସ୍ତକେ ଶୋଭଇ ଶଶୀ କଣ୍ଠେ ତାରାହାର ॥
ଏଣେ କଳାବର୍ଣ୍ଣ ରୂପ ଅତି ବିକଟାଳ ।
ତହିଁରେ ଗହଣା ପୁଣି କି ହେବ ସୁନ୍ଦର ॥
ଏପରି କୁତ୍ସିତ ରୂପ କରି ନିଶାଙ୍ଗଣା ।
କେଉଁ ଲୋକ ଆନନ୍ଦରେ ରମିବ ତା ସନ ॥
ଭାଗ୍ୟକ୍ରମେ ନାରୀକର ଯେବେ ପାଇଥିବ ॥
କାହୁଁ କାହୁଁ ଦିନ ତାର କେଭେ ନ ସରିବ
ସେ ଯେପରି ସଙ୍ଗ ତାର ହୁଅଇ ତେସନ ॥
ଅବଦିତ ନୁହେ ତା ବୋଲଇ ବୃଦ୍ଧଗଣ ॥
ଅତି ନୀଚ ମତି ଦେଖି ତେଜେ ନିଶାକର ।
କୁକୁର ଶୃଗାଳ ପେଚକାଦି ଦସ୍ୟୁ ଚୋର ॥
ଅତି ବଡ଼ ନିଚ ସେହି ସ୍ୱଭାବ ଦୁର୍ନୀତି ।
କୁଟିଳା ରଜନୀ ସଙ୍ଗେ ସେ ହେତୁ ପୀରତି ॥

ନିଶା ଆଗମନ ଦେଖି କୁନ୍ତୀଙ୍କର ସୁତ ।
ସେହିସ୍ଥାନେ ରହିବାକୁ କରିଲେ ମନସ୍ଥ ॥
ଆଶ୍ଚର୍ଯ୍ୟ ନଗର ଶୋଭା ନାନା ପୁଷ୍ପଫଳ ।
ସେ ସ୍ଥାନେ ରହିଲେ ସର୍ବେ ହୋଇ କୁତୂହଳ
ଶିବିର ସ୍ଥାପିଣ ତହିଁ ଭୋଜନାଦି କଲେ ।
କାଳନିଦ୍ରା ଘାରନ୍ତେ ସମସ୍ତେ ଯେ ଶୋଇଲେ
ଅଳ୍ପକ୍ଷଣପରେ ରଜନୀ ଉଭାଇଣ ଗଲା ।
ସକାଳ ଆସିଣ ତହିଁ ଉପସ୍ଥିତ ହେଲା ॥
ସକାଳ ହେବାରୁ ସର୍ବ ପାଣ୍ଡବ ସଇନ ।
ଉଠିଣ ଗୃହଆଡ଼କୁ କଲେ ନିରୀକ୍ଷଣ ॥
ଦେଖିଲେ ପୂର୍ବରେ ଯେତେ ମନୋହର ପୁରୀ
ଲତା ବନ ଆଦି ପୂରିଥିଲା ସେ ନଗରୀ ॥
ସେ ସବୁତ କିଛି ନାହିଁ ସମ୍ମୁଖ ପ୍ରାନ୍ତର ।
ଆଶ୍ଚର୍ଯ୍ୟ ହୋଇଲେ ଦେଖି ସଇନ ସକଳ ॥
ଅର୍ଜୁନ ଦେଖି ଏସନ ଆଶ୍ଚର୍ଯ୍ୟ ହୋଇଲେ ।
ସ୍ୱପ୍ନ କି ମୁଁ ଦେଖୁଥିଲି ବୋଲିଣ ଭାବିଲେ ॥
କାହିଁ ସେ ନଗରଶୋଭା କାହିଁ ସେହି ପୁର ।
କିଛିହିଁ ଯେ ନାହିଁ ମାତ୍ର ପଥ ବହୁଦୂର ॥
ଭୌତିକ ଦେଖିଣ ପାର୍ଥ ହେଲେ ଚମତ୍କାର
ସମ୍ମୁଖେ ଦେଖିଲେ ଧାଏଁ ଯଜ୍ଞ ଅଶ୍ୱବର ॥
ପ୍ରପଞ୍ଚ ଦେଖିଣ ତେବେ ପାର୍ଥ ମହାଶୟ ।
ଭାବିଲେ ଏ ସ୍ୱପ୍ନ କିବା ଭେଲକି ନିଶ୍ଚୟ ॥
ଦେବତା ବ୍ରାହ୍ମଣେ କିବା ଅଧମ ରାକ୍ଷସେ ।
ମାୟାକରି ରଚିଲେ ସେ କେଉଁ କାର୍ଯ୍ୟବଶେ ॥
ବିଳମ୍ବ କରିବା ଏଥି ଉଚିତ ନୁହଇ ।
କେ ଜାଣେ ପଛରେ କିଛି ବିପଦ ଘଟଇ ॥
ଏହା କହି ସୈନ୍ୟଙ୍କୁ ଡାକିଣ ବୀରବର ।
ବୋଇଲେ ଚାଲ ହେ ସର୍ବେ ନ କର ଉଚ୍ଛୁର
ନିତାନ୍ତ ବିପଦ ସ୍ଥାନ ଅଟଇଟି ଏହି ।
ବେଗେ ଚାଲ ଯିବା ଏଥୁ ବିଳମ୍ବ ନ ସହି ॥
ପାର୍ଥଙ୍କ ଆଦେଶ ପାଇ ସର୍ବ ସୈନ୍ୟଗଣ ।
ଶୀଘ୍ର ସେ ସ୍ଥାନରୁ ସର୍ବେ କରିଲେ ଗମନ ॥
ତହୁଁ ଯଜ୍ଞ ଅଶ୍ୱବର ଗଲା ମଣିପୁର ।
ମାୟାପୁରୀ କଥା ମହାଦେବର ଉତ୍ତର ॥

## ମଣିପୁରରେ ଯଜ୍ଞଅଶ୍ୱର ପ୍ରବେଶ
## ବଭ୍ରୁବାହନ କର୍ତ୍ତୃକ ଅଶ୍ୱ ଧାରଣ

ଏଥୁଅନ୍ତେ ଜଇମିନି ଆନନ୍ଦ ହୋଇଣ ।
ବୋଇଲେ ହେ ମହାରାଜା ଶୁଣ ମୋ ବଚନ ॥
ମାୟାପୁରୀ ଅତିକ୍ରମ କରି ଅଶ୍ୱବର ।
କ୍ରମେ କ୍ରମେ ଗଲା ସେହି ପଶ୍ଚିମ ଦିଗର ॥
ଅତିବେଗେ ଯାଏ ଅଶ୍ୱ ନାହିଁ କ ବାରଣ ।
ତାର ପଛେ ପଛେ ଛନ୍ତି ଅର୍ଜୁନର ସୈନ୍ୟ ॥
ଏକ ମନୋହର ପୁରେ ଅଶ୍ୱ ପ୍ରବେଶିଲା ।
ପୁର ଶୋଭା ଦେଖି ସୈନ୍ୟ ଚହଲ ପଡ଼ିଲା ॥
ଅସୀମ ବିଭବଶାଳୀ ଅଟଇ ସେ ପୁର ।
ମଣିପୁର ନାମ ତାର ଅତି ମନୋହର ॥
ବଭ୍ରୁବାହନ ନାମରେ ତହିଁ ନରପତି ।
ମହା ପରାକ୍ରମଶାଳୀ ଅଟଇ ସୁମତି ॥
ଚିତ୍ରାଙ୍ଗଦା ନାମ ତାର ମାତା ଯେ ଅଟଇ ।
ଉଲୂପୀ ନାମେ ବିମାତା ତହିଁ ରହିଛଇଁ ॥
ଅର୍ଜୁନ ଔରସେ ଚିତ୍ରାଙ୍ଗଦା ଗର୍ଭଜାତ ।
ବଳ ପରାକ୍ରମେ ନ ଗଣଇ ତ୍ରିଜଗତ ॥
ମହାବଳୀ ପରାକ୍ରମୀ ଦ୍ୱିତୀୟ ବାସବ ।
ରଣେଜୟୀ ସଦାବେଳେ ନୁହେଁ ପରାଭବ ॥
ପୂର୍ବେ ପାର୍ଥ କରିଥିଲେ ତୀର୍ଥକୁ ଗମନ ।
ସେହି ସମୟରେ ଚିତ୍ରାଙ୍ଗଦାର ମିଳନ ॥
ଏବେ ସେ ଗନ୍ଧର୍ବ କନ୍ୟା ତପ୍ତହେମ ଦେହୀ ।
ପୂର୍ଣ୍ଣ ଯଉବନୀ କନ୍ୟା ରମ୍ଭା ସମ ନୋହି ॥
କୁଞ୍ଚିତ ନୀଳ କୁନ୍ତଳ ରକ୍ତିମା ଅଧର ।
ମୁଖ ନିନ୍ଦା କରଇ ଯେ ପୂର୍ଣ୍ଣ ଶଶଧର ॥
ସିଂହମଧ୍ୟା ଉଚ୍ଚକୁଚ ନବ ଯଉବନୀ ।
ଉଲଟ ରମ୍ଭା ପରିଏ ଦିଶେ ଜାନୁବେଣି ॥
ମନ୍ଥର ଗତିରେ କନ୍ୟା କରଇ ଗମନ ।
କିବା ଲକ୍ଷ୍ମୀ କିବା ଦୁର୍ଗା ପ୍ରାୟେ ଦିଶେ ଜାଣ ॥
ଦୈବେ ଅର୍ଜୁନଙ୍କୁ ଦେଖି ଅପୂର୍ବ ସୁନ୍ଦରୀ ।
ମଦନ ବାଣରେ କନ୍ୟା କାମେ ହେଲା ଘାରି
ସର୍ବ ସଖୀ ସହ କନ୍ୟା ଅଧୋବଦନରେ ।
ପାର୍ଥ କଞ୍ଜପାଦେ ପଡ଼ି ବିନୟ ଭାବରେ ॥

ବରଣମାଳା ଦେଇଣ କରିଲା ବରଣ ।
ଗଳାମାଳା କରି କନ୍ୟା ନେଲା ସ୍ୱଗୃହେଣ ॥
ଆଦର ସମାନ ଶୋଭା ରୂପ ଗୁଣ ଦେଖି ।
କାମେ ବଶ ହେଲେ ପାର୍ଥ ଦେଖିଣ ସୁମୁଖୀ ॥
ଆନନ୍ଦରେ ଗନ୍ଧର୍ବ ବିଧାନେ ବିଭାହୋଇ ।
ରସରଙ୍ଗ କ୍ରୀଡ଼ା କଲେ ବାସବ ତନୟୀ ॥
ତହୁଁ କିଛୁଦିନେ କନ୍ୟା ଗର୍ଭବାସ ହେଲା ।
ସଙ୍କେତ ଦେଇ ଅର୍ଜ୍ଜୁନ ସ୍ୱଗୃହେ ଫେରିଲା ।
ସେହିଦିନ କନ୍ୟାଗର୍ଭେ ଅର୍ଜ୍ଜୁନ ବୀର୍ଯ୍ୟରେ ।
ବଭ୍ରୁବାହନ ନାମରେ ଜନ୍ମିଲା କୁମରେ ॥
ଜନ୍ମ ହୋଇଣ କୁମର କ୍ରମେ ବଡ ହେଲା ।
ମଣିପୁରେ ରାଜା ହୋଇ ଆନନ୍ଦେ ରହିଲା ॥
ମାତାଠାରୁ ଶୁଣିଥିଲା ସର୍ବ ସମାଚାର ।
ମାତ୍ର ଦେଖା ନୋହିଥିଲା ପିତା ସଙ୍ଗେଙ୍କର ॥
ଚିତ୍ରାଙ୍ଗଦା ବିଭାହୋଇ ପାର୍ଥ ବୀରବର ।
ଉଲୁପୀ ନାମକ ନାଗକନ୍ୟା ସହିତର ॥
ବିବାହ ହୋଇଣ ତହୁଁ ରହି କିଛୁଦିନ ।
ଗର୍ଭେ ପୁତ୍ର ରଖିଗଲେ ଆପଣା ଭୁବନ ॥
ଉଲୁପୀ କନ୍ୟାର ଇଲାବନ୍ତ ନାମେ ସୁତ ।
ଜନ୍ମହୋଇ କ୍ରମେ ପ୍ରକାଶିଲା ସେ ବୀରତ୍ୱ ॥
ଦୈତ୍ୟ ଯୁଦ୍ଧେ ଯେତେବେ ବୀର ତେଜିଲା ଜୀବନ
ସେ ଦିନୁ ଉଲପୀ ରହେ ସପତ୍ନୀ ପାଶେଣ ॥
ଚିତ୍ରାଙ୍ଗଦା ଉଲୁପୀ ଏ ଦେନିମାତା ଘେନି ।
ଆନନ୍ଦରେ ରାଜ୍ୟ ପାଳେ ସେହି ବୀରମଣି ।
ଯେତେବେଳେ ମଣିପୁରେ ଅଶ୍ୱ ପ୍ରବେଶିଲା ।
ଦୈବେ ଉଲୁପୀର ଦୃଷ୍ଟି ତାପରେ ପଡ଼ିଲା ॥
ଦେଖିଣ ଚିହ୍ନିଲା ଏ ସ୍ୱାମୀଙ୍କ ଅଶ୍ୱବର ।
ଏହାଯୋଗେ ଦେଖାହେବ ଶ୍ରୀପଦ ତାଙ୍କର ।
ସତେ ମୋର ପୂର୍ବଜନ୍ମେ ସୁକୃତ ଥିବ ।
କୋଳେ ଆଣି ବସାଇବି ମୋର ପ୍ରାଣଧବ ॥
କେତେ ସ୍ନେହ କରିଥିଲେ ଅଛି କି ତା ମନେ
ସାକ୍ଷାତ ହୋଇଲେ ନିବେଦିବି ଶ୍ରୀଚରଣେ ॥
ଏସନ ଭାବିଣ ଦେବୀ ମନର ମଧ୍ୟରେ ।
ଆନନ୍ଦ ମନରେ ରହିଲା ସେ ନଗରରେ ॥
ମଣିପୁର ସୈନ୍ୟମାନେ ଅଶ୍ୱକୁ ଦେଖିଣ ।
ଉଚ୍ଚୈଃଶ୍ରବା ଅଶ୍ୱ କିବା ଭାବିଣ ସେ ମନ ॥
ଏପରି ଲକ୍ଷଣ ପୂର୍ଣ୍ଣ ଅଶ୍ୱ କେଉଁଠାରେ ।
ଦେଖାତ ନ ଥିଲା ଭଲା ଦେଖିଲୁ ନେତ୍ରରେ
ଦେଖିଅଛୁ ନାନାଜାତି ବିବିଧ ବରନ ।
ନାନାଜାତି ଅଶ୍ୱସବୁ ବିଶେଷ ଲକ୍ଷଣ ॥
ମାତ୍ର ଏହାପରି ନ ଦେଖିଛୁ କେଉଁଠାରେ ।
ଦୈବେ ବିଧି ଘଟାଇଛି ଆମ୍ଭର ଭାଗ୍ୟରେ ।
ଉଚ୍ଚୈଃଶ୍ରବା ଯେହ୍ନେ ସେହ୍ନେ ଅଟେ ସୁଲକ୍ଷଣ ।
ସମୁନ୍ନତ ଦେହ ରଖିବାରେ ଶୋଭମାନ ॥
କିବା ଭଙ୍ଗି କିବା ପୁଚ୍ଛ କିବା ପୁଣି କର୍ଣ୍ଣ ।
କିବା ଅତି କି କଠିନ ଆହା କିବା ଧନ୍ୟ ॥
ମାତ୍ର ସେମାନଙ୍କଠାରୁ ଏ ଅଶ୍ୱ ସୁନ୍ଦର ।
ତଥାପି ବିଶ୍ରାମ ନ କରିଣ ତାକୁ ଧର ॥
କେ ବୋଲଇ ଯେବେ ନିଜ ଇଚ୍ଛାରେ ଧରିବ
ନୃପତି ଜାଣିଲେ କାଳେ ଦୋଷରେ ପଡ଼ିବ
ଅନ୍ୟଜଣେବୋଲେଯେବେରାଜକୋପକରେ
ଏ ଅଶ୍ୱକୁ ଘେନି ମୁହିଁ ଯିବି ଦେଶାନ୍ତରେ ॥
ଯେପରି ଲକ୍ଷଣ ମୁହିଁ ଦେଖୁଛି ଏହାର ।
ଅବଶ୍ୟ ଗୂଢ଼ କାରଣ କିଛି ଅଛି ଯାର ॥
ଯାହା ହେଉ ନୃପତିଙ୍କୁ ଥରେ ଜଣାଇବା ।
ତଦପରେ ଯାହା ହେବ ସେପରି କରିବା ॥
ଏହିପରି କଥା ବାର୍ତ୍ତା ହୋଇଣ ଧଇଲେ ।
ପ୍ରବେଶ ହୋଇଲେ ଯାଇ ନୃପତି ପାଶରେ ॥
ପ୍ରଣାମ କରିଣ ହସ୍ତ ଯୋଡ଼ି ଉଭାହେଲେ ।
ସମସ୍ତ ଘଟଣାମାନ ତାହାଙ୍କୁ କହିଲେ ॥
ଶୁଣନ୍ତୁ ହେ ଦେବ ଆମ୍ଭର ଏ ନିବେଦନ ।
ଆସିଅଛି ଏକ ଅଶ୍ୱ ଆମ୍ଭର ପୁରେଣ ॥
ଚମତ୍କାର ଦେଖେ ତାର ଅଙ୍ଗର ଲକ୍ଷଣ ।
ଉଚ୍ଚୈଃଶ୍ରବା ଅଶ୍ୱ ତାକୁ ନୋହିବ ସମାନ ।
ବିଧି କେତେକାଳ ବସି ଗଢ଼ିଅଛି ତାକୁ ।
କାହିଁ ନ ଦେଖିଛୁ କାହିଁ ଏପରି ଅଶ୍ୱକୁ ॥
ବିଧାତାର ଶକ୍ତି ତହିଁ ଦେଖାଇବା ପାଇଁ ।
ଏପରି ଅଶ୍ୱକୁ ମର୍ତ୍ତ୍ୟେ ଅଛନ୍ତି ପଠାଇ ॥
ଯେଉଁଠାରେ ଏହି ଅଶ୍ୱ ରହିବ ରାଜନ ।
ଗ୍ରହପୀଡ଼ା ଶତ୍ରୁ ଭୟ ନ ହେବ ହେ ଜାଣ ॥
ରାଜଲକ୍ଷ୍ମୀ ସେ ରାଜ୍ୟରେ ବସତି କରିବ ।
ରାଜପୁରେ ଥିଲେ ରାଜଲକ୍ଷ୍ମୀ ଭୋଗ ହେବ ॥

ତାହାର ନିଶ୍ୱାସ ଯେତେଦୂର ଯାଏ ଯିବ ।
ସମସ୍ତ ଅମଙ୍ଗଳ ଯେ ତହିଁ ନାଶ ହେବ ॥
ଯେଉଁ ସ୍ଥାନରେ ପଡ଼ିବ ତାହାର ଚରଣ ।
ଶସ୍ୟଶାଳୀ ହେବ ପୃଥ୍ୱୀ ଏଥେଁ ନାହିଁ ଆନ
ତେଣୁକରି ମହାରାଜା ଅଶ୍ୱ ଧରିବାକୁ ।
ଇଚ୍ଛା କରିଛୁ ସମସ୍ତେ ଦିଅ ଆଦେଶକୁ ॥
ଆପଣଙ୍କ ଆଜ୍ଞା ବିନା ଅଶ୍ୱକୁ କିପରି ।
ଧରିବୁ ହେ ନରବର କହନ୍ତୁ ବିଚାରି ॥
ଅଧୀନ ଲୋକ ଯେ ନିଜ ଇଚ୍ଛାମତ ।
କୌଣସି କର୍ମକୁ ସେହୁ କରି ନ ପାରେତ ॥
ଏଥି ପାଇଁ ଅନୁମତି ଅପେକ୍ଷା କରିଣ ।
ଅଶ୍ୱ ନ ଧରି ଆସିଲୁ ଆଜ୍ଞାର କାରଣ ॥
ସତ୍ୟ ଅଟେ ନରପତି ଭଲମନ୍ଦ କାର୍ଯ୍ୟ ।
ବିବେଚନା କରି କରେ ସୁବିଜ୍ଞ ସମାଜ ।
କେ ଜାଣି ବା ପରେ କେଉଁଦୋଷ ଘଟିପାରେ
ସେଥିପାଇଁ ଅନୁମତି ତୁମ୍ଭ ଚରଣରେ ॥
କୌଣସି କର୍ମକୁ ବିବେଚନା କରି ମୁହିଁ ।
ସ୍ୱାମୀଙ୍କ ଆଦେଶ ବିନା କେବେ କରି ନାହିଁ ॥
କିଛି ଦୋଷ ହେବନାହିଁ ଅଶ୍ୱକୁ ଧରିଲେ ।
ବିବେଚନା କରିଣ କୁହନ୍ତୁ ଅଧୀନରେ ॥
ଏ କାର୍ଯ୍ୟେ ବିଶେଷ ଯୁକ୍ତି ପୁଣି ବିବେଚନା
ଆବଶ୍ୟକ କିଛି ମାତ୍ର ମୁହିଁ ଯେ ଭାବେନା ॥
ଯହିଁରେ ଉନ୍ନତି ହେବ ସେ କାର୍ଯ୍ୟ କରିବ ।
ଆଦେଶ ଦେବାକୁ କିପାଁ ଭାବ ନରଦେବ ॥
କି ଭାବୁଛ ନରବର କୁହ ହେ ଆମ୍ଭଙ୍କୁ ।
ବୃଥା ଭାବନା ନ କର ଦିଅ ଆଦେଶକୁ ॥
ଦୂତର ବଚନ ଶୁଣି ମଣିପୁର ମଣି ।
ମନେ ମନେ କିଛି ଚିନ୍ତା କରିଣ ତକ୍ଷଣି ॥
ବୋଇଲେ ହେ ଦୂତେ ଶୁଣ ମୋହର ବଚନ
କି ଯତ୍ନ ଅଛି ତହିଁରେ ଆଣ ଯା ଧରିଣ ॥
କାହା ଅଶ୍ୱ ସେହୁ ଅବା ଆସିଛି ଏଠାରେ ।
ସର୍ବ ବୃତ୍ତାନ୍ତ ଜାଣିବା ତାହାକୁ ଧରିଲେ ॥
ବିଳମ୍ବ ନ କରି ବେଗେ ଯାଅ ସୈନ୍ୟଗଣ ।
ସାବଧାନେ ସେ ଅଶ୍ୱକୁ ମୋ ପାଶକୁ ଆଣ
ଏସନ କହିଣ ରାଜା ମଉନ ହୋଇଲେ ।
ଅଶ୍ୱ ଧରିବାକୁ ସର୍ବ ସୈନ୍ୟ ସଜ ହେଲେ

ବଜ୍ରଘୋଷ ଦାଉଣ୍ଡୀ ଯେ ଢମକ ନିଶାଣ ।
ବଜାଇଣ ବାହାରିଲେ କେତେକ ବୀରଗଣ ॥
ଶୁଭ ସମୟ ଦେଖିଣ ବେଗେ ଚଳିଗଲେ ।
ଆନନ୍ଦରେ ଯାଇଁ ଅଶ୍ୱ ପାଶେ ପ୍ରବେଶିଲେ ॥
ସୈନ୍ୟଙ୍କ ସହିତେ କେତେ ଦେଖଣାହାରିଏ
ଅଶ୍ୱ ଦେଖିବା ନିମନ୍ତେ ଗମିଲେ ସବିହେଁ ॥
ଅସଂଖ୍ୟ ଲୋକ ଗହଳ ଦେଖି ଅଶ୍ୱବର ।
ନିରବରେ ଠିଆହେଲେ ହୋଇ ଅଗ୍ରସର ।
ଅଶ୍ୱକୁ ଦେଖିଣ ସର୍ବେ ଆନନ୍ଦ ହୋଇଲେ
ଧନ୍ୟ ଧନ୍ୟ ଅଶ୍ୱ କହି ବହୁ ପ୍ରଶଂସିଲେ ॥
କ୍ରମେ ଅଶ୍ୱର ନିକଟେ ପ୍ରବେଶ ହୋଇଣ ।
ପାଇଲି ପରସ୍ପେ ଧରି ଆଣିଲେ ବହନ ॥
ଆନନ୍ଦରେ ଅଶ୍ୱ ଧରି ସର୍ବ ସୈନ୍ୟଗଣ ।
ରାଜାଙ୍କ ପାଖରେ ଆସି କଲେକ ଦର୍ଶନ ॥
ରାଜାଙ୍କୁ ଅଶ୍ୱ ସମର୍ପି ସର୍ବେ ଠିଆହେଲେ ।
ଅଶ୍ୱକୁ ଦେଖିଣ ରାଜା ଆନନ୍ଦ ହୋଇଲେ ॥
ମହାବୀର ବଭ୍ରୁବାହ ଦେଖି ଅଶ୍ୱବର ।
ଅତ୍ୟନ୍ତ ଆନନ୍ଦ ଜାତ ହୋଇଲା ମନର ॥
ଆନନ୍ଦରେ ଅଶ୍ୱ ପାଶେ ପ୍ରବେଶ ହୋଇଲେ
ସୁଲକ୍ଷଣବନ୍ତ ଅଟେ ଅଶ୍ୱକୁ ଦେଖିଲେ ॥
ଦୂତ ଯାହା କହିଥିଲା ମିଥ୍ୟା ତା ନୁହଇ ।
ଏପରି ସୁନ୍ଦର ଅଶ୍ୱ କାହିଁ ଦେଖା ନାହିଁ ॥
ସତ୍ୟ ଅଟେ ମଣିପୁରେ ରାଜପଣ ମୋର ।
ଅଛଇ ଧନ ରତନ ସକଳ ଭଣ୍ଡାର ॥
ସମ୍ପତ୍ତିରେ ବାସବକୁ ଜିଣିପାରେ ମୁହିଁ ।
ଧନବଳେ କୁବେରକୁ ତିଳେ ନ ଗଣଇ ॥
ସୈନ୍ୟ ସେନାପତି ଆଦି ଅଛନ୍ତି ପ୍ରଚୁର ।
ରଥ ଅଶ୍ୱ ଗଜ ଅଛି ସଂଖ୍ୟା ନାହିଁ ତାର ॥
ଧନ ରତ୍ନ ରଥ ରଥି ମଣି ମୁକ୍ତାଦି ତ ।
ବହୁଦ୍ରବ୍ୟ ଅଛି ପୁରେ ଅଭାବ ନାହିଁ ତ ॥
ମାତ୍ର ତିନିଭୁବନରେ ସାର ଲକ୍ଷ୍ମୀଧର ।
ସେଠାରେ ନ ଥିବ ଏହିପରି ଅଶ୍ୱବର ॥
ଏତେ କହି ଅଶ୍ୱପାଶେ ଚଳିଲା ରାଜନ ।
ଦେଖିଲା ଯେ ଏକପତ୍ର ଅଶ୍ୱର ଶିରେଣ ॥
ଦେଖିଣ ଆନନ୍ଦ ହୋଇ ନୃପତି ଶେଖର ।
ପତ୍ରକୁ ଫିଟାଇ ପାଠ କଲାକ ସତ୍ୱର ॥

ପତ୍ରରେ ହୋଇଛନ୍ତି ଲେଖା ଯୁଧିଷ୍ଠିର ରାଣ ।
ଧର୍ମ ଅବତାର ସେହି ପୃଥିବୀ ମଧ୍ୟେଣ ॥
ତିନି ଭୁବନରେ ସେହି ଏକା ବୀରବର ।
ତାହାଙ୍କର ଅଛନ୍ତି ଯେ ଚାରି ସହୋଦର ॥
ଭୀମ ଅର୍ଜୁନ ନକୁଳ ପୁଣି ସହଦେବ ।
ଆଉର ଦ୍ୱାରକା ପତି ଶ୍ରୀହରି ବାନ୍ଧବ ॥
ପାଣ୍ଡୁବଂଶ ନାଥ ଚନ୍ଦ୍ର ବଂଶରେ ଜନମ ।
ହସ୍ତିନା କଟକେ ତାହାଙ୍କର ରାଜପଣ ॥
ତାହାଙ୍କର ଜ୍ୟେଷ୍ଠ ତାତ ପୁତ୍ର ଦୁର୍ଯ୍ୟୋଧନ
ସଙ୍ଗରେ ଭାଗ ଅର୍ଥରେ ଦ୍ୱନ୍ଦ କଲେ ଜାଣ ॥
ସମସ୍ତ ପୃଥିବୀ ରାଜା ଏକତ୍ରିତ ହେଲେ ।
କୁରୁକ୍ଷେତ୍ର ବୋଲି ସ୍ଥାନେ ଦୁହେଁ ଯୁଦ୍ଧ କଲେ
ଦୁର୍ଯ୍ୟୋଧନର ପକ୍ଷରେ ବହୁ ରାଜା ଥିଲେ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଅଶ୍ୱତ୍ଥାମା ତୁଲେ ॥
ମାତ୍ର ଏସବୁ ଥାଇଣ ଦୁର୍ଯ୍ୟୋଧନଠାରେ ।
ଶ୍ରୀହରିଙ୍କ ମହିମାରେ ଯୁଧିଷ୍ଠି ଜିଣିଲେ ॥
ତାହାଙ୍କର ଭାଇ ଭୀମ ଅତି ବଳବାନ ।
ଯାର ପାଦଭାର ପୃଥ୍ୱୀ ନ ପାରେ ସହିଣ ॥
ଯାହାର ରଡ଼ରେ ଯମ ଆସ୍ଥାନ କମ୍ପଇ ।
କି ଛାର ମର୍ତ୍ତ୍ୟର ରାଜା ହେବେ ଭୟ ପାଇଁ ॥
ଅନ୍ୟ ଭାଇ ଅଟେ ତାହାଙ୍କର ପାର୍ଥବୀର ।
ଅକ୍ଷୟ ତୂଣୀର ପାଶୁପତ ଯାର ଶର ॥
ବିଜୟ ଗାଣ୍ଡିବ ଧନୁକରେ ଶୋଭମାନ ।
ଶ୍ରୀକୃଷ୍ଣ ଭଣୋଇ ସୁଭଦ୍ରାଙ୍କ ପ୍ରାଣଧନ ॥
କିରାତ ରୂପରେ ଯୁଦ୍ଧେ ଶିବଙ୍କୁ ତୋଷିଲେ ।
ଦେବେ ଜୟକରି ଖାଣ୍ଡବ ବନ ଦହିଲେ ॥
ନିବାତ କବଚ କାଳକେୟ ଯାତୁଧାନ ।
ବିନାଶ କରିଲେ ସ୍ୱର୍ଗପୁରକୁ ଯାଇଣ ॥
ଧନୁହୁଲେ ପୃଥିବୀକୁ ଧଇଲେ ସେ ବୀର ।
ପାତାଳେ ବିବାହ ହେଲେ ନାଗୁଣୀ ସଙ୍ଗର ॥
ସ୍ୱର୍ଗେ ପୁରୁହୁତ କୋଳେ ବସି ବୀରବର ।
ସର୍ବଦେବ ମଧ୍ୟେ ଅଭିଷେକ ହେଲେ ବୀର ॥
ଗୋଟିଏ ସିଂହର ବଳ ଯେଉଁ ବଳରାମ ।
ସୁଭଦ୍ରା ହରଣେ ତାଙ୍କୁ ଦେଲେ ଅପମାନ ॥
ପଞ୍ଚାଳ ଦେଶରେ ଲକ୍ଷେ ରାଜାଙ୍କୁ ଜିଣିଲେ ।
ବଳେ ଦ୍ରୌପଦୀ ନାମରେ କନ୍ୟାକୁ ଆଣିଲେ ॥
ଅନ୍ୟ ଦୁଇ ସହୋଦର ଏକୁ ଏକ ବଳୀ ।
ଯାହାଙ୍କ ତେଜରେ ଭୟକରେ ମହୀଅଳି ॥
ସେହି ଧନଞ୍ଜୟ ବୀର ସୈନ୍ୟ ସହିତରେ ।
ଏ ଅଶ୍ୱକୁ ରକ୍ଷା କରୁଛନ୍ତି ନିରନ୍ତରେ ॥



ବଭ୍ରୁବାହନ କର୍ତ୍ତୃକ ଅଶ୍ୱ ଧାରଣ

ଧର୍ମ ଯୁଧିଷ୍ଠିର ଜ୍ଞାତିବଧ ଦୋଷ ପାଇଁ ।
ଅଶ୍ୱମେଧ କରି ମୁକ୍ତ ହେବା ଇଚ୍ଛା ବହି ॥
ଏ ଅଶ୍ୱକୁ ଅର୍ଜ୍ଜୁନର ସହିତ ପ୍ରେରଣ ।
କରିଛନ୍ତି ଯେଉଁ ଦେଶେ ଯେଉଁ ବଳବାନ ॥
ଧରିବ ଏହାକୁ ଯୁଦ୍ଧେ ଅର୍ଜ୍ଜୁନ ହାତରେ ।
ସବଂଶେ ମରିବ ସେହି ଜାଣ ହେ ବଧିରେ ॥
ଯେବେ ତାର ପ୍ରାଣେ ଆଶା ଥିବ ଅବା କିଛି
ଭେଟି ନେଇ ଯଜ୍ଞ ଦର୍ଶନ ସେ କରୁ ଆସି ॥
ଏସନ ଲେଖା ପଢ଼ିଣ ବଭ୍ରୁବାହ ବୀର ।
ମନମଧ୍ୟେ ଚେତାଇଲା ଜନନୀର ଗୀର ॥
ବୋଇଲା ମୋହର ଜନ୍ମ ପାର୍ଥ ଔରସରୁ ।
ପାଣ୍ଡୁବଂଶେ ଜନ୍ମ ତାଙ୍କୁ ଜାଣେ ମୁଁ ଅଗରୁ
ଦିନେ ମାତା କହିଥିଲେ ମୋ ଜନ୍ମ କାହାଣୀ
ସେଦିନୁ ଜାଣେ ମୋ ପିତା ପାର୍ଥ ବୀରମଣି ॥
ଏତେ ଦିନରେ ସୁଭାଗ୍ୟ ହୋଇଲା ମୋହର
ଦର୍ଶନ କରିବ ଯାଇଁ ପିତାଙ୍କ ପୟର ॥
ଜନ୍ମ ଦିନୁ ପିତା ସ୍ନେହ କପଟରେ ମୁହିଁ ।
ମାତା ସ୍ନେହ ବିନା ତାହା ତଳେ ଜାଣିନାହିଁ
ହାୟ କି ଅଭାଗ୍ୟ ମୁହିଁ ପିତାଙ୍କ ଚରଣ ।
ଏତେଦିନ ଯାଏ ଯାହା ନ କଲି ଦର୍ଶନ ॥
ସୁକୃତ ନଥିଲେ କେବେ ପିତାଙ୍କ କୋଡ଼ରେ
ବସି ନ ପାରେ ସନ୍ତାନ କହନ୍ତି ସକଳେ ॥
ପ୍ରଧାନ ପାତକୀ ମୁହିଁ ଅତ୍ୟନ୍ତ ପାମର ।
ସେଯୋଗୁଁ ପିତାଙ୍କ କୋଡ଼ଭୋଗ ନୁହେଁ ମୋର
ଧନ୍ୟ ସେମାନଙ୍କ ଜୀବ ଯେମାନେ ବାଲ୍ୟରେ
ପିତୃ ସ୍ନେହେ ପାଳିତ ହୁଅନ୍ତି ସଂସାରରେ ॥
ଏତେ ହତଭାଗା ମୁହିଁ ଧିକ ମୋ ଜନମ ।
ଆଜଯାଏ ନ କଲି ଯା ପିତାଙ୍କ ଦର୍ଶନ ॥
ରାଜ୍ୟ ଧନେ ଆବଶ୍ୟକ କିଛି ନ ଦେଖଇ ।
ଅସାର ଜୀବନ ମୋର କିଛି ଫଳ ନାହିଁ ॥
ଧିକ ମୋର ବଳ ବୀର୍ଯ୍ୟ ଧିକ ତେଜ ମୋର ।
ନ ଦେଖିଲି ପିତାଙ୍କର ଚରଣ କମଳ ॥
ବନ୍ଦି ନ ପାରିଲି ଥରେ କଲି ତାଙ୍କଠାରୁ ।
ବୃଥା ରାଜତ୍ୱ ଜୀବନ କି ମିଳିବ ପ୍ରଭୁ ।
ପିତାଙ୍କ ଚରଣ ପାର୍ଶ୍ୱେ ଯେବେ ଶରଦିନ ।
ଉପସ୍ଥିତ ରହିଥାନ୍ତି ନୁହନ୍ତି ନନ୍ଦନ ॥

ପିତାଙ୍କ ଉଚ୍ଛିଷ୍ଟ ଭୋଗ ଯେବେ ମୋର ହୁଏ
ତାହାଠାରେ ରାଜ୍ୟସୁଖ ବିଫଳ ନିଶ୍ଚୟେ ॥
ଜନ୍ମ ଦାତା ଯେ ପ୍ରକାରେ କରେ ଉପକାର ।
କାହା ସାଧ୍ୟ ଶୁଝିଦେବ ସେ ସ୍ନେହ ସକଳ ॥
ଯା ହେଉ ଘେନିଣ ଅଶ୍ୱ ମୁହିଁ ଅନ୍ତଃପୁରେ ।
ଏହିକ୍ଷଣି ଜଣାଇବି ମାତାଙ୍କ ଆଗରେ ॥
ଏତେକ ବୋଲିଣ ବୀର ସ୍ନେହେ ରୋମାଞ୍ଚିତ
ହୋଇଣ ଅଶ୍ୱ ସହିତ ଗମିଲେ ତୁରିତ ॥
ଅନ୍ତଃପୁର ମଧ୍ୟେ ବୀର ଅଶ୍ୱ ସହିତରେ ।
ଉପସ୍ଥିତ ହେଲେ ଯାଇ ଜନନୀ ପାଶରେ ॥
ପାଦେ ପଡ଼ି ଠିଆ ହୋଇ ଯୋଡ଼ି ବେନିକର
କହିବାକୁ ଆରମ୍ଭିଲେ ସେ ତନୟ ବୀର ॥
ପୁତ୍ରର କାରୁଣ୍ୟ ଭାବ ଜନନୀ ଦେଖିଣ ।
ସ୍ନେହେ କୋଳେ ଧରି ମୁଖେ ଦେଲେ ସେ ଚୁମ୍ବନ
ବୋଇଲେ ରେ ବଳା ଏତେ ଅଥୟ କି ପାଇଁ
ସଂଶୟ ଫିଟାଇ କହ ମୋ ଦୁଃଖୀ ତନୟି ॥
କେଉଁ କଥା ପାଇଁ ବାପ ମନରେ ସନ୍ଦେହ ।
ଶୀଘ୍ର ମୋ ଆଗରେ ବଳା କହ ସମୁଦାୟ ॥
ଆଜ କିପାଁ ମାତିଅଛୁ ଅତି ଆନନ୍ଦରେ ।
ଅଶ୍ୱକୁ ଧରି ଆସିଲୁ କିପାଁ ମୋ ପାଶରେ ॥
କି କାରଣେ ଦେଖେ ଆଜ ସହାସ୍ୟ ବଦନ
କିପାଁଇ ଆନନ୍ଦ ଜଳେ ଆଜ ରେ ମଗନ ॥
କିବା ଇଷ୍ଟ ସିଦ୍ଧି ତୋର ହୋଇଛି କୁମର ।
ମୋହର ନିକଟେ ତାହା କହ ତୁ ସତ୍ୱର ॥
କେଉଁଠାରୁ ଏ ଅଶ୍ୱକୁ ପାଇଲୁ କୁମର ।
ଦେଖ ଜୟ କର ଚିହ୍ନ ଆଣିଛୁ କାହାର ॥
କିବା କାହା ସଙ୍ଗେ ତୋର ମିତ୍ରତା ହୋଇଛି
ସେହି ତୋତେ ଏ ଅଶ୍ୱକୁ ଆନନ୍ଦେ ଦେଇଛି
ଶୁଣିଣ ଜନନୀ ଗୀର ବଭ୍ରୁବାହ ବୋଲେ ।
ଏତେଦିନେ ମୋର ମନ ପୂର୍ଣ୍ଣ ଏ ସଂସାରେ
ଏତେ ଦିନେ ଭାଗ୍ୟପଥ ହେଲା ପରିଷ୍କାର ।
ଚିହ୍ନ ଦେଖି ଆନନ୍ଦରେ ନାଚୁଛି ଅନ୍ତର ॥
ଏତେଦିନେ ଜନମ ମୋ ସଫଳ ହୋଇଲା ।
କି ସୁଯୋଗେ ଆଜ ମୋର ରାତ ପାହିଥିଲା ॥
କିବା ଗ୍ରହମାନେ ମୋର ଉଚ୍ଚରେ ଅଛନ୍ତି ।
ତେଣୁ ଭୋଗ ହେଲା ମା ଗୋ ଏସନ ବିଭୂତି

ଶୁଣ ମାତ ମୁହିଁ କେଉଁ ଦେଶ ଜାଣି ନାହିଁ ।
ଦେଶ ଜାଣି ଏ ଅଶ୍ୱକୁ ମୁହିଁ ଆଣି ନାହିଁ ॥
ତାହା ସଙ୍ଗେ ମିତ ହୋଇ ଏହା ପାଇ ନାହିଁ
ବନ୍ଧୁ ବାନ୍ଧବରେ ମୋତେ ନ ଦେଇଛନ୍ତି କେହି
କୋଉଁଣସି ରାଜା ଉପହାର ଦେଇ ନାହିଁ ।
ଭାଗ୍ୟବଳେ ଏ ଅଶ୍ୱକୁ ଦେଖିଲଇଁ ମୁହିଁ ॥
ଦୈବେ ଅଶ୍ୱ ଅସି ପହଞ୍ଚିଲା ମୋର ପୁର ।
ଗୁରୁ ଅସି ଜଣାଇଲା ମୋହର ପାଶର ॥
ଗୁରୁକୁ ଅଦେଶି ଅଶ୍ୱ ଧରଣ ଅଣିଲି ।
ଅଶ୍ୱର ମସ୍ତକେ ପତ୍ର ଲେଖାକୁ ଦେଖିଲି ॥
ଲେଖାରେ ଦେଖିଲି ମାତା ହସ୍ତିନାର ରାଜା
ଯୁଧିଷ୍ଠିର ନାମେ ସେ ଅଟନ୍ତି ମହାତେଜା ॥
ଜ୍ଞାତବଧ ଦୋଷୁଁ ମୁକ୍ତ ହୋଇବାର ପାଇଁ ।
ଅଶ୍ୱମେଧ କରୁଛନ୍ତି ଧର୍ମ ନୃପସାଇଁ ॥
ଅଶ୍ୱକୁ ଛାଡ଼ିଣ ଛନ୍ତି ବୁଲିବା ନିମିତ୍ତ ।
ଅଶ୍ୱ ରକ୍ଷା ପାଇଁ ଅସିଛନ୍ତି ବୀର ପାର୍ଥ ॥
ମହା ମହା ଯୋଦ୍ଧାମାନେ ସଙ୍ଗରେ ଅଛନ୍ତି ।
ଅଶ୍ୱରକ୍ଷା କରି ନାନାଦେଶେ ବୁଲୁଛନ୍ତି ॥
କହୁଥିଲି ମାତ ତୁମ୍ଭେ ପାଣ୍ଡୁ ବଂଶଧର ।
ଅର୍ଜୁନଙ୍କ ଔରସରେ ଜନମ ମୋହର ॥
ପିତାଙ୍କର ଯଜ୍ଞ ଅଶ୍ୱ ଅଣିଅଛି ଧରି ।
ଏବେ କି କରିବା ମାତ କୁହ ଗୋ ବିଚାରି ॥
ଆଗରୁ ମୁଁ ଯେବେ ଏହା ଜାଣିଥାନ୍ତି ମାତ ।
କେବେ ଅଶ୍ୱକୁ ଧରଣ ନ ଥାନ୍ତି ମୁହିଁତ ॥
ଯେତେବେଳେ ଅଶ୍ୱଧରି ମସ୍ତକେ ତାହାର ।
ବୀରପତ୍ରକୁ ଦେଖିଲି ଜାଣିଲି ସକଳ ॥
ଅନୁଚିତ କର୍ମ କରି ମୋର ଅନୁତାପ ।
ହୋଉଛି ବଢୁଛି ମାଗୋ ହୃଦୟ ସନ୍ତାପ ॥
ଏକେତ କେଉଁ ପାପରୁ ପିଲାଦିନୁ ମୋର ।
ଦେଖି ନ ଥିଲିତ ମାତ ଜନକ ପୟର ॥
ଦଇବ ବାମ ମୋହର କି କରିବ ମୁହିଁ ।
ବୁଦ୍ଧି ବାଟ ଦିଶୁନାହିଁ ଦିଅ ମା ବତାଇ ॥
ଅହା ଯେଉଁମାନେ ବାଲ୍ୟ ପିତାଙ୍କ ସ୍ନେହରେ
ବଢୁଥାନ୍ତି କେଡେ ସୁଖ ଲଭନ୍ତି ସେ ନରେ ॥
ମୋହର ଭାଗ୍ୟରେ ହାୟ ନ ଘଟେ ମିଳନ ।
ଏଥୁ ବଳି ଅଉ କିଛି କଷ୍ଟ ଅଛି ଜାଣ ॥
ପିତାଙ୍କ କୋଳକୁ ମୁହିଁ ପିଲାଟି ଦିନରୁ ।
ଅଧିକାର କରି ନାହିଁ ପୂରୁବ ଦୋଷରୁ ॥
ବଡ଼ ହୋଇ କରି ସୁଦ୍ଧା ପିତାଙ୍କ ପ୍ରସାଦ ।
ନ ପାଇଲି କର୍ମ ମୋର ଏଡ଼େକ ବିଷାଦ ॥
ଜୀବନ ଥାଉଣୁ ମାତ କି ପାଉଛି ମୁହିଁ ।
ନ ଦେଖି ପିତାଙ୍କୁ ଚିରଦିନ ଦୁଃଖୀ ହୋଇ ॥
ତଥାପି ମୋ କର୍ମ ମନ୍ଦ ଜାଣି ଅଗୋ ମାତ ।
ଯେ କାର୍ଯ୍ୟ କରିଲି ମାତ ଅଟେ ଅବହିତ ॥
ଏବେ ଘଟଣାରେ ପଡ଼ି ଯେପରି ବେଭାର ।
କରୁଛି ତହିଁରେ କ୍ଷୋଭ ବଢ଼ିଛି ଅପାର ॥
ସନ୍ତାନ ହୋଇଣ ମୁହିଁ ପିତୃ ଅଧିକାର ।
ସହଜରେ ନେଲି ଅଟେ ବଡ଼ ଅବିଚାର ॥
ଜାଣନ୍ତି ସକଳେ, ବୀର ପୁତ୍ର ମୁହିଁ ବୀର ।
ଦେବଦାନବଙ୍କୁ ରଣେ ନ କରେ ଖାତିର ॥
କ୍ଷତ୍ରୀକୁଳେ କ୍ଷତ୍ରୀ ଔରସରେ ଜନ୍ମି ମୁହିଁ ।
କ୍ଷତ୍ରୀବୃତ୍ତିରେ ଧରିଛି ଯଜ୍ଞ ଅଶ୍ୱ ଯାଇଁ ॥
ଯେବେ ମୁଁ ଫେରାଇ ଦେବି ଲୋକନିନ୍ଦା ହେବ
ବୋଲିବେ ଭୟରେ ଫେରିଦେଲା ନରଦେବ
ଏ ଦେଗ ଜାଣି ଶୁଣିଣ ନ ଦେଲେ ଫେରାଇ
ଅବାଧ୍ୟ ପୁତ୍ର ବୋଲିଣ ପିତା ଜାଣିବହିଁ ॥
ଉଭୟ ବିପଦେ ମାତ ବୁଦ୍ଧି ନ ଦିଶଇ ।
ଦୟାକରି ସନ୍ତାନକୁ ବୁଦ୍ଧି ଦିଅ କହି ॥
ଚିରଦିନ ଅପଯଶ ରହିଲା ମୋହର ।
କପାଁ ଏହି କର୍ମେ ମନ ଦେଲି ଚକ୍ରଧର ॥
ଅସମୟେ ବଳବୁଦ୍ଧି ଆଦ ବିବେଚନା ।
ଜାଣିଲି ମୁଁ ସେ ସକଳ କିଛିହିଁ ଥାଏ ନା ॥
କି କାର୍ଯ୍ୟ କରିବା ଭଲ ନ ବିଚାରି ମୁହିଁ ।
ଉଗ୍ରତା ଉଦ୍ଧତ ଭାବେ କରିଣ ଅଛଇ ॥
କପାଁ ଅଶ୍ୱ ଧରିବାକୁ ଘଟିଲା ଏ ମତି ।
କପାଁ ମୋର ମତି ଛନ୍ନ ହୋଇଲା ସମ୍ପ୍ରତି ॥
ତୁମ୍ଭଙ୍କୁ ଯାତନା ମାତ ଦେଲି ଅକାରଣ ।
କପାଁ ପୁତ୍ରରୂପେ ମୋତେ କଲ ମା ଜନମ ।
ଗର୍ଭର ମଧ୍ୟରେ କହିଁ ନ ହୋଇଲି ହତ ।
ତାହେଲେ ଦୁର୍ଗତି ମାତ ହୋଇ ନ ଥାନ୍ତା ତ
ହାୟ ଜନମିଲି ଯେବେ ପ୍ରସବ ଗୃହରେ ।
କପାଇଁ ନାଶ ନ କଲ ଏହି କୁଳାଙ୍ଗାରେ ॥

ତଥାପିଯେବେ ନୋହିଲା ମରଣ ଯେ ମୋର ।
ନିର୍ଲ୍ଲଜ ଜୀବନେ ଆଉ କେଉଁ ଦରକାର ॥
କରିଲି ମୁଁ କେତେ ଯୁଦ୍ଧ ସଂଖ୍ୟା ନାହିଁ ତାର ।
ସେଥିରେ ନୋହିଲା ମୃତ୍ୟୁ ଏହି ଅଧମର ॥
ସବୁଯୁଦ୍ଧେ ଜୟଲାଭ ହୋଇଲା ମୋହର ।
ମୋରଲାଗି ବିପକ୍ଷେ କରନ୍ତି ହାହାକାର ॥
ଯେବେ ମାତା ମୋହର ମରଣ ହୋଇଥାନ୍ତା ।
ଏପରି ବିପଦ ଭୋଗ କିଏ ସେ କରନ୍ତା ॥
ଯେବେ ମୋହର ଜୀବନ ଯମ ନେଇଥାନ୍ତା ।
କିପରି ତା ମନବାଞ୍ଛା ପୂରଣ ହୁଅନ୍ତା ॥
ଏପରି ଦୁଃଖେ କରଣ ବଭ୍ରୁବାହ ବୀର ।
ଅନୁତାପ କରି ପଡ଼େ ଜନନୀ ପାଦର ॥
ପୁତ୍ରର ଅବସ୍ଥା ଦେଖି ଚିତ୍ରାଙ୍ଗଦା ସତୀ ।
ତଳୁ ଉଠାଇଣ କୋଳେ ଧରିଲେ ତଡ଼ିତ ॥
ପଣନ୍ତରେ ଶରୀରରୁ ଧୂଳି ଝାଡ଼ିଦେଇ ।
ପ୍ରବୋଧି ବୋଲନ୍ତି ବାପ ହୋଇଲୁ କି ବାଇ ॥
କିପାଇଁ ବାତୁଳ ପରି ହେଉ ରେ କୁମର ।
ମାନ ମୋ ବଚନ ବାପ ଭାବି କାର୍ଯ୍ୟକର ॥
ଦାସ ଦାସୀ ଧନ ରତ୍ନ ସଙ୍ଗେ ବାନ୍ଧି ନେଇ ।
ଘୋଟକ ସହିତ ଚାଲ ପାର୍ଥ ବୀର ତହିଁ ॥
ପାଦଗତ କରି ହସ୍ତ ଯୋଡ଼ିଣ ତୁ ଯିବୁ ।
ଗଳେ ବସ୍ତ୍ର ଦେଇ ତାଙ୍କ ପାଦରେ ପଡ଼ିବୁ ॥
ବିନୟ ଭାବରେ ସବୁ ବୃତ୍ତାନ୍ତ କହିବୁ ।
ଧନ ରତ୍ନ ସହ ଯାଇଁ ଚରଣେ ଭେଟିବୁ ॥
ତ୍ରିଭୁବନ ମଧ୍ୟେ ସେହି ଧାନୁକୀ ପ୍ରଧାନ ।
କେତେବେଳେନକରିବେତୋତେକୋପମନ
ଚିତ୍ତୋଇ କହିବୁ ବାପ ତାହାଙ୍କୁ ଏ ବାଣୀ ।
ଯେତେବେଳେ ତୀର୍ଥ ବାସ କଲ ବୀରମଣି ॥
ଚିତ୍ରାଙ୍ଗଦା ମାଆ ମୋର ଗନ୍ଧର୍ବ ନନ୍ଦନୀ ।
ଗନ୍ଧର୍ବ ବିଧାନ ବିଭା ହେଲ ଫାଲ୍‌ଗୁନି ॥
ଅନେକ ଦିବସ ରହି ମୋ ମାତା ସଙ୍ଗରେ ।
ସଙ୍କେତ ଦେଇଣ ପିତା ଗଲ ନିଜସ୍ଥଳରେ ॥
ତୁମ୍ଭର ଔରସେ ଜନ୍ମ ହୋଇଅଛି ମୁହିଁ ।
ବଭ୍ରୁବାହନ ବୋଲିଣ ନାମ ମୋ ଅଟଇ ॥
ନ ଜାଣଇ ପରିଚୟ ଯଜ୍ଞ ଅଶ୍ୱବର ।
ଧରି ନେଇ ପୁରେ ଯାଇଁ କହିଲି ଖବର ॥

ଶୁଣି ସେ ସକଳ ମାତା ମୋତେ ପଠାଇଲେ ।
ଧନ ରତ୍ନ ନେଇ ପିତା ପାଶେ ଚାଲ ଭଲେ ॥
ତାହାଙ୍କ ଆଜ୍ଞାକୁ ମୁହିଁ କରିଣ ଧାରଣ ।
ଶ୍ରୀଚରଣ ତଳେ ଆସି ଦେଲି ଦରଶନ ॥
ଶୁଣିଣ ଅର୍ଜ୍ଜୁନ ବୀର ପରିଚୟ ତୋର ।
ହିଂସା ରାଗ ଦ୍ୱେଷ ଆଦି ତେଜିବେ ସକଳ ॥
ଅଭିମାନ ଦୂରକରି କୋଳେ ସେ ଘେନିଣ ।
ଚିହ୍ନା ପାଇ ଆନନ୍ଦିତ ହେବ ତାଙ୍କ ମନ ॥
ନ କର ବିଳମ୍ବ ବାପ ମାନ ମୋ ବଚନ ।
ସୈନ୍ୟ ସେନା ନେଇ ଯାଅ ଅର୍ଜ୍ଜୁନ ପାଶେଣ ॥
ମାତାଙ୍କର ବାଣୀ ଶୁଣି ବଭ୍ରୁବାହ ବୀର ।
କର ଯୋଡ଼ିଣ ବୋଲନ୍ତି ବଚନ ମଧୁର ॥
ପଡ଼ିଛି ସଂକଟେ ମାତ କି କରିବି ମୁହିଁ ।
ବୁଦ୍ଧିବାଟ କିଛି ମୋତେ ଦେଖା ଯାଉନାହିଁ ॥
ଯାହା କହିଲ ଗୋ ମାତ ଉଚିତ ବଚନ ।
ପିତା ପାଶେ ପୁତ୍ର ଯିବା ନୁହେ ଅଶୋଭନ ॥
ମାତ୍ର ମନେ ଚିନ୍ତା ମୋର ହୁଅଇ ଗୋ ମାତ ।
କ୍ଷତ୍ରିୟ ଔରସେ ଜନ୍ମି କେମ୍ନେ ଋଷିବ୍ରତ ॥
ପାଳନ କରିବି ମୁହିଁ ଇଚ୍ଛା ହେଉ ନାହିଁ ।
ଜନମୁଖେ ବହୁତର ନିନ୍ଦା ପାଇବଇଁ ॥
ସଂସାରଲୋକେ ଶୁଣିଣ କି ବୋଲିବେ ମୋତେ
ବୋଲିବେ ଭୟେ ଶରଣ ପଶିଲା ତୁରିତେ ॥
ରାଜା ମହାରାଜାମାନେ କାଇଁ ଡରିବେ ।
ବଡ଼ ହୀନବଳ ବୋଲି ସମସ୍ତେ ଗଣିବେ ॥
ଯେଉଁମାନେ ପ୍ରଭୁପଣ କରି ନ ଜାଣନ୍ତି ।
ସେମାନଙ୍କ ସଙ୍ଗତେ ସମାନ ହେବି ମୁଁ ଟି ॥
ଯାହା ଦେହେ ବଳବୀର୍ଯ୍ୟ ଅଛି ବିଦ୍ୟମାନ ।
ଯେ ଲୋକ ବୀର ବୋଲିଣ କରେ ଅଭିମାନ ॥
ସମାଜେ ଗୌରବ ଯାର ଅଛି ଚିରକାଳ ।
ଏପରି କାର୍ଯ୍ୟ କି ନିନ୍ଦା ନୁହେଁ ତା ପକ୍ଷର ॥
ଅଗୋ ମାତ ସଦା ତୁମ୍ଭେ ଥାଅ ଅନ୍ତଃପୁରି ।
ପୁରୁଷାର୍ଥ କି ପ୍ରକାରେ ଜାଣିବ କିପରି ॥
ସ୍ତ୍ରୀକେ ଜାଣନ୍ତି ଅତି ଗୌରବ ପଦାର୍ଥ ।
ପରାକ୍ରମ ଅସ୍ତ୍ରଶକ୍ତି ଆଉ ପୁରୁଷାର୍ଥ ॥
ଅସାର ସଂସାର ଆଦି ସବୁ ପରିବାର ।
ପୁଅ ଝିଅ ଆଦି ସବେ ସ୍ନେହର ଆଧାର ॥

ଛାଡ଼ିବାକୁ ସେ ସକଳ କ୍ଷତ୍ରିୟ ନନ୍ଦନ ।
ଚିନ୍ତା କଷ୍ଟ କିଛି ମାତ୍ର ଭାବେ ନାହିଁ ମନ ॥
ଗୌରବକୁ ସାର ମଣେ କ୍ଷତ୍ରିୟ ସନ୍ତାନ ।
ସେଥିପାଇଁ ପ୍ରାଣ ସୁଦ୍ଧା କରିପାରେ ଦାନ ॥
ତେଣୁ କହେ ମାତା ମୁହିଁ ବଳ ପ୍ରକାଶିବ ।
ଶକ୍ତି ବଳେ ସ୍ୱର୍ଗ ବୋଲି ପରିଚିତ ଦେବ ॥
ଭାବିଲେ କି ହେବ ମାତ ତୁମ୍ଭର ବଚନ ।
ଅଲଂଘ୍ୟ ମୋହର ମାତ ଅଟଇ ତ ଜାଣ ॥
ତୁମ୍ଭ ଆଦେଶକୁ ମାନି ପାର୍ଥ ପାଶେ ଯିବ ।
ଧନରତ୍ନ ଦାସଦାସୀ ସଙ୍ଗତରେ ନେବ ॥
ସେ ସବୁ ଚରଣେ ତାଙ୍କ ଥୋଇ ବିନୟରେ
ଚରଣ ଧରି ପଡ଼ିବ ଜାଣ ମୁଁ ଧରାରେ ॥
ପାଦ ଧରି ମାତ ମୁହିଁ ଅତି ବିନୟରେ ।
ମୋର ପରିଚୟ ଦେବ ତାହାଙ୍କ ପାଶରେ ॥
ମାତ୍ର ମାତ ଯେବେ ମୁହିଁ ବିନୟ କହିଲେ ।
ଯେବେ ମୋବାକ୍ୟକୁ ଧ୍ୟାନ ନ କରିବେ ଭଲେ
ଅପମାନ ଦେଇ ମୋତେ ଲାଞ୍ଛନା କରିବେ ।
ତେବେ କି କରିବି ମାତ କହ ଭାବି ଏବେ ॥
ଯେବେ ମୋର ପରିଚୟ ପାଇ ପାର୍ଥବୀର ।
ଘୃଣାକରି ହତାଦର କରିବେ ସତ୍ୱର ॥
ତେବେ ମାତ ମୋର ଅପମୃତ୍ୟୁ ତ ଘଟିବ ।
କ୍ଷତ୍ରିୟ କଳଙ୍କ ମୋତେ ନିଶ୍ଚୟ ଲାଗିବ ॥
ବୀରମାନେ ମୋର ନାମେ କରିବେ ଯେ ଘୃଣା
ଲୋକମୁଖେ ଅପଯଶ ହୋଇବ ଘୋଷଣା ॥
ବୀରନାଶେ ଆଦର ନ କରିବେ ମୋତେ ।
ଘୋର ଅପଯଶ ହେବ ସମସ୍ତ ଜଗତେ ॥
ଏହି କାରଣରୁ ପାର୍ଥ ପାଶେ ଯିବା ପାଇଁ ।
କେଉଁଣସିମତେ ମୋର ଇଚ୍ଛା ହେଉ ନାହିଁ ॥
ତୁମ୍ଭର ଦୟାରେ ମାତ ସଂସାରରେ ମୁହିଁ ।
ବୀରପଣେ ମୋ ସମାନ କାହିଁ ନ ଦେଖଇ ॥
ଯକ୍ଷ ରକ୍ଷ ନାଗ ନର ଦେବତା ନିକର ।
ଏମାନଙ୍କୁ ମନେ କରେ ତୃଣ ପରକାର ॥
ତେଣୁ ଭାବେ ନିନ୍ଦା ମୋତେ ହୋଇବ ବହୁତ
ସେ କାରଣୁ ଅନବରତରେ ଦଗ୍‌ଧ ଚିତ୍ତ ॥
ଏହି ହେତୁ ପାର୍ଥ ନିକଟକୁ ଯିବା ପାଇଁ ।
କେତେବେଳେ ମାତମୋରଇଚ୍ଛାହେଉନାହିଁ

ତୁମ୍ଭର ପ୍ରସାଦେ ମା ଗୋ ନ କରଇ ଭୟ ।
ଅପମାନ ଅପଯଶେ କମ୍ପେ ମୋ ହୃଦୟ ॥
ବରଂ ଆଘାତକୁ ମୁହିଁ କରେ ତୁଚ୍ଛା ଜ୍ଞାନ ।
ହୀନ ଲୋକଙ୍କର କଥା ନ ସହେ ଶ୍ରବଣ ॥
ଆଜି ହେଉ କାଲି ହେଉ କୌଣସି ଦିନରେ
ଅବଶ୍ୟ ମରଣ ମୋର ନିଶ୍ଚେ ହୋଇପାରେ ॥
ମରଣକୁ ଯେ ଡରଇ କାପୁରୁଷ ସେହି ।
ମନୁଷ୍ୟତ୍ୱ ତାହା ଦେହେ କିଛିମାତ୍ର ନାହିଁ ॥
ସତ୍ୟପଥେ ଧର୍ମପଥେ ଥାଏ ଯାର ମତ ।
ବୀରଦର୍ପେ ପ୍ରଜାପାଳେ ଶାସଇ ଧରିତ ॥
ଇହ ପରକାଳେ ସେହୁ ନ ଘେନେ କଳଙ୍କ ।
ସଦା ଯଶଧ୍ୱନି ତାର ଗାଉଥାନ୍ତି ଲୋକ ॥
ଜନ୍ମ ମୃତ୍ୟୁ ତାହା ପାଶେ ଉଭୟ ସମାନ ।
ଗୌରବ ଧର୍ମ ପଥରେ ଥାଏ ତାର ମନ ॥
ମୃତ୍ୟୁ ହେଲେ ସୁଦ୍ଧା ସେହି ଅମର ଅଟଇ ।
ତା ଅକ୍ଷୟ କୀର୍ତ୍ତି ସଦା ଘୋଷୁଥାଏ ମହୀ ॥
ଏ ସବୁ ଭାବିଣ ଦୁଃଖ ମୋହର ଅନ୍ତର ।
ସଦା ଘାରୁଅଛି ମାତ କହ ପ୍ରତିକାର ॥
ଯେଉଁଲୋକ ନିନ୍ଦା ସ୍ତୁତି କିଛି ନ ଜାଣଇ ।
ନାନାବିଧ ଅନ୍ୟାୟ କରି ଜୀବନ ପୋଷଇ ॥
କିବା ତାର ପିତା ମାତା ନାନା ନୀଚ କର୍ମ ।
କରି ସେହି ଅନ୍ନେ ତାକୁ କରନ୍ତି ପାଳନ ॥
ବେଶ୍ୟାସଙ୍ଗ କରେ ଲୋକ ନିନ୍ଦା ସେ ଲଭଇ
ଧିକ ତାର ଜନ୍ମ ଧିକ ବଞ୍ଚେ ଦେହ ବହି ।
ଏପରି ଲୋକର ମୁଖ କରିଲେ ଦର୍ଶନ ॥
ସଦ୍ୟ ଗଙ୍ଗା ସ୍ନାନ ହୁଏ ପାପ ଯାଏ ପୁଣି ।
ନୁହଇ ମୁଁ ସେ ପ୍ରକାରେ କାପୁରୁଷ ମତ ॥
କିପରି କରିବି ମାତ କହ ଗୋ ସମ୍ପ୍ରତ ॥
ନିନ୍ଦା ଯେବେ ହେବ ମୋର ମରିବା ହିଁ ଭଲ ।
ଏ ବିପଦେ କି କରିବି କହ ମା ସତ୍ୱର ॥
ଉପାୟ ଭାବିଣ ମୋତେ କହ ମା ଏକ୍ଷଣ ।
ଯହିଁରେ କଳଙ୍କ ମୋର ନ ହୁଏ ରଟନ ॥
ଲୋକଙ୍କ ମଧ୍ୟରେ କିଛି କଳଙ୍କ କୁମର ।
ମୋହଯୋଗ୍ୟ ଅପକୀର୍ତ୍ତି ନ ହୁଏ ପ୍ରଚାର ॥
ତାର ସଦୁପାୟ ମୋତେ କହ ଗୋ ଜନନୀ ।
ଯାହା ପାଇଁ ସଶଙ୍କିତ ମହିଁ ସଦା ପୁଣି ॥

ନ ଦେବ ମୋ ପରିଚୟ ତାହାଙ୍କର ଠାରେ
କେଜାଣିବାକାଳେମୋତେଦୂଣାକରପାରେ
ଆପଣାର ପରାକ୍ରମ ରଖିବ ଅବଶ୍ୟ ।
ଯେତେଦୂର ସାଧ୍ୟ ଶକ୍ତି କରିବ ପ୍ରକାଶ ।
ସହଜେ ନ ହେବ ନତ ତାହାଙ୍କ ପାଶରେ ।
ବୋଲୁଅଛୁ ଆଗୋ ମାତ ଅକପଟେ ତୋରେ
ଶୁଣିଣ କୁମର ବାଣୀ ଚିତ୍ରାଙ୍ଗଦା କହେ ।
ଏପରି ବଚନ କିପାଁ କହିବେ ତନୟେ ॥
ତୋତେତରେ ଜାଣେ ସୁବୋଧ ନ୍ୟାୟପରାୟଣ
ଧୀରମତ ବୋଲି ପୁଣି ଅଛି ମୋ ଧାରଣ ॥
ଜ୍ଞାନେ ପରାସ୍ତ ହୋନ୍ତି ତୋହର ବଗୃରେ ।
ନିର୍ବୋଧ ପରାୟେ କିପାଁ କହୁ ବାରେବାରେ
ବିପଦେ ଅସୀମ ବୁଦ୍ଧି ଜାଣେ ଭଲକରି ।
ଆଜ କିମ୍ପା ବିପରୀତ ଦେଖିଲି ତୋହର ॥
ରାଜନୀତରେ ପଣ୍ଡିତ ତୁହିବେ କୁମର ।
ତେବେ କିମ୍ପା ଏ ପ୍ରକାର କହୁଅଛୁ ଗିର ॥
ତୃଣ ତୁଲ୍ୟ ଜୀବ ନୀଚ କ୍ଷତ୍ରିୟ ନନ୍ଦନ ।
କେବେ ଧରି ନ ଥାଏ ଜାଣନ୍ତି ସର୍ବଜନ ॥
ମାଏ ମୋତେ କହ ବଳା କେଉଁଠାରେ କାହିଁ
ପିତା ପୁତ୍ର ଉଭୟରେ ଯୁଦ୍ଧ ହୋଇଛଇଁ ॥
କାହିଁ କେ କରିଛି ରଣ ପିତାଙ୍କ ସଙ୍ଗରେ ।
ଦେଖାଇବାକୁ ନିଜର ବିକ୍ରମ ସଂସାରେ ॥
ଦେଖାନାହିଁ ଦୂରେ ଥାଉ ଶୁଣାନାହିଁ କାନେ
ପିତା ପ୍ରତି ଶତ୍ରୁଭାବ ଅଛି କେଉଁ ସ୍ଥାନେ ॥
ଯାହା ଯୋଗୁ ଏହି ପିଣ୍ଡ ହୋଇଲା ଶରୀର ।
ତାହାର ସହିତ ଶତ୍ରୁ ଏ କି ବ୍ୟବହାର ॥
ଯାହା ଯୋଗୁଁ ହେଲା ବଳ ବୀର୍ଯ୍ୟ ବର୍ଦ୍ଧମାନ
ଉଚିତ କି ଅଟେ ତାଙ୍କ ସଙ୍ଗେ କଲି ରଣ ॥
ପିତା ମାତା ଆଜ୍ଞାକାରୀ ଯେ ପୁତ୍ର ଅଟଇ ।
ଧନ ମାନ ଯଶ ତାକୁ ଅଚିରେ ମିଳଇ ॥
ଯୋଗ୍ୟପୁତ୍ର ଯେହୁ ସେହୁ ଏ ଧରା ଧାମରେ
ପିତାଙ୍କର ଆଦେଶକୁ ଅମାନ୍ୟ ନ କରେ ॥
କି ଅବା ନ ଜାଣୁ ବାପ ତୁହି ଧର୍ମନୀତି ।
ତୋତେ ଅବା ବୁଝାଇବି ମୁହିଁ ରେ ସନ୍ତତି ॥
ପଣ୍ଡିତ ପଣରେ ବୃହସ୍ପତିଙ୍କୁ ତୁ ଜିଣୁ ।
ଧନବନ୍ତେ କୁବେରକୁ ତିଳେହେଁ ନ ଗଣୁ ॥
ବଳବନ୍ତ ପଣେ ତୁ ରେ ବାସବ ସମାନ ।
ଧର୍ମବନ୍ତପଣେ ତୁହି ମରାଚ ସମାନ ॥
ଦାତାପଣେ ବଳୀ କର୍ଣ୍ଣଠାରୁ ଅଟୁ ଶ୍ରେଷ୍ଠ ।
ମୋ ଆଦେଶ ମାନି ପିତାପାଦେ ଯାଇଁ ଖଟ ॥
ଯେଉଁ ପୁତ୍ରଠାରେ ପିତା ସନ୍ତୋଷ ହୁଅନ୍ତି ।
ଧନମାନ ଯଶ ହୁଏ ତାହାର ବିସ୍ତୃତ ॥
ତ୍ରିଲୋକ ବିଜୟୀ ସେହି ହୁଏ ରେ କୁମର ।
ତୋ କଥା ଶୁଣି ଅସ୍ଥିର ହୁଏ ଚିତ୍ତ ମୋର ॥
ମାତାଙ୍କ ବଚନ ଶୁଣି କହେ ବୀରବର ।
ଯାହା ସେ କହିଲ ମାତା ଅଟେ ସାର ଗୀର ॥
ଶୁଣିଥିବ ତ୍ରେତୟାରେ ପ୍ରଭୁ ନାରାୟଣ ।
ଶ୍ରୀରାମରୂପେ ମର୍ତ୍ତ୍ୟରେ ହୋଇଲେ ଜନମ ॥
ତାହାଙ୍କ କୁମର ଲବ କୁଶ ନାମେ ଦୁଇ ।
ପିତା ଖୁଡ଼ୁ ତାଙ୍କ ସଙ୍ଗେ ରଣ କରି ସେହି ॥
ପିତା ଖୁଡ଼ୁ ତାଙ୍କୁ ରଣେ ପରାସ୍ତ କରିଣ ।
ଶେଷେ ଚିହ୍ନାଚିହ୍ନି ହେଲେ ପିତାପୁତ୍ର ଜାଣ
ସେଥିରେ ମା ରାମଚନ୍ଦ୍ର ମନ ତୋଷ କଲେ ।
ନିଜ ଔରସରୁ ଜାତ ବୋଲି ଯେ ଜାଣିଲେ ॥
ଶୁଣିଅଛୁ ମୋର ପିତାଙ୍କର କଥା ମୁହିଁ ।
ଅଭିମନ୍ୟୁ ନାମେ ଥିଲା ତାହାଙ୍କ ତନୟ ।
ସମରେ ସେ ବିଚକ୍ଷଣ ବଡ଼ ବୁଦ୍ଧିମାନ ।
ତାଙ୍କରେ ସନ୍ତୋଷ ଥାଏ ଅର୍ଜ୍ଜୁନଙ୍କ ମନ ॥
କ୍ଷତ୍ରିୟଙ୍କ ଧର୍ମ ମାତା ଅଟଇ ଏସନ ।
ବିକ୍ରମରେ ପରିଚୟ ଦେବାର ଉତ୍ତମ ॥
ତା ହେଲେ ଜାଣିବେ ସେହି ମୋହର କୁମର
ଯୋଗ୍ୟପୁତ୍ର ବୋଲି ମୋତେ କରିବେ ଆଦର
ଅପୂର୍ବ ଶୁଣ ଗୋ ମାତା ନାମ ନାଗାର୍ଜ୍ଜୁନ ।
ନାଗବାଳୀଠାରୁ ପିତା ଔରସେ ଜନମ ॥
ଗଣ୍ଡା ନିମିତ୍ତରେ ପିତା ପୁତ୍ର ଯୁଦ୍ଧ କଲେ ।
ନାଗାର୍ଜ୍ଜୁନ ହାତେ ମୋର ପିତା ପ୍ରାଣ ଦେଲେ
ହରିହର ବ୍ରହ୍ମା ଆସି ଦେଲେ ଜୀବଦାନ ।
ଯୋଗ୍ୟପୁତ୍ରବୋଲିପିତା ଧଇଲେ କୋଳେଣ
ତେଣୁ ମାତା ମନେ ମୋର ହେଉଅଛି ଭୟ
ବିନାଦର୍ପେ କପରି ଭେଟିବି ଧନଞ୍ଜୟ ॥
ମହା ବୀରବର ସେହି ଅତି ବିଚକ୍ଷଣ ।
କାଳେ ବା କଷ୍ଟ ବୋଲିବେ ତେଣୁ ଭ୍ରାନ୍ତମନ

ପୁତ୍ରର ବଚନ ଶୁଣି ଚିତ୍ରାଙ୍ଗଦା ବୋଇଲେ ।
ଯାହା ତୁ କହିଲୁ ବାବୁ ଜାଣେ ମୁଁ ତା ଭଲେ
ଲବ କୁଶ ଅଚିନ୍ତା ଭାବରେ ଯୁଦ୍ଧକଲେ ।
ନାଗାର୍ଜୁନ ସହ ରଣ ପାର୍ଥ ଅକାଣ୍ଡରେ ॥
ଜାଣୁ ଜାଣୁ କାଏ କରିଅଛୁ ଏହୁ କର୍ମ ।
ଜାଣିଲୁ ତୋହର ମତ ହୋଇଲାଣି ଭ୍ରମ ।
ମାତାଙ୍କ ବଚନ ଶୁଣି ବୋଇଲେ ବୀରବର ।
ଇନ୍ଦ୍ରଙ୍କ ପୁତ୍ର ଅଟନ୍ତି ଜନକ ମୋହର ॥
କାପର ଇନ୍ଦ୍ରଙ୍କ ସହିତରେ ଯୁଦ୍ଧକଲେ ।
ପତ୍ରରୂପ ପାଇ ସ୍ୱର୍ଗେ ଅଭିଷେକ ହେଲେ ॥
ଚିତ୍ରାଙ୍ଗଦା ବୋଲେ ଅର୍ଜୁନ ସହ ପଣକର ।
ବହୁତ କହିଲେ ନ ଶୁଣିଲେ ଚକ୍ରଧାରୀ ॥
ତେଣୁ ପ୍ରତିଜ୍ଞା ଭଙ୍ଗ ପାପକୁ ଭୟକର ।
ଇନ୍ଦ୍ରସହ ଯୁଦ୍ଧକଲେ ସେ ଗାଣ୍ଡିବଧାରୀ ॥
ଜାଣୁ ଜାଣୁ କାପର ତୁ ସମର କରିବୁ ।
ଚିହ୍ନା ପାଇ କାପର ତୁ ଶର ନିକ୍ଷେପିବୁ ॥
ଯାଅ ବାବୁ ମାନକର ମୋହର ବଚନ ।
ବିନୟେ ପଡ଼ିଣ ପାଦେ କର ନିବେଦନ ॥
ଦେଶ ଧନରତ୍ନ ସବୁ ତାଙ୍କୁ ସମର୍ପିବୁ ।
କାତର ଭାବରେ ଯାଇଁ ଶରଣ ପଶିବୁ ॥
ଜାଣେ ମୁହିଁ ବିଚକ୍ଷଣ ଅଟେ ପାର୍ଥବୀର ।
ଅପମାନ କେବେ ତୋର ନୋହିବ ତହିଁର
ପିତୃଲୋକ ତୃପ୍ତ ହେଲେ ସକଳ ଦେବତା ।
ତୁଷ୍ଟ ହୋଇଥାନ୍ତି ଶାସ୍ତ୍ରେ ବୋଲନ୍ତି ସର୍ବଥା
ପୁତ୍ରନାମ ମାତ୍ର ଧରି ଅଛନ୍ତି ଅନେକ ।
ସମସ୍ତେ କି ଯୋଗ୍ୟପୁତ୍ର ହୁଅନ୍ତି ବିବେକ ॥
ପିତାଙ୍କ ଚରଣ ଯେହୁ ପୂଜେ ଭକ୍ତିଭରେ ।
ପିତା ଆଜ୍ଞା ଯେହୁ ପୁତ୍ର ଧରିଥାଏ ଶିରେ ॥
ଈଶ୍ୱରର ପରଶଂସା ଯା କରିବେ ସେହି ।
ସକଳ ସହିଇ ଯେହୁ ସୁପୁତ୍ର ଅଟଇ ॥
ଆତ୍ମୀୟ ଯେସନ ସେହି ଅନୁଚିତ କାର୍ଯ୍ୟ ।
ଦେଖିଣ ଭର୍ତ୍ସନା କଲେ ଜାଣି ତା ସମାଜ ॥
ମୂର୍ଖଲୋକ ପୁତ୍ର ଯେବେ ହୁଅଇ ପଣ୍ଡିତ ।
ଜାଣ ତାହା ଯୋଗୁ ପିତା ହୁଅଇ ପୂଜିତ ॥
ପିତାଠାରେ ପୁତ୍ର କେବେ ଆପଣା ଗୁରୁତ୍ୱ ।
ପ୍ରକାଶ ନ କରି ରହିଥାଏ ନୀତ ଧରି ॥

ପିତା ଅଟେ ପୂଜ୍ୟ ଏହା ଜାଣେ ସର୍ବ ନର ।
ଭକ୍ତିଭାବେ ପୁତ୍ର ରହିଥାଏ ତାଙ୍କଠାର ॥
କଲ୍ୟାଣ ବାଞ୍ଛା କରିବା ଯାହାଙ୍କର ମତ ।
ଲାଳନ ପାଳନ ଯେହୁ କଲେ ନିତ ପ୍ରତ ॥
ଯାହାଙ୍କର ତୁଲ୍ୟ ଗୁରୁ ନାହିଁ ଏ ଜଗତେ ।
ତାଙ୍କଠାରେ ମାନ ଆଶା ଛାଡ଼ ତୁ ତୁରିତେ ॥
ମୋହର ବଚନ ରଖ କରେ ଅନୁନୟ ।
ଅଶ୍ୱ ଦେଇ ଅର୍ଜୁନଙ୍କୁ ତୋଷରେ ତନୟ ॥
ଆପଣାର ଯଶ ରଖିବାକୁ କର ପଣ ।
ସାରସଂସାରରେ ଗାନ୍ତୁ ପଣ ସର୍ବଜନ ॥
ତୁମ୍ଭର ଜନନୀ ମୁହିଁ ବୋଇଲି ଯେ ସର୍ବ ।
ମୋହର ବଚନ ତୁମ୍ଭେ ହେଳା ନ କରିବ ।
ଶାସ୍ତ୍ରେ ଅଛି ଶ୍ରେଷ୍ଠ ଗୁରୁ ଅଟେ ପିତାମାତା ॥
ସେମାନଙ୍କ କଥା ପୁତ୍ର ପାଳଇ ସର୍ବଥା ॥
ପିତା ମାତା ଅସନ୍ତୁଷ୍ଟ ଯେ ସନ୍ତାନ ପ୍ରତି ।
ଦୁସ୍ତର ନରକେ ପଡ଼େ ନ ଲଭେ ନିଷ୍କୃତି ॥
ପଦେ ପଦେ ଅମଙ୍ଗଳ ଘଟଇ ତାହାର ।
ମାତା ପିତା ଗୁରୁ ନ ମାନଇ ଯେ କୁମର ॥
ଜାଣ ବାବୁ ତ୍ରେତୟାରେ ନିଜେ ନାରାୟଣ ।
ଶ୍ରୀରାମ ରୂପରେ ମର୍ତ୍ତ୍ୟେ ହୋଇଲେ ଜନମ ॥
ସର୍ବଜ୍ଞାତା ହରି ସେହି ପିତାଙ୍କ ଆଜ୍ଞାରେ ।
ରାଜ୍ୟ ସୁଖ ଛାଡ଼ି ଗଲେ ବନ ପ୍ରଦେଶରେ ॥
ଚତୁର୍ଦ୍ଦଶ ବର୍ଷ ବନେ ରହି ରାମରାଣ ।
ପୁଣି ଆସି ଅଯୋଧ୍ୟାରେ ହୋଇଲେ ରାଜନ ॥
ଛାଡ଼ି ବାପ ଅଭିମାନ ଆଜ ତୋ ମନରୁ ।
ଆଶୀଷ ଲଭ ତୁ ଯାଇଁ ପିତାଙ୍କ ପାଶରୁ ॥
ଜପ ତପ ଦାନ ଧ୍ୟାନ ମାତା ପିତା ଠାଇଁ ।
କେତେବେଳେ କେଉଁକାଳେ ସମାନ ନୁହଇ
ଦେବଜ୍ଞାନେ ଦୁଇଜଣ ଯେତେ ଗୃହୀଜନେ ।
ଭକ୍ତିଭରେ ସେବା କରେ ଅତ୍ୟନ୍ତ ଯତନେ ॥
ଏହିପରି ନାନା ଉପଦେଶ ମାତା ଦେଇ ।
ପୁତ୍ରଙ୍କୁ ବୁଝାଇ କରି ପଠାଇଲେ ତହିଁ ॥
ମାତାଙ୍କଠାରୁ ମେଲାଣି ହୋଇ ବୀରବର ।
ହର୍ଷ ବିଷାଦେ ମିଳିଲା ଆପଣା ନଗର ॥
ଏଥୁଅନ୍ତେ ଶତ୍ରୁଜୟୀ ହେ ବଭ୍ରୁବାହନ ।
ମାତାଙ୍କଠାରୁ ମେଲାଣି ମାଗିଣ ସେକ୍ଷଣ ॥

ପ୍ରବେଶ ହୋଇଲେ ଯାଇଁ ସିଂହାସନ ପରେ ।
ପାଟ ମନ୍ତ୍ରୀ ସମସ୍ତଙ୍କୁ ଡକାଇଲେ ଖରେ ॥
ଆଜ୍ଞା ଶୁଣି ପାଟମନ୍ତ୍ରୀ ଉପସ୍ଥିତ ହେଲେ ।
ପ୍ରଣାମ କରିଣ ସର୍ବେ ସଭାରେ ବସିଲେ ॥
ସଭାରେ ବସିଣ ସର୍ବେ ରାଜାଙ୍କ ସହିତ ।
ପରସ୍ପରେ କଥାବାର୍ତ୍ତା କହିଲେ ବହୁତ ॥
ସେ ସମୟେ ସଭା ଶୋଭା କି ବର୍ଣ୍ଣିବି ମୁହିଁ ।
ଅମରାବତୀର ଦେବ ସଭା ଲକ୍ଷ ନୋହି ॥
ଶୁଦ୍ଧ ସ୍ଫଟିକର ତହିଁ ବିଚିତ୍ର ମଣ୍ଡପ ।
ତଥିପରେ ଟଣା ହୋଇଅଛି ଚନ୍ଦ୍ରାତପ ॥
ହୀରାମାଳା କେତେ କେତେ ତହିଁରେ ଲମ୍ବଇ ।
ବୈଦୁର୍ଯ୍ୟର ବନ୍ଧା ଚଉଦିଗେ ଶୋଭାପାଇ ॥
କାଞ୍ଚନର ପାବଚ୍ଛ ଯେ ହୀରା ଖୁଅମାନ ।
ଅମଳାନ ବସ୍ତ୍ରରେ ହୋଇଛି ସେ ମଣ୍ଡନ ॥
ନାନାବିଧ ଚିତ୍ର ବିଚିତ୍ର ଶୋଭେ ସେହି ସ୍ଥାନ
କାରିଗରି ଦେଖିଲେ ମୋହିତ ହେବ ମନ ॥
ନାନା ଚିତ୍ର ପଟମାନ ତହିଁ ଶୋଭା ପାଇ ।
ଦେଖିଲେ ମନ ନୟନ ଲାଗି ରହେ ତହିଁ ॥
ଯଥା ଯୋଗ୍ୟସ୍ଥାନେ ସର୍ବେ ଉପସ୍ଥିତ ହେଲେ
ଏହା ଦେଖି ନରପତି ଆନନ୍ଦ ହୋଇଲେ ॥
ମନ୍ତ୍ରୀ ମୁଖ ଚାହିଁ ରାଜା ବୋଲନ୍ତି ବଚନ ।
ଶୁଣ ମୋହର ବଚନ ଅହେ ମନ୍ତ୍ରୀଗଣ ॥
ଘଟିଛି ଏହି ଘଟଣା ଅତି ଚମତ୍କାର ।
ଉପାୟ ନ ଦିଶେ ମୋତେ କୁହ ମନ୍ତ୍ରୀବର ॥
ହସ୍ତିନା ଦେଶର ରାଜା ଧର୍ମ ଯୁଧିଷ୍ଠିର ।
ଜ୍ଞାତିବଧ ଦୋଷୁ ପାର ହେବାପାଇଁ ବୀର ॥
ଅଶ୍ୱମେଧ ଯଜ୍ଞ ସେହି କରିବେ ସେଠାରେ ।
ତେଣୁକରି ଅଶ୍ୱ ଛାଡ଼ିଛନ୍ତି ଦେଶାନ୍ତରେ ॥
ଅଶ୍ୱକୁ ରକ୍ଷା କରିଣ ଅଛନ୍ତି ଅର୍ଜ୍ଜୁନ ।
ତ୍ରିଭୁବନ ମଧ୍ୟେ ଯାର ବୀରପଣ ଧନ୍ୟ ।
ସଙ୍ଗେ ଛନ୍ତି ବଡ଼ ବଡ଼ ବୀର ଅଗଣନ ।
କ୍ରମେ ଦେଶ ଜୟକରି ଆସିଲେ ଏ ସ୍ଥାନ ॥
ମଣିପୁରେ ଅଶ୍ୱ ଆସି ଯହୁଁ ପ୍ରବେଶିଲା ।
ସୁନ୍ଦର ଦେଖିଣ ଦୂତ ଆସିଣ କହିଲା ॥
ଆଜ୍ଞାଦେଲେ ଅଶ୍ୱକୁତେ ବେଗେ ଧରିଆଣ ।
ଆଜ୍ଞା ପ୍ରମାଣେ ଆଣିଲେ ଅଶ୍ୱକୁ ଧରିଣ ॥
ଅଶ୍ୱକୁ ମୋ ପାଶେ ଆଣି ଦିଅନ୍ତେ ସେବେନେ
ଅଶ୍ୱକୁ ଦେଖିବା ପାଇଁ ଗଲି ତତକ୍ଷଣେ ॥
ଅଶ୍ୱକୁ ଦେଖିଣ ବହୁ ଆନନ୍ଦ ହୋଇଲି ।
ତାହାର ମସ୍ତକେ ଏକ ପତ୍ର ଯେ ଦେଖିଲି ॥
ସେଥିରେ ହୋଇଛି ଲେଖା ଯୁଧିଷ୍ଠିର ଯଶ ।
ଆବର ସଙ୍ଗତେ ଛନ୍ତି ପାର୍ଥ ବୀର ଈଶ ॥
ପଢ଼ିଣ ପୂର୍ବର କଥା ମନରେ ପଡ଼ିଲା ।
ତହୁଁ ମୋର ମନ ବଡ଼ ଆନନ୍ଦ ହୋଇଲା ॥
ଦିନେ ମାତା କହିଥିଲେ ମୋ ଜନ୍ମ ବୃତ୍ତାନ୍ତ ।
ଅର୍ଜ୍ଜୁନଙ୍କ ଔରସରେ ମୋହର ଯେ ଜାତ ॥
ମାତାଙ୍କ ମୁଖରୁ ମୁହିଁ ପୂର୍ବେ ଶୁଣିଥିଲି ।
ପିତାଙ୍କର ଅଶ୍ୱ ଏହି ବୋଲିଣ ଜାଣିଲି ॥
ତହୁଁ ଅଶ୍ୱକୁ ନେଇଣ ମାତାଙ୍କ ପାଶରେ ।
ଯାଇଣ ପ୍ରବେଶି ଜଣାଇଲି ତାଙ୍କଠାରେ ॥
ମୋହର ବଚନ ମାତା ଶୁଣି ସୁଖୀ ହେଲେ ।
ନାନାମତେ ବୁଝାଇଣ ମୋତେ ଆଜ୍ଞା ଦେଲେ
ବୋଇଲେ ନନ୍ଦନ ତୋର ପିତା ଅଟେ ସେହି
ବନସ୍ତରେ ନିଜ ପରିଚୟ ଦିଅ ଯାଇ ॥
ତହୁଁ ମାତାଙ୍କର ପାଶୁ ମେଲାଣି ହୋଇଣ ।
ତୁମ୍ଭମାନଙ୍କୁ ପଚାରେ ଦିଅ ବୁଦ୍ଧି ଦାନ ॥
ପିତା ମୋର ସେହି କିନ୍ତୁ ମୋତେ ନ ଚିହ୍ନନ୍ତି
କେଉଁପରି ଚିହ୍ନା ମୁହିଁ ଦେବି ତାଙ୍କ କତି ॥
କାଳେ ମୋତେ ଅପମାନ ଦେଇ ଦୂରକରି ।
ଦେବେ ବୋଲି ଏହି ଭୟ ହୁଅଇ ମୋହର
କ୍ଷତ୍ରିୟ ଔରସେ ଜନ୍ମି କ୍ଷତ୍ରିୟ ବୃତ୍ତିରେ ।
ନିଜ ପରିଚୟ ଦେବି ସଂଗ୍ରାମ ଭୂମିରେ ॥
ଯେବେ କ୍ଷତ୍ରି ବୃତ୍ତି ଛାଡ଼ି ବନସ୍ତରେ ଯିବି ।
ଭୟେ ଶରଣନେଲି ମୁଁ ବୋଲିବେ ଗାଣ୍ଡିବୀ ॥
ଯେବେ ମୋତେ ନାନାକଥା କହି ଘୃଣାକରି
ଅପମାନ ଦେବେ ମରିବା ଭଲ ମୋହର ।
ଏଣୁକରି ମୋର ମନେ ସନ୍ଦେହ ହୁଅଇ ।
କୁହ ମନ୍ତ୍ରୀମାନେ ଯା ବିଚାରେ ଭଲ ହୋଇ
ରାଜାଙ୍କ ବଚନ ଶୁଣି କହେ ମନ୍ତ୍ରୀବର ।
ପ୍ରକୃତରେ ଜାଣ ଯେବେ ଅର୍ଜ୍ଜୁନ ପିଅର ॥
ତେବେ ତାଙ୍କ ସହ ରଣ ନୁହଇ ଶୋଭନ ।
ଜାଣି ଶୁଣି କଲେ ଏହା ହୋଇବ ଅଧର୍ମ ॥

ତେଣୁ କର ବୀରମଣି ବିନୟ କରିବା ।
ନାନାଦି ପ୍ରକାରେ ତାଙ୍କ ମନକୁ ତୋଷିବା ॥
ତହିଁରେ ଯେବେ ସନ୍ତୋଷ ନ ହୋଇବ ସେହି
ଆପଣଙ୍କୁ ଅପମାନ ଦେବେ କ୍ରୋଧ ବହି ॥
ଅପମାନ ସହି ତାଙ୍କୁ ପୁଣି ବୁଝାଇଣ ।
କହିବା ନାନା ପ୍ରକାର ବିନୟ ବଚନ ॥
ଏତେମତେ ପାର୍ଥ ଯେବେ ଅପମାନ ଦେବେ
ପୁତ୍ର ବୋଲି ଆପଣଙ୍କୁ ସେହି ନ ଘେନିବେ
ତେବେ ଯଜ୍ଞ ଅଶ୍ୱ ଆମ୍ଭେ କେବେ ନ ଛାଡ଼ିବା
କ୍ଷତ୍ରିୟ ନିୟମେ ଯୁଦ୍ଧ ଘୋଷଣା କରିବା ॥
ଧର୍ମକୁ ସୁମରି ତହିଁ ପଶିବା ସମରେ ।
ନିଶ୍ଚେ ଜୟୀ ହେବା ଆମ୍ଭେ ଧର୍ମର ବଳରେ ॥
ମୋର ଏ ବିଚାର ରାଜା କରନ୍ତୁ ଗ୍ରହଣ ।
ମାତାଙ୍କ ଆଦେଶ କିପାଁ ହୋଇବ ଲଙ୍ଘନ ॥
ମାତା ପିତା ଅଟନ୍ତି ଯେ ଗୁରୁ କୁମରର ।
ତାଙ୍କ ଆଜ୍ଞାକୁ ଭାଙ୍ଗିବା ନୁହଇ ବିଚାର ॥
ମାତାଙ୍କ କଥା ହୋଇବ ଆମ୍ଭ କାର୍ଯ୍ୟ ହେବ ।
କୌଣସି ପ୍ରକାରେ କେହି ନିନ୍ଦା ନ କରିବ
ମୋ ମନକୁ ଏହି କଥା ଆସଇ ରାଜନ ।
ଏଥିରେ ନୋହିବ କେତେବେଳେ ନିନ୍ଦା ପୁଣ
ବିଳମ୍ବ ନ କର ମହାରାଜା ବେଗେ ଚଳ ।
ନିଶ୍ଚୟ ମଙ୍ଗଳ କରିବେ ଯେ ଆଦିମୂଳ ॥
ମନ୍ତ୍ରୀର ବଚନ ଶୁଣି ବଭ୍ରୁବାହ ବୀର ।
ସୈନ୍ୟଙ୍କୁ ଗୁହିଁ ଆଦେଶ ଦେଲାକ ସତ୍ୱର ॥
ମୋହ ନଗରେ ଅଛନ୍ତି ଯେତେ ବୀରଗଣ ।
ଧନରତ୍ନ ଗଜବାଜି ଆଦି ପ୍ରଜାଗଣ ।
ନର୍ତ୍ତକୀ ନର୍ତ୍ତକ ଆଦି ସମସ୍ତେ ହେ ଚଳ ।
ଅର୍ଜୁନକୁ ସାକ୍ଷାତ କରିବ ଆମ୍ଭ ତୁଳ ॥
ନବରତ୍ନ ଭଣ୍ଡାରକୁ ଶଗଡ଼ରେ ଭର ।
ରଥ ଗଜ ଅଶ୍ୱ ଆଦି ଚଳନ୍ତୁ ସଙ୍ଗର ॥
ସୈନ୍ୟମାନେ ପଛୁଆର କରିଣ ଚଳନ୍ତୁ ।
ଭାଟମାନେ ମଙ୍ଗଳ ଗାଏଣୀ କରୁଥାନ୍ତୁ ॥
ଛତିଶ ନିଯୋଗ ବିଧି ଯେମନ୍ତେ ପ୍ରକାର ।
ମହା ସମ୍ଭ୍ରମରେ ଚଳ ମୋହର ସଙ୍ଗର ॥
ରାଜାଙ୍କ ଆଜ୍ଞା ପାଇଣ ସର୍ବ ଦୂତଗଣ ।
ଦେଶମଧ୍ୟେ ଘୋଷଣା ଯେ ଦେଲେକ ବହନ

ଘୋଷଣା ଶୁଣିଣ ସର୍ବେ ଆନନ୍ଦିତ ହେଲେ ।
ରାଜାର ପାଶରେ ଆସି ପ୍ରବେଶ ହୋଇଲେ ॥
ସମସ୍ତଙ୍କୁ ଦେଖି ରାଜା ଅତି ଆନନ୍ଦରେ ।
ରଥ ଆରୋହଣ ଗଲେ ସୈନ୍ୟ ସହିତରେ
ଶଗଡ଼ମାନଙ୍କେ ଧନରତ୍ନ ପୂରାଇଣ ।
ବାଜଘୋଷ ଦାଇଣ୍ଡି ଯେ ବଜାଇ ବହନ ॥
ଅର୍ଜୁନ ଶିବିର ପାଶେ ପ୍ରବେଶ ହୋଇଲେ ।
ସୈନ୍ୟସେନାମାନେ ଦ୍ୱାରଦେଶରେ ରହିଲେ
ଦୂରେ ଛିଡ଼ାହୋଇ ବୀର ଆନନ୍ଦ ମନରେ ।
ଦୂତ ପଠାଇଲେ ସେହି ଅର୍ଜୁନ ପାଶରେ ॥
ଦୂତକୁ ବୋଇଲେ ରାଜା ଶୁଣ ମୋ ବଚନ
ପାର୍ଥଙ୍କ ନିକଟେ ଯାଇ କହ ତୁ ବହନ ॥
କହିବୁ ତୁ ମଣିପୁର ରାଜା ଆସିଛନ୍ତି ।
ଆପଣଙ୍କ ଶ୍ରୀଚରଣ ଦର୍ଶନ ଇଚ୍ଛନ୍ତି ॥
ଆପଣଙ୍କ ଆଜ୍ଞା ପାଇଁ ପଠାଇଲେ ମୋତେ ।
ଯେ ଆଜ୍ଞା ହୋଇବ ଜଣାଇବି ମୁଁ ତୁରିତେ ॥
କିସ ଆଜ୍ଞା ଦେବେ ସେହି ଯାଅ ତୁ ବହନ
ତୋର ଅପେକ୍ଷାରେ ମୁହିଁ ଅଛି ଏହି ସ୍ଥାନ ॥
ଆଜ୍ଞାମାତ୍ରେ ଦୂତ ବେଗେ ଗମନ କରିଲା ।
ପାର୍ଥଙ୍କ ପାଶରେ ଯାଇଁ ଉପସ୍ଥିତ ହେଲା ॥
ଚରଣେ ପଡ଼ିବ ବୀର ହସ୍ତ ଯୋଡ଼ିକରି ।
କହିଲା ହେ ଦେବ ଶୁଣ ମୋହର ଗୁହାରି ॥
ମଣିପୁର ନରପତି ସେ ବଭ୍ରୁବାହନ ।
ଆପଣଙ୍କ ଶ୍ରୀଚରଣେ ଦର୍ଶନ ଲାଗିଣ ।
ଦ୍ୱାରଦେଶେ ଉପସ୍ଥିତ ହୋଇଛନ୍ତି ସେହି ।
ତୁମ୍ଭଙ୍କ ଆଦେଶ ପାଇଁ ମୁହିଁ ଆସିଲଇଁ ॥
ଦୂତର ବଚନ ଶୁଣି ପାର୍ଥ ବୀରମଣି ।
କାମଦେବ ପ୍ରତି ଗୁହିଲେ ସେ ସେହିକ୍ଷଣି ॥
ଅଭିପ୍ରାୟ ପଚାରିଲେ ଯତନ କରିଣ ।
ତୁମ୍ଭମାନଙ୍କ କି ମତ ବୋଲ ଏଇକ୍ଷଣି ॥
ଶୁଣି କାମଦେବ ବୋଲେ ଅର୍ଜୁନଙ୍କ ପ୍ରତି ।
ଏଥିରେ ମୋର ବିଚାର ହୁଏ ଏହି ମତି ॥
ଶତ୍ରୁହେଉ ମିତ୍ର ହେଉ ଆପଣା ପାଶକୁ ।
ଯେ ଆସିବ ସମ୍ମାନ ଯେ କରିବା ତାହାକୁ ॥
ଏଥି ଶ୍ରେଷ୍ଠ ବଡ଼ ନୀତି ଏପରି ବିଚାର ।
କରିବା ଉଚିତ ନୁହେ ମନୋଭାବ ମୋର ॥

ଶ୍ରେଷ୍ଠ ଯେତୁ ହୋଇଲା ଏ ଲୋକଙ୍କ ମଧ୍ୟରେ
ଶ୍ରେଷ୍ଠ ନୁହେଁ ବଡ଼ ସେହି ଜାଣ ନିଶ୍ଚୟରେ ॥
ତେଣୁ କରି ମୋର ମନେ ଏମନ୍ତ ଆସଇ ।
କି ଯତ ଏ ସ୍ଥାନେ ଯେବେ ରାଜନ ଆସଇ ॥
କିବା ଇଚ୍ଛା ତାହାଙ୍କର କିଛି ଜଣା ନାହିଁ ।
ଅଗଣିତ ସୈନ୍ୟସହ ଆସିଛନ୍ତି ସେହି ॥
କିପାଁ ଏତେ ଅଶ୍ୱ ହସ୍ତୀ ତାହାଙ୍କ ସଙ୍ଗରେ ।
କିପାଁଇ କରିଛୁ ଇଚ୍ଛା ଏଥେ ଆସିବାରେ ॥
ଅବଶ୍ୟ କାରଣ କିଛି ଅଛଇ ଏହାର ।
ନ ଜାଣି ମନା କରିବା ନୁହଇ ବିଚାର ॥
ମୋହର ବଚନ ଶୁଣ ପାଣ୍ଡୁଙ୍କ ନନ୍ଦନ ।
ଦୂତେ ବୋଲ ଏଠାକୁ ଆସନ୍ତୁ ସେ ରାଜନ ॥
ଶୁଣିଣ ଅର୍ଜୁନ ତାକୁ ଏହି କଥା ବୋଲେ ।
ଦେଶତ୍ୟାଗ କରି ଆମ୍ଭେମାନେ ଅବହେଳେ
ସାଧିବାକୁ ଯାଗ କାର୍ଯ୍ୟ ଏଥେଁ ଆଗମନ ।
ପଛେ କିବା ବିଘ୍ନ ହେବ ଭୟ ହୁଏ ମନ ॥
ଅଜ୍ଞାତ ସ୍ଥାନରେ ଆମ୍ଭେମାନେ ଉପସ୍ଥିତ ।
କାହାର କି ଅଭିପ୍ରାୟ ନ ହୁଏ ଜାଣିତ ॥
ଏଥିପାଇଁ ସନ୍ଦେହ ତ ଦୂତର ବଚନେ ।
ଆଜ୍ଞାଦେବା ପାଇଁ ମୁହିଁ ନ ଭାବଇ ମନେ ॥
ଶୁଣି ପାର୍ଥଙ୍କ ବଚନ କାମଦେବ ବୋଲେ ।
ଭଲମନ୍ଦ ବ୍ୟବହାର ଜାଣିବାକୁ ହେଲେ ॥
ଯାହାସଙ୍ଗେଦେଖାଦେଖିକେବେହୋଇନାହିଁ
ଯା ନାମ ଆମ୍ଭମାନଙ୍କ କର୍ଣ୍ଣେ ଶୁଣି ନାହିଁ ॥
ତାକୁ ମନ୍ଦ ବୋଲି ଆମ୍ଭେ ଜାଣିବୁ କେମନ୍ତେ
ନ ଜାଣି ମନ୍ଦ ବୋଲିବା ନୁହଇ ଉଚିତେ ॥
ସେଥିପାଇଁ ଆଗେ ତାଙ୍କ ନିଅ ପରିଚୟ ।
ତାର ଇଚ୍ଛା ହୁଏ କିବା ତାର ଅଭିପ୍ରାୟ ॥
ବୋଧହୁଏ ବିରୋଧରେ ନୁହେଁ ତାର ମତି ।
ତା ହେଲେ କିଆଁ ଏଠାକୁ କହନ୍ତା ସେ ଗତି
ଜଣାଯାଏ ମିତ୍ରଭାବେ ସାକ୍ଷାତର ପାଇଁ ।
ସୈନ୍ୟ ସହିତରେ ଆସିଅଛି ନୃପସାଇଁ ॥
ଜଣାଯାଏ ଏ ସ୍ଥାନରେ ଯୁଦ୍ଧ ହେବ ନାହିଁ ।
ବିନାଯୁଦ୍ଧେ ଅଶ୍ୱ ଆମ୍ଭେ ନେବା ମୁକୁଳାଇ ॥
ବିନା କଳିଆ ଦ୍ୱନ୍ଦ୍ୱରେ କାର୍ଯ୍ୟ ଯେବେ ହେବ ।
ଉଭୟ ପକ୍ଷ ମଙ୍ଗଳ ନିଶ୍ଚୟ ହୋଇବ ॥

ସହଜରେ ଅନୁଗତ ଯେବେ କେହି ହୁଏ ।
ଉଭୟଙ୍କ ଶ୍ରେୟ ଏହା ଜାଣ ହେ ନିଶ୍ଚୟେ ॥
ହଣାହଣି ମରାମରି ନ କରିଣ ପୁଣ ।
ଯେବେ ଦୁଇପକ୍ଷେ ହୁଏ ମିତ୍ରତା ସ୍ଥାପନ ॥
ତା ହେଲେ ଉଭୟ ପକ୍ଷ ମଙ୍ଗଳ ହୋଇବ ।
ଏ ମୋ ବିବେଚନା ଅଟେ ହେ ବୀର ଗାଣ୍ଡିବ
ଏଥିପାଇଁ ବୁଦ୍ଧିମାନ କଲ କୌଶଳରେ ।
ବିବାଦ ବିହୀନ କାର୍ଯ୍ୟ କରନ୍ତି ସୁଖରେ ॥
ଅଶ୍ୱକୁ ଧରିଣ ରାଜା ମନରେ ଭାବିଲେ ।
ପ୍ରବଳ ସହ ବିରୋଧ ନୁହଇ ବିଧିରେ ॥
ଏହି ଭାବନା ମନରେ କରିଣ ରାଜନ ।
ଆସିଛନ୍ତି କରିବାକୁ ବନ୍ଧୁତା ସ୍ଥାପନ ॥
ଆତ୍ମୀୟ ସ୍ୱଜନ ସଙ୍ଗେ କରିଣ ମନ୍ତ୍ରଣା ।
ଅଶ୍ୱ ଦେବାକୁ ଆସିଲେ ମୋତେ ଯାଏ ଜଣା
ଶୁଣିଣ ଅର୍ଜୁନ ବୀର ଏପରି ବଚନ ।
ଦୂତକୁ ବୋଇଲେ କରି ତ୍ୱରିତେ ଗମନ ॥
ଯେଉଁଠାରେ ତୁମ୍ଭ ରାଜା କରିଛନ୍ତି ସ୍ଥିତ ।
ତାଙ୍କଠାରେ ଏହିକଥା ଜଣାଅ ଝଟିତ ॥
ଆସନ୍ତୁ ନିର୍ଭୟେ ଦେଖା କରିବାର ପାଇଁ ।
କୌଣସି ପ୍ରକାରେ ବାଧା ବିଘ୍ନ ଏଥେ ନାହିଁ
ଆସିଅଛୁ ଆମ୍ଭେମାନେ ସାଧିବାକୁ କାର୍ଯ୍ୟ ।
ଜଣା ଶୁଣା ଅଟେ ଏହି ଜାଣ ଏ ନିଧାର୍ଯ୍ୟ ॥
ଶୁଣିଣ ଅର୍ଜୁନ ବାକ୍ୟ ଦୂତ ଆନନ୍ଦରେ ।
ବଭ୍ରୁବାହନ ପାଶରେ ମିଳିଲା ସତ୍ୱରେ ॥
ଅର୍ଜୁନଙ୍କ ଅଭିମତ ସବୁ ଜଣାଇଲା ।
ଶୁଣି ନରପତି ମନେ ଆନନ୍ଦ ହୋଇଲା ॥
ଅତି ଆନନ୍ଦରେ ରାଜା ଅର୍ଜୁନ ପାଶରେ ।
ଉପସ୍ଥିତ ହୋଇଣ ଦେଖିଲେ ସେ ସ୍ଥାନରେ
ମଧ୍ୟରେ ବସିଅଛନ୍ତି ପାର୍ଥ ବୀରବର ।
କାମଦେବ ଆଦି ଛନ୍ତି ଚାରି ପାର୍ଶ୍ୱରେ ॥
ହଂସଧ୍ୱଜ ନୀଳଧ୍ୱଜ ଯୌବନାଶ୍ୱ ବୀର ।
ଅନୁଶାଲ୍ୱ ଆଦିକରି ସଂଗ୍ରାମେ ସୁଧୀର ॥
ତାରାପନ୍ତି ପରି ସବେ ବେଢି ବସିଛନ୍ତି ।
ମଧ୍ୟରେ ଅର୍ଜୁନ ଚନ୍ଦ୍ରପ୍ରାୟେ ବିରାଜନ୍ତି ॥
ସୁବିଶାଳ ବକ୍ଷସ୍ଥଳ ଦିଶେ ଶୋଭମାନ ।
ହସ୍ତୀର ଶୁଣ୍ଢ ପରାୟେ ଓବଳ ବାହୁ ଜାଣ ॥

କୃଷ୍ଣବର୍ଣ୍ଣ କାନ୍ତ ମନୋହର ରୂପଠାଣି ।
କୋଟି କନ୍ଦର୍ପଙ୍କ ପ୍ରାୟେ ଦିଶେ ବୀରମଣି ॥
ଉନ୍ନତ ମସ୍ତକ ତାଙ୍କ ଅଙ୍ଗର ଗଠନ ।
ତେଜ ଦେଖାଯାଏ ସୂର୍ଯ୍ୟଦେବର ସମାନ ॥
ଶରଣାଗତର ବନ୍ଧୁ ଶତ୍ରୁଙ୍କର ଯମ ।
ଯା ନାମରେ କମ୍ପମାନ ହୁଏ ଜନ୍ତୁଗଣ ॥
ସମରେ ନିପୁଣ ବୀର ଅବ୍ୟର୍ଥ ସନ୍ଧାନ ।
ନିସ୍କମ୍ପ ହୃଦୟ ବୀର ଅତି ବିଚକ୍ଷଣ ॥
ଅନୁଚର ଗୃହଯାଏ ବସିଛନ୍ତି ଘେରି ।
ମଧ୍ୟେ ବସିଛନ୍ତି ବୀର ବାସବଙ୍କ ପରି ॥
ଉପଯୁକ୍ତ ପାତ୍ର ମିତ୍ରମାନେ ସଙ୍ଗେ ଘେନି ।
ପ୍ରବେଶ ବଭ୍ରୁବାହନ ହେଲେ ତହିଁ ପୁଣି ।
ଭକ୍ତିଭରେ ପାର୍ଥଙ୍କର ଶ୍ରୀଚରଣ ତଳେ ।
ପ୍ରଣିପାତ ହେଲେ ବୀର ଅତି ବିନୟରେ ॥
ଗଳେ ବସ୍ତ୍ର ଦେଇ ବୀର ସକରୁଣ ସ୍ୱରେ ।
ବନ୍ଦନା କରିଣ ପୁଷ୍ପ ଦେଲେ ଆନନ୍ଦରେ ॥
ସ୍ନେହେ ଚକ୍ଷୁ ଛଳ ଛଳ ହୋଇଲା ତାଙ୍କର ।
ନିରୀକ୍ଷଣ କରେ ବୀର ପାର୍ଥେ ବାରବାର ॥
ମନ ମଧ୍ୟେ ନାନାଭାବ ଉଦୟ ହୁଅଇ ।
କୁଳନାରୀ ସଙ୍ଗେ ହାସ୍ୟ କିବା ଶୋଭାପାଇ ॥
ଯେ ସକଳ ଧନ ରତ୍ନ ଥିଲା ସଙ୍ଗତରେ ।
ସବୁ ସମର୍ପଣ କଲା ପାର୍ଥଙ୍କ ପାଦରେ ॥
ଦୂରେ ଥାଇ କରଯୋଡ଼ି ବୋଲନ୍ତି ବଚନ ।
କମ୍ପିତ ଭାବରେ ଭିକ୍ଷା କରେ ଅକିଞ୍ଚନ ॥
ଜନମ ସାର୍ଥକ ମୋର ଜାଣିଲି ନିଶ୍ଚୟ ।
ସେ ଯୋଗୁ ଏଠାରେ ତୁମ୍ଭେ ହୋଇଛ ଉଦୟ ॥
ବହୁଦିନ ଆଶାଥିଲା ଚରଣ ଦର୍ଶନ ।
ଭାଗ୍ୟବଳେ ଆଜ ତାହା ହୋଇଲା ପୂରଣ ॥
କେତେଦିନୁ ସୁସମୟ ନୋହୁଥିଲା ମୋର ।
ଏତେଦିନେ ମନକଷ୍ଟ ତୁଟିଲା ହେ ବୀର ॥
ଦେବତା ପ୍ରସନ୍ନ ମୋତେ ଜାଣିଲି ଏକ୍ଷଣ ।
ସର୍ବଗ୍ରହ ଶୁଭ ମୋର ହୋଇଅଛୁ ପୁଣ ॥
ମୋ ମନ ବେଦନା ଜାଣି ପ୍ରଭୁ ନାରାୟଣ ।
ଏତେଦିନେ ପଠାଇଲେ ଦେବାକୁ ଦର୍ଶନ ॥
ଜାଣିଲିଣି ମୋହ ପାଇଁ ଏଥେ ଆଗମନ ।
ବହୁଦିନ ଆଶା ମୋର ହୋଇଲା ପୂରଣ ॥

ସଂସାରରେ ସୁଖ ଭୋଗ ଆଦି ଯେତେ ମୋର
କାହିଁରେ ଅଭାବ ନାହିଁ ଶୁଣନ୍ତୁ ପିଅର ॥
ଧନରତ୍ନ ଅଶ୍ୱ ହସ୍ତୀ ଯେତେ ଆଧିପତ୍ୟ ।
ଆଉ ଯେତେ ମହାମୂଲ୍ୟ ପଦାର୍ଥ ସମସ୍ତ ॥
ସେ ସବୁ ଅମ୍ଭର ଭାଗ୍ୟେ ଅଭାବତ ନାହିଁ ।
ମାତ୍ର ମନ ଦୁଃଖ ଥିଲା ଆହେ ବୀରସାଇଁ ॥
ତାହା ଦୂର କରିବାକୁ ଆପଣ କାରଣ ।
ସେ ଯୋଗେ ଛାମୁରେ ଦେବ ଏହି ନିବେଦନ
ନ ଜାଣିଣ ଅପରାଧ ଘଟିଛି ମୋହର ।
ତୁମ୍ଭ କୃପା ବିନୁ କିଏ କରିବ ଉଦ୍ଧାର ॥
ପରିଚୟ ନ ପାଇଲେ କିପରି ଚିହ୍ନିବ ।
ନ ଜାଣିଣି ମୋତେ କେହ୍ନେ ଗ୍ରହଣ କରିବ.
ମୋହର ଯେତକ ଦୋଷ ସକଳ ମାର୍ଜନ ।
କରିବ ହେ ଦୟାମୟ ଏହି ନିବେଦନ ॥
ଏତେଦିନ ଦୁଃଖ ଥିଲା ନ ଚିହ୍ନିଲି ପିତା ।
ଏଣିକି ମୋ ମନଦୁଃଖ ଘୁଞ୍ଚିଲା ସର୍ବଥା ॥
ଯେତେବେଳେ ତୀର୍ଥ ପର୍ଯ୍ୟଟନେ ଆସିଥିଲ ।
ଗନ୍ଧର୍ବ ନନ୍ଦିନୀ ଚିତ୍ରାଙ୍ଗଦାକୁ ବରିଲ ॥
ବିଭାହୋଇ ମହାବୀର ଦାମ୍ପତ୍ୟ ସ୍ନେହରେ ।
କେତେକାଳ କଟାଇଲ ମାତାଙ୍କ ସଙ୍ଗରେ ॥
ଆପଣଙ୍କ ଔରସରେ ତାହାଙ୍କ ଗର୍ଭରେ ।
ଜନମ ହୋଇଲା ମୋର ଶୁଣ ମନସ୍ଥିରେ ॥
ଜନ୍ମ ହୋଇ କ୍ରମେ ଯେତେବେଳେ ବଡ଼ହେଲି
ପିତା ମୋର କିଏ ବୋଲି ମାତାଙ୍କୁ ପୁଚ୍ଛିଲି ॥
ଶୁଣି ମୋ ବଚନ ମାତା କହିଲେ ବୁଝାଇ ।
ହସ୍ତିନାର ରାଜା ଯୁଧିଷ୍ଠିର ନରସାଇଁ ॥
ତାହାଙ୍କ କନିଷ୍ଠ ଭାଇ ନାମ ତା ଅର୍ଜ୍ଜୁନ ।
ସେ ତୋହର ପିତା ବାପ ହେତୁ କରି ଘେନ
ଆହେ ତାତ ସେହିଦିନୁ ମନେ ମୋର ଥିଲା ।
ଏବେ ବିଧି ଆଣି ତାହା ମୋତେ ଘଟାଇଲା
ଯେତେବେଳେ ଆପଣଙ୍କ ଯଜ୍ଞ ଅଶ୍ୱ ପୁରେ ।
ପ୍ରବେଶିଲା ମୋ ଆଗରେ କହିଲେ ଡଗରେ
ଡଗରଙ୍କ ମୁଖୁଁ ଶୁଣି ଅଶ୍ୱ ଆଗମନ ।
ଧରିବା ପାଇଁକି ମୁଁ ଆଦେଶ ଦେଲି ପୁଣ ॥
ମୋ ଆଦେଶ ପାଇଣ ସେମାନେ ଚଳିଗଲେ
ଯଜ୍ଞ ଅଶ୍ୱ ଧରିଣ ମୋ ପାଶେ ପ୍ରବେଶିଲେ ॥

ଅଶ୍ୱ ଦେଖିଣ ବହୁତ ଆନନ୍ଦ ହୋଇଲି ।
ଅଶ୍ୱଶିରେ ଥିବା ବୀରପତ୍ରକୁ ପଢ଼ିଲି ॥
ଦେଖିଲି ହୋଇଛି ଲେଖା ସେ ବୀରପତ୍ରର ।
ହସ୍ତିନାର ରାଜା ଯୁଧିଷ୍ଠିର ନରବର ॥
ଜ୍ଞାତି ବଧ ପାପୁ ମୁକ୍ତ ହୋଇବାର ପାଇଁ ।
ଅଶ୍ୱମେଧ କରୁଛନ୍ତି ଦ୍ରୌପଦୀର ସାଇଁ ॥
ଅଶ୍ୱରକ୍ଷା ପାଇଁ ଆସିଅଛନ୍ତି ଅର୍ଜୁନ ।
ତାହାଙ୍କର ସଙ୍ଗତରେ ଛନ୍ତି ବହୁସୈନ୍ୟ ॥
ପଢ଼ିଣ ପତ୍ରର କଥା ମନରେ ପଡ଼ିଲା ।
ମନ ମଧ୍ୟେ ମୋର ବହୁ ଆନନ୍ଦ ଜନ୍ମିଲା ॥
ତହୁଁ ଅଶ୍ୱ ସହିତରେ ମାତାପାଶେ ଗଲି ।
ସମସ୍ତ ଘଟଣା ତାଙ୍କୁ ବୁଝାଇ କହିଲି ॥
ଆଜ୍ଞାଦେଲେ ମାତା ମୋତେ ଧନରତ୍ନ ନେଇ
ପିତାଙ୍କ ପାଦେ ଶରଣ ବେଗେ ପଶ ଯାଇ ॥
ପିତା ପୁତ୍ର ଦ୍ୱନ୍ଦ୍ୱ କରି ନୁହଇ ଉଚିତ ।
ଅନେକ ପ୍ରକାରେ ବୁଝାଇଲେ ମୋର ମାତ ॥
ମାତାଙ୍କ ଆଦେଶ ମାନିକରି ଆହେ ତାତ ।
ସୈନ୍ୟ ସହିତ ଆଇଲି ଦର୍ଶନ ନିମିତ୍ତ ॥
ଏତେ ମହା ଅପରାଧ ହୋଇଅଛି ମୋର ।
ସକଳ କ୍ଷମିବ ପିତା ଏହି ଅଧମର ॥
ଏହା କହି ବୀର ସାଷ୍ଟାଙ୍ଗରେ ପାଦେ ପଡ଼ି ।
ଉଭାହେଲା ବୀରବର ବେନିକର ଯୋଡ଼ି ॥
ବଭ୍ରୁବାହାନର ବାଣୀ ଶୁଣି ପାର୍ଥବୀର ।
ଅତ୍ୟନ୍ତ କ୍ରୋଧ ହୋଇଣ କହିଲେ ସେ ଗୀର
ଅସମ୍ଭବ ବୋଲୁ ବଭ୍ରୁବାହନ ତୁ ମୋତେ ।
କହିବାକୁ ଏହି କଥା ଲଜ୍ଜା ନାହିଁ ତୋତେ ॥
ନିଃସନ୍ଦେହେ ଅପରକୁ ପିତୃ ସମ୍ବୋଧନ ।
ସମସ୍ତଙ୍କ ସାକ୍ଷାତରେ ବୋଇଲୁ ଏକ୍ଷଣେ ॥
ଏଥିରେ ଯେ କେତେଦୂର ଲଜ୍ଜା ଘୃଣା ହୁଏ ।
ତାହା କି ନ ଜାଣ ତୁମ୍ଭେ ଗନ୍ଧର୍ବୀ ତନୟେ ॥
ଚିତ୍ରାଙ୍ଗଦା ପୁତ୍ର ବୋଲି ନିଜ ପରିଚୟ ।
ନ ଦେଇ ବଭ୍ରୁବାହନ କହୁଛ ନିଶ୍ଚୟ ॥
ଯେ ହୁଏ ପିତାର ପୁତ୍ର ପିତା ପରିଚୟ ।
ଦେଇଥାଏ ଏହି କଥା ଅଟଇ ତ ଶ୍ରେୟ ॥
ବୋଇଲ ଏଠାରେ ତୁମ୍ଭେ ତାର ବିପରୀତ ।
କହିଲ ଯେ କଥା ତାହା ଅଟେ ଅନୁଚିତ ॥

ସମସ୍ତଙ୍କ ସାକ୍ଷାତରେ ବୋଇଲ ଯେ ବାଣୀ ।
ଏଥି ପାଇଁ ବଡ଼ ଘୃଣା କରେ ମୁହିଁ ପୁଣି ॥
ନାହିଁ ଯେ ତୁମ୍ଭର ଦୋଷ ଏପରି କଥାରେ ।
ସହବାସ ହେତୁ ଘଟିଅଛି ଏପରିରେ ॥
ପାପରେ ଅନବରତ ଥାଏ ଯାର ଚିତ୍ତ ।
ପାପକୁ ପାପ ବୋଲିଣ ନ ଭାବେ ସେହିତ ॥
ନିଜ ପରିଚୟେ ନୀଚ ତୁମ୍ଭର ଯେ ଜ୍ଞାନ ।
ନାହିଁ ବୋଲି ଜଣାଇଲ ଏ ସଭାରେ ପୁଣ ॥
ଜଣା ଶୁଣା ପରିଚୟ ନାହିଁ ଯା ସଙ୍ଗରେ ।
ଅକ୍ଳେଶେ କପଟ କୁହ ଲଜ୍ଜା ଛାଡ଼ି ଦୂରେ ॥
କେ ଜାଣେ ତୁମ୍ଭର ରୀତି କପଟ ଧରଣ ।
ଏହି ଚିନ୍ତା ଜାତ ହୁଏ ମୋହର ମନେଣ ॥
ଅପରେ ବନ୍ଧୁତା କଲେ ଯେ ସମ୍ବନ୍ଧ ହୁଏ ।
ସହବାସ କଲେ ସେତେ ପୀରତି କି ହୁଏ ॥
ଜଣାଶୁଣା ଲୋକ ସହ ଆଳାପ କରିଲେ ।
କେବେ କେହି ସନ୍ଦେହ ନ କରେ ସହଜରେ
ତୁମ୍ଭର ସଙ୍ଗରେ ନାହିଁ କିଛି ପରିଚୟ ।
ଜାତି ଗୋତ୍ର କିସ ତୁମ୍ଭ ନୋହୁଛି ନିଶ୍ଚୟ ॥
ତୁମ୍ଭେ ହସି ହସି ମୁଖେ ବୋଇଲ ଜନକ ।
ଏକଥା ଶୁଣି ହସିବେ ସଂସାରର ଲୋକ ॥
ଲୋକେ ଅସମ୍ଭବ ଯାହା ତୁମ୍ଭେ ସହଜରେ ।
ପ୍ରକାଶ କରିଲ ଏହା ସର୍ବ ସାକ୍ଷାତରେ ॥
ଧିକ ତୁମ୍ଭ ବୁଦ୍ଧି ବଳ ଧିକ ତୁମ୍ଭ ଜନ୍ମ ।
ଏପରି କହିବାକୁ ହେ ନ କଲ ସରମ ॥
ଶୁଣିଣ ଅର୍ଜୁନ ବାଣୀ ସେ ବଭ୍ରୁବାହନ ।
ତଳ ତଳ ଆଖି ତାର ହୋଇଲା ତକ୍ଷଣ ॥
କେବେହେଁ ଅର୍ଜୁନ ପାଦ ଧରି ସଯତନେ ।
ଅର୍ଜୁନଙ୍କ ପ୍ରତି ଚାହିଁଲା ସେ ଏକମନେ ॥
ଇଚ୍ଛାକରେ କହିବାକୁ କହି ନ ପାରଇ ।
ହୃଦୟରେ ଦୁଃଖ ତାର ଫୁଲିଣ ଉଠଇ ॥
ପୁନର୍ବାର ପାର୍ଥ ତାଙ୍କୁ ବଚନ ବୋଇଲେ ।
କହିଁ ଏତେ ଅଘଟନ ଘଟିଲା ତୁମ୍ଭରେ ॥
ଲଜ୍ଜାହୀନ ଜ୍ଞାନହୀନ ଦେଖିଛି ଅନେକ ।
ଦେଖିନାହିଁ ନିର୍ଲଜ୍ଜ ମୁଁ ତୁମ୍ଭର ପ୍ରାୟେକ ॥
ବୁଦ୍ଧିଶୁଦ୍ଧି ଲୋପ ସବୁ ହୋଇଛି ତୁମ୍ଭର ।
କପାଇ ପାଦରେ ପଡ଼ିଅଛ ତପ ମୋହର ॥



ବଭ୍ରୁବାହନ ପିତୃ ସମ୍ବୋଧନ କରଣାର୍ଥେ ଅର୍ଜୁନ ତିରସ୍କାର କରିବା

ଚରଣ ଧରିଲେ କି ହେ ପିତା ହୋଇପାରେ
ରାଜା ହୋଇ ଯିବ ତହିଁ ଭ୍ରମ କି ଅନ୍ତରେ ॥
ଜାଣେ ମୁହିଁ ଚିତ୍ରାଙ୍ଗଦା ଗନ୍ଧର୍ବ ନନ୍ଦନୀ ।
ରୂପ ଗୁଣରେ ସୁନ୍ଦରୀ ଅଟେ ସେ ରମଣୀ ॥
ବେଶ୍ୟା ମଧ୍ୟେ ଖ୍ୟାତ ତାର ବହୁ ଦିନଠାରୁ
ଶୁଣିଅଛୁ ରାଜ୍ୟେ ବସି ଲୋକଙ୍କ ମୁଖରୁ ॥
ବାଧା କିପାଁ ଦେବ ହୋଇପାର ତାର ସୁତ ।
ଲଜ୍ଜା ଦେବାପାଇଁ ମୋତେ ବୋଲ ଅସଙ୍ଗତ
କୁଳବତୀ କୁଳଲଜ୍ଜା କରିଥାଏ ଭୟେ ।
କୁଳଟାର ହାନିଲାଭ ତହିଁ କିବା ହୁଏ ॥
ଯାହାର ପବିତ୍ର ଶ୍ରୀତ ସୁନ୍ଦର ଚରିତ ।
ତ୍ରୈଲୋକ୍ୟରେ ସର୍ବେ ଗାନ୍ତି ତାହାର ମହତ
ବଢ଼ାଇବାକୁ ଯାହାକୁ ଗୃହିଁ ଦୁର୍ନାମରେ ।
କଳଙ୍କ କି ଦେବ ସେ ନିର୍ମଳଙ୍କ ନାମରେ ॥

ସତ୍ୟ ସତ୍ୟ ବୋଲୁଅଛୁ ଚିତ୍ରାଙ୍ଗଦା ସୁତ ।
ପାଣ୍ଡୁପୁତ୍ର ନ କରଇ କେବେ ମନ୍ଦକୃତ୍ୟ ॥
ଜନମଠାରୁ ମୋହର ଯେ ପର୍ଯ୍ୟନ୍ତ ଜ୍ଞାନ ।
ହୋଇଅଛି ଜାଣେ ପାପ ପୁଣ୍ୟର ସନ୍ଧାନ ॥
ଆଜଯାଏ ଦେଖି ନାହିଁ ମୁଁ ବେଶ୍ୟା ସଦନ ।
କରି ମୁଁ ନାହିଁ ବେଶ୍ୟାର ଛବିକି ଦର୍ଶନ ॥
କୁଳଟା ସହିତେ ମୋର କେବେହେଁ ଆଳାପ
କରି ନାହିଁ ଯହିଁରେ ଶେଷକୁ ହେବ ପାପ ॥
ଅପବିତ୍ର ସ୍ଥାନ ବୋଲି ବେଶ୍ୟାର ଭବନ ।
ଗମନ ମୁଁ କରିନାହିଁ ହେ ବଭ୍ରୁବାହନ ॥
ମୋତେ ତ କିପରି ବେଶ୍ୟା ସଙ୍ଗେ ସଙ୍ଗ କଲ
ଆଚରି ମାନ ମର୍ଯ୍ୟାଦା ତଳେ ପକାଇଲ ॥
ପିତା ବୋଲି ସମ୍ବୋଧନ ଯାହା ସେ କରିଲ ।
ଏଥିରେ ଅଦ୍ଭୁତ ଲଜ୍ଜା ମୋତେ ତୁମ୍ଭେ ଦେଲ

ଯେଉଁ ଲୋକ ଔରସରୁ ଜନମ ତୁମ୍ଭର ।
ତାହାକୁ ଭୁଲିଣ ଗଲ କେବଣ ପ୍ରକାର ॥
ବେଶ୍ୟାମାନେ ନାନାକଥା ଯୁଝାଇ କହନ୍ତି ।
ତେଣୁ ସେ ତୁମ୍ଭଙ୍କୁ ବୁଝାଇଲେ ଏହିମତି ॥
ସେ ପିତାର ନାମ ତୁମ୍ଭେ କପାଁଇ ନବୋଲ ।
କି ସାହସେ ପିତୃ ସମ୍ବୋଧନ ମୋତେ କଲ
ଆପଣାର ପରିଚୟ ମନେ ନ ଭାବିଲ ।
ମିଶିବା ପାଇଁ କି ଭଦ୍ର ସମାଜେ ଆସିଲ ॥
ଜାଣନା କୁଳଟା ପୁତ୍ର ଶାସ୍ତ୍ରର ବଚନ ।
ଯେଉଁଠାରେ କୁଳଟା ନାରୀ କରେ ଅବସ୍ଥାନ
କୁଳଟାର ସ୍ପର୍ଶ ଦୋଷ ଅଛି ଯେଉଁଠାରେ ।
ଅପବିତ୍ର ସେହି ସ୍ଥାନ ଜାଣେ ସର୍ବଜନରେ ॥
ଅପବିତ୍ର ନୀଚ ତୁମ୍ଭେ ସ୍ପର୍ଶ ଯୋଗ୍ୟ ହୀନ ।
ପିତୃ ବୋଲି କହି ମୋତେ କଲ ଅପମାନ ॥
ଯହିଁରେ ମୋ ସ୍କନ୍ଧ ଛୁଡ଼ ପଡିଲା ଏଠାରେ ।
ବିଶେଷ ଅସୁଖ ପୁଣି ଘଟିଲା ମନରେ ॥
ନିଜ ମାନ ରକ୍ଷା କର ହେ ବଭ୍ରୁବାହନ ।
ଗୃହେ ଚଳିଯାଅ କପାଁ ଦିଅ କଷ୍ଟ ପୁଣ ॥
ଛାଡ଼ ଛାଡ଼ ମୋର ପାଦ ନ କର ଗ୍ରହଣ ।
ସହଜରେ ନ ଛାଡ଼ିଲେ ଭୋଗିବ କଷଣ ॥
ଅର୍ଜୁନଙ୍କ ବାକ୍ୟ ଶୁଣି ସେ ବଭ୍ରୁବାହନ ।
କୌଣସି ରୂପେ ନ ଛାଡ଼ଇ ତାହାଙ୍କ ଚରଣ ॥
ନୟନର ଜଳେ ବୀର ଭାସଇ ସେଠାରେ ।
ଅବିରତ ଲୋଟେ ବୀର ପାର୍ଥ ପଦତଳେ ॥
ବାରବାର ଯେତେ ବୁଝାଇଲେ ପାର୍ଥବୀର ।
କେବେ ନ ଛାଡ଼ିଲା ପାଦ ବଭ୍ରୁବାହ ବୀର ॥
କୋପରେ ପାର୍ଥଙ୍କ ତନୁ ଜର ଜର ହେଲା ।
ଅତ୍ୟନ୍ତ ରାଗେ ଅର୍ଜୁନ ଫୁଲିଣ ଉଠିଲା ॥
ରେ ନିର୍ଲ୍ଲଜ ଲାଜ ନାହିଁ ଧରୁଛୁ ଚରଣ ।
ବେଶ୍ୟାର ପୁତ୍ର ବୋଲିଣ ଜଗତେ ବଖାଣ
ତୋ ମୁଖ ଦେଖିଲେ ହୁଏ ପାତକ ବିଶେଷ
ତୋହର ଦର୍ଶନେ ହୁଏ ଶୁଭକାର୍ଯ୍ୟ ନାଶ ॥
ଯାତ୍ରାକାଳେ ଯେ ଦେଖିବ ତୋହର ବଦନ
ଅଶୁଭ ତାହାର ନିଶ୍ଚେ ହୋଇବ ଘଟଣ ॥
ନାରକର ଯୋଗ୍ୟ ତୁହିରେ ମୂର୍ଖ ଅଜ୍ଞାନ ।
ସ୍ୱର୍ଗସୁଖ ଭୋଗ ପାଇଁ ଇଚ୍ଛାକରୁ ମନ ॥
ସୁବାସ ବିହୀନ ପୁଷ୍ପେ କେ ଆଦର କରେ ।
ବାସଯୁକ୍ତ ସହ କି ସେ ସମ ହୋଇପାରେ ॥
ଚଣ୍ଡାଳ ଯେ ଇଚ୍ଛାକରେ ବ୍ରାହ୍ମଣ ସହିତ ।
ବସିଣ ଏକ ଆସନେ ହେବାକୁ ପୂଜିତ ॥
କୁକ୍କୁର ଇଚ୍ଛଇ ସଦା କୋଳେ ବସିବାକୁ ।
କିଏ ବା ତାକୁ ଛୁଇଁବ ନାଶି ପ୍ରକୃତିକୁ ॥
ନୀଚଜାତ ନୀଚବୃତ୍ତି ଅଟଇ ଯାହାର ।
ପାଣ୍ଡୁବଂଶ ଚନ୍ଦ୍ରସହ ବସିବୁ ପାମର ॥
ଏଡ଼େ ବଡ଼ ସାହସ ମୁଁ ଦେଖିଲି ଯେ ତୋର
ନ ପାଇ ଉଚିତ ଶିକ୍ଷା ବଢ଼ିଲୁ ପାମର ॥
ବାମନ ହୋଇଣ ଚନ୍ଦ୍ର ଧରିବାରେ ଇଚ୍ଛା ।
କଲେକି ତାହାର ପୂର୍ଣ୍ଣ ହୁଏ ମନୋବାଞ୍ଛା ॥
ଭଦ୍ରାଭଦ୍ର ଜ୍ଞାନ ନାହିଁ ଅରେ ନରାଧମ ।
କୃତ୍ତସଖା ମୁହିଁ ମୋତେ କରୁ ଅପମାନ ॥
ଧିକ ତୋର ଜନ୍ମ ଧିକ ଧିକରେ ପାମର ।
ମୋ ପୁତ୍ର ହୋଇବା ପାଇଁ ଭାବିଲୁ ମନର ॥
ଛାଡ଼ ଛାଡ଼ ମୋର ପାଦ ଅରେରେ ଅଧମ ।
ବୃଥା ଚାରେ କପାଁ ହୋଇଅଛୁ ମତିଭ୍ରମ ।
ଏହିପରି କଥା ଅର୍ଜୁନଙ୍କଠାରୁ ଶୁଣି ।
ବଭ୍ରୁବାହନ ବୋଲଇ ଶୁଣ ବୀରମଣି ॥
ଯୋଡ଼ହସ୍ତ ହୋଇ କହେ କରିଣ ବିନୟ ।
ବିବେଚନା କରି ଦେଖ ତୁମ୍ଭେ ମହାଶୟ ॥
ତୁମ୍ଭଙ୍କୁ କି ବୁଝାଇବି ହିତର ଲକ୍ଷଣ ।
ଭଲମନ୍ଦ କାର୍ଯ୍ୟ ତୁମ୍ଭେ ଜାଣ ହେ ଧୀମାନ ॥
ଉଚ୍ଚକୁଳେ ଜନ୍ମ ତବ ଉଚ୍ଚ ସଙ୍ଗେ ବାସ ।
ଧର୍ମନୀତି ରାଜନୀତି ଜାଣ ସବିଶେଷ ॥
ବଳବୁଦ୍ଧି ବିବେଚନା ଅଛି ତୁମ୍ଭଠାରେ ।
ତେବେ କପାଇଁ ନ ଭାବି ବୋଲ ଏପରିରେ
ବୟସ ହୋଇଲେ ପୁତ୍ର ପିତୃ ଅଧିକାର ।
ଅକ୍ଲେଶେ ଦେଇ ପାରଇ ଜାଣ ତୁମ୍ଭେ ବୀର ।
ପିତାଙ୍କ କଥାରେ କେବେ ମାନ ଅପମାନ ।
ମନମଧ୍ୟେ ନ ଦେଇ ଯେହୁ ସୁସନ୍ତାନ ॥
ଯେତେ ଅପମାନ ଘୃଣା କରିଲେ ମୋଠାରେ
ତେବେ ମନେ କଷ୍ଟ ମୋର ନାହିଁ ଯେ ଏଥିରେ
ସମ୍ବନ୍ଧ କାହାର ସଙ୍ଗେ ନ ଥିଲେ ଯେ କେହି
ପିତୃ ବୋଲି ସମ୍ବୋଧନ କରି କି ପାରଇ ॥

କେ କାହାର ପୁତ୍ର ଏହା ଜାଣିଅଛୁ କବେ ।
କେବଳ ମାତା ଜାଣଇ ସେ କଥା ନିଶ୍ଚୟେ ॥
ଶିଶୁଜନ୍ମ କଥା ପିତା କେମନ୍ତେ ଜାଣିବେ ।
ଜନନୀଙ୍କ ବ୍ୟତିରେକେ ଅଜଣା ସରବେ ॥
ଯାହା ସହିତରେ ନାରୀ ସହବାସ କରେ ।
ଗର୍ଭସ୍ଥାୟୀ ଦିନ ସେହି ଜାଣଇ ବିଧିରେ ॥
ସମସ୍ତେ କି ମୁକ୍ତ କଣ୍ଠେ କହିଣ ପାରନ୍ତି ॥
ପିତାଙ୍କ ଔରସୁ ମୋର ଜନମ ନିସୃତ ॥
ଏପରି କହିବା ଲୋକ ସଂସାରେ ଅଧମ ।
ମାତା ବିନା ନ ଜାଣନ୍ତି କେହି ତାର ମର୍ମ ॥
ପରିଚୟ ପାଇଅଛୁ ଜନନୀ ପାଶରେ ।
ସେଥିଯୋଗୁଁ ପିତା ବୋଲି ସମ୍ବୋଧନ କରେ
ସେଥିରେ କି ଦୋଷ ମୋର କୁହ ବୀରବର ।
କେତେକେତେ କଟୁକଥା କହିଲ ଏଥର ॥
ସାଧୁଲୋକମାନେ ମୁଖେ ଯେତେ କୁବଚନ ।
କ୍ଷଣେ ତୁଣ୍ଡେ ନ ଧରନ୍ତି କହିଲ ସେମାନ ॥
ବୃଥାଟାରେ ସମସ୍ତଙ୍କୁ ଆଗେ ବୀରମଣି ।
ବେଶ୍ୟାସଙ୍ଗେ ସରିକଲ ମୋ ମାତାକୁ ପୁଣି ॥
ସେହି ଅଟେ ସାଧ୍ୱୀ ପତିବ୍ରତା ଶିରୋମଣି ।
ଦ୍ରୌପଦୀଠାରୁ ଉତ୍କୃଷ୍ଟ ବିଧାନରେ ପୁଣି ॥
ଜାଣେ ଭଲେ ତବ ମୂର୍ତ୍ତି ପୂଜେ ମାତା ମୋର
ତବ ନାମ ମାଳା କରିଥାଏ ହୃଦୟର ॥
ତଥାପି ଭର୍ତ୍ସନା ବାକ୍ୟେ ଦେଲ ମନ କଷ୍ଟ ।
ତହିଁର କି ପ୍ରତିଫଳ ହୋଇପାରେ ନଷ୍ଟ ॥
ଅନ୍ୟକୁ କଷ୍ଟ ଦେଇଣ ନିଜେ ସୁଖଭୋଗ ।
ଏହାହିଁ ଉଚିତ ତବ ଅଟେ ମହାଭାଗ ॥
କାହା ବ୍ୟବହାରେ ଯେବେ କେହୁ ଦୀର୍ଘଶ୍ୱାସ
ପକାଇବେ କେବେ ତାର ପୂର୍ଣ୍ଣ ନୁହେ ଆଶ ।
ମାନ୍ୟଲୋକ ନିକଟରେ ମନ୍ଦ ସଙ୍ଘଟନ ।
ହୋଇଥାଏ ଏହା ତୁମ୍ଭ ହୋଇଛି ଧାରଣ ॥
ଅଳ୍ପ ପାପେ ବହୁତର ଦଣ୍ଡଭୋଗ ହୁଏ ।
ମନେ କଷ୍ଟ ଦେଲେ କଷ୍ଟ ଘଟିବ ନିଶ୍ଚୟେ ॥
ଏଣୁକରି ଜାଣି ଶୁଣି ପଣ୍ଡୁଙ୍କ ନନ୍ଦନ ।
କିମ୍ପା ମୋତେ ମନ କଷ୍ଟ ଦିଅ ଅକାରଣ ॥
ଆଜି ବିବେଚନା କର ଆପଣା ମନରେ ।
ସନ୍ତାନ ନୋହିଲେ କେହୁ ଏହା ବୋଲିପାରେ
ଜାଣି ଶୁଣି କିମ୍ପା ତୁମ୍ଭେ ହେଉଛ ଅଜଣା ।
ପୂର୍ବକଥା ମନେ ବୀର କରନ୍ତୁ ସ୍ମରଣା ॥
ଆଗନ୍ତୁକ ଲୋକ କିଏ ଅନ୍ୟଙ୍କୁ ଦେଖିଣ ।
ପିତା ବୋଲି ଆନନ୍ଦରେ ବନ୍ଦଇ ଚରଣ ॥
ଛାଡ଼ ରୋଷ ଛାଡ଼ ମାନ ଅହେ ବୀରମଣି ।
ପୁତ୍ରପଦେ ସ୍ଥାନ ଦିଅ କରୁଛି ଦସ୍ୟୁମ୍ନୀ ॥
ବଭ୍ରୁବାହନଙ୍କ ମୁଖୁଁ ଏସନ ବଚନ ।
ଶୁଣି ରୋଷେ କମ୍ପମାନ ପଣ୍ଡୁଙ୍କ ନନ୍ଦନ ॥
ପଦାଘାତ କରି ଦୂରକୁ ସେ ଫିଙ୍ଗିଦେଲେ ।
ବେଶ୍ୟା ଜାତକ ବୋଲିଣ ବହୁ ଗାଳିଦେଲେ
ମୋର ଆଖି ଆଗରୁ ତୁ ଦୂରେ ଚାଲିଯାଅ ।
ତା ନ ହେଲେ ପ୍ରତିଫଳ ମୋହଠାରୁ ପାଅ
ନୀଚ ବୁଝାଇ ଆସିଲୁ ମୋହ ନିକଟକୁ ।
ମୂର୍ଖ ହୋଇ ଉପଦେଶ ଦେଉଛୁ ଆମ୍ଭଙ୍କୁ ॥
ଆଶ୍ରୟ ପାଇଣ ଇଚ୍ଛୁ ଉଠିବାକୁ ଶିରେ ।
କୁକୁରକୁ ମୁହିଁଦେଲେ ସେ ଯେପରି କରେ ॥
ପାପିଷ୍ଠ ନାରକୀ ତୁହି ବେଶ୍ୟାର ନନ୍ଦନ ।
ବାପ ବୋଲି ଡାକି ମନ କରିବୁ ହରଣ ॥
ଆଉ ଥରେ ଯେବେ ତୁହି ଏପରି କହିବୁ ।
ମୋହଠାରୁ ତାର ପ୍ରତିଫଳ ତୁ ପାଇବୁ ॥
ଏଣେ ପଡ଼େ ଭୂମିପରେ ସେ ବଭ୍ରୁବାହନ ।
ଦେଖି ଅନୁଚର ଆଦି ପାତ୍ର ମନ୍ତ୍ରୀଗଣ ॥
ଧରାତଳୁ ଶୀଘ୍ର ତାଙ୍କୁ ଉଠାଇଣ ନେଲେ ।
ନାନାଦି ପ୍ରକାରେ ତହିଁ ସାନ୍ତ୍ୱନା କରିଲେ ॥
ତଥାପି ସେ ମଣିପୁରପତି ବୋଲେ ଗିର ।
କିଂପାଇଁ ଏହି ଅଧମେ ଏ ଦୁର୍ବ୍ୟବହାର ॥
ଅକାରଣେ ମୋତେ କିମ୍ପା କୁହ କଟୁବାଣୀ
ବୋଇଲି ହେ ପଣ୍ଡୁସୁତ ବୀରଙ୍କ ଅଗ୍ରଣୀ ॥
କୋପର ଅଧୀନ ହୋଇ କିଛି ନ ବୁଝିଲ ।
ମୁଖେ ଯାହା ଇଚ୍ଛା ତାହା କହି ପକାଇଲ ॥
ସମ୍ବନ୍ଧେ ମୋହର ପିତା ସେ ଯୋଗୁଁ ସହିଲି
ଯେତେ ଅପମାନ କଲ ସକଳ ଭୁଲିଲି ॥
ତୁମ୍ଭଙ୍କୁ କି ବୁଝାଇବି ମୁହିଁ ତ ଅଜ୍ଞାନ ।
ବାଳକ ସ୍ୱଭାବ ମୋର କାହିଁ ଦିବ୍ୟଜ୍ଞାନ ॥
ବିବେଚନା କରି ଦେଖ ବାସବ ନନ୍ଦନ ।
ଶରଣ ଯଦ୍ୟପି ହେବେ କେହୁ ନୀଚ ଜନ ॥

ତେବେ ସେହି ଲୋକ ତାଙ୍କୁ ସମ୍ମାନ କରନ୍ତି ।
କେତେବେଳେ ମନମଧ୍ୟେ କଷ୍ଟ ନ ଦଅନ୍ତି ॥
କଠୋର କର୍କଶ ଭାଷା କହିବାର ପାଇଁ ।
ବିଧାତା କି ଜିହ୍ୱା ସୃଷ୍ଟି କରିଣ ଅଛଇ ॥
ମୁଖରେ ଅମୃତ ଅଛୁ ମୁଖେ ଅଛୁ ବିଷ ।
ବ୍ୟବହାର କରିବାରେ ଜାଣନ୍ତି ବିଦୂଷ ॥
ଅ ାଲି ତୁମ୍ଭଠୁଁ ପାଇବାକୁ ମୁଁ ଆଦର ।
ତୁମ୍ଭେ ମୋତେ ଘୃଣାକରି ବୋଇଲ ବିସ୍ତର ॥
ଶ୍ରେଷ୍ଠବଡ଼ ଭେଦାଭେଦ ବାରେ ନାହିଁ ଜ୍ଞାନୀ ।
ଉଚ୍ଚନୀଚ ବୋଧକରେ ଯେଉଁ ଅଭିମାନୀ ॥
ମନୁଷ୍ୟ ଦୃଷ୍ଟିରେ ମାତ୍ର ଶ୍ରେଷ୍ଠ ବଡ଼ ଥାଏ ।
ଈଶ୍ୱରଙ୍କ କାର୍ଯ୍ୟ ହେ ନୁହଇ ତା କେବେହେଁ ॥
ସୃଷ୍ଟିକର୍ତ୍ତା ସର୍ବ ଜୀବ କରନ୍ତି ସୃଜନ ।
ସମାନ ଦୟାରେ ସର୍ବେ କରନ୍ତି ପାଳନ ॥
ଧନୀ କି ଦରିଦ୍ର ଶ୍ରେଷ୍ଠ ବଡ଼ ତାଙ୍କଠାରେ ।
ଭେଦାଭେଦ ଜ୍ଞାନ ନାହିଁ ଶାସ୍ତ୍ର ଏହାବୋଲେ
ଚଣ୍ଡାଳ ଅଶୁଚି ଶୁଚି ବ୍ରାହ୍ମଣ ବୈଷ୍ଣବ ।
ଈଶ୍ୱରଙ୍କ ଦୃଷ୍ଟିରେ ତା ଭେଦ ଅସମ୍ଭବ ॥
ସମସ୍ତ ସମାନ ଜ୍ଞାନକରେ ଯେଉଁ ବୀର ।
ମିଷ୍ଟବାକ୍ୟେ ତୁଷ୍ଟ ଯେହୁ କରେ ସର୍ବ ନର ॥
ଯାହା ପାଇଁ ସର୍ବଜନ କରନ୍ତି କଲ୍ୟାଣ ।
ଜାଣ ହେ ସେ ନର ନୁହେ ସାମାନ୍ୟତ ପୁଣ ॥
ଭଗବାନ ସଦୟ ହୁଅନ୍ତି ତାହାଠାରେ ।
ମରଣାନ୍ତେ ନିଜପୁରେ ସ୍ଥାନ ଦ୍ୟନ୍ତି ତାରେ ॥
ତୁମ୍ଭେ ଯେତେ ଗାଳି ଦେଲ କି ଯତ ତହିଁରେ ।
ଧନ୍ତରେ ମହତ୍ତ୍ୱ କିବା ହୋଇବ ଏଥିରେ ॥
ଏ ସକଳ ସାରକଥା ସାମାନ୍ୟ ମାନବେ ।
କି ବୁଝିବେ ଯେଉଁମାନେ ପାପରେ ମଜ୍ଜିବେ ॥
ଅହଙ୍କାର ଅଭିମାନେ ପୂର୍ଣ୍ଣ ଯାର ଶରୀ ।
ଦୀନ ପ୍ରତି ଉଗ୍ର ମୂର୍ତ୍ତି ଧରଇ ସେହୁ ତ ॥
ସେ ଲୋକର ମଙ୍ଗଳତ କେବେ ନ ହୁଅଇ ।
ଶେଷେ ସେହି ଲୋକ ଯାଇ ନରକ ଭୋଗଇ ॥
ତୁମ୍ଭଙ୍କୁ ବୋଲୁଛି ପାର୍ଥ ବିନୟ ବଚନ ।
ସତ୍ୟଧର୍ମେ ସଦା ଥାଏ ତୁମ୍ଭର ତ ମନ ॥
ଶ୍ରୀହରିର ଅଶ୍ରୟରେ ଥାଅ ଚିରକାଳ ।
କିମ୍ପାଇ ତୁମ୍ଭର ବୁଦ୍ଧି ହୁଅଇ ବିଚଳ ॥

ବିବେଚନା ମନମଧ୍ୟେ କର ବୀରବର ।
ପିତା ବୋଲି କର ଅନ୍ୟକୁ କେ କହେ ଗୀର
କେଉଁ ଅଭିମାନେ ତୁମ୍ଭେ ମତିଭ୍ରମ ହେଲ ।
ଆବର ନାନା ପ୍ରକାରେ କୁବାକ୍ୟ କହିଲ ॥
କହୁ କହୁ ବୀର ଶୋକ ଜଳରେ ଭାସଇ ।
ବୋଲିବାକୁ ଇଚ୍ଛା ମାତ୍ର କହି ନ ପାରଇ ॥
ଦେଖିଣ ଏସନ ସ୍ୱିତ ଅନୁଚରଗଣ ।
ପାର୍ଥଙ୍କୁ ଗୃହିଁ ବୋଇଲେ ବିନୟ ବଚନ ॥
ହଂସଧ୍ୱଜ ନୀଳଧ୍ୱଜ ଆଦ ୍ୱରମାନେ ।
ପାର୍ଥକୁ କହିଲେ ତହୁଁ ଦେଖିଣ ଏସନେ ॥
ଶୁଣ ବୀରମଣି ଆମ୍ଭମାନଙ୍କ ବଚନ ।
ପୁତ୍ର ନ ହୋଇଲେ କେହୁ କହିବ ଏସନ ॥
ପୁତ୍ର ନ ହୋଇଲେ କେହି ଅପର ଲୋକକୁ ।
ପିତା ବୋଲି ଡାକିପାରେ ନ ଆସେ ମନକୁ ॥
ବୃଥା ଛଳନା କରିବା ନୁହେ ପ୍ରୟୋଜନ ।
ଅକାରଣ କଟୁବାକ୍ୟ କୁହ କି କାରଣ ॥
ମାନ ଆମ୍ଭର ବଚନ ଅହେ ବୀରମଣି ।
ପୂର୍ବର କଥା ସ୍ମରଣ କର ମନେ ପୁଣି ॥
ପୁତ୍ର ବୋଲି ସମାଦରେ ତାହାଙ୍କୁ ଗ୍ରହଣ ।
କର ବୀରମଣି ମାନ ଆମ୍ଭର ବଚନ ॥
ମହାରାଜା ବଭ୍ରୁବାହ ବୀର ଚୂଡ଼ାମଣି ।
ବୀର ବୋଲି ଅମ୍ଭେମାନେ ପୂର୍ବୁ ଅଛୁ ଶୁଣି ॥
ଶାନ୍ତ ଧର୍ମୀ ଧୀରମତି ବିନୟୀ ପ୍ରବର ।
ଧର୍ମକାର୍ଯ୍ୟେ ସଦା ମନ ଥାଏ ଯେ ତାଙ୍କର ॥
ଆସିଲା ତୁମ୍ଭଙ୍କୁ ପୂଜିବାର ପାଇଁ ବୀର ।
ଜନନୀଙ୍କଠାରୁ ଶୁଣି ସମସ୍ତ ଖବର ॥
ଧନରତ୍ନ ଦାସଦାସୀ ସଙ୍ଗରେ ଘେନିଣ ।
ବିବିଧ କୁସୁମେ ପୂଜା କରିଲା ଚରଣ ॥
କୁହ ବୀରମଣି କିପାଁ ଏ ଗୁଣାଧାରକୁ ।
ପାଦେ ପ୍ରହାର କରିବା ଭଲ କି ତୁମ୍ଭଙ୍କୁ ॥
ଜାଣନ୍ତି ସମସ୍ତେ ତୁମ୍ଭେ ଅଟ ହେ ମହତ ।
ଏପରି କରିବା ତୁମ୍ଭ ପକ୍ଷେ ଅନୁଚିତ ॥
ଏପରି ଅନ୍ୟାୟ କେବେ ପାଣ୍ଡୁଙ୍କ ନନ୍ଦନ ।
କର ନାହିଁ ଏହି କଥା ବୋଲି ସର୍ବଜନ ॥
ବୀରବର କିପାଁ ଆଜି କୋପର ସଞ୍ଚାର ।
ହୋଇଣ କଲ ଏହାକୁ ଚରଣ ପ୍ରହାର ॥

ସମସ୍ତଙ୍କ ହୃଦୟରେ କଷ୍ଟକୁ ଯା ଦେଲ ।
ଅନୁଗତେ ପ୍ରତାରଣ ନିନ୍ଦାକୁ ଲଭିଲ ॥
କରିଲ ବଡ଼ ଅନ୍ୟାୟ ହୋଇ କୋପମତ ।
କ୍ରୋଧରେ ନାଶ ହୁଅଇ ଅଚଳ ସମ୍ପତ୍ତି ॥
କାମ କ୍ରୋଧ ଲୋଭ ମୋହ ଆଦି ରିପୁଗଣ ।
ଦମନ କରନ୍ତି ଏମାନଙ୍କୁ ସାଧୁଜନ ॥
ମାତ୍ର ଆଜ ତୁମ୍ଭେ ତାର ବିପରୀତ କଲ ।
ନିଜ ନାମର ଗୌରବ ସହଜେ ନାଶିଲ ॥
ଅକାଳେ କ୍ରୋଧ କରିବା ଅଟେ ଅନୁଚିତ ।
କ୍ରୋଧରାଗ ପରମାଣ ଅଛି ନିର୍ଦ୍ଧାରିତ ॥
ପିତା ମାତା ଗୁରୁ କବା ଆତ୍ମୀୟ ସୋଦର ।
କ୍ରୋଧକାଳେ ସମସ୍ତେ ବୋଲନ୍ତି କଟୁଗୀର ॥
କିଛିମାତ୍ର ଭଲ କାର୍ଯ୍ୟ ନ ଥାଏ କ୍ରୋଧୀର ।
କ୍ରୋଧ ବଶରେ କରଇ ସର୍ବ ପାପ ନର ॥
ଏ ସମସ୍ତ ଧନଞ୍ଜୟ ଜାଣିଣ ଶୁଣିଣ ।
ବୋଲ ଅନୁଚିତ କପାଁ କୁପିତ ହୋଇଣ ॥
କହୁପାରୁ ଆମ୍ଭେମାନେ ନିଶ୍ଚୟ କରିଣ ।
ନିଶ୍ଚୟ ବବ୍ରୁବାହନ ତୁମ୍ଭର ନନ୍ଦନ ॥
ପୁଣି ଯେବେ ନ ହୁଅଇ ମଣିପୁର ରାଣୀ ।
କପାଁ ପିତା ବୋଲିଣ କରନ୍ତା ସମ୍ବୋଧନ ॥
ପିତା ବୋଲି ଅପରକୁ କଏ କହୁ ପାରେ ।
ଏଥିରେ କି ଲଜ୍ଜା ତାକୁ ନୋହିବ ମନରେ ॥
ଆମ୍ଭର ବଚନ ମାନ ଆହେ ବୀରବର ।
ମଣିପୁର ପତି ପ୍ରତି କର ସମାଦର ॥
ପୁତ୍ର ସମ ସ୍ନେହ କର ଆପଣା ନନ୍ଦନେ ।
ବୃଥା କଷ୍ଟ ଦିଅ ନାହିଁ ତାହାଙ୍କର ମନେ ॥
ଆପଣା ପଦାର୍ଥ ଆଣ ଆପଣା ପାଖରେ ।
ଘୃଣାଦ୍ୱେଷ ତାହାଠାରୁ ତ୍ୟାଗକର ଦୂରେ ॥
ବହୁଦାନ ଅନ୍ତେ ଦେଖାଗଲା ଦୁହିଁଙ୍କର ।
ସ୍ମରଣ କରିଣ ହର୍ଷ କର ହେ ଅନ୍ତର ॥
ଏହା ଶୁଣି ଧନଞ୍ଜୟ ବୋଇଲେ ବଚନ ।
ଯେ ଲୋକର ବିଷୟ ମୁଁ ନ ଜାଣେ ଲେଶେଣ
କିପରି ତାହାକୁ ପୁତ୍ର ବୋଲିଣ କହିବି ।
କହିଲେ ସମାଜ ମଧ୍ୟେ ମୁଁ ନିନ୍ଦା ପାଇବି ॥
ନ ଜାଣିଣ ସମୁଦାୟ ପରିଚୟ ଯାର ।
ପୁତ୍ରରୂପେ ଗ୍ରହଣ କରିବି କି ପ୍ରକାର ॥

ଅତୁର ଭାବଇ ମନେ ଶୁଣ ବୀରଗଣ ।
ଯେବେ ଏ ବବ୍ରୁବାହନ ମୋହର ନନ୍ଦନ ॥
କ୍ଷତ୍ରିୟ ପ୍ରଧାନ ମୁହିଁ ସଂସାରେ ଜାଣନ୍ତି ।
ମୋ ପୁତ୍ର ହୋଇଲା ଏଡ଼େ କାପୁରୁଷ ମତି ॥
ଯେବେ ଏହି ମୋର ଔରସରୁ ଜନ୍ମିଥାନ୍ତା ।
ହୀନଲୋକ ପରି କପାଁ ପାଦରେ ପଡ଼ନ୍ତା ॥
କ୍ଷତ୍ରୀପୁତ୍ର ହୋଇ କ୍ଷତ୍ରୀ ବୃତ୍ତିରେ ଏ ବୀର ।
ସୁତବୋଲି ପରିଚୟ ଦିଅନ୍ତା ମୋହର ॥
ଏହିକି କ୍ଷତ୍ରିୟ ରୀତି ଶୁଣ ସର୍ବଜନ ।
କ୍ଷତ୍ରିୟ ବୀର୍ଯ୍ୟୁ ଏ ଜନ୍ମି ଏଡ଼େକ ନିଉନ ॥
ଭ୍ରାତବନ୍ଧୁ ଜ୍ଞାତିବର୍ଗ ପିତାମାତା ହେଲେ ।
କ୍ଷତ୍ରିୟକି ନିଜତେଜ ଛାଡ଼େ ସହଜରେ ॥
ଦେଖିଅଛ ଅଭିମନ୍ୟୁ ମୋହର ନନ୍ଦନ ।
କିପରି କରିଲା ରଣେ ଅସାଧ୍ୟ ସାଧନ ॥
ବଡ଼ ବଡ଼ ସପ୍ତରଥୀ ତାହାକୁ ଘେରିଲେ
ତେବେ ସେ ମନରେ ଭୟ ନ କରିଲା ତିଳେ ॥
ଯେତେକ୍ଷଣ ରକ୍ତ ତାର ଦେହେଁ ବହୁଥିଲା ।
କ୍ଷତ୍ରିୟ ତେଜରେ ସୈନ୍ୟଗଣଙ୍କୁ ନାଶିଲା ॥
କପଟ ଯୁଦ୍ଧରେ ସୁଦ୍ଧା ପଡ଼ି ବୀରମଣି ।
ପ୍ରାଣ ଥିବାଯାଏ କଲା ବିକ୍ରମ ଧାରେଣି ॥
ନ ହେବେ ନୋହିବେ କେହି ତା ସମାନ ବୀର
ସମରରେ ପଡ଼ିଣ ସେ ଗଲା ସ୍ୱର୍ଗପୁର ॥
ବୀରପୁତ୍ର ବୀରନାମ ରଖିଲା ଭୁବନେ ।
ଅଦ୍ୟାପି ତାହାର ନାମେ କମ୍ପନ୍ତି ସଇନେ ॥
ଯେପରି ଲୋକଙ୍କଠାରୁ ଜନମ ଯାହାର ।
ସେପରି କରିଲା କାର୍ଯ୍ୟ ଅଭିମନ୍ୟୁବୀର ॥
ମୋର ଔରସରେ ଜନ୍ମି ପରିଚୟ ମୋର ।
ଦେଇଣ ସଂସାରେ କୀର୍ତ୍ତି ରଖିଥିଲା ବୀର ॥
ମୋର ଯେବେ ବବ୍ରୁବାହ କୁମର ହୁଅନ୍ତା ।
ଅଶ୍ୱକୁ ଧରିଣ କପାଁ ଭୟ ସେ କରନ୍ତା ॥
ପ୍ରଥମେ ଗରବ କରି ଅଶ୍ୱକୁ ଧରିଲା ।
ପରିଚୟ ପାଇ ଭୟେ ଶରଣ ପଶିଲା ॥
କି କରିବ ବୋଲି ସେହି ଉପାୟ ନ ପାଇ ।
ପୁତ୍ରରୂପେ ପରିଚୟ ଦେଲା ମୋହଠାଇଁ ॥
ମୋ ଔରସେ ଚିତ୍ରାଙ୍ଗଦା ଗର୍ଭେ ଯେବେ ଜନ୍ମ
ଭୟ ନ କରି ଦେଖାଇ ଥାନ୍ତା କ୍ଷତ୍ରୀ ପଣ ॥

ଅବଶ୍ୟ ସେ ଭୁଜବଳେ ନିଜ ପରଚୟ ।
ଦ୍ୟନ୍ତା ସମ୍ମୁଖରେ ଅଛି ଏକଥା ନିଶ୍ଚୟ ॥
ଗଜାଙ୍କୁ ଦେଖିଣ ବୃକ୍ଷ ଶାଖା ଯାଇପାରେ ।
ସିଂହଛୁଆ କେବେ ନିଜଶକ୍ତି ଛାଡ଼ିପାରେ
ଆପଣାର ପରାକ୍ରମ ଦେଶେ ବା ବିଦେଶେ ।
ଅନଳେ ପ୍ରାନ୍ତରେ କିବା ସମୁଦ୍ର ପ୍ରକାଶେ ॥
ବୀରହେଲେ ପଦାନତ କେବେ ସେ ନୋହିବ
ଏହି କଥା ବାରମ୍ବାର କହୁଅଛୁ ଧ୍ରୁବ ॥
କାପୁରୁଷଠାରେ ବୀର ଲକ୍ଷଣ ତ ନାହିଁ ।
ମୋର ପୁତ୍ରହେଲେ ହୀନତେଜକି ସେ ହୋଇ
ପ୍ରବଳ ଦେଖିଲେ ଯେହ୍ନେ ହୁଏ ଭୀତମନ ।
ମୋପୁତ୍ର ବୋଲିଣ ତାଙ୍କୁ ବୋଲି ହେବ କେସ.
ପିତାଠାରୁ ପୁତ୍ର ଶ୍ରେଷ୍ଠ ସକଳେ ଜାଣନ୍ତି ।
ସର୍ବଶାସ୍ତ୍ରେ ମୁନିମାନେ ଏହା କହିଛନ୍ତି ॥
ଅନଳ ବ୍ରାହ୍ମଣ ଆଉ ଯେତେ ନାଗକୁଳ ।
ଶ୍ରେଷ୍ଠହେଲେ ସୁଦ୍ଧା ସେ ତେଜରେ ଅନର୍ଗଳ
ସାମାନ୍ୟ ଅଗ୍ନି କଣାରେ ସଂସାର ଦହିବ ।
ବ୍ରାହ୍ମଣ ବାଳକ ମଧ୍ୟ ତତକ୍ଷଣେ ଶାପଦେଇ ॥
ବଡ଼ଠାରୁ ଶ୍ରେଷ୍ଠ ପରଯନ୍ତେ ଯେତେ ସାପ ।
ସେମାନଙ୍କ ତେଜ କେବେ ହୁଅଇ କି ଲୋପ
ବଡ଼ଠାରୁ ଶ୍ରେଷ୍ଠ ସାପ ଅତି ତେଜସ୍ୱାନ ।
ନ ଜାଣ କି ସଭାମଧ୍ୟେ ଯେତେ ବୀରଗଣ ॥
ଶୃଗାଳ ଶାର୍ଦ୍ଦୂଳ ସିଂହ ଦୁଗ୍ଧ କଲେ ପାନ ।
ଟେବେକି ତା ତେଜ ହେବ ସିଂହର ସମାନ
ସିଂହପିଲା ସାହସରେ ନିଜର ଶତ୍ରୁଙ୍କୁ ।
ମାରିବ ଯେ ବୁଦ୍ଧିମାନେ କରି ସାହସକୁ ॥
ଏହି କଥା ଯୁକ୍ତ ଯୁକ୍ତ ଜାଣ ସର୍ବବୀରେ ।
ଏପରି ନିଶ୍ଚୟ କରିଛନ୍ତି ବୁଦ୍ଧିଜନରେ ॥
ଦର୍ପକରି ପାର୍ଥ ଯହୁଁ ଏପରି କହିଲେ ।
ବବ୍ରୁବାହ ତାଙ୍କ ପ୍ରତି ଗୃହିଁଣ ରହିଲେ ॥
ସମ୍ମୁଖେ ଉଭା ହୋଇଣ ହାତ ଯୋଡ଼ିକରି ।
କହିବାକୁ ଆରମ୍ଭ ସେ କଲେ ଧୀରକରି ॥
ବୃଥା କିପାଁ ଏତେ କଥା କୁହ ପାର୍ଥବୀର ।
ମୋ ପ୍ରତି ଏକଥା ସବୁ ଅଟେ ଅବିଗୁର ॥
ତୁମ୍ଭ ସହିତରେ ତର୍କ ଅନୁଚିତ ହୁଏ ।
କିଛୁ ନ କହିଲେ ମନେ ଦୁଃଖ ଜାତ ହୁଏ ॥

ଉଚିତ ବୋଇଲେ ଯେବେ ମନେ ସ୍ୱୀକର ।
ଏଥି ପାଇଁ ଏତେକ୍ଷଣ ସହିଲି ପ୍ରଚୁର ॥
ମୌନେ ଥିବା ଆଉ ମୋର ଉଚିତ ନୁହଇ ।
ଦୋଷ ହେଉ ପଦେ ଅଧେ କହିବଇଁ ମୁହିଁ ॥
ତୁମ୍ଭେ ପାର୍ଥ ମୋତେ ବହୁତର ଗାଳିଦେଲ
ଯାହା ତୁମ୍ଭ ଇଚ୍ଛା ତାହା ଅନେକ କହିଲ ॥
ବୋଇଲ ଜାରଜ ବେଶ୍ୟାପୁତ୍ର ଅଟେ ମୁହିଁ ।
କେଉଁ ଗରବରେ କୁହ ମୁଖେ ଲଜ ନାହିଁ ॥
ଶୁଣିଅଛୁ ତୁମ୍ଭ ମାତା ଅତି ଦୋଗୁଚରଣୀ ।
ସ୍ୱାମୀ ଥାଇ ଜାର ପୁରୁଷରେ ରତ ପୁଣି ॥
ପ୍ରୌଢ଼ା ନ ହୋଇଣ ସୂର୍ଯ୍ୟଦେବେ ସେ ରମିଲା
ଏକଥା ଶୁଣି ଯା ସଂସାରରେ ରୁହ ଭଲ ॥
ନିଜ ସ୍ୱାମୀ ପଣ୍ଡୁ ଧନେ ପ୍ରୀତ ତା ସହିତ ।
କରି ନାହିଁ ଏଡ଼େ ଦୋଗୁରୁଣୀ ତୁମ୍ଭ ମାତ ॥
ଧର୍ମ ବାସବ ପବନ ସଙ୍ଗେ ରତି କରି ।
ଯୁଧିଷ୍ଠି ଭୀମ ତୁମ୍ଭଙ୍କୁ ଜାତକଲା ନାରୀ ॥
ବାପର ଠିକଣା ନାହିଁ ତବ ବୀରବର ।
ମାତା ଅତି ଦୋଗୁରୁଣୀ ସଂସାର ମଧ୍ୟର ॥
ପୁଣି ଏକନାରୀ ଭୋଗ କର ପାଞ୍ଚଭାଇ ।
କପରି ମୁଖ ଦେଖାଅ ଲଜ୍ଜାଭୟ ନାହିଁ ॥
ଦେଖିଣ ଅନ୍ୟର ତୁମ୍ଭେ ଛଳେମାନ ଦୋଷ
ତାଳ ଜ୍ଞାନକର ପାର୍ଥ ହୋଇ ଅସନ୍ତୋଷ ॥
ନିଜଜନ୍ମ କଥା ତୁମ୍ଭେ ଭୁଲିଲ କିପରି ।
ବୃଥାରେ ଏତେ ଗରବେ କୁହ ରାଗ କରି ॥
ନିଜ ଜନ୍ମ ପରିଚୟ କର ବିସ୍ମରଣ ।
ଏଠାରେ କପରି କୁହ ପୌରୁଷ ବଚନ ॥
କାହାଠାରୁ ଜନ୍ମଲଭ ହୋଇଲା ତୁମ୍ଭର ।
ଅଜ୍ଞାତ ଛନ୍ତିକି କେହି ସଂସାର ମଧ୍ୟର ॥
ପଣ୍ଡୁ ପୁତ୍ର ବୋଲି କୁହ ଇନ୍ଦ୍ର ତୁମ୍ଭ ପିତା ।
ବେଶ୍ୟାଠାରୁ ବଳକରି ଅଟେ ତୁମ୍ଭ ମାତା ॥
ଛଅ ଗୋଟି ପତି କରି ସତୀ ସେ ହୋଇଲା ।
ଏଡ଼େ ଜାରଜ ତୁମ୍ଭେ ତ ବଡ଼ି କୁହ ଭଲ ॥
ତୁମ୍ଭଠାରୁ କୁରୁକୁଳ କପରି ଉଜ୍ଜ୍ୱଳ ।
ଅଟେ ଥରେ ମାତ୍ର ମନେ ଭାବ ସେ ସକଳ ॥
ସବିଶେ ସ୍ୱଭାବ ଯାର ଧର୍ମ ପରାୟଣ ।
ଯାହାର ମନ ସର୍ବଦା ଧର୍ମରେ ମଗନ ।

ସେ ଲୋକ ପାପକୁ ଘୃଣା କରିବାରେ ପାରେ
ମାତ୍ର ପାପୀ ପାପ ନିନ୍ଦା କରେ କି ବିଚାରେ ॥
ମର୍କଟ ଯେପରି କଳା ବସ୍ତୁକୁ ଦେଖିଣ ।
ଘୃଣା କରଣ ଗୋଡ଼ାଏ ମାରିବାକୁ ପୁଣ ॥
ମାତ୍ର ନିଜଦେହ କଳା ବୋଲି ଭାବେ ନାହିଁ
ଅକାରଣେ ଲୋକମୁଖେ ନିନ୍ଦାକୁ ସେ ପାଇ ॥
ସେହିପରି ହେ ଅର୍ଜ୍ଜୁନ ତୁମ୍ଭ ଆଚରଣ ।
ଏବେ ତୁମ୍ଭେ ଜାରଜ ପରକୁ କୁହ ପୁଣ ॥
ପରିଶ ଭାବରେ ଯେବେ ଜନ୍ମ ହୋଇଥାନ୍ତ ।
ତେବେ ମୋତେ ତୁମ୍ଭେ ନିନ୍ଦାକରଣ ପାରନ୍ତ॥
ତୁମ୍ଭେ ମନେ ଭାବିଅଛ ତୁମ୍ଭକୁ ଦେଖିଣ ।
ଆଉରି ଅନେକ ସୈନ୍ୟ ଅଛନ୍ତି ସଙ୍ଗେଣ ॥
ବଡ଼ ବଡ଼ ବୀରମାନେ ସଙ୍ଗେ ଅଛନ୍ତି ।
ସେଥି ପାଇଁ ଭୟ କଲି ଭାବିଅଛ ମତି ॥
ତେଣୁ ପଦାନତ ହେଲି ଆସିଣ ପାଶରେ ।
ଚରଣେ ଶରଣ ମୁଁ ପଶିଲି ତୁମ୍ଭ ଠାରେ ॥
ମରିବାର ଭୟ ମନେ ହୋଇଛି ମୋହର ।
ତେଣୁ କରି ଶରଣ ପଶିଲି ତୁମ୍ଭ ଠାର ॥
ଏକ୍ଷଣି ଜାଣିବ କିଏ କ୍ଷତ୍ରିୟ ନନ୍ଦନ ।
କିଏ ଅଟେ ବେଶ୍ୟାପୁତ୍ର ଅତି ମୂଢ଼ଜନ ॥
ମନରୁ ସନ୍ଦେହ ତବ ଦୂର ହୋଇଯିବ ।
କେତେଦୂର ବୀର ମୁହିଁ ଅବଶ୍ୟ ଜାଣିବ ॥
ତ୍ରିଭୁବନ ମଧ୍ୟେ କାହାକୁ ମୁଁ ନ ଗଣଇ ।
ମୋ ସମାନ ବୀର ମୁହିଁ କାହିଁ ଦେଖି ନାହିଁ ॥
ଯମ ଆଦି ସ୍ଵର୍ଗେ ଛନ୍ତି ଯେତେ ଦେବଗଣେ ।
ସେମାନଙ୍କୁ ମନେକରେ ମାଛିର ସମାନ ॥
ଅସୁରଙ୍କ ମଧ୍ୟେ ଛନ୍ତି ଯେତେ ଯେତେ ବୀର ।
ସେମାନଙ୍କୁ ମନେକରେ ପିଲ୍ଲି ପଲକାର ॥
ଆଉରି ନରଙ୍କୁ କିଏ ଗଣନା ବା କରେ ।
ତୁମ୍ଭ ସମସ୍ତଙ୍କୁ ଛେଳି ସମାନ ବିଚାରେ ॥
କି କହିବି ମାତା ଆଜ୍ଞା ରଖିବା କାରଣେ ।
ଏତେ ଦୂର ଅପମାନ ସହିଲି ପରାଣେ ॥
ତାହାଙ୍କ ଆଜ୍ଞାରେ ଦେବା ପାଇଁ ଅଶ୍ଵବର ।
ସୈନ୍ୟସହ ଆସିଥିଲି ପାଶକୁ ତୁମ୍ଭର ॥
କିନ୍ତୁ ମୋର ଇଚ୍ଛା ଜାଣ କହଇ ଏଠାରେ ।
ପ୍ରାଣ ଥିବାଯାଏ ଅଶ୍ଵ ଛାଡ଼ିଣ ନ ପାରେ ॥

କିପରି ମୁଁ ଗୁରୁଲୋକ ବଚନ ଅମାନ୍ୟ ।
କରିବି ସେ ଯୋଗୁ ଆସିଥିଲି ଏହିସ୍ଥାନ ॥
ମାତାଙ୍କ ମନରେ କଷ୍ଟ ଦେଇ ନ ପାରଇ ।
ତାହାଙ୍କ ବଚନ ମୁହିଁ ଭାଙ୍ଗି ନ ପାରଇ ॥
ଜାଣେ ମୁହିଁ ଯେବେ ଦୁଃଖେ ଜନନୀ ମୋହର ।
ଲୋତକ ବୁହାଇବେ ସେ ଅତ୍ୟନ୍ତ କଷ୍ଟର ॥
ତା ହେଲେ ସମ୍ପଦ ରାଶି ଯେତେକ ମୋହର
ଅସମୟେ ନଷ୍ଟ ସବୁ ହୋଇବ ନିକର ॥
ମାତାଙ୍କର ଆଶୀର୍ବାଦେ ଅଭାବ ମୋ ନାହିଁ ।
ସେ କୋପ ହୋଇଲେ ସର୍ବ ଯିବ ନଷ୍ଟହୋଇ
ସଂସାର ଲୋକଙ୍କ ପକ୍ଷେ ପ୍ରତ୍ୟକ୍ଷ ଦେବତା ।
ମାତା ଯେ ଅଟନ୍ତି ଏହା ଜାଣନ୍ତି ସର୍ବଥା ॥
ସେ ହେତୁ ମାତାଙ୍କ କଥା ରଖିବାର ପାଇଁ ।
ଅଶ୍ଵ ଫେରାଇ ଦେବାକୁ ଆସିଲି ଯେ ମୁହିଁ ॥
ଯେପରି ବିନୟେ ମୁହିଁ ଧଇଲି ଚରଣ ।
ସେପରି ତୁମ୍ଭକୁ ମୁହିଁ ବୋଇଲି ବଚନ ॥
ଯେପରି ଭକ୍ତିରେ ନତ ହୋଇଲି ଯେ ମୁହିଁ ।
ପାଇଲି ସେପରି ପ୍ରତିଫଳ ତୁମ୍ଭ ଠାଇଁ ॥
ତୁମ୍ଭର ଏ ବ୍ୟବହାର ଅହେ ବୀରମଣି ।
ଜୀବ ଥିବାଯାଏ ମନୁ ନ ଯିବତ ପୁଣି ॥
ପୁରୁଷ କି କାପୁରୁଷ ଜାଣିବ ଏକ୍ଷଣି ।
ମୋ ପରିଚୟ ପାଇବ ପାଣ୍ଡୁ କୁଳମଣି ॥
ମୁଖେ ଯାହା କହିବି ମୁଁ ଦେଖିବ କାର୍ଯ୍ୟରେ
ବୀର ଗର୍ବ ଭୁଲିଯିବ ସାମାନ୍ୟ ରଣରେ ॥
ସହି ନ ପାରିଣ ବାରମ୍ବାର ଅପମାନ ।
ଅଗ୍ନି ସହିତରେ ଜଳ ରହେ କି କଠିନ ॥
ଯେତେଦୂର ସହିବାର ସହିଲି ସକଳ ।
ଆଉ ନ ସହିବି ଏବେ ପ୍ରକାଶିବି ବଳ ॥
କହୁଁ କହୁଁ ବୀରବର ଆରକ୍ତ ଲୋଚନ ।
ସନ୍ଧ୍ୟାକାଳ ସୂର୍ଯ୍ୟପରି ଦିଶିଲା ବଦନ ॥
ନିଶ୍ଵାସ ପ୍ରଖର ବହେ ଯେସନେ ମତ୍ତ ଅହି ।
ଶରୀର ମଧ୍ୟରୁ ତେଜ ବାହାର ହୁଅଇ ।
ଓଷ୍ଠ ଅଧର କମ୍ପିଲା କମ୍ପିଗଲା ବାହୁ ।
କାଳଦେବତା ପରାୟେ ଦଶେ ଗୁହୁଁ ଗୁହୁଁ ॥
ସୈନ୍ୟଗଣଙ୍କୁ ଡାକିଣ ଆଜ୍ଞାଦେଲେ ବୀର ।
ମତଙ୍ଗନ ବାନ୍ଧିଣ ରଖ ଏହି ଅଶ୍ଵବର ॥

କେଭେ ନ ଛାଡ଼ିବ ଅଶ୍ୱ ଶୁଣ ମୋ ବଚନ ।
କିପରି ନେବ ଅଶ୍ୱକୁ ଏ ବେଶ୍ୟା ନନ୍ଦନ ॥
ବାପର ଚିହ୍ନିଣା ଯାର ନାହିଁ ଏ ଜାରଜ ।
ଦେଖାଯିବ ଏହିଠାରେ କେ କ୍ଷତ୍ରୀ ଆତ୍ମଜ ॥
ତ୍ରିଲୋକ ଏକତ୍ର ହେଲେ ଭୟ ନ କରିବ ।
ମୋର ଆଜ୍ଞା ବିନା କେଭେ ଅଶ୍ୱ ନ ଛାଡ଼ିବ ॥
ଯେ ତୁମ୍ଭଙ୍କୁ ଅଶ୍ୱ ପାଇଁ ଭୟ ଦେଖାଇବ ।
ଆଜ୍ଞାଦେଲି ତାକୁ ଯମପୁରେ ପଠାଇବ ॥
ଏପରି ଆଜ୍ଞା ଦେଇଣ ଯଜ୍ଞ ଅଶ୍ୱବର ।
ସୈନ୍ୟଗଣ ସମୀପରେ ଦେଲେ ସେ ସତ୍ୱର ॥
ଶିରେ ନୁଆଇଁ ସେମାନେ ଅଶ୍ୱକୁ ଘେନିଣ ।
ଆନନ୍ଦେ ପୁରକୁ ଚଳିଗଲେ ସୈନ୍ୟଗଣ ॥
ଯେତେ ସୈନ୍ୟ ଆସିଥିଲେ ସର୍ବେ ଫେରିଗଲେ
କ୍ରୋଧେ ଅପଣା ଭୁବନେ ନରପତି ଚଳେ ॥
ଏଣେ ସର୍ବ ସୈନ୍ୟଗଣ ଯୁଦ୍ଧର କାରଣ ।
କର୍ମରେ ଅପଣା ତନୁ କରି ଅଚ୍ଛାଦନ ॥
ଶେଲଶୂଳ ନାନା ଅସ୍ତ୍ର କରରେ ଘେନିଲେ ।
ପରଶୁ ତୋମର ଚକ୍ର କୁନ୍ତ ଅସି ତୁଲେ ॥
ଜୟ ଜୟ ଶବ୍ଦକରି କୋପେ ବାହାରିଲେ ।
ପ୍ରଳୟ କାଳ ସମାନ ଗର୍ଜ୍ଜନ କରିଲେ ॥
ସମୁଦ୍ର ଗର୍ଜ୍ଜନ ପ୍ରାୟେ ଶୁଭଇ ଗର୍ଜ୍ଜନ ।
ସେହି ଶବ୍ଦରେ ପୃଥିବୀ ହେଲା କମ୍ପମାନ ॥
ସକଳ ପ୍ରାଣୀଏ ମନେ ବିପଦ ମଣିଲେ ।
ସୃଷ୍ଟି ନାଶହେବ ବୋଲି ମନେ ବିଚାରିଲେ ॥
ଅକସ୍ମାତ ଦୁର୍ଘଟଣା କିପାଁ ଏ ପ୍ରକାରେ ।
ଭାବିଲେ କେଉଁ ବିପଦ ହେବ ଏହିଠାରେ ॥
ମଧ୍ୟେ ମଧ୍ୟେ ରଣ ବାଦ୍ୟ ବାଜୁଛି ଅବିର ।
ଦୁନ୍ଦୁଭି ମୃଦଙ୍ଗ ଭେରୀ ଆଦି ଶଙ୍ଖବର ॥
ଅଶ୍ୱ ହସ୍ତୀ ରଥ ରଥୀ ସୈନ୍ୟ ଅଗଣନ ।
ପୃଥିବୀ ପୂରିଣ ସର୍ବେ କରନ୍ତି ଗମନ ॥
ସୈନ୍ୟ ପାଦଘାତେ ଗଛମାନ ଭାଙ୍ଗିଯାଏ ।
ଅସମାନ ଭୂମି ସବୁ ସମାନ ଯେ ହୁଏ ॥
କାଳାନ୍ତକ କାଳ ପରି ଭୀଷଣ ଶରୀର ।
ଦେଖିଲେ କିଏ ବା ରହିପାରେ ହୋଇ ସ୍ଥିର ॥
ଶେଲ ଶୂଳ ଗଦା ଆଦି ମୁଷଳ ମୁଦ୍ଗର ।
ତୋମର ପଟ୍ଟିଶ ଧନୁଶର ଧରି କର ॥
ମାରମାର ଧର ଧର ବୀରନାଦ କରି ।
ସର୍ବ ସୈନ୍ୟ ଯାଉଛନ୍ତି ପୃଥିବୀକୁ ପୂରି ॥
ସମସ୍ତେତ ବିଚକ୍ଷଣ ସଂଗ୍ରାମେ ନିପୁଣ ।
ଦେଖିଣ ଭୟ କରନ୍ତି ସ୍ୱର୍ଗେ ଜନ୍ତୁଗଣ ॥
ସୈନ୍ୟପାଦ ରେଣୁରେ ଯେ ଆକାଶ ପୂରିଲା ।
ମେଘମାଳ କିବା ସୂର୍ଯ୍ୟ ତେଜ ଢାଙ୍କିଦେଲା ॥
ରଣବାଦ୍ୟ ସୈନ୍ୟରବ ଭୟଙ୍କର ଧ୍ୱନି ।
ଶୁଣି ଚିତ୍ରାଙ୍ଗଦା ମନେ ଭୟକରି ପୁଣି ॥
ହାହାକାର କରି ଧାଇଁ ପୁତ୍ର ନିକଟରେ ।
ଭାବେ ଅମଙ୍ଗଳ କିଷ୍ଟେ ଘଟିଲା ଏଠାରେ ॥
ଅକସ୍ମାତ ରଣବାଦ୍ୟ ହୁଅଇ କାହିଁକି ।
ଦେଖେ ସୈନ୍ୟ ସୁସଜ୍ଜିତ ଯୁଦ୍ଧର ପାଇଁକି ॥
ଗର୍ଜ୍ଜିଣ ସକଳେ କିପାଁ ହୋନ୍ତି ଅଗ୍ରସର ।
କିପାଁଇ ଯୁଦ୍ଧରେ ଶ୍ରଦ୍ଧା ସର୍ବ ବୀରଙ୍କର ॥
ଜାଣିଲି ମୋର କପାଳ ଫାଟିଛି ନିଶ୍ଚୟ ।
ତା ନ ହେଲେ ରଣ ପାଇଁ କିପାଇଁ ଉତ୍ସାହ
ବୀରମାନେ ଆନନ୍ଦରେ ଧାଉଁଣ ଅଛନ୍ତି ।
ପିତାସହ ପୁତ୍ର ମୋର ରଣ ଯେ କରନ୍ତି ॥
ଜାଣିଲି ଯେ ପାଣ୍ଡୁ କୁଳମଣି ବୀରବର ।
ଅପମାନ ଦେଉଛନ୍ତି ପୁତ୍ରକୁ ମୋହର ॥
ଅତି ନିଦାରୁଣ ବାକ୍ୟ କହୁଛନ୍ତି ସେହି ।
ତେଣୁକରି ଯୁଦ୍ଧ ସଜ୍ଜା ଆରମ୍ଭ ହୁଅଇ ॥
ପୁତ୍ର ବୋଲି ଆଦର ଯେ ପାଣ୍ଡୁର ନନ୍ଦନ ।
କରି ନ ଥିବାରୁ ହୁଏ ଯୁଦ୍ଧ ଆୟୋଜନ ॥
ହାୟ ଏ ହତଭାଗିନୀ ଯେ ଆଶା କରିଲା ।
କି ମନ୍ଦ କପାଳ ମୋର ବିଫଳ ହୋଇଲା ।
ସମୁଦ୍ର ବୋଲିଣ ବହୁ ଆଶେ ପଠାଇଲି ।
ମନ୍ଦ କପାଳକୁ ପାଣି ଟିକେ ନ ପାଇଲି ॥
ମନମଧ୍ୟେ ଆଶାକରି ପୁର ନିର୍ମିଣିଲି ।
ପଣିବାମାନେ ତାହାକୁ ଭାଙ୍ଗିବା ଦେଖିଲି ॥
ଆହେ ପ୍ରାଣନାଥ କିସ ତୁମ୍ଭଙ୍କୁ କହିବି ।
ବିଧାତା ବାମ ମୋହର କର୍ମକୁ ନିନ୍ଦିବି ॥
ସକଳ ବିଧିର ଇଚ୍ଛା କି କହିବି ମୁହିଁ ।
ଯାହାଭାଗ୍ୟେ ଅଛି ତା ଅବଶ୍ୟ ଭୋଗିବଇଁ ॥
ପତିଙ୍କ ସଙ୍ଗରୁ ମୋତେ ବିଚ୍ଛେଦ କରିଣ ।
ତଥାପି ବିଧାତା ମନ ନୋହିଲା ପୂରଣ ॥

ମନେ ଥିଲା ଏତେଦିନେ ଆଶା ହେବ ପୂର୍ଣ୍ଣ ।
ଆନନ୍ଦେ ଦେଖିବି ପ୍ରାଣନାଥଙ୍କ ଆନନ ॥
ହତଭାଗିନୀର ଭାଗ୍ୟେ ସେ ସକଳ ଆଶା ।
ବିନାଶ ହୋଇଲା ସରିଲା ସକଳ ଭରସା ॥
ଠିଆହେବା ପାଇଁ ସ୍ଥାନ ମୋର ନ ରହିଲା ।
ଏତେଦିନେ ଆଶାବୃକ୍ଷ ସମୂଳେ ଛିଣ୍ଡିଲା ॥
ପୁତ୍ରର ଶ୍ରୀମୁଖ ମୁଁ ଯେ କରି ଦରଶନ ।
ଏତେଦିନ ଯାଏ ପିଣ୍ଡେ ରଖିଥିଲି ପ୍ରାଣ ॥
ଭାବିଥିଲି ବଡ଼ ହେଲେ ତନୟ ମୋହର ।
ସ୍ୱାମୀଙ୍କ ସହିତ ଭେଟ କରିବ ତାହାର ॥
ପତି ପୁତ୍ର ଦେଖି ସୁଖେ ଥିବି ମୁଁ ଘର ।
ସେ ସକଳ ଆଶା ବୃଥା ହୋଇଲା ମୋହର ॥
ଯାହା ହେଉ ଏକ୍ଷଣି ମୁଁ ପୁତ୍ର ପାଶେ ଯିବି ।
ସମସ୍ତ ଘଟଣାମାନ ତାଠାରୁ ଶୁଣିବି ॥
ଏହି କଥା ଭାବି ଦେବୀ ପୁତ୍ରର ପାଶରେ ।
ପ୍ରବେଶ ହୋଇଲେ ବେଗେ ମନ ଆକୁଳରେ
ମାତାଙ୍କୁ ଦେଖିଣ ସେହି ବଭ୍ରୁବାହ ବୀର ।
ଚରଣେ ପ୍ରଣାମ କରି କହେ ମୃଦୁ ଗୀର ॥
ଅଭିମାନେ ନୟନରୁ ଲୋତକ ଝରଇ ।
ବକ୍ଷବାହୁ ଘନଘନ କମ୍ପିଣ ଉଠଇ ॥
ରାଗେ ଜରଜର ବୀର ଅତି କ୍ରୋଧମତି ।
ଅଭିମାନେ ଅଶ୍ରୁଧାର ନୟନୁ ବୁହାନ୍ତି ॥
କହିବାକୁ ଇଚ୍ଛନ୍ତି ସେ ନ ପାରନ୍ତି କହି ।
ବେଳକୁବେଳ କ୍ରୋଧଅଗ୍ନି ପ୍ରବଳେ ବଢ଼ଇ ॥
ମାତାଙ୍କ ବଦନକୁ ସେ ଚାହିଁ ନ ପାରଣ ।
କ୍ରୋଧରେ କମ୍ପିତ ଅଙ୍ଗ ଦହେ ସଦା ମନ ॥
ଘନ ଘନ ଓଷ୍ଠ କମ୍ପେ ବହେ ଅଶ୍ରୁଧାର ।
ଦେଖିଣ ଏସନ ସ୍ଥିତି ଜନନୀ ଅସ୍ଥିର ॥
କୋଳକୁ ଆଣିଣ ପଚାରନ୍ତିରେ ଲୁହ ଯୋଛୁ ।
ବୋଲନ୍ତିରେ ବାଳା କିମ୍ପା ଏପରି ଦେଖୁଛୁ ॥
କିସ ଅପମାନ ବାବୁ ଘଟିଅଛି ତୋର ।
ସେଥି ପାଇଁ ଅଭିମାନ ରାଗେ ଜରଜର ॥
ଜାଣୁଛି ମୁଁ ବୀରବର କୁନ୍ତୀଙ୍କ ନନ୍ଦନ ।
ପୁତ୍ରବୋଲି ତୋତେ ନ କରିଲେ ସମ୍ବୋଧନ
ଅପମାନ ଦେଇ ତୋତେ ଫେରାଇଣ ଦେଲେ
ସେ ଦୁଃଖେ ଏସନ ହେଉ ଭାବେ ମୁଁ ମନରେ
ସେଥି ପାଇଁ କିମ୍ପା ବାବୁ ଏତେ ତୁ ଅଧୀର ।
ସମସ୍ତ ପ୍ରକାଶ କରି କୁହ ମୋ ଅଗର ॥
ଏପରି ନାନାପ୍ରକାର ପ୍ରବୋଧ ବଚନ ।
କହି ମାତା ବୁଝାଇଲେ ସେ ବଭ୍ରୁବାହନ ॥
ମାତାଙ୍କ କଥାରେ ବୀର ଅଳ୍ପ ତୋଷହୋଇ ।
ମହାଦେବ ବୋଲେ କହେ ମାତାଙ୍କୁ ବିନୟୀ॥



## ବଭ୍ରୁବାହନର ମାତାଙ୍କ ନିକଟରେ ପିତାଙ୍କ କଥା ବର୍ଣ୍ଣନ ।

ଜୈମିନି ବୋଲନ୍ତି ଶୁଣ ରାଜା ଜନ୍ମେଜୟ
ଏଥୁଅନ୍ତେ ଯାହା ହେଲା ଶୁଣ ସେ ବିଷୟ ॥
କହିବି ତୁମ୍ଭଙ୍କୁ ତାହା ସବୁ ବୁଝାଇଣ ।
ଶୁଣିଣ ସନ୍ତୋଷ ହୋଇବ ତୁମ୍ଭର ମନ ॥
ଶ୍ରୀହରିଙ୍କ କୃପାବଳେ କହୁଅଛୁ ମୁହିଁ ।
ଭାଷା ପ୍ରବନ୍ଧରେ ମହାଦେବ ଯେ କହଇ ॥
ଚିତ୍ରାଙ୍ଗଦା ବଭ୍ରୁବାହନଙ୍କୁ କୋଳେ ଧରି ।
କହନ୍ତି ଶୁଣରେ ବାଳା ବଚନ ମୋହରି ॥
ପାର୍ଥ ସହି ଦେଖା କରିବାକୁ ବାବୁ ଗଲୁ ।
କିସ ଅପମାନ ବାଳା ସେଠାରୁ ପାଇଲୁ ॥
ତାହା ମୋତେ ବିସ୍ତାରଣ କୁହରେ ନନ୍ଦନ ।
ନ ଶୁଣିବା ଯାଏ ଦହେ ମୋ ପଞ୍ଚପରାଣ ॥
ମାତାଙ୍କ ଅଧୀର ଦେଖି ବଭ୍ରୁବାହ ବୀର ।
ବୋଇଲେ ଶୁଣ ଗୋ ମାତା ସେସବୁ ଖବର ॥
ପାର୍ଥ ପାଶେ ଗଲି ମାତ ତୁମ୍ଭର ଆଜ୍ଞାରୁ ।
ଯେ ଅପମାନ ପାଇଛି ଅର୍ଜ୍ଜୁନଙ୍କଠାରୁ ॥
ଯେଉଁ ଅପମାନ ମାଗୋ ଦେଲା ସେ ଅର୍ଜ୍ଜୁନ ।
ଯେଉଁ ନିଦାରୁଣ ବାକ୍ୟ ଶୁଣିଛି ଶ୍ରବଣ ॥
ଯେଉଁ ମନ୍ଦ ବ୍ୟବହାର କରିଛି ଅବର ।
ସେ ସବୁ ସ୍ମରଣ ପୋଡ଼େ ପରାଣ ମୋହର ॥
ଇଚ୍ଛା ହୁଏ ପ୍ରାଣ ତେଜି ଆତ୍ମାଘାତ କରି ।
ଅରଣ୍ୟକୁ ଯିବି ମାତ ହୋଇ ଦେଶାନ୍ତରୀ ॥
ଇଚ୍ଛା ହୁଏ ନିର୍ଜ୍ଜନରେ ଲୁଚିବାର ପାଇଁ ।
ଲୋକ ସମାଜରେ ମୁଖ ଦେଖାଇବି ନାହିଁ ॥
ପିତାଙ୍କ ପାଶକୁ ଗଲି ତୁମ୍ଭ ଆଦେଶରେ ।
ଚରଣ ପୂଜିବି ବୋଲି ଭାବିଣ ମନରେ ॥

ଜୀବନ ସାର୍ଥକ ହେବ ପିତାଙ୍କୁ ଦେଖିଣ ।
ବହୁଦିନ ଆଶା ମୋର ହୋଇବ ପୂରଣ ॥
ମନ ମୋ ସଫଳ ହେବ ଦେଖି ପିତୃଦେବ ।
ଦୂରିଁଯିବ ତାଙ୍କ ହେତୁ ସକଳ ଆପଦ ॥
ସ୍ନେହରେ ପିତାଙ୍କଠାରେ ପୁତ୍ର ବୋଲି ମୁହିଁ
ପରିଚୟ ଦେଇଣ ବସିବି କୋଳେ ଯାଇଁ ॥
ସକଳ କପାଳ ଦୋଷେ ହେଲା ଅକାରଣ ।
ମନର ଆଶା ସକଳ ହୋଇଲା ଦହନ ॥
ମନରେ ଉତ୍ସାହ ଯେତେ ଥିଲା ଯେ ମୋହର
ସେ ସକଳ ଯାଇ ଅପମାନ ହେଲା ସାର ॥
ଯେଉଁ ଅପମାନ ମୁହିଁ ସେଠାରେ ପାଇଲି ।
ଜୀବନ ନ ଗଲା ଯାହା ବଞ୍ଚିଣ ଅଇଲି ॥
ଧିକ ମୋର ବାହୁବଳ ଧିକ ପରାକ୍ରମ ।
ନୀଚଲୋକ ସଙ୍ଗେ ମୁହିଁ ହୋଇଲି ସମାନ ॥
ଏପରି ଭାବେ ବଞ୍ଚିବା କି ଫଳ ମୋହର ।
ଆହା କି ମନରେ ଥିଲା ଈଶ୍ୱର ବିଧାତାର ॥
ଜନ୍ମଠାରୁ ଆଜଯାଏ କାର ଅପକାର ॥
ଜାଣିବାରେ କେବେ କରି ନାହିଁ ମୁଁ ପାମର ।
ଧର୍ମେ ଭୟଙ୍କର ସଦା ସତ୍ୟରେ ଚଳଇ ।
ତାର ପ୍ରତିଫଳ ଏତେଦିନ ପାଇଲଇଁ ॥
ରଖିବାକୁ ତୁମ୍ଭ କଥା ଏ ଦଶା ମୋହର ।
କମ୍ପାଇଁ ଏ ହୀନ ପ୍ରାଣ ରହିଛି ପିଣ୍ଡର ॥
ସହି ନୁହେ କଷ୍ଟ ମନ ହେଉଛି ଅସ୍ଥିର ।
ଏତେ ଅପମାନ କେ ସହିବ ହୋଇ ବୀର ॥
ବିନାଦୋଷେ ଭୟଙ୍କର ଅପମାନ ମୋତେ
କି କହିବି ଯାହାଦେଲେ ସକଳ ସାକ୍ଷାତେ ॥
ଭଲ ହେଲା ଦେଖାହେଲା ସଙ୍ଗରେ ତୁମ୍ଭର ।
ବିଦାୟ ଦିଅ ଗୋ ମାତ ଯିବି ଦେଶାନ୍ତର ॥
ନଚେତ ଦିଅ ଆଦେଶ ଯୁଦ୍ଧକୁ ମୁଁ ଯିବି ।
ପାର୍ଥ ସହ ସମସ୍ତଙ୍କୁ ବିନାଶ କରିବି ॥
ଏ ଦୁଇ କଥାରୁ ଯେଉଁ କଥାରେ ତୁମ୍ଭର ।
ଇଚ୍ଛା ହୁଏ ମାତ ବେଗେ କୁହ ମୋ ଆଗର
ଗୃହନନ୍ଦା ଯେ ସହିଲା ଧିକ ତାର ପ୍ରାଣ ।
ଧିକ ତାର ବଞ୍ଚିବାର ଜନ୍ମ ଅକାରଣ ॥
ଧିକ ତାର ବାହୁବଳ ଧିକ ତାର ଗର୍ବ ।
ଧିକ ତା ରାଜତ୍ୱପଣ ଧିକ ତା ଗୌରବ ॥

ଶୁଣିଣ ଏସନ ଚିତ୍ରାଙ୍ଗଦା ମହାସତୀ ।
ପୁତ୍ରଙ୍କୁ ବୋଇଲେ ଧୈର୍ଯ୍ୟ ଧରରେ ସୁମତି ॥
ବିବେକୀ ହୋଇଣ କପାଁ ଅଧୈର୍ଯ୍ୟ ହେଉ ।
କି ବୋଲି ବୋଇଲେ ତୋତେ ପାର୍ଥମହାବାହୁ
କମ୍ପା ଏତେ ମନୋଦୁଃଖ ମୋହ ନିକଟରେ
କୁହ ବାପ ପ୍ରକାଶ କରିଣ ତା ସତ୍ୱରେ ॥
ତୁମ୍ଭେ କି ବୋଇଲ ବୋଲି ପଣ୍ଡୁର କୁମରେ
କିପରି ହୋଇଲା ଦେଖା ଅର୍ଜୁନ ସଙ୍ଗରେ ॥
ନିଜ ପରିଚୟ ଦେଲ କେବଣ ପ୍ରକାର ।
ସେ ସକଳ ପ୍ରକାଶିଣ କୁହ ମୋ ଆଗର ॥
ସେ ସକଳ ମୋ ଆଗରେ କହରେ ନନ୍ଦନ ।
କାହିଁ ପାଇଁ ଏତେ କଷ୍ଟ ତୋ ମନରେ ପୁଣ ॥
ଅଭିମାନେ ପୂରିଅଛୁ କମ୍ପା ବାପଧନ ।
ସେଥି ପାଇଁ ଥନ ଅନ ହୁଏ ଦ୍ୱିନୟନ ॥
କେଉଁ କାରଣରେ କ୍ରୋଧ କରିଅଛୁ ଏତେ
କିସ ଗାଳିଦେଲେ ପିତା କୁହ ମୋ ଅଗ୍ରତେ
ତୁମ୍ଭ ପରିଚୟ ପାଇଁ ପିତା କି ବୋଇଲେ ।
ଜଣାଯାଏ ଯଥାଯୋଗ୍ୟ ସ୍ନେହ ନ କରିଲେ
ଉପଯୁକ୍ତ ରୂପେ ସ୍ନେହ ତାହାଙ୍କ ପାଶରେ ।
ପାଇ ନାହିଁ ବୋଲି ବାପ ଦୁଃଖିତ ଅନ୍ତରେ ॥
ମୋହର ଶପଥ ତୋତେ ରେ କୁମରମଣି ।
କେତେ ଦୂର ଅପମାନ କରିଛି ଫାଲ୍‌ଗୁନି ।
ଅହା ଅଭିମାନୀ ପୁତ୍ର କେବେହେଁ କାହାର
ନିକଟରେ ଅପମାନ ହୋଇନାହିଁ ତୋର ।
ସେଥି ପାଇଁ ଏତେ କଷ୍ଟ ଏତେ ଯେ ବେଦନ
ଏତେଦୂର ମନୋଦୁଃଖ କାତର ଏସନ ॥
ଶୁଣିଣ ମାତାଙ୍କ ବାଣୀ ସେ ବଭ୍ରୁବାହନ ।
କରଯୋଡ଼ି ବିନୟରେ କହଇ ବଚନ ॥
ଜନନୀ ବୋଲିଣ ମୁଖେ ନ ଆସଇ ମୋର ।
ବଜ୍ରସମ ବାକ୍ୟ ଦହେ ପରାଣ ମୋହର ॥
ଜୀବନ୍ତେ ମରଣ ତୁଲ୍ୟ ହୋଇଅଛି ମୁହିଁ ।
ରୂପ ଦେଖି ତୁମ୍ଭେ ମାତ ବୁଝିପାର ନାହିଁ ॥
ବଜ୍ରସମ ନିଦାରୁଣ ବଚନରେ ମୋର ।
ହୃଦ ବିଦୀର୍ଣ୍ଣ ହୋଇଛି କି କହିବ ଆର ॥
ମନ ସୁଖ ପାଇଁ ମାତା ଯାଇଥିଲି ମୁହିଁ ।
ଯା ଶୁଣିଛୁ ସତେ ବଞ୍ଚିବାକୁ ଇଚ୍ଛା ନାହିଁ ॥

ଯେ ସବୁ ନିଷ୍ଠୁର ଅତି ଅସଭ୍ୟ ବଚନ ।
କପଟ ପ୍ରକାଶ ମାତ କରିବ ପାଷାଣ ॥
କହିବାକୁ ଲଜ୍ଜା ହୁଏ ପଚାରୁଛୁ ପୁଣି ।
ଶୁଣିଲେ ତୁମ୍ଭର ହୃଦ ହୋଇବ ମା ହାଣି ॥
ସୁହୃଦ ଆତ୍ମୀୟଠାରେ ଯେ ସକଳ କଥା ।
କହିବା ପାଇଁ କି ଲାଜ ମାଡ଼ଇ ସର୍ବଥା ॥
ଜଣାଇବ ସେ ସବୁ କପଟ ମାତ ମୁହିଁ ।
କହିବାକୁ ଇଚ୍ଛା ମୋର କେବେ ହୁଏ ନାହିଁ
ନିତାନ୍ତ କୁତ୍ସିତ ଯେହୁ କାପୁରୁ ଜନ ।
ତାହା ପ୍ରତି କହିନୁହେ ଏତେ କୁବଚନ ॥
କି କରିବ ଜାଣେ ପୂଜ୍ୟ ଅଟେ ପିତୃଦେବ ।
ସେଥି ପାଇଁ ଏ ପର୍ଯ୍ୟନ୍ତ ସହିଅଛୁ ସର୍ବ ॥
ଶୁଣିଣ ପୁତ୍ରର ବାଣୀ ମାତା ଅତିଶୟ ।
ଦୁଃଖେ ସନ୍ତାପିତ ହୋଇ ଭାବଇ ହୃଦୟ ॥
ବାରମ୍ବାର ପୁତ୍ର ମୁଖୁ ମୃତ୍ୟୁ ହେବା ବାଣୀ ।
ବଞ୍ଚିବାର ଆଶା ନାହିଁ ଏ ସର୍ବ କାହାଣୀ ॥
ଶୁଣିଣ ଜନନୀ ଅତି ହୋଇଣ ଦୁଃଖିତ ।
ବୋଲନ୍ତରେ ବଳା କପା ଏତେ ଦୁଃଖଚିତ୍ତ
ପୁତ୍ରର ଏପରି ଦଶା ଦେଖିଣ ସୁନ୍ଦରୀ ।
ଲୋତକରେ ଚକ୍ଷୁ ପୂର୍ଣ୍ଣ ହୋଇଲା ତାଙ୍କର ॥
ଆକୁଳେ ବୋଇଲେ ଅରେ ମୋ ରଙ୍କୁଣୀଧନ
କପାଇଁ କହୁରେ ବାପ ଅମଙ୍ଗଳ ମାନ ॥
ମାନ ମୋର ବାଣୀ ବାପ କହ ତୁ ଫିଟାଇ ।
ସେଥିରେ ତୋହର କିଛୁ ଦୋଷ ହେବନାହିଁ
ବାରମ୍ବାର ପଚାରିଲେ କର ଅନୁନୟ ।
କି ହୋଇଛୁ ମୋହଠାରେ ବୋଲରେ ତନୟ
ନ ଶୁଣିଣ ମନେ କଷ୍ଟ ହୁଏ ଅତିଶୟ ।
ତୋଠାରୁ ମୋ ମନକଷ୍ଟ ଅଧିକ ନିଶ୍ଚୟ ॥
ସଂସାରେ ତୋହର ମୁଖ ସର୍ବଦା ଚାହିଁଣ ।
କରୁଅଛୁ ଦିନପାତ ତୋହର ଲାଗିଣ ॥
ମନରେ ଯେତେକ କଷ୍ଟ ସମସ୍ତ ଭୁଲିଣ ।
ତୋ ମୁଖ ଦେଖିଣ ରଖିଅଛୁ ପିଣ୍ଡେ ପ୍ରାଣ ॥
ସଂସାରରେ ପତି ପୁଏ ଦୁହିଁଙ୍କି ଦେଖିଣ ।
ବାସ କରନ୍ତି ନାରୀଏ ସକଳ ଭୁଲିଣ ॥
ପ୍ରାଣପତି ଭୁଲିଯାଇ ଏ ଅଭାଗିନୀକୁ ।
ଅକାରଣେ ଏତେ ଦୁଃଖ ଦିଅନ୍ତି ମନକୁ ॥

ପତି ନାରୀମାନଙ୍କର ଏକମାତ୍ର ଧନ ।
ତୋ ମୁଖ ଦେଖିଣ ଭୁଲିଅଛୁ ତାଙ୍କୁ ପୁଣ ॥
ତାଙ୍କ ପାଇଁ ଦୁଃଖ ନାହିଁ ତୋ ମୁଖକୁ ଚାହିଁ ।
ଅମଙ୍ଗଳ ଭୟରେ ମୁଁ ଆସିଲି ଯେ ଧାଇଁ ॥
କ୍ଷଣେ ନ ଦେଖିଲେ ତୋତେ ଅସ୍ଥିର ପରାଣ ।
କାହିଁ ପାଇଁ ବଳା କହୁ ଏସନ ବଚନ ॥
ଯାହା ପାଇଁ କେତେ ଦେବାଦେବୀ ପୂଜିମୁହିଁ
କୋଳରେ ଧଇଲି ଦୁଃଖ ତାହାର ଦେଖଇ
କପଟ ସହିବ କହ ମାତାର ପରାଣ ।
କପାଇଁ ବିଧାତା ଦେଲା ମୋତେ ଯେ କଷଣ
ଯେତେ କଷ୍ଟ ଯେତେ ଦୁଃଖ ଭୁଲିଛୁ ସକଳ ।
ତୋ ଚନ୍ଦ୍ରମା ମୁଖ ବାପ ଦେଖିଣ କେବଳ ॥
ଏକ୍ଷଣି ବିଦୀର୍ଣ୍ଣ କପା ନ ହେଲା ହୃଦୟ ।
ଦେଖିଣ ତୋହର ମନ୍ଦ ଦଶାରେ ତନୟ ॥
ଚତୁର୍ଦ୍ଦିଗ ଅନ୍ଧକାର ଦେଖାଯାଏ ମୋତେ ।
କଥାକହେ ପ୍ରାଣନାହିଁ ଯେତେହେଁ ମୋର ଗାତେ
ପ୍ରାଣର ପିତୁଳା ତୁହି ମୋହର ଜୀବନ ।
କପରି ବଞ୍ଚିବି ନ ଦେଖିଣ ତୋ ବଦନ ॥
କହ ବାପ ସେ ସକଳ ମୋହର ଆଗରେ ।
ହୃଦୟ ବ୍ୟଥିତ ମୋର ହୁଅଇ ବିଧିରେ ॥
ଯେ ଜନ ତୁମ୍ଭର ହିତ ସଦା ବାଞ୍ଛାକରେ ।
ଯେ ଜନ ତୁମ୍ଭ ସକାଶେ ଅଛି ଧରାପରେ ।
ଯାରେ ତୁମ୍ଭେ ଶ୍ରଦ୍ଧା ଭକ୍ତି ଅତିଶୟ କର ।
ତାହାକୁ କଷ୍ଟ ଦେବା କି ଉଚିତ ବିଚାର ॥
ତୋତେ ମୋହରାଣି ବଳା କୁହ ମୋ ଆଗରେ
କି କି ଘଟିଲା ଘଟଣା ଅର୍ଜ୍ଜୁନ ସଙ୍ଗରେ ॥
ଯାରେ ତୁମ୍ଭେ ଦେବାଙ୍କନେ ଅତିଭକ୍ତି କର ।
ତାକୁ କଷ୍ଟଦେବା ନୁହେ ଉଚିତ ତୁମ୍ଭର ॥
ମୋହରାଣି ବସ୍ତ୍ରମଣି କୁହ ମୋ ଆଗରେ ।
କି କି କଥାକହିଲେରେ ତୋତେସେ ସଭାରେ
ମନମଧ୍ୟେ ଯେତେକଷ୍ଟ ଅଟଇ ତୋହର ।
କୁହ ମୋତେ କରିପାରେ ଯେବେ ପ୍ରତିକାର
ସେଥିରେ ତୋହର ବାପ ନହେବ କି ଭଲ ॥
ମୋତେ କହିବାକୁ ବଳା କପାଇଁ ଆକୁଳ ॥
ମାନ ମୋ ବଚନ ବାବୁ ସେ ସକଳ କହ ।
ମୋ ମନୁ ସନ୍ଦେହ ଦୂର କର ବେଗେ ତୁହ ॥

ଯେବେ ନ କହନ୍ତୁ ମୋତେ କହୁଅଛୁ ଶୁଣ
ତୋ କଷ୍ଟ ଦେଖିଣ ନ ରହିବ ଏ ଜୀବନ ॥
ନିଶ୍ଚୟ ତେଜିବ ପ୍ରାଣ ଅରେ ବଭ୍ରୁମଣି ।
ଶୀଘ୍ର ମୋ ଆଗେ ପ୍ରକାଶ କର ସେହି ବାଣୀ
ଯେବେ ତାହା ଫେଡ଼ିକରି ନ କହୁ କୁମର ॥
ସାକ୍ଷାତେ ତେଜିବ ପ୍ରାଣ ମୁହିଁ ଆପଣାର ॥
ଦେଖିଣ ମାତା ବିକଳ ପୁତ୍ରେ ବିନୟରେ ।
ଯାହା ଘଟିଥିଲା ତହିଁ କହିଲେ କ୍ରମରେ ॥
ଶୁଣ ମା ଗୋ କହିବାକୁ ହୃଦ ବିଦାରଇ ।
ଅକାରଣେ ଏତେ ଜିଦକରୁ ମାତ ତୁହି ॥
କହିବାକୁ ଇଚ୍ଛା ହୁଏ ନ ପିଠାଇ ତୁଣ୍ଡ ।
ଯାହା ମୁଁ ଭୋଗିଲି ପୁଣି ଅଟଇ ପାଷାଣ୍ଡ ॥
କହିବାକୁ ନ ଇଚ୍ଛଇ ସେ ସବୁ କାହାଣୀ ।
ଶୁଣିଲେ ତୁମ୍ଭର ହୃଦ ବିଦାରିବ ପୁଣି ॥
ମୋର ଠାରୁ ବେଶୀ କଷ୍ଟ ହୋଇବ ତୁମ୍ଭର ।
ଭାବେ ବିପଦ ଘଟିବ ତୁମ୍ଭ ଜୀବନର ॥
ଶୁଣିକରି ମାତ ଯେବେ ସନ୍ତୋଷ ହୋଇବ ।
ତାହେଲେ ପ୍ରକାଶି ମାତ କହିବ ମୁଁ ସବ ॥
ସେ କଥା ସ୍ମରିଲେ ମନ ବ୍ୟାକୁଳ ହୁଅଇ ।
ନିଶ୍ଚୟ ତୁମ୍ଭ ମନରେ ଦୁଃଖ ହୋଇବଟିଁ ॥
ଯା ହେଉ ଜନନୀ ମୁହିଁ ତବ ଆଦେଶରେ ।
ପ୍ରବେଶ ହୋଇଲି ଯାଇଁ ପାର୍ଥ ନିକଟରେ ॥
ଅଶ୍ୱ ଘେନି ସୈନ୍ୟ ସହିତରେ ମୁହିଁ ଗଲି ।
ନାନାବିଧ ଧନରତ୍ନ ସଙ୍ଗତରେ ନେଲି ॥
ଦୂତଙ୍କୁ ପଠାଇ ଆଗେ ଆଦେଶ ଆଣିଲି ।
ତଦପରେ ତାଙ୍କ ପାଶେ ପ୍ରବେଶ ହୋଇଲି ॥
ପ୍ରବେଶ ହୋଇଣ ଭକ୍ତିଭରେ ଧରି ପାଦ ।
ଭୂମିରେ ପଡ଼ିଣ ମାତ ହୋଇଲି ଆନନ୍ଦ ॥
ତୁମ୍ଭ କଥା ଅନୁସାରେ ପରିଚୟ ଦେଲି ।
ମୁଁ ତୁମ୍ଭ କୁମର ବୋଲି ଅନେକ କହିଲି ॥
ଶୁଭାଙ୍ଗଦା ମୋର ମାତା ଗନ୍ଧର୍ବ ନନ୍ଦିନୀ ।
ତ୍ରିଲୋକେ ଜାଣନ୍ତି ସର୍ବେ ସତୀ ଶିରୋମଣି ॥
ଯେତେବେଳେ ତୀର୍ଥଯାତ୍ରା କରିଥିଲେ ବୀର ।
ମୋ ମାତାସହ ବିବାହ ହୋଇଲା ତୁମ୍ଭର ॥
ତୁମ୍ଭର ଔରସେ ଜନ୍ମ ହୋଇଛୁ ମୋହର ।
ସମସ୍ତେ ଜାଣନ୍ତି ବଭ୍ରୁବାହ ନାମ ମୋର ॥

ତୁମ୍ଭର ପ୍ରସାଦେ ଏହି ମଣିପୁର ରାଜ୍ୟ ।
ପ୍ରତାପେ ଶାସନ କରେ ହେ ବାସବାତ୍ମଜ ॥
ନ କରେ ଅନ୍ୟାୟ କାର୍ଯ୍ୟ ଅହେ ପାଣ୍ଡୁପୁତ୍ର ।
ଆମ୍ଭଙ୍କୁ ଦେଖିଲେ କଡ଼ବାର ହୁଏ ନତ ॥
ଆଜ ସେ ନରଙ୍କ କଥା ଯେତେ ଦେବଗଣେ
ଆଗଭର ନୁହନ୍ତି ସେ ମୋ ସହିତ ରଣେ ॥
ମୋର ଅଜଣାରେ ଅଶ୍ୱ ଦେଶେ ପ୍ରବେଶିଲା ।
ନ ଜାଣିଣ ତାହା ମୋର ଦୂତ ଯେ ଆଣିଲା ॥
ଅଶ୍ୱକୁ ଆଣିଣ ଦୂତେ ମୋ ପାଶରେ ଦେଲେ
ଅଶ୍ୱ ଦେଖି ପ୍ରବେଶିଲି ମୁଁ ତାହା ପାଶରେ ॥
ଅଶ୍ୱଶିରେ ଥିବା ବୀରପତ୍ରକୁ ଦେଖିଲି ।
ପଢ଼ିଣ ତହୁଁ ସମସ୍ତ ଘଟଣା ଜାଣିଲି ॥
ପୂର୍ବେ ମାତାଠାରୁ ଶୁଣିଥିଲି ତୁମ୍ଭନାମ ।
ତେଣୁକରି ମନ ମୋର ହେଲା ଛନ୍ଦ ଛନ୍ଦ ॥
ଅଶ୍ୱକୁ ଘେନିଣ ମାତା ପାଶେ ପ୍ରବେଶିଲି ।
ସମସ୍ତ ଘଟଣା ତାଙ୍କୁ ବୁଝାଇ କହିଲି ॥
ଶୁଣିଣ ଜନନୀ ମୋର ଆନନ୍ଦ ହୋଇଲେ ।
ଆପଣଙ୍କ ନିକଟକୁ ମୋତେ ପଠାଇଲେ ॥
ଅଶ୍ୱକୁ ଧରିଣ ଅଜଣାରେ ଜାଣ ମୁହିଁ ।
ଛଥାମି ମନରେ ଦୁଃଖ ମୋର ଜାତହୋଇ ॥
ତେଣୁକରି ମାତାଙ୍କର ଆଦେଶରେ ବୀର ।
ଶ୍ରୀଚରଣ ତଳେ ଆସି ପଡ଼ିଛୁ ତୁମ୍ଭର ॥
ଯେ ସକଳ ଦୋଷ ମୁହିଁ କରିଛୁ ହେ ତାତ ।
ଦୟାକରି କ୍ଷମାକର ସେ ଦୋଷ ସମସ୍ତ ॥
ଅନବରତରେ ଦଗ୍ଧ ମନ ହୁଏ ମୋର ।
ଶରଣ ନେଲି ଚରଣେ କର ପ୍ରତିକାର ॥
ଅଜଣାରେ କେହି ଯେବେ କରିଥାଏ ଦୋଷ
କ୍ଷମା କରନ୍ତି ତାହାକୁ ସକଳ ବିଦୂଷ ॥
ପୁଣି ଯେ କୁମର ମୁହିଁ ସଦା ଆଜ୍ଞାକାରୀ ।
ସକଳ ଦୋଷ ମୋହର କ୍ଷମ ଦୟାକରି ॥
ସ୍ନେହ ଅନୁରୋଧେ ପିତା ସନ୍ତାନର ଦୋଷ ।
ନ ଘେନିଣ କେବେ ସେହି ପ୍ରକାଶିଣ ରୋଷ
କ୍ଷମାକର ନିଜଗୁଣେ ଦୟାକର ମୋରେ ।
ତୁମ୍ଭ ବିନା ପ୍ରଭୁ ନାହିଁ ମୋର ସଂସାରରେ ॥
ଏହିପରି ଯେତେ ମତେ ମୁଁ ବିନୟ ବୀର ।
କହିଲି ଶୁଣିଲେ ନାହିଁ ଜନକ ମୋହର ॥

ଶୁଣି କ୍ରୋଧେ ଗାଳିଦେଲେ ସେ ପଣ୍ଡୁନନ୍ଦନ
ମୋତେ ଯେ ନାନା କୁବାକ୍ୟ କହିଲେ ତକ୍ଷଣ
ବୋଇଲେ ଜାରଜ ତୁହି କେଉଁ ସାହାସରେ
ପିତାବୋଲି ସମ୍ବୋଧନ କରୁଅଛୁ ମୋତେ ॥
ଜାଣେ ମୁହିଁ ଚିତ୍ରାଙ୍ଗଦା ଗନ୍ଧର୍ବ ନନ୍ଦିନୀ ।
ଅତ୍ୟନ୍ତ ସୁନ୍ଦରୀ ସେହି ପୂର୍ବେ ଅଛି ଶୁଣି ॥
ହୋଇପାରୁ ତାହାର କୁମର ତୁହି ଜାଣ ।
ମୋ ଔରସେ କେବେତୋର ନୋହିଛି ଜନମ
ଜନମ ଦିନରୁ ଆଜି ପର୍ଯ୍ୟନ୍ତେ ମୁହିଁ ।
ବେଶ୍ୟାଘରେ ବେଶ୍ୟାସଙ୍ଗ ଦିନେ କରିନାହିଁ
ପରନାରୀ ପରଧନ ନ କରେ ହରଣ ।
ବେଶ୍ୟାପୁତ୍ର ହୋଇ କହୁ ମୋହର ନନ୍ଦନ ॥
ଜାଣିଛି କୁଳଟାପୁତ୍ର ରେ ବଭ୍ରୁବାହନ ।
ମାତା ପରିଚୟ ଦେଲୁ ତେଣୁ ରେ ଅଧମ ॥
ବେଶ୍ୟାମାନେ ନାନାକଥା ଭଣ୍ଡାଇ କହନ୍ତି ।
ମୋର ଔରସରୁ ତୋତେ ଜନ୍ମ କରିଛନ୍ତି ॥
ଅକାରଣେ ଆସି ମୋତେ ବାପ ବୋଲି କହୁ
ନିଷ୍କଳଙ୍କ ନାମେ ମୋର କଳଙ୍କ ଲଗାଉ ॥
କେଉଁଠାରେ ଏପରି ଘଟଣା ଦେଖି ନାହିଁ ।
ବାପବୋଲି ଅପରକୁ ନ ଡାକଇ କେହି ॥
ତୁମ୍ଭ ସଙ୍ଗେ କିବା ତୁମ୍ଭ ମାତା ସଙ୍ଗେ ମୋର
ଚିହ୍ନା ନାହିଁ କେଉଁପରି ହୋଇବୁ କୁମର ॥
ବାମନ ହୋଇଣ ଚନ୍ଦ୍ର ଧରିବାର ପାଇଁ ।
ହାତ ବଢ଼ାଇଲେ ତାହା ପାଇ କି ପାରଇ ॥
ବେଶ୍ୟା ପୁତ୍ର ହୀନଜାତି ଅଟୁ ଅପବିତ୍ର ।
ଅକାରଣେ କହୁଅଛୁ ମୋହର ତୁ ପୁତ୍ର ॥
ମୋ ପୁତ୍ର ହୋଇଲେତୋଗୌରବବଢ଼ିପାରେ
ମାତ୍ରି ମୋ ମସ୍ତକ ପଡ଼ିଯିବ ପୃଥିବୀରେ ॥
ତ୍ରିଲୋକେ ସର୍ବେ ଜାଣନ୍ତି ଚରିତ୍ର ମୋହର ।
ସର୍ବେ ସୁଖ୍ୟାତି କରନ୍ତି ଦେଖି ମୋ ବେଭାର
ଯେବେ ଧର୍ମେ ମୋର ମନ ରହିଣ ନ ଥାନ୍ତା
ଦ୍ୱାରକାପତି ଶ୍ରୀକୃଷ୍ଣ ସଖା କି ହୁଅନ୍ତା ॥
ଲୋକେ ମୋତେ ନ ବୋଲନ୍ତି ନରନାରାୟଣ
ସଂସାରେ ମୋ ଯଶ ନ ଗାଆନ୍ତେ ସର୍ବଜନ ॥
ଭାରତ ମଧ୍ୟରେ ମୋର ଏଡ଼େ ଯେ ମହତ୍ତ୍ୱ ।
ପ୍ରକାଶିତ ହୋଇଅଛି ଏଡ଼େ ଅଧିପତ୍ୟ ॥

ବୁଦ୍ଧିମାନ ଜାଣନ୍ତି ଯେ ଏହା ସହଜରେ ।
ତୁମ୍ଭଙ୍କୁ କିସ କହିବ ନ ଆସେ ତୁଣ୍ଡରେ ॥
ଯା ହେଉ କହୁଛୁ ଶୁଣ ତୁମ୍ଭର ମାତାର ।
ଅପଯଶ ଗାଆନ୍ତି ନ କରନ୍ତି ସର୍ବନର ॥
ଅନିତ୍ୟ ସାମାନ୍ୟ ସୁଖେ ହୋଇ ଅଭିଳାଷୀ ।
ଯେ ନାରୀ ଅନ୍ୟ ପୁରୁଷେ ହୁଅଇ ପ୍ରୟାସୀ ॥
ଧର୍ମାଧର୍ମ କିଛି ସେହି ବିଚାର ନ କରେ ।
କାମେ ମତ୍ତ ହୋଇଣ ନାନାଦି ପାପକରେ ॥
ଏଥିରେ ଯେ ତାହାଙ୍କର ହୁଏ ପରିଗୁଣ ।
ବେଶ୍ୟା ପୁତ୍ର ହୋଇ କହୁ ତୁ ସାଧୁବଚନ ॥
ଯେଣୁ ଅସତୀ ସ୍ୱୈରିଣୀ ତୁମ୍ଭର ଜନନୀ ।
ତ୍ରିଲୋକ ମଧ୍ୟରେ ତାକୁ ହୀନ ବୋଲି ଗଣି ॥
ସଂସାରରେ ଅସତୀଙ୍କ ମଧ୍ୟେ ଶିରୋମଣି ।
ଏହି ଗୌରବକୁ ଲଭିଅଛି ତୋ ଜନନୀ ॥
ଭଲକାର୍ଯ୍ୟ କରିଥିଲେ ନାମ ଏତେ ଦୂର ।
ହୋଇଣ ନ ଥାନ୍ତା ଏତେ ଅଖ୍ୟାତି ପ୍ରଚୁର ॥
କୁତ୍ସିତ କର୍ମରେ ଯାର ନାମ ହୋଇଥାଏ ।
ତାର ଗୁଣ ଦିଗଦିଗନ୍ତରେ ବ୍ୟାପିଯାଏ ॥
ଭଲକାର୍ଯ୍ୟ କରି ଲୋକେ ହୋଇଲେ ପତନ
କ୍ରମେ କ୍ରମେ ତା ସୁଖ୍ୟାତି ହୁଏ ଦୀପ୍ତିମାନ ॥
ମାତ୍ର ଅଧର୍ମର ନାମ ଜଗତ ବ୍ୟାପିଣ ।
ନୂତନ ପରାୟେ ରହେ ନୋହିଣ ମଳିନ ॥
ଅତି ବଡ଼ ଭାଗ୍ୟବତୀ ଜନନୀ ତୁମ୍ଭର ।
ତେଣୁ ଅସତୀ ପଣରେ ଜଗତେ ପ୍ରଚୁର ॥
ଆପଣାର ପରିଚୟ ଆପଣେ ନ ଜାଣି ।
ଯାହାତାହା କହୁଅଛୁ ମୋତେ ଆସି ପୁଣି ॥
ଜାଣେ ଭଲ ସତୀ ଅଟେ ଜନନୀ ତୁମ୍ଭର ।
ସଂସାରେ ଗାଉଅଛନ୍ତି ଅପଯଶ ତାର ॥
ଏମନ ବୋଲିଣ ପଦାଘାତ ମୋର ଶିରେ ॥
କରି ଦୂରେ ଫିଙ୍ଗିଦେଲେଅତ୍ୟନ୍ତ କ୍ରୋଧରେ
ପୃଥିବୀର ପରେ ମୁହିଁ ଗଡ଼ିଣ ପଡ଼ିଲି ।
ଲଜ୍ଜାଭରେ ମୁଖ ଟେକି ଚାହିଁ ନ ପାରିଲି ॥
ତାଙ୍କର ପାଶରେ ଥିବା ଅନୁଚର ଗଣ ।
ମୋତେ ଆସି ଉକ୍ତ ସେହି ନେଲେ ଉଠାଇଣ
ହଂସଧ୍ୱଜ ନୀଳଧ୍ୱଜ ଯେତେକ ନୃପତି ।
ଅର୍ଜୁନକୁ ବୁଝାଇଲେ କରି ବିନତି ॥

କହିଲେ ନିର୍ବୋଧ ପରି ହେ ବୀର ଅର୍ଜୁନ ।
ଏତେ କଥା ତୁମ୍ଭେ କପାଁ କୁହ ଅକାରଣ ॥
ଭଦ୍ର ସନ୍ତାନଙ୍କୁ ଅକାରଣେ ଗାଳିଦିଅ ।
ଉଚିତ ତୁମ୍ଭର ଏହା ନୁହେ ମହାଶୟ ॥
ଯେବେ ତୁମ୍ଭେ ବିନାଦୋଷେ ତାଙ୍କୁ କଷ୍ଟଦେବ
ତାହାଠାରୁ ବଳି କଷ୍ଟ ନିଶ୍ଚୟ ପାଇବ ॥
ପୁତ୍ର ଯେବେ ନୋହିଥାନ୍ତା ତୁମ୍ଭର ଯେ ସେହି
ଏତେ ଅପମାନ କି ସହନ୍ତା ଦେହ ବହି ॥
ପୁତ୍ର ନୋହିଥିଲେ କି ସେ ଏପରି ବୋଲନ୍ତା
ଲୋକ ମଧ୍ୟେ ପିତାବୋଲି କରିଣ ଡାକନ୍ତା ॥
କ୍ଷାନ୍ତ ହୁଅ ବୀରମଣି ରାଗହିଂସା ଛାଡ଼ ।
ସସ୍ନେହରେ ପୁତ୍ରଙ୍କୁ ବସାଅ ଆଣି କୋଡ଼ ॥
ଯେବେ ତୁମ୍ଭେ ନ ଶୁଣିବ ଆମ୍ଭର ବଚନ ।
ନିଶ୍ଚୟ ପାଇବ ତାର ପ୍ରତିଫଳ ଜାଣ ॥
ଯେତେଯେତେ କଥା ଏବେ ଅର୍ଜୁନେ କହିଲେ
କଉଣସି କଥା ବୀର ତିଳେ ନ ଶୁଣିଲେ ॥
କହିଲେକ ସବୁ ତହୁଁ ବିନୟ ବଚନ ।
ସେଥିରେ ତାହାଙ୍କ କୋପ ବଢ଼ିଲା ଦ୍ୱିଗୁଣ ॥
ସକଳ କହିଲି ମାତ ତୁମ୍ଭ ସକାଶରେ ।
ବିଶେଷ ପିତା ବୋଲିଣ ଅଛଇ ଅନ୍ତରେ ॥
ବହୁକଷ୍ଟ ହେଲା ଭୋଗ କପାଳେ ମୋହର ।
ଜନ୍ମାବଧି ଯାହା ସହି ନ ଥିଲା ଶରୀର ॥
ଯେତେ ଦୂର ଅପମାନ ପୁଣି ତହିଁ ଗାଳି ।
କେ କହିବ ଦେହଧରି ପ୍ରାଣ ଯାଏ ଜଳି ॥
ହୃଦୟ କମ୍ପିତ ହେଲା ସେ ବଚନ ଶୁଣି ।
ସମସ୍ତ ସହିଲି ମାତ ପିତାବୋଲି ଜାଣି ॥
ସହି ସହି ଅପମାନ ଦହିଲା ଅନ୍ତର ।
ତେଣୁ ପ୍ରତିଜ୍ଞା କରିଛି ଅର୍ଜୁନ ଆଗର ॥
ତୁମ୍ଭ ମାତାଙ୍କର ପଞ୍ଚପତି ଯେ ଅଟନ୍ତି ।
ପାଣ୍ଡୁ କେବଳ ନାମକୁ ସ୍ୱାମୀ ହୋଇଥାନ୍ତି ॥
ଯେତେ ଯେତେ ଅପମାନ ଦେଲେ ବୀରବର ।
ସେ ସମସ୍ତ ଭୁଲାଇବି ମାରି ତୀକ୍ଷ୍ଣଶର ॥
ପଣ କରିଅଛି ମାତ ଆଉ ନ ସହିବି ।
ଏହିକ୍ଷଣି ସମରକୁ ଗମନ କରିବି ॥
ଦେଖିବି ଅର୍ଜୁନ ଦେହେ ଅଛି କେତେ ବଳ ।
କେତେ ଶକ୍ତି ଧରେ ସେହି ଜାରଜ ଦୁଲାଳ ॥

ପ୍ରାଣପଣେ ତା ସହିତ ସମର କରିବି ।
ବୀର ଧର୍ମ ବୀର ଗର୍ବ ତାଙ୍କୁ ଶିଖାଇବି ॥
ଅପମାନ ଲାଞ୍ଛନାରେ ପ୍ରତିଶୋଧ ନେବି ।
ସମସ୍ତଙ୍କ ସାକ୍ଷାତରେ ବୀର୍ଯ୍ୟ ପ୍ରକାଶିବି ॥
ପିତାର ସନ୍ତାନ ବୋଲି ଜଣାଇବି ମୁହିଁ ।
ଶତୃର କର୍ତ୍ତବ୍ୟ କାର୍ଯ୍ୟ ଏବେ ସାଧିବଇଁ ।
ରଣସ୍ଥଳେ ବାଣେ ବାଣେ ପରିଚୟ ଦେବି ।
ତାହାର କୁମର ବୋଲି ତାଙ୍କୁ ଜଣାଇବି ॥
ତ୍ରିଲୋକ ଏକତ୍ର ହେଲେ ମୋର ପରାଭବ ।
କେତେବେଳେ ନ ହୋଇବ ଜାଣେ ମୁହିଁ ଧ୍ରୁବ
ବଡ଼ ବୀର ବୋଲି ପାର୍ଥ କରେ ଅହଙ୍କାର ।
ଆଜ ଦେଖାଯିବ କେତେ ବୀର ଗର୍ବ ତାର ॥
ପ୍ରତିଜ୍ଞା କରିଛି ମାତ ନିଶ୍ଚୟ କରିବି ।
ପାର୍ଥ ନାମ ସଂସାରରୁ ଲୋପ କରାଇବି ॥
ତୁମ୍ଭ ଆଜ୍ଞାକୁ ଅପେକ୍ଷା ଥିଲା ମୋର ମାତ ।
ଆଶୀର୍ବାଦ କର କମ୍ପା ଭିବୁଅଛ ଶତ୍ରୁ ॥
କଲ୍ୟାଣ କର ଜନନୀ ଗୃହେ ଫେରିଯାଅ ।
ନିଶ୍ଚେ ସମରରେ ଜୟୀ ହେବ ତୋ ତନୟ ॥
ଯେତେ ଦୂର ବଳ ଅଛି କରିବି ସମର ।
ଦେବ ଦ୍ୱିଜ ଗୁରୁ ହେଉ ନାଶିବି ନିକର ॥
କ୍ଷତ୍ରିୟଙ୍କ ଧର୍ମ ମୁହିଁ କେବେ ନ ଛାଡ଼ିବି ।
ପାର୍ଥଙ୍କୁ ଆଜ ଉଚିତ ଧର୍ମ ଶିଖାଇବି ॥
ମନା ଯେବେ କରିବ ମା ରଣେ ଯିବାପାଇଁ ।
କହିବ ଯେ ରଣ କରି ଉଚିତ ନୁହଇଁ ॥
ତେବେ ମାତ ନିଶ୍ଚେ ମୁହିଁ ତେଜିବି ଜୀବନ ।
ତେଣୁ ମନା କରେନାହିଁ କରିବାକୁ ରଣ ॥
ସଭାମଧ୍ୟେ ଦର୍ପଭରେ କହିଛନ୍ତି ପାର୍ଥ ।
ଅଭିମନ୍ୟୁ ନାମେ ଥିଲା ତାହାଙ୍କର ସୁତ ॥
ବୀର ଦର୍ପେ ସପ୍ତରଥୀ ସଙ୍ଗେ ରଣ କଲା ।
ଅସଂଖ୍ୟ ସୈନ୍ୟ ନାଶିଣ ସ୍ୱର୍ଗପୁରେ ଗଲା ॥
ଗଜାଙ୍କୁ ଦେଖିଣ ବୃକ୍ଷ ଜଣା ଯେ ପଡ଼ଇ ।
ଯେ ବୀର ତାର କୁମର ବୀର ଯେ ଅଟଇ ॥
ମୋର ପୁତ୍ର ଅଭିମନ୍ୟୁ ମୋ ଔରସେ ଜାତ
ହୋଇଥିବାରୁ ତାର ତେଜ ଅପ୍ରମିତ ॥
ଯେବେ ଏ ବଭ୍ରୁବାହନ ଅଟେ ମୋ ନନ୍ଦନ ।
ଅସ୍ତ୍ର ଧରି କପାଁ ଏହି ହେଲା ଭୀତମନ ॥

କାପୁରୁଷ ଭୀରୁ ଏହି ମୋ ସୁତ ନୁହଇ ।
ମୋର ସୁତ ହେଲେ କେବେଁ ଏସନ ନକହି ॥
ଅଭିମନ୍ୟୁ ଯୋଗୁ ମୋର ଯଶ ମାନ ଗୁଣ ।
ସଂସାର ଘୋଷନ୍ତି ସର୍ବେ ତହିଁରେ ମୁଁ ଧନ୍ୟ
କ୍ଷତ୍ରିୟ ଔରସେ ଜନ୍ମି ଭଲ ବନ୍ଧୁ ତୁଲେ ।
ସମ୍ବନ୍ଧ କି ରହେ କାର୍ଯ୍ୟ ସମୟ ପଡ଼ିଲେ ॥
ତେଣୁ ଭାବେ ବଭ୍ରୁବାହ ନୁହେ ମୋ ନନ୍ଦନ ।
ମାତ ତାର କେଉଁଠାରୁ କରାଇଛି ଜନ୍ମ ॥
କହୁଛନ୍ତି ପାର୍ଥ ପୁଣି ମୋ କୁମର ହେଲେ ।
ଘୋଡ଼ା କି ଛାଡ଼ନ୍ତା ସେହି କେବେ ସହଜରେ
ପିତା ହେଉ ଭ୍ରାତା ହେଉ ହେଉ ଗୁରୁଜନ ।
ନିଶ୍ଚୟ ତାହା ସହିତ କରଥାନ୍ତା ରଣ ॥
ଯେବେ ମୋର ପୁଅ ଏହି ବୀର ହୋଇଥାନ୍ତା
କେତେବେଳେ ଘୋଡ଼ାଆଣି ପାଦେନପଡ଼ନ୍ତା
ତେଣୁ ନର ଜାଣେ ମୋର କୁମର ନୁହଇ ।
ମୋଠାରୁ ଜନମ ହୋଇ ଏତେ ଭୀରହୋଇ ॥
ଅଗ୍ନି କେବେ ଥଣ୍ଡାଗୁଣ ଧରି କି ପାରଇ ।
ବଜ୍ର କେବେ କି କୋମଳ ଭାବକୁ ଧରଇ ॥
ସିଂହ କେବେ ପଶୁଗଣ ମଧ୍ୟେ ନମ୍ର ହୋଇ ।
ବୀର କେବେ ନିଜ ତେଜ ଗୌରବ ଛାଡ଼ଇ ॥
ଯେବେ ବଭ୍ରୁବାହ ହୋଇଥାନ୍ତା ମୋର ସୁତ
ନିଶ୍ଚୟ କରନ୍ତା ଥାନ୍ତା ରଣ ମୋ ସହିତ ॥
ଏହିପରି ମୋତେ କହୁଛନ୍ତି କେତେ କେତେ
ତାହା ସ୍ମରଣ ରହିଛି ମୋର ହୃଦଗତେ ॥
ଏ ଜୀବନ ଥିବାଯାଏ ମନରୁ ନ ଯିବ ।
ପାଷାଣର ଗାର ପରି ହୃଦେ ରହିଥିବ ॥
ରାଜ୍ୟ ଧନ ଦାସ ଦାସୀ ସବୁ ଛାଡ଼ିପାରେ ।
ଯେବେ ମନା କରିବ ମା ଯୁଦ୍ଧ କରିବାରେ ॥
ମାନ ବଳ ଥାଇ କିଏ ହୀନବଳ ଧରେ ।
ଯାଉ ଅବା ଥାଉ ପ୍ରାଣ ଦେଖିବେ ସକଳେ ॥
ଗୌରବ କ୍ଷତ୍ରୀ କୁଳର ଅଟଇ ସମ୍ପତ୍ତି ।
ଗୌରବ ଯେ ଜାଣେ ନାହିଁସେହି ହୀନମତି ॥
ଏ ସକଳ ଅସ୍ତ୍ର ବିଦ୍ୟା ଯୁଦ୍ଧର କୌଶଳ ।
ଯାହା ଶିଖିଅଛି ଦେଖାଇବି ମୁଁ ସକଳ ॥
ପିତା ବୋଲିକରି ମୁହିଁ କେବେ ଉପରୋଧ ।
ନ କରିବି ମାତ ତୁମ୍ଭେ କଲେ ଅନୁରୋଧ ॥

ପୂର୍ବଦିଗ ସୂର୍ଯ୍ୟ ଯେବେ ପଶ୍ଚିମେ ଉଇଁବ ।
ତଥାପି ମୋର ପ୍ରତିଜ୍ଞା ଭଙ୍ଗ ନ ହୋଇବ ॥
ବେଶୀ କଥା କହିବାରେ ଆଉ ବେଳନାହିଁ ।
ହୃଦୟ ଦହୁଛି ମାତା ଆଜ୍ଞା ଦିଅ ତୁହି ॥
ତୁମ୍ଭଙ୍କୁ କସ କହିବି କର ଆଶୀର୍ବାଦ ।
ଯେପରି ଘୁଞ୍ଚିବ ମୋର ମନର ବିଷାଦ ॥
ଯହିଁରେ ପିତାଙ୍କ ପୁଅ ବୋଲିଣ ଜାଣିବେ ।
ଜଗତର ଲୋକେ ମୋର ଗୌରବ ଗାଇବେ
ଯେପରି ବୀରଗଣଙ୍କ ମଧ୍ୟେ ନାମ ମୋର ।
ଦୁର୍ନାମ ନ ହେବ ମାତ ସେହି ଅଙ୍ଗୀକର ॥
ଈଶ୍ୱରଙ୍କ ନିକଟରେ ଜଣାଅ ମା ଯାଇ ।
ଯେପରି କରିବି ଜୟ ବାସବ ତନୟୀ ॥
ପ୍ରକୃତରେ ଅର୍ଜୁନଙ୍କ ପୁଅ ବୋଲି ମୁହିଁ ।
ନିଜ ତେଜ ଦେଖାଇବି ସେ ସମର ଭୂଇଁ ॥
ଏବେ ଲବ କୁଶ ନାମ ହୋଇଲା ସ୍ମରଣ ।
ଅକ୍ଷୟ କୀରତି ଯଶ ରଖିଲେ ସେ ପୁଣ ॥
ଧନ୍ୟ ଧନ୍ୟ ବୀର ସେହି ଅପୂର୍ବ ସାହାସ ।
ତାଙ୍କର ଯଶ ଗୁଣରେ ପୃଥିବୀ ଯେ ବଶ ॥
ସର୍ବବେଳେ ତାଙ୍କ ନାମ ଧରନ୍ତି ସକଳେ ।
ତାହାଙ୍କର ନିନ୍ଦା ତଳେ ନୁହେ ଏ ମହୀରେ ॥
ସେମାନଙ୍କ ସମାନ ମୁଁ ହୋଇବାର ପାଇଁ ।
କଲ୍ୟାଣ କର ଜନନୀ ଶିର ବନ୍ଧିବଇଁ ॥
ଶରେ ଶରେ ଅର୍ଜୁନଙ୍କ ସର୍ବ ସୈନ୍ୟଗଣ ।
ତୁଳାରାଶି ସମ ଉଡ଼ାଇବି ଶତେ ଯୂଣି ॥
ପୃଥିବୀରେ ଯଶ ମୁହିଁ କିପରି ରଖିବି ।
ଏହି ନିନ୍ଦା ଅପବାଦୁ ସତେ କି ତରିବି ॥
ଯେବେ ମାତ ତୁମ୍ଭପାଦେ ଥିବ ମୋର ମତି ।
ଯେବେ ମାତ ଅଟ ତୁମ୍ଭେ ମୋହର ଯେ ଗତି
ଯେବେ ମାତ ହୋଇଥିବ ତୁମ୍ଭେ ସତୀନାରୀ ।
ନିଶ୍ଚୟ ଯୁଦ୍ଧରେ ଜୟ ହୋଇବ ମୋହର ॥
ହାୟ କି ଅଧମ ମୁହିଁ ଅଟେ ନୀଚଜନ ।
ମୋ ସମ୍ମୁଖେ ଅପମାନ ଜନନୀର ପୁଣ ॥
ଅକାରଣେ ପାର୍ଥ ପାଦତଳରେ ପଡ଼ିଲି ।
କେତେ ଭର୍ତ୍ସନା କୁକଥା ତାଠାରୁ ଶୁଣିଲି ॥
ପିତାମାତା ନିନ୍ଦା ଶୁଣି ତାର ପ୍ରତିକାର ।
ଯେ ସନ୍ତାନ ନ କରଇ ବୃଥା ଜନ୍ମ ତାର ॥

ଏପରି ପୁତ୍ର ଜନମ ହେବା ଅଟେ ସଲ୍ ।
ତାହାଠାରୁ ବାଞ୍ଝ ହେବା ସଂସାରରେ ଭଲ ॥
ଜନନୀ ଜନମ ଭୂମି ପାଇଁ ଯେଉଁଜନ ।
ନିଜ ଜୀବନ ତେଜଇ ଯାଏ ସ୍ୱର୍ଗଧାମ ॥
ସଂସାରେ ଅସୀମ କୀର୍ତ୍ତି ହୁଅଇ ତାହାର ।
ସତେ କିହି ଘଟାଇବ ଏହା ମୋ କର୍ମର ॥
ଯଦି ରଣେ ପ୍ରାଣ ଯାଏ ତହିଁ କ୍ଷତି ନାହିଁ ।
ମାନ ମାତ୍ର ନିନ୍ଦା ହେତୁ ଜୀବନ ଦହଇ ॥
ଯେ ପର୍ଯ୍ୟନ୍ତ ରଣ କ୍ଷେତ୍ରେ ପାର୍ଥସୁତ ବୋଲି ।
ପରିଚୟ ନ ଦେଇଛୁ ନୁହେ ଧୈର୍ଯ୍ୟ ଧରି ॥
ଏ ହେତୁ ଜନନୀ ମୋତେ ରଣ କରିବାକୁ ।
ଅନୁମତି ଦିଅ ବେଗେ ନ ଭାବ ମନକୁ ॥
ନିଶ୍ଚୟ ତୁମ୍ଭ କୃପାରେ ସମରରେ ମୁହିଁ ।
ଜୟକରି ପାର୍ଥ ପୁତ୍ର ବୋଲି ଦେବି କହି ॥
ଶୁଣିଣ କୁମର ବାଣୀ ଚିତ୍ରାଙ୍ଗଦା ବୋଲେ ।
ଏଡ଼େ ମନ୍ଦବୁଦ୍ଧି ତୋତେ କିଏ ଦେଲାରେ
ଘୋର ଅପମାନ ହେତୁ ଏ ସବୁ ତୁ କହୁ ।
ଭଲମନ୍ଦ ବିବେଚନା ହୃଦରେ ନ ବହୁ ॥
ଜାଣି ଶୁଣି ବାପ କିମ୍ପା ଏତେ କୋପମତି ।
କିପରି ଦେବି ମୁଁ ତୋତେ ମୁହିଁ ଅନୁମତି ॥
କ୍ଷୀଣମ୍ତି ବୁଦ୍ଧି ବିପାକେ ଯେ ଜନ ପଡ଼ଇ ।
ଭଲ ମନ୍ଦ ବିବେଚନା କିଛି ତା ନ ଥାଇ ॥
ତୁହି ବାପ ପାଇଅଛୁ ନାନାଦି ଭର୍ତ୍ସନା ।
ପୁଣି ତୁହି ପାଇଅଛୁ ନାନାଦି ଯାତନା ॥
ତାଙ୍କ ମୁଖେ ମୋର ନିନ୍ଦା ଶୁଣିଛୁ ପ୍ରଚୁର ।
ସେଥିରେ ନାହିଁରେ ବଳା ଅପମାନ ଘୋର ॥
ତାର ପ୍ରତିଶୋଧ ନେବା ପାଇଁ ବାପଧନ ।
କି ସାହସେ ବାଞ୍ଛିଅଛୁ କରିବାକୁ ରଣ ॥
ଜାଣ ବାବୁ ଋଷିମାନେ ଶାସ୍ତ୍ରେ କହିଛନ୍ତି ।
କ୍ଷମାଠାରୁ ବଳି ଧର୍ମ ନାହିଁ ଏ ଧରଣୀ ॥
କ୍ଷମା ଯାର ଥାଏ ଯଶ ତାହାର ଯେ ଥାଇ ।
ସଂସାରରେ କ୍ଷମାଗୁଣ ଶ୍ରେଷ୍ଠ ଯେ ଅଟଇ ॥
ସୁଯଶରେ ସ୍ୱର୍ଗଲାଭ କରିଥାନ୍ତି ନରେ ।
ଅପଯଶ ନରକରେ ବାସ ହୋଏ ତାରେ ॥
ଜାଣି ଶୁଣି ବାତୁଳଙ୍କ ପରାୟେ କୁମର ।
ବାରମ୍ବାର କହୁଅଛୁ ଏସନ ପ୍ରକାର ॥

ଅକାରଣେ ଏତେ ତୁଚ୍ଛ କଥା ତୁ ପିତାଙ୍କୁ ।
କହୁଅଛୁ ଆରେ ବଳା ନ ଭାବୁ ମନକୁ ॥
କେ କାହିଁ ଦେଖିଛୁ ଏହି ଅପୂର୍ବ ଘଟଣ ।
ପିତା ପୁତ୍ର ବେନି ଜନେ କରନ୍ତି ଯେ ରଣ ॥
ଜାଣ ବାବୁ ପାର୍ଥବୀର ସାମାନ୍ୟ ନୁହଇ ।
ତ୍ରିଲୋକ ବୀରଙ୍କ ହୃଦ ଯା ନାମେ କମ୍ପଇ ॥
ଶିବଙ୍କୁ ସନ୍ତୋଷ କରି ପାଶୁପତ ଶର ।
ଅକ୍ଷୟ ତୂଣୀର ଆଦି ପାଇଛି ଅବର ॥
ସେ ଅଟେ ଦୁର୍ଜ୍ଜୟ ବୀର ସଂସାର ମଧ୍ୟରେ ।
ନିବାତକବଚ ଯେହୁ ନାଶିଲେ ସ୍ୱର୍ଗରେ ॥
ଦେବତାଙ୍କ ମଧ୍ୟେ ବଳି ଅଭିଷେକ ହେଲେ ।
ତାଙ୍କ ସହ ଯୁଦ୍ଧ ଇଚ୍ଛୁ ବାପ କେଉଁ ବଳେ ॥
ଏକା ହୋଇ କଲେ ସେହୁ ଖାଣ୍ଡବ ଦହନ ।
ଗୋଧନ ହରଣେ ଜିଣିଲେ ଯେ କୁରୁସୈନ୍ୟ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି କୁରୁସେନା ଯେତେ
ପରାଜୟ କଲେ ଯେହୁ ଅତ୍ୟନ୍ତ ଅଦ୍ଭୁତେ ॥
ଦ୍ରୁପଦ ସଭା ମଧ୍ୟରେ ଲକ୍ଷେ ରାଜା ଜିଣି ।
ଲକ୍ଷ୍ୟବିନ୍ଧି ବିଭାହେଲେ ଦ୍ରୁପଦ ନନ୍ଦିନୀ ॥
ତାହାଙ୍କ ସଙ୍ଗତେ ବଳା କେଉଁ ସାହସରେ ।
ଯୁଦ୍ଧ ତୁ କରିବୁ କହୁଅଛୁ ମୋ ଆଗରେ ॥
ସମାନ ସମାନ ହୁଏ ବିବାଦ ଘୋଷଣ ।
ପ୍ରବଳ ସହ ଦୁର୍ବଳ କରଇ କି ରଣ ॥
ଯେବେ ବା ଦୁର୍ବଳ କ୍ରୋଧେ ସମର କରିବ
ଅକାରଣେ ଯଶ ମାନ ଜୀବନ ତେଜିବ ॥
ଜାଣି ଶୁଣି ଅଗ୍ନି ମୁଖେ ପତଙ୍ଗ ପରାୟେ ।
ପଡିବାକୁ ଇଚ୍ଛାକରୁ ଆରେ ମୋ ତନୟେ ॥
ବାମନ ହୋଇଣ ଚନ୍ଦ୍ର ଧରିବାକୁ ଇଚ୍ଛୁ ।
ଅର୍ଜ୍ଜୁନ ସହ ଯୁଝିବୁ ଏହା ମନେ ପାଞ୍ଚୁ ॥
ଜାଣୁ ତୁହି ସଂସାରରେ ଯେ ଅଟଇ ବୀର ।
ଯା ନାମରେ ସୁରପୁର କମ୍ପେ ଥରହର ॥
ତାଙ୍କ ସହିତରେ ରଣ ଇଚ୍ଛା ତୁ ନ କର ।
ମୋହର ବଚନ ବଳା ମାନରେ ସତ୍ୱର ॥
ପତଙ୍ଗ ପରାୟେ ଅଗ୍ନି ମୁଖେ ତୁହି ଯାଇ ।
ଅର୍ଜ୍ଜୁନ ସୈନ୍ୟରେ ଝାସଦେବୁ କାହିଁପାଇଁ ॥
ତେଣୁ କହେ ଆରେ ପୁତ୍ର ମାନ ମୋ ବଚନ
ତୁହି ଯେ ଅନ୍ଧ ଲଉଡ଼ି ମୋ ରଙ୍କୁଣୀ ଧନ ॥

ସଂଗ୍ରାମରେ କାର୍ଯ୍ୟନାହିଁ ଚାଲ ମୋ ସଙ୍ଗର ।
ନଗର ଛାଡ଼ିଣ ଯିବା ଏକ୍ଷଣି ବନର ॥
ଦେଶେ ଦେଶେ ଗ୍ରାମେ ଗ୍ରାମେ ବୁଲି ଭିକ୍ଷାକରି
ଖୁଆଇଣ ତୋତେ ମୁଁ ରହିବି ଦେହ ଧରି ।
ଏଥିରେ ମୋହର ମନେ କିଛି ଦୁଃଖ ନାହିଁ ।
କେତେବେଳେ ସମରକୁ ନ ପାରେ ପଠାଇ
ଜାଣି ଶୁଣି ବିପଦକୁ କେଉଁପରି ମୁହିଁ ।
ପଠାଇବି ତୋତେ ଆରେ ମୋ ଦୁଃଖୀତନୟ
ଭୁଞ୍ଜିଲଣି ଅଭାଗୀର ଫାଟିଛି କପାଳ ।
ଗ୍ରହମାନ ମନ୍ଦ ମୋର ହୋଇଛନ୍ତି ସକଳ ।
ବିଧି ହୋଇଅଛି ବାମ ନୋହିଲେ କାହିଁକି ।
ପିତାଠାରୁ ଅପମାନ ପାଇଥାନ୍ତୁ ତୁ କି ॥
ସାବିତମାତା ଧାଣନେ ପିତା ଯେବେ ହେ
ପୁତ୍ରର ମଙ୍ଗଳ କେବେ ଘଟଣା ନ ହୁଏ ॥
ଶୁଣ ବାବୁ କର୍ମ ମୋର ଅଟଇ ଯେ ମନ୍ଦ ।
ତେଣୁ ପାଥଦେଲେ ଆଣି ମୋତେ ଏ ବିପଦ
ସାକ୍ଷୀ ଥାଅ ଚନ୍ଦ୍ର ସୂର୍ଯ୍ୟ ଅଷ୍ଟଦିଗପାଳେ ।
ପାର୍ଥ ବିନା ଶତ୍ରୁ ଯେବେ ଥିବ ଅନ୍ୟଠାରେ
ତେବେ ମୋର ଏହିକ୍ଷଣି ହେଉ ଯେ ମରଣ ।
ଅଶେଷ ନରକେ ନେଇ ଦିଅ ହେ କଷଣ ॥
ଯେବେ ମୋର ଧର୍ମେ ମତି ଥିବ ଚିରକାଳ ।
ଅବଶ୍ୟ କରିବେ ଦୟା ପ୍ରଭୁ ଆଦିମୂଳ ॥
ତେଣୁରେ କୁମରମଣି ତୋତେ ମୁଁ କହଇ ।
ମନୁ ସବୁ ଦୁଃଖ ଛାଡ଼ ମୋ ଦୁଃଖୀ ତନୟ ॥
ନିଶ୍ଚୟ ଅର୍ଜୁନ ମନ ପ୍ରଭୁଙ୍କ କୃପାରେ ।
ବଦଳିଣ ଯିବ ସେ ଆସିବେ ତୋ ପାଶରେ ॥
ପୁତ୍ରବୋଲି ନିଶ୍ଚେତୋତେ କୋଳରେ ଧରିଣ
କହିବେ ସେ ବୀରମଣି ଏଥେଁ ନାହିଁ ଆନ ॥
ମାନ ମୋ ବଚନ ବଳା ନ କର ସମର ।
ତାଙ୍କ ସହିତରେ ଯୁଦ୍ଧ ନ ସାଜିବ ତୋର ॥
ଶୁଣିଣ ବଭ୍ରୁବାହନ ମାତାଙ୍କ ବଚନ ।
ବେନି କରଯୋଡ଼ିବୋଲେ ଗୋ ଜନନୀ ଶୁଣ
କାହିଁକି କରୁଛ ଭୟ ମୋହର ନିମିତ୍ତ ।
ଅର୍ଜୁନଙ୍କ ଔରସରେ ଯେବେ ମୋର ଜାତ ॥
ଯେବେ ତୁମ୍ଭେ ଅଟ ମାତ ସତୀ ଶିରୋମଣି ।
କି ଛାର ଅର୍ଜୁନ ନିଚେ ପ୍ରଭୁ ଚକ୍ରପାଣି ॥

ସମରେ ପଶିଲେ ନିଶ୍ଚେ ହାରିବେ ମୋ ତୁଲେ
ତେଣୁ ମାତ ଅନୁମତି ଦିଅ ଆନନ୍ଦରେ ॥
ପ୍ରକାଶିବି ଭୁଜବଳ ପାର୍ଥଙ୍କ ସହିତେ ।
ତେତେସ୍ତେ ବୋଲିକରି ଜାଣିବେ ସେ ମୋତେ
ମରେ ଅବା ମାରେ କିଛି ତହିଁ କ୍ଷତି ନାହିଁ ।
ଅପମାନ ସହି ରହି ନ ପାରିବି ମୁହିଁ ॥
କ୍ଷତ୍ରିୟ ସନ୍ତାନ ହୋଇ ଜାତି ବ୍ୟବହାର ।
ଛାଡ଼ିକି ପାରଇ କେବେ ଅର୍ଜୁନ କୁମର ॥
ଯେବେ ମାତା ପାର୍ଥ ସହ ରଣ ନ କରିବି ।
କାପୁରୁଷ ପରି କିପାଁ ଜୀବନ ଧରିବି ॥
ସମସ୍ତେ ତୁମ୍ଭର ନାମେ କଳଙ୍କ ବହିବେ ।
ବେଶ୍ୟାପୁତ୍ର ବୋଲିମୋତେ ଆବର ବୋଲିବେ
ଏପରି ଶୁଣିଣ ଯାହା ଧରିବ ପରାଣ ।
ତହୁଁ ଶ୍ରେଷ୍ଠତର ଅଟେ ମୋହର ମରଣ ॥
ବୀରମାତା ବୀରପ୍ରସୂ ବୀରନାରୀ ବୋଲି ।
କେହି ନ କହିବେ ଲାଗିବ ତୁମ୍ଭଙ୍କୁ କାଳି ॥
ଗୋ ମାତ ଭାବିଣ ଦେଖ ଆପଣାର ମନେ ।
ଏ ଅପମାନେ ବଞ୍ଚିବି କିପରି ଜୀବନେ ॥
ଅଜି ହେଉ କାଲି ହେଉ ହୋଇବ ମରଣ ।
ତେବେ କିପାଁ ବୃଥା ଛାରେ ଏତେ ଦୁଃଖମନ
ଅମର ହୋଇଣ କେହି ସଂସାରରେ ନାହିଁ ।
ଦେବତା ଦେହ ଧରିଲେ ଅବଶ୍ୟ ମରଇ ॥
ଦୋଷୀ ହୋଇ ମରିବାଟା ନୁହଇ ତ ଭଲ ।
ଯେବେ ଦୋଷ କୁହ ମାତ ଛାଡ଼ିବି ଶରୀର ॥
ନିଜର ନିନ୍ଦାକୁ ଦୂରେ ଘୁଞ୍ଚାଇଣ ଦେଲେ ।
ତଦୁତ୍ତରେ ମୃତ୍ୟୁହେଲେ ଗୌରବ ସଂସାରେ
ମହାବଳୀ ବୋଲି ତୁମ୍ଭେ ଅର୍ଜୁନଙ୍କୁ ଜାଣ ।
ସେଥିଯୋଗୁଁ ମନେ ଭୟ କରୁଅଛ ପୁଣ ॥
ଧର୍ମର ସର୍ବଦା ଜୟ ଅଧର୍ମର କ୍ଷୟ ।
କାଳେ କାଳେ ଏହି କଥା ହୋଇଅଛି ଥୟ ॥
କହୁଅଛ ଯେବେ ମୋର ଧର୍ମେ ଥିବ ମତି ।
ଯେବେ ତୁମ୍ଭେ ପତିବ୍ରତା ହୋଇଥିବ ସତୀ ॥
ଯେବେ ନିଶ୍ଚୟରେ ମୁହିଁ ପାର୍ଥର କୁମର ।
ଜୟ କରିବି ନ ଭାବ ଭଲେହେଁ ମନର ॥
ସମୟ ଅତୀତ ହେଲେ ସମସ୍ତେ ଚଳନ୍ତି ।
କାଳଠାରେ ସାନବଡ଼ ବିଚାର ନୁହନ୍ତି ॥

କାଳର ନିକଟେ ଶ୍ରେଷ୍ଠ ବଡ଼ କେହି ନାହିଁ ।
ଧନୀ ମାନୀ ବଳବାନ ତହିଁ ଏକଠାଇଁ ॥
ଯାକୁ ବଡ଼ ବୀର ବୋଲି କରିଅଛ ମନ ।
ଶ୍ରେଷ୍ଠଠାରେ ନିଶ୍ଚେ ହେବ ତାହାର ପତନ ॥
ବଡ଼ ଧନବାନ ବୋଲି ଯାହାକୁ କହନ୍ତି ।
କାଳବଳେ ସେହି ଭିକ୍ଷା ମାଗିଣ ବୁଲନ୍ତି ॥
ବଡ଼ ବୀର ବୋଲି ଯାର ହୁଏ ଗଉରବ ।
କାଳ ବଳେ ହୋଇଥାଏ ତାର ପରାଭବ ॥
ଶୁଣ ମାତା ଜିତେନ୍ଦ୍ରିୟ ମହା ଯତିବର ।
ଭୀଷ୍ମ ଭୀଷ୍ମ ପରାକ୍ରମ ସମରେ ସୁଧୀର ॥
ଇଚ୍ଛାମୃତ୍ୟୁ ଯାର ପୁଣି ଅବ୍ୟର୍ଥ ସନ୍ଧାନ ।
ଯେ ଧନୁ ଧରିଲେ କମ୍ପେ ତ୍ରିଦଶ ପରାଣ ॥
ମହାବୀର ପର୍ଶୁରାମ କ୍ଷତ୍ରୀୟ ହନ୍ତକ ।
ବାଲ୍ୟ ହରାଇଲେ ଭୀଷ୍ମ ହୋଇଣ ଜମ୍ବୁକ ॥
ପୁଣି ଯେ ଅର୍ଜୁନ କୁରୁକ୍ଷେତ୍ରର ସମରେ ।
କପଟ ଯୁଦ୍ଧେ ନାଶିଲେ ତାହାଙ୍କୁ ସେଠାରେ ॥
କାଳ ବଳେ ଜୟ ପରାଜୟ ଗୋ ଜନନୀ ।
ହୋଇଛି ହୋଇବ କିମ୍ପା ଭାବ ହୃଦେ ପୁଣି ॥
ମାତ ମନେ ଆଶା ମୋର ଜାଣ ଗୋ ଜନନୀ ।
ପାର୍ଥର କି ଶକ୍ତି କୃଷ୍ଣ ହେତୁ ବଡ଼ ପୁଣି ॥
ଯହିଁ ଧର୍ମ ତହିଁ ହରି ଥାଆନ୍ତି ଗୋ ମାତ ।
ଅଧର୍ମ କରୁଛି ପାର୍ଥ ହାରିବ ନିଶ୍ଚିତ ॥
ଯାହାକୁ ଗୋ ମାତ ଶ୍ରେଷ୍ଠ ବୋଲି ଘୃଣାକର ।
ଧର୍ମବଳେ କରିବ ସେ ଗୌରବ ବିସ୍ତାର ॥
ସମ୍ପଦନେ ଏକଭାବେ ନ ଯାଏ କାହାର ।
ଆଜ ଯେ ରାଜେନ୍ଦ୍ର କାଲି ଅଟେ ସେ ଫକୀର ॥
ପତିବ୍ରତା ଶିରୋମଣି ଜନନୀ ଗୋ ମୋର ।
ଯହିଁରେ ହୋଇବ ଜୟ ସେ କଲ୍ୟାଣ କର ॥
ସୁଦର୍ଶନ ଚକ୍ର ବୈଷ୍ଣବାସ୍ତ୍ର ଆଦି ଯେତେ ॥
ତୁମ୍ଭ କଲ୍ୟାଣେ ଶରୀରେ ନ କାଟିବ ମୋତେ
ମୋର ଅମଙ୍ଗଳ ମାତ ମନରେ ନ କର ।
ଆଜ୍ଞାଦିଅ ରଣେ ଯିବି ଦେନି ମା ମୋ ଶିର ॥
ଜିଣିବି ତୁମୁଳ ଯୁଦ୍ଧ ସାଧ ଯେତେଦୂର ।
ଦେଖାଇବି ଅଛି ଯେତେ କ୍ଷମତା ମୋହର ॥
ଚନ୍ଦ୍ରସୂର୍ଯ୍ୟ ଦିଗପାଳ ସାକ୍ଷୀ ଥାଅ ସର୍ବେ ।
ମାତାଙ୍କ ଚରଣ ଧୂଳି ଦେନି କରି ଏବେ ॥

ରଣକୁ ଯାଉଛି ପାଇବାର ଅପମାନ ।
ଯେସନ୍ତେ ମଙ୍ଗଳ କରିବେ ମୋର ଦେବଗଣ ॥
ହୋଇବ ଏକ୍ଷଣି ଶତ୍ରୁ ପାଶେ ଉପସ୍ଥିତ ।
ଧନୁରେ ଶରକୁ ମୁହିଁ ଯୋଖିବ ନିଶ୍ଚିତ ॥
ଗର୍ଜ୍ଜନ ନାଦରେ ମୁହିଁ କମ୍ପାଇବି ମହୀ ।
ବାଣ ବୃଷ୍ଟିରେ ପୃଥିବୀ ପୂର୍ଣ୍ଣ କରିବଇଁ ॥
ଦଶ ଦିଗରେ ଯେତେ ଛନ୍ତି ଦେବଗଣ ।
ସାବଧାନେ ରହିଥାଅ ନୋହି ଭୀତ ମନ ॥
ହେ ଅନନ୍ତ ଧରା ତୁମ୍ଭେ ସ୍ଥିର ହୋଇଥାଅ ।
ସମର ସମୟେ ଦେବି ଶୋଣିତ ସମୂହ ॥
ପାଣ୍ଡବ ସୈନ୍ୟ ରକତ ତୁମ୍ଭର ଶରୀର ।
ସିକ୍ତ କରିବ ପୃଥିବୀ ମାତା ଗୋ ଆବର ॥
ଏହା କହି ବୀରମଣି ମାତାଙ୍କ ଚରଣେ ।
ପ୍ରଣାମ କରିଣ ବାହାରିଲା ତତକ୍ଷଣେ ॥
ଅପମାନ ମାତୃନିନ୍ଦା ମନେ କରି ସେହି ।
କ୍ରୋଧରେ ଯମ ସମାନ ଦେଖାଗଲା ତହିଁ ॥
କେତେବେଳେ ଅର୍ଜୁନଙ୍କୁ କରିବ ନିଧନ ।
ଏସନ ଭାବିଣ ଚଲେ ସେ ବଭ୍ରୁବାହନ ॥
କେତେବେଳେ ନିଜଶକ୍ତି ଦେଖାଇବ ମୁହିଁ ।
ଏକଥା ଭାବିଣ ବୀର ଅଥୟ ହୁଅଇ ॥
ସୈନ୍ୟଙ୍କୁ ଗୁହିଁଣ ବୀର ବେଗେ ଆଜ୍ଞା ଦେଲା ।
ସମସ୍ତେ ସଜ ହୋଇଣ ଯୁଦ୍ଧେ ଚଳ ତ୍ୱରା ॥
ପାଣ୍ଡବ ସୈନ୍ୟଙ୍କୁ ରଣେ କରିଣ ବିନାଶ ।
ପୃଥିବୀରେ ଯଶ ରଖ ଅହେ ବୀର ଈଶ ॥
ଏସନ କହିଣ ବୀର ଚଢ଼ି ରଥବର ।
କ୍ରୋଧେ ବାହାରିଲା ରଣେ ଯେସନ୍ତେ ନାଶକର
ସୈନ୍ୟ କୋଲାହଳେ ଦଶଦିଗ ପୂରିଗଲା ।
ମୈନାଙ୍କଶେକାତ ମହାଦେବ ଯେ ବୋଇଲା ॥

ଇତି ଶ୍ରୀ ଜୈମିନି ଭାରତେ ହରି ଭକ୍ତି
ରସଲୀଳା କଥା ପ୍ରବନ୍ଧେ ନାମ
ଚତୁର୍ବିଂଶୋଽଧ୍ୟାୟଃ ।



## ପଞ୍ଚବିଂଶ ଅଧ୍ୟାୟ

ବ୍ରାହ୍ମଣୋବାଚକଂକୋଽସ୍ମିନ୍କାଲେବେନନ୍ଦ୍ରବାଚକ
ଶିବସ୍ୟ ବାଚକଃ ଯଣ୍ଠ ନକ ଶ୍ରେ ଧର୍ମବାଚକଂ ॥

### ଅର୍ଜୁନଙ୍କ ସହିତରେ
### ବଭ୍ରୁବାହନର ଯୁଦ୍ଧ

ଏଥୁ ଅନ୍ତେ ଜନ୍ମେଜୟ ଯୋଡ଼ି ବେନିକର
ବୋଇଲେ ହେ ମୁନି ମୋତେ କର ପ୍ରତିକାର
ତବ ମୁଖୁ ଶୁଣି ମୁହିଁ ହୋଇବି ପବିତ୍ର ।
ପିତାମହଙ୍କର ମୋର ସକଳ ବୃତ୍ତାନ୍ତ ॥
ଏମନ୍ତ କହିଣ ରାଜା ଅତି ଭକ୍ତିଭରେ ।
ପଡ଼ିଲେ ସେ ଜୈମିନିଙ୍କ ଶ୍ରୀଚରଣ ତଳେ ॥
ରାଜାଙ୍କ ଭକ୍ତି ଦେଖିଣ ବୋଲନ୍ତି ଜୈମିନି ।
ଏଥୁ ଅନ୍ତେ ଯାହା ହେଲା ଶୁଣ ସେ କାହାଣୀ ॥
କିପରି ଘଟିଲା ପିତା ପୁତ୍ରରେ ସମର ।
ସେ ସବୁ ବର୍ଣ୍ଣନା କରି କହେ ଶୁଣ ବୀର ॥
ଅର୍ଜୁନ ବଭ୍ରୁବାହନ କିପରି ସମର ।
କରିଲେ ସେ ସବୁ ମୁହିଁ କରିବି ପ୍ରଚାର ॥
ବଭ୍ରୁବାହ ଜାଣି ଶୁଣି ପିତାଙ୍କ ସହିତ ।
ଯେପରି କରିଲା ଯୁଦ୍ଧ ଶୁଣ ସେ ଚରିତ ॥
ଅର୍ଜୁନ ନନ୍ଦନ କ୍ରୋଧେ କରଇ ଗମନ ।
ସେ ସମୟେ ମାତା ଶୁଣି ବୋଇଲେ ବଚନ ॥
ନ ଯାଅ ଯୁଦ୍ଧକୁ ବାବୁ ମାନ ମୋ ବଚନ
ରଣ କରିବାକୁ ଯିବୁ ପିତାଙ୍କୁ ମାରିଣ ॥
ଏ ବଡ଼ ଅନ୍ୟାୟ କାର୍ଯ୍ୟ ରେ କୁମରମଣି ।
ଜୀବନ ଥାଇ କିପରି ଦେଖିବି ମୁଁ ପୁଣି ॥
ମୋହର ବଚନ ରଖ ରଣେ କାର୍ଯ୍ୟ ନାହିଁ ।
ପିତାଙ୍କ ସହିତ ରଣ କେବେ ନ ଶୋଭଇ ॥
ମାତାଙ୍କ ବଚନ ଶୁଣି ସେ ବଭ୍ରୁବାହନ ।
ବୋଲନ୍ତି ଜନନୀ ଶୁଣ ମୋର ନିବେଦନ ॥
ବାରମ୍ବାର ମନା ମୋତେ ନ କର ଗୋ ମାତ ।
କିପାଇଁ ଭୟରେ ତୁମ୍ଭେ ହୁଅ ବିଚଳିତ ॥
କହୁଛି ନିଶ୍ଚୟ ଛୁଇଁ ମା ତୁମ୍ଭ ଚରଣ ।
ଏ ପିଣ୍ଡରେ ଥିବା ଯାଏ ମୋହର ଜୀବନ ॥
ପାର୍ଥ ସହିତ କରିବି ନିଶ୍ଚେ ଯୁଦ୍ଧ ମୁହିଁ ।
କେତେବେଳେ ଏହି କଥା ଆନ ହେବନାହିଁ
ବାରଣ ମୋତେ ନ କର କରୁଛି ବିନୟ ।
କଲ୍ୟାଣ କର ମା ଯୁଦ୍ଧେ ହେବ ମୋର ଜୟ ॥
ଏବେ ମୋହର ମଙ୍ଗଳ ଭାବ ଗୋ ଜନନୀ ।
ଯୁଦ୍ଧେ ଜୟୀ ହେବି ଆଶୀର୍ବାଦ କର ପୁଣି ॥
ପୁତ୍ରର ବଚନ ଶୁଣି ଚିତ୍ରାଙ୍ଗଦା ସତୀ ।
ଶେଷକୁ ବୋଇଲେ ସେହି ଅର୍ଜୁନର ପ୍ରତି ॥
ଏକାକି ନ ରହିବୁରେ ମୋ ଜୀବନ ଧନ ।
ଏହି ଉପଦେଶ ଦେଲି ତୋତେ ମନେ ଘେନ
ଏହା କହି ମହାସତୀ ବିଷର୍ଣ୍ଣ ମନରେ ।
କ୍ରୋଧ ଶୋକଭରେ ଗଲେ ଆପଣା ନିବରେ
ଏବେ ପାର୍ଥ ପତି ଶୁଣି ବଭ୍ରୁବାହ ସୁତ ।
ଦୁଇଜଣ ମଧ୍ୟୁ କିଏ ନିଶ୍ଚେ ହେବ ହତ ॥
ଉଭୟଙ୍କଠାରେ ସ୍ନେହ ଅଟଇ ସମାନ ।
ଏ ସବୁ ଭାବିଣ ସତୀ ହେଲେ ଅତି ମ୍ଳାନ ॥
ବୋଇଲେରେ ଧାତା ତୋର ମନେଏହାଥିଲା
ଦୁଃଖପରେ ଦୁଃଖ ପୁଣି ମୋତେ ଦେଲୁ ଭଲା ॥
ସହଜେ ଅବଳା ମୁହିଁ କେଉଁ ପରି ପ୍ରାଣ ।
ପତି ପୁତ୍ର ବିହୁନେ ରଖିବି ଏବେ ଜାଣ ॥
କି ଦୁରୁଯୋଗେ ମୋହର ଜନମ ହୋଇଲା ।
କେଉଁ ଦୋଷେ ଏ ବିପଦ ବିହି ଘଟାଇଲା ॥
ଧିକ ମୋର ସତୀପଣ ଧିକ ତପ ମୋର ।
ଧିକ ମୋର ଜନ୍ମ ଯାହା ଘଟିଲା ଭାଗ୍ୟର ॥
ଏପରି ନାନା ପ୍ରକାର ଭାବିଣ ସୁନ୍ଦରୀ ।
ଗୃହେ ରହିଲା ନିଜର କର୍ମକୁ ଆଦରି ॥
ଏଣେ ମାତା ପାଖରୁ ମେଲାଣି ହୋଇ ବୀର ।
ସୈନ୍ୟଙ୍କ ସହିତ କୋପେ ଚଳିଲା କୁମର ॥
କ୍ରୋଧେ ଧନୁ ଟଙ୍କାରଇ ଗର୍ବେ ବୀରମଣି ।
ସତେକି ମନ୍ଦର ଗିରି ଜଡ଼ିବ ଏକ୍ଷଣି ॥
ଅର୍ଜୁନେ ଅନ୍ୱେଷି କ୍ରୋଧେ ଚଳେ ବୀରବର
ଅନୁକ୍ଷଣ କମ୍ପମାନ ହୁଏ ଅଙ୍ଗ ତାର ॥
ମନ୍ଦାର ଫୁଲ ପଗଡ଼ୀ ଦିଶେ ବେନି ନେତ୍ର ।
ସତେ କି କାଳଦେବତା ହେଲା ଉପସ୍ଥିତ ॥
ପ୍ରଳୟ କାଳ ସମାନ ଭୀମରୂପ ଧରେ ।
ଚକ୍ଷୁ ନାହିଁକାରୁ ସଦା ଅଗ୍ନି ଓଜ ବାହାରେ

ଏସନ ଭାବ ମୂରତି ଧରିଣ ପ୍ରବେଶ ।
ବେଗେ ହେଲା ସୈନ୍ୟ ମଧ୍ୟେ ଯାଇ ବୀରଈଶ
ବିଧାତାର ଗତି କେ ଖଣ୍ଡନ କରିପାରେ ।
ତା ନ ହେଲେ ପାର୍ଥ ଦେଖି ଆପଣା ପୁତ୍ରରେ
ସ୍ନେହ ଦୟା ମାୟା ସବୁ କିଛି ନ କରିଣ ।
ଦର୍ପଭରେ କ୍ରୋଧହୋଇ କରନ୍ତେ ଭର୍ତ୍ସନ ॥
ନାନାବିଧ ପ୍ରକାରେଗାଳି ତାହାଙ୍କୁ ସେ ଦେଲେ
ଯେ ଯେତେ କହିଲା ବୀର କିଛି ନ ଶୁଣିଲେ
ଶେଷେ ପାଦରେ ପ୍ରହାର କରିଲେ ତାହାଙ୍କୁ ।
ଦୈବ ବାମେ କରନ୍ତି ଯେ ଏପରି କର୍ମକୁ ॥
ପୂର୍ବେ ଜ୍ୱାଳା ବାକ୍ୟେଗଙ୍ଗା ପାର୍ଥେଶାପଦେଲା
ତାହା ଅଣି ଭାଗ୍ୟ ବିହି ଏବେ ଘଟାଇଲା ॥
ଜୀବଙ୍କୁ ଜନମ କରି ଦୟାମୟ ହରି ।
କର୍ମରେ ଲେଖି ଅଛନ୍ତି ଯେ ସବୁ ଯାହାରି ॥
ସେ ସକଳ କଥା କେବେ ଅନ୍ୟଥା ନୋହିବ
ପୂର୍ବ କୃତ ଫଳ ନର ନିଶ୍ଚୟ ଭୋଗିବ ॥
ଈଶ୍ୱର ଇଚ୍ଛାରେ ସର୍ବ ଘଟଇ ସଂସାରେ ।
କିଏ କାନ୍ଦେ କିଏ ହସେ ସଂସାର ମଧ୍ୟରେ ॥
ଏହିପରି ଗୋଳ ଲାଗିଅଛି ସଦାବେଳେ ।
ଆପଣା ଶକ୍ତିରେ ଜୀବ କିଛିହିଁ ନ କରେ ॥
ଈଶ୍ୱରଙ୍କ ଖେଳଘର ଏ ଧରା ଅଟଇ ।
କିଏ ସେ ବୁଝିବ ତା ମନୁଷ୍ୟ ଜନ୍ମ ହୋଇ ॥
ତାହାଙ୍କ ଇଚ୍ଛାରେ ନର ସଂସାରେ ବଞ୍ଚଇ ।
ତାଙ୍କ ଅକୃପାରେ ପିଣ୍ଡୁ ପ୍ରାଣ ଛାଡ଼ି ଯାଇ ॥
ବଳବାନ ଲୋକ କିବା ହୀନବଳ ନର ।
ସମସ୍ତେ ଚଳିବେ ଦିନେ ନିଶ୍ଚେ ଯମପୁର ॥
ତେଣୁକରି ଏ ଧରାକୁ ମର୍ତ୍ତ୍ୟଭୂମି କହି ।
ଦେବତା ଦେହ ଧରିଲେ ନିଶ୍ଚୟ ମରଇ ॥
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚାରି ଜାତି ।
ତାଙ୍କ ଆଜ୍ଞାବଳେ ସର୍ବେ ସଂସାରେ ଚଳନ୍ତି ॥
ମାତ୍ର ଏମାନଙ୍କ ମଧ୍ୟେ ଭେଦାଭେଦ ନାହିଁ ।
ପୂର୍ବ ଋଷିମାନେ ଏହା ସ୍ଥିର କରିଛନ୍ତି ॥
ଯାହା ହେଉ ନରସୃଷ୍ଟି ସଂସାରରେ ସାର ।
ଧର୍ମାଧର୍ମ ବିଚେତନା ଶକ୍ତି ଅଛି ତାର ॥
କେଉଁଠାରେ ବଳବାନ ହାତରେ ଦୁର୍ବଳ ।
ପରାସ୍ତ ହୋଇଣ ଚଳେ ଶମନର ଅଳ ॥

କେତେବେଳେ ବଳବାନ ଦୁର୍ବଳ ହାତରେ
ପରାସ୍ତ ହୁଅଇ ଦେଖାଯାଏ ଜଗତରେ ॥
ଏ ସମସ୍ତ ଭିଆଣ ଯେ ଈଶ୍ୱରଙ୍କ ଜାଣ ।
ଯାହାକୁ ଯାହା କରନ୍ତି ତାଙ୍କ ଇଚ୍ଛାରେଣ ॥
ଭାଗ୍ୟଚକ୍ର ସଦାବେଳେ ଘୂରୁ ଯେ ଅଛଇ ।
ସୁଖ ଦୁଃଖେ ଧାତା ତାହା ନିର୍ମାଣି ଅଛଇ ॥
କେତେବେଳେ ଜାହା ଭାଗ୍ୟେ କେଉଁ ଭାଗ ପଡ଼େ
ସେହି ଅନୁସାରେ ପ୍ରାଣୀ ଏ ସଂସାରେ କ୍ରୀଡ଼େ
ଜଣା ଯାଏ ଆଜ ସେହି ଚକ୍ର ନିୟମରେ ।
ଦୁଃଖଭାଗ ପଡ଼ିଅଛି ଅର୍ଜ୍ଜୁନ ଭାଗ୍ୟରେ ॥
ନୋହିଲେ ଏଡ଼େ ଚତୁର ହୋଇ ପାର୍ଥବୀର
ବଭ୍ରୁବାହନେ କରନ୍ତେ ମନ୍ଦ ବ୍ୟବହାର ॥
ପୂର୍ବଶାପ ଘଟନାର ସମୟ ଜାଣିଣ ।
ଅର୍ଜ୍ଜୁନଙ୍କ ସୁବିବେକ ହୋଇଅଛି ଭ୍ରମ ॥
ଯେ ନାରୀ ସହିତ ଥରେ ଅଳାପ ହୁଅଇ ।
ମରଣ ପର୍ଯ୍ୟନ୍ତ ତାହା ଭୁଲି ହୁଏ ନାହିଁ ॥
ଚିତ୍ରାଙ୍ଗଦା ସହବାସେ ରହି ଏତେ ଦିନ ।
କିପାଇଁ ପାର୍ଥ ତାହାକୁ ଯାଆନ୍ତେ ଭୁଲିଣ ॥
ବିଧାତା ବାମ ହୋଇଲେ ଏସନ ଘଟଇ ।
ଏଡ଼େ ସମ୍ବନ୍ଧ କି କେବେ ଯାଆନ୍ତା ଭୁଲିହୋଇ
ତା ନୋହିଲେ ଭୁଲିଯାଇ ବୀର ଅର୍ଜ୍ଜୁନ ।
କୁମରକୁ ବୋଲିଥାନ୍ତେ କିପାଁ କୁବଚନ ॥
ଏମନ୍ତେ ବଭ୍ରୁବାହ ବୀର ପାର୍ଥ ନିକଟରେ ।
ସୈନ୍ୟସହ ପ୍ରବେଶିଲେ ଅତ୍ୟନ୍ତ ରାଗରେ ॥
ରଣବାଦ୍ୟ ମୁଖରାଗ ସୈନ୍ୟ କୋଳାହଳ ।
ସମୁଦ୍ର ଗର୍ଜ୍ଜନ ପରି ଶୁଣି ପାର୍ଥବୀର ॥
ନିଜ ସୈନ୍ୟଙ୍କୁ ବୋଇଲେ ସାଜ ହେ ସକଳେ
ଶତ୍ରୁ ଆସି ଉପସ୍ଥିତ ହେଲା ନିକଟରେ ॥
ଆଜ୍ଞାମାନେ ସର୍ବ ବୀରେ ମାତିଣ ଉଠିଲେ ।
ସମୁଦ୍ର ଗର୍ଜ୍ଜନ ପରି ଘୋର ନାଦ କଲେ ॥
ଶେଲଶୂଳ ଚକ୍ର ଆଦି ଅସ୍ତ୍ର ଶସ୍ତ୍ରମାନ ।
ଦେଖିଲେ ଆସନ୍ତି ଧରି ବଭ୍ରୁବାହ ସୈନ୍ୟ ॥
ଘନ ଘନ ରଣବାଦ୍ୟ ସେଠାରେ ବାଜିଲା ।
ବାସୁକୀ ନାଗର ଫଣା ଟଳମଳ ହେଲା ॥
ଦଶଦିଗ ଅନ୍ଧକାର ହୋଇଲା ତକ୍ଷଣ ।
ସୈନ୍ୟ ପାଦଧୂଳି ଉଡ଼ି ଘୋଟିଲା ଗଗନ ॥

କେତେ ସୈନ୍ୟ ବଭ୍ରୁବାହ ସଙ୍ଗରେ ଅଛନ୍ତି
ରଥ ଗଜ ଅଶ୍ୱମାନ ଗଣି ନ ହୁଅନ୍ତି ॥
ଏହାପରେ ରଣସଜ୍ଜା ଗମ୍ଭୀର ଗର୍ଜ୍ଜନ ।
ଶୁଣିଣ ପାଣ୍ଡବ ସୈନ୍ୟ ଅସ୍ଥିର ତକ୍ଷଣ ॥
ଭାବିଲେ ହୋଇବ ଘୋର ଯୁଦ୍ଧ ଯେ ଏଠାରେ
ବୃଥାରେ ସମୟ ନେବା ନୁହଇ ବିଧିରେ ॥
ଏହି କଥା କହି ସର୍ବେ ଦେଲେ ଯେ ହୁଙ୍କାର
ଧାମନ୍ତି ଅସଂଖ୍ୟ ସୈନ୍ୟ କରି ମାର ମାର ॥
ନିଜ ନିଜ ବାହନରେ ଆରୋହଣ କଲେ ।
ଆନନ୍ଦ ମନରେ ସମରକୁ ବାହାରିଲେ ॥
ଶେଲ ଶୂଳ ଖଣ୍ଡା ଅସ୍ତ୍ର ଭୁଷଣ୍ଡୀ ତୋମର ।
ଘେନିଲେ ଯେତେକ ସଂଖ୍ୟା କେ କଳିବ ତାର
ସମସ୍ତଙ୍କ ଆଗେ ବୀର କର୍ଣ୍ଣର ନନ୍ଦନ ।
ଧନୁ ଟଙ୍କାର କରିଣ ରଥ ଆରୋହଣ ॥
ବାହାରିଲେ ବୀରମଣି ଯୁଝିବାର ପାଇଁ ।
ହସ୍ତରେ ବିଶାଳ ଧନୁ ଟଙ୍କାରିଣ ସେହି ॥
କ୍ରୋଧେ ଶରଗଣ ବୀରବର ପ୍ରହାରିଲେ ।
ଗୃହଦଗ ଅନ୍ଧକାର ଶରରେ କରିଲେ ॥
ଦେଖିଣ ବଭ୍ରୁବାହନ ସଇନ ସକଳ ।
ମନେ ବଡ଼ ଭୟ କଲେ ସଂଗ୍ରାମର ସ୍ଥଳ ॥
ଏମନ ଦେଖିଣ ସେହି ବଭ୍ରୁବାହ ବୀର ।
ହର୍ଷିଣ ମିଳିଲେ ବୃଷକେତୁର ପାଶର ॥
କ୍ରୋଧେ ଟଙ୍କାର କରିଲେ ଆପଣା ଧନୁକୁ ।
ସମସ୍ତେ ସ୍ତବ୍ଧ ହୋଇଲେ ଶୁଣି ସେ ଶବ୍ଦକୁ
ନିମିଷକେ ଅନ୍ଧକାର ହୋଇଲା ଗଗନ ।
ପ୍ରଳୟ ହେବ ଭାବିଲେ ସକଳ ସଇନ ॥
ନିଜଦଳ ଶତ୍ରୁଦଳ ଜଣାଯାଏ ନାହିଁ ।
ଶ୍ରାବଣ ବରଷା ପରି ଶର ପଡ଼େ ମହୀ ॥
ଭୟଙ୍କର ଯୁଦ୍ଧ ଦୁଇ ବୀରେ ଯେ କରନ୍ତି ।
ଦୁହିଁଙ୍କର ଶରଶିକ୍ଷା ଦୁହେଁ ପ୍ରକାଶନ୍ତି ॥
ମାରମାର ଧର ଧର ଶବ୍ଦେ କମ୍ପେ ଧରା ।
ଏକାଳେ ବଭ୍ରୁବାହନ ହୋଇ ଅତି ତ୍ୱରା ॥
ହୋଇଲା ବିଷମ ଯୁଦ୍ଧ ବେନି ଦଳଙ୍କର ।
ସମସ୍ତେତ ଯୁଦ୍ଧ ପ୍ରିୟ ଅତି ଭୟଙ୍କର ॥
ପରସ୍ପର ଧରାଧରି ହଣାହଣି ହେଲେ ।
ଦ୍ୱାନ୍ଦ ଦଅତଦଳ ହୋଇ ଯୁଦ୍ଧ ଆରମ୍ଭିଲେ ॥

କେହି ଅସ୍ତ୍ରଧରି ମାରେ କେମାରେ ତୋମର
ଅସ୍ତ୍ର ତେଜି ମଲ୍ଲଯୁଦ୍ଧ କରନ୍ତି କେ ବୀର ॥
ପଡ଼ନ୍ତି ଅସଂଖ୍ୟ ସୈନ୍ୟ ସଂଗ୍ରାମ ଭୂମିରେ ।
ନାଚନ୍ତି କବନ୍ଧଗଣେ ଦେଖନ୍ତି ଅମରେ ॥
ବହିଲା ରକତ ନଈ ଭାସି ଗଲେ ମଡ଼ା ।
ଶୃଗାଳ ଯେ ଖାଇବାକୁ ହେଲେ ଧରାପଡ଼ା ॥
କେହି ଅଶ୍ୱ ଦଉଡ଼ିକୁ ଧରି ଓଟାରଇ ।
କେହି ଡେଇଁ ଯାଇ ଗଜ ଉପରେ ବସଇ ॥
ମାହୁନ୍ତର ମୁଣ୍ଡଧରି ମୋଡ଼ଇ କେ ବୀର ।
ଏହାପରି ଘୋର ଯୁଦ୍ଧ କରନ୍ତି ସେଠାରେ ॥
ବେନିଙ୍କରେ କ୍ରୋଧଭରେ ପ୍ରହାରନ୍ତି ଶର ।
କେହି କାହାଠାରୁ ଊଣା ନୁହେ ସମରର ॥
ଦୁହିଙ୍କ ବାଣଘାତରେ ଦୁଇଦଳ ସୈନ୍ୟ ।
ଅକାଳରେ ଆହା ସେହି ତେଜିଲେ ପରାଣ॥
ମଡ଼ାର ଉପରେ ମଡ଼ା ପଡ଼ିଲେ ବହୁତ ।
ଜାତ କି ହୋଇଲା ତହିଁ ଅନେକ ପର୍ବତ ॥
ସେହି ରଣଭୂମି ବୁଡ଼ିଗଲା ରୁଧିରରେ ।
ପ୍ରବଳ ରକତ ସ୍ରୋତ ବହିଲା ସେଠାରେ ॥
ପଲାଶ କୁସୁମେ ବନସ୍ଥଳୀ ଶୋହେ ଯଥା ।
ସେ ସମୟେ ରଣଭୂମି ବିରାଜିଲା ତଥା ॥
ସାଗର ଗାମିନୀ ସେହି ଶୋଣିତ ସରିତେ ।
ନାବ ପ୍ରାୟ ଭାସିଗଲେ ଅଶ୍ୱ ଗଜ ଯୂଥେ ॥
ଶୈବାଳ ପରାୟେ ଦିଶେ ତହିଁ କୁନ୍ତକେଶ ।
ମୁଣ୍ଡମାଳ ଦେଖାଯାଏ ମରାଳ ସଦୃଶ ॥
କି କରିବେ କେତେଣେ ଯିବେ କରୁପେ ଜୀବନ
ରଖିବେ ବୋଲି ସେ ସର୍ବେ ହେଲେ ଭୀତମନ
ବଭ୍ରୁବାହ ଶରେ ସର୍ବ ହୋଇଲେ କାତର ।
ଏ ସମୟେ ବୀରବର କର୍ଣ୍ଣଙ୍କ କୁମର ॥
ବରୁଣାସ୍ତ୍ର ଧନୁରେ ସେ ନେଇଣ ଯୋଖିଲେ
ମନ୍ତ୍ରେ ଅଭିଷେକ କରି ବେଗେ ଛାଡ଼ିଦେଲେ
ହୋଇଲା ପ୍ରବଳ ବର୍ଷା ଲିଭିଲା ଅନଳ ।
ନିମିଷ ମଧ୍ୟରେ ଧରା ହୋଇଲା ଶୀତଳ ॥
ବାଣ ବ୍ୟର୍ଥ ଦେଖି କୋପେ ଅର୍ଜ୍ଜୁନ ନନ୍ଦନ
ପବନାସ୍ତ୍ରେ ଉଡ଼ାଇଲେ ବରୁଣାସ୍ତ୍ର ପୁଣି ॥
ଦେଖିଣ କ୍ରୋଧରେ ତହୁଁ ବୃଷକେତୁ ବୀର।
ମନ୍ତ୍ରପଢ଼ି ଛାଡିଦେଲେ ନାଗପାଶ ଶର ॥

ସେ ବାଣରୁ ଭୟଙ୍କର ସର୍ପ ଜାତ ହେଲେ ।
ଫୁଫୁକାର ଧ୍ୱନିକରି ଚୌଦିଗେ ଧାଇଁଲେ ॥
ନିଶ୍ୱାସରୁ ବହେ ବାୟୁ ଯେହ୍ନେ ହୁତାଶନ ।
ବିଷଜ୍ୱାଳାରେ ବିନାଶ ହେବେ ତ୍ରିଭୁବନ ॥
ଦେଖିଣ ଏସନ ଗତି ବଭ୍ରୁବାହ ବୀର ।
ଗରୁଡ଼ାସ୍ତ୍ର ନିକ୍ଷେପିଲେ ହୋଇ କ୍ରୋଧଭର ॥
ଗରୁଡ଼ ଦେଖିଣ ନାଗେ ପଳାଇଣ ଗଲେ ।
ପାତାଳ ବିବରେ ପଶି ଜୀବନ ରଖିଲେ ॥
କେତେ ସର୍ପ ନାଶ ହେଲେ ଗରୁଡ ହସ୍ତରେ
ପଳାଇଣ କେତେ ଗଲେ କେବା ଗଣିପାରେ ॥
ବାଣ ବ୍ୟର୍ଥ ହେବା ଦେଖି କର୍ଣ୍ଣର ନନ୍ଦନ ।
ଅନ୍ୟ ଏକ ତୀକ୍ଷ୍ଣଶର ମାଇଲେ ତକ୍ଷଣ ॥
ଦୂରୁଦେଖି ତାହା ନିବାରିଲେ ପାର୍ଥସୁତ ।
ବ୍ରହ୍ମ ଅସ୍ତ୍ର ଗୁଣେ ବସାଇଲେ ସେ ତ୍ୱରିତ ॥
ମନ୍ତ୍ରେ ଅଭିଷେକ କରି ବେଗେ ଛାଡ଼ିଦେଲେ
ଆନନ୍ଦ ମନରେ ବୀର ଅନାଇଁ ରହିଲେ ॥
ବାଣମୁଖୁଁ ଅଗ୍ନିକଣା ହୁଅଇ ବାହାର ।
ଦେଖିଣ ଚକିତ ହେଲେ ବୃଷକେତୁ ବୀର ॥
ବାଣ କାଟିବାକୁ ଯେତେ ପ୍ରତିଅସ୍ତ୍ର କଲେ ।
ବାଣମୁଖେ ପଡ଼ି ଜଳିଗଲା ସେ ସତ୍ୱରେ ॥
ଗୃହ୍ନି ଗୃହ୍ନି ଅହା ସେହି ନିଦାରୁଣ ଶର ।
ବୃଷକେତୁର ଉପରେ ପଡ଼ିଲା ସତ୍ୱର ॥
ଧନୁ ତେଜି ବୀରବର ଅଚେତନ ହେଲେ ।
ତହୁଁ ବଭ୍ରୁବାହନ ଯେ ସିଂହରଡ଼ି ଦେଲେ ॥
ସିଂହନାଦ ଦେଇ ବୀର ମାରେ ଶରଗଣ ।
ନାଶେ ଯେ ଅସଂଖ୍ୟସୈନ୍ୟ ଯେସନ୍ତେ ଜନ୍ତୁଗଣ
ଅର୍ଜୁନଙ୍କ ସୈନ୍ୟେ ମହା ଆତଙ୍କ ପଡ଼ିଲା ।
ଦେଖି ଶାମ୍ବବୀର କ୍ରୋଧେ ଅଗଭର ହେଲା ॥
କ୍ରୋଧେ ଡ଼ାକଦେଇ ବୋଲେ ଶୁଣ ବୀରବର
ସ୍ଥିର ହୋଇ ମୋ ସହିତ କର ତୁ ସମର ॥
ଯେତେଦୂର ବୀରପଣ ସଂଗ୍ରାମରେ ତୋର ।
ଜାଣିଥିଲୁ ଦେଖାଇଲୁ ତହିଁ ବୀରବର ॥
ଶେଲ ଶୂଳ ଜଠାକାଠି ପରଶୁ ମୁଦ୍‌ଗର ।
ଭିନ୍ଦିପାଳ ଲୌହ ଗଦା ପଟ୍ଟିଶ ତୋମର ॥
ଏକେ ଏକେ ବହୁବାଣ କଲେ ସନ୍ଧାନ ।
ତା ସବୁ ହେଲେ କାଟିଣ ଅର୍ଜୁନ ନନ୍ଦନ ॥

ଶେଷେ ବୀରବର ସେହି ଅର୍ଜୁନ କୁମର ।
କ୍ରୋଧେ ପ୍ରହାର କରିଲା କାଳାନ୍ତକ ଶର ॥
ସେ ଶରକୁ ନିବାରି ନ ପାରି ଶାମ୍ବ ବୀର ।
ଯେତେ ପ୍ରତିଅସ୍ତ୍ର କଲେ ହୋଇଲା ବିଫଳ ॥
ଅହା ସେହି ନିଦାରୁଣ ଶର ବେଗେ ଚଲି
ଶାମ୍ବବୀରର ଉପରେ ଯାଇଣ ପଡ଼ିଲା ॥
ସେ ଶର ଆଘାତ ପାଇ କୃଷ୍ଣଙ୍କ କୁମର ।
ରଥ ସହିତ ପଡ଼ିଲେ ଯାଇ ବହୁଦୂର ॥
ସେ ଆଘାତେ ଅଶ୍ୱସହ ରଥ ଚୂର୍ଣ୍ଣ ହେଲା ।
ଅଣଚାଶ ବାୟୁ କିବା ସେଠାରେ ବହିଲା ॥
ପଡିଣ ମୂର୍ଚ୍ଛା ହୋଇଲା ଶାମ୍ବ ବୀରବର ।
ଚେତ ଉଠି ବୃଷକେତୁ କଲା ମହାମାର ॥
କ୍ରୋଧେ ମାରେ ଶର କାଳଦେବତା ସମାନ
ଅନୁକ୍ଷଣେ ବାଣ ପଡ଼େ ନୁହଇ ବାରଣ ॥
ଗୃହ୍ନି ଗୃହ୍ନି ବାଣ ପଡେ କହିବାକୁ ବେଳ ।
ଆଜି ରଣେ ରକ୍ଷା ନାହିଁ ଭାବେ ସୈନ୍ୟବଳ
ଏସନ ଭାବିଣ ସୈନ୍ୟ କାତର ହୋଇଲେ ।
ଦେଖି ତାହା ପାର୍ଥସୁତ ପ୍ରତିଅସ୍ତ୍ର କଲେ ॥
ଶର କାଟି ଶରମାରେ ବଭ୍ରୁବାହ ବୀର ।
ଶ୍ରାବଣର ବରଷା କି ହୋଇଲା ସେଠାର ॥
ସେ ଶରକୁ ନିବାରଣ ପାଇଁ କର୍ଣ୍ଣସୁତ ।
ପ୍ରତିଅସ୍ତ୍ର କରି ବୀର କାଟନ୍ତି ବହୁତ ॥
କି ହେବ କାଟିଲେ ବୀର କୋଟି କୋଟିଶର
ମାରିଣ ଅଥୟ କଲା ସଇନ ସକଳ ॥
ବଡ଼ ବଡ଼ ରଥିମାନେ ଯମପୁର ଗଲେ ।
କେତେ ସୈନ୍ୟ ମଲେ ତହିଁ କିଏ ଗଣିପାରେ
ତଥାପି ତୁହାଇ ତୁହାଇଣ ବାଣଚଣ ।
କ୍ରୋଧଭରେ ମାରେ ବୀର ଅର୍ଜୁନ ନନ୍ଦନ ॥
ବାଣତେଜ ଦେଖି ସର୍ବେ ବ୍ୟଥିତ ହୋଇଲେ
କାଳଦେବତା ପରାଏ ତାହାଙ୍କୁ ଦେଖିଲେ ।
ରଣଭୂମି ଆଉ ଫେରି ନ ଗୃହାନ୍ତି କେହି ।
କପରି ରଖିବେ ପ୍ରାଣ ଭାବନ୍ତି ସେ ତହିଁ ॥
ମନେ ମନେ ଏହି କଥା କଲେ ସେ ଧାରଣ
ନିଶ୍ଚୟ ଏ ରଣେ ଆଜି ସନ୍ଦେହ ଜୀବନ ॥
ନିଜ ରାଜ୍ୟ ନିଜ ଦେଶ ଧନରତ୍ନ ଆଦି ।
ସବୁ ଛାଡ଼ି ଧୂଳିଅଛୁ ନାନାଦେଶ ଖେଦି ॥

ଅନେକ ସ୍ଥାନରେ ବହୁ ରଣ ଯେ କରିଲୁ ।
ଏହାପରି ଯୋଦ୍ଧା ନୟନରେ ନ ଦେଖିଲୁ ॥
କି କରିବା କେଉଁଣେ ଯିବା ନ ଦିଶଇ ବୁଦ୍ଧି ।
ଏ ବିପଦେ ସାହା ହୁଅ ଅହେ ଦୟାନିଧି ॥
ଅକାରଣେ ବଳି ଭୀର ରଣରେ ମାତିଲେ ।
ମିଥ୍ୟା ମୂଢ଼ ପରାୟେ କଷ୍ଟା ମରିବା ଦୁଆରେ ॥
ବୀରପଣ ଦେଖାଇଣ କେତେ ଦେଶ ଜୟ ।
କରିଅଛୁ ତାର ସଂଖ୍ୟା ନୋହିବ ନିଶ୍ଚୟ ॥
ତ୍ରିଲୋକ ଜାଣନ୍ତି ବୀରବର ପାଣ୍ଡୁ ସୈନ୍ୟ ।
ସମରରେ କାହାକୁ ନ କରନ୍ତି ଗଣନ ॥
କାହାଠାରୁ କେବେ ପାଇ ନାହୁଁ ଅପମାନ ।
ଆଜ ଏ କି ସର୍ବନାଶ ମହା ଦୁର୍ଲକ୍ଷଣ ॥
ଜର୍ଜର ହୋଇଲୁ ତନୁ ଭୀଷଣ ଶରଘାତେ ।
ଅସ୍ଥିର ହୁଅଇ ପ୍ରାଣ ବିଷମ ଆଘାତେ ॥
ଦେହଯାକ ରକତରେ ହୋଇ ଜରଜର ।
ସମ୍ମୁଖେ ଯିବାକୁ ମାତ୍ରୁ ଅଛଇ ଯେ ଡ଼ର ।
ଏପରି ଭାବନା କରି ଅର୍ଜୁନର ସୈନ୍ୟ ।
ପ୍ରାଣରକ୍ଷା ଭୟେ ଯୁଦ୍ଧେ ନୁହନ୍ତି ଗମନ ॥
ପ୍ରାଣଭୟେ କେତେ ବୀର ପାଦ ନ ଚଳଇ ।
କେତେ କେତେ ବୀର ଅଚେତନ ହୋଇଛଇଁ
ଜୀବନ ସଂଶୟ ଦେଖି ରୋଦନ କରନ୍ତି ।
ବିଧାତା ନିନ୍ଦି କପାଳେ ହସ୍ତକୁ ମାରନ୍ତି ॥
ସୈନ୍ୟଗଣ ଭୟେ ଇତସ୍ତତ ହେବା ଦେଖି
କ୍ରୋଧେ ସାତ୍ୟକୀ ଆସିଲେ ରହୁବର ଠେକି
ଅର୍ଜୁନ ନନ୍ଦନ ଆଗେ ପ୍ରବେଶ ହୋଇଲେ ।
କ୍ରୋଧେ ବୀର ବାଣମାନ ହୁଙ୍କାରି ଛାଡ଼ିଲେ
ଘନ ଘନ ହୁଂହୁଂକାର ପ୍ରଳୟ ଗର୍ଜନ ।
ଅବିଶ୍ରାନ୍ତ ଦୁହିଁଙ୍କର ବାଣ ବରଷଣ ।
ଶର ଆଘାତରେ କେହୁ ରହି ନ ପାରନ୍ତି ।
ବେନି ସିଂହ ପ୍ରାୟେ ଦୁହେଁ ସେଠାରେ ଦିଶନ୍ତି
ଅବିଶ୍ରାନ୍ତ ରକ୍ତଧାର ଶରୀରୁ ଗଳଇ ।
ତଥାପି ଶର ମାରନ୍ତି ତୁହାଇ ତୁହାଇ ॥
ଅଶ୍ୱହସ୍ତୀ କେତେ ପଡ଼େ କେ କରେ ଗଣନ
କେତେ ରଥୀ କ୍ଷୟଯାଏ ନୁହେ ତାହା ଜଣା
କାଦୁଅ ରୁଧିରମୟ ହେଲା ରଣସ୍ଥାନ ।
ଚୌଦିଗେ ମଡ଼ା ଖାଆନ୍ତି ଗୃଧ୍ର ଶ୍ୱାନଗଣ ॥

ଶୃଗାଳପେଚକ ଯୋଗିନୀ ଆସି ସେ ସ୍ଥାନରେ ।
ନର ରକ୍ତ ପାନ କଲେ ଆନନ୍ଦ ମନରେ ॥
ହି ହି ହସିକରି ସର୍ବ ଯୋଗିନୀଗଣ ।
ସୈନ୍ୟଙ୍କର ମୁଣ୍ଡମାନ କରନ୍ତି ଚର୍ବଣ ॥
ବଡ଼ ବଡ଼ ଯୋଦ୍ଧାମାନେ ସାହସେ ଆସିଲେ
କି ଯୁଦ୍ଧ କରିବେ ବାଣ ତେଜେ ପଳାଇଲେ
ଥାଉ ସେ ଅନ୍ୟର କଥା ଯୌବନାଶ୍ୱ ବୀର ।
ଅନୁଶାଲ୍ୟ ବୃଷକେତୁ ସଂଗ୍ରାମ ସୁଧୀର ॥
ସାତ୍ୟକୀ ସହିତ ହଂସଧ୍ୱଜ ନୀଳଧ୍ୱଜ ।
ଶାମ୍ବ ସହିତେ ଯୁଝିଲେ କ୍ଷତ୍ରିୟ ସମାଜ ॥
କ୍ରମେ କ୍ରମେ ଏକେ ଏକେ ଆସି ଯୁଦ୍ଧକଲେ
ଅର୍ଜୁନ ନନ୍ଦନ ଜିଣେ ତାଙ୍କୁ ସହଜରେ ॥
ପରାଭବ ପାଇ ସର୍ବେ ପଳାଇଣ ଗଲେ ।
ଭୟରେ ସମ୍ମୁଖେ କେହୁ ଠିଆ ନ ହୋଇଲେ
କ୍ରମେ ଯେତେ ଥର ଆସି ସମର କରନ୍ତି ।
ବାଣତେଜେ ବାଣା ଘାତେ ଜର୍ଜର ହୁଅନ୍ତି ॥
ଯେତେ ଯେତେ ଶରମାନ ମାରୁଛନ୍ତି ବୀର ।
ଅକ୍ଳେଶେ କାଟଇ ତାହା ଅର୍ଜୁନ କୁମର ॥
ଏସନ ରୀତି ଦେଖିଣ ପାର୍ଥ ସୈନ୍ୟଗଣ ।
ଇତସ୍ତତ ପଳାଇବା ପାଇ କଲେ ମନ ॥
ଦୂରେ ଥାଇ ଦେଖୁଥିଲେ ପାର୍ଥ ବୀରବର ।
ଦେଖିଲେ ସୈନ୍ୟ ଭୟରେ ଅତ୍ୟନ୍ତ କାତର
ମହା ମହା ବୀରମାନେ ହେଲେ ଭୀତମନ ।
ତଥାପି ସେ ବଭ୍ରୁବାହ ଯମର ସମାନ ॥
ନିଦାରୁଣ ବାଣଗଣ ମାରେ ଅବିରତେ ।
ରୁଦ୍ରରୂପୀ ତେଜ ଦେଖାଯାଏ ତାର ଗାତ୍ରେ ॥
ସୈନ୍ୟଙ୍କ ଦୁର୍ଦ୍ଦଶା ବୀରଙ୍କର ଅପମାନ ।
ଦୂରେ ଦେଖୁଥିଲେ ବୀର ବାସବ ନନ୍ଦନ ॥
ସହି ନ ପାରିଣ କ୍ରୋଧେ ସିଂହରଡ଼ି ଦେଲେ
କ୍ରୋଧେ ଗାଣ୍ଡିବ ଧନୁକୁ ଟଙ୍କାର କରିଲେ ॥
ଦେବଦତ୍ତ ଶଙ୍ଖ କ୍ରୋଧେ ଫୁଙ୍କିଲେ ଅର୍ଜୁନ ।
ସବୁ ଶବ୍ଦ ଏକାବେଳେ ହୋଇଲା ମିଳନ ॥
ସେ ଶବ୍ଦରେ ପୃଥିବୀ ଯେ କମ୍ପମାନ ହେଲା ।
ପର୍ବତ କନ୍ଦର ଗିରି ଭୟରେ ଥରିଲା ॥
ସମୁଦ୍ରର ଜଳ ଯେ ହୋଇଲା ଆନ୍ଦୋଳିତ ।
ଭାବନ୍ତି କି ପ୍ରଳୟ ଅ .ଣ ଉପଗତ ॥

ସ୍ୱପକ୍ଷ ସୈନ୍ୟଙ୍କ ହସ୍ତୁଁ ଭୟେ ଅସ୍ତ୍ରଗଣ ।
ପଡ଼ିଗଲା ଥରଥର ଅଙ୍ଗ ହେଲା ପୁଣ ॥
କାଳାନ୍ତକ କାଳ ପ୍ରାୟ ଅର୍ଜ୍ଜୁନ ଶରୀର ।
ଦେଖାଗଲା ସେ କାଳରେ ଅହା ଚମତ୍କାର ॥
ବରିଷ୍ଠ ପୁରୁଷ କିବା ତେଜଗଣ ଅସ୍ଥାନ ।
ପ୍ରବେଶ ହୋଇଲେ ଆସି ସେହି ଯୁଦ୍ଧସ୍ଥାନ ॥
କ୍ରୋଧଭରେ ପାର୍ଥଙ୍କର ଛାତି ଫୁଲିଗଲା ।
ପ୍ରଳୟ କାଳର ରୁଦ୍ର ପ୍ରାୟେକ ଦିଶିଲା ॥
ରଥେ ଚଢ଼ି କ୍ରୋଧେ ବୀର କଲେ ଗମନ ।
ଏ ସମୟେ ବୃଷକେତୁ କର୍ଣ୍ଣଙ୍କ ନନ୍ଦନ ॥
ଅର୍ଜ୍ଜୁନଙ୍କ ପାଦତଳେ ନମସ୍କାର କଲେ ।
ବହୁତ ବିନୟ ହୋଇ ତାହାଙ୍କୁ କହିଲେ ॥
ଶୁଣ ଶୁଣ ବୀରମଣି ମୋର ନିବେଦନ ।
କ୍ଷାନ୍ତହୁଅ ରଣୁ ଦେବ କପାଁ କ୍ରୋଧମନ ॥
ଏ ଅଧମ ସନ୍ତାନ ଯେ ଜୀବନରେ ଥାଉଁ ।
କାହିଁକି କରିବ ଯୁଦ୍ଧ ତୁମ୍ଭେ ମହାବାହୁ ॥
ଅଜ ବଭ୍ରୁବାହନକୁ ଯୁଦ୍ଧ ଦେଖାଇବ ।
ଏତେଦିନେ ତାର ରଣ ସାଧ ମେଣ୍ଟାଇବ ॥
ମୋର ଭୁଜବଳ ସେହି ଜାଣିବ ଏକ୍ଷଣେ ।
କ୍ଷାନ୍ତହୁଅ ରଣୁ ଅହେ ବାସବ ନନ୍ଦନ ॥
ତାକୁ ନାଶିବାକୁ ବାଣ ଅଛଇ ବହୁତ ।
ଏସନ କହିଣ ବୀର ଗମଇ ତୁରିତ ॥
କ୍ରୋଧେ ଶରଜାଲେ ବୀର ଛାଇଲା ଗଗନ ।
ମୂଷଳ ଧାରାରେ କଲା ବାଣ ବରଷଣ ॥
ଚକ୍ଷୁର ପଲକେ ମାରେ କୋଟିକୋଟି ଶର ।
ବଭ୍ରୁବାହନର ଥାଟେ ପଡ଼ିଲା ଚହଳ ॥
ଧରିଲା ସୂର୍ଯ୍ୟଙ୍କ ତେଜ ସୂର୍ଯ୍ୟଙ୍କର ନାତି ।
ଶତ୍ରୁ ସୈନ୍ୟଗଣଙ୍କୁ ସେ କାଟଇ ବିକୋଟି ॥
ବାଣେ ବାଣ ପରିତାଳ ଦୁଇ ବୀରଙ୍କର ।
କିବା ଇନ୍ଦ୍ର ବୃତ୍ରାସୁର କରନ୍ତି ସମର ॥
କେ କାହାକୁ ଊଣା ତହିଁ ବିକମେ ନୁହନ୍ତି ।
ଦେନି ମତ୍ତ ସିଂହ କିବା ଯୁଦ୍ଧ କରୁଛନ୍ତି ॥
ହସି ଅର୍ଜ୍ଜୁନ ନନ୍ଦନ ବୋଲେ ରେ ପାମର ।
କି ସାହାସେ ପୁଣି ଆସୁ ସମର ଭୂମିର ॥
ମୁଖେ ଲାଜ ନାହିଁ ତୋର ହାରି ବାରମ୍ବାର ।
ପୁନରପି ଯୁଦ୍ଧ କରୁ ମୋହର ସଙ୍ଗର ॥

ତାକ ତୋ ଜାରଜ ବାପ ପାର୍ଥ ଅଛି କାହିଁ ।
ଅଜ ରଣ ଶିକ୍ଷା ତାହାକୁ ଯେ ଦେବି ମୁହିଁ ॥
ତୁ ରେ ଦେଖାଯାଉ ମୋତେ ପତଙ୍ଗ ସମାନ
ମୋ ଶର ଅନଳେ କପାଁ ହୋଇବୁ ଦହନ ॥
ନବୀନ ବୟସ ତୋର ଥିବ ଯୁବାନାରୀ ।
ତୁ ମଲେ ସେ କପରି ରହିବ ଦେହ ଧରି ॥
ନିଜ ନିନ୍ଦା ଗୁରୁ ନିନ୍ଦା ଶୁଣି ବୃଷକେତୁ ।
କ୍ରୋଧେ ଶର ମାରି ଗୁଣ କାଟିଲେ ତା ହସ୍ତୁ
ଚକ୍ଷୁର ପଲକେ ବୀର ଅନ୍ୟ ଗୁଣ ଦେଲା ।
ବେନି ବୀରଙ୍କର ତହିଁ ଘୋର ଯୁଦ୍ଧ ହେଲା ॥
ବୋଇଲେ ସେ କର୍ଣ୍ଣସୁତ ବଭ୍ରୁବାହ ଶୁଣ ।
ଅଜକାର ରଣେ ଦେଖାଯିବ ବୀରପଣ ॥
ବୃଷକେତୁ ଅତି ବେଗେ ପାର୍ଥ କୁମରର ।
କାଟିଲେ ଧନୁକୁ ପାଞ୍ଚ ବାଣରେ ତାହାର ॥
ପୁଣି ବିଂଶ ବାଣ ତାର ହୃଦକୁ ବିନ୍ଧିଲେ ।
ତୀକ୍ଷ୍ଣ ଅସ୍ତ୍ର ହସ୍ତେ ଧରି ଗର୍ଜ୍ଜନ କରିଲେ ॥
ଦେଖି କୋପେ ବଭ୍ରୁବାହ ଧରି ଦୃଢ଼େ ଧନୁ ।
ତୀକ୍ଷ୍ଣ ତୀକ୍ଷ୍ଣ ବାଣ ବିନ୍ଧିଲ ସେ ପାର୍ଥସୂନୁ
ସିଂହନାଦ କରି ବୀର ଛାଡ଼େ ବେଗେ ଶର ।
ଦେଖି ବୃଷକେତୁ ଯୁଦ୍ଧେ ହୋଇଲେ କାତର
ସେ ଶରକୁ ନିବାରିବା ପାଇଁ ଚେଷ୍ଟାକଲେ ।
କୌଣସି ପ୍ରକାରେ ତା ନିବାରି ନ ପାରିଲେ
ଦେଖୁ ଦେଖୁ ସେହି ବାଣ ବେଗେ ଚଳିଗଲା
ସାରଥିର ଶିର କାଟି ଭୂମିରେ ପଡ଼ିଲା ॥
ଏସନ ଦେଖିଣ ବେଗେ କର୍ଣ୍ଣଙ୍କ ନନ୍ଦନ ।
ଗର୍ଜ୍ଜନ କରିଣ ଟଙ୍କାରିଲେ ଶରାସନ ॥
ମହାବେଗେ ଛାଡ଼େ ବାଣ ନକ୍ଷତ୍ର ଗତିରେ ।
ପାର୍ଥସୁତ ଅର୍ଦ୍ଧବାଟେ କାଟିଲେ ସତ୍ୱରେ ॥
ଶରକାଟି ବୀରମଣି ମାରି ତୀକ୍ଷ୍ଣ ଶର ।
ବୃଷକେତୁ ହସ୍ତୁ ଧନୁ ଛେଦିଲେ ସତ୍ୱର ॥
ଚକ୍ଷୁର ପଲକେ ବୀର ଆନ ଧନୁ ନେଲା ।
କ୍ରୋଧେ ଟଙ୍କାର କରଣ ବାଣ ବରଷିଲା ॥
ସେ ବାଣକୁ କାଟି କ୍ରୋଧେ ଅର୍ଜ୍ଜୁନ ନନ୍ଦନ ।
ପ୍ରଚଣ୍ଡ ଅନଳ ଅସ୍ତ୍ର ମାରିଲେ ଭୀଷଣ ॥
ପ୍ରଳୟ ଅନଳ ହେଲ ସେଠାରେ ସଞ୍ଚାର ।
କର୍ଣ୍ଣ ନନ୍ଦନ ଦିଶଇ ଯେସନ୍ତେ ନାଶକର ॥

ଭୂଚରେ ଖେଚରେ ଅଦ ନର ନାଗକୁଳ ।
ବାଣ ଦେଖିଣ ପ୍ରମାଦ ଗଣିଲେ ସକଳ ॥
କୋଟିରଶ୍ମି ତେଜ ଧରେ କର୍ଣ୍ଣଙ୍କ ତନୟେ ।
ନାହିଁକ ଭଲେ ବିଶ୍ରାମ ମାରେ ଶରଚୟେ ॥
ବଭ୍ରୁବାହନଙ୍କୁ ବୀର ଯେତେ ବାଣ ମାରେ ।
ସେ ସକଳ ବାଣ ବୀର କାଟେ ଅବହେଳେ ॥
ତେବେ ବୃଷକେତୁ ବୀର ସମରେ ଅଟଳ ।
ଧନୁଧର ଟଙ୍କାରିଲେ କମ୍ପିଲା ଭୂତଳ ॥
ପଗୁଣ ବାଣ ବାଛିଣ ଭୃବଡେ ବନ୍ଧିଲେ ।
ଅର୍ଜ୍ଜୁନ ସୁତର ହସ୍ତୁ ଧନୁକୁ ଛେଦିଲେ ॥
ଧନୁକୁ କାଟିଣ ମାରେ ତୀକ୍ଷ୍ଣ ତୀକ୍ଷ୍ଣ ବାଣ
ସେ ଶର ପଶିଲା ବଭ୍ରୁବାହ ଜପରେଣ ॥
ଦେହେ ବାଜି ଶର ସବୁ କଲା ଛାରଖାର ।
ବଭ୍ରୁବାହାନ ଶରୀରୁ ବହେ ରକ୍ତଧାର ॥
ପୁନରପି ମାରେ ବୀର ତୀକ୍ଷ୍ଣ ତୀକ୍ଷ୍ଣ ଶର ।
ବାଛିଣ ବନ୍ଧିଲେ ବଭ୍ରୁବାହାନ ଉପର ॥
ଶର ନ ଅସୁଣୁ ତା କାଟିଣ ବୀରବର ।
କୋପେ କର୍ଣ୍ଣସୁତକୁ ମାଇଲେ ତୀକ୍ଷ୍ଣଶର ॥
ଏହିପରି ବେନିବୀର ମାରୁଛନ୍ତି ଶର ।
କେହି କାହାଠାରୁ ଊଣା ନୁହେଁ ବଳମର ॥
କୋଧେ ଶର ବର୍ଷାଇଲେ ବେନି ମହାବୀରେ
ଦୁଇ ମତ୍ତ ସିଂହ ଯେହ୍ନେ ମାତିଲେ ସମରେ
ଧରା କମ୍ପମାନ ହେଲା ଦୁହିଁଙ୍କ ଯୁଦ୍ଧର ।
ଅସଂଖ୍ୟ ସୈନ୍ୟସେଠାରେ ହୋଇଲେ ସଂହାର
ସୈନ୍ୟଙ୍କ ରକତେ ନଦୀ ଏକ ବହିଗଲା ।
ନୌକା ପରି ରଥ ଗଜ ତହିଁରେ ଭାସିଲା ॥
ଫେନ ତୁଲ୍ୟ ଦେଖାଯାଏ ଭାସିଯିବା ଶବ ।
ଅସ୍ତ୍ର ସବୁ ହେଲେ ତହିଁ ଭୟଙ୍କର ଜୀବ ॥
ଅତିବେଗେ ସେ ରୁଧିର ନଈ ବହିଯାଏ ।
ପାରହୋଇ ନ ପାରିଲେ ଦୁଇ ସୈନ୍ୟ ଚୟେ
ଏଥୁଅନ୍ତେ ମହାବଳୀ ସେ ବଭ୍ରୁବାହନ ।
ଅନଳ ସଦୃଶ କଲା ବାଣ ବରଷଣ ॥
ଭାଙ୍ଗିଲେ ଅର୍ଜ୍ଜୁନ ଥାଟ ନ ରହିଲେ ଆଗେ ।
ଦେଖିକରି କର୍ଣ୍ଣସୁତ ଓଗାଳିଲେ ବେଗେ ॥
କୋଧେ ଶର ମାରେ ବୀର କର୍ଣ୍ଣଙ୍କ କୁମର ।
ସେହି ଶରକୁ କାଟିଲା ଅର୍ଜ୍ଜୁନ କୁମର ॥

ବେନିବୀରେ ଅନୁକ୍ଷଣେ ବର୍ଷୁଛନ୍ତି ବାଣ ।
ଦିଗ ବିଦିଗ ସେଠାରେ ନୁହିଇ ବାରଣ ॥
ଏ ସମୟେ ବଭ୍ରୁବାହ ଅତି କୋଧଭରେ ।
ବନ୍ଧିଲା ପନ୍ନଗ ବାଣ କର୍ଣ୍ଣସୁତ ପରେ ॥
ତାହା ଦେଖି କୋଧଭରେ କୁନ୍ତୀଙ୍କର ନାତି
ଗରୁଡ଼ାସ୍ତ୍ରେ ନିବାରିଲା ତାହାକୁ ଝଟତି ॥
ତହିଁ ପୁଣି ବନ୍ଧେ ବାଣ ସେ ବଭ୍ରୁବାହାନ ।
ବାଣଜାଳେ ଢାଙ୍କିଗଲା ସମସ୍ତ ଗଗନ ॥
ଦେଖି ମହାଭୟ କଲେ ସଇନ ସକଳ ।
ଅର୍ଦ୍ଧଚନ୍ଦ୍ର ବାଣେ କାଟେ ତା କର୍ଣ୍ଣ କୁମର ॥
ଶର ବ୍ୟର୍ଥ ହେବା ଦେଖି ସେ ବଭ୍ରୁବାହନ ।
କୋଧରେ ଝଙ୍କୁରୂପା ଅସ୍ତ୍ରେ ବସାଇଲା ଗୁଣ ॥
ମନ୍ତ୍ରେ ଅଭିଷେକ କରି ବେଗେ ଛାଡ଼ିଦେଲା ।
ଇନ୍ଦ୍ର ଅସ୍ତ୍ରେ ବୃଷକେତୁ ତାହା ନିବାରିଲା ॥
ଦୁହେଁ ଯୁଦ୍ଧ କରନ୍ତି ଯେ ଅତି କୋଧମନେ ।
ବାଣ ବାଣ ପରିଜାଳ ହୁଅଇ ସେ ସ୍ଥାନେ ॥
କୋଧେ ଅନ୍ୟ ଧନୁ ନେଲେ ଅର୍ଜ୍ଜୁନ କୁମର ।
ବୃଷକେତୁକୁ ପୁଣିହିଁ ବୋଲନ୍ତି ଉତ୍ତର ॥
ପୁଣି ତୁହି ଆସିଲୁରେ କରିବାକୁ ରଣ ।
ଜାଣିଲି ନିଶ୍ଚୟ ତୋର ହୋଇଲା ମରଣ ॥
ଏହିକ୍ଷଣି ଯମପୁରେ ପଠାଇବି ତୋତେ ।
ଡାକ ତୋ ପାର୍ଥକୁ ରକ୍ଷାକରୁ ଆସି ଏଥେଁ ॥
ଏ ସମୟେ ଦେହେ ପ୍ରାଣ ଥାଉଁ ଥାଉଁ ତୋର
ହରି ନାମ ମୁଖେ ନିଅ ହୋଇବୁ ନିସ୍ତାର ॥
ଇଷ୍ଟ ବାନ୍ଧବଙ୍କୁ ମନେ ମନେ ହେତୁକର ।
ଏକ୍ଷଣିରେ ଯିବୁ ତୁହି ଶମନ ମନ୍ଦିର ॥
ଏହା କହି କୋଧଭରେ ସେ ବଭ୍ରୁବାହନ ।
ନାରାୟଣ ନାମେ ଶର କରିଲେ ଗ୍ରହଣ ॥
ଦେବଗଣେ ଆକାଶରେ ଯୁଦ୍ଧ ଦେଖୁଥିଲେ ।
ସେ ଶର ତେଜରେ କେହି ରହି ନ ପାରିଲେ
ପଳାଇଲେ ଯେ ଯାହାର ଭବନକୁ ଭୟେ ।
ମଳିନ ଦଶିଲା ସୂର୍ଯ୍ୟ ତେଜ ସେ ସମୟେ ॥
ଆଖିବୁଜି ପକାଇଲେ ସଇନ ସକଳେ ।
ଅକସ୍ମାତ ଉଲ୍କାପାତ ହେଲା ଗଗନରେ ॥
କମ୍ପିଲା ଯେ ବସୁମତୀ ଉଚ୍ଛୁଳିଲା ସିନ୍ଧୁ ।
ଭୟେ ବିଚଳିତ ହେଲେ କମଳାମ୍ବା ବନ୍ଧୁ ॥

ନିର୍ଭୟ ଶରୀରେ ସେହି କର୍ଣ୍ଣଙ୍କ କୁମର ।
ମେଲ୍ଲ ପରି ରହିଛନ୍ତି ଧରି ଧନୁଶର ॥
ପ୍ରଭୁଅସ୍ତ୍ର କରେ ବୀର ନିବାରିବା ପାଇଁ ।
ଭଲ୍ଲ ଶକ୍ତି ତୋମର ଯେ ମାରିଲେ ନିଠାଇ ॥
ସେ ବାଣରେ ତେବେକେ ସବୁ ଶର ଜଳିଗଲା ।
ଦଶବେ ବୃଷକେତୁର ଉପରେ ପଡ଼ିଲା ॥
ବୃଷକେତୁ ଶିର ଛିଡ଼ି ପଡ଼ିଲା ଭୂତଳେ ।
ହାହାକାର କଲେ ଅର୍ଜ୍ଜୁନ ସୈନ୍ୟ ସକଳେ ॥
ପ୍ରଦ୍ୟୁମ୍ନ ସାତ୍ୟକି ଆଦି ଯେତେଯେତେ ବୀରେ
ଅତି କୋପେ ଯୁଦ୍ଧକଲେ ଆସିଣ ସେଠାରେ
ଦଇବରି ବଳେ ସର୍ବେ ପରାସ୍ତ ହୋଇଲେ ।
ଏକ ଏକ ବାଣେ ସର୍ବେ ଧରଣୀଶାୟୀ ହେଲେ
ଅର୍ଜ୍ଜୁନ କୁମର ସେହି ବଭ୍ରୁବାହ ବୀର ।
କାଳ ପରି ଅର୍ଜ୍ଜୁନଙ୍କ ସଇନ ସକଳ ॥
ବାଣାଘାତେ ବୀରମଣି କରିଲେ ନିଧନ ।
ଏକାକୀ ରହିଲେ ଭକ୍ତ କୁନ୍ତୀଙ୍କ ନନ୍ଦନ ॥
ବୃଷକେତୁ ଶୋକେ ବୀର କାତର ହୋଇଲେ
ଉପାଧ୍ୟାୟ ମହାଦେବ ଏହି ରସେ ବୋଲେ

---

## ଅର୍ଜ୍ଜୁନ ବଭ୍ରୁବାହନ ଯୁଦ୍ଧ
## ଅର୍ଜ୍ଜୁନଙ୍କ ମୃତ୍ୟୁ

ଏଥୁଅନ୍ତେ ଜନ୍ମେଜୟ ଯୋଡ଼ିବେନିକର ।
ଜୈମିନିଙ୍କ ପାଦପଦ୍ମେ ପଡ଼ି ବାରମ୍ବାର ॥
ତବୋଇଲେ ବିନୟେ ମୁନି ଅନୁଗ୍ରହ କରି ।
ପିତା ପୁତ୍ର ରଣ ମୋତେ କହନ୍ତୁ ବିସ୍ତାରି ॥
ତ୍ରିଭୁବନେ ପାର୍ଥ ସମ ନାହିଁ ଅନ୍ୟବୀର ।
କିପରି ହାରିଲେ ସେହି ବାଳକ ସଙ୍ଗର ॥
ଏ ସବୁ ବୁଝାଇ ମୋତେ କହ ମୁନିବର ।
ତୁମ୍ଭ ମୁଖୁଁ ଶୁଣି ମୁହିଁ ହୋଇବି ନିସ୍ତାର ॥
ଜନ୍ମେଜୟ ବାଣୀ ଶୁଣି ଜୈମିନି କହନ୍ତି ।
ଏକମନେ ଶୁଣ ତୁମ୍ଭେ ଉତ୍ତରର ନାତି ॥
ଏଥୁଅନ୍ତେ ଯେଉଁପରି ହୋଇଲା ଘଟଣା ।
ପିତା ପୁତ୍ରଙ୍କର ରଣ କରିବା ବର୍ଣ୍ଣନା ॥
ବୃଷକେତୁ କଣ୍ଠ ମୁଣ୍ଡ ଦେଖିଣ ଅର୍ଜ୍ଜୁନ ।
କପାଳରେ କର ମାରି କଲେକ ରୋଦନ ॥

ଅତ୍ୟନ୍ତ ବିକଳେ ପାର୍ଥ ରୋଦନ କରନ୍ତି ।
ଯେତେ ମନାକଲି ନ ମାନିଲୁ ରେ ସନ୍ତତି ॥
ଯେଉଁଠାକୁ ଗଲୁ ବାବୁ ସଙ୍ଗତରେ ନିଅ ।
କର୍ଣ୍ଣ ବାପ ଆଜ ମୋତେ କଥା ତୁ ନ କହ
କେଉଁ ଦୋଷ ଅବା ମୁହିଁ କରିଛି ତୋହର ।
ଅକାରଣେ କର୍ଣ୍ଣ ଅଭିମାନ ଏତେ ଦୂର ॥
ହେଲେ ଦୋଷୀ ତୋର ମୁହିଁ ଖୁଡ଼ୁତା ଅଟଇ
ମୋର ଦୋଷ ଧରିବାର ଉଚିତ ତୋ ନୋହି
କିପରି ତୋ ଗୁଣ ବାବୁ ଭୁଲିବିରେ ମୁହିଁ ।
ତୋ ବିହୁନେ ଏ ଜୀବନ ରଖିବି ମୁଁ ନାହିଁ ॥
ପଣ୍ଡୁକୁଳେ ତୁହି ଏକ ମାତ୍ରରେ ସନ୍ତାନ ।
ତୋ ମୁଖ ଦେଖିଣ ସର୍ବେ କାଟୁଥାନ୍ତି ଦିନ ॥
ଅଭିମନ୍ୟୁ ଶୋକ ତୋହ ଯୋଗୁଁ ପାଶୋରିଲୁ
ଘରକୁ ଗଲେ କହିବି ଯାଇଣ କି ବୋଲି ॥
ମାତା ଆସି ପଚାରିବେ ବୃଷକେତୁ କାହିଁ ।
କିପରି ତାହାଙ୍କ ମନ ବୁଝାଇବି ମୁହିଁ ॥
ତୋ ମୃତ୍ୟୁ ଶୁଣିଲେ ମାତା ତେଜିବେ ପରାଣ
ତୋ ବିହୁତେ ଦ୍ରୌପଦୀ ନ ଧରିବେ ଜୀବନ
ଆସିଲା ବେଳରେ ସତୀ ମୋତେ ବାରମ୍ବାର ।
କହିଥିଲେ ବୃଷକେତୁ ଲାଗିଲା ମୋହର ॥
ପିଣ୍ଡ ଅଛି ପ୍ରାଣ ତୁମ୍ଭେ ସଙ୍ଗରେ ନେଉଛ ।
ଶୁଣି ଜୀବନ ତେଜିବେ କରିଁମୋତେ ତୁଚ୍ଛ ॥
ଆଉରି କୃଷ୍ଣ ଭଗିନୀ ସୁଭଦ୍ରା ସୁନ୍ଦରୀ ।
ତୋ ବିହୁନେ ନିଶ୍ଚେ ସେହି ମରିବେରେ ଝୁରି
ତୋ ସକାଶେ ଅଭିମନ୍ୟୁ ଶୋକ ତାଙ୍କମନେ
ନାହିଁ ଭୁଲିଛନ୍ତି ଦେଖି ତୋ ମୁଖ ଦର୍ଶନେ ॥
ଦିନେ ନଦେଖିଲେ ଭଦ୍ରା ତୋତେରେନନ୍ଦନ
ପାଣି ନ ଛୁଅନ୍ତି ସେହି ଜାଣେ ମୁଁ ସେମାନ ॥
କିପରି ମୁଁ ତାଙ୍କ ମନ ଯାଇଁ ବୁଝାଇବି ।
ନିଶ୍ଚେ ଜୀବନ ହାରିବେ ସେ ସୁଭଦ୍ରାଦେବୀ ॥
ଯୁଧିଷ୍ଠିର ଦେବ ଶୁଣି ଝୁରିଣ ମରିବେ ।
ଭୀମସେନ ଜୀବନକୁ ନ ରଖିବେ କେବେ ॥
ଶ୍ରୀହରି ଶୁଣିଣ ମୋର ନିନ୍ଦା ଯେ କରିବେ ।
ମୋହର ମୁଖକୁ ସେହି କେବେ ନ ଚାହିଁବେ
ନିଅ ବଳା ସଙ୍ଗତରେ ଯୁଦ୍ଧେ କାର୍ଯ୍ୟ ନାହିଁ ।
ତୁ ଯେଣିକି ଯିବୁ ମୁହିଁ ଯିବି ସେହିଠାଇଁ ॥

ବୃଷକେତୁ ବୋଲେ ଧର ପାର୍ଥ ବୀରବର ।
ନାନା ପ୍ରକାରେ ବିଳାପ କରନ୍ତି ସେଠାର ॥
ଅର୍ଜ୍ଜୁନର ଅଶ୍ରୁଜଳେ ତିନ୍ତେ ବକ୍ଷସ୍ଥଳ ।
ବଭ୍ରୁବାହ ଦେଖି ବୋଲେ କପି ହେ ବିକଳ
କ୍ଷତ୍ରିୟ ମଲେ ତା ପାଇଁ କରିବା ଖେଦନ ।
ଏହିତ ନୁହଇ କେବେ କ୍ଷତ୍ରିୟ ଲକ୍ଷଣ ॥
ଶୁଣ ହେ ବୀର ଅର୍ଜ୍ଜୁନ କପି ଏ ସ୍ଥାନରେ ।
ମୃତ ଦେହ ଧରି କାନ୍ଦୁଅଛ କାତରରେ ॥
ଦେଖି ତୁମ୍ଭେ ଶୋକ ହସିବେ ଯେ ସର୍ବଜନ
କ୍ଷତ୍ରିୟ ହୋଇଣ କପି କର ହେ ଖେଦନ ॥
ବୃଷକେତୁ ବୀରପଣେ ଯୁଦ୍ଧ ଘୋରତର ।
କରି ଜୀବନ ତେଜିଣ ଗଲେ ସ୍ୱର୍ଗପୁର ॥
ବୃଷକେତୁ ଶୋକ ଛାଡ଼ ଅହେ ବୀରବର ।
ନିଜ ପ୍ରାଣ ରକ୍ଷା କର ଅଜର ରଣର ॥
ଜାଣିଅଛି ତୁମ୍ଭ ବୀରପଣ ଭଲେ ମୁହିଁ ।
ଶ୍ରୀକୃଷ୍ଣଙ୍କ ହେତୁ ଜୟ ହୁଏ ସବୁଠାଇଁ ॥
ଯେବେ ଜୀବନରେ ଆଶା ଅଛି ହେ ତୁମ୍ଭର
ବେଗେ ଚିନ୍ତାକର ତୁମ୍ଭେ ସେ ଶାରଙ୍ଗ ଧର
ସେ ଆସିଲେ ଅବା ତୁମ୍ଭେ ରକ୍ଷା ହୋଇପାର
ନ ହେଲେ ମୋ ହସ୍ତେ ଆଜ ଯିବ ଯମପୁର
ନିସ୍ତାର ନାହିଁ ତୁମ୍ଭର ଆଜ ବୀରମଣି ।
ତୁମ୍ଭ ବଳ ପରାକ୍ରମ ଅଛି ମୁହିଁ ଜାଣି ॥
କିଏ ସେ ଜାରଜ ଆଜ ଏଠାରେ ଦେଖିବା ।
ବେଶ୍ୟାପୁତ୍ର କିଏ ତାହା ପରିଚୟ ଦେବା ॥
କ୍ଷତ୍ରୀ ଔରସରୁ ଜାତ କି ବେଶ୍ୟା ସନ୍ତାନ ।
ଏହିକ୍ଷଣି ତାର ପରିଚୟ ଦେବି ଜାଣ ॥
ଛାଡ଼ ବୃଷକେତୁ ଶିର ଧର ଧନୁଶର ।
ଏତେବେଳେ ନିସତ ହେ ହୁଅ କପି ବୀର ॥
ନିସତ ହୋଇଲେ ତୁମ୍ଭେ ରହିବ ଜୀବନେ ।
ଏହି କଥା ଭାବନା କି କରୁଅଛ ମନେ ॥
ତେଣୁ ବୃଷକେତୁ ଶୋକ ଛାଡ଼ ହେ ଅର୍ଜ୍ଜୁନ
ଆଜ ରଣେ ତରିବାକୁ ଡାକ ନାରାୟଣ ॥
କୃଷ୍ଣ ବିନା ତୁମ୍ଭର ଯେ ଅନ୍ୟଗତି ନାହିଁ ।
କୃଷ୍ଣ ବିନା ଚଣେ ପ୍ରାଣ ତେଜିବ କପାଇଁ ॥
ଯଦ୍ୟପି ଜୀବନେ ଆଶା ଅଛି ହେ ତୁମ୍ଭର ।
ଚଳ ଥାଉଁ ଥାଉଁ ଚିନ୍ତାକର ଚକ୍ରଧର ॥

ଯେବେ ତୁମ୍ଭେ ଶ୍ରୀଚରଣ କରିବ ଦର୍ଶନ ।
ରଣେ ମରିଯିବ ବୀର ବୈକୁଣ୍ଠ ଭୁବନ ॥
ମୋ ବାଣରେ ଆହୁ ନାହିଁ ଚିନ୍ତ ଚକ୍ରଧର ।
ସେ ଆସିଲେ ଅବା ହୋଇ ପାରିବ ନିସ୍ତାର ॥
ବଭ୍ରୁବାହନଙ୍କ ବାଣୀ ଶୁଣି ବୀରମଣି ।
ମନମଧ୍ୟେ ଚିନ୍ତାକଲେ ଦେବ ଚକ୍ରପାଣି ॥
ଦୟାମୟ ହରି ଅହେ ଦୀନଜନ ବନ୍ଧୁ ।
ବାରେକ କରୁଣା ମୋତେ କର କୃପାସିନ୍ଧୁ ॥
ଅସମୟେ ପଡ଼ିଅଛି ବୁଦ୍ଧିବାଟ ନାହିଁ ।
ଏ ବିପଦୁଁ ରକ୍ଷାକର ପ୍ରଭୁ ଭବଗ୍ରାହୀ ॥
ତୁମ୍ଭେ ନ ରଖିଲେ ପ୍ରଭୁ ହୋଇବି ନିହତ ।
ଏ ନିନ୍ଦା କାହାକୁ ହେବ ଅହେ ଜଗନ୍ନାଥ ॥
ପାଣ୍ଡବଙ୍କ କର୍ତ୍ତା ବୋଲି ସମସ୍ତେ ଜାଣନ୍ତି ।
କପାଇ ଏବେ ନିଷ୍ଠୁର ହୁଅ ଶିରୀପତି ॥
ଅହେ ପ୍ରଭୁ ନାରାୟଣ ଜଗତ କାରଣ ।
ଆସି ରକ୍ଷାକର ଭାସି ଯାଉଛି ଅର୍ଜ୍ଜୁନ ॥
ଯେବେ ନ ରଖିବ ପ୍ରଭୁ ନିଶ୍ଚୟ ଅର୍ଜ୍ଜୁନ ।
ଜଣାଯାଏ ବଭ୍ରୁବାହ ହାତେ ଯିବ ପ୍ରାଣ ॥
କିପରି ସହିବ ନାଥ ସୁଭଦ୍ରା ବିକଳ ।
ଏତେବେଳେ ରକ୍ଷାକର ଆସି ଆଦିମୂଳ ॥
ମୋହର ବିନାଶ ଶୁଣି ଯୁଧିଷ୍ଠିର ଦେବ ।
ନିଶ୍ଚୟ ପିଣ୍ଡରୁ ତାଙ୍କ ଛାଡ଼ିଯିବ ଜୀବ ॥
ଭୀମସେନ ମୋ ବିଚ୍ଛେଦ ସହି ନ ପାରିଣ ।
ଜଳନ୍ତା ଅନଳେ ପଶି ତେଜିବେ ପରାଣ ॥
ନକୁଳ ସହଦେବ ଯେ ଦେଖିଣ ଏସନ ।
ସତେକି ସେହି ଧରିବେ ପିଣ୍ଡରେ ଜୀବନ ॥
ମାତା କୁନ୍ତୀଦେବୀ ଭଦ୍ରା ଦ୍ରୌପଦୀ ସୁନ୍ଦରୀ ।
ଅକାଳରେ ପ୍ରାଣ ସବୁ ତେଜିବେ ତାଙ୍କର ॥
କେତେ କେତେ ସଙ୍କଟରୁ ରଖିଅଛ ତୁମ୍ଭେ ।
କପାଇ ଏବେ ନିଷ୍ଠୁର ହୁଅ ପଦ୍ମନାଭେ ॥
ଜତୁ ଗୃହରୁ ରଖିଲ ଲଜ୍ଜା ନିବାରିଣ ।
ଏବେ ଏ ଲଜ୍ଜାରୁ ରଖ କମଳ ଲୋଚନ ॥
ଦୁର୍ବାସାଙ୍କ କୋପାନଳୁ ନିସ୍ତାର କରିଲ ।
ତୁମ୍ଭ ବିନା କେ ରଖନ୍ତା ଏହି ଭୂମଣ୍ଡଳ ॥
ବିରାଟ ପୁରେ ଗୋଧନ ହରଣେ ମୁରାରି ।
ରକ୍ଷାକଲ ଆମ୍ଭଙ୍କୁ ହେ ପ୍ରଭୁ ଦୟାକରି ॥

ଦ୍ରୌପଦୀ ଲଜ୍ଜାରେ ପ୍ରଭୁ ତୁମ୍ଭ କୃପାବଳେ ।
ଲକ୍ଷେ ରାଜାଙ୍କୁ ଜିଣିଲି ମୁହିଁ ଅବହେଳେ ॥
ତୁମ୍ଭ ସକାଶରେ ପାଣ୍ଡୁ ପୁତ୍ର ବୀରବର ।
ଭୀଷ୍ମଦ୍ରୋଣ କର୍ଣ୍ଣହସ୍ତୁ କରିଛ ନିସ୍ତାର ॥
ପାଣ୍ଡବଙ୍କ କର୍ତ୍ତା କେ ନ ଜାଣେ ତ୍ରିଭୁବନ ।
ଏବେ ଆମ୍ଭ ରକ୍ଷାକର ଶ୍ରୀମଧୁସୂଦନ ॥
ସୁଭଦ୍ରା ହରଣ କାଳେ ପ୍ରଭୁ ନୀଳାମ୍ବର ।
ପରାସ୍ତ ହୋଇଲେ ରଣେ ତୁମ୍ଭର ତେଜର ॥
ମାୟାକର ଚତୁର୍ଭୁଜ ଦେଲ ନାରାୟଣ ।
ଦେଖି ବଳରାମଙ୍କର ତୋଷ ହେଲା ମନ ॥
ପାଣ୍ଡବଙ୍କ ନାଥ ଏବେ ରଖ ମୋ ଜୀବନ ।
ସୁଧନ୍ୱା ସୁରଥ କରୁ କରିଛ ତାରଣ ॥
ଏତେଦିନ ବଞ୍ଚାଇଣ ଶେଷକୁ ତେଜିଲ ।
ଏତେବେଳେ ରଖ ଆମ୍ଭ ଅହେ ନନ୍ଦବାଳ ॥
ନ ଡରି ମୁଁ ଥିଲି ଭୀଷ୍ମ ଦ୍ରୋଣ କର୍ଣ୍ଣ ରଣେ ।
ମହାଭୟ ଜାତ ହୁଏ ବଭ୍ରୁବାହ ସନେ ॥
ରକ୍ଷାକର ରକ୍ଷାକର ହେ ମଧୁସୂଦନ ।
ନୋହିଲେ ମୋହର ନିଶ୍ଚେ ହୋଇଲା ମରଣ ॥
ଏହିପରି ବୀରବର କହୁ ସ୍ତୁତି କଲେ ।
ଦ୍ୱାରକାରେ ଥାଇ ହରି ସକଳ ଜାଣିଲେ ॥
ଭାବିଲେ ସେ ଆସିବାକୁ ଅର୍ଜୁନ କାରଣେ ।
କିନ୍ତୁ ଗଙ୍ଗାଙ୍କର ଶାପ ପଡ଼ିଗଲା ମନେ ॥
ଭାବିଲେ ସେ ସୁରେଶ୍ୱରୀ ତ୍ରିଲୋକ ତାରଣୀ ।
ତା କଥା ବିଫଳ କରିବି କିପରି ପୁଣି ॥
ଯେବେ ମୁହିଁ ବର୍ତ୍ତମାନ ପାର୍ଥ ପାଶେ ଯିବି ।
ଗଙ୍ଗାଙ୍କର ଶାପ ନିଶ୍ଚେ ବିଫଳ କରିବି ॥
ମୋହ ଯୋଗ୍ୟ ଧନା ଗଙ୍ଗା ସଂସାରେ ପୂଜିତ ।
ମୁହିଁ ନ ମାନିଲେ କପାଁ ମାନିବେ ଜଗତ ॥
କପାଁ ଆଉ ଧର୍ମଭୟ କରିବେ ଯେ ନର ।
ଏହା ଭାବି ସେ ସ୍ଥାନକୁ ନଇଲେ ଶ୍ରୀଧର ॥
ଅର୍ଜୁନ ଭାବନ୍ତି ମନେ ଶ୍ରୀମଧୁସୂଦନ ।
ନିଶ୍ଚୟ ମୋ ରକ୍ଷାପାଇଁ ଆସିବେ ଏ ସ୍ଥାନ ॥
ଅନୁମାନ କରି ଏହା ବୀର ଫାଲ୍ଗୁନି ।
ରଥ ଆଡ଼େ ଦୃଷ୍ଟି ସେହି ଦଏ ପୁଣି ପୁଣି ॥
ଦେଖିଲେ ସେ ଶୂନ୍ୟ ରଥେ ଶ୍ରୀହରି ନାହାନ୍ତି ।
ଧ୍ୱଜପତ୍ରେ ହନୁମାନ ଦେଖା ଯେ ନ ଯାନ୍ତି ॥

ଶ୍ରୀକୃଷ୍ଣ ହନୁମାନଙ୍କୁ ନ ଦେଖିଣ ବୀର ।
ଭାବେ ଆଜ ଅମଙ୍ଗଳ ହେବ ନିଶ୍ଚେ ମୋର ॥
ଅକାଳେ ହୋଇବ ଆଜ ମୋ ପ୍ରାଣ ଦହନ ।
ମୋ ସୂତ ଭାବି କି ନ ଆସିଲେ ଏହି ସ୍ଥାନ ॥
ଏ ସମୟେ ଶତ୍ରୁହନ୍ତା ବଭ୍ରୁବାହ ବୀର ।
କ୍ରୋଧଭରେ ଘନ ଘନ ଡାକିଲା ସେଠାର ॥
ବୋଇଲା ବିଳମ୍ବେ ଆଉ ନାହିଁ ପ୍ରୟୋଜନ ।
ନିଜର ଶକ୍ତି ପ୍ରକାଶ କର ହେ ଏକ୍ଷଣି ॥
ଥିଲେ କୃଷ୍ଣ ତୋ ସଙ୍ଗତେ କୁରୁ ଯୁଦ୍ଧସ୍ଥଳେ ।
ସେଥିରେ ଜିଣିଲ ରଣେ ସର୍ବ କୁରୁବୀରେ ॥
ଡାକ ତୋର କୃଷ୍ଣ ସଖା ଆସି ରକ୍ଷା କରୁ ।
ଯୁଦ୍ଧ କରିବାକୁ ବୀର କିସ ତୁ ଡରୁଛୁ ॥
ଏସନ କହିଣ ବୀର କ୍ରୋଧେ ବାଣଗଣ ।
ଏକାଥରେ ଶତେ ବାଣ କଲା ସେ ସନ୍ଧାନ ॥
ସେ ବାଣକୁ ନିବାରି ନ ପାରିଲେ ଅର୍ଜୁନ ।
ସେ ବାଣ ପଡ଼ିଲା ଆସି ଅର୍ଜୁନ ହୃଦେଶ ॥
ଯେତେ ବାଣ ପ୍ରହାର କରନ୍ତି ଧନଞ୍ଜୟ ।
ଅର୍ଦ୍ଧପଥେ କାଟେ ଚିତ୍ରାଙ୍ଗଦାର ତନୟ ॥
ବାଛିଣ ବାଛିଣ ମାରେ ଚୋଖା ଚୋଖା ଶର ।
ସେ ବାଣେ ଜର୍ଜର ହେଲା ପାର୍ଥ କଳେବର ॥
ନିବାରିବା ପାଇଁ ବୀର ଯେତେ ଚେଷ୍ଟା କଲେ ।
ଦକ୍ଷ ହସ୍ତ କମ୍ପେ ଧନୁ ଧରି ନ ପାରିଲେ ॥
ତଥାପି ସାହସେ ବୀର ବାସବ ନନ୍ଦନ ।
ପାଶୁପତ ଅସ୍ତ୍ର ବେଗେ କଲେକ ସନ୍ଧାନ ॥
ତ୍ରିପୁର ଦହନ କାଳେ ରୁଦ୍ର ଯେଉଁ ଶର ।
ଯେଉଁ ଶର ତେଜେ ପୃଥ୍ୱୀ ହୁଏ ଟଳମଳ ॥
ଅବ୍ୟର୍ଥ ସେ ଶର ଅଟେ ସଂସାରେ ଦୁର୍ଜୟ ।
କ୍ରୋଧେ ତାହା ପ୍ରହାରିଲେ ବାସବ ତନୟ ॥
ଆକାଶରେ ଦେବଗଣ ଯୁଦ୍ଧ ଦେଖୁଥିଲେ ।
ବାଣତେଜ ଦେଖି ସର୍ବେ ଭୟେ ପଳାଇଲେ
ପୃଥିବୀ କମ୍ପିତ ହେଲା ସିନ୍ଧୁ ଉଚ୍ଛୁଳିଲା ।
ବାସୁକୀ ନାଗର ଫଣା ଟଳମଳ ହେଲା ॥
ଅସ୍ଥାନ ଛାଡ଼ିଣ ଯମ ଶୂନ୍ୟ ଭୁବନରେ ।
ବାଣଭୟେ ରହିଲେ ସେ ଦଣ୍ଡ ଘେନି କରେ
ଯେଉଁ ଅସ୍ତ୍ରବଳେ ପାର୍ଥ କୁରୁକ୍ଷେତ୍ର ରଣେ ।
ଭୀଷ୍ମ ଦ୍ରୋଣ କର୍ଣ୍ଣେ ଭୟ ନ କରଇ ମନେ ॥

ଯେ ଅସ୍ତ୍ରର ବଳେ ସେହି ଇନ୍ଦ୍ରଙ୍କ କୁମର ।
ବୀରମାନଙ୍କ ଉପରେ ବୋଲାଏ ସେ ବୀର ॥
ଯେଉଁ ଅସ୍ତ୍ରବଳେ ସ୍ୱର୍ଗେ କାଳକେୟ ଗଣ ।
ନିବାତ କବଚ ଆଦି କରିଲେ ନିଧନ ॥
ସେହି ଅସ୍ତ୍ରବଳେ କାଟି ଅଶ୍ୱତ୍ଥାମା ଶିର ।
ଚୂଡ଼ାମଣି ନେଇଥିଲେ ପାର୍ଥ ବୀରବର ॥
ସେ ଅସ୍ତ୍ରକୁ ଦେଖି ବୀର ଅର୍ଜୁନ ନନ୍ଦନ ।
ବିଷ୍ଣୁଙ୍କ ବୈଷ୍ଣବୀ ଅସ୍ତ୍ର କରିଲା ସନ୍ଧାନ ॥
ତାର ଅସ୍ତ୍ରବଳେ ବାଣ ଲେଉଟି ଅଇଲା ।
ଦେଖିଣ ଅର୍ଜୁନ ମନେ ଭୟ ଜାତ ହେଲା ॥
ଇଥାନ୍ତି ସେ ବୀରବର ପାଣ୍ଡୁଙ୍କ ନନ୍ଦନ ।
କ୍ରୋଧଭରେ ବ୍ରହ୍ମଶର କରିଲେ ସନ୍ଧାନ ॥
ମନେ ଅଭିଷେକ କରି ବେଗେ ଛାଡ଼ିଦେଲେ
ତା ତେଜରେ ସୂର୍ଯ୍ୟ ମେରୁ ଉହାଡ଼େ ଲୁଚିଲେ
ବ୍ରହ୍ମାଙ୍କର ଶର ଏହି ଅଟେ ଅବାରଣ ।
ଯାହାଙ୍କି ପେଷିବ ତାର ହେନିବ ପରାଣ ॥

ଯେତେବେଳେ ଅସ୍ତ୍ରମାନଙ୍କର ସୃଷ୍ଟିହେଲା ।
ସେମାନଙ୍କ ମଧ୍ୟେ ଶର ପାଞ୍ଚ ଯେ ସୃଜିଲା ॥
ସେହି ପଞ୍ଚଶର ଅଣବାହୁଡ଼ା ଅଟଇ ।
ଯାହାଙ୍କ ପେଷିବ ତାହା ନିଶ୍ଚୟ ହରଇ ॥
କିବା ଇନ୍ଦ୍ର କିବା ଚନ୍ଦ୍ର କିବା ଦିବାକର ।
କିବା ହରି କିବା ହର ଗନ୍ଧର୍ବ କିନ୍ନର ॥
ଏ ବାଣଙ୍କ ମୁଖେ କେହି ରକ୍ଷା ନ ପାବନ୍ତି ।
ତେଣୁ ନିବାରଣ ଶର ବୋଲିଣ ବୋଲନ୍ତି ॥
ବ୍ରହ୍ମାଙ୍କର ବ୍ରହ୍ମଶର ବଜ୍ର ଇନ୍ଦ୍ରଙ୍କର ।
ପଶୁପତିଙ୍କର ଅଟେ ପାଶୁପତ ଶର ॥
ବିଷ୍ଣୁଙ୍କ ବୈଷ୍ଣବ ଶର ଆଉର ଯେ ବାଣ ।
ବାସୁକୀଙ୍କ ନାଗଫାଶ ଏହି ପାଞ୍ଚ ଜାଣ ॥
ମହାବ୍ରହ୍ମ ଅସ୍ତ୍ର ନୁହେଁ କାହିଁରେ ନିବାରି ।
ବଭ୍ରୁବାହ ଲୀଳବାଣେ ଦେଲା ଦୂର କରି ॥
ଅଗ୍ନିବାଣ ପ୍ରହାରିଲେ ଇନ୍ଦ୍ରଙ୍କ ନନ୍ଦନ ।
ବରୁଣାସ୍ତ୍ରେ ନିବାରିଲା ତା ବଭ୍ରୁବାହନ ॥



ପତିତ ପାବନୀ ଗଙ୍ଗା ଅସ୍ତ୍ରରୂପ ହୋଇ ବଭ୍ରୁବାହନଙ୍କୁ ଅର୍ଜୁନ ମରଣ କଥା କହିବା ଓ
ବଭ୍ରୁବାହନ ଗଙ୍ଗା ଅସ୍ତ୍ର ମାରିବାରୁ ଅର୍ଜୁନଙ୍କ ପ୍ରାଣତ୍ୟାଗ ।

## ଗଙ୍ଗା, ବଭ୍ରୁବାହନ ଓ ଅର୍ଜୁନ



କ୍ରୋଧେ ଗଙ୍ଗାଦେବୀ ବଭ୍ରୁବାହନ କର୍ଣ୍ଣରେ ।
ଅର୍ଜୁନର ମୃତ୍ୟୁକଥା କହିଲେ ସତ୍ୱରେ ॥

ମାଇଲେ ପଞ୍ଚ ଶତଶର ଇନ୍ଦ୍ରଙ୍କ କୁମର ।
ବଜ୍ରବାଣେ କାଟେ ଚିତ୍ରାଙ୍ଗଦାର କୁମର ॥
ପୁଣି କ୍ରୋଧେ ସର୍ପବାଣ ଅର୍ଜ୍ଜୁନ ମାଇଲେ ।
ଲକ୍ଷ ଲକ୍ଷ ସର୍ପମାନ ଶୂନ୍ୟରେ ଧାଇଁଲେ ॥
ବିକଟ ଦଶନ ମୁଖ ଅତି ଭୟଙ୍କର ।
ଫୁତ୍କାର ଧ୍ୱନି କରି ଧାଇଁଲେ ସକଳ ॥
ଦେଖି ଗରୁଡ଼ାସ୍ତ୍ର ମାରେ ସେ ବଭ୍ରୁବାହନ ।
ସର୍ପମାନେ ପଳାଇଲେ ଆକାଶ ଛାଡ଼ିଣ ॥
ଅର୍ଜ୍ଜୁନ କୁହୁକ ବାଣ ବିନ୍ଧିଲେକ କୋପେ ।
ଅର୍ଜ୍ଜୁନି ଭାସ୍କର ବାଣ ବସାଇଲା ଚାପେ ॥
ଅନ୍ଧକାର ଭାଜିଗଲା ଦିଗ ପରିମଳ ।
ଏକ ମୁଖରେ ପ୍ରଶଂସା କରନ୍ତି ଅମର ॥
କ୍ରୋଧେ ଅର୍ଜ୍ଜୁନ ତୂଣୀରୁ କାଢ଼ି ଏକ ବାଣ ।
ଛାଡ଼ିଦେଲେ କ୍ରୋଧେ ଚଳିଗଲା ସେ ବହ୍ନ ॥
କୋଟି କୋଟି ଗନ୍ଧର୍ବ ତା ଗର୍ଭୁ ଜାତହେଲା
ସମର ଭୂମିରେ ତହୁଁ ଚହଳ ପଡ଼ିଲା ॥
ଧାଇଁଲେ ସେମାନେ ଧନୁ ଶୂଳ ଗଦା ଧରି ।
ବଭ୍ରୁବାହନଙ୍କ ସୈନ୍ୟ ପକାଇଲେ ମାରି ॥
ତା ଦେଖି ଅର୍ଜ୍ଜୁନି କୋପେ ଶକତି ମାଇଲା ।
ତା ତେଜରେ ଗନ୍ଧର୍ବଙ୍କ ତେଜ ନ୍ୟୂନ ହେଲା
ପଡ଼ିଲା ସେ ଶକ୍ତି ଯାଇଁ ଅର୍ଜ୍ଜୁନଙ୍କ ଶିରେ ।
ଝାମ ଗଲା ପ୍ରାୟ ବୀର ହୋଇଲେ ସେଠାରେ
କ୍ରୋଧେ ଅର୍ଜ୍ଜୁନ ପରିଘ ଅସ୍ତ୍ର ହସ୍ତେ ଧରି ।
ମନ୍ତ୍ରପୂତ କରି ଛାଡ଼ିଦେଲେ ବେଗକରି ॥
କ୍ଷୁରପ ନାରାଚେ ତାହା କାଟେ ବାରବାର ।
କ୍ରୋଧେ କମ୍ପମାନ ହେଲା ଅର୍ଜ୍ଜୁନ ଶରୀର ॥
ଯେତେ ଯେତେ ଶରମାନ ମାଇଲେ ଅର୍ଜ୍ଜୁନ
ଅବହେଳେ ଛେଦିଲେ ତା ସେ ବଭ୍ରୁବାହନ
ଏ ସମୟେ ବଭ୍ରୁବାହ ଗଙ୍ଗା ଅସ୍ତ୍ର ଧରେ ।
ମନ୍ତ୍ରେ ଅଭିଷେକ କଲା ଅତ୍ୟନ୍ତ ଆଦରେ ॥
ପତିତପାବନୀ ଗଙ୍ଗା ତ୍ରିଲୋକ ତାରିଣୀ ।
ହୋଇଲେ ସେ ଅର୍ଜ୍ଜୁନଙ୍କ ପ୍ରାଣ ସଂହାରିଣୀ ॥
ଭୟଙ୍କର ବାଣରୂପ ହୋଇଣ ସେଠାରେ ।
ଅର୍ଜ୍ଜୁନ ମରଣ କଥା କହିଲେ କର୍ଣ୍ଣରେ ॥
ଦରିଦ୍ର ପାଇଲେ ଧନ ଆନନ୍ଦ ଯେସନ ।
ଶୁଣି ଆନନ୍ଦିତ ହେଲେ ଅର୍ଜ୍ଜୁନ ନନ୍ଦନ ॥
ଭକ୍ତିଭରେ ଦେବୀପାଦେ ନମସ୍କାର କଲେ ।
କ୍ରୋଧେ ଗଙ୍ଗାବାଣ ପାର୍ଥପରେ ନିକ୍ଷେପିଲେ ॥
ଗୃହୁଁ ଗୃହୁଁ ଆହା ସେହି ନିଦାରୁଣ ଶର ।
ସ୍ୱର୍ଗ ମର୍ତ୍ତ୍ୟ ରସାତଳ କଲା ଅନ୍ଧକାର ॥
ବିଜୁଳିର ତେଜ ଜିଣି ତେଜ ଝଟକିଲା ।
ଅର୍ଜ୍ଜୁନଙ୍କ କଣ୍ଠଦେଶେ ଯାଇଣ ପଡ଼ିଲା ॥
କିରୀଟ କୁଣ୍ଡଳ ସହ ଅର୍ଜ୍ଜୁନଙ୍କ ଶିର ।
ଭୂତଳେ ପଡ଼ିଲା ସର୍ବେ କଲେ ହାହାକାର ॥
ଅର୍ଜ୍ଜୁନ ନାଶିଣ ଶର ବେଗେ ଚଳିଗଲା ।
ସମୁଦ୍ରେ ସ୍ନାନ କରିଣ ସ୍ୱର୍ଗକୁ ଚଳିଲା ॥
ଯେତେବେଳେ ଅର୍ଜ୍ଜୁନଙ୍କ ଶିର ପୃଥିବୀରେ ।
ପଡ଼ିଗଲା ଦେଖୁଥିଲେ ସକଳ ଅମରେ ॥
ହାହାକାର କରି ସର୍ବେ ଅନାଇଁ ରହିଲେ ।
ଅକସ୍ମାତ ରକ୍ତବୃଷ୍ଟି ହୋଇଲା ସେଠାରେ ॥
ଦିନକର ମ୍ଳାନ ହେଲେ ପୃଥିବୀ କମ୍ପିଲା ।
ବଭ୍ରୁବାହନ ନୟନୁ ଲୋତକ ଝରିଲା ॥
ରଥ ଉପରୁ ଓହ୍ଲାଇ ବୀର ଚୂଡ଼ାମଣି ।
ପାର୍ଥ ପାଦତଳେ ବସି କାନ୍ଦିଲାକ ପୁଣି ॥
ଓକେତେକ୍ଷଣେ କ୍ରୋଧଶାନ୍ତ କରି ବାରବର ।
କିରୀଟ ଗାଣ୍ଡିବ ହସ୍ତେ ଧରିଲା ସତ୍ୱର ॥
ସୈନ୍ୟଗଣମାନେ ଜୟ ଜୟ ଧ୍ୱନି କଲେ ।
ଆନନ୍ଦେ ବଭ୍ରୁବାହନ ଗୃହେ ଚଳିଗଲେ ॥
ଜୟବାଦ୍ୟ ବାଇ ନଗ୍ରେ ପ୍ରବେଶ ହୋଇଲେ ।
ଠିକ ଠିକ କରି ରସେ ମହାଦେବ ବୋଲେ ॥
ଜୟ ପ୍ରଭୁ ନାରାୟଣ ଜଗତ ଜୀବନ ।
ହୀନବୁଦ୍ଧି ଅଟେ ମୁହିଁ ବାଳକ ଅଜ୍ଞାନ ॥
ଧୂଳିଶ୍ୱରେ ଘର ଉପାଧ୍ୟାୟ ବଂଶେ ଜାତ ।
ତୁମ୍ଭ କୃପାବଳେ ରଚୁଅଛି ଏ ଚରିତ ॥



## ଚିତ୍ରାଙ୍ଗଦା ଓ ଉଲୁପୀର ଶୋକ

ଚିତ୍ରାଙ୍ଗଦା ଉଲୁପୀ ଯେ ଅନ୍ତଃପୁରେ ଥିଲେ ।
ରଣଜୟ ବାଦ୍ୟ ଶୁଣି ଚମକି ପଡ଼ିଲେ ॥
ଚିତ୍ରାଙ୍ଗଦା ବୋଲେ ସଖି ଶୁଣ ମୋର ବାଣୀ
କପାଁ ମୋ ସୁବର୍ଣ୍ଣ ବାହୁ କଳାଦଶେ ପୁଣି ॥
ଶୁଣି ଉଲୁପୀ ବୋଲଇ ଶୁଣ ଗୋ ସଙ୍ଗାତ ।
ପ୍ରାଣନାଥ ଦେଇଥିଲେ ଯେବଣ ସଙ୍କେତ ॥

ପାଞ୍ଚଗଛ ତାଳସ୍ନ ତୋଟାରେ ଯେ ଥିଲେ ।
ମୋ ଜୀବନ ଥିବାଯାଏ ନ ମରବ ଭଲେ ॥
ଯେତେବେଳେ ମୋହର ଯେ ମୃତ୍ୟୁ ହେବ ସତ୍ୟ
ସେତେବେଳେ ଏ ଗଛ ନିଶ୍ଚୟ ମରବଇଁ ॥
ଦେଖିଲେ ଗଛ ତୋଟାରେ ହୋଇଅଛି ମୃତ
ଏହା ସମୟେ ମିଳିଲା ଚିତ୍ରାଙ୍ଗଦା ସୁତ ॥
ଦେନି ମାତାଙ୍କ ଚରଣେ ନମସ୍କାର କଲା ।
କିରୀଟ ଗାଣ୍ଡିବ ଧନୁ ତହିଁ ଥୋଇଦେଲା ॥
ବୋଇଲା ଜନନୀ ତୁମ୍ଭ କଲ୍ୟାଣରେ ମୁହିଁ ।
ମହାବଳୀ ଅର୍ଜୁନଙ୍କୁ ଯୁଦ୍ଧେ ଜିଣିଲଇଁ ॥
ତିନି ଭୁବନ ମଧ୍ୟରେ ଯେ ବୀର ଦୁର୍ଜୟ ।
ଆଜ ମୋ ହାତରେ ସେ ହୋଇଲା ପରାଜୟ ॥
ପୁତ୍ରଠାରୁ ଶୁଣି ଏହା ନିଦାରୁଣ ବାଣୀ ।
ଛିନ୍ନଭିନ୍ନ ପ୍ରାୟ ପଡ଼ିଗଲେ ଦେନିରାଣୀ ॥
କେତେବେଳେ ଜ୍ଞାନ ପାଇ କରନ୍ତି ରୋଦନ
ପ୍ରାଣନାଥ ଗୁଣଗୁଣି ଅଥୟ ହୋଇଣ ॥
ଆରେ ବଳା କି କୁକ୍ଷଣେ ଜନ୍ମହେଲୁ ତୁହି ॥
ପିତା ଭ୍ରାତା ନାଶି କି ଯଶ ରଖିଲୁ ମହୀ ॥
ଆରେ ବାବୁ ଦେଖା ମୋତେ ନେଇପ୍ରାଣଧନ
ତାଙ୍କ ବିନା ନ ରଖିବୁ ଆଉ ଏ ଜୀବନ ॥
ଏମନ କହିଣ ଦେନିରାଣୀ କ୍ରୋଧଭରେ ।
ପାଗଳିନୀ ପ୍ରାୟ ଦଉଡ଼ିଲେ ସେ ଦାଣ୍ଡରେ ॥
କେଶ ବାସ ଅସମ୍ଭାଳ ଅବସ୍ଥାରେ ସେହି ।
ପ୍ରବେଶ ହୋଇଲେ ଯାଇ ସମରର ଭୂଇଁ ॥
ତାଙ୍କ ପଛେ ବଭ୍ରୁବାହ କରଇ ଗମନ ।
ଦେନି ନୟନରୁ ଯାଏ ଲୋତକ ବହିଣ ॥
ସମର ଭୂମିରେ ସ୍ୱାମୀ ପଡ଼ିଛି ଦେଖିଲେ ।
ବୋଲେ ଧରି ଉଚ୍ଚସ୍ୱରେ ବାହୁନି କାନ୍ଦିଲେ ॥
ଦୁହେଁ କାନ୍ତ ଶିର କୋଳେ ଘେନିବାହୁନିଲେ
ଅହା ପ୍ରାଣନାଥ ଛାଡିଗଲ ହୋ ବୋଇଲେ ॥
ଏ ଛାର ପୁତ୍ରର ହସ୍ତେ ଖାଇ ପ୍ରାଣ ଦେଲ ।
ଅଗାଧ ସମୁଦ୍ର ଜଳେ ଭେଳା ବୁଡ଼ାଇଲ ॥
ଏତେ ବୋଲି ପାର୍ଥ ପାଦ ହୃଦରେ ଗୁପନ୍ତି ।
ବ୍ୟାକୁଳ ହୋଇଣ ଦୁହେଁ ରୋଦନ କରନ୍ତି ॥
ଦେଖିଲେ କର୍ଣ୍ଣର ପୁତ୍ର ପଡ଼ିଣ ଅଛଇ ।
ତାହା ଶିର ହସ୍ତେ ଘେନି କାନ୍ଦିଲେକ ସେହି ॥

ଚିତ୍ରାଙ୍ଗଦା ପୂର୍ବକଥା ସୁମରି ମନରେ ।
ପାର୍ଥର ମୁଖକୁ ଚାହିଁ କହନ୍ତି କାତରେ ॥
ବୋଲେ ପାର୍ଥ ତୁମ୍ଭ ପାଦତଳେ ମୁହିଁ ଅଛି
କ୍ଷମା ମୋତେ ନ ଚାହିଁ ପୁତ୍ରର ଦୋଷମୁଚି
କିବା ଅପରାଧ ମୁହିଁ କଲି ଅଜ୍ଞାନରେ ।
ହସିଣ ବଚନ କ୍ଷମା ନ କହ ମୋହରେ ॥
ଏ ତୁମ୍ଭର ଗତକୁ ଲଭିବୁ ଆମ୍ଭେ ଜାଣ ।
ଆବର କେଉଁ କାରଣେ ରଖିବୁ ଜୀବନ ॥
ପୁତ୍ର ଅପରାଧ ସବୁ କ୍ଷମି ଦୟାକର ।
ଦାସପଣେ ସେବୁଥିବ ତୁମ୍ଭର ପୟର ॥
ଏତେବଡ଼ ମହାବୀର ପଣ କାହିଁ ଗଲା ।
ଏ ଛାର ବାଳକ ତୋତେ ସଂଗ୍ରାମେ ମାଇଲା
ବିରାଟରେ ଗୋଧନ ହରଣ ଯେଉଁ କାଳେ
କେତେ ବୀର ଜିଣି ଏକା ଅଛିଲ ସେ କାଳେ
ଦ୍ରୌପଦୀର ସ୍ୱୟମ୍ବରେ ଲକ୍ଷେ ରାଜା ଜିଣି ।
ଲକ୍ଷ୍ୟବିନ୍ଧ କନ୍ୟା କି ଆଣିଲେ ଫାଲଗୁନି ॥
ତାହାଙ୍କୁ ସପତ୍ନୀଭାବେ ହିଂସା ନାହିଁ ମୋର
ସେ ଦୋଷକ ମନେ ଧରି ନ କୁହ ଉତ୍ତର ॥
ପୂର୍ବେ ହୋ ଖାଣ୍ଡବ ବନ ଦହିଲଟି ହେଲେ ।
ଇନ୍ଦ୍ରାଦି ବ୍ୟାଧିରୁ ଅନଳ ଭଲ ହେଲେ ॥
ନାଗରାଜା ଦୁହିତା ଉଲୁପୀ ଏହୁ ଜାଣ ।
ସ୍ୱାମୀଙ୍କୁ ବଶ ହୋଇ ନାଥ ଥିଲ ହେ ପୂର୍ବେଣ
ଏତେ କହି ପାର୍ଥ ମୁଣ୍ଡ ଦେନିଙ୍କ ହସ୍ତରେ ।
ଦେନି ସପତ୍ନୀ ଯେ କାନ୍ଦନ୍ତି ଉଚ୍ଚସ୍ୱରେ ॥
ପୁତ୍ରଙ୍କୁ ବୋଇଲେ ବାବୁ ଭଲ କର୍ମ କଲୁ ।
ଅକୀର୍ତ୍ତି ପତାକା ବାବୁ ଶିରରେ ବାନ୍ଧିଲୁ ॥
ଏବେ ତୁହି ଆମ୍ଭ ଶିର କରରେ ଛେଦନ ।
ପିତାମାତା ନାଶି ପୁତ୍ର ରଖିଥାଅ ମାନ ॥
ପର୍ଶୁରାମଠାରୁ ହୋ ଦାରୁଣ ହେଲୁ ତୁହି ।
ପୂର୍ବେ ଯେ ମାତାଙ୍କ ଶିର ଛେଦଥିଲେ ସେହି
ତହିଁରୁ ଅଧିକ ପୁଣ ହୋଇଲା ତୋହର ।
ଛେଦ ପକାଇଲୁ ତୁହି ପିତାଙ୍କର ଶିର ॥
ଆଣ ବାବୁ କାଷ୍ଠ ଅଗ୍ନିକୁଣ୍ଡ ସଜ କର ।
ବିଳମ୍ବ ନ କର ପୁତ୍ର ଚଳରେ ସତ୍ୱର ॥
ତାଙ୍କ ସହିତ ଆମ୍ଭଙ୍କୁ ତହିଁ ଭର ନେଇ ।
ସୁଖେ ରାଜ୍ୟ ଭୋଗ ବାବୁ ତୁହି ରାଜା ହୋଇ

ପୁଣି କାନ୍ଦି କହେ ପୁତ୍ର ଏଡ଼େ କର୍ମ କଲି ।
ଅମ୍ଭଙ୍କୁ ଏ ଦଶା ଦେଇ ପିତାଙ୍କୁ ମାରିଲି ॥
ମୁହିଁ ପୁତ୍ର ବଧୂ ଘେନି ତାଙ୍କ ସଙ୍ଗେ ଯାନ୍ତି ।
ହସ୍ତିନା ନଗରେ ଯାଇଁ ପ୍ରବେଶ ହୁଅନ୍ତି ॥
ଦେଖନ୍ତି ଯୁଧିଷ୍ଠିରଙ୍କର ଯଜ୍ଞ କର୍ମମାନ ।
ପାପ ନାଶନ୍ତି କରିଣ ଶ୍ରୀକୃଷ୍ଣ ଦର୍ଶନ ॥
ସେଠାବରେ ଦେଖନ୍ତି ଦେବକୀ କୁନ୍ତୀଆଦି ।
କୃଷ୍ଣ ରାଣୀ ଅଷ୍ଟପାଟବଂଶୀ ସେ ଦ୍ରୌପଦୀ ॥
ତାହାଙ୍କୁ ଯେ ଉତ୍ତମ ପଦାର୍ଥମାନ ଦ୍ୟନ୍ତି ।
ଲେଉଟି ପୁତ୍ରଙ୍କୁ ଘେନି ଘରକୁ ଆସନ୍ତି ॥
ଏଡ଼େ ବଡ଼ ଆଶା ମୋର ଛେଦିଲି ନନ୍ଦନ ।
ଅର୍ଜ୍ଜୁନ ପ୍ରାୟେକ ପିତା କଲୁ ତୁ ନିଧନ ॥
ଏମନ୍ତ କହିଣ ଉଚ୍ଚେ ରୋଦନ କରନ୍ତି ।
କ୍ଷଣେ କ୍ଷଣେ ମୂର୍ଚ୍ଛାଗତେ ଢଳିଣ ପଡ଼ନ୍ତି ॥
ପୁଣି ପୁଣି ପୁତ୍ରଙ୍କୁ କରନ୍ତେ ନିନ୍ଦା ସେହି ।
ଶୁଣି ବଭ୍ରୁବାହନ ବୈରାଗ୍ୟ ଭାବ ହୋଇ ॥
ବୋଇଲେ ହୋ ମାତା ଅବିଗୁର କଲି ମୁହିଁ
ପିତାଙ୍କୁ ମାରିଲି ପିତୃ ହତ୍ୟା ଲଭିଲଇଁ ॥
ଯେତେ ଧର୍ମ ଥିଲା ମୋର ସର୍ବ ଗଲା ନାଶ ।
ଯୁଗେ ଯୁଗେ ସଂସାରରେ ରଖିଲି ଅଯଶ ॥
ଇହ ପରଲୋକ ଧର୍ମ ସବୁ ନାଶିଲଇଁ ।
ସର୍ବଦା ନରକ କୁଣ୍ଡେ ବାସ କରିବଇଁ ॥
ରାଜାମାନେ ନ ଛୁଇଁବେ ବସିଲେ ସଭାରେ ।
ପତିତ ମୁଁ ହୋଇଲଇଁ ସର୍ବଦା ସଂସାରେ ॥
ଏତେ ବୋଲି ମହାଚିନ୍ତା କରି ବୀରବର ।
ଉପରକୁ ଚାହିଁ ଶ୍ୱାସ ଛାଡ଼ଇ ପ୍ରଖର ॥
ବୋଲଇ ହୋ ମାତା କ୍ରୋଧେ ମୁହିଁ ପାପ କଲି
ଅଭିମାନେ ପିତାଙ୍କୁ ମୁଁ ସଂହାର କରିଲି ॥
ଆବର ମାରିଲି ମାତା କର୍ଣ୍ଣ ନନ୍ଦନକୁ ।
ଏବେ ସେ ପାପ ଦହଇ ମୋହର ହୃଦକୁ ॥
ତିନିପୁରେ ଯୁଗେ ଯୁଗେ ରଖିଲି ଅଯଶ ।
ପିତୃବଧ ପାପ ମୋ ହୃଦୟ କରେ ଧ୍ୱଂସ ॥
ଲୋକମାନେ ଦେଖିଣ ମୋ ମୁଖ ନ ଚାହିଁବେ
ପିତୃହନ୍ତା ବୋଲି ପାଶେ ବସାଇ ନ ଦେବେ
ଯେତେ ଯେତେ ତୀର୍ଥମାନ ପୃଥିବୀରେ ଅଛି ।
ତହିଁ ମୋର ପାପମାନ କାହିଁ ନୁହେ ଲେଛି ॥
ଜପ ତପ ଯଜ୍ଞ ଦାନ ଧର୍ମ କଲେ ମୁହିଁ ।
କେତେବେଳେ ଏପାପରୁ ମୁକ୍ତ ହେବି ନାହିଁ ॥
କେବଳ ମୋର ଭରସା ଶ୍ରୀରଙ୍ଗାଚରଣ ।
ସେ ଏକା କରି ପାରନ୍ତି ଏ ପାପ ଦହନ ॥
ଯାହାଙ୍କର ଅର୍ଦ୍ଧଦେହ ମୋ ପିତା ଅଟଇ ।
ତାହାଙ୍କୁ ପ୍ରତ୍ୟକ୍ଷ ନାଶ କରିଅଛି ମୁହିଁ ॥
ଯେହୁ ପାର୍ଥ ସେହି କୃଷ୍ଣ ଏଥେ ନାହିଁ ଭେଦ
ଏ କଥା ଜାଣିଲେ କିସ ବୋଲିବେ ଗୋବିନ୍ଦ
ଯେଉଁ ହରି ସ୍ମରଣରେ ପାପ ନାଶ ଯାଇ ।
ତାଙ୍କ ଅର୍ଦ୍ଧଦେହ ମାରି ଅପରାଧ କଲଇଁ ॥
ଶ୍ରୀହରିଙ୍କ ହତ୍ୟା ଦୋଷ ନିଶ୍ଚେ ହେଲା ମୋର
ଆବର ଏ ପାପୁଁ କେବେ ନ ହୋଇବି ପାର
ଜୀବନ ତେଜିବି ମୁହିଁ ଅନଳ ଲଗାଇ ।
ମୋର ମୁଖ ସଂସାରରେ ଦେଖାଇବି ନାହିଁ ॥
ଏହି କଥା ନିଶ୍ଚେ ମୋର ହୋଇଲା ପ୍ରମାଣ ।
ଏ ଜୀବନ ଛାଡ଼ିବଇଁ ତୁମ୍ଭର ସଙ୍ଗେଣ ॥
ଏବେ ମୋ ବିବେକ ବୁଦ୍ଧି ହୋଇଲା ଯେ ଜାତ
ଅଗ୍ନିରେ ପଶି ନାଶିବି ମୋହର ଦୁଷ୍କୃତ ॥
ସାବତ ଜନନୀ ମୋର ଉଲୂପୀ ସୁନ୍ଦରୀ ।
ନାଗରାଜାଙ୍କ ଦୁହିତା ମୋର ହିତକାରୀ ॥
ଜନ୍ମ କାଳୁଁ ଦନ୍ତାଘାତେ କିପାଁ ନ ମାଇଲେ
ଜନ୍ମକାଳୁଁ ସ୍ନେହେ ମୋତେ କିପାଇଁ ପାଳିଲେ
ତାଙ୍କ ବିଷଘାତେ ଯେବେ ମୁହିଁ ମରଥାନ୍ତି ।
ତେବେ କିପାଁ ପିତୃବଧ ପାତକ ଲଭନ୍ତି ॥
ମାତାଙ୍କୁ ବିଧବା କଲି ପିତାଙ୍କୁ ମାରିଣ ।
ବୀରନାରୀମାନଙ୍କୁ ମୁଁ ଦେଲଇଁ କଷଣ ॥
ଏହିପରି ଖେଦ କରି ବଭ୍ରୁବାହ ବୀର ।
ଚରଙ୍କୁ ଆଦେଶ ଦେଲା ଯାଅରେ ସତ୍ୱର ॥
ଯାଅ ବାରେ ଶୀଘ୍ରେ ଅଗ୍ନିକୁଣ୍ଡ ସଜକର ।
ତହିଁରେ ପଶି ନାଶିବି ମୋର ପାପ ଭାର ।
ଅଶ୍ୱ ମାନେ ଦୂତେ ଯେ ବହନ ଚଳାଗଲେ
ଏହା ଦେଖି ଚିତ୍ରାଙ୍ଗଦା ମହା ଚିନ୍ତା କଲେ
ଦଇବ ସୁମରି ଲଲାଟରେ ମାରି କର ।
ପତି ମଲା ପୁତ୍ର ନାଶ ହୋଇବ ମୋହର ॥
ରେ ମନ୍ଦ ବିଧାତା ଲେଖିଥିଲୁ ମୋର ଭାଲେ
କେଉଁ ଅପରାଧ କରିଥିଲି ତୋହଠାରେ ॥

ଏପରି କହුଣ ସତୀ କରିଲେ ସ୍ନାହାନ ।
ବୋଇଲେ ରେ ବଳା ମୁହିଁ ହୋଇବି ଦହନ
ତୁମ୍ଭ ଦୁହିଁଙ୍କ ହସଇ କପାଇଁ ବଞ୍ଚିବ ।
ଏ ନିଷ୍ଠୁର ମୁଖ କି ସଂସାରେ ଦେଖାଇବ ॥
ଦେଖି ଏସନ ଅବସ୍ଥା ଉଲୂପୀ ସୁନ୍ଦରୀ ।
ଧର୍ମବଳେ ମନେ ଅସି ପଡ଼ିଲା ତାଙ୍କରି ॥
ବୋଲଇ ଗୋ ସଖି ଶୁଣ ବଚନ ମୋହର ।
ଯେତେବେଳେ ପାର୍ଥ ସହ ବିଭାହେଲା ମୋର
ମୋର ପିତା ବିଭାଶେଷେ ବୀରପାର୍ଥେ ନେଇ ।
ସିଂହାସନେ ବସାଇଣ କହିଲେ ବିନୟୀ ॥
ତହିଁ ମୃତ ସଞ୍ଜୀବନୀ ମଣି ଆନନ୍ଦରେ ।
ଧନରତ୍ନ ସହ ଦେଲେ ଯୌତୁକ ପାର୍ଥରେ ॥
ସେ ମଣିକୁ ପାର୍ଥବୀର ପାତାଳ ଭୁବନେ ।
ରଖିଣ ଅସିଲେ ମୋର ପିତାଙ୍କର ସ୍ଥାନେ ॥
ସେ ମଣି ସ୍ପର୍ଶରେ ନିଶ୍ଚେ ଅର୍ଜୁନ ଜୀବନ ।
ସୈନ୍ୟ ସେନାପତି ସହ ଲଭିବେତ ପ୍ରାଣ ॥
ଏସନ ଭାବିଣ ସତୀ ବୋଲନ୍ତି ବଚନ ।
କପାଇଁ ଏତେ ଆକୁଳ ହେ ବଭ୍ରୁବାହନ ॥
କୃଷ୍ଣଙ୍କର ଅର୍ଦ୍ଧଦେହ ଅଟନ୍ତି ଯେ ବୀର ।
କୃଷ୍ଣ ଥାଉ ମରଣ ଯେ ନାହିଁ ତାହାଙ୍କର ॥
ନରନାରାୟଣ ରୂପେ ମର୍ତ୍ତ୍ୟେ ଅବତାର ।
ପୃଥ୍ୱୀ ଭାରଭର ନାଶି ଯିବେ ନିଜପୁର ॥
ଛାଡ଼ ଶୋକ ଛାଡ଼ ଖେଦ ଶତ୍ରେ ଧୈର୍ଯ୍ୟଧର ।
ବଞ୍ଚିବା ଉପାୟ ମୁହିଁ କହୁଛି ଅବର ॥
ଅମୃତନାମରେ ମଣି ପାତାଳରେ ଅଛି ।
ତାକୁ ଆଣିଲେ ବଞ୍ଚିବେ ବାସବର ବଚ୍ଛି ॥
ଏହା ଶୁଣି ବୋଲେ ବଭ୍ରୁବାହାନ ଜନନୀ ।
ଅତି ବେଗେ ଆଣିଦିଅ ତାହିଁ ଅଛି ମଣି ॥
ଅର୍ଜୁନ ବିରହେ କଷ୍ଟ ହେଉଛି ଅପାର ।
ଘାଣ୍ଟୁଛି ଦାରୁଣ ଶୋକ ହୃଦୟ ମୋହର ॥
ଜଣାଯାଏ ତୁମ୍ଭେ ଜାଣି ମୋହର ସନ୍ତାନେ ।
ପଠାଇଲ ଅର୍ଜୁନଙ୍କୁ ନାଶିବାକୁ ରଣେ ॥
ତୁମ୍ଭେ କହି ନ ଥିଲେ କି କରିଥାନ୍ତା ରଣ ।
ସ୍ୱାମୀଙ୍କୁ ନାଶି କପଟ ଧରିଛ ପରାଣ ॥
ତୁମ୍ଭଯୋଗ୍ୟ ତୁମ୍ଭ ସ୍ୱାମୀ ମରିଲେ ଅତାଳେ ।
କେମନ୍ତେ ସହୁଛ ସେହି ଦୁଃଖ ଏତେବେଳେ

ବିନାଶି ପତିଙ୍କି କିଛି ଦୁଃଖ କର ନାହିଁ ।
ପାଷାଣେ କି ତୁମ୍ଭ ତନୁ ଗଢ଼ିଥିଲା ବିହି ॥
ଏପରି ସ୍ୱଭାବ ତବ ନ ଥିଲି ଗୋ ଜାଣି ।
ଅକାରଣେ କହୁଥାଅ ସ୍ୱାମୀ ସୁହାଗିନୀ ॥
ଯେବେ କିଛି ଦୋଷ ସ୍ୱାମୀ କରିଛି ତୁମ୍ଭର ।
ଚରଣ ଧରୁଛି ତାହା ସବୁ କ୍ଷମାକର ॥
ସ୍ୱାମୀଙ୍କ ଦୋଷ ଧରିବା ନାରୀର କି ଧର୍ମ ।
ଯେ ଧରେ ସେ ନରକରେ ହୁଅଇ ପତନ ॥
ତୁମ୍ଭଠାରେ ପ୍ରୟୋଜନ ନାହିଁ ଗୋ ମୋହର
ବେଗେ ବଞ୍ଚାଇଣ ଦିଅ ମୋ ହୃଦୟହାର ॥
ଆଜ ଯେବେ ପ୍ରାଣପତି ନ ଲଭନ୍ତି ପ୍ରାଣ ।
ନିଶ୍ଚେ ଏ ଅଗ୍ନିରେ ମୁହିଁ ତେଜିବି ଜୀବନ ॥
ଶୁଣିଣ ଉଲୂପୀ କହେ ଶନ୍ତା ପରିହର ।
ସାମାନ୍ୟ ନାରୀ ପରାୟେ ନୁହ ଗୋ କାତର ॥
ପ୍ରାଣଈଶ ଏହିକ୍ଷଣି ନିଶ୍ଚୟ ବଞ୍ଚିବେ ।
ପୁତ୍ରକୁ ବୁଝାଇ ସଖି ଶୋକ ତେଜ ଏବେ ॥
ଯାହାର ସଖା ଅଟନ୍ତି ନିଜେ ନାରାୟଣ ।
ତାହାର କି କେବେ ହୁଏ ସଂସାରେ ମରଣ ॥
ବିଶେଷରେ ପିତା ମୋର ଅନନ୍ତ ରାଜନ ।
ଅର୍ଜୁନଙ୍କଠାରେ ତୋଷ ସଦା ତାଙ୍କମନ ॥
ତାହାଙ୍କ ପାଖରୁ ଆଣି ସଞ୍ଜୀବନୀ ମଣି ।
ପ୍ରାଣନାଥେ ବଞ୍ଚାଇବି ନ ଭାବ ସଙ୍ଗିନୀ ॥
ଶୁଣିଛି ପ୍ରବେଶ ମୋର ପୁତ୍ରବରେ ଋଷି ।
ନାରାୟଣ ଅର୍ଦ୍ଧଅଙ୍ଗ ବୋଲନ୍ତି ଦେବର୍ଷି ॥
ନିରାକାରଙ୍କର ଅଙ୍ଗୁ ଜନ୍ମଛନ୍ତି ସେହି ।
କେତେବେଳେ ତାହାଙ୍କର କ୍ଷୟ ହେବନାହିଁ
ମାୟାଧର ମାୟାକର ଅଛନ୍ତି ଏ ଖେଳା ।
ନୋହିଲେ କି ରଣେ ନ ଆସନ୍ତି ନନ୍ଦବଳା ॥
ମୋହ କଥା ମାନ ସଖି ସ୍ଥିର କର ମନ ।
ଏହିକ୍ଷଣି ପ୍ରାଣନାଥ ଲଭିବେ ଜୀବନ ॥
ଏହିପରି ବୁଝାଇଣ ଉଲୂପୀ ସୁନ୍ଦରୀ ।
ମହାଦେବ ବୋଲେ ହରି ପାଦକୁ ସୁମରି ॥



## ପାତାଳପୁରରେ ବଭ୍ରୁବାହନ ସର୍ପ ସହିତ ଯୁଦ୍ଧ ଓ ମଣି ଆଣିବା

ଏଥୁଅନ୍ତେ ଜନେ ଶୁଣ ଅପୂର୍ବ କାହାଣୀ
ଜନ୍ମେଜୟ ମହାରାଜା କରନ୍ତି ବିନୟୀ ॥
ଜୈମିନୀଙ୍କୁ ବିନୟରେ ତହୁଁ ପଚାରିଲେ ।
କପରି ଅର୍ଜୁନ ବୀର ଜୀବନ ପାଇଲେ ॥
କପରି ପାତାଳୁ ମଣି ଆସିଲା ମର୍ତ୍ତ୍ୟକୁ ।
ଏ ସବୁ ବିସ୍ତାରି ମୁନି କହ ହେ ଅମ୍ଭଙ୍କୁ ॥
କାହିଁକି ଅରଜୁନଙ୍କୁ ଗଙ୍ଗା ଶାପ ହେଲା ।
ସେ ସବୁ ବିସ୍ତାରି ମୋତେ କହ ଯତିବଳା ॥
ତବ ମୁଖୁଁ ଶୁଣି ମୁହିଁ ପବିତ୍ର ହୋଇବି ।
ଜନ୍ମ ଜନ୍ମାନ୍ତରେ ମୋର ଦୁଃଖ ଦହିବ ॥
ରାଜାଙ୍କ ବିନୟ ଭକ୍ତି ଦେଖି ମୁନିବର ।
ବୋଲନ୍ତି ହେ ମହାରାଜା ଚିତ୍ତ କର ସ୍ଥିର ॥
କହୁଅଛୁ ଯେ ସକଳ ବିସ୍ତାରି କରିଣ ।
ଯାହା ଯାହା ପୂର୍ବୁ ହୋଇଥିଲାକ ଘଟଣ ॥
ମହାଭାରତର ଯୁଦ୍ଧ ହେଲା ଯେତେବେଳେ ।
ଭୀଷ୍ମ ସେନାପତି ହେଲେ କୌରବ ପକ୍ଷରେ ॥
ପ୍ରତିଜ୍ଞା କରିଣ ଦଶଦିନ ଯୁଦ୍ଧ କଲେ ।
କ୍ରମେ ପାଣ୍ଡବମାନଙ୍କ ସୈନ୍ୟ ବିନାଶିଲେ ॥
ସମରେ ଅତି ଦୁର୍ଜ୍ଜୟ ଅଟେ ଭୀଷ୍ମବୀର ।
କାହା ସାଧ ଅଛି ରଣେ ହେବ ଅଗ୍ରସର ॥
କାଳାନ୍ତକ କାଳ ସମ ଭୀଷ୍ମବୀରେ ଦେଖି ।
ମନ ମଧ୍ୟେ ଚିନ୍ତାକଲେ ପ୍ରଭୁ ପଦ୍ମଆଖି ॥
ଇଚ୍ଛାହେଲେ ମରେ ଯେହୁ ନାହିଁକ ମରଣ ।
କିବା ଛାର ଅସ୍ତ୍ର ଶସ୍ତ୍ର ନିକେ ଜନ୍ତୁଗଣ ॥
ଯାର ପରେ ଅଧିପତ୍ୟ ଯମଙ୍କର ନାହିଁ ।
ତାକୁ କି ରଣେ ଜିଣିବ ବାସବ ତନୟୀ ॥
ଭୀଷ୍ମଙ୍କ ସକାଶେ ଚିନ୍ତାକରି ଚକ୍ରପାଣି ।
ବାହାର କରିଲେ ତହୁଁ ଏକ କୂଟ ବାଣୀ ॥
ନପୁଂସକ ହୀନଜୀବ ମୃକ୍ତ କେଶ ନର ।
ଏମାନଙ୍କୁ ଦେଖି ଭୀଷ୍ମ ଛାଡେ ଧନୁଶର ॥
ଭୀଷ୍ମଙ୍କର ଏହିପରି ପ୍ରତିଜ୍ଞା ଅଛଇ ।
ତେଣୁ ପାର୍ଥଙ୍କୁ ବୋଲନ୍ତି ପ୍ରଭୁ ଯଦୁସାଇଁ ॥
ଶୁଣ ଶୁଣ ବୀରମଣି ମୋହର ବଚନ ।
ଭୀଷ୍ମଙ୍କୁ ଜୟ କରିବା ଅତିହିଁ କଠିନ ॥
ଅମ୍ଭ ସୈନ୍ୟ ମଧ୍ୟେ ଅଛି ଯେ ଶିଖଣ୍ଡି ବୀର ।
ନପୁଂସକ ଅଟେ ସେହି ଜାଣ ବୀରବର ॥
ତାହାକୁ ଆଗରେ ରଖି ସମର କରିଲେ ।
ଭୀଷ୍ମଦେବ ଧନୁଶର ଛାଡ଼ିଦେବେ ହେଲେ ॥
ସେଣସ୍ତେ ପଛରେ ରହି ତୁହି ପାର୍ଥବୀର ।
ତୀକ୍ଷ୍ଣ ଅସ୍ତ୍ରମାନ ବେଗେ କରିବୁ ପ୍ରହାର ॥
ଅସ୍ତ୍ରର ଆଘାତେ ବୀର ବହୁକଷ୍ଟ ପାଇ ।
ଇଚ୍ଛାରେ ମରିବେ ସେହି ଏଥି ଆନ ନାହିଁ ॥
ଶ୍ରୀକୃଷ୍ଣଙ୍କ ମନ୍ତ୍ରଣାରେ ପାର୍ଥ ସେହିପରି ।
ଶିଖଣ୍ଡିକୁ ଆଗେ ରଖି ଗଲେ ଯୁଦ୍ଧକରି ॥
ଭୀଷ୍ମଙ୍କ ସମ୍ମୁଖେ ଯାଇ ପ୍ରବେଶ ହୋଇଲେ ।
ଶିଖଣ୍ଡିକୁ ଦେଖି ଭୀଷ୍ମ ଧନୁତ୍ୟାଗ କଲେ ॥
ଶିଖଣ୍ଡିକି ଆଗେ ରଖି ପାର୍ଥ ବୀରବର ।
ତୀକ୍ଷ୍ଣ ତୀକ୍ଷ୍ଣ ବାଣ ମାନ କରିଲେ ପ୍ରହାର ॥
ପ୍ରତି ଲୋମକୂପେ ଶର ବିଦ୍ଧ ଯେ ହୋଇଲା ।
ସେ ଆଘାତେ ରଥୁଁ ଭୀଷ୍ମ ଢଳିଣ ପଡିଲା ॥
ଇଚ୍ଛା ମୃତ୍ୟୁ ଅଟେ ସେହି ରହି କିଛୁଦିନ ।
ଶର ଶଯ୍ୟାରେ ରହିଲେ ଶ୍ରୀହରି ଧ୍ୟାଇଣ ॥
ସୁସମୟ ଦେଖିକରି ଜୀବନ ତେଜିଲେ ।
ଏହାଦେଖି ଦେବଗଣ ହାହାକାର କଲେ ॥
ସର୍ବ ଦେବଗଣ ଅଷ୍ଟବସୁ ସହିତରେ ।
ଗଙ୍ଗାସ୍ନାନକୁ ଚଳିଲେ ଭୀଷ୍ମ ନିମିତ୍ତରେ ॥
ସ୍ତୁତିକରି ଗଙ୍ଗାକୁ ସେ ବଚନ ବୋଇଲେ ।
ଅନ୍ୟାୟ ଯୁଦ୍ଧେ ଅର୍ଜ୍ଜୁନ ତୋ ସୁତ ମାରିଲେ ॥
ଶୁଣି ଗଙ୍ଗାଦେବୀ ବହୁ ଦୁଃଖିତ ହୋଇଣ ।
ତାଙ୍କୁ ଦୁଃଖରେ ବୋଲନ୍ତି ଅଷ୍ଟବସୁଗଣ ॥
ଆଜ୍ଞାଦିଅ ମାତା ଆମ୍ଭେ କପର୍ଦ୍ଦୀ ପାର୍ଥରେ ।
ଅକ୍ଳେଶେ ନାଶ କରିବୁ ଶାପଦେଇ ଖରେ ॥
ଅନୁମତି ଦେଇ ଗଙ୍ଗା ହେଲେ ଅନ୍ତର୍ଦ୍ଧାନ ।
ଜାଣିଣ ଉଲୁପୀ ଏହି ସମସ୍ତ କାରଣ ॥
ପିତାର ପାଶକୁ ଯାଇ ବିନୟେ କହିଲା ।
ପ୍ରତିକାର କର ତାତ ପାର୍ଥେ ଶାପହେଲା ॥
ନ କରିଲେ ପ୍ରତିକାର ଓତଜିବ ଜୀବନ ।
ଶୁଣିଣ ଅନନ୍ତ ନାଗ ଆସିଲେ ତକ୍ଷଣ ॥
ଅଷ୍ଟବସୁଙ୍କୁ ବହୁତ ବିନୟେ କହିଲେ ।
ସନ୍ତୋଷରେ ଅଷ୍ଟବସୁ ପ୍ରତିକାର କଲେ ॥

ବୋଇଲେ ଅମ୍ଭର ବାକ୍ୟ ନୋହିବ ଲଙ୍ଘନ ।
ମାନ ତାର ପ୍ରତିକାର କହୁଅଛୁ ଶୁଣ ॥
ମଣିପୁର ପତି ବଭ୍ରୁବାହନ ସଙ୍ଗରେ ।
ରଣକରି ପାର୍ଥ ପ୍ରାଣ ତେଜିବେ ସେଠାରେ ॥
ମୃତ୍ୟୁ ସଞ୍ଜୀବନୀ ମଣି ଉଲୂପୀ ସୁନ୍ଦରୀ ।
ନେଇଣ ଗଲେ ବଞ୍ଚିବେ ସେ ଗାଣ୍ଡିବଧାରୀ ॥
ତେଣୁ ଉଲୂପୀ ଜାଣଇ ଏ ସର୍ବ ବୃତ୍ତାନ୍ତ ।
ବଭ୍ରୁବାହନକୁ ପଠାଇଲା ସେ ନିମିତ୍ତ ॥
ପୂର୍ବର ଘଟଣା ହେତୁ ପାର୍ଥବୀର ମଲେ ।
ତହୁଁ ଉଲୂପୀ ସୁନ୍ଦରୀ ପାର୍ଥସୁତେ ବୋଲେ ॥
ବଞ୍ଚିବା ଉପାୟ କରୁଅଛୁ ମୁଁ ସତ୍ୱରେ ।
ଧୈର୍ଯ୍ୟଧରି ରୁହ ବୀର ନ ପଡ଼ ଅଗ୍ନିରେ ।
ପୁଣ୍ଡରୀକ ନାଗେ ଡ଼ାକି ଉଲୂପୀ ସୁନ୍ଦରୀ ।
ବୋଇଲେ ହେ ବୀର ଶୁଣ ବଚନ ମୋହର ॥
ମୋର ପିତା ନାଗରାଜା ପାଶେ ତୁମ୍ଭେ ଯାଅ ।
ମୋହର ବିନତି ତାଙ୍କଠାରେ ଯାଇ କୁହ ॥
କହିବ ମଣିପୁରରେ ବଭ୍ରୁବାହ ବୀର ।
ନାଶକରିଛନ୍ତି ସେହି ପାର୍ଥ ଧନୁର୍ଦ୍ଧର ॥
ମୃତ୍ୟୁ ସଞ୍ଜୀବନୀ ମଣି ପାଇଁ ଦେବ ମୁହିଁ ।
ଉଲୂପୀଙ୍କ ଆଦେଶରେ ଆସିଣ ଅଛଇ ॥
ଏ ସମୟେ ବଭ୍ରୁବାହ ବୋଲଇ ଗୋ ମାତା
କମ୍ପାଇ ଚନ୍ଦ୍ରତ ମଣି ଆଣିବଇଁ ମୁଁ ତ ॥
ଏକାକୀ ପାତାଳ ଭୁବନକୁ ମୁହିଁ ଯିବି ।
ନାଗରାଜା ଅନନ୍ତଙ୍କୁ ବିନୟେ ମାଗିବି ॥
ଏହିକ୍ଷଣି ନିଶ୍ଚେ ମୁହିଁ ଧରି ଧନୁଶର ।
ଯେବେ ସେ ନ ଦେବେ ତହିଁ କରିବି ସମର
ବାଣେ ବାଣେ ନାଗପୁର କରିବି ସଂହାର ।
କାହିଁପାଇଁ ମାତ ଭୟ କରୁଛ ମନର ॥
ତା ଶୁଣି ଉଲୂପୀ କହେ ଦୂତ ମୁଁ ପେଶିବି ।
ସେ ମଣି ଯେମନ୍ତେ ଆସେ ସେ କଥା କରିବି ॥
ପୂର୍ବେ ସେହି ମଣି ହରି ସର୍ପେ ଦେଇଥିଲେ ।
ଗରୁଡ଼ର ଭୟେ ରକ୍ଷା ପାଇବ ବୋଇଲେ ॥
ଏବେ ସେ ମଣି ଅଛି ମୋ ପିତାଙ୍କ ଭଣ୍ଡାରେ ।
ବଡ଼ ବଡ଼ ସର୍ପ ଜଗିଅଛନ୍ତି ସେଠାରେ ॥
ନାଗଲୋକେ ଯେତେ ସର୍ପମାନେ ହୋ ମରନ୍ତି
ସେ ମଣିର ପ୍ରସାଦରେ ସକଳେ ଜୀଅନ୍ତି ॥

ଯେହୁ ସର୍ପ ଚକ୍ଷୁ ଦନ୍ତ ବଳେ ବିଷ ଥାଏ ।
ମେରୁ ପର୍ବତକୁ ଯେ ଗୃହିଁଲେ ଜଳିଯାଏ ॥
ଦ୍ୱିଜିହ୍ୱା ବାସୁକି କର୍କୋଟକ ଶଙ୍ଖ ଜାଣ ।
ତକ୍ଷକ ମୂଷାଦ ପଦ୍ମ କୁଳନ୍ଦାଦ ପୁଣ ॥
ସହସ୍ରେକ ଫଣା ଏକା ମୋହର ପିଅର ।
ବେନିଶତ ତିନିଶତ ଆଉ ସର୍ପଙ୍କର ॥
ଚ୍ୟାରିଶତ ପାଞ୍ଚଶତ କାହାର ଅଛଇ ।
ଷଷ୍ଠଶତ ସପ୍ତଶତ ଅଷ୍ଟଶତ ହୋଇ ॥
ବିଷଅଗ୍ନି ମୁଖରୁ ଯେ କରନ୍ତି ଉଦ୍‌ଗାର ।
ମଣିମାନେ ଝଟ ଝଟ ସବୁରି ଫଣାର ॥
ଯାହା ଦେହରେ ଶୟନ କରିଥାନ୍ତି ହରି ।
ସାତଦ୍ୱୀପ ପର୍ବତ ସେ ସମୁଦ୍ରାଦ ଧରି ॥
ହରିଙ୍କର ଦୟାରୁ ସେ ମଣିର ଉଦ୍ଭବ ।
ସେ ମଣି ସ୍ପର୍ଶେ ବଞ୍ଚନ୍ତି ସର୍ବ ମୃତ ଜୀବ ॥
ଯେବେ ମୋ ଉପାୟେ ସେହି ମଣି ଯେ ଆସିବ
ତେବେ ନିଶ୍ଚେ ଅମ୍ଭ ସ୍ୱାମୀ ଜୀବନ ପାଇବ ॥
ଏସନ କହିଣ ଦେବୀ ଆନନ୍ଦ ମନରେ ।
ପୁଣ୍ଡରୀକେ ପଠାଇଲେ ପାତାଳ ପୁରରେ ॥
ପୁଣ୍ଡରୀକ ନାଗ ବେଗେ ପାତାଳକୁ ଗଲା ।
ନାଗପତି ଅନନ୍ତଙ୍କୁ ସମସ୍ତ କହିଲା ॥
ଶୁଣିଣ ଅନନ୍ତ ଅତି ହୋଇଲେ ଅଧୀର ।
ଜାମାତାଙ୍କ ଶୋକେ ତାଙ୍କ ନେତ୍ରୁ ବହେ ନୀର
ବିକଳ ହୋଇଲେ ଅତି ଶୋକେ ନାଗପତି
ସର୍ପଙ୍କୁ ଡ଼ାକିଣ ସର୍ବ ବୃତ୍ତାନ୍ତ କହନ୍ତି ॥
ଶୁଣ ଶୁଣ ସର୍ପଗଣ ମୋହର ବଚନ ।
ମଣିପୁରେ ବଭ୍ରୁବାହନ ଅର୍ଜ୍ଜୁନ ରଣ ॥
କରିଣ ପିତାପୁତ୍ରରେ ବଭ୍ରୁବାହ କରେ ।
ପରାଣ ତେଜିଲେ ପାର୍ଥ ସମର ଭୂମିରେ ॥
ପାର୍ଥର ଜୀବନ ବଞ୍ଚାଇବା ପାଇଁ ବୀରେ ।
ଉଲୂପୀ ପଠାଇଅଛି ଦୂତକୁ ମୋ ପୁରେ ॥
ସଞ୍ଜୀବନୀ ମଣି ମାଗି ପଠାଇଛି ସେହି ।
ସେ ମଣିକି ଦେଲେ ପାର୍ଥ ପ୍ରାଣ ପାଇବଇଁ ॥
ବେଗେ ମଣି ଆଣି ଦିଅ ହେଳା ନ କରିଣ ।
କାନ୍ଦୁଥିବ ମୋ ଦୁହିତା ଉଲୂପୀ ଦୁଃଖେଣ ॥
ଆଉ ଶୁଣ ସର୍ପଗଣ ପଲକ ଭିତରେ ।
ସୃଷ୍ଟି ସ୍ଥିତି ସଂହାରଣ କରିଣ ଯେ ପାରେ ॥

ଯେହୁ ସଂସାରର କର୍ତ୍ତା ପ୍ରଭୁ ନାରାୟଣ ।
ପାଣ୍ଡବଙ୍କ ସଖା ସେ ଜାଣନ୍ତି ସର୍ବଜନ ॥
ତେଣୁ କରି କହୁଅଛୁ ଶୁଣ ସର୍ପଗଣେ ।
ଆପଣା ମଙ୍ଗଳ ଗୃହ ଯଦି ତୁମ୍ଭେମାନେ ॥
ବେଗେ ସେ ମଣିକି ଆଣି ପୁଣ୍ଡରିକେ ଦିଅ ।
ମଣି ଘେନି ଯାଇଣ ବଞ୍ଚାଉ କୁନ୍ତୀସୁଅ ॥
ଶୁଣି ଏସନ ବଚନ ଅନନ୍ତ ମୁଖରୁ ।
ଧୃତରାଷ୍ଟ୍ର ନାମେ ସର୍ପ ବାହାରି ସଭାରୁ ॥
ବୋଇଲେ ଏ ସବୁ କଥା ନୁହଇ ଉଚିତ ।
ମଣି ଦେବା ପାଇଁ କେଉଁ ପରାୟେ କୁହତ ॥
ଜାଣନା କି ଗରୁଡ଼ର ଭୟେ ନାଗଗଣ ।
ଜୀବନ ସଂଶୟ ସଦା ସଶଙ୍କିତ ମନ ॥
ଯେବେ ସେହି ଆସେ ଥରେ ଏହି ନାଗପୁରେ
କେତେ ନାଗ ଘାତହୁଏ ତା ପକ୍ଷ ଘାତରେ ॥
ଦୟାମାୟା ଶୂନ୍ୟ ସେହି ନିଷ୍ଠୁର କେସନ ।
ମହାବଳବାନ ସେହି ବିନତାନନ୍ଦନ ।
ଯେତେ ଯେତେ ନାଗକୁଳ ସଂହାରଇ ସେହି
ମଣି ତେଜ ସ୍ପର୍ଶରେ ସମସ୍ତେ ପ୍ରାଣ ପାଇ ॥
ଆହୁରି ଶୁଣନ୍ତୁ ରାଜା ମୋହର ବଚନ ।
ଅର୍ଜ୍ଜୁନ ନିଧନେ ସୁଖୀ ହୋଇଛି ମୋ ମନ ॥
ଧନ୍ୟ ଧନ୍ୟ ଧନ୍ୟ ବୀର ହେ ବଭ୍ରୁବାହନ ।
ମୋହର ପରମ ଶତ୍ରୁ କରିଛୁ ନିଧନ ॥
ପାର୍ଥର ମରଣେ କିମ୍ପା ଆନନ୍ଦ ଜନ୍ମଇ ।
ସେ ସବୁ ବୃତ୍ତାନ୍ତ ରାଜା ଶୁଣ ମନଦେଇ ॥
ମର୍ତ୍ତ୍ୟପୁରେ କୁରୁକୁଳେ ଧୃତରାଷ୍ଟ୍ର ନାମ ।
ତାହାଙ୍କର ଜ୍ୟେଷ୍ଠପୁତ୍ର ଦୁର୍ଯ୍ୟୋଧନ ନାମ ॥
ତାଙ୍କ ସହିତ ମିତ୍ରତା ମୋର ହୋଇଥିଲା ।
ଦୁହିଙ୍କର ବନ୍ଧୁଭାବ କ୍ରମେ ବଢ଼ୁଥିଲା ॥
ବନ୍ଧୁର ସୁଖରେ ସୁଖ ହୁଅଇ ବନ୍ଧୁର ।
ବନ୍ଧୁର ଦୁଃଖରେ ଦୁଃଖ ହୁଅଇ ସଞ୍ଚାର ॥
ଜାଣ ଅହେ ନାଗପତି ଏ ଅର୍ଜ୍ଜୁନ ବୀର ।
ବନ୍ଧୁବାନ୍ଧବ ସହିତ ସର୍ବ କୁରୁବୀର ॥
ସମୂଳେ ବିନାଶ କରିଅଛି ଏ ଚଣ୍ଡାଳ ।
ତେଣୁ ତାଙ୍କର ଦୁଃଖରେ ପୋଡ଼େ ମୋ ଅନ୍ତର
ସେହେତୁ ପାର୍ଥ ମରଣେ ସୁଖହୁଏ ଜାତ ।
ଜୀବନ୍ତେ ଏ ମଣି ମୁହିଁ ନ ଦେବି କେବେ ତ ॥

ଭାବିଥିଲି ସମୟ ପଡ଼ିଲେ ମୋର ହସ୍ତେ ।
ପାର୍ଥର ଜୀବନ ମୁହିଁ ନେବଇଁ ନିଶ୍ଚିତେ ॥
ଯାହାହେଉ ଆଜି ତାହା ସେ ବଭ୍ରୁବାହନ ।
ମୋ ମିତ୍ର ଶତ୍ରୁକୁ କରି ଅଛଇ ନିଧନ ॥
କେତେବେଳେ ଏହି ମଣି ନ ଦେବଇଁ ତାକୁ
କପର ମଣି ଦେବାକୁ ବୋଲ ହେ ଆମ୍ଭଙ୍କୁ ॥
ଆମ୍ଭମାନଙ୍କର ପ୍ରାଣ ମଣିର ଉପରେ ।
କେମନ୍ତେ ଏ ମଣି ଦେବା କୁହ ନରବରେ
ଆଜି ଯେବେ ମଣିଦେବା ଆପଣା ଇଚ୍ଛାରେ ।
କାଲି କି ପ୍ରାଣ ପାଇବା ଗରୁଡ ହସ୍ତରେ ॥
କେତେବେଳେ ଉଲୂପୀକୁ ସଞ୍ଜୀବନୀ ମଣି ।
ଦେବୁ ନାହିଁ ଆମ୍ଭେ ବଞ୍ଚିବାକୁ ଫାଲ୍ଗୁନି ॥
ତେବେ ଆପଣଙ୍କ ବାଞ୍ଛା ହୁଏ ଯେଉଁ ଭୂପ ।
କରନ୍ତୁ ସେହର ଅହେ ନାଗକୁଳ ରୂପ ॥
ଆମ୍ଭେମାନେ ଯେତେ ନାଗ ଆଶ୍ରିତ ତୁମ୍ଭର ।
ଏ ମଣି ଦେବାକୁ ଇଚ୍ଛା ନୁହଇ କାହାର ॥
କେଉଁ ନାଗ ଏହି ମଣି ଦେବାକୁ ବୋଲିବ ।
ଏ କଥା ନୁହଇ ଜାଣ ହେ ନୃପ ପୁଙ୍ଗବ ॥
ତକ୍ଷଣେ ଅନନ୍ତ ନାଗ ଅତ୍ୟନ୍ତ ଭୀଷଣ ।
ଅନନ୍ତରୂପେ ବୋଇଲେ ମନ୍ତ୍ରୀଙ୍କି ଗୃହିଁଣ ॥
ଅଉ ଯେତେ ଥିଲେ ତହିଁ ଭୁଜଙ୍ଗମଦଳ ।
ଡାକଦେଇ ବୋଇଲେ ସେ ଶୁଣ ହେ ସକଳ
ନାଗରାଜା ବୋଲୁଛନ୍ତି ଏସନ ବଚନ ।
ଧର୍ମକୁ ସର୍ବଦା ପ୍ରାଣୀ କରନ୍ତି ଶନ୍ତନ ॥
ଯେଉଁଲୋକ ଧର୍ମ ରଖେ ଧର୍ମ ରଖେ ତାକୁ ।
ଅଧର୍ମରେ ଜୟୀ ହେବା ଦେଖିଛ କାହାକୁ ॥
ଧୃତରାଷ୍ଟ୍ର ପୁତ୍ର ଦୁର୍ଯ୍ୟୋଧନ ନୃପବର ।
ଅତ୍ୟନ୍ତ ପାପିଷ୍ଠ ସେହି କପଟୀ ପ୍ରବର ॥
ନାନାଦି ଅନ୍ୟାୟ କାର୍ଯ୍ୟମାନ କରେ ସେହି
ଧନବଳେ ବାହୁବଳେ କାହାରେ ନ ମାନଇ
ସର୍ବଦା ହିଂସା କରଇ ଯୁଧିଷ୍ଠିର ଠାରେ ।
କପଟ ମାରିବ ତାଙ୍କୁ ସର୍ବଦା ବିଗ୍ରହରେ ॥
ଯେତେ ଯେତେ ଉପାୟ ସେ କଲା କୁରୁରାଜ
ଧର୍ମବଳେ ଉଦ୍ଧରିଲେ ଯୁଧିଷ୍ଠିର ରାଜନ ॥
ଧାର୍ମିକ ଧାର୍ମିକ ସହ ମିତ୍ରତା କରନ୍ତି ।
ଅଧର୍ମୀ ଅଧର୍ମୀ ସଙ୍ଗେ ବନ୍ଧୁତା ରଖନ୍ତି ॥

ତେଣୁ ଏହି ଧୃତରାଷ୍ଟ୍ର ଧୃତରାଷ୍ଟ୍ର ସହ ।
ବନ୍ଧୁତା କରଣ ଥିଲ ଶୁଣ ନାଗରାୟ ॥
ସାଧୁ ଲୋକ ଅସାଧୁର ସଙ୍ଗରେ ରହିଲେ ।
ଶେଷେ ନିନ୍ଦା କଷ୍ଟ ସେହି ପାଏ ଅବହେଳେ
ଦୁର୍ଯ୍ୟୋଧନ ଦୋଷେ ହେଲ ସକଳ ନିଧନ।
ସେଥି ଯୋଗ୍ୟ ଯୁଧିଷ୍ଠିର ଦୋଷ ନାହିଁ ଜାଣ।
ଦେଖ ସର୍ବେ ଭଲ କାର୍ଯ୍ୟ ଯେଉଁ ଜନ କରେ ।
ତାହାର ବିପଦ ନାହିଁ ଜଗତ ମଧ୍ୟରେ ॥
ପାପେ ଯାର ମନ ତାର ଅନେକ ଦୁର୍ଦ୍ଦଶା ।
ପାପକର୍ମ ଛାଡ଼ି ତେଣୁ କର ଧର୍ମ ଆଶା ॥
ଏ ମଣି ସ୍ପର୍ଶରେ ପାର୍ଥ ଲଭିବେ ଜୀବନ ।
ତୁମ୍ଭମାନଙ୍କର ଯଶ ଥିବ ଚିରଦିନ ॥
ଆଉ ଦେଖ ଯେଉଁ ଲୋକ ସଂସାରରେ ସାର ।
ବ୍ରହ୍ମାଣ୍ଡ କରତା ହରି ନିଖିଳ ଈଶ୍ୱର ॥
ସେହି କୃଷ୍ଣ ନିକଟରୁ ପୌରୁଷ ପାଇବ ।
ପ୍ରାଣାନ୍ତେ ତାଙ୍କ ଚରଣ ଦର୍ଶନ କରିବ ॥
କୃଷ୍ଣେ ଯାର ଭକ୍ତି ନାହିଁ ଶେଷକାଳେ ତାର
ଅଶେଷ ନରକ ଭୋଗେ ପାପୀ ସେ ପାମର ॥
କୃଷ୍ଣପ୍ରେମେ ମତ୍ତ ଯେହୁ କୃଷ୍ଣନାମ ଧରେ ।
ମରଣାନ୍ତେ ବସେ ସେହି ବଇକୁଣ୍ଠ ପୁରେ ॥
ଯେବେ ତୁମ୍ଭେମାନେ କୃଷ୍ଣଭକ୍ତି ଇଚ୍ଛା କର ।
ଏ ମଣି ଘେନିଣ ଚଳ ଉଲ୍ଲପୀ ପାଶର ॥
ବଞ୍ଚାଅ କୃଷ୍ଣଙ୍କ ସଖା ଅର୍ଜ୍ଜୁନର ପ୍ରାଣ ।
ମଣିଦେଇ ପୃଥିବୀରେ ରଖ ନିଜ ମାନ ॥
ଭାବୁଥିବ ମନେ ଏହି ମଣିକୁ ନ ଦେଲେ ।
ନ ବଞ୍ଚିବ ପାର୍ଥ ଆଉ କେବେ ଜୀବନରେ ॥
ଏପରି ଭାବନା କେତେବେଳେ ଭାବ ନାହିଁ ।
ମଣି ନ ଦେଲେ ବଞ୍ଚିବ ନିଶ୍ଚେ ଉଦ୍ଧାସାଇଁ ॥
ବିଶ୍ୱର କାରଣ ଯେହୁ ଜଗତ ଈଶ୍ୱର ।
ଏକମାତ୍ର ଅର୍ଜ୍ଜୁନଙ୍କ ସଖା ସେ ଶ୍ରୀଧର ॥
ସାମାନ୍ୟ ଜୀବନ କିବା ତାହାଙ୍କ ଆଜ୍ଞାରେ ।
ଯାର ଆଜ୍ଞାବଳେ ପୃଥ୍ୱୀ ସୃଷ୍ଟି ହୋଇପାରେ ॥
ଏପରି ସେ ନାରାୟଣ ଜଗତ ଈଶ୍ୱର ।
ସେ ଥାଉଁ କି କେବେ ମରେ ପାର୍ଥ ବୀରବର
ମାତ୍ର ତୁମ୍ଭମାନଙ୍କର କଥା ଜଣାଯିବ ।
ସମୟେ ଅର୍ଜ୍ଜୁନ ଆସି ତୁମ୍ଭଙ୍କୁ ନାଶିବ ॥
କିବା ଯେବେ ମଣିପାଇଁ ଅର୍ଜ୍ଜୁନ ନନ୍ଦନ ।
ସକ୍ରୋଧେ ପାତାଳ ପୁରେ କରିବ ଗମନ ।
କୁହ କେଉଁ ବୀର ତାର ସମ୍ମୁଖେ ରହିବ ।
ସମସ୍ତଙ୍କୁ ନାଶି ଶେଷେ ମଣି ଘେନିଯିବ ॥
ପ୍ରଚଣ୍ଡ ଦୁର୍ଦ୍ଦଣ୍ଡ ଅଟେ ସେ ବଭ୍ରୁବାହନ ।
ଦୟାମାୟା ନାହିଁ ପିତୃ ଶୋକେ କ୍ରୋଧମନ
କାହା କଥା ନ ଶୁଣି ସେ ସର୍ବ ନାଗକୁଳ ।
ଗୋଟି ଗୋଟି କରି ମାରି କରିବ ନିର୍ମ୍ମୂଳ ॥
ମଣି ଘେନି ମର୍ତ୍ତ୍ୟପୁରେ ସୁଖେ ଚାଲିଯିବ ।
ଲାଭମାତ୍ର ତୁମ୍ଭର ଯେ ମରଣ ହୋଇବ ॥
ନିଶ୍ଚୟ କହୁଛି ଏହା ଘଟିବ ବହନ ।
ପ୍ରାଣେ ଆଶା ଥିଲେ ମଣି ଦିଅ ନାଗଗଣ ॥
ଏହା ଶୁଣି ଧୃତରାଷ୍ଟ୍ର କହେ ଗର୍ବ କରି ।
ପାର୍ଥସୁତ ଆସୁ ଭୟ ନାହିଁ ମୋ ମୋହରି ॥
କି କରିବ ରଣ ସେହି ମନୁଷ୍ୟ ମାତର ।
ନିଶ୍ଚେ ପଠାଇବ ତାକୁ ସଞ୍ଜିବନୀ ପୁର ॥
ଏହା ଶୁଣି ପୁଣ୍ଡରିକ ଫେରିଣ ଆସିଲା ।
ଉଲ୍ଲପୀଙ୍କ ପାଶେ ସର୍ବ ଘଟଣା କହିଲା ।
ଶୁଣିଣ ଉଲ୍ଲପୀ ଶୀଘ୍ର ବଭ୍ରୁବାହନକୁ ।
ଆଦେଶିଲେ ଆଣ ଯାଇ ପାତାଳୁ ମଣିକୁ ॥
ଏଥିରେ ହେଳା ନ କର ଆରେ ବାପଧନ
ନୋହିଲେ କେହ୍ନେ ବଞ୍ଚିବ ସ୍ୱାମୀଙ୍କ ଜୀବନ
ମାତାଙ୍କ ବଚନ ଶୁଣି ବଭ୍ରୁବାହ ବୀର ।
କ୍ରୋଧରେ କମ୍ପିଲା ତନୁ ଯେହ୍ନେ ବୈଶ୍ୱାନର
ଧନୁଶର ଧରି ବୀର ରଥ ଆରୋହିଲେ ।
ସସୈନ୍ୟେ ପାତାଳପୁରେ ଗମନ କରିଲେ ॥
ମାତାମହ ହୋଇ ଏ ଅନ୍ୟାୟ କାର୍ଯ୍ୟ କଲେ ।
ମଣି ମାଗି ପଠାଇଲି ମୋତେ ସେ ନ ଦେଲେ
ଅବର ଜାମାତା ତାଙ୍କ ଅଟନ୍ତି ଅର୍ଜ୍ଜୁନ ॥
ତଳେ ମାତ୍ର ଦୟା ନ ବହିଲେ ନାରାୟଣ
ଆଜି ସଂଗ୍ରାମରେ ବନ୍ଧୁପଣ ଦେଖାଇବ ।
ନାଗନାମ ଏକାବେଳେ ସଂସାରୁ ପୋଛିବ ॥
ତ୍ରିଲୋକ ସାହାଯ୍ୟ ହେଲେ ରକ୍ଷା ନାହିଁ ତୋର
ନାଗକୁଳ ଏକାବେଳେ କରିବ ସଂହାର ॥
ରଥ ଆରୋହଣ କରି ଚଳେ ବୀରବର ।
କାଳାନ୍ତକ ଯମ ସମ ତେଜେ ଭୟଙ୍କର ॥

ଅସଂଖ୍ୟ ଅସଂଖ୍ୟ ସୈନ୍ୟ ସମରେ ସାଜିଲେ ।
ମେଦିନୀ କମ୍ପିତ ହେଲା ସୈନ୍ୟ କୋଳାହଳେ
ଦୁନ୍ଦୁଭି ପଞ୍ଚଶିଙ୍ଗା ଢୋଲ ମୃଦଙ୍ଗ ବାହାଳି ।
ବାଦ୍ୟନାଦେ କମ୍ପମାନ ହୋଇଲା ମହୀସ୍ଥଳୀ ॥
ଏକାବେଳେ ପଡ଼ିଲା ବିଷମ ଗଣ୍ଡଗୋଳ ।
ଅସଂଖ୍ୟ ବାହିନୀ ସଙ୍ଗେ ଅର୍ଜ୍ଜୁନ ଚଳିଲା ॥
ପାତାଳେ ପ୍ରବେଶି ବୀର କରଇ ଗର୍ଜ୍ଜନ ।
ଦେଖିଣ ଅନନ୍ତ ଭୀତ ହୋଇ ଭ୍ରାନ୍ତ ମନ ॥
ବେଗେ ଯାଇଣ ଅନନ୍ତ ଆଗେ ଜଣାଇଲେ ।
ଘୋରଦୈବ ଏକ ମନୁଷ୍ୟ ଆସେ ଏହି ସ୍ଥଳେ ॥
ଶ୍ୟାମବର୍ଣ୍ଣ କଳେବର କନ୍ଦର୍ପର ଠାଣି ।
କ୍ରୋଧେ ଦେଖାଯାଏ ବୀର କାଳଦେବ ଜିଣି
ଅଗଣିତ ସୈନ୍ୟସେନା ଅଛନ୍ତି ସଙ୍ଗର ।
ଧନୁର୍ଦ୍ଧର ରଥେ ବସି ଆସେ ବୀରବର ॥
ଶୁଣି ନାଗରାଜ ମନେ ଅତି ଭୟ ପାଇ ।
ବୋଲନ୍ତି ଯୁଦ୍ଧକୁ ଆସେ ଅର୍ଜ୍ଜୁନ ତନୟୀ ॥
ମହା ବଳଶାଳୀ ବୀର ସମରେ ନିପୁଣ ।
କିଏବା କରିବ ଯୁଦ୍ଧ ତାହାର ସଙ୍ଗେଣ ॥
ନିଶ୍ଚେ ନାଗକୁଳକୁ ଯେ ନିର୍ମୂଳ କରିବ ।
କି ଉପାୟ କରିବି ଭାବଇ ନାଗଦେବ ।
ଯେତେମତେ ବୁଝାଇଣ କହିଲି ଯେ ମୁହିଁ ।
ଧୃତରାଷ୍ଟ୍ର ନ ଶୁଣିଣ ଦେଲାକ ଫେରାଇ ॥
ଏବେ ରକ୍ଷାକର ଆରେ ଧୃତରାଷ୍ଟ୍ର ବୀର ।
ଆସିଣ ପ୍ରବେଶ ହେଲା ଅର୍ଜ୍ଜୁନ କୁମର ॥
ଶୁଣି ଧୃତରାଷ୍ଟ୍ର ନାଗ ବୋଲଇ ବଚନ ।
ଅକାରଣେ କିପାଁ ରାଜା ଏତେ ଭ୍ରାନ୍ତମନ ॥
ଅସୁ ସେହି କି କରିବ ମନୁଷ୍ୟ ମାତର ।
ସଞ୍ଜିବନୀ ସ୍ୱର ଏବେ ଦେଖିବ ପାମର ।
ଏମନ କହିଣ ବୀର ମହା କୋପଭରେ ।
ନାଗଗଣ ଡ଼ାକି ବୋଲେ ଅତ୍ୟନ୍ତ କ୍ରୋଧରେ
ଶୁଣ ଶୁଣ ନାଗଗଣ ମୋହର ବଚନ ।
ଅସ୍ତ୍ର ଶସ୍ତ୍ର ନେଇ ଆସ ଯୁଦ୍ଧର କାରଣ ॥
ଆସିଛି ବଭ୍ରୁବାହନ ମଣି ନେବା ପାଇଁ ।
ଆଜ ତାର ବୀରଦର୍ପ ଦେବା ହେ ଛଡ଼ାଇ ।
ଆଜ୍ଞା ଶୁଣି ନାଗଗଣ ବାହାର ହୋଇଲେ ।
ଅତିକ୍ରୋଧେ ଧାବମାନ ସେହି ଯେ ହୋଇଲେ
କେହି ଅଛି ପଞ୍ଚଶିର କେହି ଦଶଶିର ।
କେହି ଅଛି ବିଂଶଶିର ଶଏ ବା ତାହାର ॥
ଏହିପରି ନାଗମାନେ ବାହାର ହୋଇଲେ ।
ଯା ବିଷଘାତରେ ପୃଥ୍ୱୀ ନାଶଯାଏ ହେଲେ ॥
ଅତି କ୍ରୋଧଭରେ ନାଗମାନେ ଚଳିଗଲେ
ଫୁଫୁକାର ଧ୍ୱନିକରି ଫଣା ବିସ୍ତାରିଲେ ॥
ସହସ୍ର ସହସ୍ର ଫଣା ଟେକିଣ ବହନ ।
କ୍ରୋଧରେ ଫଣା ବିସ୍ତାରି ହେଲେ ଧାବମାନ
ବଭ୍ରୁବାହ ନିକଟରେ ଆସି ପ୍ରବେଶିଲେ ।
ନାଗନର ବେନିଆଠ ସେଠାରେ ମିଳିଲେ ॥
ସର୍ପଙ୍କର ଫୁଫୁଧ୍ୱନି ନରଙ୍କ ଗର୍ଜ୍ଜନ ।
ଜଣାଯାଏ ପୃଥିବୀ କି ହୋଇବ ବା ଲୀନ ॥
ପୃଥିବୀ କମ୍ପିତ ହେଲା ସିନ୍ଧୁ ଆଲୋଡ଼ିଲା ।
ଦେଖିଣ ବଭ୍ରୁବାହନ ବାଣ ବୃଷ୍ଟି କଲା ॥
ବଜ୍ରର ସମାନ ବାଣ ମାରେ ଘନଘନ ।
ସେ ଶରରେ ନାଗଗଣ ତେଜନ୍ତି ଜୀବନ ॥
ଉଦ୍‌ଗାର କରନ୍ତି ମୁଖୁ ବିଷମାନ ସେହି ।
ବିଷ ନିଶ୍ୱାସ ପକାନ୍ତି ଅତି କ୍ରୋଧବହି ॥
କ୍ରୋଧଭରେ କାମୁଡ଼ନ୍ତି ସେହି ଅହିଗଣ ।
କେତେ କେତେ ବୀର ତହିଁ ତେଜିଗଲେ ପରାଣ
କ୍ରୋଧରେ ଅର୍ଜ୍ଜୁନ ସୁତ ସୈନ୍ୟମାନେ ତହିଁ ।
ପରଶୁ ତୋମର ଶର ମାରନ୍ତି କାଠାଇ ॥
ସେ ଅଘାତେ ସର୍ପମାନେ ତେଜନ୍ତି ଜୀବନ ।
ତଥାପି ନାଶନ୍ତି ବିଷଘାତେ ନରସୈନ୍ୟ ॥
କେହୁ ସର୍ପମାନେ ମନୁଷ୍ୟଙ୍କୁ ଯେ ଦଂଶନ୍ତି ।
ଦେହେ ବିଷ ଘାରି ସେହି ଭୂମିରେ ପଡ଼ନ୍ତି ॥
କେତେ ସର୍ପମାନେ ମନୁଷ୍ୟଙ୍କୁ ଯେ ଗିଳନ୍ତି ।
କେହୁ ପାଦଠାରୁ ଦେହଯାକେ ଯେ ଭିଡ଼ନ୍ତି
କାହା ଦେହୁ ରକ୍ତମାଂସ ଝଡ଼ଇ ତକ୍ଷଣ ।
କାହା ଶରୀରରୁ ରକ୍ତ ଶୋଷଣ କରନ୍ତି ॥
କାହାକୁ କାମୋଡ଼ି ପୁଣି କରନ୍ତି ଦଂଶନ ।
ଏହିପରି ନାଶନ୍ତି ଯେ ବଭ୍ରୁବାହ ସୈନ୍ୟ ॥
ସର୍ପଙ୍କ ଫଣାରେ ଯେଉଁ ମଣିମାନ ଥିଲେ ।
ସୂର୍ଯ୍ୟ ତେଜପରି ଦେଖାଯାଏ ସେ ସ୍ଥାନରେ ॥
ସମୁଦ୍ର ଗର୍ଜ୍ଜନ ପରି ସର୍ପଙ୍କର ସ୍ୱନ ।
ଧାଇଁ ଛନ୍ତି କରି ଫୁଫୁକାର ଗରଜନ ॥

ଲକ୍ଷ ଲକ୍ଷ ମନୁଷ୍ୟଙ୍କୁ ନାଶିଲେ ସେ ହେଲେ
ସ୍ୱର୍ଗେ ଥାଇ ଦେବତାଏ ହାହାକାର କଲେ
ସୈନ୍ୟଙ୍କ ଶର ଆଘାତେ ଅନେକ ମରନ୍ତି ।
ତଥାପି ସେ କୋପଭରେ ଦଶଂନ କରନ୍ତି ॥
ଏହୁପରି କେତେବେଳ ହେଲା ଘୋରରଣ ।
ସୈନ୍ୟଙ୍କ ବିନାଶ ଦେଖି ସେ ବଭ୍ରୁବାହନ ॥
କାଳାନ୍ତକ କାଳପରି ବୀର ଦେଖାଗଲା ।
କ୍ରୋଧଭରେ ଧନୁକୁ ସେ ଟଙ୍କାର କରିଲା ॥
ଧନୁର ଟଙ୍କାର ଶବ୍ଦେ କେତେ ନାଗଗଣ ।
ଭୟେ ଇତସ୍ତତଃ ସେହୁ ହେଲେ ରଣସ୍ଥାନ ॥
ଗୃହୁଁ ଗୃହୁଁ ବୀର କଲା ବାଣ ଅବତାର ।
ନାହିଁ ଦାଗବଦାଗ ନାହିଁକ ଅବସର ॥
ଶ୍ରାବଣ ବରଷାଠାରୁ ବଳି ବାଣଗଣ ।
ବୃଷ୍ଟିକଲା ବେଗେ ସେହୁ ଅର୍ଜୁନ ନନ୍ଦନ ।
କୋଟି କୋଟି ସର୍ପମାନେ ତହିଁ ନାଶଗଲେ ।
ତଥାପି ବଭ୍ରୁବାହନ ମାରେ ଅବହେଳେ ।'

ମୁଖ ଟେକିବାକୁ ସ୍ଥାନ ସର୍ପେ ନ ପାଅନ୍ତି ।
ଅନାଉଁ ଅନାଉଁ ବାଣେ ପୋଡ଼ିଣ ମରନ୍ତି ॥
କୋପେ ପାର୍ଥସୁତ ନେଲା ବହ୍ନି ଅଗ୍ନିବାଣ ।
ମନ୍ତ୍ରପୂତ କରି ଛାଡ଼ିଦେଲା ସେ ବହନ ॥
ତଥାପି ବାଣକୁ ସେ ବୋଇଲେ ବୀରବର
ଯେତେ ସର୍ପଛନ୍ତି ସେମାନଙ୍କୁ ନାଶ କର ॥
ମନ୍ତ୍ରିଣ ଛାଡ଼ନ୍ତେ ବୀର ସେହୁ ବ୍ରହ୍ମବାଣ ।
ଗୃହୁଁ ଗୃହୁଁ ହୋଇଲା ପ୍ରଳୟ ହୁତାଶନ ॥
ସର୍ପଙ୍କୁ ପୋଡିଣ ବାଣ ଯାଏ ଅବହେଳେ ।
ଛଟପଟ ହୋଇଣ ସେ ମରନ୍ତି ସେଠାରେ ॥
ପ୍ରାଣଭୟେ କେତେ ସର୍ପ ପଳାଇ ଯାଅନ୍ତି ।
ରକ୍ଷା ନାହିଁ ବାଣ ମୁଖେ ପୋଡିଣ ମରନ୍ତି ॥
ସର୍ପଙ୍କ ଅବସ୍ଥା ଦେଖି ବଡ ନାଗଗଣ ।
ରଥେ ଚଢ଼ି ଯୁଦ୍ଧକୁ ସେ କରଲେ ଗମନ ॥
ଯେତେ ଯେତେ ଶରସେହୁ ମାରନ୍ତି କୋପରେ
ଅର୍ଜୁନ ନନ୍ଦନ ତାହା ନିବାରେ ହେଳାରେ ॥



ପାତାଳ ପୁରେ ସର୍ପମାନଙ୍କ ଯୁଦ୍ଧରେ ବଭ୍ରୁବାହନର ଗରୁଡ଼ାସ୍ତ୍ର ପ୍ରୟୋଗ ଓ
ସର୍ପମାନଙ୍କର ପରାଜୟ ଅନନ୍ତଙ୍କଠାରୁ ମଣିପ୍ରାପ୍ତ ।

ବାଣ ନିବାରଣ ବୀର ଛାଡ଼େ ଅସ୍ତ୍ରଗଣ ।
ସବୁ ସର୍ପଙ୍କର ହୃଦେ ପଡ଼େ ଯାଇ ବାଣ ॥
ବାଣାଘାତେ ସର୍ପମାନେ ଅସ୍ଥିର ହୋଇଲେ
ଦେଖି ଧୃତରାଷ୍ଟ୍ର ନାଗ ଅଗଭର ହେଲେ ॥
କ୍ରୋଧରେ ସେ ଧୃତରାଷ୍ଟ୍ର ମାରେ ଯେତେଶର
ହେଲେ ତାହା ନିବାରଇ ଅର୍ଜୁନ କୁମର ॥
ବାଛି ବାଛି ତୀକ୍ଷ୍ଣବାଣ ଅର୍ଜୁନ ନନ୍ଦନ ।
ମନ୍ତ୍ରେ ଅଭିଷେକ କରି ଛାଡ଼ିଲା ବହନ ॥
ଧୃତରାଷ୍ଟ୍ର ଦେହେ ବାଜି ସେ ବିଷମ ଶର ।
ରକତର ଧାର ତହୁଁ ହୁଅଇ ବାହାର ॥
ଗିରି ଗର୍ଭୁ ଜଳଧାର ଯେପରି ଝରଇ ।
ଧୃତରାଷ୍ଟ୍ର ଦେହୁ ରକ୍ତ ଧାରଯାଏ ବହି ॥
ବାଣ ମାରି ମାରି ବୀର ଅର୍ଜୁନ ନନ୍ଦନ ।
ରକ୍ତନଦୀ ଗୋଟାଏ କରିଲା ସେହି ସ୍ଥାନ ॥
ଦେଖିକରି ସର୍ପମାନେ କାତର ହୋଇଲେ ।
ପ୍ରାଣ ରଖିବା ପାଇଁକି ମହାଚିନ୍ତା କଲେ ।
ପୁଣି ମହା କୋପଭରେ ଅର୍ଜୁନ ନନ୍ଦନ ॥
ଧୃତରାଷ୍ଟ୍ର ନାଗକୁ ମାଇଲା ଶତେ ବାଣ ।
ପୁଣି ସେ ସହସ୍ରବାଣ ମନ୍ତ୍ରିଣ ବିନ୍ଧିଲା ।
ଧୃତରାଷ୍ଟ୍ର ସେ ଅଘାତେ ବିକଳ ହୋଇଲା ॥
ଏହିପରି ମହା ମହା ସର୍ପଙ୍କୁ ସେ କଲା ।
ଯୋଜନ ପର୍ଯ୍ୟନ୍ତ ରକ୍ତନଦୀ ବୁହାଇଲା ॥
ବୃହୁଁ ବୃହୁଁ ବୀର ମାରେ କୋଟି କୋଟିଶର
ସମସ୍ତ ସର୍ପଙ୍କ ଦେହେ ହୋଇଲା ବିବର ।
ସର୍ପଙ୍କର ରଥ ଗଜ ଅଶ୍ୱ ନାଶଗଲେ ।
କେତେ କେତେ ସର୍ପବୀରେ ଜୀବନ ତେଜିଲେ
ଛେଳି ଯେପରି ହୁଅଇ ବାଘକୁ ଦେଖିଣ ।
ସେହି ପରକାରେ ହୋଇଲେ ସେ ସର୍ପଗଣ ।
ଯେତେ ଯେତେ ଗରବ ସେମାନେ କରୁଥିଲେ
ସେ ସବୁ ଭୁଲିଣ ଗଲେ ଜୀବନ ବିକଳେ ।
ମସ୍ତକର ମଣିମାନ ଭୂମିରେ ପଡ଼ିଲା ।
ଫଣୀ ଟେକିବାକୁ ବଳ କାହାରି ନୋହିଲା
ଯେତେ ସର୍ପ ଅସିଥିଲେ ସେହି ଯୁଦ୍ଧସ୍ଥାନ ।
ବବ୍ରୁବାହ ବାଣାଘାତେ ହେଲେ ଛିନ୍ନଭିନ୍ନ
କୋପେ ପାର୍ଥସୁତ ଶିବଶର ହସ୍ତେ ନେଲା ।
ମନ୍ତ୍ରେ ଅଭିଷେକ କରି କ୍ରୋଧେ ଛାଡ଼ିଦେଲା ॥
ସେ ଶର ଅସନ୍ତେ ତିନି ଭୁବନ କମ୍ପିଲା ।
ଆକାଶରୁ ତାରା ସବୁ ଖସିଣ ପଡ଼ିଲା ॥
ସାତସିନ୍ଧୁ ଜଳ ଯେ ହୋଇଲା ଅନ୍ଦୋଳିତ ।
ସ୍ୱର୍ଗେ ଦେବେ ପ୍ରାଣଭୟେ ହେଲେ ଇତସ୍ତତ
ବୋଇଲେ ଦେବତାମାନେ ପାର୍ଥସୁତ ଧନ୍ୟ
କେଉଁ ଶୁଭକ୍ଷଣ ତୋର ହୋଇଲା ଜନମ ।
ତିନିଭୁବନ ଜିଣନ୍ତା ପାର୍ଥ ବୀରବର ॥
ତାହାଙ୍କୁ ତୁ ଅବହେଳେ ଜିଣିଲୁ କୁମର ॥
ବୃଷକେତୁ ବୀରବର ସମରେ ନିପୁଣ ।
ତୋ ବାଣ ଆଘାତେ କଲା ଭୂମିରେ ଶୟନ
ଅବର ଯେତେକ ଯୋଦ୍ଧା ସମରେ ନାଶିଲୁ
ଏବେ ଆସି ନାଗବଳ ସଂହାର କରିଲୁ ।
ଏପରି ପ୍ରଶଂସା ସ୍ୱର୍ଗପୁରେ ଦେବେ କଲେ ।
ଶିବଶର ମାରି ବୀର ପୁଣି କ୍ରୋଧଭରେ ॥
ତା ପଛେ ବିନ୍ଧିଲା ବୀର କୋପେ ବଜ୍ରବାଣ ।
ଉଭୟ ଶରେ କାତର ସର୍ବ ସର୍ପଗଣ ॥
ଧୃତରାଷ୍ଟ୍ର ଆଦି ଯେତେ ନାଗମାନେ ଥିଲେ ।
ଜୀବନର ଭୟେ ସର୍ବେ ପଛଘୁଞ୍ଚା ଦେଲେ ॥
ତଥାପି ସେ ବୀରବର ଅର୍ଜୁନ ନନ୍ଦନ ।
ମୟୂର ଶରକୁ ପେଶି ଦେଲାକ ବହନ ॥
କୋଟି କୋଟି ମୟୂର ଯେ ଉଡ଼ିଣ ଅଇଲେ
ଆନନ୍ଦରେ ସର୍ପ ସବୁ ଗିଳିଣ ଖାଇଲେ ॥
ଶେଷେ ବୀର ମାଇଲା ଯେ ଅସୀପଦ ବାଣ ।
ସେ ବାଣରେ ଖଣ୍ଡ ଖଣ୍ଡ ହେଲେ ସର୍ପଗଣ ॥
ପୁଣି କୋପେ ପାର୍ଥସୁତ ଗରୁଡ଼ାସ୍ତ୍ର ନେଲା ।
ମନ୍ତ୍ରେ ଅଭିଷେକ କରି ବେଗେ ଛାଡ଼ିଦେଲା
ଯାହା କିଛି ମନେ ଆଶା ଥିଲା ସର୍ପଙ୍କର ।
ଗରୁଡ଼ାସ୍ତ୍ର ଦେଖି ହେଲେ ଭୟରେ କାତର ।
କି କରିବେ କାହିଁଯିବେ ରଖିବେ ଜୀବନ ।
ଭୟରେ ସମସ୍ତେ ନେଲେ ବାସୁକୀ ଶରଣ ॥
ଧୃତରାଷ୍ଟ୍ର ଆଦି ଯେତେ ବଡ଼ ନାଗ ଥିଲେ ।
ବାଣାଘାତେ ଅନନ୍ତଙ୍କ ପାଦରେ ପଡ଼ିଲେ ॥
ଏଣେ ଅସଇ କ୍ରୋଧରେ ବିନତା ନନ୍ଦନ ।
ଜୀବନ ବିକଳେ ସର୍ପେ ଉଡ଼ିପଡ଼ି ପୁଣ ॥
ଅନନ୍ତଙ୍କ ପାଶେ ଯାଇ ପ୍ରବେଶ ହୋଇଲେ ।
ମୁଖେ ହସ୍ତଦେଇ ବହୁ ବିନୟେ କହିଲେ ॥

ଅହେ ନାଗରାଜା ତୁମ୍ଭେ କର ପ୍ରତିକାର ।
ନିଶ୍ଚୟ ଏବେ ମରଲୁ ଆମ୍ଭର ସଂସାର ॥
ରକ୍ଷାନାହିଁ ଆଜ ଦେବ ପାର୍ଥସୁତ ହାତେ ।
କ୍ରୋଧେ ଅଛେ ବୀରବର ନାଶିବ ତୁରିତେ
ଅହେ ନାଗରାଜା ରଖ ଶରଣ ଆମ୍ଭର ।
ତୁମ୍ଭେ ନ ରଖିଲେ ଆଜ ନାହିଁ ଯେ ନିସ୍ତାର ॥
ମୂର୍ଖ ବୁଦ୍ଧିରେ ପଡ଼ିଣ ମଣିକୁ ନ ଦେଲୁ ।
ଶେଷେ ଏହି ଦଶା ଦେବ ଆମ୍ଭେତ ପାଇଲୁ
ତେଣୁ ସାଧୁଲୋକ ମୂର୍ଖ ସଙ୍ଗ ନ କରିବେ ।
ମୂର୍ଖଙ୍କ ସକାଶେ ସେହି ଜୀବନ ହାରିବେ ॥
ବେଗେ ଆଣିଦଅ ମଣି ହେ ନାଗରାଜନ ।
ମଣି ନ ପାଇଲେ ନିଶ୍ଚେ କରିବ ଦହନ ॥
ଶୁଣିଣ କାକୁସ୍ଥ ଗ:ର ବୋଲେ ନାଗମଣି ।
ସେ ମୂର୍ଖ କପାଁ ଆଗରୁ ନ କର ମୋ ବାଣୀ
ଯେତେ ଯେତେ ପରକାରେ ବୁଝାଇଲି ମୁହିଁ
କେତେବେଳେ ତୁମ୍ଭେମାନେ ମଣି ଦେଲ ନାହିଁ
ଜାଣ ନାହିଁ ଯେଉଁ ହରି ସଂସାର କରତା ।
ଯାହାଙ୍କର ସଖା ସେ ପାଣ୍ଡବ ବଳବନ୍ତା ॥
ତାହାଙ୍କ ଔରସୁ ଏହି ହୋଇଛି ଜନମ ।
ରେ ମୂର୍ଖ ତା ସହ କରିବାକୁ ଯାଅ ରଣ ॥
କେତେ କେତେ କଥା ଗର୍ବଭରେ କହିଥିଲ
ମନୁଷ୍ୟଙ୍କ ରଣେ ଏବେ ନିସତ ହୋଇଲ ॥
ଧିକ ତୁମ୍ଭ ବୀର ପଣ ଧିକ ତୁମ୍ଭ ଜନ୍ମ ।
ସାଧୁଲୋକ ଅମଙ୍ଗଳ ଭାବେ ଯେ ଅଧମ ॥
ଜୀବନ୍ତେ କଷ୍ଟ ଭୋଗଇ ଅନ୍ତେ ନର୍କ ବାସ ।
ନୀଚ ଯୋନିରେ ଜନମି ପାଏ ବହୁ କ୍ଲେଶ ॥
ବିଷଗର୍ବେ ଫୁଲି ଉଠି କରିଲ ବଡ଼ାଇ ।
ସେ ସବୁ ବିଷ କି ଆଜ ତୁମ୍ଭ ଦେହେ ନାହିଁ ।
ମୋର ବୋଲ କିର କିପାଁ ନ ଦେଲ ସେମଣି ।
ମୂର୍ଖପଣେ ତାଙ୍କ ସଙ୍ଗେ ଯୁଝିଗଲ ପୁଣି ॥
ସମସ୍ତେ ଧାଇଁଲ ବଳ ଗର୍ବକୁ ଦେଖାଇ ।
ଏବେ କିପାଁ ଶରଣ ହେ ପଶ ମୋହଠାଇଁ ॥
ମୋ କଥା ନ ମାନି ସର୍ବେ ଧର୍ମକୁ ଛାଡ଼ିଲ ।
ତାକୁ ଯୁଦ୍ଧେ ହାରି ଏବେ ଶରଣ ପଶିଲ ॥
ଅମୃତ ସହିତ ମଣି ଏବେ ସେହି ନେବ ।
ତୁମ୍ଭମାନଙ୍କର ଏବେ କି ଗତି ହୋଇବ ॥
ଦୁଷ୍ଟ ଲୋକଙ୍କର ଧନ ଜୀବନ ସଂସାରେ ।
କେତେବେଳେ ଲାଗେନାହିଁ ପର ଉପକାରେ
ଜାଣ ଯେଉ ଗଛମାନ ବାଟରେ ଥାଆନ୍ତି ।
ଫଳପୁଷ୍ପେ ଛାୟା ସେହି ମନୁଷ୍ୟେ ଦିଅନ୍ତି ॥
ଯେଉଁ ଗଛମାନ ଥାନ୍ତି ମଶାଣୀ ଭୂମିରେ ।
କାଉ ସାଗୁଣା ସେବନ୍ତି ଯେ ବସନ୍ତି ତହିଁରେ ॥
ଆରେ ମୂର୍ଖ ଏ ଜୀବନ ଚିରସ୍ଥାୟୀ ନୁହେ ।
ଯଶକୀର୍ତ୍ତି ଏକା ସଂସାରରେ ରହିଥାଏ ॥
ଅପଯଶ ନାନାଦୁଃଖ ପାଇଲରେ ପୁଣ ।
ମୋ ବୋଲ ନ ମାନିବାରୁ ଘଟିଲା ଏସନ ॥
ଏବେ ମଣି ଘେନି ସର୍ବେ ବେଗେ ଚଳିଯାଅ
ମୁଖେ ହସ୍ତଭରି ତାଙ୍କୁ ବିନୟରେ କହ ॥
ସଞ୍ଜୀବନୀ ମଣି ପୁଣ କୁଣ୍ଡଳ ସହିତ ।
ଆଣିଦଅ ପାତାଳ ଯେ ନୋହୁ ରସାଗତ ॥
ମହାବୀର ବଭ୍ରୁବାହ ଅର୍ଜ୍ଜୁନ ନନ୍ଦନ ।
ଉତ୍ପ୍ରୋଧ ରଖିଣ ସେହି କରିଅଛି ରଣ ॥
ଯେବେ ସେହି କ୍ରୋଧଭରେ ଶର ନିକ୍ଷେପିବ
ପାତାଳସହିତେ ଏକାବେଳେ ଧ୍ୱଂସ ହେବ ॥
ମାନ ମୋ ବଚନ ବେଗେ ଆଣିଦଅ ମଣି ।
ମଣି ଘେନି ତୁମ୍ଭ ସହିତରେ ଯିବି ପୁଣି ॥
ବୁଝାଇ କହିବି ମୁହିଁ ଚିତ୍ରାଙ୍ଗଦା ସୁତେ ।
ମଣି ଘେନି ଯିବ ସେହି ଅର୍ଜ୍ଜୁନ ନିମନ୍ତେ ॥
ନାଗରାଜାଙ୍କ ମୁଖରୁ ଏ ବଚନ ଶୁଣି ।
ମଣି ଆଣିଦେଲେ ବେଗେ ଭଣ୍ଡାରୁ ତକ୍ଷଣି ॥
ମଣି ଘେନି ନାଗରାଜା ଆନନ୍ଦ ହୋଇଲେ ।
ସର୍ପଙ୍କୁ ଡାକିଣ ତହୁଁ ବଚନ ବୋଇଲେ ॥
ଶ୍ରୀହରିଙ୍କ ଅର୍ଦ୍ଧଅଙ୍ଗ ପାର୍ଥ ବୀରବର ।
ତାହାଙ୍କ କୁମର ଏହି ବଭ୍ରୁବାହ ବୀର ॥
ଶାନ୍ତଶୀଳ ଧାର୍ମିକ ସତ୍ୟରେ ଥାଏ ମତି ।
ମୋ ଆଦେଶ କହି ଘେନିଆସ ଯା ଝଟତି ॥
ଶୁଣି ରାଜାଙ୍କର ବାଣୀ କେତେ ନାଗ ଗଣ ।
ମୁଖେ ହସ୍ତଭରି ଶୀଘ୍ର କରିଲେ ଗମନ ॥
ବଭ୍ରୁବାହନଙ୍କ ପାଶେ ଯାଇ ପ୍ରବେଶିଲେ ।
ଚରଣେ ପ୍ରଣାମ କରି ବଚନ ବୋଇଲେ ॥
ଶୁଣ ଶୁଣ ନିବେଦନ ଅହେ ବୀରବର ।
ତୁମ୍ଭ ପାଶେ ପଠାଇଲେ ନାଗଙ୍କ ଈଶ୍ୱର ॥

ବୋଇଲେ ମୋର ଆଦେଶ ଯାଇଣ କହିବୁ
ବଭ୍ରୁବାହନଙ୍କୁ ସଙ୍ଗେ ଘେନିଣ ଆସିବୁ ॥
ଶୁଣି ଏ ବଚନ ଚିତ୍ରାଙ୍ଗଦାର କୁମର ।
ଧନୁ ଧରି ବାହାରିଲା ଦୂତଙ୍କ ସଙ୍ଗର ॥
ଅନନ୍ତଙ୍କ ପାଶେ ଯାଇ ପ୍ରବେଶ ହୋଇଲା ।
ନମସ୍କାର କରି ବୀର ବିନୟେ କହିଲା ॥
ଅହେ ତାତ ଅଜ୍ଞାଣରେ ପିତାଙ୍କୁ ମୁଁ ରଣେ
ନାଶକରି ଆସିଅଛି ମଣିର କାରଣେ ॥
ଲୋକ ପଠାଇଲି ତାହା ନ ଦେଲ ଆପଣ ।
ମୁଁ ଅସନ୍ତେ ଯୁଦ୍ଧକଲେ ଏ ସର୍ପେ ବହନ ॥
ଯୁଦ୍ଧେ ହାରି ତୁମ୍ଭପାଶେ ଶରଣ ପଶିଲେ ।
ଏଥିରେ କି ଦୋଷ ମୋର କୁହ ତାତ ଭଲେ
ବଭ୍ରୁବାହନର ଦେଖି ଏସନ ଭକତି ।
କୋଳେ ନେଇ ବସାଇଲେ ତାଙ୍କୁ ନାଗପତି
ବୋଇଲେ ରେ ବାପ ମନୁ ଛାଡ଼ ଅଭିମାନ ।
ଏ ମଣି ଘେନିଣ ବାବୁ ଯାଅ ତୁ ବହନ ॥
ବେନିମାତା ବିକଳରେ ବସି କାନ୍ଦୁଥିବେ ।
ମଣି ଘେନି ଯାଅ ବାବୁ ଏଥୁ ତୁହି ଏବେ ॥
ଅନନ୍ତ ବଚନ ଶୁଣି ବଭ୍ରୁବାହ ବୀର ।
କୃତାଞ୍ଜଳିପୁଟେ ବୀର କରି ନମସ୍କାର ॥
ମଣି ଘେନି ଆନନ୍ଦରେ କରିଲା ଗମନ ।
ମଣି ତେଜେ ଅନ୍ଧକାର ଯାଏ ପଳାଇଣ ॥
କୋଟି ସୂର୍ଯ୍ୟ ତେଜ ଜିଣି ଦିଶେ ଝଳପନ ।
ସୈନ୍ୟସହ ଆସେ ବୀର ସମରର ସ୍ଥାନ ॥
ସେ ମଣି ସ୍ମରଣେ କେତେ କେତେ ବୀରଗଣ
ପ୍ରାଣ ପାଇଣ ଉଠିଲେ ସେଠାରେ ବହନ ॥
ତହୁଁ ସେମାନଙ୍କ ସଙ୍ଗେ ଘେନି ବୀରବର ।
ପ୍ରବେଶ ହୋଇଲେ ଆସି ଜନନୀ ପାଶର ॥
ନମସ୍କାର କରି ବୀର ଯୋଡହସ୍ତ ହୋଇ ।
ବୋଇଲା ଶୁଣ ଜନନୀ ଯାହା କହୁଅଛଇଁ ॥
ତୁମ୍ଭର ଦୟାରେ ମାତ ପାତାଳକୁ ଗଲି ।
ନାଗଗଣ ସହିତରେ ବହୁ ରଣକଲି ॥
ସେମାନଙ୍କୁ ରଣେ ଜିଣି ନାଶିଲି ବହନ ।
ଭୟେ ସେମାନେ ଯେ ନେଲେ ଅନନ୍ତଶରଣ
ସେମାନଙ୍କ ବିକଳରେ ନାଗକୁଳ ପତି ।
ମୋତେ ଡାକି ମଣି ସେହି ଦେଲେକି ଉଚିତ

ମଣି ଘେନି ମାତ ମୁହିଁ ଆସିଲି ବହନ ।
ନିଅ ମଣି ବଞ୍ଚାଅ ମା ତାତଙ୍କ ପରାଣ ॥
ଶୁଣି ଏ ବଚନ ସେହି ଉଲୁପୀ ସୁନ୍ଦରୀ ।
ପୁଅ ହସ୍ତୁ ମଣି ନେଲା ଅତି ଯତ୍ନକରି ॥
ଏଣେ ଯେତେବେଳେ ନାଗରାଜା ମଣିଦେଲେ
ସେ ସମୟେ ଧୃତରାଷ୍ଟ୍ର ମନରେ ପାଞ୍ଚିଲେ ॥
ବୋଇଲେ ମଣି ଯୋଗରେ ଅର୍ଜ୍ଜୁନ ଜୀବନ
ନିଶ୍ଚୟ ବଞ୍ଚିବ ଏଥେ ନାହିଁ କିଛି ଆନ ॥
କି ଉପାୟେ ମୋର ମିତ୍ରଶତ୍ରୁକୁ ମାରିବି ।
ଏପରି କୁଟ ବଚନ ମନରେ ସେ ଭାବି ॥
ଘରେ ଯାଇ ଧୃତରାଷ୍ଟ୍ର ପ୍ରବେଶ ହୋଇଲା ।
ଦୁଃସ୍ୱଭାବ ଦୁର୍ବୁଦ୍ଧିଙ୍କୁ ଡାକିଣ ବୋଇଲା ॥
ଶୁଣରେ ବେନି କୁମରେ ମୋହର ବଚନ ।
ରାଜଦ୍ୱାରେ ପାଇଅଛୁ ବଡ଼ ଅପମାନ ॥
ଅରେ ବାପ ମଣିପୁରେ ମରିଛି ଅର୍ଜ୍ଜୁନ ।
ତା ସକାଶେ ମଣି ପାଇଁ ଅନନ୍ତ ପାଶେଣ ॥
ଉଲୁପୀର ପୁତ୍ର ଆସି ପ୍ରବେଶ ହୋଇଲା ।
ମୋ ବୋଲରେ ରାଜା ବାବୁମଣି ଯେ ନଦେଲା
ତହୁଁ ସେ ବଭ୍ରୁବାହନ ଅର୍ଜ୍ଜୁନ କୁମରି ।
ଯୁଦ୍ଧେ ଆସି ଜିଣିଲା ସେ ସବୁ ନାଗକୁଳ ॥
ମଣି ଘେନି ଏହିକ୍ଷଣି କରିଲା ଗମନ ।
ବଞ୍ଚାଇବା ପାଇଁ ସେହି ଅର୍ଜ୍ଜୁନ ଜୀବନ ॥
ଜାଣ ବାବୁ ଅର୍ଜ୍ଜୁନ ପାଇଲେ ଜୀବଦାନ ।
ଏ ସବୁ କାହାଣୀ ସେହି ଶୁଣିବ ତକ୍ଷଣ ॥
ବିଶେଷରେ ଶ୍ରୀହରିଙ୍କ ଅଟେ ଅର୍ଦ୍ଧଦେହ ।
ତ୍ରିଲୋକରେ ଏକ ବୀର ଅଟେ ସେ ଦୁର୍ଜ୍ଜୟ ॥
ଏକା ହୋଇ ନିଶ୍ଚେ ସେହି ପାତାଳେ ଆସିବ
ଆମ୍ଭମାନଙ୍କୁ ସମୂଳେ ବିନାଶ କରିବ ।
ତେଣୁ କହେ କୁମରରେ ଶୀଘ୍ର ଚଳିଯାଅ ।
ଯୁଦ୍ଧୁ ବୃଷକେତୁ ପାର୍ଥ ମୁଣ୍ଡ ଆଣି ଦିଅ ॥
ରାଜାଙ୍କର ଜୋଉଁ ଜାଣ ଅଟଇ ଅର୍ଜ୍ଜୁନ ।
ନିଶ୍ଚୟ ନାଶିବ ସେହି ଆମ୍ଭର ଜୀବନ ॥
ରାଜା ହେତେ ଅର୍ଜ୍ଜୁନକୁ ମଣି ଦେଲ ନାହିଁ ।
ଏ ମୋହର ମନ୍ତ୍ରାପଣ ନ ରଖିଲେ ସେହି ॥
ନାନା ନିନ୍ଦା ବାକ୍ୟ ମୋତେ ରାଜନ କହିଲେ
ମୋର ବୋଲ ନ ମାନିଣ ମଣି ଆଣି ଦେଲେ

ବିଳମ୍ବ ନ କର ବଲା ଯାଅ ରେ ବହନ ।
ଯୁଦ୍ଧସ୍ଥଳୁ ଆଣ ମୁଣ୍ଡ ମାନ ମୋ ବଚନ ॥
ପିତାଙ୍କର ଆଜ୍ଞା ପାଇ ବେନି ସହୋଦର ।
ପ୍ରବେଶ ହୋଇଲେ ଯାଇଁ ସମର ଭୂମିର ॥
ବୃଷକେତୁ ଅର୍ଜ୍ଜୁନର ମସ୍ତକ ଘେନିଣ ।
ପିତାଙ୍କ ପାଶରେ ଆସି ଦେଲେ ଦରଶନ ॥
ଦେଖିଣ ପିଅର ତାଙ୍କୁ ବହୁ ପ୍ରଶଂସିଲେ ।
ମୁଣ୍ଡ ନେଇ ଗୁପ୍ତସ୍ଥାନେ ଲୁଚାଇ ରଖିଲେ ॥
ପ୍ରକୃତରେ ଦୁଃସ୍ୱଭାବ ଦୁର୍ବୁଦ୍ଧି ଯେ ସେହୁ ।
ନାନାଦ ଅନ୍ୟାୟ କାର୍ଯ୍ୟ ସର୍ବଦା କରଇ ॥
ତେଣୁ ସେହୁ ଏହାପର କାର୍ଯ୍ୟକୁ କରିଲେ ।
ସାଧୁଲୋକଙ୍କର ଅମଙ୍ଗଳ ଘଟାଇଲେ ॥
ଏଣେ ଉଲୂପୀ ସୁନ୍ଦରୀ ମଣି ହସ୍ତେ ଘେନି ।
ଅର୍ଜ୍ଜୁନ ପାଶେ ପ୍ରବେଶ ହୋଇଲା ତରୁଣୀ ।
ଦେଖିଲା ସେଠାରେ ବୃଷକେତୁ ପାର୍ଥବୀର ।
ଦୁହିଙ୍କ ଗଣ୍ଡି ପଡ଼ିଛି ନାହିଁ ଦୁଇ ଶିର ॥
ଚିତ୍ରାଙ୍ଗଦା ଦେଖି ଏହା ଚକିତ ହୋଇଲା ।
ହାହାକାର କରି ଉଚ୍ଚେ କ୍ରନ୍ଦନ କରିଲା ॥
ଉଲୂପୀ ମହା ଶୋକରେ ହେଲା ଅଚେତନ ।
କପାଳରେ କର ମାରି କଲାକ ରୋଦନ ॥
ଅକସ୍ମାତେ ଏ ସ୍ଥାନରୁ ମୁଣ୍ଡ କେହୁ ନେଲା ।
ଏହାର କାରଣ କିଛି ଜଣା ତ ନ ଗଲା ॥
ଅର୍ଜ୍ଜୁନ ନନ୍ଦନ ଦେଖି ଏସନ ଘଟଣ ।
ହାହାକାର କରି ବୀର ହେଲା ଅଚେତନ ॥
କ୍ଷଣକରେ ଚେତା ପାଇ କାନ୍ଦେ ବାରବାର ।
କପାଳେ କର ମାରିଣ ହୋଇଲା ଅଧୀର ॥
କାହିଁ ନ ପାଇଲେ ଖୋଜି ଦୁହିଁଙ୍କର ଶିର ।
ତହୁଁ ସର୍ବେ ଏକାବେଳେ କଲେ ହାହାକାର
ଅତି କ୍ରୋଧରେ କହିଲେ ଅର୍ଜ୍ଜୁନ ନନ୍ଦନ ।
ଚିରଦିନକୁ ଅକୀର୍ତ୍ତି ରହିଲା ମୋ ପୁଣ ॥
ହାୟ କି ବିଧିର ବିଡ଼ମ୍ବନା ଯେ ଘଟିଲା ।
ଏ ସ୍ଥାନରୁ କିଏ ଆସି ମୁଣ୍ଡ ଘେନିଗଲା ॥
ଜାଣିଲିଣି ବିଧି ମୋତେ ହୋଇଲେଣି ବାମ
ତା ନ ହେଲେ ନ କରନ୍ତି ମୁଁ ଏତେ ଅଧର୍ମ
ନିଜର ହାତରେ ମୋର ପିତାଙ୍କୁ ମାରିଲି ।
ଜନ୍ମ ଜନ୍ମାନ୍ତରେ ମୁହିଁ ପାପରେ ମଜ୍ଜିଲି ॥

ଜଗତର ଲୋକେ ଶୁଣି ନିନ୍ଦିବେ ବହୁତ ।
ଧିକ ମୋର ଜନ୍ମ ଧିକ ମୋହର ମହତ ॥
ରୌରବ ନର୍କରେ ମୁହିଁ ନିଶ୍ଚୟ ପଡ଼ିବି ।
ଆଉ କିପାଇଁ ନିର୍ଲ୍ଲଜ ଜୀବନ ରଖିବି ॥
ଯେଉଁ ବୀର ଶ୍ରୀକୃଷ୍ଣଙ୍କ ଅଟେ ଅର୍ଦ୍ଧ ଦେହ
ଧନୁର୍ଦ୍ଧର ବୀର ପୁଣି ବାସବ ତନୟ ॥
ଯାହାଙ୍କ ପ୍ରତାପେ ତ୍ରିଭୁବନ କମ୍ପଇ ।
ଯେହୁ ଧନୁ ଟଙ୍କାରିଲେ ଶମନ ଡରଇ ॥
ସୁରାସୁର କମ୍ପମାନ ଯାହାର ତେଜରେ ।
ମହାଦେବେ ତୋଷିଲେ ଯେ କିରାତ ରୂପରେ
ତୋଷେ ଆଶୁତୋଷ ଦେଲେ ପାଶୁପତ ଶର
ଖାଣ୍ଡବ ଦହନେ ଯେ ଜିଣିଲେ ସୁରେଶ୍ୱର ॥
ବିରାଟପୁରେ ଗୋଧନ ହରଣ କାଳରେ ।
ଏକା ଜୟକଲେ ଭୀଷ୍ମ ଦ୍ରୋଣ କର୍ଣ୍ଣବୀରେ ॥
ଆଜ ସେହୁ ବୀରବର ମୋହର ହାତରେ ।
ଅକାଳେ ତେଜିଲେ ଅହା ପରାଣ ଏଠାରେ
କି କରିବି କେଣେ ଯିବି ବୁଦ୍ଧି ନ ଦିଶଇ ।
ଏ ବିପଦେ ସାହା ହୁଅ ହେ କମଳସାଇଁ ॥
ତୁମ୍ଭେ ନ ରଖିଲେ ପ୍ରଭୁ ହୋଇଲି ଅନାଥ ।
ପିତୃହତ୍ୟା ପାପ ସଦା ଘାରେ ମୋର ଚିତ୍ତ ॥
ଦଅ ବୀରେ ଅସି ମୋତେ ହାରିବି ଜୀବନ ।
ଏ ପାପ ଜୀବନେ ଅଛି କେଉଁ ପ୍ରୟୋଜନ ॥
ସଞ୍ଜିବନୀ ମଣି ପାଇଁ ପାତାଳକୁ ଗଲି ।
ବହୁଯୁଦ୍ଧେ ସେ ମଣିକୁ ସେଠାରୁ ଆଣିଲି ॥
ମଣି ଆଣିଲେ କି ହେବ କପାଳ ମୋ ମନ୍ଦ ।
କେଉଁ ଚଣ୍ଡାଳ ହରିଲା ପିତା ଭ୍ରାତା ସ୍କନ୍ଧ ॥
କୁଣ୍ଡଳ ସହିତେ ମୁଣ୍ଡ ଆହା କିଏ ନେଲା ।
ଆହା ରେ ବିଧାତା ତୋର ମନେ ଏହା ଥିଲା
କି ଦୁର୍ଯୋଗେ ପିତା ଆସି ମୋପୁରେ ପଶିଲେ
ଆହା କୁଯୋଗରେ ମୋରକରେପ୍ରାଣଦେଲେ
ଏସନ କହି କୁମର ବହୁ ଶୋକଭରେ ।
ଧୂଳିରେ ଗଡ଼ିଣ ବାରେ ଶିରେ କର ମାରେ ॥
କ୍ଷଣେ ମୂର୍ଚ୍ଛାଯାଏ କ୍ଷଣେ ଚେତଣ କାନ୍ଦଇ ।
ଧୂଳିରେ ଧୂସର ଅଙ୍ଗ ଉଚ୍ଚରେ ରୋଦଇ ॥
ପୁତ୍ରର ଏ ଅବସ୍ଥାକୁ ଦେଖିଣ ଜନନୀ ।
ମୂର୍ଚ୍ଛା ଯାଇଣ ପଡ଼ିଲେ ସେହୁ ଦୁଃଖିଣୀ ॥

ପାତ୍ର ମିତ୍ର ଅମାତ୍ୟ ସଇନ ସହିତେ ।
ଦେଖି ଏସନ ଅବସ୍ଥା ସର୍ବେ ଦୁଃଖିତେ ॥
ଲଲାଟରେ କର ମାରି କଲେ ସେ ରୋଦନ ।
ବିଧାତା ସ୍ମରି ଯେ କାନ୍ଦନ୍ତି ଅନୁକ୍ଷଣ ॥
ସମସ୍ତଙ୍କ ଦୁଃଖ ଶୋକ କ୍ରନ୍ଦନର ଧ୍ୱନି ।
ସିନ୍ଧୁ ଉଚ୍ଛୁଳିଲା ପରି ଘୋଟିଲା ମେଦିନୀ ॥
ଆହା ମେ ସମସ୍ତ ଦୁଃଖ କି ବର୍ଣ୍ଣିବି ମୁହିଁ ।
ପାଷାଣହେଲେ ତରଳ ହେବ ସେହିଠାଇଁ ॥
ସେ ସମୟେ ବଭ୍ରୁବାହ ଅର୍ଜ୍ଜୁନ ନନ୍ଦନ ।
ପିତା ଶୋକରେ ଅତ୍ୟନ୍ତ ଅଧୀର ହୋଇଣ ॥
ଅକୁଳେ ଡ଼ାକଇ ଆହେ ଦୟାମୟ ହରି ।
ଏ ବିପଦୁଁ ରକ୍ଷା କର ସଖାଙ୍କୁ ତୁମ୍ଭର ॥
ତୁମ୍ଭ ଲାଗି ଥିଲା ବଡ଼ ପାଣ୍ଡୁଙ୍କ ନନ୍ଦନ ।
ଏବେ କିପାଇଁ ନିର୍ଦ୍ଦୟ ହୁଅ ନାରାୟଣ ॥
କେତେ କେତେ ବିପଦରୁ କରିଛ ଉଦ୍ଧାର ।
ଜତୁ ଗୃହ ବିଷଲଡୁ କପଟପାଶାର ॥
ପୁଣି ଗୋଧନ ହରଣେ ବିରାଟ ପୁରରେ ।
ପାଞ୍ଚାଳ ଦେଶେ ଦ୍ରୌପଦୀ ସ୍ୱୟମ୍ବରଠାରେ ॥
ନିବାତକବଚ କାଳକେୟ ଯାତୁଧାନ ।
ଖାଣ୍ଡବ ଦହନ କାଳେ ଦେବ ଭଗବାନ ॥
କେତେ ଦୟା କରି ହରି ଅର୍ଜ୍ଜୁନେ ତାରିଲ ।
ଏବେ କିପାଇଁ ହେ ପ୍ରଭୁ ନିଷ୍ଠୁର ହୋଇଲ ॥
ସୁଭଦ୍ରା ହରଣେ ବଳଦେବଙ୍କ ସହିତ ।
ଯେତେବେଳେ ବିବାଦ କରିଲେ ମୋରଭ୍ରାତ
ବଡ଼ଭାଇ ସ୍ନେହ ଛାଡ଼ି ଅର୍ଜ୍ଜୁନଙ୍କୁ ତହିଁ ।
ଦୟାକରି ରକ୍ଷାକଲ ହେ କମଳାସାଇଁ ॥
ଶୁଣିଅଛି ଯେ ତୁମ୍ଭଙ୍କୁ କରଇ ସ୍ମରଣ ।
ଅଶେଷ ଦୁରିତ ତାର ହୁଅଇ ଦହନ ॥
କଳ୍ପ ଦନୁ ଜାଣେ ମୁହିଁ ହେ କମଳାସାଇଁ ।
ଦିନେ ମାସ କୋଉଁଣସି ପାପ କରି ନାହିଁ ॥
ଧର୍ମର ସହାୟ ବୋଲି ତୁମ୍ଭଙ୍କୁ କହନ୍ତି ।
ଏବେ ଅର୍ଜ୍ଜୁନରଠାରେ କିପାଁ କୋପ ମତି ॥
ତୁମ୍ଭେ ଦୟା ନ କଲେ ହେ କମଳା ହରଣ
ପାଣ୍ଡୁ କୁଳ ନାମ ଯିବ ସଂସାରୁ ବୁଡ଼ିଣ ॥
ଏପରି ବଭ୍ରୁବାହନ କଲେ ବହୁ ସ୍ତବ ।
ଧ୍ୟାୟେ ସେ ଚରଣେ ଉପଃଧ୍ୟାୟୁ ମହାଦେବ ॥

## ଶ୍ରୀକୃଷ୍ଣଙ୍କର ମଣିପୁର ଆଗମନ ଓ ଅର୍ଜ୍ଜୁନଙ୍କର ଜୀବନପ୍ରାପ୍ତି

ଏଥୁଅନ୍ତେ ଜନ୍ମେଜୟ ମୁନିପାଦେ ପଡ଼ି ।
ବିନୟେ କହନ୍ତି ରାଜା ବେନିକର ଯୋଡ଼ି ॥
ଏହାପରେ କିସ ହେଲା ବିସ୍ତାରିଣ ମୋତେ ।
ବୁଝାଇଣ ମହାମୁନି କୁହ ହୃଷ୍ଟଚିତ୍ତେ ॥
ପାପ ତାପ ସଦା ମନ ଘାରଇ ମୋହର ।
ଶ୍ରୀକୃଷ୍ଣ ମହିମା କହି ତାହା ଦୂରକର ॥
ରାଜାଙ୍କର ଭକ୍ତି ଦେଖି ସେ ମୁନିପୁଙ୍ଗବ ।
ତଦପରେ ଯାହା ହେଲା କହିଲେ ସେ ସବ ॥
ଶୁଣ ଶୁଣ ମହାରାଜା ଦେଇ ମନ କର୍ଣ୍ଣ ।
କୃଷ୍ଣ କଥା ଶୁଣି ପାପ କର ହେ ଦହନ ॥
ମଣିପୁରେ ଯେଉଁଦିନ ପାର୍ଥ ବୀରବର ।
ପୁତ୍ର ସହ ରଣ କରି ତେଜିଲେ ଶରୀର ॥
ସେହିଦିନ ହସ୍ତିନାରେ ରାତ୍ର ସମୟରେ ।
ଶୋଇବାକୁ ଗଲେ କୁନ୍ତୀ ଶୟନ ମନ୍ଦିରେ ।
ନିଦ୍ରା ଯହୁଁ ଆସି ଦେବୀ ନୟନେ ଘାରିଲା ।
ପାର୍ଥ ଅମଙ୍ଗଳ ସ୍ୱପ୍ନ ତହିଁ ଦେଖାଗଲା ॥
ସ୍ୱପ୍ନରେ ଦେଖିଲେ ଦେବୀ ପାର୍ଥ ଅମଙ୍ଗଳ ।
ଗଳେ ନାଇଛନ୍ତି ବୀର ମନ୍ଦାରର ମାଳ ॥
ତଇଲରେ ଜରଜର ହୋଇଛନ୍ତି ସେହି ।
ଗଧ ପରେ ଦକ୍ଷିଣକୁ ଗମନ କରଇ ॥
ଏସନ ଦେଖିଣ କୁନ୍ତୀ ଚମକି ପଡିଲେ ।
ରାତି ଅଧେ ଅନ୍ତଃପୁରେ କାନ୍ଦିଣ ଉଠିଲେ ॥
କୁନ୍ତୀଙ୍କ ଅବସ୍ଥା ଦେଖି ସର୍ବ ବଧୂଗଣ ।
ଆସିଣ ପୁଚ୍ଛିଲେ ଶୁଣି କ୍ରନ୍ଦନ କାରଣ ॥
ଯେ ଯେତେ କହିଲେ ଦେବୀ କିଛି ନ ଶୁଣିଲେ
ଶ୍ରୀକୃଷ୍ଣ କାହାନ୍ତି ଡ଼ାକି ଆଣ ମୋ ପାଶରେ ॥
ତହୁଁ ଶ୍ରୀକୃଷ୍ଣଙ୍କୁ ଡ଼ାକି ଆଣିଲେ ପାଶକୁ ।
ସ୍ୱପନ ଘଟଣା ଦେବୀ କହିଲେ ତାହାଙ୍କୁ ॥
ଆହେ ନାରାୟଣ ମୋର ପୋଡ଼ଇ ଅନ୍ତର ।
ବଞ୍ଚି ନାହିଁ ମୋର ପୁତ୍ର ପାର୍ଥ ଧନୁର୍ଦ୍ଧର ॥
ଯେଉଁ ଅମଙ୍ଗଳ ମୁହିଁ ଦେଖିଲି ସ୍ୱପନ ।
ସେ ଦୁଃଖରେ ଜୀବନ ପୋଡ଼ଇ ଅନୁକ୍ଷଣ ॥
ଅର୍ଜ୍ଜୁନରଠାରୁ ଦୟାମାୟା କି ଛାଡ଼ିଲ ।
ଭଦ୍ରା ଶୂନ୍ୟହସ୍ତ ହେଲେ ହୋଇବ କି ଭଲ

ଅନ୍ତର୍ଯ୍ୟାମୀ ନାରାୟଣ ସବୁ ତୁମ୍ଭେ ଜାଣ ।
ଏକ୍ଷଣି ଦେଖାଅ ମୋତେ ଅର୍ଜ୍ଜୁନ ବଦନ ॥
ଶୁଣି ନାରାୟଣ ଗରୁଡ଼କୁ ସୁମରିଲେ ।
ରମ୍ୟକ ଦ୍ୱୀପରୁ ପକ୍ଷୀ ସତ୍ୱର ଆସିଲେ ॥
ଶ୍ରୀକୃଷ୍ଣ ଚରଣ ତଳେ କଲା ପ୍ରଣିପାତ ।
କପାଇଁ ସ୍ମରଣ କଲ କୁହ ହେ ଅଚ୍ୟୁତ ॥
ଗରୁଡ଼କୁ ବୋଲନ୍ତି ସେ ପ୍ରଭୁ ନାରାୟଣ ।
ମୋତେ ନେଇ ମଣିପୁରେ ଚଳ ତୁ ବହନ ॥
ଅକ୍ଷମ ବେ ଗରୁଡ଼ ଯେ ପକ୍ଷ ବସ୍ତାରିଲା ।
ଭୀମ କୃଷ୍ଣ କୁନ୍ତୀ ଆଦ ପୃଷ୍ଠେ ବସାଇଲା ॥
ପକ୍ଷ ବସ୍ତାରିଣ ଚଳିଯାଏ ପକ୍ଷୀବର ।
ମଣିପୁରେ ମିଳିଲା ସେ ଯାଇଁଣ ସତ୍ୱର ॥
ସମର ଭୂମିରେ ବୀର ଉପସ୍ଥିତ ହେଲା ।
ଭୀମ କୁନ୍ତୀ ସହ ଓହ୍ଲାଇଲେ ନନ୍ଦବଳା ॥
କୁନ୍ତୀ ସହିତରେ ଅର୍ଜ୍ଜୁନଙ୍କ ପାଶେ ଗଲେ ।
ବୃଷକେତୁ ସହ ବୀର ପଡ଼ିଛୁ ଦେଖିଲେ ॥
ସମସ୍ତ ସଇନ ତହିଁ ପଡ଼ିଣ ଅଛନ୍ତି ।
ଦେଖିଣ ଅକୁଳ ହେଲେ ପ୍ରଭୁ ଶିରୀପତି ॥
ଶ୍ରୀକୃଷ୍ଣ ଡ଼ାକନ୍ତି ଉଠ ଉଠ ହେ ଅର୍ଜ୍ଜୁନ ।
କେ ତୁମ୍ଭଙ୍କୁ କରାଇଲା ଏଡ଼େ ହୀନମାନ ॥
ମୋ ସଖା ହୋଇଣ କଲ ଧରାରେ ଶୟନ ।
କିଏ ଏଡେ ବଳୀ କଲା ତୁମ୍ଭଙ୍କୁ ଏସନ ॥
ତହିଁ ଭୀମସେନ ଦେଖେ ପାର୍ଥର ପୃଷ୍ଠରେ ।
ପଡ଼ିଅଛୁ ବୃଷକେତୁ ହୀନ ଅବସ୍ଥାରେ ॥
ଦେଖି କ୍ରୋଧେ ବୀରବର ଆରକ୍ତ ଲୋଚନ ।
ଆହେ କେଉଁ ବୀର ଗୃଳଗଲା ବନାଶିଣ ॥
ଭ୍ରାତା ପୁତ୍ର ଶୋକେ ବୀର ଗର୍ଜ୍ଜନ କରିଲେ ।
ସମର ପ୍ରାଙ୍ଗଣେ କ୍ରୋଧଭରେ ଡ଼ାକ ଦେଲେ ॥
ତ୍ରିଭୁବନ ମଧ୍ୟେ ଏଡ଼େ ବୀର କେ ଅଛଇ ।
ବନାଶ କରିଲା ପାର୍ଥ କର୍ଣ୍ଣଙ୍କ ତନୟୀ ॥
ଆସୁ ସେହି ନରାଧମ କରିବ ସମର ।
କେତେ ଦୂର ବଳ ଅଛୁ ଦେଖିବି ତାହାର ॥
ଦେଖିବି ତାହାର ବଳ ଦେଖିବି ତା ରଣ ।
କେଉଁପରି ପାର୍ଥଙ୍କୁ ସେ କରିଲା ନିଧନ ॥
ଏସନ କହିଣ ଭୀମ ଭୀମନାଦ କଲେ ।
ଗଦାଧରି ସମର ପ୍ରାଙ୍ଗଣେ ଛିଡ଼ା ହେଲେ ॥
ଭୀମସେନଙ୍କର ଭୀମ ରଡ଼ି ଶବଦରେ ।
ଦେନିମାତା ସହ ବଭ୍ରୁବାହନ ସେଠାରେ ॥
ଅଚେତନେ ପଡ଼ିଥିଲେ ପାଇଲେ ଚେତନ ।
ଦେଖିଲେ ସେ ନାରୀ ସହ ପୁରୁଷ ଦ୍ୱିଜଣ ॥
ଉପସ୍ଥିତ ରଣସ୍ଥଳେ ହୋଇଛନ୍ତି ସେହି ।
ଏକ ବୀର ଗଦାଧରି ଗର୍ଜ୍ଜୁଣ ଅଛଇ ॥
ଅନିରୁଦ୍ଧ ସାତ୍ୟକୀ ଯେ ପାଇଣ ଚେତନା ।
ଶଙ୍ଖାଇଣ ଦେଲେ ବଭ୍ରୁବାହନେ ତକ୍ଷଣ ॥
ଜାଣି ବୀର ବଭ୍ରୁବାହ ସଜଳ ନୟନେ ।
ଯାଇଣ ପଡ଼ିଲା ଭୀମସେନଙ୍କ ଚରଣେ ॥
ଅହା ତାତ କହି ବୀର ଅଚେତନ ହେଲା ।
କେତେକ୍ଷଣ ପରେ ପୁଣି ଚେତନା ପାଇଲା ॥
କପାଇଁ ହେ ତାତ ଗଦା ଧରିଛ ହାତରେ ।
ପ୍ରହାର କରି ନାଶି ଏ ଅଧମ କୁମରେ ॥
ସ୍ୱହସ୍ତରେ ଏ ଅଧମ ଅର୍ଜ୍ଜୁନଙ୍କ ପ୍ରାଣ ।
ଅବର ନାଶିଛି ବୃଷକେତୁର ଜୀବନ ॥
ପିତା ଭ୍ରାତା ନାଶ କରିଅଛି ଏ ପାମର ।
ଗଦାଘାତେ ତାତ ମୋର ଶିର ଚୂର୍ଣ୍ଣ କର ॥
ଏଣେ ଶଙ୍ଖାଙ୍ଗଦା ପୁଣି ଉଲପୀ ସୁନ୍ଦରୀ ।
ଛତେ ଉଠି ପାର୍ଥ ଙ୍କ ଚରଣକୁ ଧରି ॥
ହାୟ ହାୟ କରି ଶିରେ କରାଘାତ କଲେ ।
ଗୃହଁ ଗୃହଁ ଦୁଇ ସଖୀ ଢଳିଣ ପଡ଼ିଲେ ॥
ଏସନ ଅବସ୍ଥା ଦେଖି କୁନ୍ତୀ ମହାଦେଈ ।
ବୋଇଲେ କସ ଅବସ୍ଥା ଘଟିଛି ଏଠାଇଁ ॥
ଏ ଦୁଇଟି ଯୁବାନାରୀ କପାଁଇ ଦୁଃଖରେ ।
ପାର୍ଥ ମୃତ ଦେହଧରି ଗଡ଼ନ୍ତି ଧରାରେ ॥
ଏ ବାଳକ କପାଁ ଭୀମ ଚରଣେ ପଡ଼ଇ ।
ଏଥିର କାରଣ କିଛି ଜାଣିପାରୁ ନାହିଁ ॥
ଏସନ ଶୁଣି ସାତ୍ୟଙ୍କୀ ବୁଝାଇ କହିଲେ ।
ଶୁଣି ସମସ୍ତେ କପାଳେ କରକୁ ମାଇଲେ ॥
ଏଣେ ବଭ୍ରୁବାହ ବୀର ଦେଖି ନାରାୟଣ ।
ପାଦରେ ପଡ଼ି ବିନୟେ ବୋଇଲେ ବଚନ ॥
ଆହେ ଚକ୍ରଧାରୀ ଚକ୍ର ନାହିଁ କି କରରେ ।
କପାଇଁ ନ ନାଶି ରଖିଅଛ ଏ ପାପୀରେ ॥
ସୁଦର୍ଶନ ଚକ୍ର ପ୍ରଭୁ କରିଣ ଧାରଣ ।
ଯେପରି ସନ୍ତୁଙ୍କୁ ନାଶ କରିଲ ଅପଣ ॥

ସେହିପରି ଚକ୍ରେ ପ୍ରଭୁ ମୋତେ କର ନାଶ ।
ପିତୃହତ୍ୟା ଦୋଷ ମୋର ଯାଉ ପୀତବାସ ॥
ପିତୃଘାତି ଭ୍ରାତୃଘାତି ଯେ ଜନ ଅଟଇ ।
ମୁନିମାନେ କହିଛନ୍ତି ଯେ ନର୍କ ଭୋଗଇ ॥
କିନ୍ତୁ ସେ ନରକ ଭୟ ମୋର ଆଉ ନାହିଁ ।
ଯେଣୁ ଶ୍ରୀଚରଣ ଦେଖିଲି ହେ ଲକ୍ଷ୍ମୀସାଇଁ ॥
ଯେତେବେଳେ ଶ୍ରୀଚରଣ କରିଛି ଦର୍ଶନ ।
ସେ ବେଳୁଁ ପାପ ମୋହର ହୋଇଛି ଦହନ ॥
ମାତ୍ର ପିତୃଘାତି ଏହି ନିନ୍ଦା ନାରାୟଣ ।
ଜନ ମୁଖେ ପାଇ ଯାହା ରଖିବ ଜୀବନ ॥
ସଧା କଳଙ୍କ ପଟଳ କରିବାରେ ଦୂର ।
ଯେ ମାୟା କରିଲ ଗୋପେ ଆହେ ବଂଶୀଧର

ସେହିପରି ମାୟାଧର ପିତାଙ୍କ ଜୀବନ ।
ବଞ୍ଚାଇଣ ସମସ୍ତଙ୍କୁ ଦିଅ ଜୀବଦାନ ॥
ଜୀବନେ ମରଣ ସମ ସର୍ବେ ହୋଇଛନ୍ତି ।
ଭଲ ମାୟା ମାୟାଧର ଅଛ ହେ ଲଗାଇ ॥
ହର ବ୍ରହ୍ମା ଯା ମାୟାରେ ନ ପାଆନ୍ତି ଅନ୍ତ ।
ମୁଁ ବାଳକ ମାତ୍ର କିବା ବୁଝିବି ଅଚ୍ୟୁତ ॥
ଯେତେବେଳେ ପିତାଙ୍କୁ ମୁଁ ଯୁଦ୍ଧେ ବଧକଲି
ସାବତ ଜନନୀ ବୋଲେ ପାତାଳକୁ ଗଲି ॥
ପାତାଳେ ନାଗଙ୍କ ସଙ୍ଗେ ବହୁ ଯୁଦ୍ଧ କରି ।
ମୃତ୍ୟୁ ସଞ୍ଜୀବନୀ ମଣି ଆଣିଲି ଶ୍ରୀହରି ॥
ସେ ମଣି ଆଣିଣ ପ୍ରଭୁ ଏ ସମର ସ୍ଥଳେ ।
ପିତା ମାତା ଭ୍ରାତାପାଶେ ମିଳିଲି ସତ୍ୱରେ ॥



ଯୁଦ୍ଧସ୍ଥଳେ ବଭ୍ରୁବାହନ ଓ ଚିତ୍ରାଙ୍ଗଦାଦି ବିଳାପ ଏବଂ ଭୀମ ଶ୍ରୀକୃଷ୍ଣାଦି ପ୍ରବେଶ, ଭୀମଙ୍କର ପ୍ରତିଜ୍ଞା ଏବଂ ଶ୍ରୀକୃଷ୍ଣଙ୍କ ଇଙ୍ଗିତରେ ଅର୍ଜ୍ଜୁନମୁଣ୍ଡ ତୂନୀରୁ ପତନ ଓ ଅର୍ଜ୍ଜୁନର ପୁନର୍ଜୀବନ ।

ଦେଖିଲି କେଉଁ ପାପିଷ୍ଠ ପିତା ଭ୍ରାତାମୁଣ୍ଡ ।
ଗୁପ୍ତରେ ହରଣ କରି ନେଇଛି ପାଷାଣ୍ଡ ॥
ତହୁଁ ଉପାୟ ନ ଦେଖି ପ୍ରଭୁ ନାରାୟଣ ।
ଭାବନ୍ତି ଅନଳ ଜାଳି ହୋଇବି ଦହନ ॥
ପିତା ଭ୍ରାତା ଶୋକେ ଅଚେତନେ ପଡ଼ିଥିଲି ।
ଆପଣଙ୍କ ଅଙ୍ଗ ବାୟୁ ସ୍ପର୍ଶେ ଉଠିଲି ॥
ଏବେ ଯାହା ଇଚ୍ଛା ତାହା କର ନାରାୟଣ ।
ଶ୍ରୀରଙ୍ଗାଚରଣ ତଳେ ଦିଅ ମୋତେ ସ୍ଥାନ ॥
ବଭ୍ରୁବାହନର ଠାରୁ ଏସନ ବଚନ ।
ଶୁଣିଣ କହନ୍ତି ତହିଁ ପ୍ରଭୁ ନାରାୟଣ ॥
ଧୈର୍ଯ୍ୟଧର ବୀରବର ନ ହୁଅ କାତର ।
ନିଶ୍ଚୟେ ବଞ୍ଚିବ ମୋର ସଖା ପାର୍ଥବୀର ॥
ଅହେ ନାଗନର ଯକ୍ଷ ରକ୍ଷ ଦେବଗଣ ।
ଦେବାଦେବୀ ଆଉ ଅଷ୍ଟ ଦିଗପାଳ ଗଣ ॥
ଡାହାଣୀ ଯୋଗିନୀ ପିଶାଚୀ ଚଣ୍ଡୀ ସହିତେ
ଭୂତ ପ୍ରେତ ଆଦି ତୁମ୍ଭେ ଶୁଣ ହେ ସମସ୍ତେ ॥
ଯେଉଁ ଲୋକ ଏ ମୁଣ୍ଡକୁ ହରଣ କରିଛି ।
ମୁହିଁ ଏହି ଅଭିଶାପ ତାହାକୁ ଦେଉଛି ॥
ଯାର ଆଜ୍ଞାବଳେ ପୃଥ୍ୱୀ ସର୍ଜ୍ଜନା ହୋଇଛି ।
ଯାର ମାୟାବଳେ ଜୀବ ସଂସାରେ ଚଳୁଛି ॥
ଯା ଆଜ୍ଞାରେ ଚନ୍ଦ୍ର ସୂର୍ଯ୍ୟ ହୁଏ ଅତଯାତ ।
ଆକାଶେ ଅଛନ୍ତି ଗ୍ରହ ନକ୍ଷତ୍ର ସହିତ ॥
ତାଙ୍କର ଶପତ ଦେଇ କହୁଅଛି ମୁହିଁ ।
ଯେଉଁ ଲୋକ ଏ ମୁଣ୍ଡକୁ ହରଣ ଅଛଇ ॥
ବେଦ ଧର୍ମ ପୁରାଣ ସଂସାରେ ଯେବେ ସତ ।
ମୁଣ୍ଡ ଘେନି ଆସି ଏଥି ପଡୁ ସେ ତ୍ୱରିତ ॥
ସେ ଲୋକ ସହିତ ଆସି ପଡୁ ପାର୍ଥଶିର ।
ଏସନ ଆଜ୍ଞା ଦିଅନ୍ତେ ପ୍ରଭୁ ଚକ୍ରଧର ॥
ଏମନ୍ତ ବଚନ ଯେ କହନ୍ତେ ନାରାୟଣ ।
ଦୁଃସ୍ୱଭାବ ଦୁର୍ବୁଦ୍ଧି ଅର୍ଜ୍ଜୁନ ଶିର ଜାଣି ॥
ବୃଷକେତୁ ମୁଣ୍ଡସହ ସେଠାରେ ପଡ଼ିଲେ ।
ତହିଁ ଦୁଇ ନାଗସୁତ ପ୍ରାଣ ହରାଇଲେ ॥
ବୃଷକେତୁ ଅର୍ଜ୍ଜୁନର ମସ୍ତକ ଧରିଣ ।
ଶ୍ରୀକୃଷ୍ଣଙ୍କ କରେ ଦେଲେ ସେ ବଭ୍ରୁବାହନ ॥
ବୃଷକେତୁ ଅର୍ଜ୍ଜୁନର ଶିର ଯଥାସ୍ଥାନେ ।
ଲଗାଇଣ ମଣି ଆଣି ଶ୍ରୀହରି ତକ୍ଷଣେ ॥
ମଣି ଧରି ହୃଷୀକେଶ ଦୁଃଖ ଦୂରକରି ।
ସ୍ଥିରକଲେ ନାରାୟଣ ଚିତ୍ତରେ ବିଗୁରି ॥
ବୃଷକେତୁ ବଞ୍ଚାଇଣ ଦେବା ପ୍ରଥମରେ ।
ବୀର ଅର୍ଜ୍ଜୁନକୁ ବଞ୍ଚାଇବା ତଦପରେ ॥
ଏସନ ଭାବିଣ ତହିଁ ପ୍ରଭୁ ନାରାୟଣ ।
ବୃଷକେତୁ ଶିରେ ମଣି ଦେଲେକ ତକ୍ଷଣ ॥
ମଣି ସ୍ପର୍ଶମାତ୍ରେ ବୀର ଜୀବନ ପାଇଲା ।
ନିଦ୍ରାରୁ ଉଠିଲା ପରି ତକ୍ଷଣେ ଉଠିଲା ॥
କୃଷ୍ଣ କୃଷ୍ଣ କହି ବୀର ଉଠିଲା ତ୍ୱରିତ ।
ଆଗରେ ଦେଖିଲା ରହିଛନ୍ତି ନନ୍ଦସୁତ ॥
ନମସ୍କାର କରି ବୀର ଅତି ଭକ୍ତିଭରେ ।
ଲୋଟାଇଲା ଶିର ବୀର ଶ୍ରୀହରି ପୟରେ ॥
ତଦପରେ ଭୀମସେନ କଲା ନମସ୍କାର ।
କୁନ୍ତୀଙ୍କ ଚରଣତଳେ ପଡ଼େ ବୀରବର ॥
ଏ ସମସ୍ତେ ନାରାୟଣ ଅର୍ଜ୍ଜୁନର ଶିରେ ।
ମୃତ୍ୟୁ ସଞ୍ଜୀବନୀ ମଣି ନେଇ ଲଗାଇଲେ ॥
ପ୍ରାଣ ପାଇ ଅର୍ଜ୍ଜୁନ ଉଠିଲେ ତତକ୍ଷଣ ।
ଶ୍ରୀହରିଙ୍କ ଚରଣରେ ଲୋଟିଲେ ବହନ ॥
ଯେତେଲୋକ ମରିଗଲେ ସମସ୍ତଙ୍କ ଠାରେ ।
ସେ ମଣିକୁ ଲଗାଇଲେ ପ୍ରଭୁ ଆନନ୍ଦରେ ॥
ସେ ମଣିର ସ୍ପର୍ଶେ ସର୍ବେ ପାଇଲେ ଜୀବନ ।
ମାର ମାର ଧ୍ୱନି ତହିଁ କଲେ ସର୍ବ ସୈନ୍ୟ ॥
ନାରାୟଣ ସେମାନଙ୍କୁ ପ୍ରବୋଧ କରିଲେ ।
ସମସ୍ତେ ଶ୍ରୀକୃଷ୍ଣଙ୍କର ପାଦରେ ପଡ଼ିଲେ ॥
ସ୍ୱର୍ଗପୁରେ ଦେବତାଏ କଲେ ଜୟଧ୍ୱନି ।
ଆନନ୍ଦ ସାଗରେ ପୂରି ଉଠିଲା ଅବନୀ ॥
କିବା ନର କିବା ନାରୀ ଆନନ୍ଦିତ ହେଲେ ।
ଜୟ ଜୟ ଧ୍ୱନି ସର୍ବେ ସେଠାରେ କରିଲେ ॥
ସ୍ୱର୍ଗୁ ଦେବଗଣ କଲେ ପୁଷ୍ପ ବରଷଣ ।
ମହାନନ୍ଦେ ପୂର୍ଣ୍ଣହେଲା ସେହି ରଣସ୍ଥାନ ।
ତହିଁ ଅର୍ଜ୍ଜୁନକୁ ଆନନ୍ଦରେ ନାରାୟଣ ।
ଆଲିଙ୍ଗନ କରି ମୁଖେ ଦେଲେକ ଚୁମ୍ବନ ॥
ବୋଇଲେ ହେ ସଖା ତୁମ୍ଭେ ଅଟ ବୀରବର ।
କପରି ହାରିଲ ରଣେ ବାଳକ ସଙ୍ଗର ॥
ମନେ କ୍ଷୋଭ କର ନାହିଁ ତୁମ୍ଭର ନନ୍ଦନ ।
ଚିତ୍ରାଙ୍ଗଦା ଗର୍ଭ ଜାତ ବୀରଙ୍କ ପ୍ରଧାନ ॥

ପୂର୍ବରେ ଗଙ୍ଗା ତୁମ୍ଭଙ୍କୁ ଶାପ ଦେଇଥିଲା ।
ତେଣୁ କରି ବଭ୍ରୁବାହ ହାତେ ପ୍ରାଣଗଲା ॥
ଭଲ ହେଲା ସଖୀ ଶାପ ହୋଇଲା ମୋଚଣ ।
ସେ ଭୟରେ ସଦା ଘାରୁ ଥିଲା ମୋର ମନ ॥
ପରସ୍ପରେ ଯଥାଯୋଗ୍ୟ ମାନ୍ୟ କଲେ ତହିଁ ।
ଚିତ୍ରାଙ୍ଗଦା ଉଲୂପୀ ସେ କୁନ୍ତୀ ପାଶେ ଯାଇ ॥
ଶାଶୁଙ୍କ ଚରଣତଳେ କଲେ ନମସ୍କାର ।
କୃତାଞ୍ଜଳି ପୁଟେ ସ୍ତୁତି କଲେକ ଅପାର ॥
ତହୁଁ କୁନ୍ତୀ ସେମାନଙ୍କୁ କଲ୍ୟାଣ କରିଲେ ।
ଦୁଇ ରାଣୀ ପାର୍ଥଙ୍କର ଚରଣ ବନ୍ଦିଲେ ॥
ଚିତ୍ରାଙ୍ଗଦା ଉଲୂପୀଙ୍କି ଦେଖି ପାର୍ଥବୀର ।
ଲଜ୍ଜାଭରେ ମୁଖକୁ ସେ ପୋତିଲେ ସେଠାର ॥
ସ୍ୱାମୀ ମନ ଦୁଃଖ ଜାଣି ସେ ବେନି ସୁନ୍ଦରୀ ।
ପାଦ ବନ୍ଦି ସେଠାବରୁ ଗଲେ ଅପସରି ॥
ଆନନ୍ଦରେ ନାଗରାଜା କୃଷ୍ଣେ ପ୍ରଣମିଣ ।
ମଣିପୁରେ ସମାଦରେ କରିଲେ ଗମନ ॥
ତତ୍ପରେ ସମସ୍ତେ ମିଳି ହୋଇ ଆନନ୍ଦିତ ।
ଗମନ କରିଲେ ବାସୁଦେବଙ୍କ ସହିତ ॥
କୃଷ୍ଣାର୍ଜୁନ କୁନ୍ତୀ ଆଦି ଦେବକୀ ସହିତେ ।
ଶ୍ରୀକୃଷ୍ଣଙ୍କ ସ୍ୱଜନାତ ଥିଲେ ତହିଁ ଯେତେ ॥
ସୈନ୍ୟସହ ସର୍ବେ ବଭ୍ରୁବାହାନଙ୍କ ପୁରେ ।
ପ୍ରବେଶ ହୋଇଲେ ଯାଇ ଆନନ୍ଦ ମନରେ ॥
ନଗ୍ର ନରନାରୀ ଶୁଣି ସମସ୍ତେ ଆସିଲେ ।
ଶ୍ରୀକୃଷ୍ଣ ଦର୍ଶନ କରି ପାପ ନାଶକଲେ ॥
ଆନନ୍ଦେ ରମଣୀ କଲେ ମଙ୍ଗଳାଚରଣ ।
ନୃତ୍ୟ ଗୀତ କରି ସର୍ବେ ହେଲେ ହର୍ଷମନ ॥
ତାହାଙ୍କ ସମ୍ପଦ ଦେଖି ଆନନ୍ଦ ହୋଇଲେ ।
କୁବେର ଭୁବନ ଏ କି ବୋଲିଣ ଭାବିଲେ ॥
ଅନନ୍ତ ସୁତା ଉଲୂପୀ ହରଷେ ତକ୍ଷଣ ।
ପାର୍ଥଙ୍କ ସହିତେ ଦେଖି କମଳାରମଣ ॥
ହସ୍ତ ଯୋଡ଼ି ବିନୟରେ କହି ଆରମ୍ଭିଲେ ।
ଶୁଣ ନିବେଦନ ପ୍ରାଣନାଥ ହରି ତୁଲେ ॥
ତୁମ୍ଭର ପୁତ୍ରର ହାତେ ହେଲ ପରାଜିତ ।
ଯେ କାରଣୁ ହେଲା ତାହା ଜାଣନ୍ତି ଅଚ୍ୟୁତ ॥
ଗଙ୍ଗା ଦେଇଥିବା ଶାପ ଏବେଳେ ଫଳିଲା ।
ତେଣୁ ପୁତ୍ର ସହ ରଣେ ତୁମ୍ଭ ପ୍ରାଣ ଗଲା ॥

ଦୂରହେଲା ଲାଜ ହରି ଯୋଗୁ ଅଭଦନ ।
ପୁନର୍ବାର ନାଥ ତୁମ୍ଭେ ପାଇଲ ଜୀବନ ॥
ଏବେ ଚିତ୍ରାଙ୍ଗଦା ସହ ନିଅ ମଣିପୁର ।
ଲଜ୍ଜାଭରେ ପୁତ୍ର ପାଏ କଷ୍ଟ ଘୋରତର ॥
ଦେଖ ଦେଖ ନାଥ ଏହି ତୁମ୍ଭର ନନ୍ଦନ ।
ପିତୃବଧ ହେତୁ ହୋଇଅଛି ଭୀତମନ ॥
ଅବିରତେ ନୟନରୁ ଅଶ୍ରୁ ବରଷଇ ।
ସାନ୍ତ୍ୱନା ତାହାକୁ ଦିଅ ବାସବ ତନୟି ॥
ଉଲୂପୀ ବଚନ ଶୁଣି ପାର୍ଥ ବୀରବର ।
କୃଷ୍ଣ ସହ ଗଲେ ବଭ୍ରୁବାହନ ପାଶର ॥
ପିତାଙ୍କୁ ଦେଖିଣ ବୀର ତଳକୁ ବଦନ ।
କରିଣ ସେ ବୃନ୍ଦାବଟେନ କଲେକ କ୍ରନ୍ଦନ ॥
ତହୁଁ ପାର୍ଥ ବଭ୍ରୁବାହନକୁ କୋଳେ ନେଲେ
ନାନା ମିଷ୍ଟକଥା କହି ତାକୁ ବୁଝାଇଲେ ।
ଆରେ ବାପ ତୋର ଯୋଗୁ ରହିଲା ମୋ ମାନ
ଶୋକ ଛାଡ଼ କପାଁଇ ତୁ କରୁଛୁ କ୍ରନ୍ଦନ ॥
ଉଠି ବଭ୍ରୁବାହ ବୀର କରଯୋଡ଼ି ବୋଲେ ।
ଯେ କାର୍ଯ୍ୟ କରିଛି ପିତା ମୁଁ କ୍ରୋଧ ବଶରେ
ଆଦେଶ ଦିଅନ୍ତୁ ପିତା ତେଜିବି ଜୀବନ ।
କିବା ହିମାଳୟେ ମୁହିଁ କରିବି ଗମନ ॥
ଯୋଗକରି ତହିଁ ମୋର ଜୀବନ ତେଜିବି ।
ଅଙ୍ଗୁ ମୋର ପାପ ତାପ ସକଳ ନାଶିବି ॥
ପୁଣି ସେ ବଭ୍ରୁବାହନ ପିତାପାଦେ ପଡ଼ି ।
ବିନୟ ବଚନ କହି ବେନି କର ଯୋଡ଼ି ॥
ବୋଇଲା ହେ ପିତା ମୁଁ ଅପ୍ରାଧ ବହୁ କଲି ।
ଯୁଦ୍ଧେ ମାତି ପିତୃବଧ ପାତକ ଅର୍ଜିଲି ॥
ବଭ୍ରୁବାହନ ବଚନ ଶୁଣି ବୀରବର ।
ବୋଇଲେ କୁମର ଆଉ ନୁହ ତୁ ଅଧୀର ॥
ଚିତ୍ରାଙ୍ଗଦା ସୁତ ବୋଲେ ଶୁଣ ଆହେ ତାତ
ଅନୁଶାଲ୍ୱ ପାଇଁ ଦଗ୍ଧ ହୁଏ ମୋର ଚିତ୍ତ ॥
ସମସ୍ତଙ୍କୁ ଦେଖେ ଅନୁଶାଲ୍ୱ ଯେ ନାହାନ୍ତି ।
ସେଥିପାଇଁ ମନେ ଚିନ୍ତା ପବନ ସନ୍ତତ ॥
ବୋଲୁଛନ୍ତି ଭୀମସେନ ଶୁଣରେ ନନ୍ଦନ ।
ଅନୁଶାଲ୍ୱ ଶୁଭରେ ଅଛନ୍ତି ଏହି ସ୍ଥାନ ॥
ଛାଡ଼ ବାପ ମନସ୍ତାପ ମାନ ମୋ ବଚନ ।
ଯେ ହରି ନାମରେ ପାପ ହୁଅଇ ଦହନ ॥

ତାହାଙ୍କୁ ଦେଖିଣ ତୁହି ସମ୍ମୁଖେ ତୋହର ।
ପାପକଥା କପାଁ ମନେ ବିଗୃହୁ କୁମର ॥
ଅମ୍ଭେମାନେ କୁରୁକ୍ଷେତ୍ରେ ଭୁଜବଳେ ରଣ ।
କରି ଭୀଷ୍ମ ଦ୍ରୋଣ କର୍ଣ୍ଣ କରିଲୁ ନିଧନ ॥
ଦେଖିଣ ହରିଙ୍କ ମୁଖ ସର୍ବ ପାପ ଗଲା ।
ତୁ କପାଁ ମନରେ ଏତେ ଦୁଃଖ କରୁ ବଳା
ଅକାରଣେ ଶୋକ କରୁ ତାହାଙ୍କୁ ଦେଖିଣ ।
ପାପତାପ ସର୍ବ ତୋର ହୋଇଛୁ ଦହନ ॥
ସେ ସବୁ ଖଣ୍ଡିଣ ବାପ ମାନ ମୋ ବଚନ ।
ଯେଉଁ ଆଜ୍ଞା ଦେଇଛନ୍ତି ଯୁଧିଷ୍ଠିର ରାଣ ॥
ସାବଧାନ ହୋଇ ସେହି ଅଶ୍ୱ ରକ୍ଷାକର ।
ପିତା ସଙ୍ଗେ ମିଶି ଯାଅ ଦେଶ ଦେଶାନ୍ତର
ଏମନ୍ତ ପ୍ରକାରେ ଭୀମ ପ୍ରବୋଧି କହିଲେ ।
ହରିପାଦେ ପଡ ବୀର ଦୁଃଖ ଦୂର କଲେ ॥
ବାସୁକୀ ସହିତେ ନାଗ ସମସ୍ତ ଅଇଲେ ।
କୃଷ୍ଣ ଦରଶନ କରି ପାର୍ଥଙ୍କୁ ଦେଖିଲେ ॥
ଆନନ୍ଦେ ଶ୍ରୀହରି ମଣି ବାସୁକୀଙ୍କ ଦେଲେ ।
ମଣି ନେଇ ଫଣି ମଣି ବିଦାୟ ହୋଇଲେ ॥
ଆନନ୍ଦରେ ଚଳିଗଲେ ପାତାଳ ଭୁବନ ।
ନାଗଗଣମାନେ ତହିଁ ମିଳିଲେ ବହନ ॥
ପୂର୍ବେ ଗରୁଡ଼ ଭୟରୁ ନାଗ ରକ୍ଷା ପାଇଁ ।
ମହାଦେବ ଦେଇଥିଲେ ଅନନ୍ତଙ୍କ ଠାଇଁ ॥
ସେ ମଣି ନାମ ଅଟଇ ମୃତ ସଞ୍ଜୀବନୀ ।
ପାପ ନାଶ କରି ନରେ ଶୁଣ ଏ କାହାଣୀ ॥
ବଭ୍ରୁବାହ ନାନା ଖାଦ୍ୟଦ୍ରବ୍ୟ ଯୋଗାଇଲେ ।
ପାଣ୍ଡବ ସହ ଶ୍ରୀକୃଷ୍ଣ ଭୋଜନ କରିଲେ ॥
ଚିତ୍ରାଙ୍ଗଦା ଉଲୁପୀ ଯେ କୁନ୍ତୀଙ୍କୁ ନେଇଣ ।
ଅନ୍ତଃପୁରେ ହର୍ଷେ କରାଇଲେକ ଭୋଜନ ॥
ଯେ ଯାହାର ଯୋଗ୍ୟସ୍ଥାନେ ଶୟନ କରିଲେ
ଚିତ୍ରାଙ୍ଗଦା ଉଲୁପୀ ପାର୍ଥଙ୍କୁ ବରିନେଲେ ॥
ପୂର୍ବକଥା ପରସ୍ପର ହୋଇଲେ କଥନ ।
ଆନନ୍ଦରେ ସର୍ବେ ତହିଁ ରହି ପାଞ୍ଚଦିନ ॥
ପାଞ୍ଚଦିନ ମଣିପୁରେ ରହିଲେ ଶ୍ରୀହରି ।
ତହୁଁ ଭୀମଙ୍କୁ ଆଦେଶ ଦେଲେ ନରହରି ॥
ବଭ୍ରୁବାହ ଅର୍ଜୁନର ସଙ୍ଗତରେ ଯାଉ ।
ସୈନ୍ୟସହ ଯଜ୍ଞ ଅଶ୍ୱ ରକ୍ଷା କରିଥାଉ ॥
ଅନ୍ତଃପୁର ରମଣୀଙ୍କୁ ଘେନିଣ ସଙ୍ଗର ।
ଧନରତ୍ନ ସହ ଅଛୁ ଯେତେକ ଭଣ୍ଡାର ॥
ଏ ସବୁ ଘେନିଣ ଭୀମ ହସ୍ତିନାକୁ ଯାଅ ।
ଆନନ୍ଦରେ ଏମାନଙ୍କୁ ରକ୍ଷା କରୁ ଥାଅ ॥
ଏବେ ଅଶ୍ୱ ରକ୍ଷା ପାଇଁ ଅର୍ଜୁନ ସଙ୍ଗରେ ।
ଯିବି ମୁହିଁ ଭୀମସେନ ଦେଶ ଦେଶାନ୍ତରେ ॥
କୃଷ୍ଣଙ୍କ ଆଦେଶ ପାଇଣ ଯେ ଭୀମସେନ ।
ଧନରତ୍ନ ସହିତରେ ଘେନି ନାରୀଗଣ ॥
ହସ୍ତିନା ନଗରେ ଭୀମ ଗମନ କରିଲେ ।
ମଣିପୁରେ ମନ୍ତ୍ରୀବର ରଖାଇ ଆସିଲେ ॥
ହସ୍ତିନା ପୁରରେ ଆସି ଶୁଭେ ପହଞ୍ଚିଲେ ।
ଯୁଧିଷ୍ଠିଙ୍କ ଆଗେ ସର୍ବ ବୃତ୍ତାନ୍ତ କହିଲେ ॥
ଶୁଣିଣ ଯୁଧିଷ୍ଠି ଦେବ ହୋଇଲେ ସନ୍ତୋଷ ।
ତେଣେ ଅର୍ଜୁନ ସହିତେ ଗଲେ ପୀତବାସ ॥
ବଭ୍ରୁବାହନର ଯୁଦ୍ଧ ଗଙ୍ଗାଶାପ ଫଳ ।
ଭକ୍ତିଭରେ ଏହାକୁ ଶୁଣିବ ଯେଉଁ ନର ॥
ସର୍ବ ପାପ ତାପ ତାର ହୋଇବ ଦହନ ।
ସର୍ବଦା ପ୍ରସନ୍ନ ତାକୁ ହେବେ ନାରାୟଣ ॥
ଅପୁତ୍ରିକ ସ୍ତ୍ରୀଏ ଯଦି ଭକ୍ତିରେ ଶୁଣିବ ।
ବିଷ୍ଣୁଭକ୍ତ ପୁତ୍ର ତାର ନିଶ୍ଚେ ଜାତହେବ ॥
ଅନ୍ଧ ବଧିର କାଲ ଯା ଭକ୍ତିରେ ଶୁଣିଲେ ।
ସମସ୍ତ ଦୁର୍ଗତି ନାଶ ହେବ ଅବହେଳେ ॥
ଶ୍ରୀକୃଷ୍ଣ ମହିମା ସୁଧାରସ ଅଲୌକିକ ।
ଭାଷା ପ୍ରବନ୍ଧେ କହେ ମହାଦେବ ନାୟକ ॥
ଧୂଳିଶ୍ୱରେ ଘର ମୋର ମୈତ୍ରିବଂଶେ ଜାତ ।
ଯାହା ଯାହା ଦୋଷ ଥିବ ଖଣ୍ଡିବେ ଅଚ୍ୟୁତ ॥
ଇତି ଶ୍ରୀ ଜୈମିନିଭାରତେ ହରିଭକ୍ତିରସଲୀଳା
କଥା ପ୍ରବନ୍ଧେ ନାମ ପଞ୍ଚବିଂଶୋଽଧ୍ୟାୟ ।

—o—

## ଷଡ଼ବିଂଶ ଅଧ୍ୟାୟ

ଯତଜ୍ଜ୍ଞାତ୍ୱା ନ ପୁନର୍ଜନ୍ମ ମରଣାଽପି ବିଦ୍ୟତେ
ଯଦର୍କିଦ୍ୱ ପର ବୈଦ୍ୟଂ ବୈଦିତବ୍ୟନବିଦ୍ୟତେ

**ଶ୍ରୀ ରାମଚନ୍ଦ୍ରଙ୍କର ଅଶ୍ୱମେଧ ଯାଗ ବର୍ଣ୍ଣନ**

ଏଥୁଅନ୍ତେ ଜନ୍ମେଜୟ ମୁନି ପାଦେ ପଡ଼ି ।
ବୋଲନ୍ତି ଯେ ଭକ୍ତିଭରେ ବେନିକର ଯୋଡ଼ି ॥

ଆହେ ମହାମୁନି ମୋତେ କର ପ୍ରତିକାର ।
ଶ୍ରୀହରି ମହିମା କହି ଖଣ୍ଡ ପାପଭାର ॥
ପୂର୍ବେ କହିଲ ଶ୍ରୀରାମ ଅଶ୍ୱମେଧ କଲେ ।
ଲବ କୁଶ ହସ୍ତେ ପ୍ରଭୁ ପରାସ୍ତ ହୋଇଲେ ॥
କିପରି ହେ ତ୍ରେତୟୁଗରେ ଶ୍ରୀରଘୁନନ୍ଦନ ।
ଅଶ୍ୱମେଧ ଯାଗ ତହିଁ କରିଥିଲେ ପୁଣ ॥
ନିଜେ ପରଂବ୍ରହ୍ମ ନାଥ ନର ଦେହ ବହି ।
ଅଶ୍ୱମେଧ କଲେ ଦଶରଥଙ୍କ ତନୟି ॥
କିପରି ସେ ଅଶ୍ୱମେଧ ଶ୍ରୀରାମ କରିଲେ ।
ତାହା ମୋତେ ବୁଝାଇଣ କୁହ ତପଶୀଳେ
ତାହାଙ୍କର ପୁତ୍ର ଲବ କୁଶ ଦୁଇବୀର ।
ପିତା ସହିତ କିପରି କଲେ ସେ ସମର ॥
ଏହା ମୋତେ ସଂକ୍ଷେପିଣ କହ ମୁନିବର ।
ଶ୍ରୀରାମ ଚରିତ ଶୁଣି ପାପ ହେଉ ଦୂର ॥
ଜନ୍ମେଜୟ କଥା ଶୁଣି କହନ୍ତି ଜୈମିନି ।
ଶୁଣ ତ୍ରେତୟୁଗର ସେହି ଅପୂର୍ବ କାହାଣୀ ॥
ଏକଦିନେ ରାମଚନ୍ଦ୍ର ବିଚାରିଲେ ଚିତ୍ତ ।
ବ୍ରହ୍ମବଧ ପାପୁ କେହ୍ନେ ହୋଇବି ମୁକତ ॥
ବଶିଷ୍ଠ ଯାବାଲୀ ବାମଦେବ ସଙ୍ଗେ ଘେନି ।
ବିଚାର କରିଲେ ତହିଁ ରଘୁକୁଳ ମଣି ॥
ଲକ୍ଷ୍ମଣଙ୍କୁ ପାଶକୁ ଆଣିଲେ ଡକାଇଣ ।
ଲକ୍ଷ୍ମଣଙ୍କ ମୁଖ ଚାହିଁ ବୋଇଲେ ଏସନ ॥
ବଶିଷ୍ଠ ଯେ ବାମଦେବ ଯାବାଳି କଶ୍ୟପ ।
ଜାଣନ୍ତି କି ନାମଯଜ୍ଞ କର୍ମର ବିପାକ ॥
ଏହାଙ୍କୁ ଅଣାଅ ଆଉ ଅପର ବ୍ରାହ୍ମଣ ।
ଯେଉଁମାନେ ଅଶ୍ୱମେଧ ଯଜ୍ଞରେ ନିପୁଣ ॥
ତାହାଙ୍କ ସଙ୍ଗରେ ମୁହିଁ ପରାମର୍ଶ କରି ।
ବେଦବିଧି ବିଧାନରେ ପଥ ଅନୁସରି ॥
ଲକ୍ଷଣବନ୍ତ ଅଶ୍ୱେକ କରିବଇଁ ତ୍ୟାଗ ।
ଏହା ଶୁଣି ସୁମିତ୍ରାଙ୍କ ସୁତ ଯାଇ ବେଗ ॥
ତତ୍କ୍ଷଣେ ସେମାନଙ୍କୁ ଡକାଇ ଆଣିଲେ ।
ରାମଚନ୍ଦ୍ର ତାହାଙ୍କର ଚରଣ ବନ୍ଦିଲେ ॥
ଶ୍ରୀରାମଙ୍କୁ ଆଶୀର୍ବାଦ କଲେକ ସେମାନେ ।
କୃତାଞ୍ଜଳିପୁଟେ ରାମ ତାଙ୍କ ସନ୍ନିଧାନେ ॥
ବୋଇଲେ ମୁଁ ଅଶ୍ୱମେଧ ଯାଗ କରିବଇଁ ।
ଋଷିମାନେ ଏ କଥା ଶୁଣି ଆନନ୍ଦିତ ହୋଇ ॥
ଅଶ୍ୱମେଧର ପ୍ରଶଂସା କଲେକ ବହୁତ ।
ଶୁଣି ରଘୁନାଥ ହୋଇ ଅତିଶୟ ପ୍ରୀତ ॥
ସେହି ଋଷିମାନଙ୍କର କଥା ଅନୁସାରେ ।
ପୁନରପି ଲକ୍ଷ୍ମଣଙ୍କୁ ବୋଇଲେ ସଧୀରେ ॥
କିଷ୍କିନ୍ଧ୍ୟାକୁ ଦୂତ ଯାଇ କହିବ ଏମନ୍ତ ।
ଆସ ହେ ସୁଗ୍ରୀବ ଋକ୍ଷ କପିଙ୍କ ସହିତ ॥
ଯେ ସକଳ ଋକ୍ଷ କପି ଯୁଦ୍ଧେ ଯାଇଥିଲେ ।
ସେ ସମସ୍ତେ ଆସିବେ ଯେ ରାମ ଆଜ୍ଞାଦେଲେ
କରିବେ ଯେ ଅଶ୍ୱମେଧ ଯଜ୍ଞ ମହୋତ୍ସବ ।
ବିଳମ୍ବ ନ କର ତୁମ୍ଭେ ଶୀଘ୍ର ଏଥୁଁ ଯିବ ॥
ବିଭୀଷଣ ନିକଟକୁ ଦୂତ ଏକ ଯାଇ ।
ଘେନି ଆସୁ ରାକ୍ଷସଙ୍କ ସହ ତାଙ୍କୁ କହି ॥
ଆଉ ଯେଉଁ ରାଜାମାନେ ମୋର ଅନୁଗତ ।
ତାହାଙ୍କ ପାଖକୁ ତୁମ୍ଭେ ପେଶିଦିଅ ଦୂତ ॥
ଅନୁଚରବର୍ଗ ଘେନି ସେମାନେ ଆସନ୍ତୁ ।
ଦୂତମାନେ ଦେଶଦେଶାନ୍ତରକୁ ଯାଆନ୍ତୁ ॥
ମୋର ହିତ ଅଭିଳାଷୀ ଯେତେ ନରପତି ।
ନିମନ୍ତ୍ରଣ ଦିଅ ତାଙ୍କୁ ଆସନ୍ତୁ ଝଟିତ ॥
ଧାର୍ମିକ ରାଜାମାନଙ୍କୁ କର ନିମନ୍ତ୍ରଣ ।
ଦେଶ ଦେଶାନ୍ତରେ ଯେତେ ଋଷି ମୁନିଗଣ ॥
ଗୁହକ ନାମେ ଶବର ଅଟେ ମୋ ମଇତ୍ର ।
ତାହାର ପାଶକୁ ଶୀଘ୍ର ପେଶିଦିଅ ଦୂତ ॥
ଯେତେକ ବ୍ରାହ୍ମଣ ତାଙ୍କୁ ନିମନ୍ତ୍ରଣ ଦେଇ ।
କହିବ ସେ ଆସିବେକ ସପତ୍ନୀକ ହୋଇ ॥
ସୂତ୍ରଧର ନଟ ଆଉ ନର୍ତ୍ତକଙ୍କୁ ଡାକ ।
ସେମାନେ ଆସନ୍ତୁ ମୋର ଯେତେକ ପାଇକ
ଆସିବେ ସତ୍ୱର ଏଥେ ବିଳମ୍ବ ନ କରି ।
ଆହେ ବୀର ନଇମିଷା ଅରଣ୍ୟର ପରି ॥
ପୁଣ୍ୟ ସ୍ଥାନ ଆଉ ନାହିଁ ପୃଥିବୀ ଭିତରେ ।
ତା ମଧ୍ୟେ ଯଜ୍ଞ କରିବା ଗୋମତୀର ତୀରେ ॥
ସେ ନଦୀ ପାଖକୁ ବାଟ ଫିଟାଇ ଦିଅନ୍ତୁ ।
ଲୋକମାନେ ଶାନ୍ତିକର୍ମ ପ୍ରଚାର କରନ୍ତୁ ॥
ମୋ ପ୍ରଜାମାନଙ୍କୁ ଡାକି ଅଣାଅ ବହନ ।
ନୈମିଷା ଅରଣେ ସେହି କରନ୍ତୁ ଗମନ ॥
ଅଶ୍ୱମେଧ ଯଜ୍ଞ ବିଧି ଦେଖନ୍ତୁ ସେମାନେ ।
ବିବିଧପ୍ରକାରେ ଦ୍ରବ୍ୟ ରଖୁ ସେହିସ୍ଥାନେ ॥

ଯେପରେ ଖାଇଣ ଲୋକେ ସନ୍ତୁଷ୍ଟ ହୋଇବେ
ଯେମନ୍ତେ ପାନ ଭୋଜନେ କଷ୍ଟ ନ ପାଇବେ
ତହିଁର ବିଧି ବିଧାନ କରଇଅ ବେଗେ ।
ଏକଲକ୍ଷ ଗୋରୁଗାଡ଼ି ଯାଉ ତାଙ୍କ ସଙ୍ଗେ ॥
କନ୍ଧେ ବହିଣ ନିଅନ୍ତୁ ଅରୁଆ ଚାଉଳ ।
ଦଶ ସହସ୍ର ବଳଦ ନିଅନ୍ତୁ ଯେ ଡାଲ ॥
ଦଶ ସହସ୍ର ବଳଦ ଗୁଡ଼ ଘେନି ଯାନ୍ତୁ ।
ଲକ୍ଷେକ ବଳଦ ମୁଗ କନ୍ଧରେ ନିଅନ୍ତୁ ॥
ଗହମ ଘେନିଣ ଯାନ୍ତୁ ଅଯୁତେକ ବଳଦ ।
କୋଳଥ ବହି ନିଅନ୍ତୁ ଅଯୁତେକ ଗଧ ॥
ଦଶ ହଜାର ବଳଦ ନିଅନ୍ତୁ ଲବଣ ।
ଅଯୁତେକ ଗାଡ଼ି ଗନ୍ଧଦ୍ରବ୍ୟକୁ ଘେନିଣ ॥
ଗମନ କରନ୍ତୁ ଗନ୍ଧ ଦ୍ରବ୍ୟ ଘେନି ଆଗେ ।
ଶତକୋଟି ସୁନାରୁପା ଘେନି ସଙ୍ଗେ ସଙ୍ଗେ ॥
ଭରତ ଗମନ କରୁ ହୋଇ ସାବଧାନ ।
ବଣିକମାନେ ତା ସଙ୍ଗେ କରନ୍ତୁ ଗମନ ॥
ନଟ ନର୍ତ୍ତକ ଯେ ନବ ଯୁବତୀ କାମିନୀ ।
ଅବର ଅଛନ୍ତି ମୋର ଯେତେକ ସଜ୍ଜନୀ ॥
ଏମାନେ ଭରତ ସଙ୍ଗେ ଯିବେ ହେ ଲକ୍ଷ୍ମଣ ।
ବାଳକ ବୃଦ୍ଧ କିଙ୍କର କୋଷାଧ୍ୟକ୍ଷଗଣ ॥
ଅବର ମାତାମାନଙ୍କ ସହିତ ମୋହର ।
ଗମନ କରିବେ ଅନ୍ତଃପୁର ନାରୀବର ॥
କୁମାରଙ୍କ ଅନ୍ତ-ପୁରବାସୀ ନାରୀ ଯିବେ ।
ମୋହର ସୁବର୍ଣ୍ଣ ସୀତା ତାଙ୍କ ସଙ୍ଗେ ଥିବେ ॥
ମୁଁ ତାହାଙ୍କୁ ଘେନି ଦେବି ଯଜ୍ଞରେ ଦୀକ୍ଷିତ ।
ଏ ସମସ୍ତ ଘେନି ଆଗେ ଯାଉ ଯେ ଭରତ ॥
ଏପରି ଆଦେଶ ଯହୁଁ ରଘୁନାଥ ଦେଲେ ।
ସକଳ ଦ୍ରବ୍ୟ ସଂଗ୍ରହ ଲକ୍ଷ୍ମଣ କରିଲେ ॥
ଭରତ ଶତ୍ରୁଘ୍ନ ଦୁହେଁ ରାଜା ଅଜ୍ଞା ପାଇ ।
ଦୂତ ପେଷିଲେ ରାଜାଙ୍କୁ ନିମନ୍ତ୍ରିବା ପାଇଁ ॥
ଦୂତେ ରାଜ୍ୟେ ରାଜ୍ୟେ ବୁଲି ନିମନ୍ତ୍ରଣ ଦେଲେ
ପୁଣି ଆସି ଅଯୋଧ୍ୟାରେ ପ୍ରବେଶ ହୋଇଲେ
ଏଣେ ଭରତ ଚଳିଲେ ନୈମିଷାରଣ୍ୟ ।
ଗୃହ ତୋଳିବା ପାଇଁକି କଲେକ ଯତନ ॥
ନାନାଦେଶୁ ସୂତ୍ରଧାରମାନଙ୍କୁ ଅଣାଇ ।
ଅବର ଶିଳ୍ପ ନିପୁଣ ଲୋକଙ୍କୁ ଡକାଇ ॥

ରାଜାମାନଙ୍କ ସକାଶେ ନବର ତୋଳିଲେ ।
ମନ୍ତ୍ରୀଙ୍କ ପାଇଁ ଉତ୍ତମ ଗୃହ ନିର୍ମିଣିଲେ ॥
ପୁରବାସୀଙ୍କ ନିମନ୍ତେ କଲେ ବହୁଘର ।
ଋଷିମାନଙ୍କ ସକାଶେ ହୋଇଲା କୁଟୀର ॥
ଗଜ ବାଜି ରଥ ଗୋରୁମାନଙ୍କର ସ୍ଥାନ ।
ରଥ ରହିବାକୁ ଗୃହ ହୋଇଲା ନିର୍ମାଣ ॥
କେବଣ ଘର ଝିଙ୍କରେ ହୋଇଲା ଛାଉଣି ।
କେଉଁଘରକୁ ଛାଇଲେ ବେଣା ଛଣ ଆଣି ॥
କାହିଁ ହେଲା ଛାମୁଣ୍ଡିଆ କାହିଁ ଚଟିଘର ।
ଲୋକ ଅନୁରୂପେ କଲେ ମନ୍ଦିର ଅପାର ॥
ରାଜାଙ୍କ ନବର କଲେ ସୁଧାରେ ଧବଳ ।
ତାପରେ ବାନ୍ଧିଲେ ନାନାବର୍ଣ୍ଣର ଚିରାଳ ॥
ହୀରା ମୋତିରେ ଗୃହଙ୍କୁ ହୋଇବାରୁ ଛଣା ।
ଦେଖି ଜନ ନୟନଙ୍କୁ କରୁଥିଲା ବଣା ॥
ଯଥାସ୍ଥାନେ ଗୃହମାନ କରାଇ ଭରତ ।
ନାରୀଗଣ ଘେନିଗଲେ ଶତ୍ରୁଘ୍ନ ସହିତ ॥
ତାଙ୍କ ଆଗେ ଚଳିଲେକ ସକଳ ସଜ୍ଜନ ।
ସର୍ବଦ୍ରବ୍ୟ ରଖାଇଲେ ସେ ଘରେ ଲକ୍ଷ୍ମଣ ॥
ଋକ୍ଷ କପି ଅଇଲେକ ସୁଗ୍ରୀବ ସହିତ ।
ଅଙ୍ଗଦ ସୁଷେଣ ଦଧିମୁଖ ହନୁମନ୍ତ ॥
ଗବୟ ଗବାକ୍ଷ ଶତବଳୀ ଯେ ମହେନ୍ଦ୍ର ।
ତାରକ୍ଷ ଶରଭ ବଳିମୁଖ ସେ ଦ୍ୱିବିଦ ॥
ଗନ୍ଧମାଦନ ବସନ୍ତ ତାଳିମ୍ବ ଚନ୍ଦନ ।
କାଳିଞ୍ଜନ ନଳ ନୀଳ ପନସ କାଞ୍ଚନ ॥
ଜାମ୍ବବ ପ୍ରଭୃତି ଅଷ୍ଟସେନାଏ ଅଇଲେ ।
ଗୋମତୀ ତୀରେ ନୈମିଷାରଣ୍ୟେ ପହଞ୍ଚିଲେ ॥
ଏହିକାଳେ ବିଭୀଷଣ ହୋଇଲେ ପ୍ରବେଶ ।
ସଂଗତିରେ ଘେନିକରେ ବିଶେଷ ରାକ୍ଷସ ॥
ମିତ୍ର ରାଜାମାନେ ତହିଁ ପ୍ରବେଶ ହୋଇଲେ ।
ଚମ୍ପାବତୀ ନଗ୍ରୁ ଲୋମପାଦ ଯେ ଅଇଲେ ॥
ଜନକ ରାଜର୍ଷି ପରିବେଶ ଥାଟ ଘେନି ।
ତାଙ୍କୁ ପାଛୋଟି ଅଣିଲେ ଯାଇଁ ରଘୁମଣି ॥
ଯୁଦ୍ଧାଜିତ ଅଇଲେ ଯେ କୈକେୟୀଙ୍କ ଭାଇ ।
କୌଶଲ୍ୟାଙ୍କ ଭାଇ ହେଲେ ପରବେଶ ତହିଁ ।
ସୁମିତ୍ରା ରାଣୀଙ୍କ ଭାଇ ସେ ସ୍ଥାନେ ଅଇଲେ ।
ଗୁହକ ଓ ସୈନ୍ୟ ନେଇଣ ସେଠାରେ ମିଳିଲେ

ଏହୁପର ବାହୁରାଜା ହୋଇଲେ ପ୍ରବେଶ ।
ଘେନି ନିଜ ନିଜ ସୈନ୍ୟ ରଥ ହସ୍ତୀ ଅଶ୍ୱ ॥
ବାଦ୍ୟନାଦରେ କମ୍ପିଲା ସକଳ ବ୍ରହ୍ମାଣ୍ଡ ।
ଅଳିଟ ପାଟଛନ୍ଦରେ ଅଦୃଶ୍ୟ ମାର୍ତ୍ତଣ୍ଡ ॥
ନାନାବିଧ ଉପହାର ଦ୍ରବ୍ୟମାନ ଘେନି ।
ବନ୍ଦନ୍ତେ ଶ୍ରୀରାମଙ୍କର ପାଦପଦ୍ମ ବେନି ॥
କାରୁଣ୍ୟ ହୋଇ କହିଲେ ତାଙ୍କୁ ରଘୁରାଣ ।
କଥାଏ କହୁଛୁ ତୁମ୍ଭେ ଶୁଣ ନରରାଣ ॥
ଶ୍ରଦ୍ଧାରେ ମୁଁ ଅଶ୍ୱମେଧ ଯଜ୍ଞ ଯେ କରୁଛୁ ।
ତୁମ୍ଭେମାନେ ସାହା ହୁଅ ଏତିକି କହୁଛୁ ॥
ରାମଠାରୁ ଶୁଣି ନୃପ ଶିରେ ହସ୍ତ ଦେଲେ ।
ତୁମ୍ଭଙ୍କୁ କି ସାହା ହେବୁ ବୋଲିଣ ବୋଇଲେ
ତୁମ୍ଭେ ତ ଯଜ୍ଞ ପୁରୁଷ କରୁଅଛ ଯଜ୍ଞ ।
ସେ ଯଜ୍ଞ ଆମ୍ଭେ ଦେଖିବୁ ଏହା ଅମ୍ଭ ଭାଗ୍ୟ ॥
ଏହା ଶୁଣି ରଘୁନାଥ ହେଲେ ଆନନ୍ଦିତ ।
ରାଜାଙ୍କୁ ଦିବ୍ୟ ନଗର ଦେଲେକ ଭରତ ॥
ଖାଇବା ପିଇବା ଦ୍ରବ୍ୟ ଆଦର ବସନ ।
ଦେଇଣ ତାଙ୍କୁ କରିଲେ ବହୁତ ସମ୍ମାନ ॥
ବ୍ରହ୍ମଋଷି ରାଜଋଷି ଦେବଋଷିମାନେ ।
ଶିଷ୍ୟଗଣ ସଙ୍ଗେ ଘେନି ପ୍ରବେଶ ସେ ସ୍ଥାନେ
ତାହାଙ୍କୁ ନେଇଣ ଦିବ୍ୟ କୁଟିରେ ରଖିଲେ ।
ଦେଶ ଦେଶାନ୍ତରୁ ବହୁ ବିପ୍ର ଯେ ଆଇଲେ ।
ସମସ୍ତଙ୍କ ସେବାରେ ନିଯୁକ୍ତ ହେଲେ ବୀରଗଣ ॥
ଯେ ଯାହା ମାଗନ୍ତି ତାଙ୍କୁ ଦିଅନ୍ତି ଅନୁକ୍ଷଣ ॥
ଏପରେ ତୀନ ଦିବସ ଅଦ ସେ ରାଜ୍ୟରେ ।
ଯେତେ ଥିଲେ ଗଲେ ଧନ ଭୋଜନ ଆଶାରେ
ଘରକେ ଜଣେ ଲେଖାଏ ଲୋକଙ୍କୁ ଜଗାଇ ।
ଅଯୋଧ୍ୟାର ଲୋକ ଗଲେ ଦେଖିବାର ପାଇଁ
ଅଯୋଧ୍ୟାର ରାଜଧାନୀ ହେଲା ଶୂନ୍ୟମୟ ।
ଚୋର ଥିଲେ ବହୁଧନ କରନ୍ତେ ଅପୟ ॥
କିନ୍ତୁ ରାମରାଜ୍ୟେ କେହି ସେପରି ନ ଥିଲେ ।
ଏ ହେତୁ ନିଶ୍ଚିନ୍ତେ ସର୍ବେ ସେଠାରେ ରହିଲେ
ଦେଖଣାହାରି ଆଇଲେ ନାନାଦି ଦେଶରୁ ।
ଦୋକାନିଏ ଲଭିକଲେ ଦ୍ରବ୍ୟ ବିକିବାରୁ ॥
ଲୋକ ଗହଳେ ଚିବାକୁ ନ ମିଳିଲା ବାଟ ।
ସ୍ଥାପନ ସ୍ଥାପନ ହୋଇଲାକ ନାନାବିଧ ହାଟ

ଦ୍ୱିତୀୟ ଅଯୋଧ୍ୟା ପରି ଦିଶିଲା ସେ ସ୍ଥାନ ।
ଆନନ୍ଦରେ ପରିପୂର୍ଣ୍ଣ ସବୁଙ୍କର ମନ ॥
ଠାବେ ଠାବେ ଅନ୍ନଛତ୍ର ଦିଆ ହେଉଅଛି ।
ଯେତେବେଳେ ଯେ ଯାଉଛି ଭୋଜନ କରୁଛି
ଯଜ୍ଞ ସ୍ଥାନ ଦେଖିବାକୁ ରାମ ବାହାରିଲେ ।
ରମଣୀୟ ବାଟ ଦେଖି ଆନନ୍ଦିତ ହେଲେ ॥
ଆଦର ଦେଖିଲେ ରାଜାମାନଙ୍କର ଘର ।
ରତ୍ନଖଞ୍ଜା ହେତୁ ଦିଶୁଅଛଇ ସୁନ୍ଦର ॥
ମନ୍ତ୍ରୀଙ୍କ ଉଆସ ଆଉ ନାରୀଙ୍କ ସଦନ ।
ରଥଶାଳ ଅଶ୍ୱଶାଳ ଅସ୍ତ୍ରଗୃହମାନ ॥
ହୋଇଛି ଅତି ସୁନ୍ଦର ଅନେକ ଭଣ୍ଡାର ।
ଗୃହରେ ପୂରି ରହିଛି ନାନା ଅଳଙ୍କାର ॥
ସ୍ୱର୍ଣ୍ଣରେ ପୂର୍ଣ୍ଣ ହୋଇଛି କେବଣ ବଖରା ।
କେବଣ ଗୃହରେ ପୂରି ରହିଅଛି ହୀରା ॥
ନାନାଦି ମିଷ୍ଟାନ୍ନ ପୂର୍ଣ୍ଣ କେବଣ ଗୃହଟି ।
କେ ବଂଶକେ ତରଣ କେ ଷାଠିଏ ବାଷଠି ॥
କାହିଁ ରତ୍ନ କାହିଁ ମଣି କାହିଁବା ରଜତ ।
କାହିଁରେ ଅଛଇ ଅସ୍ତ୍ର ନାନା ପ୍ରକାରେତ ॥
ଧଳା କଳା ବସ୍ତ୍ର କାହିଁ କେତେ ଯେ ଅଛଇ
ଋଷିମାନଙ୍କର ଘର ଧବଳ ଦିଶଇ ॥
ନାନାବିଧ ଖାଦ୍ୟ ଦ୍ରବ୍ୟ ଅଛି ସ୍ଥାନେ ସ୍ଥାନେ
ଦେଖି ଶ୍ରୀରାମ ଆନନ୍ଦ ହେଲେ ମନେ ମନେ ॥
ଗାଢ଼ କୃଷ୍ଣବର୍ଣ୍ଣ ଏକ ସୁଲକ୍ଷଣି ଅଶ୍ୱ ।
ତାହାକୁ ସଜ୍ଜିତ କରି ପ୍ରଭୁ ରଘୁରାଣ ॥
ଆପଣା ପ୍ରଶଂସା ପତ୍ର ବାନ୍ଧି ତା ଗଳାରେ ।
ଛାଡ଼ିଦେଲେ ଗଲା ସେହି ଇଚ୍ଛା ଅନୁସାରେ ॥
ଶତ୍ରୁଘ୍ନଙ୍କୁ ବୋଇଲେ ପ୍ରଭୁ ରଘୁମଣି ।
ସଇନ ତୋ ସଙ୍ଗେ ଥିବେ ଦୁଇ ଅକ୍ଷୌହିଣୀ
ଯତନେ ରକ୍ଷା କରିବୁ ଅଶ୍ୱକୁରେ ବାବୁ ।
ଯେ ବାନ୍ଧିବ ତା ସଙ୍ଗରେ ସମର କରିବୁ ॥
ତାଠାରୁ ଛଡ଼ାଇ ଆଣି ପୁଣି ଦେବୁ ଛାଡ଼ି ।
ତାର ପଛେ ପଛେ ଯାଉଥିବୁ ରଥ ଚଢି ॥
ସବୁବେଳେ ଅସ୍ତ୍ର ଧରିଥିବୁ ରାଜନନ୍ଦନ ।
ଅଶ୍ୱ ପଛେ ପଛେ କରୁଥିବୁଟି ଗମନ ॥
ଆଜଠାରୁ ବର୍ଷଶେଷ ହେବ ଯେଉଁ ଦିନ ।
ଆଣି ଅଶ୍ୱଦେବୁ ବାବୁ ମୋର ସନ୍ନିଧାନ ॥

ଏହିପରି କହି ଅଶ୍ୱ ଛାଡ଼ିଦେଲେ ରାମ ।
ଦେଖିଲେକ ଯଜ୍ଞଶାଳ ହୋଇଛି ଉତ୍ତମ ॥
ଗଢ଼ିଛନ୍ତି ଶିଳ୍ପକାରେ ଭରତ ଆଦେଶେ ।
ଅପୂର୍ବ ସୁନ୍ଦର ଯଜ୍ଞ ବେଦୀ ଗୋଟି ଦଶେ ॥
ଯଜ୍ଞରେ ଦୀକ୍ଷିତ ହେଲେ ପ୍ରଭୁ ରଘୁନାଥ ।
ଯେ ଯାହା ମାଗଇ ତାହା ଦିଅନ୍ତି ସମସ୍ତ ॥
ସେ ମହାଯଜ୍ଞରେ ଦିଅ ଦିଅ ଶବ୍ଦ ବିନା ।
ଆଉ ଅନ୍ୟ କିଛି ଶବ୍ଦ ନ ଗଲାକ ଶୁଣା ॥
ମାଗିବା ଲୋକ ଧନରେ ତୋଷ ଯେ ପର୍ଯ୍ୟନ୍ତ
ନ ହୋଇ ଥାଆନ୍ତି ତାଙ୍କୁ ଦ୍ୟନ୍ତି ରଘୁନାଥ ॥
ମିଷ୍ଟାନ୍ନ ସାମଗ୍ରୀ କ୍ଷୀର ଖଣ୍ଡ ଆଦି ଯେତେ ।
ତାହାଙ୍କୁ ବାନରେ ଦେଉଥାନ୍ତି ଅବିରତେ ॥
କ୍ଳେଶଯୁକ୍ତ ମଳିନତା ଦୀନହୀନ କେହି ।
ନ ରହିଲେ ଧନ ବସ୍ତ୍ର ଖାଦ୍ୟଦ୍ରବ୍ୟ ପାଇ ॥
ସେ ଯଜ୍ଞରେ ଥିଲେ ଯେତେ ବୃଦ୍ଧ ତପୋଧନ
ସେମାନେ ଏ ସବୁକଥା କରି ଦରଶନ ॥
ବିସ୍ମୟ କରନ୍ତି ଅମ୍ଭେମାନେ ଆଜ ଯାଏ ।
ଦେଖିଲୁ ପର ଅମ୍ଭର ସ୍ମରଣ ନ ହୁଏ ॥
ଏ ଯଜ୍ଞରେ ଏହିପରି ଦେଉଛନ୍ତି ଦାନ ।
ଯେ କାଞ୍ଚନ ମାଗେ ତାଙ୍କୁ ଦିଅନ୍ତି କାଞ୍ଚନ ॥
ରତ୍ନ ମାଗିବା ଲୋକଙ୍କୁ ରତ୍ନ ଦେଉଛନ୍ତି ।
ମିଷ୍ଟାନ୍ନରେ ଯାହାଙ୍କର ହେଉଅଛି ମତି ॥
ସେ ମିଷ୍ଟାନ୍ନ ଖାଉଛନ୍ତି ଇଚ୍ଛା ଅନୁସାରେ ।
କେହି ଜଣେ ଅସନ୍ତୁଷ୍ଟ ନ ହୁଏ କାହିଁରେ ॥
କେତେବସ୍ତ୍ର କେତେ ସ୍ୱର୍ଣ୍ଣ କେତେଗୋରୁମାନ
ଦିଆ ହେଉଅଛି ତାହା ନ ହୁଏ କଳନ ॥
ଇନ୍ଦ୍ର ଯମ ବରୁଣର ଯଜ୍ଞରେ ଏମନ୍ତ ।
ଦାନ ଅମ୍ଭେ ଦେଖିନାହୁଁ ଆଜ ପରିଯନ୍ତ ॥
ଏହିପରି ସେ ଯଜ୍ଞରେ ରାକ୍ଷସ ବାନରେ ।
ଧନ ଅନ୍ନ ବସ୍ତ୍ର ଦାନ କଲେ ନିରନ୍ତରେ ॥
ବିଭୀଷଣ ପରିଯନ୍ତେ ଦେଲେକ ସେ ଯେତେ
ସଞ୍ଚିତ ଧନରୁ କ୍ଷୟ ନୋହିଲା କିଞ୍ଚିତେ ॥
ଏପରି ଅଦ୍ଭୁତ ମହାଯଜ୍ଞ କେହି ଜନ ।
କରି ନ ଥିଲେ କହଇ ମହାଦେବ ଦୀନ ॥

—✱—

## ଶତ୍ରୁଘ୍ନର ଅଶ୍ୱ ରକ୍ଷଣେ ଯାତ୍ରା ଓ ଲବକୁଶଙ୍କ ସହିତ ଯୁଦ୍ଧ ଓ ମୋହପ୍ରାପ୍ତି ।

ଏଥ ଅନନ୍ତରେ ଶୁଣ ଅପୂର୍ବ ଚରିତ ।
ଶ୍ରୀରାମଙ୍କ ଆଜ୍ଞା ପାଇ ଲକ୍ଷ୍ମଣଙ୍କ ଭ୍ରାତ ॥
ଦୁଇ ଅକ୍ଷୌହିଣୀ ସୈନ୍ୟ ଘେନି ସଙ୍ଗତରେ
ଅସ୍ତ୍ର ଶସ୍ତ୍ର ଧରି ଗଲେ ଅଶ୍ୱ ରଖିବାରେ ।
ପୂର୍ବ ମୁଖେ ହୋଇ ଘୋଡ଼ା ଗଲା କିଛି ଦୂର ।
ପର୍ବତ କାନନ ନଦନଦୀ ହୋଇ ପାର ॥
ମିଳିଲା ଗୋଟିଏ ଗିରି ଉପରେ ସେ ଯାଇଁ ।
ସେ ପର୍ବତ ନାମ ବିରୂପାକ୍ଷ ଯେ ଅଟଇ ॥
ତହିଁର ନୃପତି ନାମ ଅଟଇ ପର୍ବତ ।
ବଳବନ୍ତ ସୈନ୍ୟ ତାର ଅଛନ୍ତି ବହୁତ ॥
ପଥରର ଗଡ଼ କରି ରହିଛନ୍ତି ସେହି ।
ସେ ଗଡ଼ ଭିତରେ ଅଶ୍ୱ ପଶିଲାକ ଯାଇ ॥
ତାହାଦେଖି ମହାବୀର ସୁମିତ୍ରା ନନ୍ଦନ ।
ସୈନ୍ୟଙ୍କୁ ବୋଇଲେ ଗଡ଼ ଭାଙ୍ଗରେ ବହନ
ଆଜ୍ଞାମାତେ ଗଡ଼ ଭାଙ୍ଗି ପଶିଲେ ସଇନୀ ।
ଲକ୍ଷଣବନ୍ତ ଘୋଡ଼ାକୁ ଦେଖି ନୃପମଣି ॥
ଯତନରେ ବାନ୍ଧି ରଖି ସୈନ୍ୟଙ୍କୁ କହିଲେ
ଶତ୍ରୁଘ୍ନଙ୍କ ସଙ୍ଗତରେ ଘୋର ରଣ କଲେ ॥
ଦୁହେଁ ମହାବୀର କଲେ ବିଷମ ସମର ।
ଅସ୍ତ୍ରତେଜେ ଆଚ୍ଛାଦିତ ହେଲେ ଦିନକର ॥
ପାଶ ଅସ୍ତ୍ର ମାରି ତାଙ୍କୁ ସୁମିତ୍ରା ନନ୍ଦନ ।
ଆପଣାର ରଥ ଚକେ କରିଲେ ବନ୍ଧନ ॥
ଘୋଡ଼ାକୁ ଫେଡ଼ାଇ ଆଣି ଛାଡ଼ିଦେଲେ ପୁଣି ।
ଇଚ୍ଛାରେ ସେ ଅଶ୍ୱବର ଗିରି ନଦୀ ଜିଣି ॥
ପୂର୍ବଦିଗେ ଯେତେ ରାଜା ଥିଲେ ପ୍ରାଣଭୟେ
ଧନ ଦେଇ ପଡ଼ିଲେକ ଶତ୍ରୁଘ୍ନର ପାୟେ ॥
ଆନନ୍ଦିତ ହୋଇ ବୀର ସୁମିତ୍ରା ତନୟ ।
ଅକ୍ଲେଶରେ କରି ପୂର୍ବ ଦିଗକୁ ସେ ଜୟ ॥
ପର୍ବତ ରାଜାର ହାତ ଗୋଡ଼ ବାନ୍ଧିକରି ।
ରାମଙ୍କ ପାଖେ ପଠାଇ ଦେଲେ ବେଗେ ଧରି
ଉତ୍ତର ଦିଗକୁ ଗଲେ ଅଶ୍ୱର ପଛରେ ।
ଏଣେ ଗୃହେ ସେ ରାଜାଙ୍କୁ ବୋଲେ ରାମଠାରେ

ରାମ ତା ବନ୍ଧନ ଦେଖି ଅତ୍ୟନ୍ତ ବିକଳ ।
ବୋଇଲେ ବନ୍ଧନ ଫେଡ଼ି ଦିଅରେ ଚଞ୍ଚଳ ॥
ଅଜ୍ଞାମାନେ କଲେ ତାଙ୍କ ବନ୍ଧନ ମୋଚନ ।
ସଭାରେ ବସାଇ ତାଙ୍କୁ କଲେ ସନମାନ ॥
ଉତ୍ତର ଦିଗକୁ ଘୋଡ଼ା ପବନହୁଁ ବେଗେ ।
ଗମନ କରି ଯାଆନ୍ତେ ଶତ୍ରୁଘ୍ନ ତା ସଙ୍ଗେ ॥
ସୈନ୍ୟ ଘେନି ଦଉଡ଼ନ୍ତି ନାହିଁ ନା ବିଶ୍ରାମ ।
ନିମିଷକେ ବହୁପଥ ଯାଏ ତୁରଙ୍ଗମ ॥
ତା ଗଳାରେ ଜୟପତ୍ର ଥିବା ଦେଖି କରି ।
ଭୟେ ଶତ୍ରୁଘ୍ନେ ପୂଜିଲେ ସର୍ବ ଦଣ୍ଡଧାରୀ ॥
ସୁରଥ ନାମରେ ଥିଲେ ଏକଇ ରାଜନ ।
ସେ ଅଶ୍ୱକୁ କଲା ବଳ ପୂର୍ବକ ବନ୍ଧନ ।
ଜୟ ପତ୍ର ପଢ଼ି ମନେ ମନେ ହୋଇ ରାଗ ।
ବୀରବାଦ୍ୟେ କର୍ମମାନ କଲା ସେହି ବେଗ ॥
ତା ଦେଖି ଶତ୍ରୁଘ୍ନ କୋପେ ମାରି ତୀକ୍ଷ୍ଣଶର ।
ମାରି ପକାଇଲେ ବହୁ ସଇନ ତାହାର ॥
ତାହା ଦେଖି ରାଜା ଧନୁ ଧଇଲେ ହସ୍ତରେ ।
ଘୋରଯୁଦ୍ଧ ଆରମ୍ଭିଲେ ଶତ୍ରୁଘ୍ନ ସଙ୍ଗରେ ॥
ଅବଶେଷେ ତୀକ୍ଷ୍ଣବାଣେ ସୁମିତ୍ରା କୁମର ।
ତା ଦେହ ବିଦୀର୍ଣ୍ଣ କଲେ ପଡ଼ିଲା ସେ ବୀର ॥
ମୂର୍ଚ୍ଛା ଯାଇ ଯହୁଁ ସେହୁ ପଡ଼ିଲା ଭୂମିରେ ।
ତାହାକୁ ବନ୍ଧନ କରି ଶତ୍ରୁଘ୍ନ ସତ୍ୱରେ ॥
ଶ୍ରୀରାମଙ୍କ ନିକଟକୁ ଦେଲେକ ପଠାଇ ।
ତାହାର ବନ୍ଧନ ରାମ ବେଗେ ଫେଇ ଦେଇ
ସମ୍ମାନ କରି ତାହାଙ୍କୁ ପାଶେ ବସାଇଲେ ।
ଉତ୍ତର ଦିଗକୁ ଜିଣି ଶତ୍ରୁଘନ ଗଲେ ॥
ଦକ୍ଷିଣ ପଶ୍ଚିମ ଦିଗ ରାଜାମାନେ ଆସି ।
ଶତ୍ରୁଘ୍ନଙ୍କୁ ଧନରତ୍ନ ଦେଇଣ ସନ୍ତୋଷି ॥
ଯଜ୍ଞ ଦେଖିବାକୁ ଗଲେ ଦଣ୍ଡ ସାଜକରି ।
ବରଷକ ପୂରିଯାନ୍ତେ ଲବଣ ଅରିସି ॥
ଅଶ୍ୱକୁ ଧରିଣ ଯଜ୍ଞଶାଳରେ ମିଳିଲେ ।
ଶ୍ରୀରାମ ତାହାଙ୍କୁ ଦେଖି ଆନନ୍ଦିତ ହେଲେ ॥
ଦୈବର ନିର୍ବନ୍ଧେ ଅଶ୍ୱ ଚରୁଥିଲା ବନେ ।
ମହାଋଷି ବାଲ୍ମୀକଙ୍କ ମଠ ସନ୍ନିଧାନେ ॥
ସର୍ବଜ୍ଞ ସେ ମୁନିବର ପୂର୍ବରୁ ତା ଜାଣି ।
ଯଜ୍ଞ ନ ହେବା ଆଗରୁ ଶିଷ୍ୟ ସଙ୍ଗେ ଘେନି
ନବ କୁଶେ ଡାକିକରି ବୋଇଲେ ଏମନ୍ତ ।
ତପୋବନ ଜଗିଥିବ ତୁମ୍ଭେ ଦୁଇସୁତ ॥
ଆମ୍ଭେ ଯାଉଁଅଛୁ ତପ କରିବା ନିମନ୍ତେ ।
ଏହା କହି ମୁନି ଶତ ଶିଷ୍ୟଙ୍କ ସଙ୍ଗତେ ॥
ଶିବକୂଟ ପର୍ବତେ ହୋଇଲେ ପ୍ରବେଶ ।
ମୁନିଙ୍କ ଆଜ୍ଞାକୁ ମାନି ସେହି ନବ କୁଶ ॥
ଖେଳ ଖେଳୁଥାନ୍ତି ଦୁହେଁ ଅରଣ୍ୟରେ ରହି ।
ପଶୁପକ୍ଷୀ ମାରନ୍ତି ସେ କଉତୁକ ହୋଇ ॥
ଦୁଇଭାଇ ଧନୁଧରି ଯୋଚି ଶରମାନ ।
ବୃକ୍ଷ ପର୍ବତକୁ ଲକ୍ଷ କରିଣ ବହନ ॥
ଛାଡ଼ି ଦିଅନ୍ତି ସେ ବାଣ ଗରଜନ କରି ।
ମନଠାରୁ ଅତି ବେଗେ ଯାଇ ଆସେ ଫେରି ॥
ବୃକ୍ଷ ଗିରି ଛିଡ଼ି ପଡ଼େ ତାହାଙ୍କର ବାଣେ ।
ଚରୁଅଛି ଯଜ୍ଞ ଅଶ୍ୱ ଦେଖିଲେ ସେ ବନେ ॥
କୁଶ ବୋଲେ ଅରେ ଭାଇ ଏ ଜୀବ ମାରିବା
ନବ ବୋଲେ ଧରି ତାର ଉପରେ ଚଢ଼ିବା ॥
ଏହିପରି କୁହାକୁହି ହୋଇ ଦୁଇଭାଇ ।
ଯଜ୍ଞ ଅଶ୍ୱକୁ ଧଇଲେ ବେଗେ ଧାଇଁ ଯାଇଁ ॥
ଦେଖିଲେ ପତ୍ରେକ ଅଛି ତାହାର ବେକରେ
ବୃକ୍ଷରେ ଅଶ୍ୱକୁ ବାନ୍ଧି ପତ୍ର ଧରି କରେ ॥
ପଢ଼ିଲେ ଲେଖା ହୋଇଛି ତହିଁରେ ଏମନ୍ତ ।
ଆମ୍ଭେ ଅଟୁ ପୃଥିବୀରେ ଏକା ବଳବନ୍ତ ॥
ତେଣୁ ଅଶ୍ୱମେଧ ଯଜ୍ଞ କରୁଅଛୁ ଆମ୍ଭେ ।
ଏ ଅଶ୍ୱ ଗୋଟିକି ଛାଡ଼ି ଦେଇଅଛୁ ଦମ୍ଭେ ॥
ଯେବେ କେହି ବୀର ଏହି ପୃଥିବୀରେ ଥିବ ।
ଆମ୍ଭଙ୍କୁ ଜିଣିଲେ ଅଶ୍ୱମେଧ ସେ କରିବ ॥
ତୁମ୍ଭ ମାତା ବୀର ପ୍ରସୂ ବୋଲନ୍ତି ସଂସାରେ ।
ଏ ଅଶ୍ୱକୁ ଯେ ଧରିବ ଯିବ ଯମପୁରେ ॥
ଏହା ପଢ଼ି ବେନିଭାଇ କଲେ ମହାକ୍ରୋଧ ।
କୁଶ ବୋଲେ ବୃକ୍ଷେ ନେଇ ଏ ଅଶ୍ୱକୁ ବାନ୍ଧ
ଶିଆଳୀ ଲତାରେ ନବ ବାନ୍ଧିଲା ଯତନେ ।
ଶର ସଳଖିଲେ ଦୁଇଭାଇ କୋପମନେ ॥
ଏଥୁ ଅନନ୍ତରେ ରାମ ଶତ୍ରୁଘ୍ନଙ୍କୁ ଡାକି ।
ବୋଇଲେ ଅଶ୍ୱକୁ ଆଣ ଏ ଯଜ୍ଞ ଭୂମିକି ॥
ଆଜ୍ଞାମାଏକେ ଶତ୍ରୁଘ୍ନ କହିଲେ ଦୂତଙ୍କୁ ।
ବେଗେ ଖୋଜି ଘେନିଆସ ସେ ଯଜ୍ଞ ଅଶ୍ୱକୁ ॥

ଏହା ଶୁଣି ଦୂତମାନେ ତହୁଁ ଚାଲିଗଲେ ।
ବାଲ୍ମୀକି ବନରେ ଯାଇ ଅଶ୍ୱକୁ ଭେଟିଲେ ॥
ବୃକ୍ଷେ ବନ୍ଧା ହୋଇଅଛି ଦେଖିଲେ ଅଶ୍ୱକୁ ।
ଦୁଇ ଶିଶୁ ଧନୁଧର ଜଗିଛନ୍ତି ତାକୁ ॥
ସିଂହଚୁଆ ପରି ତାଙ୍କ ବସିବାର ଠାଣି ।
ତାହା ଦେଖି ଦୂତମାନେ ଫେରିଯାଇ ପୁଣି ॥
କହିଲେ ଏ ସବୁ କଥା ଶତ୍ରୁଘ୍ନ ଆଗରେ ।
ଘୋଡ଼ାବନ୍ଧା ହୋଇଅଛି ବାଲ୍ମୀକି ବନରେ ।
ଧନୁଧର ଦୁଇଗୋଟି ବାଳୁତ ନନ୍ଦନ ।
ତାକୁ ଜଗି ବସିଛନ୍ତି ହେ ବୀର ଶତ୍ରୁଘ୍ନ ॥
ତାହାଙ୍କର ରୂପ ଦିଶେ କନ୍ଦର୍ପ ପରାୟେ ।
ଚୁଆସିଂହ ପ୍ରାୟେ ଠାଣି ଅତି ଶୋଭାମୟେ ॥
ତେଜରେ ନିନ୍ଦା କରଇ ମଧ୍ୟାହ୍ନ ଆଦିତ୍ୟ ।
ଜଣାଯାଏ ହେବେ ସେହି ଋଷିଙ୍କର ସୁତ ॥
ଏହା ଶୁଣି ଶତ୍ରୁଘ୍ନଙ୍କ ମନେ ହେଲା କୋପ ।
ତକ୍ଷଣେ ହସ୍ତେ ଧଇଲେ କ୍ରୋଧେ ବୀର ଭୂପ
ଦୁଇ ଅକ୍ଷୌହିଣୀ ସୈନ୍ୟ ସଙ୍ଗେ ନେଇଗଲେ
ନିମିଷ ମାତ୍ରକେ ଯାଇଁ ବନେ ପ୍ରବେଶିଲେ ॥
ଦେଖିଲେ ବୃକ୍ଷରେ ବନ୍ଧା ହୋଇଅଛି ଅଶ୍ୱ ।
ଶତ୍ରୁଘ୍ନ ବୋଇଲେ ମନେ ବହି ମହାରୋଷ ॥
କାହାର ପାଞ୍ଜିକି ଯମ ପୋଛିନେଲା ଆଜ ।
କେହୁ ହସ୍ତରେ ଧଇଲା ନାଗରାଜା ଲାଞ୍ଜ ॥
ଜାଣୁଜାଣୁ କାଳକୂଟ ବିଷ କେ ଭକ୍ଷିଲା ।
ଶ୍ରୀରାମଙ୍କ ସଙ୍ଗତରେ ବିବାଦୀ ହୋଇଲା ॥
ବୃକ୍ଷର ଉହାଡ଼େ ବସିଥିଲେ ଦୁଇଭାଇ ।
ଶତ୍ରୁଘ୍ନ ବଚନ ଶୁଣି ଉଠି ଉଭାହୋଇ ॥
ବୋଇଲେକ ହସିକରି ତୁହି କି ବାତୁଳ ।
କିବା କାଳ ଗ୍ରାସିବାରୁ ଶତ୍ର ତୋ ବିହ୍ୱଳ ॥
ଯୁଦ୍ଧ ନ କରି ନ ମାରି କହୁଛୁ ଏମନ୍ତ ।
କି ନାମ ତୋହର କହ କାହାର ତୁ ସୁତ ।
କେଉଁଦେଶେ ଘର ତୋର ଖୋଜୁ ତୁ କାହାକୁ
ଅମ୍ଭଙ୍କୁ ଜିଣିଲେ ତୁମ୍ଭେ ନେବ ଏ ଘୋଡ଼ାକୁ
ଶିଶୁଙ୍କର ଏ ବଚନ ଶୁଣିଣ ଶତ୍ରୁଘ୍ନ ।
ବୋଇଲେ ଅଯୋପୁର ଅମ୍ଭ ବାସସ୍ଥାନ ॥
ଦଶରଥ ଅମ୍ଭ ପିତା ଅମ୍ଭେ ଚାରିଭାଇ ।
ଜ୍ୟେଷ୍ଠ ଶ୍ରୀରାମ ଅଟନ୍ତି ଅଯୋଧ୍ୟାର ସାଇଁ ॥

ହୋଇଛନ୍ତି ଅଶ୍ୱମେଧ ଯଜ୍ଞରେ ଦୀକ୍ଷିତ ।
ଏହି ଅଶ୍ୱଗୋଟି ଜାଣ ମୋହର ରକ୍ଷିତ ॥
ତୁମ୍ଭେ ଅତି ଶିଶୁ ହୋଇ କରୁଛ ସାହସ ।
ଏହା ଦେଖିକରି ମୋତେ ମାଡ଼ୁଅଛି ହସ ॥
ଖେଳିବା ପରାୟେ ତୁମ୍ଭେ ମଣିଛ ଯୁଦ୍ଧକୁ ।
ତେଣୁ ବୃକ୍ଷେ ବାନ୍ଧିଅଛ ଏ ଯଜ୍ଞ ଅଶ୍ୱକୁ ॥
ବାଳକ ସଙ୍ଗରେ ଯୁଦ୍ଧ ମୋର ଅନୁଚିତ ।
ମୋହର ବାଣ ଖାଇଛି ଲବଣ ଦଇତ ॥
ଶାସ୍ତ୍ରେ ଅଛି ନ ଧରିବ ବାଳକଙ୍କ ଦୋଷ ।
ଏଣୁ ଦୟାକରି କହେ ଛାଡ଼ିଦିଅ ଅଶ୍ୱ ॥
କିଏ ତୁମ୍ଭେ ଦୁଇଭାଇ କାହାର କୁମର ।
ମୋ ଆଗରେ ସତ କହ କାହିଁ ତୁମ୍ଭ ଘର ॥
ଏହା ଶୁଣି କୁଶ ନବ ବୋଇଲେ ରେ ବୀର ।
ଯେ ଅଶ୍ୱ ବାନ୍ଧିବ ଶତ୍ରୁ ହେବ ସେ ତୋହର ॥
ଅମ୍ଭେ ତାହା ଜାଣି ବାନ୍ଧି ଅଛୁ ଏହି ଅଶ୍ୱ ।
ଅମ୍ଭର ନାମରୁ ତୁହି ପାଇବୁ ବା କିସ ॥
ବଳ ଥିଲେ ଯୁଦ୍ଧକରି ନିଅ ଅଶ୍ୱ ତୋର ।
ନ ପାରିଲେ ଏଥୁ ଫେରିଯାଅ ନିଜପୁର ॥
ଶୁଣି ଶତ୍ରୁଘ୍ନର କୋପ ବଢ଼ିଲା ଦ୍ୱିଗୁଣ ।
ବୋଇଲେକ ଆପଣାର ସୈନ୍ୟକୁ ଗୁହାଁଣ ॥
ବେଢ଼ିମାର ଏ ଶିଶୁକୁ ଛାଡ଼ ଉପରୋଧ ।
ଏହାଙ୍କ ଯୋଗରୁ ଆଜ ପଡ଼ିଲା ପ୍ରମାଦ ॥
ଏମନ୍ତେ କହନ୍ତେ ଦୁଇ ଅକ୍ଷୌହିଣୀ ସୈନ୍ୟ ।
ଯେ ଯାହାର ଅସ୍ତ୍ର ଧରି କଲେ ଘୋର ରଣ ॥
ଛାଗଳ ପଲକୁ ଯେହ୍ନେ ବାଘଛୁଆ ମନ୍ଥେ ।
ସେହିପରି ଲବ କୁଶ ଧନୁ ଧରି ହସ୍ତେ ॥
ଘଡ଼ିକ ମଧ୍ୟରେ ଅଶ୍ୱ ଗଜ ରଥ ରଥୀ ।
ରାଉର ମାହୁନ୍ତ ଆଦି ଯେତେକ ପଦାତି ॥
ମାରି ପଦାକରି ଦେଲେ ବାହିଗଲା ନଈ ।
ତା ଦେଖି ଶତ୍ରୁଘ୍ନ ମନେ ମହାଭୟ ପାଇ ॥
ସାରଥିଙ୍କି ବୋଇଲେ ମୋ ରଥ ବାହିନିଅ ।
ଏ ବାଳକ ଦୁଇ ଗୋଟି ଅଟନ୍ତି ଦୁର୍ଜ୍ଜୟ ॥
ଏ ଦୁହିଁଙ୍କି ଯେବେ ଜିଣିପାରେ ରଣେ ମୁହିଁ ।
ତେବେ ତ ଯଜ୍ଞ କରିବେ ପ୍ରଭୁ ରଘୁସାଇଁ ॥
ଏମନ୍ତ କହନ୍ତେ ରଥ ବାହିଲା ସାରଥି ।
ଶତ୍ରୁଘ୍ନ ବୋଲନ୍ତି ତୁମ୍ଭେ କାହାର ସନ୍ତତି ॥

ତୁମ୍ଭଙ୍କୁ ମାରିବା ପାଇଁ ନ ଚଳେ ମୋ ହସ୍ତ ।
ଏହା ଶୁଣି ଲବ ବୋଇଲେ ଯା କହିଲୁ ସତ ॥
ଯୁଦ୍ଧ କରିବାକୁ ଆସି ପଚାରୁଛୁ ଘର ।
ନିସତ ହୋଇଲେ ତୁହି ନ କର ସମର ॥
ଶତ୍ରୁଘ୍ନ ବୋଇଲେ ଯୁଦ୍ଧ କରିବି ମୁଁ ଯେବେ ।
ଜଗତ ଲୋକେ ମୋହର ଅଖ୍ୟାତ ଘୋଷିବେ ।
ଏଣୁ ମୁହିଁ ପରିଚୟ ମାଗୁଛି ତୁମ୍ଭର ।
ଏହା ଶୁଣି କୁଶ ଲବ ଧରି ଧନୁଶର ॥
ଗୁଣଘୋଷ ଟଙ୍କାରରେ କମ୍ପାଇଲେ ମହୀ ।
ଶତ୍ରୁଘ୍ନ ତା ଦେଖି ଶୂନ୍ୟ ମଣ୍ଡଳକୁ ଚାହିଁ ॥
ବୋଇଲେ ହେ ଦିଗପାଳ ନାହିଁ ମୋର ଦୋଷ
ଦେଖିଛ ତ ଲବଣକୁ କରିଛି ବିନାଶ ॥
ମୋହର ବାଣରେ ମେରୁଗିରି ଫୁଟି ପାରେ ।
ସାଗର ଜଳକୁ ଶୋଷିପାରେ କ୍ଷଣକରେ ॥
ଏହା ଶୁଣି କରକର ହୋଇ ହସେ କୁଶ ।
ଲବ ଉଠେ ଡାକି କହେ ନ ହୁଅ ବିରସ ॥
କ୍ଷତ୍ରିୟର ପୁତ୍ର ନୋହୁ ତୋହ ମାତା ତୋତେ
ନୀଚର ଔରସେ ଜାତ କରିଛି ଗୁପତେ ॥
ନୋହିଲେ ତୁ କାହିଁ ପାଇଁ ଯୁଦ୍ଧକୁ ଡରନ୍ତୁ ।
ଏପରି ପ୍ରଳାପ ବାଣୀ କପାଇଁ କହନ୍ତୁ ॥
ଏ କଟୁ ବଚନ ସହି ନ ପାରି ଶତ୍ରୁଘ୍ନ ।
ବାଣମାରି କଲା ଦଶଦଗକୁ ଅଚ୍ଛନ୍ନ ॥
ଏକବାଣେ କୁଶ ତାହା ପକାଇଲା କାଟି ।
ଶତ୍ରୁଘ୍ନ ନାରାଚ ଦଶଦଗ ଗଲା ଘୋଟି ॥
ତାହା କାଟିଣ ମାଇଲା କୁଶ ପ୍ରତି ଶରେ ।
ଶତ୍ରୁଘ୍ନ ମାରନ୍ତି ଯେତେ ବାଣ ରୋଷଭରେ ॥
ସବୁ କାଟି ଖଣ୍ଡ ଖଣ୍ଡ କରିଦଏ ପୁଣ ।
ତାହା ଦେଖି ଶତ୍ରୁଘ୍ନର ଉଡ଼ିଲା ପରାଣ ॥
କୁଶ ବୋଲେ ଏତେ ବାଣ ମାଇଲଣି ତୁହି
ମୋହର ଗୋଟିଏ ବାଣ ଯେବେ ପାରୁ ସହି
ତେବେ ତୋତେ କହିବି ମୁଁ କ୍ଷତ୍ରିୟ ନନ୍ଦନ ।
ଏହା ଶୁଣି ହସି କରି ବୋଲନ୍ତି ଶତ୍ରୁଘ୍ନ ॥
ତୋହର ଏ କଥା ଶୁଣି ମାଡୁଅଛି ହସ ।
ଧନ୍ୟ ଧନ୍ୟ ବାଳକରେ ତୋହର ସାହସ ॥
ଯେତେ ବାଣ ମାରିବାକୁ ଇଚ୍ଛା ଅଛି ତୋର ।
ମାରୁ କିନା ତୁହି ମୋତେ ନ କରଣ ଡର ॥

ଏହା ଶୁଣି କୁଶ ମହାଫାଶ ବାଣ ଧରି ।
ବାଲ୍ମୀକି ମୁନିଙ୍କି ମନ ମଧ୍ୟରେ ସୁମରି ॥
ଛାଡ଼ିଦ୍ୟନ୍ତେ ଚଳିଲା ସେ ଗର୍ଜନ କରଣ ।
ଶତ୍ରୁଘ୍ନ କରି ନ ପାରି ତାହା ନିବାରଣ ॥
କାତର ହୋଇ ରହନ୍ତେ ବାଣ ଆସି ବେଗେ
ବାନ୍ଧି ପକାଇଲା ପଡ଼ିଗଲେ ଭୂମି ଭାଗେ ॥
ଅଚେତନ ହେଲେ ଯହୁଁ ମଥୁରା ରାଜନ ।
ଆନନ୍ଦ ହୋଇଲେ ଦେଖି ସୀତାଙ୍କ ନନ୍ଦନ ॥
ଦୁଇ ଅକ୍ଷୋହିଣୀ ସୈନ୍ୟ ମଧ୍ୟୁ ସାତଜଣ ।
ପଳାଇଲେ ରାମ ପାଶେ ଘେନି ନିଜ ପ୍ରାଣ ॥
କାନ୍ଦ କାନ୍ଦ ନଇମିଶା ଅରଣ୍ୟେ ମିଳିଲେ ।
ରାମଙ୍କ ଛାମୁରେ କରଯୋଡ଼ି ଜଣାଇଲେ ॥
ହେ ମହିମା ରଘୁକୁଳ ମଣ୍ଡନ ଠାକୁର ।
ସାବଧାନ ହୋଇ ଶୁଣ ଶତ୍ରୁଘ୍ନ ଖବର ॥
ଯଜ୍ଞ ଅଶ୍ୱ ଚରୁଥିଲା ବାଲ୍ମୀକି ବନରେ ।
ଦୁଇଗୋଟି ଶିଶୁ ତାକୁ ବାନ୍ଧିଲେ ଯତ୍ନରେ ॥
ଦୂତ ମୁଖୁ ଶୁଣି ସୈନ୍ୟ ଘେନିଣ ଶତ୍ରୁଘ୍ନ ।
କଲେ ବେଗେ ବାଲମୀକି ବନକୁ ଗମନ ॥
ସାକ୍ଷାତରେ ଯମଦୂତ ସେ ଶିଶୁ ଅଟନ୍ତି ।
ତାହାଙ୍କର ବାଣ ଯେହ୍ନେ ଅଗ୍ନି ଝଟକନ୍ତି ॥
ଦୁଇ ଅକ୍ଷୌହିଣୀ ସୈନ୍ୟ ମାରି ଘଡିକରେ ।
ଶତ୍ରୁଘ୍ନକୁ ବାନ୍ଧିଲେ ସେ କାଳ ଫାଶ ଶରେ ॥
ଡରେ ଆମ୍ଭେ ସାତଜଣ ପଳାଇ ଆଇଲୁ ।
ଆପଣଙ୍କ ଆଗେ ଏହି ବାରତା କହିଲୁ ॥
ଏହା ଶୁଣି ରଘୁନାଥ ପଡ଼ିଲେକ ଢଳି ।
ଭରତ ଲକ୍ଷ୍ମଣ ତାକୁ ଧଇଲେକ ତୋଳି ॥
କପାଳରେ କରମାରି କାନ୍ଦନ୍ତି ଶ୍ରୀରାମ ।
ଆହା ଭାଇ ଶତ୍ରୁଘ୍ନରେ ମୋର ପ୍ରାଣସମ ॥
ଲବଣକୁ ବଧ କରି ରଖିଲୁ ଜଗତ ।
ଶୂରଦଗ ରାଜାଙ୍କୁ ତୁ କଲୁ କରଗତ ॥
ସାମାନ୍ୟ ଶିଶୁକୁ ଜିଣି ନ ପାରିଲୁ ତୁହି ।
ଏମନ୍ତେ ଶୋକ କରନ୍ତେ ପ୍ରଭୁ ରଘୁସାଇଁ ॥
ଭରତ ଲକ୍ଷ୍ମଣ ତାଙ୍କୁ ପ୍ରବୋଧ କରଣ ।
ବୋଲନ୍ତି କ୍ଷତ୍ରିୟ ଧର୍ମ ଯୁଦ୍ଧରେ ମରଣ ॥
ବିଷାଦ ସମୟେ ପ୍ରଭୁ ନ ହୁଅ କାତର ।
ଆପଣାର କଲା କର୍ମ ଏବେ ଭୋଗକର ॥

ପତିବ୍ରତା ଶିରୋମଣି ଜନକ ଦୁଲଣୀ ।
ସାକ୍ଷାତରେ ଅଟନ୍ତି ସେ ଲକ୍ଷ୍ମୀ ଠାକୁରାଣୀ ॥
ବିନା ଅପରାଧେ ତାଙ୍କୁ ଛାଡ଼ିଲ ବନର ।
ସେହି ଦିନୁ ଏ ଅଯୋଧ୍ୟା ଦେଶବାସୀ ନର ॥
ହତଶିରୀ ହୋଇଲେଣି ଲକ୍ଷ୍ମୀ ଛଡ଼ା ପ୍ରାୟ ।
ବଳବସ୍ତୁ ସବୁ ହୋଇ ଗଲଣି ତ କ୍ଷୟ ॥
ଆଜ୍ଞାଦିଅ ପ୍ରଭୁ ଅମ୍ଭେ ଦୁଇଜଣ ଯାଇ ।
ଧରି ଆଣିଦେବୁ ସେହି ଦୁଷ୍ଟ ଶିଶୁ ଦୁଇ ॥
ଶ୍ରୀରାମ ବୋଇଲେ ବାବୁ ବିଳମ୍ବ ନ କର ।
ସେ ଶିଶୁ ଦୁହିଙ୍କି ଧରି ଆଣ ଯା ସତ୍ୱର ॥
ଏହା କହି ରଘୁନାଥ ହୋଇଲେ ମଉନ ।
ଦୀନ ମହାଦେବ କରେ ରାମପାଦେ ଧ୍ୟାନ ॥

———*———

## ଭରତ ଲକ୍ଷ୍ମଣଙ୍କ ଯୁଦ୍ଧଯାତ୍ରା ଓ ପତନ

ଏଥୁଅନ୍ତେ ଜନ୍ମେଜୟ ଯୋଡ଼ି ବେନିକର
ବୋଇଲେ ହେ ମୁନି ମୋତେ କର ପ୍ରତିକାର
ଭରତ ଲକ୍ଷ୍ମଣ ଲବ କୁଶ ସଙ୍ଗେ ରଣ ।
କିପରି କରିଲେ ତାହା କୁହ ହେ ବହନ ॥
ରାଜାଙ୍କ ବଚନ ଶୁଣି ଜୈମିନି କହନ୍ତି ।
ମନକର୍ଣ୍ଣ ଦେଇ ଶୁଣ ଉତ୍ତର ସନ୍ତତି ॥
ଏଥୁ ଅନନ୍ତରେ ଶୁଣ ଅପୂର୍ବ ରହସ୍ୟ ।
ଲବର ମୁଖକୁ ଚାହିଁ କହଇ ଯେ କୁଶ ॥
ଆରେ ଭାଇ ଏହି ରଜା ଅଟେ ମହାବୀର ।
କହୁଥିଲ ସହୋଦର ଅଛନ୍ତି ଏହାର ॥
ବାରତା ପାଇ ସେମାନେ ଆସିବେ ନିଶ୍ଚୟ ।
କ୍ଷୁଧାରେ ତ ପ୍ରାଣ ମୋର ହେଲାଣି ଅଥୟ ॥
କି ବୁଦ୍ଧି କରିବା ଏବେ କହ ଅରେ ଭାଇ ।
ଲବ ବୋଲେ ଆସ ଏହିବନେ ଥାଉ ରହି ॥
ଚାଲ ମାତାଙ୍କ ପାଖକୁ ଅମ୍ଭେ ଯାଇ ବେଗେ
ଏ ସବୁ କଥା ନ କହି ତାହାଙ୍କର ଆଗେ ॥
ଖାଇବାକୁ ମାଗିବା ସେ ଦେବେ ଯାହା ଆଣି
ତାହା ଖାଇ ଏ ସ୍ଥାନକୁ ଆସିବା ଏକ୍ଷଣି ॥
ଏମନ୍ତ ବିଚାରି ଦୁଇଭାଇ ତହୁଁ ଗଲେ ।
ସୀତା ଠାକୁରାଣୀଙ୍କର ଚାଳିକି ଧଇଲେ ॥
ହେଲ୍ଲ କଲଣି ଗୋ ମାତା ଦିଅ ଖାଇବାକୁ
ମିଷ୍ଟ ଅନ୍ନ ଆଣି ଭୁଞ୍ଜାଇଲେ ସୀତା ତାଙ୍କୁ ॥
ଖାଇସାରି ତରତର ହେଲେ ଯିବା ପାଇଁ ।
ଜନନୀ ବୋଇଲେ କେଉଁ ଯାଉଛ ବେନି ଭାଇ ॥
ଲବ ବୋଇଲା ଗୋ ମାଏ ଗଲାବେଳେ ମୁନି
କହିଛନ୍ତି ବନ ଜଗିଥିବ ଭାଇ ବେନି ॥
ରାଜାଏ ବନରେ ପଶି ମାରୁଛନ୍ତି ମୃଗ ।
ତେଣୁ ଆମ୍ଭ ମନ ହେଉଅଛି ଉଦବେଗ ॥
ମୁନିଙ୍କ ଆଜ୍ଞା ଲଙ୍ଘିଲେ କରିବେ ସେ କୋପ ।
ଏହା କହି ବେନିଭାଇ ଧରିଲେକ ଚାପ ॥
ଅଗୁରୁ ଚନ୍ଦନ ଅଙ୍ଗେ ସୀତା ଲେପିଦେଲେ ।
ବେନିଙ୍କି କାଖେ ବସାଇ ବଦନ ଚୁମ୍ବିଲେ ॥
ବୋଇଲେ ତୁମ୍ଭେ ମୋହର ଦୁଃଖୀର ସମ୍ଭାଳି
କାହାର ସଙ୍ଗରେ ବାବୁ ନ କରିବ କଳି ॥
ବନରେ ତୁମ୍ଭଙ୍କୁ ବନ ଦେବତା ରଖିବେ ।
ଯେ ତୁମ୍ଭସଙ୍ଗେ ଲାଗିବେ ସେହୁ ନାଶ ଯିବେ ॥
ମାତାଙ୍କୁ ମେଲାଣି ମାଗି ଅଇଲେ ସେ ଧାଇଁ ।
ପ୍ରବେଶ ହୋଇଲେ ଯହିଁ ତୁରଙ୍ଗ ଅଛଇ ॥
ଏଣେ ରାମ ଆଜ୍ଞା ପାଇ ଭରତ ଲକ୍ଷ୍ମଣ ।
ସଙ୍ଗରେ ଘେନିଣ ଚାରି ଅକ୍ଷୌହିଣୀ ସୈନ୍ୟ
ପ୍ରବେଶ ହୋଇଲେ ଯୁଦ୍ଧ ଭୂମିରେ ସେ ଯାଇଁ
ଦେଖିଲେ ବହୁଛି ତହିଁ ରକତର ନଈ ॥
ଶୃଗାଳ କୁକୁର ଗୃଧ୍ରେ ପୂରିଛି ସେ ସ୍ଥାନ ।
ଧନୁଧରି ପଡ଼ିଅଛି ବୀର ଶତ୍ରୁଘନ ॥
ଦୁଇଭାଇ କୋଳେ ଧରି କାନ୍ଦିଲେ ବହୁତ ।
ତାହାଙ୍କୁ ପ୍ରବୋଧ କରି କହିଲେ ଅମାତ୍ୟ ॥
ଶୋକ କରିବାର କାଳ ନୁହେଁ ଏ ତୁମ୍ଭର ।
ସେ ଦୁଇ ଶିଶୁଙ୍କୁ ମାରି କରିଣ ସମର ॥
ଏହା ଶୁଣି ଶୋକ ତେଜି ଭରତ ଲକ୍ଷ୍ମଣ ।
ଯୁଝିବାକୁ ଗଲେ ହସ୍ତେ ଧରି ଧନୁବାଣ ॥
ଚାରି ଅକ୍ଷୋହିଣୀ ସୈନ୍ୟ ହେଲେ ଆଗଭର
ବୃକ୍ଷମୂଳେ ବସିଥିଲେ ଜାନକୀ କୁମର ॥
ସୈନ୍ୟଙ୍କୁ ଦେଖି ଉଠିଲେ ଧନୁଶର ଧରି ।
ଦିଶୁଛନ୍ତି ସେନାପତି କାର୍ତ୍ତିକଙ୍କ ପରି ॥
ସେ ଦୁଇ ଶିଶୁଙ୍କ ରୂପ ଦେଖିଣ ସେମାନେ ।
ମହାଭୟ ଜାତହେଲା ତାହାଙ୍କର ମନେ ॥

ଗରୁଡ ଦର୍ଶନେ ଯେହ୍ନେ ସର୍ପମାନେ ଡ଼ରେ ।
ପଳାଇ ପଶନ୍ତି ଯାଇ ବିବର ଭିତରେ ॥
ସର୍ପକୁ ଦେଖି ମଣ୍ଡୁକୀ ପଳାଏ ଯେସନେ ।
ମୂଷିକ ପଳାଏ ଯେହ୍ନେ ମାର୍ଜାର ଦର୍ଶନେ ॥
ସେହିପରି ପଛଦୁଆଁ ଦେଲେକ ସଇନ୍ୟ ।
ମନେ ବିଚାରନ୍ତି ହନୁମନ୍ତ ଏହୁ ବେଳ ॥
ବୁଦ୍ଧିମାନେ ବୋଲନ୍ତି ଏ ଶିଶୁ ଦୁଇଭାଇ ।
କିଏ ବଡ଼ କିଏ ସାନ ଜଣାଯାଉ ନାହିଁ ॥
ଏକମୁଖ ଏକରୂପ ବରନ ଶ୍ୟାମଳ ।
ଏହାଙ୍କ ପାଖରେ ଥିଲେ ରାମ ମହୀପାଳ ॥
ତିନିଗୋଟି ରାମ ମେଳ ହୁଅନ୍ତେ ଏଠାରେ ।
ସାକ୍ଷାତେ ଏ ଦିଶୁଛନ୍ତି ରାମ ପରକାରେ ॥
ଏକା ରାମ ଜିଣିପାରେ ଏ ତିନି ଭୁବନ ।
ଏ ଦୁଇ ରାମଙ୍କ ସଙ୍ଗେ କରିବ କେ ରଣ ॥
ଡ଼ରେ ଯହୁଁ ସୈନ୍ୟମାନେ ପଛଦୁଆଁ ଦେଲେ
ଲକ୍ଷ୍ମଣ ଭରତ ଦୁହେଁ ଆଗଭର ହେଲେ ॥
ନବକୁଶ ରୂପ ଦେଖି ହୋଇଲେ ବିସ୍ମୟ ।
ବୋଇଲେ ଆମ୍ଭଙ୍କୁ ଦିଅ ତୁମ୍ଭ ପରିଚୟ ॥
ଏହା ଶୁଣି ହସିକରି ବୋଇଲେ ସେ ଦୁଇ ।
ଅମ୍ଭ ଜାତିକୁଳ ତୁମ୍ଭେ ପଚାର କିମ୍ପାଇ ॥
ଅମ୍ଭେ ଦୁଇ ଭାଇ ଅଟୁ ବାଲ୍ମୀକୀଙ୍କ ଶିଷ୍ୟ ।
ଅମ୍ଭ ଜାତକୁଳ ତୁମ୍ଭେ ପାଇବ କା କିସ ॥
ଯୁଝିବାକୁ ଆସିଅଛ ତୁମ୍ଭେ ଅମ୍ଭ ସଙ୍ଗେ ।
ନ ପାରିବ ଯେବେ ଫେରଯାଅ ଏଥୁ ବେଗେ
ଭରତ ଲକ୍ଷ୍ମଣ ଶୁଣି ହୋଇଲେ ବିସ୍ମୟ ।
ଆଗବଢ଼ି କହିଲେ ଯେ ସୁମିତ୍ରା ତନୟ ॥
ବାଳକ ବୋଲିଣ ଅମ୍ଭେ କରୁ ଉପରୋଧ ।
ମୋର ବାଣ ସହିବାକୁ କାର ଅଛି ସାଧ ॥
ଇନ୍ଦ୍ରଜିତ ଅତିକାୟ ସହି ନ ପାରିଲେ ।
ପ୍ରାଣତ୍ୟାଗ କରି ଯମପୁରେ ଚାଲିଗଲେ ॥
ଶତ୍ରୁଘ୍ନକୁ ଯୁଦ୍ଧେ ଜିଣି କରୁ ଅହଙ୍କାର ।
ଏହିକ୍ଷଣି ପଠାଇ ଦେବି ମୁଁ ଯମପୁର ॥
ଏହାକହି କ୍ରୋଧଭରେ ଟଙ୍କାରିଲେ ଧନୁ ।
ନିଃଶଙ୍କରେ ରହିଛନ୍ତି ଜାନକୀର ସୂନୁ ॥
କୁଶକୁ ପଛ କରିଣ ନବ ଆଗେ ଗଲା ।
ଧନୁର ଟଙ୍କାରେ ତିନିପୁର କମ୍ପାଇଲା ॥
ଭୟେ ଥରହର ହୋଇ କମ୍ପିଲେ ସଇନା ।
ମହାଯୁଦ୍ଧ କଲେ ନବ ଲକ୍ଷ୍ମଣ ଏ ବେଳା ॥
ଭରତ ସୈନ୍ୟକୁ ଡାକ ଏମନ୍ତ କହଇ ।
ଶିଶୁଭାବି ହେଳା ଯୁଦ୍ଧ ନ କରିବ କେହି ॥
ଦୁଇ ଅକ୍ଷୌହିଣୀ ସେନା ମୋପାଶେ ରହନ୍ତୁ
ଲକ୍ଷ୍ମଣ ପାଶରେ ଦୁଇ ଅକ୍ଷୌହିଣୀ ଥାନ୍ତୁ ॥
ହସ୍ତୀର ପିଠିରେ ବସି ଅଛଇ ଭରତ ।
କୁଶର ସଙ୍ଗରେ ତାର ଯୁଦ୍ଧ ଅପ୍ରମିତ ॥
ଲକ୍ଷ୍ମଣ ରଥରେ ବସି କରନ୍ତି ସମର ।
ନବ ଧନୁ ଧରି ବିନ୍ଧେ ଚମତ୍କାର ଶର ॥
ଦଶଦିଗ ଅନ୍ଧକାର ହୋଇଲା ତା ବାଣେ ।
ରଣ ଛାଡ଼ି ପଳାଇଲେ ସୈନ୍ୟ ଏଣେତେଣେ
ଏକମାତ୍ର ଲକ୍ଷ୍ମଣଙ୍କ ରଥଅଛି ରହି ।
ସଭିଲେ ପଳାଇ ଗଲେ ନ ରହିଲେ କେହି
ମନେ ମନେ ବିଚାରନ୍ତି ସୁମିତ୍ରା କୁମର ।
ଦେଖୁନାହିଁ ମୁହିଁ ଏହି ଶିଶୁ ସମ ବୀର ॥
ରାବଣର ପୁତ୍ର ମହାବୀର ଇନ୍ଦ୍ରଜିତ ।
ତ୍ରିଭୁବନ ଯାର ବାଣେ ହୁଅଇ କମ୍ପିତ ॥
ତା ସଙ୍ଗରେ ଯୁଝି ତାକୁ କରିଅଛି ଜୟ ।
ଏ ଶିଶୁର ବାଣ ଦେଖି ଲାଗେ ମୋତେ ଭୟ
ଏତେ ଭାବି ସଉମିତ୍ରି ମାରି ଅଗ୍ନିବାଣ ।
ତେତେ ବଡ଼ ଅନ୍ଧକାର କଲେ ନିବାରଣ ॥
ଦିଗ ଦେଖାଗଲା ଯହୁଁ ଅଇଲେ ସଇନା ।
ଲକ୍ଷ୍ମଣ କମ୍ପାଇ ଦେଲେ ଶରରେ ମେଦିନୀ ॥
ନବ ବୋଲେ ଭାଙ୍ଗିଦେବି ତୋର ଅହଙ୍କାର ।
ଏହିକ୍ଷଣି ପଠାଇବି ତୋତେ ଯମପୁର ॥
ଏହା ଶୁଣି ସଉମିତ୍ରି ମହା କ୍ରୋଧଭରେ ।
ଲକ୍ଷ ଲକ୍ଷ ଦିବ୍ୟବାଣ ବସାଇ ଗୁଣରେ ॥
ବିନ୍ଧି ଦିଅନ୍ତେ ସେ ବାଣ କାଟିଦ୍ୟନ୍ତି ନବ ।
ପଡ଼ିଲେ ଭୂମିରେ ଖଣ୍ଡ ଖଣ୍ଡ ହୋଇ ସର୍ବ ॥
ବେଳକୁବେଳ ଲକ୍ଷ୍ମଣଙ୍କ କ୍ରୋଧ ବଢ଼ିଯାଏ ।
ଶ୍ରାବଣ ଭାଦ୍ର ମାସରେ ବରଷା ପରାଏ ॥
ଦେବଶର ବ୍ରହ୍ମଶର ଇନ୍ଦ୍ର ଅଗ୍ନି ଶର ।
ରୁଦ୍ରଶର ନାଗ ଫାଶ ଗନ୍ଧର୍ବ ଅସୁର ॥
ପବନ ବରୁଣ ଶର ଆଦି ଯେତେ ବାଣ ।
ସକଳ ବିନ୍ଧି ଅଶକ୍ତ ହୋଇଲେ ଲକ୍ଷ୍ମଣ ॥

ନବକୋଳେ ଯେତେ ଶରବନ୍ଧିଲୁତୁମୋତେ ।
ତା ସବୁ କାଟିଲି ମୁହିଁ ତୋହର ସାକ୍ଷାତେ ॥
ମୁହିଁ ତୋତେ ବନ୍ଧୁଅଛୁ ଗୋଟିଏ ନାରାଚ ।
ଏହାକୁ ଯେବେ ଛେଦନ କରିବୁ ତୁ ଆଜ ॥
ତେବେ ଧନୁ ନ ଧରିବି ନ କରିବି ରଣ ।
ଏହାକହି ଧଇଲା ସେ ପାଶୁପତ ବାଣ ॥
ବୋଲେ ଅରେ ବାଣ ତୁହି ରୁଦ୍ର ଅବତାର
ଏହି ବୀର ଗୋଟି ଅଟେ ମହା ବଳୀୟାର ॥
ଏହା ଶିର ନ କାଟିଣ କରିବୁ ମୋହିତ ।
ଏହାକହି ଛାଡ଼ଦ୍ୟନ୍ତେ ଗଲା ପାଶୁପତ ॥
ଲକ୍ଷ୍ମଣକୁ ମୋହକରି ତୂଣୀରେ ପଶିଲା ।
ଦେଖି ସିଂହନାଦ କରି ନବ ତହୁଁ ଗଲା ॥
କୁଶକୁ ସାହାଯ୍ୟ ଦେବ ଏମନ୍ତ ବିଗୁରି ।
କୁଶ ପାଶରେ ମିଳିଲା ଧନୁଶର ଧରି ॥
ଦେଖିଲା ଭରତ ସଙ୍ଗେ ଯୁଦ୍ଧ ଅପ୍ରମିତ ।
କୋଟି କୋଟି ବାଣମାରେ କୈକେୟୀର ସୁତ
ଲବ ରହି ନବ ଦେଖେ ଦୁହିଁଙ୍କ ସମର ।
କୁଶ ବୋଲେ ଅରେ ବୀର ସମ୍ଭାଳ ମୋ ଶର
ଏହା କହି ମହାକାଳ ବାଣକୁ ଧଇଲା ।
ସମ୍ଭାଳ ସମ୍ଭାଳ କହି ବେଗେ ଛାଡ଼ିଦେଲା ॥
ଚଳିଲା ସେ ବାଣ ଘୋର ଗରଜନ କରି ।
ପଶିଲା ଥାଟ ଭିତରେ ବଦନ ବିସ୍ତାରି ॥
କାହାର କଟିଲା ଶିର କାହାର ଚରଣ ।
କାହାର ହାତ କାଟିଲା ସେହି ମହାବାଣ ॥
ଲୋଟିଲେ ମହୀ ଉପରେ ସକଳ ସଇନ ।
ସାତ ଜଣ ପଳାଇଲେ ନିଜପ୍ରାଣ ଘେନି ॥
ତା ଦେଖି ଭରତ କୋଧେ ମାରି ଦିବ୍ୟଶର
ଦିବସକୁ କଲା ସେହୁ ସର୍ବରୀ ପରକାର ।
ଏହା ଦେଖି କୁଶ ସୂର୍ଯ୍ୟ ଅସ୍ତ୍ର ପେଶିଦେଇ ।
ଅନ୍ଧକାର ନିବାରିଲା ଦେଖାଇଲା ଭୂଇଁ ॥
ଗନ୍ଧର୍ବ ଅସ୍ତ୍ର ମାଇଲେ କୈକେୟୀ ନନ୍ଦନ ।
କୋଟି କୋଟି ଲକ୍ଷ ଲକ୍ଷ ଗନ୍ଧର୍ବ ଉତ୍ପନ୍ନ ॥
ହସ୍ତେ ଧନୁଶର ଧରି କଲେ ଘୋର ରଣ ।
ତା ଦେଖି କୁଶ ଧଇଲା ଏକ ଦିବ୍ୟ ବାଣ ॥
ତା ନାମ ଅକ୍ଷୟକୃତ ସେ ବାଣକୁ ଧରି ।
ମନ୍ତ୍ର ପଢ଼ି ଛାଡ଼ିଦେଲା ତହୁଁ ତବଗକରି ॥

ବୋଲଇ ଏହି ବୀରକୁ କରିବୁ ମୋହିତ ।
ଏହା କହି ବନ୍ଧନ୍ତେ ସେ ବାଣକୁ ତୁରିତ ॥
ମୋହିତ କଲା ଭୂମିରେ ପଡ଼ିଲେ ସେ ବୀର ।
ସିଂହନାଦ କଲେ ମିଳି ଦୁଇ ସହୋଦର ॥
ଯୁଦ୍ଧର ବେଶକୁ ରଖି ବୃକ୍ଷର କୋଟରେ ॥
ପ୍ରବେଶ ହୋଇଲେ ଦୁହେଁ ମାତାଙ୍କ ପାଶରେ
ପୁତ୍ରଙ୍କ ମୁଖକୁ ଗୁହିଁ ସୀତା ଠାକୁରାଣୀ ।
ଖାଇବାକୁ ଦେଲେ ମିଷ୍ଟ ଅନ୍ନ ଘରୁ ଆଣି ॥
ଭୋଜନ କରି ସନ୍ତୋଷ ହୋଇ ଦୁଇଭାଇ ।
ପଲଙ୍କେ ଶୋଇଲେ ଯୁଦ୍ଧ ପରିଶ୍ରମ ପାଇ ॥
ଅଠଜଣ ଲୁଚି ତହିଁ ଯୁଦ୍ଧ ଦେଖୁଥିଲେ ।
ଭରତ ପଡ଼ନ୍ତେ କାନ୍ଦି କାନ୍ଦି ପଳାଇଲେ ॥
ଶ୍ରୀରାମଙ୍କ ନିକଟରେ ହୋଇଲେ ପ୍ରବେଶ ।
ଉଚ୍ଚସ୍ୱରେ ବୋଇଲେ ଭୋ ରଘୁ କୁଳଈଶ ॥
ସେହି ଦୁଇଗୋଟି ଶିଶୁ ସାମାନ୍ୟ ନୁହନ୍ତି ।
କେବଣ ଦେବତା ଶିଶୁ ରୂପେ ଅସିଛନ୍ତି ॥
କିବା ହରିହର ମୂର୍ତ୍ତି ଅଗ୍ନି ଦିବାକର ।
ଏ ତିନି ଭୁବନେ ନାହିଁ ତାଙ୍କ ତୁଲ୍ୟ ବୀର ॥
ଆପଣ ଯୁଦ୍ଧ କରିଲେ ହାରିବେ ନିଶ୍ଚୟ ।
ତାହାଙ୍କର ବାଣ ସବୁ ଦିଶେ ଅଗ୍ନିମୟ ॥
ଲକ୍ଷ୍ମଣ ସହିତେ ଯେତେ ଆପଣଙ୍କ ଥାଟ ।
ପଡ଼ିଲେ ସମରେ ବଞ୍ଚିଥିଲୁ ଅମ୍ଭେ ଅଠ ॥
ଭରତ ପଡ଼ନ୍ତେ ଅମ୍ଭେ ପଳାଇ ଅଇଲୁ ।
ଭାଗ୍ୟେ ତୁମ୍ଭ ଆଗେ ଏହି ବାରତା କହିଲୁ ॥
କି କହିଲୁ ବୋଲି ରାମ ପଡ଼ିଲେକ ତଳ ।
ପାବେ ମନ୍ତ୍ରୀ ଧାଇଁ ଧାଇଁ ଧଇଲେକ ତୋଳ ॥
ଚେତନା ପାଇ ବହୁତ କଲେକ ରୋଦନ ।
କାହିଁ ଛାଡ଼ିଗଲ ଅରେ ଭାଇ ତିନିଜଣ ॥
ନୟନେ ଜଳ ତନ୍ତ୍ରେଲା ସିନ୍ଧିଲା ବସନ ।
ସୁଗ୍ରୀବ କହନ୍ତି ତାଙ୍କୁ ପ୍ରବୋଧ ବଚନ ॥
ଆପଣ ଜଗତପତି ହୋଇ ଶୋକ କର ।
ଶୋକ କରିବାର ବେଳ ନୁହେ ଏ ତୁମ୍ଭର ॥
ବେଗେ ସଜହୁଅ ଯିବା ଶତ୍ରୁଙ୍କୁ ମାରିବା ।
ଅଶ୍ୱ ଆଣିକରି ଯଜ୍ଞ ସମାପ୍ତ କରିବା ॥
ବୀରମାନଙ୍କର ମୃତ୍ୟୁ ଯୁଦ୍ଧରେ ନିଶ୍ଚୟ ।
ଏଥି ପାଇଁ ଚିନ୍ତା କିମ୍ପା କର ରଘୁରାୟ ॥

ଏହା କହି କପିଥାଟ ସାଜିଲା ସୁଗ୍ରୀବ ।
ସୁମନ୍ତ ମନ୍ତ୍ରୀଙ୍କ ଗୃହେଁ ବୋଇଲେ ରାଘବ ॥
ତୋହର ଯେତେକ ସୈନ୍ୟ ସବୁ ସାଜ ଅଣ
ରାକ୍ଷସ ବଳ ସାଜିଲା ବୀର ବିଭୀଷଣ ॥
ଯେତେ ରାଜା ଥିଲେ ସର୍ବେ ଘେନି ଅଙ୍ଗବଳ
ସଜ ହେଲେ ଯୁଝିବାକୁ କରି ମହାଗୋଳ ॥
ମହାଦେବ କହେ ଏହି ଅପୂର୍ବ ରହସ୍ୟ ।
ଯେ ଶୁଣଇ ସେ ନିସ୍ତାର ହୋଇବ ଅବଶ୍ୟ ॥

—o—

## ଶ୍ରୀରାମଙ୍କ ଯୁଦ୍ଧକୁ ଆଗମନ ଓ ମୋହପ୍ରାପ୍ତ

ଜୈମିନି ବୋଲନ୍ତି ତୁମ୍ଭେ ଶୁଣ ନୃପବର ।
ଏଥୁଅନ୍ତେ ଯାହାହେଲା ଶୁଣ ସେ ଖବର ॥
ଶ୍ରୀରାମ ଶୁଣିଣ ଅତି ବିକଳ ହୋଇଲେ ।
ବଶିଷ୍ଠଙ୍କୁ ପାଶେ ଡାକି ବିନୟେ କହିଲେ ॥
ଶ୍ରୀରାମ ବୋଇଲେ ତହୁଁ ବଶିଷ୍ଠଙ୍କୁ ଗୃହେଁ ।
ତୁମ୍ଭଙ୍କୁ ଲାଗିଲା ଯଜ୍ଞ ଯାଉଅଛୁ ମୁହିଁ ॥
ସମରେ ଜିଣିଲେ ଆସି କରିବି ଦର୍ଶନ ।
ମୁଁ ମଲେ ମୋର ମାତାଙ୍କୁ କରିବ ସାନ୍ତ୍ୱନ ॥
ଅଜଠାରୁ ଜାଣ ହେଲା ରଘୁକୁଳ କ୍ଷୟ ।
ଏହା କହି ତାଙ୍କ ପାଦେ ନମି ରଘୁରାୟ ॥
ମୁନିଜନମାନଙ୍କର ଚରଣ ବନ୍ଦିଲେ ।
ସମସ୍ତେ ତାହାଙ୍କୁ ଶୁଭ ଆଶୀର୍ବାଦ କଲେ ॥
ବଶିଷ୍ଠ ଯେ ମନମଧ୍ୟେ କରନ୍ତି ବିଚାର ।
ଆଜ ତ ଭେଟ ହୋଇବ ପିତାପୁତ୍ରଙ୍କର ॥
ପୁଷ୍ପକଯାନକୁ ରାମ କଲେକ ସ୍ମରଣ ।
ତହିଁ ଉପରେ ବସିଲେ ଧରି ଧନୁର୍ବାଣ ॥
ଅଗଣିତ ଥାଟ ଚଲେ ନ ମିଳଇ ବାଟ ।
ଧୂଳି ଉଡ଼ିଗଲା ବ୍ୟାପି ଗଗନ ସମସ୍ତ ॥
ଅଦୃଶ୍ୟ ହୋଇଲେ ତହିଁ ଦେବ ଦିବାକର ।
ଭୟେ ନଦୀମାନଙ୍କରେ ନ ରହିଲା ନୀର ॥
ପୋଖରୀ ମଧ୍ୟରୁ ପାଣି ସବୁ ଶୁଖିଗଲା ।
ଖାଲ ଉଚ ସ୍ଥାନମାନ ସମାନ ହୋଇଲା ॥
ସିନ୍ଧୁଘୋଷ ଜିଣି ଶୁଭେ ଗରଜନ ଧ୍ୱନି ।
ଶୋଇଥିଲେ ଶୁଣିଲେ ସେ ଲବକୁଶ ବେନି ॥

ମାତାଙ୍କୁ ମେଲାଣି ମାଗି ହୋଇଲେ ବାହାର ।
ଜାନକୀ ବୋଇଲେ ବନେ ରଖନ୍ତୁ ଶଙ୍କର ॥
ମୁହିଁ ଅନାଥିନୀ ମୋର ସାହା କେହି ନାହିଁ ।
ଭୋ ରୁଦ୍ର ଦେବତା ନେତ୍ର ମିଟିଲାଏ ଦୁଇ ॥
ଏହାଙ୍କ ବିପଦେ ତୁମ୍ଭେ ହୋଇବ ସହାୟ ।
ଏହା କହି ସ୍ଥିର ହେଲେ ଶତ୍ରୁ ଯେ ଅଥୟ ॥
ବାଦ୍ୟନାଦେ କମ୍ପୁଅଛି ଅରଣ୍ୟ ପ୍ରଦେଶ ।
ତାହା ଶୁଣି ସୀତା ମନେ ପାଇଲେକ ତ୍ରାସ ॥
ବୋଇଲେ ମୁଁ ଅମ୍ଭୁଣୀ ମୋ ନନ୍ଦନ ସେ ଦୁଇ
ତାହା ସଙ୍ଗେ ଯେବେ କେହି ବିବାଦ କରଇ ॥
ଲେଉଟି ଘରକୁ ଆଉ କଦାପି ନ ଯିବ ।
ଦେବତା ମାନବ ଅବା ଦାନବ ଗନ୍ଧର୍ବ ॥
ଯେବେ ମୁହିଁ ସତୀ ମୋର କଥା ନୋହୁ ଆନ ।
ଅବ୍ୟର୍ଥ ଅଟଇ ସୀତା ଦେବୀଙ୍କ ବଚନ ॥
ଲବ କୁଶ ବେନି ଭାଇ ତହୁଁ ଚାଲିଗଲେ ।
ଅଶ୍ୱର ପାଖରେ ଯାଇଁ ପ୍ରବେଶ ହୋଇଲେ ॥
ପୃଷ୍ଠରେ ତୂଣୀର ବାନ୍ଧି ଧରିଲେ ସେ ଧନୁ ।
ଦିଶନ୍ତି କାର୍ତ୍ତିକ ପ୍ରାୟ ଜାନକୀଙ୍କ ସୁନୁ ॥
ଦେଖିଲେ ଥାଟ ଅସନ୍ତ ବାଟ ନ ଦିଶଇ ।
ନଦ ନଦୀ ବନଗିରି ପୂରି ଯେ ଅଛଇ ॥
କୁଶ ବୋଲେ ଆରେ ଲବ ବହୁତ ସଇନ ।
ଏହାଙ୍କର ପଦଭରେ କମ୍ପୁଛି ମେଦିନୀ ॥
ଜଣାଯାଏ ଏହି ରାଜା ଅଟେ ମହାବୀର ।
କି ବୁଦ୍ଧି କରିବା ଏବେ କର ତୁ ବିଚାର ॥
ଲବ ବୋଲେ କାହିଁ ପାଇଁ କରୁଅଛୁ ଭୟ ।
ଏମାନଙ୍କୁ ମଣେ ମୁହିଁ ଶୁଷ୍କ ତୃଣ ପ୍ରାୟ ॥
ବାଲ୍ମୀକି ମୁନିଙ୍କ ଶିକ୍ଷା ପାଇଅଛୁ ଯେବେ ।
ପଳାଇଲେ ମୁନି ଲୋକନିନ୍ଦା ଯେ ପାଇବେ ॥
ବୀରକୁ ଜିଣିଲେ ସିନା ବୋଲାଇବା ବୀର ।
ଯାହା ମୁଁ କହୁଛି ଭାଇ ମୋର ବୋଲକର ॥
ସକଳ ସଇନ ମୋର ଭାଗରେ ରହିଲା ।
ଲବର ଏକଥା ଶୁଣି କୁଶ ଯେ ବୋଇଲା ॥
ମୋ ଭାଗେ କହିଲା ରାମ ରାଜା ଆରେ ଭାଇ ।
ଏମନ୍ତେ ବିଚାର କରି ରହିଲେ ଯେ ଦୁଇ ॥
ଶ୍ରୀରାମ ସଇନ ଘେନି ହୋଇଲେ ପ୍ରବେଶ ।
ଦେଖିଲେ ମଣ୍ଡାରେ ଚୂର୍ଣ୍ଣ ହୋଇଛି ସେ ଦେଶ

ଭରତ ଶତ୍ରୁଘ୍ନ ଆଉ ଲକ୍ଷ୍ମଣଙ୍କୁ ଧରି ।
ବହୁତ ରୋଦନ କଲେ ତାଙ୍କ ଗୁଣ ସ୍ମରି ॥
ସୁମନ୍ତ ପ୍ରବୋଧ କରି କହିଲା ବହୁତ ।
ଶ୍ରୀରାମ କହିଲେ କାହିଁ ଆଣ ମୋର ରଥ ॥
ଏହା କହି ଧନୁ ଧରି ଗଲେ ଖଣ୍ଡେଦୂର ।
ଦେଖିଲେ ବୃକ୍ଷ ମୂଳରେ ଜାନକୀ କୁମର ॥
ସେ ଦୁଇ ରୂପକୁ ଦେଖି ବିଚାରନ୍ତି ସର୍ବେ ।
ରାମଙ୍କର ପୁତ୍ର ଏହି ଦୁଇ ଶିଶୁ ହେବେ ॥
ପାଞ୍ଚମାସ ହୋଇଥିଲା ସୀତାଙ୍କୁ ଏ ବନେ ।
ଛାଡ଼ିଥିଲେ ରାମ ଲୋକମାନଙ୍କ ବଚନେ ॥
ତାହାଙ୍କ ଗର୍ଭରୁ ଜାତ ଏ ଦୁଇ ନନ୍ଦନ ।
ଦେଖ ଏ ଦିଶନ୍ତି ରାମଚନ୍ଦ୍ରଙ୍କ ସମାନ ॥
କହେ ସୁମନ୍ତ ଯାଇଣ ରାମଙ୍କୁ ଏ କଥା ।
ଏହାଙ୍କ ସଙ୍ଗରେ ଯୁଦ୍ଧ କରିବାର ବୃଥା ॥
ଯଦ୍ୟପି ଯୁଝିବେ କେହି ଜିଣି ନ ପାରିବେ ।
ଏହାଙ୍କ ତେଜରେ କେହି ପାଖକୁ ନ ଯିବେ
ସୁମନ୍ତ ଏ କଥା ଯାଇଁ କହିଲା ରାମଙ୍କୁ ।
ବିସ୍ମୟ ହୋଇ ଶ୍ରୀରାମ ଗଲେ ନିକଟକୁ ॥
ବୋଇଲେ ତୁମ୍ଭ ଦୁହିଙ୍କ ପରିଚୟ ଦିଅ ।
ମୁହିଁ ଅଟେ ଦଶରଥ ରାଜାଙ୍କର ପୁଅ ॥
ମୁହିଁ ଶ୍ୟାମବର୍ଣ୍ଣ ମୋର ନାମ ଅଟେ ରାମ ।
ମୋହର ସମାନ ତୁମ୍ଭ ବର୍ଣ୍ଣ ଅଟେ ଶ୍ୟାମ ॥
ମୋହର ସମାନ ଦେଖେ ତୁମ୍ଭର ଆକୃତି ।
ତେଣୁ ପଚାରୁଛୁ କହ କାହାର ସନ୍ତତି ॥
ଯେବେ ତୁମ୍ଭେ ହୋଇଥିବ ମୋହର କୁମର ।
କିପାଇଁ କରିବି ତୁମ୍ଭ ସଙ୍ଗେ ମୁଁ ସମର ॥
ଏହା ଶୁଣି ଲବ ବୋଲେ କୁଶକୁ ଅନାଇଁ ।
ଆମ୍ଭ ପିତାଙ୍କର ନାମ ଜାଣ କି ହେ ଭାଇ ॥
କୁଶ ବୋଲେ ପଚାରିବା ମାତାଙ୍କୁ ଏ କଥା ।
ନ ଜାଣେ ମୁଁ ଆଜଯାଏ କିଏ ଆମ୍ଭ ପିତା ॥
କଥାରେ ଏହାଙ୍କୁ ଆମ୍ଭେ ଦେବାକ ଭଣ୍ଡାଇ ।
ଏହିପରି କଥାବାର୍ତ୍ତା ଦୁଇଭାଇ ହୋଇ ॥
କୁଶ ବୋଲେ ଆରେ ମୂଢ଼ ଜ୍ଞାନ ନାହିଁ ତୋର
ପିତା ସଙ୍ଗେ ପୁତ୍ରର କି ହୁଅଇ ସମର ॥
ଯୁଦ୍ଧ କରିବାକୁ ଆସି ବାପ ନାଁ ପଚାରୁ ।
ଯେବେ ଆମ୍ଭ ସଙ୍ଗତରେ ଯୁଝିବାକୁ ଡରୁ ॥
ତେବେ ତୁ ଶରଣ ପଶ ନ ମାରିବୁ ତୋତେ
ତାଙ୍କ କଟୁ କଥା ଶୁଣି ରାମ କୋପଚିତ୍ତେ ॥
ସୈନ୍ୟଙ୍କୁ ଡାକି ବୋଇଲେ ଉପ୍ରୋଧ ନ କରି
ଏ ଦୁଷ୍ଟ ଶିଶୁ ଦୁହିଙ୍କି ବେଗେ ମାର ଘେରି ॥
ଏ ଦୁହିଁଙ୍କ ଗର୍ବ ଚୂନା କରିବି ମୁଁ ଆଜ ।
ମାହୁନ୍ତମାନେ ଚଳାଇ ଦିଅନ୍ତୁ ଯେ ଗଜ ॥
ରାଜା ଆଜ୍ଞା ପାଇ ଗଲେ ରାଉତ ମାହୁନ୍ତ ।
ଗଜ ଅଶ୍ୱ ଚଳାଇଲେ ଅୟୁତ ଅୟୁତ ॥
ତାହା ଦେଖି ଦୁଇଭାଇ ଧରି ଧନୁଶର ।
ନାରାଚେ କାଟିଲେ ଗଜ ଅଶ୍ୱଙ୍କର ଶିର ॥
ଅଦ୍ଭୁତ ନାମରେ ବାଣ ମାଇଲେକ ଲବ ।
ଅଶ୍ୱ କୋଟି କୋଟି ମଲେ ଗଜ ଖର୍ବ ଖର୍ବ ॥
ଅଶ୍ୱକଳା ନାମେ ବାଣ କୁଶ ବିନ୍ଧିଦେଲା ।
ରାଉତ ମାହୁନ୍ତଙ୍କର ଶିର ଛିଡ଼ିଗଲା ॥
ଲବ କୁଶ ଚାରି ପାଖେ ଘେରିଛନ୍ତି ସୈନ[illegible] ।
ମଧ୍ୟେ ରହି ଯୁଝୁଛନ୍ତି ଜାନକୀ ନନ୍ଦନ ॥
ତାହାଙ୍କର ତେଜ ସୂର୍ଯ୍ୟ ପରାୟେ ବିରାଜେ ।
ପଶି ନ ପାରନ୍ତି କେହି ସେ ଦୁହିଙ୍କ ତେଜେ
ଅପର୍ଯ୍ୟାପ୍ତ ସୈନ୍ୟ ଦେଖି ଲବ ବୋଲେ ଭାଇ
ହେଳାକଲେ ଆମ୍ଭଙ୍କୁ ଏ ଯିବେ ଧରିନେଇ ॥
କୁଶ ବୋଲେ ମନମଧ୍ୟେ ନ କର ତୁ ଭୟ ।
ବାଲ୍ମୀକି ମୁନିଙ୍କ ପାଦେ ଲଗାଅ ତୁ ଲୟ ॥
ଏହିକ୍ଷଣି ପଠାଇବା ଯମ ସଦନକୁ ।
ଏହା କହି ସୁମରିଣ ମାତା ଚରଣକୁ ॥
ବୋଇଲେ ତୁ ଯେବେ ସତୀ ଆମ୍ଭେ ତୋର ପୁଅ
ଏକା ବାଣକରେ ଏହି ସୈନ୍ୟ ଯାଉ କ୍ଷୟ ॥
ଏହା କହି ଅଗ୍ନିମୁଖ ବାଣକୁ ଟେକିଲେ ।
ବାଲ୍ମୀକି ମୁନି ସୁମରି ବେଗେ ବିନ୍ଧିଦେଲେ ॥
ଗଲା ସେ ବାଣ ଗର୍ଜନ କରି ଅତି ବେଗେ ।
ଲବ କାଳମୁଖ ବାଣ ବିନ୍ଧିଲାକ ରାଗେ ॥
ଦୁଇ ଅସ୍ତ୍ର ମିଳି କଲେ ସୈନ୍ୟଙ୍କୁ ବିନାଶ ।
ଅଣୀ ଅକ୍ଷୌହିଣୀ ମଲେ ହୋଇଛୁ ନିମିଷ ॥
ଭଲ୍ଲୁକ ବାନର ଧରି ହସ୍ତେ ତରୁ ଶିଳ ।
ବରଷିଲେ ଯେଉଁପରି ବର୍ଷେ ମେଘମାଳ ॥
ଲବ ବୋଲେ ଭାଇ ଦେଖ ପର୍ବତ ଆକାରେ
ଏ କେଉଁଣ ଜୀବ ଧରି ବୃକ୍ଷ ସ୍ୱହସ୍ତକେ ॥

ଯୁଦ୍ଧ କରୁଛନ୍ତି ଆସି ଏହାଙ୍କୁ ମାରିବା ।
ତଦୁତ୍ତାରେ ରଥଯାକ ଭାଙ୍ଗି ପକାଇବା ॥
ଏମନ୍ତ ବିଚାରି କରି ଦୁଇଭାଇ ବାଣ ।
ବାନ୍ଧିଲେ କଙ୍କଡ଼ା ମାସ ବରଷା ପ୍ରମାଣ ॥
କାହାର ଛିଡ଼ିଲା ହାତ କାର ଛିଡ଼େ ଶିର ।
ପାଦ ଛିଣ୍ଡି ଖଣ୍ଡ ଖଣ୍ଡ ହୁଅଇ କାହାର ॥
ଯେପରି କଦଳୀ ବୃକ୍ଷ ପଡ଼େ ବାତଘାତେ ।
ପଡ଼ିଲେ ବାନର ଋକ୍ଷ ରକ୍ଷ ଚଉଭିତେ ॥
ଏହା ଦେଖି କ୍ରୋଧଭରେ ସୁଗ୍ରୀବ କାତରେ
ଦ୍ୱାଦଶ ଯୋଜନ ଡେଡ଼ି ଯାଇଣ ସତ୍ୱରେ ॥
ମହତ ପର୍ବତ ଏକ ଉପାଡ଼ ଆଣିଲା ।
ନୀଳକପି ହସ୍ତେ ଗୋଟା ପର୍ବତ ଧରିଲା ॥
ଦୁହେଁ ମହାବୀର ଧାଇଁ ଆସନ୍ତେ ସତ୍ୱରେ ।
ନବକୁଶ ଖଣ୍ଡ ଖଣ୍ଡ କଲେ ତାହା ଶରେ ॥
ଏକ ଏକ ବାଣେ ନେଲେ ତାହାଙ୍କ ପରାଣ ।
ତାହା ଦେଖି ଧାଇଁ ଆସେ ପବନ ନନ୍ଦନ ॥
କୁଶ ତାକୁ ଏକବାଣେ ମୋହ କରିଦେଲା ।
ଜାମ୍ବବାନ ଦେଖି ମନେ ମନେ ବିଚାରିଲା ॥
ବଡ଼ ଅଚମ୍ବିତ ରଣ ଏ ଦୁଇ ଶିଶୁର ।
ଏହାଙ୍କ ସମାନ ନୁହେ ରାବଣ କୁମର ॥
ମନୁଷ୍ୟ ଏହି ନୁହନ୍ତି ମାୟାରୁପଧାରୀ ।
ଏମନ୍ତ ବିଚାରୁ କୁଶ ଏକ ଶର ମାରି ॥
ଯେତେ ଋକ୍ଷ କପି ଆଉ ନିଶାଚର ଥିଲେ ।
ମୋହିତ ହୋଇ ସକଳେ ଭୂମିରେ ଶୋଇଲେ
ହସ୍ତୀ ଘୋଡ଼ା ରଥୀ ଆଉ ପାଇକ ପଦାତି ।
ସକଳେ ମୂର୍ଚ୍ଛା ଯାଇଣ ପଡ଼ିଗଲେ କ୍ଷିତି ॥
ସାତଜଣ ମାତ୍ର ରହି ଅଛନ୍ତି ପ୍ରାଣରେ ।
ଏହା ଦେଖି ରାମ ହସ୍ତ ମାରି କପାଳରେ ॥
ରୋଦନ କରନ୍ତି ରଥେ ଧନୁଶର ଥୋଇ ।
ଲକ୍ଷ୍ମଣର ପୁତ୍ର ଚନ୍ଦ୍ରକେତୁ ବେଗେ ଯାଇ ॥
ବୋଇଲେ ହେ ତାତ କିପାଁ କରୁଛ ରୋଦନ
ଆମ୍ଭେ ଛଅଭାଇ ଅଛୁ ତବ ସନ୍ନିଧାନ ॥
କାହାକୁ ଅଛି ତୁମ୍ଭର ଭୟ ତ୍ରିଜଗତରେ ।
ତୁମ୍ଭ ଶତ୍ରୁକୁ ପଠାଇ ଦେବୁ ଯମଘରେ ॥
ଶ୍ରୀରାମ ବୋଇଲେ ବାପୁ ନ କହ ତୁ ଏହା ।
ଜୀବନ ଘେନିଣ ତୁହି ଅଯୋଧ୍ୟାକୁ ଯାଅ ॥

ଯଜ୍ଞ ସମାପତ କରି ମାତାଙ୍କୁ କହିବୁ ।
ଅଯୋଧ୍ୟା ନଗରେ ବାପୁ ନୃପତି ହୋଇବୁ ॥
ତୁମ୍ଭେ ମଲେ ସୂର୍ଯ୍ୟବଂଶ ଆଜ ହେବ ଲୋପ ।
ପୂର୍ବଜନ୍ମେ କରିଅଛି ମୁହିଁ ମହାପାପ ।
ତେଣୁ ତୁମ୍ଭ ବାପ ମାନେ ଛାଡ଼ିକରି ଗଲେ ।
ଏ ଶୋକ ସମୁଦ୍ରେ ମୋର ଭେଳା ବୁଡ଼ାଇଲେ
ମୁହିଁ ରଣେ ହ୍ରାସଦେଇ ତେଜିବି ଜୀବନ ।
ତୁମ୍ଭେ ଛଅ ଜଣ ଯାଅ ଅଯୋଧ୍ୟା ଭୁବନ ॥
ଆମ୍ଭମାନଙ୍କର ପ୍ରେତ କାର୍ଯ୍ୟକୁ କରିବ ।
ଏ ସକଳ ବଶିଷ୍ଠଙ୍କ ଆଗରେ କହିବ ॥
ମନୁଷ୍ୟ ନୁହଇ ଏହି ଶିଶୁ ଦୁଇ ଗୋଟି ।
ଯମରାଜା ଆସିଛନ୍ତି ମନୁଷ୍ୟ ରୁପେଟି ॥
ଯେଉଁ ହନୁର ପ୍ରସାଦେ ଜୟୀ ମୁହିଁ ରଣେ ।
ହନୁଆଦି ଯୁଥପତି ପଡିଲେଣି ରଣେ ॥
କି କହିବ ତୁମ୍ଭ ଆଗେ କପିଙ୍କର ବଳ ।
ଆଜ ଭୂମିରେ ଶୋଇଲେ ଦେଖେ ସେ ସକଳ
ଏହା ଶୁଣି ଚନ୍ଦ୍ରକେତୁ ଧରି ଧନୁଶର ।
ହେ ତାତ ସାକ୍ଷାତେ ଦେଖ ମୋହର ସମର
ଏହା କହି ଛଅଭାଇ ଅଗ୍ରସାର ହେଲେ ।
ଶତ୍ରୁଘ୍ନର ପୁତ୍ର ଦୁଇ ଏସନ ବୋଇଲେ ॥
ଆମ୍ଭେ ଦୁଇଭାଇ ଆଗେ କରିବା ସମର ।
ହାରିଲେ ପଛକେ ତୁମ୍ଭେ କରିବ ସମର ॥
ଭରତର ପୁତ୍ର ଦୁଇ ଶୁଣି ଏହି ଗୀର ।
ବୋଇଲେ ନ କହ ବାପୁ ତୁ ଏହି ପ୍ରକାର ॥
ବୋଇଲେକ ଆଗେ ଆମେ ସମର କରିବା ।
ଚନ୍ଦ୍ରକେତୁ ବୋଲେ ମିଶି ସମସ୍ତେ ଯୁଝିବା ॥
କେହି ଆଗଭର ହୋଇ ନ କର ସମର ।
ତାହାର କଥାରେ ସର୍ବେ କଲେ ଅଙ୍ଗୀକାର
ଛଅଭାଇ ଦିଶୁଛନ୍ତି କୁମାର ସଦୃଶ ।
ନବର ମୁଖକୁ ଚାହିଁ ବୋଇଲେ ଯେ କୁଶ ॥
ଏହି ଛଅ ଗୋଟି ବୀର ଆମ୍ଭ ସଙ୍ଗେ ରଣ ।
କରିବାକୁ ଆସୁଛନ୍ତି ଧରି ଧନୁର୍ବାଣ ॥
ଏହାଙ୍କ ଦେହର ତେଜ ଜନ୍ମୁଥିଲା ପରି ।
ଦେଖାଯାଉଅଛି ମୋତେ ବୁଝ ତୁ ବିଚାରି ॥
ନବ ବୋଲେ କାହିଁପାଇଁ କରୁଅଛ ଭୟ ।
ଏହିକ୍ଷଣି ପଠାଇ ଦେବି ମୁଁ ଯମାଳୟ ॥

ଏହା କହି ବାଣେ କଲା ଗଗନ ଆଚ୍ଛନ୍ନ ।
ଅନ୍ଧାର ଦିଶିଲା ଲୁଚିଗଲେକ ତପନ ॥
ମହାବଳବନ୍ତ ସେହି ଷଡ଼ଗୋଟି ବୀର ।
କାଟି ପକାଇଲେ ବାଣଗଣିକ ତାହାର ॥
ତାହାଦେଖି କୁଶନବ ଦୁହେଁ ଧନୁଧର ।
ନାରାଚ ବନ୍ଧିଲେ ବାଲ୍ମୀକିକୁ ସୁମରି ॥
ସେ ଷଡ଼ କୁମର ତାହା କଲେକ ଛେଦନ ।
ଏହିପରି ଘୋର ଯୁଦ୍ଧ ହେଲା କିଛିକ୍ଷଣ ॥
ଅଗ୍ନିମୁଖ ବାଣ କ୍ରୋଧେ ନବ ପେଷିଦେଲା ।
ଗର୍ଜ୍ଜନ ନାଦ କରିଣ ସେ ଧାଇଁ ଅଇଲା ॥
ଚନ୍ଦ୍ରକେତୁକୁ ଛାଡ଼ିଣ ଏ ପାଞ୍ଚଭାଇଙ୍କୁଁ ।
ମୋହକରି ଦେଇଗଲା ପୁଣି ତୁଣୀରକୁ ॥
କୁଶସଙ୍ଗେ ଯୁଦ୍ଧକଲେ ଚନ୍ଦ୍ରକେତୁ ବୀର ।
ନବ ଧନୁଶର ଧରି ହୋଇ ଆଗଭର ।
ବୋଇଲା ମୋ କଥାମାନ ଯୁଦ୍ଧ ଛାଡ଼ିପଳା ।
ନୋହିଲେ ଏକାବାଣକେ କାଟିବି ତୋ ଗଳା ।
ପାଞ୍ଚଜଣ ମଲେଣି ତୁ ଏକାକେ ରହିଣ ।
କି ଯୁଦ୍ଧ କରୁଛୁ ରଖ ତୋର ନିଜପ୍ରାଣ ॥
ଏହା ଶୁଣି ଚନ୍ଦ୍ରକେତୁ ବୋଲେ କ୍ରୋଧଭରେ
ତୋହର ଗାରିମା ଭାଙ୍ଗିଦେବି ଏକାଣରେ ॥
ଏ ବଚନ ଶୁଣି ନବ ବୋଲେ ହସିକରି ।
ରାମ କେଡ଼େଯୋଦ୍ଧା ତାଙ୍କୁ ଅଣହେ ହକାରି
ସେ ଆସିଣ ଏତେବେଳେ ରଖୁ ତୋର ପ୍ରାଣ
ଚନ୍ଦ୍ରକେତୁ ବୋଲେ କରୁ ତୁହି ଏଡ଼େ ଠାଣ
ମୋଠାରୁ ବଳିଲେ ରାମ ଯୁଝିବେକ ଆସି ।
ଏହିକ୍ଷଣି ତୋତେ ଯମପୁରେ ଦେବି ପେଷି ॥
ରାମ ସଙ୍ଗେ ଯୁଝିବାକୁ କରୁଛୁ ସାହସ ।
ସେ ନୁହନ୍ତି ତୋହପରି ସାମାନ୍ୟ ମନୁଷ୍ୟ ॥
ଯାହାଙ୍କ ହସ୍ତରେ ମଲା ତାଡ଼କା ଅସୁରୀ ।
ଯେହୁ ଭାଙ୍ଗି ପକାଇଲେ ଶିବଧନୁ ଧରି ॥
ଦଳିଲେ ଯେ ଏକାକାଣ୍ଡେ ବାଲି ବାନରକୁ
ବାନ୍ଧି ପକାଇଲେ ବୃକ୍ଷ ପର୍ବତେ ସିନ୍ଧୁକୁ ॥
ଯାହାର ଆଜ୍ଞାରେ କପି ଗଲେ ସିନ୍ଧୁତର ।
ଯେ ମାରିଲେ ରାବଣର ପ୍ରଜ ଦଶଶିରା ॥
ତାହାଙ୍କ ସଙ୍ଗେ ଯୁଝିବୁ ବୋଲି କରୁ ଠାଣ ।
ଚନ୍ଦ୍ର ଧରିବାକୁ ଇଚ୍ଛୁ ହୋଇ ତୁ ବାମନ ॥
ସୂଚିମୂନେ ଇଚ୍ଛା କରୁ ମେରୁ ତାଡ଼ିବାକୁ ।
ଶଶା ହୋଇ ତୁ ବିଚାରୁ ସିଂହ ଧରିବାକୁ ॥
ଚନ୍ଦ୍ରକେତୁର ଏକଥା ଶୁଣି ବୋଲେ କୁଶ ।
ତୋହର ଏକଥା ଶୁଣି ମାଡ଼େ ମୋତେ ହସ
ଯେ ଦେଶେବୃକ୍ଷ ନଥାଏ ସେଦେଶରେ ଜନେ
ଗରଗଛକୁ ପ୍ରଧାନ ମଣନ୍ତି ଯେସନେ ॥
ସେହିପରି ରାମକୁ ତୁ ବଡ଼ ମନେକରୁ ।
ତୋହର ଦେହରେ ବଳ ବପୁ ନ ଥିବାରୁ ॥
ଜଣା ଯାଉଅଛୁ ରାମ ଯେବେ ବଳବନ୍ତ ।
ତାର ଭାଇମାନେ ଯୁଦ୍ଧ କରି ମଲେଣିତ ॥
ଗୋଟିଏ ବୁଢ଼ୀ ରାକ୍ଷସୀ ମାରି ପକାଇଲା ।
ପୁଣି ପୁରୁଣା ଗୋଟାଏ ଧନୁକୁ ଭାଙ୍ଗିଲା ॥
କାଣ୍ଡ ବନ୍ଧ କଲା ବୁଢ଼ା ମାଙ୍କଡ଼କୁ ହତ ।
ମର୍କଟେ ବୋହି ଆଣିଲେ ପାହଡ଼ ପର୍ବତ ॥
ତହିଁରେ ସିନ୍ଧୁକୁ ବାନ୍ଧି ପକାଇଲେ ପୁଣି ।
ବୃଦ୍ଧ ବ୍ରାହ୍ମଣ ଅଟଇ ଯେଉଁ ବଂଶପାଣି ॥
ତାହାକୁ ମାଇଲା ରଣେ ଏବଡ଼ ଅଦ୍ଭୁତ ।
ଯେଣୁ ବ୍ରାହ୍ମଣେ ଉଦ୍ଧାନ୍ତ ଅଟନ୍ତି ସତତ ॥
ତାହାର ପ୍ରଶଂସା କରୁ ଲାଜ ନାହିଁ ତୋତେ
ଆଉ ଏହା ନ କହିବୁ କାହାର ଅଗ୍ରତେ ।
ସ୍ତ୍ରୀମାନଙ୍କ ଅଗେ କହିଲେ ପାଇବ ଏ ଶୋଭା ।
ଶୁଣିଣ ପ୍ରଶଂସା ତୋତେ କରିବେ ସେ ଅବା
ତାହା ଶୁଣି କ୍ରୋଧଭରେ ଲକ୍ଷ୍ମଣଙ୍କ ସୁତ ।
ନାରାଚ ବନ୍ଧିଲେ କୋଟି କୋଟି ଶତଶତ ॥
ନବ କୁଶ ଦୁହେଁ ଛେଦ ପକାଇଲେ ତାହା
ରଥେ ଥାଇ ଦେଖୁଛନ୍ତି ପ୍ରଭୁ ରଘୁନାହା ॥
ମନେ ବିଚାରନ୍ତି ଏହି ତନି ଶିଶୁ ପରି ।
ବୀର ପଣେ ଦେଖି ନାହିଁ ନୟନ ମୋହରି ॥
ଧନ୍ୟ ଧନ୍ୟ ଚନ୍ଦ୍ରକେତୁ ତୋ ପିତା ସମାନ
କରୁଅଛୁ ଧନୁର୍ବାଣ ଆଦାନ ସନ୍ଧାନ ॥
ଏମନ୍ତ ପ୍ରଶଂସା କରି ଆନନ୍ଦ ହୋଇଲେ ।
ଜୟ ହେବ ବୋଲି ମନ ମଧ୍ୟେ ବିଚାରିଲେ ॥
ନବକୁଶ ଯେତେବାଣ ମାରନ୍ତି ନିଟୋଇ ।
ପ୍ରତିଅସ୍ତ୍ରେ ଚନ୍ଦ୍ରକେତୁ ସକଳ ଛେଦଇ ॥
ନବମୁଖ ଚାହିଁ କୁଶ ବୋଲେ ଅରେ ଭାଇ
ଏହାର ସମାନ ବୀର ନୁହନ୍ତି ଏ କେହି ॥

ଏହାକୁ କେମନ୍ତେ ଅମ୍ଭେ ଜାଣିବା ତୁ କହ ।
ଲବ ବୋଲେ ଭାଇ ତୁମ୍ଭେ କରୁଛ କି ଭୟ ॥
ମୁଁ କାଟୁଛି ଧନୁ ତାର ତୁମ୍ଭେ କାଟ ଶିର ।
ଏହା କହି ମାଇଲା ସେ ପାଞ୍ଚଗୋଟା ଶର ॥
ଚନ୍ଦ୍ରକେତୁ ଧନୁ ଶର କାଟି ପକାଇଲେ ।
କୁଶ ମୋହନାସ୍ତ୍ର ମାରି ମୋହ କରିଦେଲେ ॥
ଚନ୍ଦ୍ରକେତୁ ପଡ଼ିବାର ଦେଖି ରଘୁନାଥ ।
ରଥ ଉପରେ ଥାଇ ହୋଇଲେ ମୂର୍ଚ୍ଛିତ ॥
ଚେତଉଠି କ୍ରୋଧଭରେ ବୋଲନ୍ତି ଏମନ୍ତ ।
ଏ ଦୁହେଁ ଶିଶୁ ନୁହନ୍ତି ସାକ୍ଷାତେ କୃତାନ୍ତ ॥
ସମସ୍ତେ ମୋ ଲାଗି ପ୍ରାଣ ଦେଲେଣି ସମରେ
ଏକା ମୁହିଁ ଯାଇ ଅଜ କି କରିବି ଘରେ ॥
କୁଶ ବୋଲେ ତୁହି ନୋହୁ କ୍ଷତ୍ରିୟ ସନ୍ତାନ ।
ସେ କାରଣୁ ରଥେ ବସି କରୁଛୁ ରୋଦନ ॥
ରଣ ପାଇଲେ କ୍ଷତ୍ରିୟ ଆନନ୍ଦ ହୁଅଇ ।
ସ୍ୱଜନ ମରଣେ କ୍ରୋଧ ଅଧିକ ବଢ଼ଇ ॥
ତୁ ଯେଣୁ ଭୟାକ୍ରାନ୍ତ ପ୍ରାୟେ କରୁଅଛୁ ଶୋକ ।
କାହିଁ ପାଇଁ ଧରିଅଛୁ ହସ୍ତରେ କାର୍ମୁକ ॥
ଥାଉ ନାହିଁ ଏକାକୀ ତୁ ହେଲୁଣି ଏଥର ।
ଘରକୁ ଲେଉଟି ଯାଅ ନ କରି ସମର ॥
ଏହା ଶୁଣି ରଘୁନାଥ କ୍ରୋଧଭର ହୋଇ ।
ବୋଇଲେ ଏକାକେ ହନୂ ସିନ୍ଧୁକୁ ଗଲା ଡେଇଁ
ଅଶୋକ ବନକୁ ଭାଙ୍ଗି ଲଙ୍କା ପୋଡିଦେଲା ।
ଏକାକେ ଅଗସ୍ତ୍ର ସାତସିନ୍ଧୁକୁ ଶୋଷିଲା ॥
ଏକା ସୂର୍ଯ୍ୟ ଜଗତର ଅନ୍ଧକାର ନାଶେ ।
ଏକା ଚନ୍ଦ୍ର ରଜନୀର ଶୋଭାକୁ ପ୍ରକାଶେ ॥
ମୁଁ ଏକାକୀ ଅଛି ତୁମ୍ଭେ ଅଛ ଦୁଇଜଣ ।
ଏକା ବାଣେ ପଠାଇବି ଯମ ନିକେତନ ॥
ମୋତେ ଜାଣିବାକୁ କେହି ନାହିଁ ତ୍ରିଭୁବନେ
ଏକା ମୋରପୁତ୍ର ମୋତେ ଜିଣିପାରେ ରଣେ
ପୁତ୍ରଠାରେ ପିତା ପରାଜୟକୁ ଇଚ୍ଛଇ ।
ମୋ ପୁତ୍ର ପରାୟେ ଦିଶୁଅଛ ତୁମ୍ଭେ ଦୁଇ ॥
ଯେବେ ମୋହର ତନୟ କହିଲେ ନିଶ୍ଚୟ ।
ବ୍ୟାକୁଳ ନ ହୋଇ ମୋର ଶତ୍ରୁ ହେବ ଥୟ
ଦୁର୍ଜ୍ଜୟ ରାବଣ ବୀର ଥିଲା ଲଙ୍କାଦେଶେ ।
ତାର ସଙ୍ଗେ ଯୁଦ୍ଧକଲି ମଲା ସେ ସବଂଶେ ॥

ଶ୍ରୀରାମଙ୍କ କଥା ଶୁଣି ହସି ଦୁଇଭାଇ ।
ବୋଇଲେ ଭୟେ ଆମ୍ଭଙ୍କୁ ପୁତ୍ର ବୋଲୁ ତୁହି ॥
ମହାରାଜା ହୋଇ କରୁ ଯୁଦ୍ଧରେ ଅନ୍ୟାୟ ।
ତୁହି ତ କ୍ଷତ୍ରିୟ ଅମ୍ଭେ ଋଷିର ତନୟ ॥
ଜଣଙ୍କ ସଙ୍ଗରେ ଜଣେ ଯୁଦ୍ଧ କରେ ଦିନା ।
ଏ ଯୁଦ୍ଧ କେବଣ ଶାସ୍ତ୍ରେ ଅଛି କହ କିନା ॥
ଅମ୍ଭେ ସ୍ୱଭାବେ ବାଳକ ପୁଣି ଋଷି ଶିଷ୍ୟ ।
ଅଙ୍କଳିତ ଥାଉ ଯେନ ଆସିଣ ନରେଶ ॥
କେଡ଼ି ମାରୁଅଛୁ ତୋତେ ଧର୍ମ କେଉଁପରି ।
ସହିବ ଏ କଥା ତୁହି ମନେ ନ ବିଚାରି ॥
ଏକାକୀ ହେବାରୁ ଭୟେ କହୁଅଛୁ ଏହା ।
କାତର ନ ହୋଇ ଯୁଦ୍ଧକର ନରନାହା ॥
ଶ୍ରୀରାମ ବୋଇଲେ ମୁହିଁ ପୃଥିବୀ ଈଶ୍ୱର ।
ଗୋଡାଇ ଅଇଲେ ମୋର ସଙ୍ଗେ ଏତେବୀର
ଭାଗ୍ୟବଳେ ହାରିଲେ ସେମାନେ ତ ସମର ।
ଏଥି ପାଇଁ ଗର୍ବ ତୁମ୍ଭେ ନ କର ମନର ॥
ଏହା କହି ଧନୁ ଧରି ପ୍ରଭୁ ରଘୁରାଣ ।
ବାଣେକ ମାଇଲେ ଚଳିଗଲା ସେ ବହନ ॥
ତାହା ଦେଖି ଲବ କୁଶ ଦୁଇ ବାଣ ପେଶି ।
ଧର୍ମକୁ ନ ଲଙ୍ଘି ବାଣ ଶୂନ୍ୟେ ଖସି ଆସି ॥
ରାମବାଣ ଲବ କୁଶ ମୁଖେ ଚୁମ୍ବ ଦେଇ ।
ଶ୍ରୀରାମଙ୍କ ତୂଣୀରରେ ପଶିଲାକ ଯାଇଁ ॥
ଲବ କୁଶଙ୍କର ବାଣ ରାମପାଦେ ପଡ଼ି ।
ତୂଣୀରେ ପଶିଲା ନିଜ ଧର୍ମକୁ ନ ଛାଡ଼ି ॥
ଏଥୁ ଅନନ୍ତରେ ଶୁଣ ପିତା ପୁତ୍ର ରଣ ।
କ୍ରୋଧଭରେ ରାମଚନ୍ଦ୍ର ପ୍ରହାରିଲେ ବାଣ ॥
ସେ ବାଣ ଦିଶନ୍ତି କାଳ ଅନଳ ପରାୟେ ।
ସୂର୍ଯ୍ୟ ତୁଲ୍ୟ ଦେଖାଯାଏ ଶ୍ରୀରାମଙ୍କ କାୟେ ॥
ଦେଖି ମନେ ମହାଭୟ କରି ଦୁଇଭାଇ ।
ଯୁଦ୍ଧ ଛାଡ଼ି ଅରଣ୍ୟକୁ ଗଲେକ ପଳାଇ ॥
ଚୁରଦିଗ ଘୋଟିଅଛି ଶ୍ରୀରାମଙ୍କ ବାଣ ।
ମହାଦେବ ସଦାଧ୍ୟାୟେ ସେ ପଦ୍ମଚରଣ ॥
ଦୁଇ ଶିଶୁ ରଣ ଛାଡ଼ି ଯହୁଁ ପଳାଇଲେ ।
ମୁଣ୍ଡେ ହାତ ଦେଇ ରାମ ଭୂମିରେ ବସିଲେ ॥
ଜ୍ଞାତ ବନ୍ଧୁଭାଇ ବଳ ପୁତ୍ରଙ୍କ ଗୁଣ ।
ଅପଣାର ମନ ମଧ୍ୟେ କରିଣ ସ୍ମରଣ ॥

ଶୋକ ଅନଳରେ ଦଗ୍ଧ ହେଲା ତାଙ୍କଦେହ
ଝରଝର ହୋଇ ନେତ୍ରୁ ବହିଲଇ ଲୁହ ॥
ଥପ ଥପ ହୋଇ ଭୂମି ଉପରେ ପଡ଼ିଲା ।
ଧୃତି ମରିଗଲା ଘେର ନିଶ୍ୱାସ ବହିଲା ॥
ବୋଇଲେ ହା ଦଇବରେ କି ଦୋଷ ମୋହର
ବଂଶଲୋପ ହେଲା ମଲେ ବନ୍ଧୁ ସହୋଦର ॥
ଶାସ୍ତ୍ରେ ଅଛି ଯଜ୍ଞ କଲେ ହୁଏ ପାପ ନାଶ ।
ମୁହିଁ ଯଜ୍ଞ କଲି ମୋର ବଂଶ ହେଲା ଧ୍ୱଂସ ॥
ଅହା ଭାଇ ଶତ୍ରୁଘ୍ନରେ ଜିଣିଲ ଲବଣ ।
ସାମାନ୍ୟ ଶିଶୁ ଯୁଦ୍ଧରେ ହରାଇଲ ପ୍ରାଣ ॥
ଅହା ଭାଇ ଲକ୍ଷ୍ମଣରେ ତୋ ଗୁଣ ସୁମରି ।
ଶୋକ ଶେଲେ ଫଟାଉଛି ମୋ ହୃଦ ବିଦାରି ॥
ଇନ୍ଦ୍ରଜିତ ପରି ମହାବୀରକୁ ମାରିଲ ।
ଅତିକାୟ ବୀରକୁରେ ଯମ ହାତେ ଦେଲ ॥
ଶିଶୁ ଦୁହିଙ୍କି ନମାରି ଆପେ ମଲ କେହ୍ନେ ।
ତୋର ପ୍ରାୟ ବୀର ଜଣେ ନାହିଁ ତ୍ରିଭୁବନେ ॥
ଅହାରେ ଭାଇ ଭରତ ତୋହର ଯେ ଗୁଣ ।
କି କହିବ ଭାଇ ମୋର ଅଟୁ ପଞ୍ଚପ୍ରାଣ ॥
ତୁ କେମନ୍ତେ ଛାଡ଼ିକରି ଗଲ କହ ମୋତେ
ଅରେ ହନୁମାନ ତୋର ବଳ ମୁଁ ସାକ୍ଷାତେ
ଦେଖିଅଛି ଡେଇଁ ଗଲ ସପତ ସାଗର ।
ତୋ ନାମ ଶୁଣିଲେ ଭୟ କରନ୍ତି ଅସୁର ॥
ସିନ୍ଧୁ କୁ ବାନ୍ଧିଲ ତୁହି ଏକାକୀରେ ବାବୁ ।
କେଣେ ଗଲା ତୋର ସେହି ବୁଦ୍ଧି ବଳସବୁ ।
ସାମାନ୍ୟ ଶିଶୁର ବାଣେ ତେଜିଲ ଜୀବନ ।
ଅହା ବାବୁ ଅଙ୍ଗଦରେ ତାରାର ନନ୍ଦନ ॥
ସୁଗ୍ରୀବର ଜାମ୍ବବାନ ତାରକ୍ଷ ସୁଷେଣ ।
ନଳ ନୀଳ ଆଦି ମହା ମହା କପିଗଣ ॥
ଲଙ୍କାପୁର ଅସୁରଙ୍କୁ ଦଳାଇଲ ମାରି ।
ତୁମ୍ଭର ଯେ ବଳ ବୁଦ୍ଧି କିଏ ନେଲା ହରି ॥
ଅହା ମିତ୍ର ସୁଗ୍ରୀବ ହେ ବାନର ରାଜନ ।
କଲ କୁମ୍ଭକର୍ଣ୍ଣ ନାସା କର୍ଣ୍ଣକୁ ଛେଦନ ॥
ସେହି ପରାକ୍ରମ କେଣେ ଗଲା ହେ ତୁମ୍ଭର ।
ଅହେ ବୀର ବିଭୀଷଣ ରାକ୍ଷସ ଈଶ୍ୱର ॥
ତୁମ୍ଭ ବୁଦ୍ଧିବଳେ ମୁହିଁ ଲଙ୍କା କଲି ଜୟ ।
ଅମରହୋଇ କେମନ୍ତେ ରଣେ ହେଲ କ୍ଷୟ ।
ଅହାରେ ବୀର ସୁବାହୁ ବୀର ଶତ୍ରୁଘାତୀ ।
ଶତ୍ରୁଘ୍ନ ଔରସୁ ତୁମ୍ଭେ ଦୁହେଁ ଉତପତ୍ତି ॥
ବାପର ସମାନ ବୀର ଅଟ ତୁମ୍ଭେ ଦୁହେଁ ।
ରଣେ ପ୍ରାଣଦେଲ ବାବୁ ଅସି ମୋର ସ୍ନେହେ
ରେ ତକ୍ଷ ପୁଷ୍କଳ ତୁମ୍ଭେ ଭରତର ପୁଅ ।
ଅତ୍ୟନ୍ତ କୋମଳ ତୁମ୍ଭ ଦୁହିଁଙ୍କର କାୟ ॥
କୋମଳ ଶେଯରେ ନିଦ ନ ମାଡ଼େ ତୁମ୍ଭଙ୍କୁ
ଏବେ ଜୀବନ ତେଜିଲ କହିବି କାହାକୁ ॥
ଅରେ ବାବୁ ଚନ୍ଦ୍ରକେତୁ ଅଙ୍ଗଦ କୁମର ।
ଲକ୍ଷ୍ମଣର ପୁତ୍ର ତୁମ୍ଭେ ମହା ଧନୁର୍ଦ୍ଧର ॥
କହିଲି ମୋହର କଥା ନ କଲରେ ବାବୁ ।
କି ହେବ ମୋହର ଧନ ସମ୍ପତ୍ତି ଯେ ସବୁ ॥
ତୁମ୍ଭେ ବଞ୍ଚିଥିଲେ ବାବୁ ସବୁ ଥାନ୍ତା ମୋର ।
ଆଉ କେ ଅନ୍ତ୍ୟେଷ୍ଟିକ୍ରିୟା କରିବ ଆମ୍ଭର ॥
ଆଉ କାହିଁପାଇଁ ମୁହିଁ ଅଯୋଧ୍ୟାକୁ ଯିବି ।
ମାତମାନେ ପଚାରିଲେ ତାଙ୍କୁ କି କହିବି ॥
ଶୁଣି ଅନ୍ତଃପୁର ନାରୀ ତେଜିବେ ଜୀବନ ।
କାହିଁକି ଶୁଣିବି ଅଉ ତାହାଙ୍କ ରୋଦନ ॥
ଅହାରେ ଦଇବ ଏହା ଥିଲା ମୋ କପାଳେ ।
ଅଯୋଧ୍ୟା କିଷ୍କିନ୍ଧ୍ୟା ଲଙ୍କାରାଜ୍ୟ ଏ କାଳେକାଳେ
ଅରାଜକ ହେବ ସର୍ବେ ଯିବେ ଯମପୁର ।
ଏହା ପୁଣି ଦେଖିବ ଯେ ନୟନ ମୋହର ॥
ନିମନ୍ତ୍ରଣ ଦେଇ ରାଜାମାନଙ୍କୁ ଅଣାଇ ।
ବିନାଦୋଷେ ମରାଇଲି ଏହି ପାପେ ମୁହିଁ ॥
ନିଶ୍ଚେ ନରକ ଭୋଗିବି ଏ କଥା ନିଶ୍ଚୟ ।
ଥିଲେକ ସହାୟ ଏବେ ହେଲି ଅସହାୟ ॥
ଅଜି ରଣେ ଦୁଇଗୋଟି ଶିଶୁକୁ ମାରିବି ।
ଅଥବା ତାହାଙ୍କ ବାଣେ ଜୀବନ ହାରିବି ॥
ଏହି ଦୁଇକଥା ସିଦ୍ଧ ହୋଇଲେ ମୋହର ।
ରହିବ କ୍ଷତ୍ରିୟ ଧର୍ମ ଦୁଃଖ ହେବ ଦୂର ॥
ଏମନ୍ତ ବିଚାରି ଶୋକ ତ୍ୟାଗ କଲେ ରାମ ।
କ୍ରୋଧେ ଟଙ୍କାରିଲେ ଧନୁ କାଳାନ୍ତକ ଯମ ॥
ଏଥୁଅନ୍ତେ ଜୈମିନି ଯେ ବୋଲନ୍ତି ବଚନ ।
ସାବଧାନେ ଶୁଣ ତୁମ୍ଭେ ହେ ନୃପତି ରାଣ ॥
ପିତା ପୁତ୍ରର ସମର ଅଟେ ଗୁରୁତର ।
ଶ୍ରୀରାମ ଚରିତ ଶୁଣି ପାପ କର ଦୂର ॥

କୁଶବୋଲେ ନବ ତୁମ୍ଭେ ମୋର ବଡ଼ଭାଇ ।
ତୁମ୍ଭେ ଯୁଦ୍ଧ ଛାଡ଼ି ଯହୁଁ ଅଇଲ ପଳାଇ ॥
ମୁହିଁ ପଳାଇ ଅଇଲି ନ କରି ସମର ।
କିନ୍ତୁ ଏହା ସମ ନାହିଁ ପୃଥିବୀରେ ବୀର ॥
ଏହାକୁ ଯଦ୍ୟପି ଆଜ ଜିଣିବା ସମରେ ।
ପ୍ରଶଂସା କରିବେ ନିଶ୍ଚେ ଶୁଣି ମୁନିବରେ ।
ଏବେ ଚାଲ ଦୁଇ ଭାଇ ଯିବା ଧନୁ ଧରି ।
କରିବା ଦୁହେଁ ସମର ମୁନିଙ୍କି ସୁମରି ॥
ଏମନ୍ତ ବିଚାରି କରି ଜାନକୀଙ୍କ ପୋଏ ।
ଛାଡ଼ାହେଲେ ଶ୍ରୀରାମଙ୍କ ଆଗରେ ନିର୍ଭୟେ ॥
କୁଶଠାରୁ ଅସ୍ତ୍ରଶିକ୍ଷା ନବର ଅଧିକ ।
ଶିକୁର ବାଣରେ କଲା ଜଗତ ଆଲୋକ ॥
ଶ୍ରୀରାମଚନ୍ଦ୍ରଙ୍କ ବାଣ କାଟି ପକାଇଲା ।
ଜଗତ ଯାକର ଅନ୍ଧକାର ଘୁଞ୍ଚିଗଲା ॥
ଏକାବେଳେ ଦୁଇଭାଇ ବିନ୍ଧିଲେକ ଶର ।
କାଟି ପକାଇଲେ ତାହା ରାମ ରଘୁବୀର ॥
ରାମଙ୍କର ବାଣରାଜ ସେ ଦୁହେଁ କାଟନ୍ତି ।
କାଟନ୍ତି ତାହାଙ୍କ ବାଣ ପ୍ରଭୁ ରଘୁପତି ॥
କ୍ଳାନ୍ତହେଲେ ବେନି ଭାଇ ବାଣ ମାରି ମାରି ।
ମହାଭୟ ପାଇ ମନ ମଧ୍ୟରେ ବିଚାରି ॥
ମୋହନାସ୍ତ୍ର ପ୍ରହାରିଲେ ଚଳିଲା ସେ ଶର ।
ରାମଙ୍କୁ ମୂର୍ଚ୍ଛିତ କରି ଆଇଲା ସତ୍ୱର ॥
ଅନ୍ୟଥା ହୋଇବ କାହୁଁ ସତୀର ବଚନ ।
ତେଣୁ ଯୁଦ୍ଧରେ ହାରିଲେ କମଳଲୋଚନ ॥
ଅଚେତନ ହୋଇ ରାମ ପଡ଼ନ୍ତେ ଭୂମିରେ ।
ଦୁଇଭାଇ ଧାଇଁଗଲେ ଅତି ଆନନ୍ଦରେ ॥
ଦେଖିଲେକ ରାମଚନ୍ଦ୍ର ବାଣେ ଅଚେତନ ।
ତାହାଙ୍କ ଅଙ୍ଗରେ ଥିଲା ଯେତେ ଆଭରଣ ॥
ବାଛି ବାଛି କାଢ଼ିନେଇ ନବଅଙ୍ଗେ କୁଶ ।
ଖଞ୍ଜିଦେଇ ବୋଲେ ତୁମ୍ଭେ ହୋଇଲ ନରେଶ
ହସିଲା ତା ଶୁଣି ନବ ଆନନ୍ଦେ ସେ ବେନି ।
ବୁଲି ବୁଲି ଦେଖିଗଲେ ସକଳ ସଇନି ॥
ହନୁ ଜମ୍ବେବଙ୍କୁ ଯାଇଁ ସେ ଦୁହେଁ ଭେଟିଲେ
ପର୍ବତ ଆକାର ଦୁଇ ବୀରଙ୍କୁ ଦେଖିଲେ ॥
ମରି ନାହାନ୍ତି ସେ ଭୟେ ପଡ଼ିଛନ୍ତି ତହିଁ ।
ସ୍ନେହଭରେ କୁଶ ବୋଲେ ନବ ମୁଖ ଚାହିଁ ॥
ଏ ଦୁହିଙ୍କି ବାନ୍ଧିନେଇ ରଖିବା ମନ୍ଦିରେ ।
ପ୍ରତ୍ୟହ ଖେଳିବା ଆମ୍ଭେ ଏହାଙ୍କ ସଙ୍ଗରେ ॥
ଏମନ୍ତ ବିଚାରି ଲଟା ଆଣି ବେନିଭାଇ ।
ଦଉଡ଼ି କରି ବେକରେ ଲଗାଇଲେ ନେଇ ॥
ଦୁଇଭାଇ ସେ ଦୁହିଁଙ୍କୁ ଆନନ୍ଦେ ଧଇଲେ ।
ଓଟାରି ଘୁଅନ୍ତେ ତାଙ୍କୁ ପଛରୁ ମାଇଲେ ॥
ଭୟରେ ହନୁ ଜାମ୍ବବ ଚାଲିଗଲେ ଧୀରେ ।
ତାଙ୍କ ବଳ ବୁଦ୍ଧି କ୍ଷୀଣ ସତୀ ବଚନରେ ॥
ଶ୍ରୀରାମଙ୍କ ଧନୁ କୁଶ ଛଡ଼ାଇ ନେଲା ।
ଚାଲ କୁଟୀରକୁ ଯିବା ଭାଇଙ୍କ ବୋଇଲା ॥
କ୍ଷୁଧା ଲାଗିଲାଣି ମାତା ବାଟ ଚାହିଁଥିବେ ।
ଆମ୍ଭର ଉଛୁର ଦେଖି ବ୍ୟସ୍ତ ସେ ହୋଇବେ
ଏମନ୍ତ ବିଚାରି ଦୁଇଭାଇ ବେଗେ ଗଲେ ।
ବାଲ୍ମୀକଙ୍କ ଆଶ୍ରମରେ ପ୍ରବେଶ ହୋଇଲେ ॥
ଦ୍ୱାରେ ଯାଇ ନ ପାରନ୍ତି ହନୁ ଜାମ୍ବବାନ ।
ଦୁହିଙ୍କ ଶରୀର ମୋଟ ପର୍ବତ ସମାନ ॥
ନବ ବୋଲେ ଆରେ କୁଶ ମାତାଙ୍କୁ କହିଣ ।
ମୋହପାଇଁ ନେଇ ଆସ କିଛି ମିଷ୍ଟ ଅନ୍ନ ॥
ଏ ଦୁହିଙ୍କୁ ବୃକ୍ଷେ ବାନ୍ଧି ଜଗିଅଛି ମୁହିଁ ।
ବିଳମ୍ବ ନ କରି ବାବୁ ବେଗେ ଯାଅ ତୁହି ॥
କୁଶ ବେଗେ ଧାଇଁଗଲା ମାତାଙ୍କ ପାଶକୁ ।
ବୋଇଲା ଗୋ ମାତଃ କ୍ଷୁଧା ଲାଗଇ ଆମ୍ଭକୁ ॥
କିଛି ଖାଇବାକୁ ଦିଅ କରିବୁ ଭୋଜନ ।
ଜାନକୀ ବୋଇଲେ କିମ୍ପା ଚଳିଲ ତୋ ମନ
ଆରେ ବାବୁ ଏହି ଅଲଙ୍କାର ଅଟେ କାର ।
ଏ ମୁକୁଟ ଗୋଟି ଅଟେ ମୋର ପ୍ରଭୁଙ୍କର ॥
କୋଦଣ୍ଡ ପରାଏ ଏହି ଧନୁ ତ ଦିଶଇ ।
ଏ ଧନୁ ଏକା ଧରନ୍ତି ପ୍ରଭୁ ରଘୁସାଇଁ ॥
କହ କହ ବାବୁ ଏହା ଆଣିଲୁ କିପରି ।
ନବ କାହିଁ ଦେଖା ମୋତେ ନେଇବେଗକରି
ଏହା ଶୁଣି କୁଶ ବୋଲେ ଶୁଣ ଗୋ ଜନନୀ
ଅଯୋଧ୍ୟା ଦେଶର ରାଜା ନାମ ରଘୁମଣି ॥
ଅଶ୍ୱମେଧ ଯଜ୍ଞ କରି ଅଶ୍ୱ ଛାଡ଼ିଥିଲେ ।
ସେ ଅଶ୍ୱ ତପୋବନରେ ଦେଖିଲୁ ନୟନରେ
ବୀର ପତ୍ର ତା ମୁଣ୍ଡରେ ପଢ଼ିଲୁ ଗୋ ମାତ ।
ତେଣୁକରି ହୃଦୟରେ କ୍ରୋଧ ହେଲା ଜାତ ॥

ଅମ୍ଭେ ଦୁହେଁ ନୋହୁ କ ମା ବୀରର ସନ୍ତାନ
ଦେଖିବା କପଟ ବୀର ଅଛୁ ଯେ ଏ ସ୍ଥାନ ॥
ଏ ସମୟେ ଯେତେ ବୀର ସେ ସ୍ଥାନେ ଥିଲେ
ଅମ୍ଭ ଦେବୀଙ୍କ ହାତରେ ପରାଣ ତେଜିଲେ ॥
ଶେଷରେ ଶ୍ରୀରାମ ଆସି ହାରିଲେ ଜୀବନ ।
ଦୁଇଗୋଟି ପଶୁ ମାତା ଅଣିଛୁ ସଙ୍ଗେଣ ॥
ଶୁଣି କରି ସୀତା ଶୋକେ ପାଗଳୀ ପରି ।
ଦଉଡ଼ି ଆସିଲେ ବାହାରକୁ ବେଗକରି ॥
ଦେଖିଲେ ହନୁ ଜାମ୍ବବ ବନ୍ଧା ହୋଇଛନ୍ତି ।
ବୋଇଲେ ରେ ନବ ତୁହି ପାରିଲୁ ସମ୍ପତ୍ତି ॥
ତୁମ୍ଭମାନଙ୍କର ଠାରୁ ବଳୀକରି ମୋର ।
ସୁପୁତ୍ର ଅଟଇ ଏହି ପବନ କୁମର ॥
ଏହାକହି ଦେବୀଙ୍କ ବନ୍ଧନ ଫେଡ଼ି ଦେଲେ ।
ହନୁମାନ ଜାମ୍ବବ ଯେ ଚରଣ ବନ୍ଦିଲେ ॥
ହନୁମାନ ବୋଲେ ମାତ ସଂସାର ସରିଲା ।
ରଘୁ କୁଳନାଥ ଆଜି ରଣରେ ପଡ଼ିଲା ॥
ଅଯୋଧ୍ୟା କିଷ୍କିନ୍ଧ୍ୟା ଲଙ୍କା ହେଲା ଅରାଜକ ।
କାହାର ପୁତ୍ର ଅଟନ୍ତି ଏ ଦୁଇ ବାଳକ ॥
ଶ୍ରୀରାମ ଭରତ ଆଉ ଶତ୍ରୁଘ୍ନ ଲକ୍ଷ୍ମଣ ।
ଋକ୍ଷ କପି ରାକ୍ଷସଙ୍କ ସହ ବିଭୀଷଣ ॥
ଯେତେକ ନୃପତି ଆସିଥିଲେ ଗୋ ଯଜ୍ଞକୁ ।
ଏହି ଦୁଇଗୋଟି ଶିଶୁ ମାଇଲେ ତାହାଙ୍କୁ ॥
ଦେଖ ମାତ ଏହି ଶିଶୁ ହସ୍ତରେ କୋଦଣ୍ଡ ।
ଅମ୍ଭ ଦୁହିଙ୍କି ଯେତେକ ଦେଲେଣି ଏ ଦଣ୍ଡ ॥
ଶ୍ରୀରାମଚନ୍ଦ୍ରଙ୍କ ଅଙ୍ଗ ଆଭରଣ ଚିହ୍ନ ।
ସୀତା ଠାକୁରାଣୀ ଶୁଣି ଏମନ୍ତ ବଚନ ॥
ଅହା ପ୍ରାଣନାଥ କହି ମୂର୍ଚ୍ଛିତ ହୋଇଲେ ।
ନବ କୁଶ ଦୁହେଁ ତାଙ୍କୁ ଟେକିଣ ଧଇଲେ ॥
ଜଳ ସିଞ୍ଚି କରାଇଲେ ତାହାଙ୍କୁ ସଚେତ ।
ବୋଇଲେ କିମ୍ପାଇ ତୁମ୍ଭେ କାନ୍ଦୁଅଛ ମାତ
ଜାନକୀ ବୋଇଲେ ଅରେ ଅରେ କୁଳାଙ୍ଗାର
ପିତା ଭ୍ରାତା ଖୁଡ଼ୁତାଙ୍କୁ କରିଲ ସଂହାର ॥
ତୁମ୍ଭର କି ଦୋଷ ମୁହିଁ ବାରବରେ ସୁତ ।
ମୋହର କର୍ମରେ ଯାହା ଲେଖିଛି ବିଧାତ ॥
ଅରେ ବାବୁ ହନୁମାନ ପ୍ରାଣନାଥ କାହିଁ ।
ପଡ଼ିଛନ୍ତି ତାଙ୍କୁ ମୋତେ ଦେଖାବେଗେ ନେଇ

ଏହା କହି କାନ୍ଦି କାନ୍ଦି କରନ୍ତି ଗମନ ।
ଆଗରେ ବାଟ କଢ଼ାଇ ଅଛି ହନୁମାନ ॥
ନବ କୁଶ ତାଙ୍କ ପଛେ ପଛେ ଯାଉଛନ୍ତି ।
ମାତାଙ୍କ କାନ୍ଦିବା ଦେଖି ଡରରେ କାନ୍ଦନ୍ତି ॥
ସମର ଭୂମିରେ ଯାଇ ହୋଇଲେ ପ୍ରବେଶ ।
ଦେଖିଲେ ପଡ଼ି ଅଛନ୍ତି ରଘୁ କୁଳ ଈଶ ॥
ଭରତ ଶତ୍ରୁଘ୍ନ ଆଉ ଲକ୍ଷ୍ମଣ ସୁଗ୍ରୀବ ।
ଋକ୍ଷ କପି ରାକ୍ଷସରେ ନ ମିଳଇ ଠାବ ॥
କେତେ ନରପତି କେତେ ରଥ ଘୋଡ଼ାହାତୀ
ଦେଖି ଆଶ୍ଚର୍ଯ୍ୟ ହୋଇଣ ଭାଳନ୍ତି ଯେ ସତୀ ॥
କେମନ୍ତେ ଏହାଙ୍କୁ ବଧ କଲେ ନବ କୁଶ ।
ଏହି ଥାଟ ଦିଶୁଛନ୍ତି ସାଗର ସଦୃଶ ॥
ଏକେ ଏକେ ମହାବଳୀ ସମରେ ନିପୁଣ ।
କେମନ୍ତେ ଶିଶୁର ବାଣେ ଲଭିଲେ ମରଣ ॥
ଏହା କହି ଗୁଣ ସ୍ମରି କରିଲେ ରୋଦନ ।
ଅରେ ନବ କୁଶ ଶୁଣ ମୋହର ବଚନ ॥
କେଉଁ ଜନ୍ମରେ ଘାତକ ମୁହିଁ କରିଥିଲି ।
ସ୍ୱାମୀ ଦେବର ପୁତ୍ରଙ୍କ ମରଣ ଦେଖିଲି ॥
ଅଯୋଧ୍ୟାରେ ଶୁଣିକରି ମାତାମାନେ ମୋର ।
ନିଶ୍ଚେ ପରାଣ ତେଜିବେ ଭଗ୍ନୀଙ୍କ ସଙ୍ଗର ॥
ଅରେ ବାବୁ ତୁମ୍ଭେ ଦୁହେଁ ବେଗହୋଇ ଯାଅ
କୌଶଲ୍ୟାଦି ମାତାଙ୍କର ଆଗେ ଏହା କହ ॥
ଅଯୋଧ୍ୟାର ସିଂହାସନେ ହୁଅ ଦଣ୍ଡଧାରୀ ।
ମାତାମାନଙ୍କୁ ପ୍ରବୋଧି କହିବ ମୋହର ॥
ସ୍ୱାମୀଙ୍କ ସଙ୍ଗରେ ମୁହିଁ ତେଜିବି ଜୀବନ ।
ଅରେ ହନୁ ବେଗେ ଅଗ୍ନି କର ଆରୋପଣ ॥
ଅରେ ହନୁମାନ ବେଗେ କାଠ ଆଣ ଯାଇଁ ।
ଏହା ଶୁଣି ହନୁମାନ ବେଗେ ଗଲା ଧାଇଁ ॥
ନବକୁଶ ବୋଇଲେ ଗୋ ତୁମ୍ଭ ଦୋଷେ ମାତ
ଜୀବନ ତେଜିଲେ ଅମ୍ଭ ହସ୍ତେ ଆଜି ପିତଃ ॥
ଅମ୍ଭଙ୍କୁ ଏ କଥା ଆଗ୍ର କହିଥାନ୍ତ ଯେବେ ।
କାହିଁ ପାଇଁ ଯୁଦ୍ଧକରି ଥାନ୍ତୁ କହ ଅମ୍ଭେ ॥
ଏବେ ସେକଥା କହିଲେ ହୋଇବ ବା କିସ
ଅମ୍ଭ ଦୁହିଁଙ୍କ କର୍ମରେ ଅଛି ନର୍କ ବାସ ॥
ପିତା ଭ୍ରାତା ଖୁଡ଼ୁତାଙ୍କୁ ବିନାଶ କରିଣ ।
କପଟ୍ଟ କାହା ମୁଖକୁ ଚାହିଁବୁ କହିଣ ॥

କା ମୁଖ ଚାହିଁବୁ ଆଉ ମାତା ପିତା ମାର ।
ଅନଳେ ପଶିବୁ ଆମ୍ଭେ ଅଗ୍ନି ଜାଳକର ॥
ଏହା କହି କଲେ ତହିଁ ତିନିଗୋଟି କୁଣ୍ଡ ।
ବନୁ କାଠ ବୋହିଆଣି ଭରିଲେ ପୂର୍ଣ୍ଣ କୁଣ୍ଡ ॥
ଚିତ୍ରକୂଟ ପର୍ବତରେ ବାଲ୍ମୀକି ଯେ ଥିଲେ ।
ଯୋଗବଳେ ଜାଣିକରି ସେଠାରୁ ଆଇଲେ ॥
ଦୀନ ମହାଦେବ ବୋଇଲେ ସେ ମୁନି ମହିମା
କେ ବର୍ଣ୍ଣିପାରିବ ସେହି ସାକ୍ଷାତରେ ବ୍ରହ୍ମା ॥

—–○—–

## ବାଲ୍ମିକୀ ମୁନିଙ୍କ ଯୁଦ୍ଧସ୍ଥାନେ ପ୍ରବେଶ ଓ ସୈନ୍ୟ ସହିତ ରାମ ଲକ୍ଷ୍ମଣଙ୍କର ପୁନର୍ଜୀବନ ଲାଭ

ଜୈମିନି କହନ୍ତି ଶୁଣ ଅହେ ନରବର ।
ଏଥୁଅନ୍ତେ ଯାହା ସବୁ ଘଟିଲା ସେଠାର ॥
ମନ କର୍ଣ୍ଣ ଦେଇ ଭକ୍ତିଭରେ ଏହା ଶୁଣ ।
ଶ୍ରୀରାମ ଚରିତ ଏ ଅଟଇ ମହାପୁଣ୍ୟ ॥
ବହୁଦୂର ପଥ ମୁନି ଆଇଲେ ନିମିଷେ ।
ପ୍ରବେଶ ହୋଇଲେ ନିଜ ଆଶ୍ରମର ପାଶେ ॥
ଦେଖିଲେ ଅସଂଖ୍ୟ ସୈନ୍ୟ ପଡ଼ିଛନ୍ତି ରଣେ
ଲବ କୁଶଙ୍କୁ ପ୍ରଶଂସା କରି ମନେ ମନେ ॥
ଜାନକୀଙ୍କ ପାଶେ ଯାଇ ହୋଇଲେ ପ୍ରବେଶ
ଦେଖିଲେ ଅଛନ୍ତି ତହିଁ ଘେନି ଲବ କୁଶ ॥
ପ୍ରଚଣ୍ଡ ଅନଳ ଶିଖା ଆକାଶେ ଉଠଇ ।
ମୁନିଙ୍କି ଦେଖିଣ କାନ୍ଦି ଉଠିଲେ ବୈଦେହୀ ॥
ଚରଣ ତଳରେ ପଡ଼ି ବୋଲଇ ହେ ତାତ ।
ଲବ କୁଶ କଲେ ସୂର୍ଯ୍ୟ ବଂଶକୁ ନିପାତ ॥
ଧନୁର୍ବିଦ୍ୟା ଶିଖାଇଲ ଏହାଙ୍କୁ କିପାଇଁ ।
ପିତା ଭ୍ରାତା ଖୁଡ଼ୁତାଙ୍କୁ ବଧିଲେ ଏ ଦୁଇ ॥
ତୁମ୍ଭେତ ସର୍ବଜ୍ଞ ତୁମ୍ଭ ଅସ୍ତ୍ରଶିକ୍ଷା ବଳେ ।
ତିନି ଭୁବନକୁ ଜିଣି ପାରିବେ ଏ ହେଲେ ॥
ସାକ୍ଷାତରେ ଦେଖ ଯେଉଁ କମଳ ଲୋଚନ ।
କ୍ଷଣକେ ନାଶି ପାରନ୍ତି ସକଳ ଭୁବନ ॥
ଶିଶୁ ଅବସ୍ଥାରେ ଜୟ କଲେ ଏ ତାହାଙ୍କୁ ।
ଆଉ କେ ପାରିବ ଅନ୍ୟା ଯୁଦ୍ଧରେ ଏହାଙ୍କୁ ॥

ଏ ଶିଶୁ ଦୁହିଙ୍କି ତୁମ୍ଭେ ରଖ ଯତ୍ନକରି ।
ଅଯୋଧ୍ୟା ପୁରୀରେ ଏଣୁ ହେବେ ଦଣ୍ଡଧାରୀ
ଶାଶୁମାନେ ଏ ଦୁହିଁଙ୍କ ବଦନକୁ ଚାହିଁ ।
ପୁତ୍ରଶୋକ ନିବାରିବେ ଅହେ ତାତ ସେହି
ଅନଳ ମଧ୍ୟରେ ପଶି ତେଜିବି ଜୀବନ ।
ବାଲ୍ମୀକୀ ବୋଇଲେ ସତୀ ଶୁଣ ମୋ ବଚନ
କାତର ନ ହୋଇ ତୁମ୍ଭେ ଦୁଇ ଶିଶୁ ଘେନି ।
ଆଶ୍ରମକୁ ଯାଅ ଶୀଘ୍ର ମୁହିଁ ଏହିକ୍ଷଣି ॥
ଆବର ରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ ।
ତାହାଙ୍କର ଷଢ଼ ପୁତ୍ର ସୁଗ୍ରୀ ବିଭୀଷଣ ॥
ମରି ନାହାନ୍ତି ଏମାନେ ହୋଇଛନ୍ତି ମୋହ
ଅଗୋ ମାତ ବଇଦେହୀ ଛାଡ଼ ମନୁ କୋହ ॥
ଏମାନଙ୍କୁ ଜୀବଦାନ ଦେବି ଏହିକ୍ଷଣି ।
ଏମନ୍ତ ବଚନ ଶୁଣି ସୀତା ଠାକୁରାଣୀ ॥
ମୁନିଙ୍କର ପାଦଧରି ବିନୟ କରିଣ ।
କହିଲେ ଏ ବିପଦରୁ କର ପରିତ୍ରାଣ ॥
କେବଳ ମାଗୁଣି ମୋର ଏତିକି ହେ ତାତ
ନୟନେ ଦେଖିବି ମୁହିଁ ରଘୁକୁଳ ନାଥ ॥
ମୁନି ବୋଇଲେ ଗୋପନେ ରହ ପୁତ୍ର ଘେନି
ହନୁ ଜାମ୍ବବନ୍ତଙ୍କୁ ଚାହିଁ କହିଲେକ ମୁନି ॥
ତୁମ୍ଭେ ଏବେ ନ କରିବ ଏ କଥା ପ୍ରଘଟ ।
ପଶ୍ଚାତେ ହୋଇବ ପୁଣ ପିତା ପୁତ୍ର ଭେଟ ॥
ଏହା କହି ମହାମୁନି ହସ୍ତେ ଜଳ ଧରି ।
ମୃତ୍ୟୁ ସଞ୍ଜୀବନୀ ମନ୍ତ୍ରେ ତାହା ମନ୍ତ୍ରିକରି ॥
ଶିଷ୍ୟଙ୍କୁ ବୋଇଲେ ତୁମ୍ଭେ ସିଞ୍ଚି ଦିଅ ନେଇ
ଗୋଟିଏ ମାତ୍ର ଏଥିରୁ ନ ଛାଡ଼ିବ କେହି ॥
ଦ୍ୱାଦଶ ହଜାର ଶିଷ୍ୟ ଜଳ ଘେନି ଗଲେ ।
ସମସ୍ତଙ୍କର ଉପରେ ଜଳ ସିଞ୍ଚି ଦେଲେ ॥
ସମସ୍ତେ ଉଠି ବସିଲେ ଦେଖିଲେକ ମୁନି ।
ରାମଙ୍କୁ ଦର୍ଶନ କରି ଜନକ ନନ୍ଦିନୀ ॥
ଆନନ୍ଦେ ଦେନି ପୁତ୍ରଙ୍କୁ କୋଳରେ ବସାଇ
ଆଶ୍ରମକୁ ଚାଲିଗଲେ ଏଣେ ରଘୁସାଇଁ ।
ମୁନିଙ୍କ ପାଦପଦ୍ମରେ କରି ନମସ୍କାର ।
ବୋଇଲେ ସେ ଦୁଇଗୋଟି କାହାର କୁମର
ବାଲ୍ମୀକି ବୋଇଲେ ମୁହିଁ ନଥିଲି ଏଠାରେ
ତାହିଁ କହି ପାରିବି ମୁଁ ତୁମ୍ଭ ଅଗ୍ରତରେ ।

ଆଶ୍ରମକୁ ଯାଇ ତାଙ୍କ କଥା ବୁଝିପାରି ।
ଯଜ୍ଞ ସ୍ଥାନରେ କହିବି ଅଛେ ଦଣ୍ଡଧାରୀ ॥
ଅଶ୍ୱ ଘେନିଯାଇ ଯଜ୍ଞ କର ସମାପତ ।
ତୁମ୍ଭ ପଛେ ଯାଉଛି ମୁଁ ଶିଷ୍ୟଙ୍କ ସହିତ ॥
ଏହା କହି ମୁନିବର ଆଶ୍ରମକୁ ଗଲେ ।
ଅଶ୍ୱଘେନି ରାମ ଯଜ୍ଞ ସ୍ଥାନକୁ ଆଇଲେ ॥
ଗୁରୁଙ୍କ ପାଦ ପଙ୍କଜେ ରଖିଣ ମାନସ ।
ଗୀତ ପ୍ରବନ୍ଧରେ କହେ ମହାଦେବ ଦାସ ॥

ଇତି ଶ୍ରୀ ଜୈମିନିଭାରତେ ହରିଭକ୍ତି
ରସଲୀଳାସାର କଥା ପ୍ରବନ୍ଧେ ନାମ
ଷଟ୍‌ତ୍ରିଂଶୋଽଧ୍ୟାୟଃ ।

——○——

# ସପ୍ତତ୍ରିଂଶ ଅଧ୍ୟାୟ

ଉପୋଷ୍ଟିତୋ ନବଶୈଳନବଶିଃ ପୁନରାପତେତ୍
ବାପନୀୟଞ୍ଚେବାଙ୍କନସ୍ୟାତ୍ରଗତଧାତ୍ରିଂ ହି ବୁଦ୍ଧ୍ୟୟ ॥

## ରାମଚନ୍ଦ୍ର ସୈନ୍ୟ ସହିତ ଯଜ୍ଞ ସ୍ଥାନକୁ ଗମନ ବାଲ୍ମୀକି ଶିଷ୍ୟ ସହିତ ପ୍ରବେଶ

ବୋଲନ୍ତି ଜୈମିନି ତୁମ୍ଭେ ଶୁଣ ନୃପମଣି
ଏଥୁଅନ୍ତେ ଯାହାହେଲା ଶୁଣ ସେ କାହାଣୀ
ଆପଣାର ଶିଷ୍ୟସହ ବାଲ୍ମିକି ମୁନି ।
ଯଜ୍ଞସ୍ଥାନକୁ ଗମିଲେ ଲବ କୁଶ ଘେନି ॥
ବାଟରେ ତାହାଙ୍କୁ ଚାହିଁ ବୋଇଲେ ଏମନ୍ତ
ବିଷ୍ଣୁ ଅବତାର ରାମ ତୁମ୍ଭେ ତାଙ୍କ ସୁତ ।
ଧନୁର୍ବିଦ୍ୟା ତୁମ୍ଭଙ୍କୁ ମୁଁ ଦେଇଥିଲି ଶିକ୍ଷା ।
ସାକ୍ଷାତରେ ଏବେ କଲି ତାହାର ପରୀକ୍ଷା ॥
ଆନର ସଙ୍ଗୀତ ବିଦ୍ୟା ଶିଖାଇ ଅଛଇ ।
ତାହାକୁ ପରୀକ୍ଷା ଦେଲେ ତୋଷ ହେବି ମୁହିଁ
ତୁମ୍ଭେ ଦୁହେଁ ମୋ ରଚିତ ରାମାୟଣ ଗୀତ ।
ସୁସ୍ୱରେ ଗାଇବ ଶୁଣି ଲୋକେ ହେବେ ପ୍ରୀତ
ଋଷି ମୁନିମାନଙ୍କର ପବିତ୍ର ଆଶ୍ରମେ ।
ଯଜ୍ଞରେ ଥିବା ବ୍ରାହ୍ମଣମାନଙ୍କ ସଦନେ ॥
ଯଜ୍ଞଶାଳେ ଋଷିଙ୍କର ସମ୍ମୁଖରେ ରହି ।
ଗାଇବ ବସି ସୁସ୍ୱରେ ଗୀତ ଦୁଇଭାଇ ॥
ତରକାତ ସ୍ୱାଦୁଫଳ କରିବ ଭକ୍ଷଣ ।
ତହିଁରେ ତୁମ୍ଭର ହେବ ଶ୍ରମ ନିବାରଣ ॥
ଯେବେ ମହାରାଜା ରାମ ତୁମ୍ଭଙ୍କୁ ଡକାଇ ।
କହିବେ ସଭାରେ ବସି ଗାଅ ତୁମ୍ଭେ ଦୁଇ ॥
ନିର୍ଭୟେ ଗାଇବ ରାଗ ରାଗିଣୀ ବସାଇ ।
ଯେଉଁପରି ଯେଉଁସ୍ଥାନେ ଲେଖିଅଛି ମୁହିଁ ॥
ଯଦ୍ୟପି ସେ ଧନରତ୍ନ ତୁମ୍ଭଙ୍କୁ ଯାଚିବେ ।
ତାହା କଦାପି ଗ୍ରହଣ ନ କରିବ ତୁମ୍ଭେ ॥
ବୋଲିବ ଆଶ୍ରମ ବାସୀ ଆମ୍ଭେ ଦୁଇଜଣ ।
ପ୍ରତିଦିନ ଫଳମୂଳ କରୁ ହେ ଭକ୍ଷଣ ॥
ସେ ସବୁ ପଦାର୍ଥ ନେଇ ଆମ୍ଭର କି ହେବ ।
ଯେବେ ଅବା ପଚାରିବେ ତୁମ୍ଭଙ୍କୁ ରାଘବ ॥
କାହାର ତନୟ ତୁମ୍ଭେ କହିବ ଏପରି ।
ବାଲ୍ମୀକି ମୁନିଙ୍କ ଶିଷ୍ୟ ଆମ୍ଭେ ତପଚାରୀ ॥
ପ୍ରତ୍ୟହ ବିଂଶତି ସର୍ଗେ ଗାଇବ ସୁସ୍ୱରେ ।
ଶ୍ରୁତି ମଧୁର ତନ୍ତ୍ରୀକି ଧରିଣ ହସ୍ତରେ ।
ଯେଉଁଠାରେ ଯେଉଁ ସ୍ୱରେ ଗାଇଲେ ସୁନ୍ଦର
ଶୁଭିବ ତହିଁରେ ମନ ଦେଇଣ ସତ୍ୱର ॥
ନିର୍ଭୟେ ଗାଇବ ତାହାମାନ ନ ଭୁଲିବ ।
ରାଜାଙ୍କୁ ଅବଜ୍ଞା ତୁମ୍ଭେ କେବେ ନ କରିବ ॥
ଧର୍ମ ଅନୁସାରେ ରାଜା ପ୍ରାଣୀଙ୍କର ପିତା ।
ଏଣୁ ପ୍ରଥମେ ଗାଇବ ତାଙ୍କ ଗୁଣଗାଥା ॥
କାଲି ପ୍ରଭାତରୁ ତୁମ୍ଭେ ହସ୍ତେ ବୀଣା ଧରି ।
ଆନନ୍ଦେ ଏକ ମନରେ ଲୟଯୁକ୍ତ କରି ॥
ସୁମଧୁର ସଙ୍ଗୀତକୁ ଆରମ୍ଭ କରିବ ।
ଗାଇବୁ ବୋଲି କହିଲେ ତାଙ୍କୁ କୁଶ ଲବ ॥
ଯହୁଁ ମୁନି ଯଜ୍ଞସ୍ଥାନେ ପ୍ରବେଶ ହୋଇଲେ ।
ଶ୍ରୀରାମଚନ୍ଦ୍ର ତାହାଙ୍କୁ ସମାଦର କଲେ ॥
ମୁନିଙ୍କ ଆଶ୍ରମ ପାଶେ ନେଇ ଦେଲେ ସ୍ଥାନ
ତତକ୍ଷଣେ ସେ ସ୍ଥାନକୁ ଯାଇ ଭୃତ୍ୟଗଣ ॥
ନାନାବିଧ ଫଳଫୁଲ ମଣ୍ଡାଇଣ ଦେଲେ ।
ଦେଖିଣ ବାଲ୍ମୀକି ମୁନି ଆନନ୍ଦ ହୋଇଲେ ॥
ଶିଷ୍ୟଙ୍କ ସହିତେ ମୁନି ଆଶ୍ରମରେ ରହି ।
ଯାମିନି ଯାପନ କଲେ ଦିବ୍ୟଫଳ ଖାଇ ॥
ଅଶ୍ୱିନୀ କୁମାର ଦୁଇ କରନ୍ତି ଯେସନ ।
ଭାର୍ଗବ ମୁନିଙ୍କଠାରୁ ସଂହିତା ଶ୍ରବଣ ॥

ସେହିପରି ନବକୁଶ ବେଳିଙ୍କର ବାଣୀ ।
ଶୁଣି ଆନନ୍ଦ ହୋଇଣ କାଟିଲେ ରଜନୀ ॥
ପରଦିନ ପ୍ରଭାତରୁ ଉଠି ଦୁଇଭାଇ ।
ସ୍ନାନ ହୋମ ଆଦି କର୍ମ ଶେଷ କରିଦେଇ ॥
ମୁନିବର କହିଥିଲେ ଯେମନ୍ତ ପ୍ରକାରେ ।
ଦୁଇଭାଇ ବସିଲେକ ଯାଇଁଣ ମାର୍ଗରେ ॥
ପୋଥିକି ପିଟାଇ ଯହୁଁ ଗାଇଲେ ରସ ଗୀତ ।
ରୁଣ୍ଡହେଲେ ଶୁଣିବାକୁ ଲୋକେ ଯେ ବହୁତ ॥
ଏକକୁ ଠେଲି ଆରେକ ଆଗକୁ ଯେ ଯାଇ ।
ତାର ଗୀତ ଶୁଣି କରି ଆନନ୍ଦ ହୁଅଇ ॥
ବୀଣା ସହିତରେ ସ୍ୱର ହେବାରୁ ସମାନ ।
କିଏ ବୀଣା କିଏ ସ୍ୱର ନୋହିଲା ବାରଣ ॥
ଏହିପରି ଶୁଣି ଲୋକ ବହୁତ ଆଇଲେ ।
ଏକ କହନ୍ତେ ଆରେକ ବେଗେ ଦଉଡ଼ିଲେ ॥
ଦୋକାନିଏ ବିକା କିଣା ବନ୍ଦ କରି ଦେଇ ।
ଗୀତ ଶୁଣିବାକୁ ଗଲେ ଅତି ତ୍ୱରା ହୋଇ ॥
ଶୁଣିକରି ଲୋକମାନେ ହୋଇଲେ ଉଷତ ।
ବୋଇଲେ ଅପୂର୍ବ ଅଟେ ଏହି ନୂଆ ଗୀତ ॥
ଏହିପରି ଗାଇବାରେ ସେ ଦିନକ ଗଲା ।
ତହୁଁ ଆରଦିନ ତହୁଁ ପ୍ରଭାତ ହୋଇଲା ॥
ସେହିପରି ଦୁଇଭାଇ ଆସି ପହଞ୍ଚିଲେ ।
ପୋଥିକି ପିଟାଇ ତହୁଁ ସେ ଗୀତ ଗାଇଲେ ॥
ରାଜାଙ୍କର ପାଖଲୋକ ଗଲେ ଶୁଣିବାକୁ ।
କହିଲେ ଆସି ଆପଣା ଆପଣା ରାଜାକୁ ॥
ତାଙ୍କଠାରୁ ଶୁଣି ନରପତିମାନେ ଗଲେ ।
ସେ ଗୀତ ଶୁଣିଣ ବହୁ ଆନନ୍ଦିତ ହେଲେ ॥
ବହୁ ଦେଶୁ ଆସିଥିଲେ ଋଷି ମୁନି ଯତି ।
ପିଲାଙ୍କର ଗୀତ ଶୁଣି ଆନନ୍ଦ ହୁଅନ୍ତି ॥
ଗୁହାର ଜଣାଇଲା ଯାଇଁ ଶ୍ରୀରାମଙ୍କ ଆଗେ ।
ଭୋ ଦେବ ଶୁଣିବା ହେଉ ଏହି ଯଜ୍ଞ ଲାଗେ ॥
ଦୁଇଟି ବାଳକ ବସି ଗାଉଛନ୍ତି ଗୀତ ।
ନୂଆ ପରି ଜଣାଯାଏ ସେ ତୁମ୍ଭ ଚରିତ ॥
ଋଷିଙ୍କ ଯାଗର ବାର୍ତ୍ତା ତାଡ଼କା ବିନାଶ ।
ଜାନକୀଙ୍କ ବିଭା ଆଉ ତୁମ୍ଭ ବନବାସ ॥
ଇତ୍ୟାଦି ଚରିତମାନ ତହିଁରେ ପଡୁଛି ।
ଶ୍ରବଣର ସୁଖକର ସେ ଅତି ହୋଇଛି ॥

ଗୁହାର ଜାଣନ୍ତେ ଏମନ୍ତ ରାମଙ୍କ ଅଗ୍ରତେ ।
ସତ୍ୟ ବୋଲିଣ କହିଲେ ନୃପତି ସମସ୍ତେ ॥
ଋଷିଏ କହିଲେ ପୁଣି ଏହି କଥା ସତ୍ୟ ।
ଏପରି ଶୁଣି ହରଷ ହେଲେ ରଘୁନାଥ ॥
ଡଗରକୁ ବୋଇଲେକ ଯାଇଁ ତାଙ୍କୁ ଆଣ ।
ଆଜ୍ଞା ପାଇଣ ଡଗର ଗଲାକ ବହନ ॥
ନବ କୁଶଙ୍କ ନିକଟେ ପରବେଶ ହେଲା ।
ରାଜା ଡାକୁଛନ୍ତିବେଗେ ଆସ ହେ ବୋଇଲା ॥
ତୁମ୍ଭ ଗୀତ ଶୁଣିବାକୁ କରିଛନ୍ତି ମନ ।
ଆସ ଶୁଣାଇ ଦେନିବ ଧନ ଯେ ବସନ ॥
ପୂର୍ବରୁ ତ ଋଷି ତାଙ୍କୁ ତିଆରି ଯେ ଥିଲେ ।
ଡଗର କହନ୍ତେ ତାଙ୍କ ସଙ୍ଗେ ଦୁହେଁ ଗଲେ ॥
ରାଜାଙ୍କ ସମ୍ମୁଖେ ମିଳି କଲେ ନମସ୍କାର ।
ତାଙ୍କୁ ଦେଖି ରାମ ହେଲେ ଆନନ୍ଦ ଅପାର ॥
ବୋଇଲେ କାଖେ ଯାକଛ କେବଣ ପୁରାଣ ।
କୁଶ କହିଲା ଏ ଗ୍ରନ୍ଥ ଅଟେ ରାମାୟଣ ॥
ଶ୍ରୀରାମ ବୋଇଲେ ତେବେ ସେହିଠାରେ ବସ ।
ଶୁଣିମା ତୁମ୍ଭର ଗ୍ରନ୍ଥ କର ପରକାଶ ॥
ରାମଙ୍କଠାରୁ ଏପରି ଶୁଣିଣ କ୍ରମରେ ।
ଗାଇଲେ ମୁନିବରଙ୍କ ବାକ୍ୟ ଅନୁସାରେ ॥
ଅପୂର୍ବ ଷଡ଼ସ୍ୱରରେ ଗାଇଲେକ ଗୀତ ।
ନାନା ଅଲଙ୍କାରେ ପୂର୍ଣ୍ଣ ହୋଇଅଛି ସେତ ॥
ଅନେକ ପ୍ରମାଣମାନ ଅଛଇ ତହିଁରେ ।
ସୁମଧୁର ଶୁଭେ ତନ୍ତ୍ରୀ ସ୍ୱର ସଙ୍ଗତରେ ॥
ସେ ଗୀତ ଶ୍ରବଣ କରି ନରେନ୍ଦ୍ର ରାଘବ ।
ତାହାଙ୍କ ହୃଦରେ ହେଲା ଆନନ୍ଦ ଉଦ୍ଭବ ॥
ମହାମୁନି ବାଲ୍ମୀକିଙ୍କୁ ଡାକିଲେ ସଭାକୁ ।
ବହୁଶାସ୍ତ୍ର ଜାଣିଥିବା ନୃପତିମାନଙ୍କୁ ॥
ପୁଣି ଡକାଇଲେ ବୃଦ୍ଧ ଯେତେକ ଦ୍ୱିଜାତି ।
ନିଗମ ପୁରାଣ ଶାସ୍ତ୍ର ଯେ ସବୁ ଜାଣନ୍ତି ॥
ତାହାଙ୍କୁ ଡକାଇ ଆଣି ପ୍ରଭୁ ରଘୁବୀର ।
ସ୍ୱର ଲକ୍ଷଣ ଜାଣନ୍ତି ଯେତେ ବିଜ୍ଞବର ॥
ଯେତୁ ସ୍ନେହେ ଶାସ୍ତ୍ରମାନ ଶ୍ରବଣ କରନ୍ତି ।
ପଦ ଅକ୍ଷର ଛନ୍ଦକୁ ଯେ ସବୁ ଜାଣନ୍ତି ॥
କିମ୍ବା କଳାପରେ ଯେତୁ ଅଟନ୍ତି ନିପୁଣ ।
କାର୍ଯ୍ୟ ବିଶାରଦ ଦ୍ୱିଜ ଆଉ ଜ୍ୟୋତିଃଗଣ ॥

ନୃତ୍ୟ ଗୀତ ବିଶାରଦ ଯେତେ ପୁରଜନ ।
ଉପସ୍ଥିତ ହେଲେ ପୁଣି ସେଠାରେ ଅଗଣି ॥
ବୃଦ୍ଧ କଳ୍ପ ବେଦ ସ୍କନ୍ଦ ଶାସ୍ତ୍ରଜ୍ଞ ଯେତେକ ।
ତାହାଙ୍କୁ ଡକାଇ ଆଣି ଶ୍ରୀରଘୁ ନାୟକ ॥
ସତ୍କାର କରି ବସି ଲବକୁଶଙ୍କୁ ଅନାଇ ।
ବୋଇଲେ ଏଠାରେ ଗୀତ ଗାଅ ତୁମ୍ଭେ ଦୁଇ
ରାଜା ଆଜ୍ଞା ପାଇ ଦୁଇ ଭାଇ ବୀଣା ଧରି ।
ଗାଇବାକୁ ଆରମ୍ଭିଲେ ମୂର୍ଚ୍ଛା ଦେଇକରି ॥
ପ୍ରଥମରେ ବନ୍ଦିଲେକ ବାଲ୍ମୀକି ଚରଣ ।
ତତପରେ ବନ୍ଦନା କଲେ ପ୍ରଭୁ ଭଗବାନ ।
କ୍ରୌଞ୍ଚ ମିଥୁନକୁ ବ୍ୟାଧ କରନ୍ତେ ନିଧନ ।
ଦେଖି ମୁନିମନେ ହେଲେ ଯେବେ କ୍ରୋଧମନ
ବ୍ରହ୍ମା ଅଗଣି ମୁନିଙ୍କି ବର ଦେଇଗଲେ ।
ନାରଦ ରାମ ଚରିତ ସକଳ କହିଲେ ॥
ଦଶରଥଙ୍କର ରାଜ୍ୟ ଶାସନ ପ୍ରଣାଳି ।
ପୁତ୍ର ନୋହିବାରୁ ରାଜା ମନେ ମନେ ଭାଳି ॥
ଲୋମପାଦ ଦେଶେ ଅନାବୃଷ୍ଟିର କାରଣ ।
ସେ ସ୍ଥାନେ ଆସିବା ବିଭାଣ୍ଡକର ନନ୍ଦନ ॥
ଲୋମପାଦ ଦେଶେ ଇନ୍ଦ୍ର ଜଳ ବରଷିବା ।
ଶାନ୍ତାକୁମାରୀକୁ ଋଷ୍ୟଶୃଙ୍ଗ ବିଭାହେବା ॥
ପୁତ୍ର ପାଇଁ ହୋମ ଋଷି ଅଯୋଧ୍ୟାରେ କଲେ ।
ପୂର୍ଣ୍ଣାହୁତି ଶେଷେ ଦଶରଥ ଚରୁ ନେଲେ ॥
ରାଜାନେଇଦେଲେ କଉଶଲ୍ୟା କୈକେୟୀଙ୍କୁ
ଦୁଇରାଣୀ କିଛି କିଛି ଦେଲେ ସୁମିତ୍ରାକୁ ॥
ଏକାବେଳେ ତିନିରାଣୀ ହେଲେ ଗର୍ଭବାସ ।
ପ୍ରବେଶ ହୋଇଲା ଯହୁଁ ପ୍ରସବ ଦିବସ ॥
କୌଶଲ୍ୟା କୈକେୟୀଠାରୁ ଶ୍ରୀରାମ ଭରତ ।
ଲକ୍ଷ୍ମଣ ଶତ୍ରୁଘ୍ନ ହେଲେ ସୁମିତ୍ରାହୁଁ ଜାତ ॥
ଶୁକ୍ଳପକ୍ଷ ଶଶୀ ସମ ପିଲାଏ ବଢ଼ିଲେ ।
ଶାସ୍ତ୍ରମାନ ପଢ଼ି ଶସ୍ତ୍ରବିଦ୍ୟା ଶିକ୍ଷା କଲେ ॥
ବିଶ୍ୱାମିତ୍ର ଅଯୋଧ୍ୟାରେ ପ୍ରବେଶ ହୋଇଲେ ।
ଦଶରଥଙ୍କୁ ଶ୍ରୀରାମ ଲକ୍ଷ୍ମଣ ମାଗିଲେ ।
ଶ୍ରୋତାମାନେ ତାଙ୍କ ଗୀତ ଶୁଣି ବାରମ୍ବାର ।
ଶୁଣିବାକୁ କ୍ରମେ ଇଚ୍ଛା ବଢ଼ିଲା ତାଙ୍କର ॥
ସମସ୍ତଙ୍କ ଚକ୍ଷୁ ତାଙ୍କ ଉପରେ ରହିଲା ।
ଗୀତ ଶୁଣି କର୍ଣ୍ଣ ଅନ୍ୟ ଆଡ଼କୁ ନ ଗଲା ॥
ଯେଉଁପରି କହିଥିଲେ ମୁନି ବାଲ୍ମୀକ ।
ସେହିପରି ଗାଉଛନ୍ତି ସେ ଦୁଇ ବାଳକ ॥
ଆଦ୍ୟରୁ ଆରମ୍ଭ ବିଂଶସର୍ଗ ଶେଷ କଲେ ।
ଅପରାହ୍ନ ହୋନ୍ତେ ରାମ ଭାଇଙ୍କି କହିଲେ ॥
ଅଠର ସହସ୍ର ସ୍ୱର୍ଣ୍ଣ ଦିଅ ଯାଙ୍କୁ ଆଣି ।
ଆଉ ଏ ଯାହା ମାଗିବେ ତାହା ଦେବ ପୁଣି ॥
ଭରତ ରାମଙ୍କ ମୁଖୁଁ ଶୁଣି ଏ ବଚନ ।
ଭଣ୍ଡାରରୁ ସ୍ୱର୍ଣ୍ଣ ଆଣି ଦିଅନ୍ତେ ବହନ ॥
ଗ୍ରହଣ ନ କଲେ ତାହା ସେ ଦୁଇ ସୋଦର
ବିସ୍ମୟ ହୋଇ ତାହାଙ୍କୁ ଦେଲେ ଏ ଉତ୍ତର ।
ସ୍ୱର୍ଣ୍ଣ କି ହେବ ଆମ୍ଭର ଆମ୍ଭେ ବନବାସୀ ।
ଫଳ ମୂଳ ଖାଇ ନିତ୍ୟ ଆମ୍ଭାକୁ ସନ୍ତୋଷି ॥
କରିଅଛୁ ଆମ୍ଭେ ମୁନି ବ୍ରତକୁ ଧାରଣ ।
ବନେ କି କରିବୁ ନେଇ ସୁବର୍ଣ୍ଣ ହିରଣ୍ୟ ॥
ଏକଥା ଶୁଣି ଶ୍ରୀରାମ ଆଉ ଶ୍ରୋତାମାନେ ।
ଅତିଶୟ ବିସ୍ମୟ ଯେ ହେଲେ ମନେ ମନେ ॥
ପଚାରିଲେ ଏ ଗ୍ରନ୍ଥର ପରିମାଣ କେତେ ।
କବି କିଏ କହ ତାହା ଆମ୍ଭର ଅଗ୍ରତେ ॥
ରାମ ଏହା ପଚାରିଲେ ସେ ବାଳକ ବେନି ।
ବୋଇଲେ ଏଥିରେ କବି ବାଲ୍ମୀକି ମୁନି ॥
ଏଥିରେ ଆପଣଙ୍କର ସମସ୍ତ ଚରିତ ।
ବର୍ଣ୍ଣନା କରିଅଛନ୍ତି ଆହେ ନରନାଥ ॥
ଚତୁର୍ବିଂଶତି ସହସ୍ର ଶ୍ଳୋକେ ଏ ସମ୍ପୂର୍ଣ୍ଣ ।
ଏକଶତ ଉପାଖ୍ୟାନ ଅଛି ନୃପରଣ ॥
ଏ ମହାକାବ୍ୟ ଆଦ୍ୟରୁ ଉତ୍ତର ପର୍ଯ୍ୟନ୍ତ ।
ସାତ ଗୋଟି କାଣ୍ଡେ ହୋଇଅଛି ସମାପତ ॥
କରିଛନ୍ତି ପାଞ୍ଚଶତ ସର୍ଗରେ ବିଭାଗ ।
ଆମ୍ଭ ଗୁରୁ ସେ ମହର୍ଷି ଆହେ ମହାଭାଗ ॥
ଏହା କହି ଦୁଇ ଭାଇ ମଉନ ହୋଇଲେ ।
ବର୍ତ୍ତମାନ ଯାଅ ତୁମ୍ଭେ ଶ୍ରୀରାମ ବୋଇଲେ ॥
ସନ୍ଧ୍ୟା ତର୍ପଣ କରଣ ଗଲେ ରଘୁନାଥ ।
କୁଶ ଲବ କୁଟୀରରେ ହେଲେ ଉପସ୍ଥିତ ॥
ଫଳମୂଳ ଖାଇ ତହିଁ ସୁଖେ ନିଦ୍ରାଗଲେ ।
ପରଦିନ ସୂର୍ଯ୍ୟୋଦୟ ସମୟେ ଉଠିଲେ ॥
ଏହି ସମୟରେ ରାମ ପ୍ରାତଃକୃତ୍ୟ ସାରି ।
ଯାଗଶାଳେ ସିଂହାସନେ ଯାଇଁ ବିଜେକରି ॥

ପାଚ ମନ୍ତ୍ରୀ ଆଦି ନୃପ ସେଠାକୁ ଆସିଲେ ।
ନବ ପୋଥି ଘେନି ତହୁଁ ଯାଇ ପହଞ୍ଚିଲେ ॥
ମିଳିକୁ ଦେଖି ଶ୍ରୀରାମ କହିଲେକ ବସ ।
କାଲି ଥିବା ଟାରୁ ପଢ଼ି ସର୍ବ ମନ ତୋଷ ॥
ଶୁଣିଣ କ୍ରମରେ ବସି ପୋଥି ଫିଟାଇଲେ ।
ମୁନି କହିବାର ପରେ ସୁସ୍ୱରେ ଗାଇଲେ ॥
ରାମଲକ୍ଷ୍ମଣଙ୍କୁ ବିଶ୍ୱାମିତ୍ର ଗଲେ ଘେନି ।
ମାରିଇଲେ ରାମହସ୍ତେ ତାଡ଼କା ଯକ୍ଷିଣୀ ॥
ସିଦ୍ଧବନେ ବିଶ୍ୱାମିତ୍ର ଯଜ୍ଞ ଶେଷ କରି ।
ମିଥିଳାକୁ ଗଲେ ଦୁଇଭାଇ ସଙ୍ଗେ ଧରି ॥
ପଥେ ଯାଇ ଅହଲ୍ୟାକୁ ପାଷାଣୁ ତାରିଲେ ।
ମିଥିଲାରେ ଧନୁଭଙ୍ଗି ସୀତା ବିଭା ହେଲେ ॥
ଆସନ୍ତେଣ ପର୍ଶୁରାମ ଓଗାଳିଲେ ପଥ ।
ତାର ଦର୍ପ ଚୂର୍ଣ୍ଣ କଲେ ପ୍ରଭୁ ରଘୁନାଥ ॥
ଅଯୋଧ୍ୟା ପ୍ରବେଶ ହେଲେ ଦଶରଥ ରାଜା ।
ଭରତଙ୍କୁ ଦେଖିବା ପାଇଁ ନେଇଗଲେ ଅଜା ॥
ରାଜ୍ୟରେ ରାମଙ୍କୁ ରାଜା କରିବା ବିଚାରି ।
ଅଭିଷେକ ଦ୍ରବ୍ୟମାନ ଥିଲେ ନିର୍ମ୍ମାଣ କରି ॥
କଇକେୟୀଙ୍କୁ ମନ୍ଥରା ଗୁପ୍ତେ ଶିଖାଇଲା ।
ଦଶରଥଙ୍କୁ କପଟେ ସତ୍ୟ କରାଇଲା ।
ତପୃରେ କୈକେୟୀ ବାକ୍ୟେ ରାମ ଗଲେ ବନ
ତାହାଙ୍କ ସଙ୍ଗରେ ଗଲେ ଜାନକୀ ଲକ୍ଷ୍ମଣ ॥
ରାମଙ୍କୁ ନ ଦେଖି ଏଣେ ଦଶରଥ ମଲେ ।
ବଶିଷ୍ଠ ତାହାଙ୍କୁ ତୈଳଭାଣ୍ଡରେ ରଖିଲେ ॥
ଦୂତ ମୁଖୁ ବାର୍ତ୍ତା ପାଇ ଆଇଲେ ଭରତ ।
ଶୁଣିଲେ ବନକୁ ଗଲେ ପ୍ରଭୁ ରଘୁନାଥ ॥
ପିତା ଦଶରଥ ତୈଳ ମଧ୍ୟେ ପଡ଼ିଥିଲେ ।
ତହୁଁରୁ କାଢ଼ି ତାହାଙ୍କୁ ଦହନ କରିଲେ ॥
ଦୁଃଖିତରେ ପ୍ରେତ କର୍ମ ମାନ କରି ଶେଷ ।
ବଶିଷ୍ଠାଦିଙ୍କୁ ଘେନିଣ ଗଲେ ରାମ ପାଶ ॥
ବହୁ ବିନୟେ ରାମଙ୍କୁ କହିଲେ ଭରତ ।
ତଥାପି ରାମ ନଇଲେ ନ ଲଙ୍ଘିଲେ ସତ୍ୟ ॥
ରାମଙ୍କ ପାଦୁକା ନେଇ ଭରତ ବାହୁଡ଼ିଲେ ।
ଅଯୋଧ୍ୟା ନ ଯାଇ ନନ୍ଦିଗ୍ରାମରେ ରହିଲେ ॥
ଚିତ୍ରକୂଟରେ ବରଷେ ରହିଲେ ଶ୍ରୀରାମ ।
ନାନା କୌତୁକେ ପୂରିଲା ଦନକ ସମାନ ॥

ଚିତ୍ରକୂଟ ଗିରି ତେଜି ଯାନ୍ତେ ରଘୁନାଥ ।
ବିରାଧ ରାକ୍ଷସ ଆସି ନିରୋଧିଲା ପଥ ॥
ତାର ବାହୁ ଛେଦ ରାମ ତାକୁ ମୋକ୍ଷକଲେ
ନାନାତୀଥ ବୁଲି ଦଶବର୍ଷ କଟାଇଲେ ।
ଅତ୍ରି ଋଷିଙ୍କ ଆଶ୍ରମେ ହେଲେ ପରବେଶ ।
ତହୁଁ ଜାନକୀ ପାଇଲେ ଅମଳାନ ବାସ ॥
ଅଗସ୍ତିଙ୍କ ବାକ୍ୟେ ପଞ୍ଚବଟୀରେ ରହିଲେ ।
ତିନିବର୍ଷ ତହିଁ ସୁଖେ ସମୟ କାଟିଲେ ॥
ମାୟାରୂପେ ସୂର୍ପଣଖା ସେଠାରେ ମିଳିଲା ।
ଦୁଷ୍ଟପଣେ ଜାନକୀଙ୍କୁ ଗିଳି ଦେଉଥିଲା ॥
ଦେଖି ଲକ୍ଷ୍ମଣ କାଟନ୍ତେ ତାର ନାକ କାନ ।
ଖର ଦୂଷଣ ତ୍ରିଶିରା ଆସିଲେ ବହନ ॥
ରାମଙ୍କବାଣେ ଚଉଦ ସହସ୍ର ରାକ୍ଷସ ।
ଖର ସହିତରେ ଯହୁଁ ହୋଇଲେ ବିନାଶ ॥
ଭୟେ ସୂର୍ପଣଖା ସିନ୍ଧୁ ପାର ହୋଇଗଲା ।
ଲଙ୍କାପୁରେ ରାବଣର ଆଗରେ କହିଲା ॥
ବୋଇଲା ହେ ଭ୍ରାତ ଦେଖ ଅବସ୍ଥା ମୋହର
ତୁମ୍ଭେ ଥାଉଁ ଥାଉଁ ଏହି ଦଶା ହେଲା ମୋର
ଅଯୋଧ୍ୟା ଦେଶରେ ଘର ନାମ ରଘୁନାଥ ।
ସାନଭାଇ ଭାରଯାକୁ ଘେନିଣ ସଙ୍ଗତ ॥
ଦଣ୍ଡକା ଅରଣ୍ୟେ ଆସି କୁଟୀର କରିଣ ।
ସେଠାରେ ରହିଅଛନ୍ତି ତପସ୍ୱୀ ବେଶେଣ ॥
ଦେଖିଲି ତାହାର ନାରୀ ଅପୂର୍ବ ସୁନ୍ଦରୀ ।
ରମ୍ଭାଉର୍ବଶୀ ମେନକା ନ ହୋଇବେ ସରି ॥
ଦୁର୍ଗା ଲକ୍ଷ୍ମୀ ତା ଶୋଭାକୁ ନୋହିବେ ସମାନ
ତୁମ୍ଭ ମନ୍ଦୋଦରୀ ତାର ଦାସୀ ଯୋଗ୍ୟ ଜାଣ
ଲଙ୍କାପୁରେ ଦେବ ନର ନାଗକନ୍ୟା ଯେତେ ।
ନ ହେବେ ସମାନ ତାର ରୂପକୁ କହିଁତେ ॥
ବଦନ ଚନ୍ଦ୍ରମା ଜଣି ଓଷ୍ଠ ବାଳ ରବି ।
ସିଂହ ମଝି ପୀନସ୍ତନୀ କରି ଗତ ଛବି ॥
କୁଞ୍ଚିତ ନୀଳ କୁନ୍ତଳ ପୃଷ୍ଠେ ଶୋଭେ ବେଣୀ
କେତେକାଳ ବସି ତାକୁ ଗଢ଼ିଲା ବିଧାଣି ॥
ତାକୁ ଦେଖି ଭାବିଲି ମୁଁ ବଳେ ହରିକୁ ନେବି
ମୋର ଭାଇ ରାବଣକୁ ଉପହାର ଦେବି ॥
ଲଙ୍କାପୁରର ମଣ୍ଡଣି ହେବ ଏ ସୁନ୍ଦରୀ ।
ତେଣୁ ତାହାର ପାଶକୁ ଏକା ହୋଇ ଗଲି ॥

ବଡ଼ଭାଇ ଆଜ୍ଞାଦେଲା ସାନୁଜ ଲକ୍ଷ୍ମଣ ।
ସେ ଆସି ମୋ ନାସାକର୍ଣ୍ଣ ଛେଦିଲେ ତକ୍ଷଣ
ତହୁଁ ଖର ଦୂଷଣଙ୍କୁ ଆସି ଜଣାଇଲି ।
ମୋ ଦଶା ଦେଖିଣ ସେ ସୈନ୍ୟ ସଜକରି ॥
ଚଉଦ ସହସ୍ର ସୈନ୍ୟ ସଙ୍ଗତରେ ନେଇ ।
ରାମଙ୍କ ସହିତ ଯୁଦ୍ଧ କଲେ ସେ ଯାଇ ॥
ଏକା ରାମ ସମସ୍ତଙ୍କୁ କରିଲା ସଂହାର ।
ଭୟରେ ତହିଁ ଆସିଲି ପାଶକୁ ତୁମ୍ଭର ॥
ମାନ ଉଦ୍ଧାର ନ ହେଲେ ତେଜିବି ଜୀବନ
ଶୁଣି ରାବଣ ତାହାକୁ ଶାନ୍ତ୍ୱନା ଦେଇଣ ॥
ଏ ସମୟେ ମନ୍ଦୋଦରୀ କାତର ହୋଇଣ ।
ହସ୍ତଯୋଡ଼ି ବୋଲେ ଅହେ ଶୁଣ ପ୍ରାଣଧନ
ପୂର୍ବ ଶାପ କଥା ମନୁ ଗଲି କି ପାଶୋରି ।
ସୀତା ହରଣରେ ମୃତ୍ୟୁ ହୋଇବ ତୁମ୍ଭର ॥
ନ ଶୁଣି ରାବଣ କ୍ରୋଧେ ଯାନ ଆରୋହିଲା ।
ମାରୀଚ ପାଶରେ ଯାଇଁ ସମସ୍ତ କହିଲା ॥
ମାରୀଚ ବୋଇଲା ତାର ଭୟେ ଏଥେଁ ମୁହିଁ ।
ଜୀବନ ଘେନି ରହିଛି ବର୍ତ୍ତିଣ ମରାଇ ॥
ଅଗ୍ନି ସମ ଶର ତାର ଯମ ସମ ତେଜ ।
ତା ସଙ୍ଗେ ବିବାଦ ନ କର ହେ ରକ୍ଷରାଜ ॥
କଲେ ସର୍ବଥା ମରିବ ଶୁଣି ଦଶାନନ ।
ବୋଇଲା ଭୟ ତୁ ମୋତେ ଦେଖାଉ ଅଧମ
ରାବଣ ଡରେ ମାରୀଚ ସ୍ୱର୍ଣ୍ଣମୃଗ ହେଲା ।
ରାବଣ ତାହାକୁ ରଥେ ବସାଇ ଆଣିଲା ॥
ଲଙ୍କେଶ୍ୱର ମାରୀଚକୁ ଯହୁଁ ଛାଡ଼ିଦେଲା ।
ରାମ ପର୍ଣ୍ଣକୁଟୀ ଆଗେ ମାରୀଚ ମିଳିଲା ॥
ମନୋହର ଅଙ୍ଗ ଭଙ୍ଗୀ କରି ନୃତ୍ୟ କଲା ।
ତାକୁ ଦେଖି ସୀତାଙ୍କର ଶରଧା ହୋଇଲା ॥
ରାମ ତାକୁ ଧରିବାକୁ ଗୋଡ଼ାଇଲେ ଯହୁଁ ।
ମାୟାମୃଗ ବହୁଦୂର ତାଙ୍କୁ ନେଲା ତହୁଁ ॥
ଶ୍ରମପାଇ ଶର ତାକୁ ମାରନ୍ତେ ଶ୍ରୀରାମ ।
ରାମ ସ୍ୱରରେ ଡ଼ାକିଲା ରଖହେ ଲକ୍ଷ୍ମଣ ॥
ସୀତା ସେହି ଡ଼ାକ ଶୁଣି ବିକଳ ହୋଇଲେ
ବହୁତ କୁବାକ୍ୟ କହି ଲକ୍ଷ୍ମଣେ ପେଷିଲେ ॥
ଲକ୍ଷ୍ମଣ ଯାଆନ୍ତେ ରାବଣ ଯୋଗୀ ବେଶଧରି ।
ମଠି ଆସି ଜାନକୀଙ୍କୁ ବଳେ ନେଲା ହରି ॥
ଜଟାୟୁ ଦେଖି ରାବଣ ସଙ୍ଗରେ ଯୁଝିଲା ।
ଖଡ଼ଗେ ରାବଣ ତାର ଡେଣାକୁ କାଟିଲା ॥
ଆକାଶେ ତହୁଁ ସେମାନେ କରନ୍ତେ ଗମନ ।
ଅଙ୍ଗରୁ କାଢ଼ିଲେ ସୀତା ଅଳଙ୍କାର ମାନ ॥
ଉତ୍ତରୀରେ ବାନ୍ଧି ତାହା ତଳକୁ ଫିଙ୍ଗିଲେ ।
ଦଇବ ବଶରେ ତାକୁ ସୁଗ୍ରୀବ ପାଇଲେ ॥
କପି ବୋଲିଣ ଦେଖିଲେ ସେ ବସ୍ତ୍ର ଫିଟାଇ
ଯତନ କରିଣ ତାହା ରଖାଇଲେ ନେଇ ॥
ସୀତାଙ୍କୁ ଘେନିଣ ସିନ୍ଧୁ ପାର ହୋଇଗଲା ।
ଅଶୋକ ବନେ ଅସୁରୀ ଜଗାଇ ରଖିଲା ॥
ଏଣେ ରାମ କୁଟୀରରେ ସୀତାଙ୍କୁ ନ ଦେଖି ।
ଗିରିବଡ଼ ବନ ପର୍ବତେ ଖୋଜିଲେ ନିରେଖି ॥
କାହିଁ ନ ଦେଖି ସୀତାଙ୍କୁ ହୋଇଲେ ବିକଳ
ନେତ୍ର ଯୁଗଳୁ ବହିଲା ଅଶ୍ରୁ ଅନର୍ଗଳ ।
କାନ୍ଦି କାନ୍ଦି ଯାଆନ୍ତେ ପଥେ ଭେଟିଲେ ଜଟାୟୁ
ସେହି କହିଲା ସୀତାଙ୍କୁ ନେଲା ଲଙ୍କରାହୁ ॥
ଏହା କହିଣ ଯହୁଁ ସେ ଛାଡ଼ିଲା ଜୀବନ ।
ଶ୍ରୀରାମ ତାହାକୁ ତହିଁ କରିଣ ଦହନ ॥
ସେଠାବରୁ ବିଜେକଲେ ଅତ୍ୟନ୍ତ ଶୋକରେ
ପଡ଼ିଲେ କବନ୍ଧ ରାକ୍ଷସର ହାବୁଡ଼ରେ ॥
ତାକୁ ବଧନ୍ତେ ସେ ଦିବ୍ୟରୂପକୁ ଧଇଲା ।
ତୁମ୍ଭ ଭାର୍ଯ୍ୟା ଦଶଶିର ନେଲା କହିଗଲା ॥
ସେଠାବରୁ ଦୁଇଭାଇ ଶୋକଦୁଃଖେ ଗଲେ ।
ଗୋପାଳମାନଙ୍କ ପଲ୍ଲୀ ନିକଟେ ମିଳିଲେ ॥
ତୃଷାର୍ତ୍ତେ ମଣିକ ଦେଇ ମାଗିବାରୁ କ୍ଷୀର ।
ଗୋପାଳେ ବୋଇଲେ କିଏ ଜାଣେ କି ପଥର
ଶୁଣି ଲକ୍ଷ୍ମଣ ଦୁଧକୁ ରଜତ କରନ୍ତେ ।
ଭୟେ ଦୁଧଦେଲେ ଆଣି ଗୋପାଳ ସମସ୍ତେ
କ୍ଷୀର ଖାଇ ଦୁଇଭାଇ ଶବରୀ ଭେଟିଲେ ।
ତାଙ୍କୁ ମୋକ୍ଷକରି ପମ୍ପାସରକୁ ଦେଖିଲେ ॥
ସେ ସର ଜଳରେ ଚକ୍ରବାକୀ ଚକ୍ରବାକ ।
କ୍ରୀଡ଼ା କରିବାର ଦେଖି ଶ୍ରୀରଘୁନାୟକ ॥
ସୀତାଙ୍କ ବାର୍ତ୍ତା ପୁଚ୍ଛନ୍ତେ ଅତି ଆର୍ତ୍ତହୋଇ ।
ଶୁଣି ଚକ୍ରବାକ ନିଜମନେ ଖଙ୍ଗ ବହି ॥
ରାମଚନ୍ଦ୍ରଙ୍କୁ କହନ୍ତେ ଅତି କଟୁ ଗୀର ।
ତାଙ୍କୁ ଶାପ ଦେଇଗଲେ ଋଷ୍ୟମୂକ ପର ॥

ସେହିଠାରେ ହନୁମନ୍ତ ତାହାଙ୍କୁ ଭେଟିଲେ ।
ନିଜ ପରିଚୟ ଦେଇ ସୁଗ୍ରୀ ଭେଟାଇଲେ ॥
ଦୁଇଜଣ ନିଜ ଦୁଃଖ କୁହାକୁହି ହେଲେ ।
ଅଗ୍ନି ସାକ୍ଷୀ କରି ତହିଁ ମଇତ୍ର ହୋଇଲେ ॥
ରଖିଥିବା ଅଳଙ୍କାର ସୁଗ୍ରୀବ ଆଣାଇ ।
ଦିଅନ୍ତେ ଶ୍ରୀରାମ ଦେଖି କାନ୍ଦିଲେକ ତହିଁ ॥
ବାଳି ମାରିବି ପ୍ରତିଜ୍ଞା କଲେ ରଘୁରାୟ ।
ସେ କଥାରେ ସୁଗ୍ରୀବର ନୁହନ୍ତେ ପ୍ରତ୍ୟୟ ॥
ଦୁନ୍ଦୁଭି ହାଡ଼କୁ ପାଦ ଅଙ୍ଗୁଷ୍ଠେ ଫିଙ୍ଗିଲେ ।
ଏକ ବାଣକରେ ସପ୍ତଶାଳକୁ ଛେଦିଲେ ॥
ତହିଁ ଅନନ୍ତରେ ବାଳି ବୀରକୁ ସଂହାରି ।
ସୁଗ୍ରୀବକୁ କିଷ୍କିନ୍ଧ୍ୟାରେ ଅଭିଷେକ କରି ॥
ଆପଣେ ରହିଲେ ଯାଇ ଗିରି ମାଲ୍ୟବନ୍ତ ।
ତହିଁ ଚତୁର୍ମାସ୍ୟା ଗୃହିମାସ କଲେ ଗତ ॥
ସୁଗ୍ରୀବ ଗୃହିଦିଗକୁ ଦୂତ ବରିଗଲା ।
ଦକ୍ଷିଣ ଦିଗକୁ ହନୁମନ୍ତ ଯାଇଥିଲା ॥
ସମୁଦ୍ର ଡେଇଁ ଲଙ୍କାରେ ହୋଇଲା ପ୍ରବେଶ ।
ସୀତାଙ୍କୁ ଦେଖି ହୋଇଲା ଅତ୍ୟନ୍ତ ହରଷ ॥
ମୁଦ୍ରିକା ସନ୍ତକ ଦେଇ ତାଙ୍କଠାରୁ ମଣି ।
ଘେନିଣ ଲୁଗା ପଣନ୍ତେ ବାନ୍ଧିଲା ପାବନୀ ॥
ମଧୁବନ ଫଳ ଖାଇ ସେ ବନ ଭାଙ୍ଗିଲା ।
ବହୁ ସୈନ୍ୟସହ ଅକ୍ଷକୁମର ମାଇଲା ॥
ଲଙ୍କାପୋଡ଼ି ସେ ସ୍ଥାନରୁ ବେଗ ହୋଇ ଆସି ।
ଅଙ୍ଗଦ ଆଦି କପିଙ୍କି ନେଇଣ ଅଶ୍ୱାସି ॥
ରାମଙ୍କ ଆଗେ କହିଲା ସକଳ ସନ୍ଦେଶ ।
ମଣି ଲଭି ରଘୁନାଥ କାନ୍ଦିଲେ ବିଶେଷ ॥
ଋକ୍ଷକପି ସୈନ୍ୟ ସିନ୍ଧୁକୂଳେ ହେଲେ ଯାଇ ।
ଏ କଥା ଦୂତ ରାବଣେ କହିଲେ ବୁଝାଇ ॥
ବିଭୀଷଣ ତାଙ୍କୁ ହିତ କହନ୍ତେ ବହୁତ ।
ତାଙ୍କୁ ମାରି ଅପମାନ ଦ୍ୟନ୍ତେ ଦଶମାଥ ॥
ଚତୁର୍ମନ୍ତ୍ରୀ ଘେନି ସଙ୍ଗେ ଆସି ବିଭୀଷଣ ।
ଶ୍ରୀରାମ ପାଦପଦ୍ମରେ ପଶିଲା ଶରଣ ॥
ସିନ୍ଧୁକୁ ରାମ ବହୁତ ସ୍ତବ ସ୍ତୁତି କଲେ ।
କୋପେ ଧନୁକୁ ଧରନ୍ତେ ବରୁଣ ଅଇଲେ ।
ବନ୍ଧ ବାନ୍ଧିବା ଉପାୟ ତାଙ୍କୁ କହିଦେଇ ।
ଜଳରାଜନ ଗଲେକ ଅନ୍ତର୍ଦ୍ଧାନ ହୋଇ ॥
ନଳ ଛୁଅନ୍ତେ ଅଚଳ ଜଳରେ ଭାସିଲା ।
ଏପରି ଶତଯୋଜନ ସେତୁବନ୍ଧ ହେଲା ॥
ସୈନ୍ୟସହ ରଘୁପତି ସେହି ବନ୍ଧେ ଗଲେ ।
ସୁବଳ ପର୍ବତେ ଗଡ଼ ଜଗିଣ ରହିଲେ ॥
ଏ ଭିତରୁ କପି ସୈନ୍ୟ ଜଳିବା ପାଇଁକି ।
ଶୁକ ଶାରଣ ପେଶିଲା ସୁବଳ ଗିରିକି ॥
ପୁଣି ଆପଣେ ଲକ୍ଷେକ ଛତ୍ର ଧରାଇଲା ।
ଆକାଶରେ ରହି ରାମ ସୈନ୍ୟ ଜଗୁଥିଲା ॥
ବିଭୀଷଣକୁ ଦେଖିଣ ମାଇଲା ଗଦାଏ ।
ହନୁମନ୍ତ ଧଇଲା ତା ବଞ୍ଚାଇଣ କାୟେ ॥
ଶ୍ରୀରାମ କାଣ୍ଡକେ ଲକ୍ଷ ଛତ୍ର କାଟିଦ୍ୟନ୍ତେ ।
ରାବଣ ପଳାଇଗଲା ତହୁଁ ଅତି ଭୀତେ ॥
ବିଦ୍ୟୁଜ୍ଜିହ୍ୱାକୁ ଡ଼କାଇ ତହିଁ ଆଜ୍ଞା ଦେଲା ।
ରାମ ଧନୁ ଶିର କରି ଆଣ ତୁ ବୋଇଲା ॥
ତାକୁ ନେଇ ଦେଖାଇଲା ଜାନକୀର ପାଶ ।
ଦେଖି ଜାନକୀ କାନ୍ଦିଲେ କରିଣ ବିଶ୍ୱାସ ॥
ଏ ଭିତରୁ କପିସୈନ୍ୟ ଚୁରିଭାଗ ହୋଇ ।
ଗଡ଼ଦ୍ୱାରେ ରହିଲେ ସେ ଶାଳଶିଳା ନେଇ ॥
ତହୁଁ ରାମଚନ୍ଦ୍ର ଡ଼ାକି ଅଙ୍ଗଦକୁ ।
ଲେଖା ଦେଇ ପଠାଇଲେ ରାବଣ ପାଶକୁ ॥
ଅଙ୍ଗଦ ସଙ୍ଗରେ ଯହୁଁ ସେ କଲା କଳହ ।
ଜଗତଦ୍ରୂଳ ଆଣିଲା ବାଳିବୀର ପୁଅ ॥
ତହୁଁରେ ହରି ଅସୁରେ କଲେ ଘୋରଯୁଦ୍ଧ ।
ସେହି ରଣେ ଯଜ୍ଞଶତ୍ରୁ ହୋଇଲା ଯେ ବଧ ॥
ସେହି ରଣେ ପରାଜିତ ହେଲା ଇନ୍ଦ୍ରଜିତ ।
ନରାନ୍ତକ ସେନାପତି ହୋଇବାରୁ ହତ ॥
ତାଙ୍କ ସକାଶେ ରାବଣ ବହୁ ଶୋକ କଲା ।
ପୁଣି ହନୁ ଆଜ୍ଞାପତ୍ର ନେଇଣ ଚଳିଲା ॥
ରାବଣ ପଠନ୍ତେ ତାକୁ କ୍ରୋଧରେ କହଇ ।
ରାମ ମୋତେ ଜାଣି ନେଉ ତାରି ବଳଦେଖି ॥
ଏହା କହି ଇନ୍ଦ୍ରଜିତ ସୁଅକୁ ପେଶିଲା ।
ସେ ଆସି ବହୁତ ଋକ୍ଷକପି ନାଶକଲା ॥
ସଂଗ୍ରାମ ଶେଷେ ନାଗଫାଶେ ଶ୍ରୀରାମ ଲକ୍ଷ୍ମଣେ ।
ବନ୍ଧନ କରି ଚଳିଲା ଆପଣା ସଦନେ ॥
ଏହା ଦେଖି କପିମାନେ ବହୁତ କାନ୍ଦିଲେ ।
ଗରୁଡ଼କୁ ରଘୁନାଥ ଯହୁଁ ସୁମରିଲେ ॥

ସେ ଅସନ୍ତେ ନାଗଫାଶ ପଳାଇଣ ଗଲା ।
ଏହା ଶୁଣି ଦଶାନନ ବ୍ୟସ୍ତ ହୋଇଲା ॥
ଅକମ୍ପନ ବଜ୍ରଦଂଷ୍ଟ୍ର ଧୂମ୍ରାକ୍ଷ ପ୍ରହସ୍ତ ।
ଏ ଚାରି ବୀରଙ୍କୁ ଯୁଦ୍ଧେ ପେଷିଲା ତ୍ୱରିତ ॥
ଏମାନେ ପ୍ରତିଜ୍ଞା କରି ଯାଇ ଯୁଦ୍ଧ କଲେ ।
ଋକ୍ଷ ବାନରଙ୍କ ହାତେ ପ୍ରାଣ ହରାଇଲେ ॥
ଏ ଚାରେ ମରିବା ଶୁଣି ଶୋକେ ଦଶଶିର ।
ନିଜେ ଯୁଦ୍ଧ କରିବାକୁ ହୋଇଲା ବାହାର ॥
ବହୁତ କପି ମାଇଲା କରି ଘୋର ରଣ ।
ଦେଖି ଅଗଭର ହେଲେ ସୁମିତ୍ରା ନନ୍ଦନ ॥
ସମରେ ନ ପାରି ବ୍ରହ୍ମ ଶକତି ମାରିଲା ।
ମୋହଯାନ୍ତେ ନେବା ଅଭିପ୍ରାୟେ ତୋଳୁଥିଲା
ଏ ସମୟେ ହନୁମନ୍ତ ପଛଆଡୁ ଯାଇ ।
ବିଧାଏ ମାରନ୍ତେ ସେହି ଗଲାକ ପଳାଇ ॥
ଦୂତମାନଙ୍କୁ ଡାକିଣ ଦେଲା ଏ ଆଦେଶ ।
କୁମ୍ଭକର୍ଣ୍ଣଙ୍କୁ ଉଠାଇ ଆଣ ମୋର ପାଶ ॥
ଆଜ୍ଞାପାଇ କୁମ୍ଭକର୍ଣ୍ଣ ପାଶେ ଦୂତେ ଗଲେ ।
ବହୁ କଷ୍ଟରେ ତାହାର ନିଦ୍ରାକୁ ଭାଙ୍ଗିଲେ ॥
ତାକୁ ସବୁକଥା କହି ଯୁଦ୍ଧକୁ ପେଷିଲା ।
ରାମଶରେ ଉଡ଼େ ବୀର ପ୍ରାଣ ହରାଇଲା ॥
କୁମ୍ଭକର୍ଣ୍ଣ ମରିବାର ଶୁଣିଣ ରାବଣ ।
ଭୂମିରେ ପଡ଼ିଲା ଦେହେ ନ ରହିଲା ଜ୍ଞାନ ॥
ଏହା ଦେଖି ଅତିକାୟ ଆଦି ଦେବାନ୍ତକ ।
ମହୋଦର ମହାପାର୍ଶ୍ୱ ବୀର ନରାନ୍ତକ ॥
ତ୍ରିଶିରା ଏ ଛଅ ବୀର ପ୍ରତିଜ୍ଞା କରିଲେ ।
ଯୁଦ୍ଧକୁ ଯାଇଁ କପିଙ୍କ ହାତରେ ମରିଲେ ॥
ଏହାଙ୍କ ମରଣ ଶୁଣି କାନ୍ଦନ୍ତେ ରାବଣ ।
ବାହାରିଲା ଇନ୍ଦ୍ରଜିତ ପ୍ରତିଜ୍ଞା କରିଣ ॥
ବ୍ରହ୍ମଶର ପେଷି ଋକ୍ଷ କପିଙ୍କି ମାଇଲା ।
ରାମ ଲକ୍ଷ୍ମଣ ଦୁହିଙ୍କି ମୋହେ ପକାଇଲା ॥
ବିଭୀଷଣ ଲୁଚିଥିଲା ପର୍ବତ ଗୁହାରେ ।
ହନୁମନ୍ତ ପଡ଼ିଥିଲା କେବଳ ଛଦ୍ମରେ ॥
ସେ ଦୁହେଁ ଯାଇଁ ସୁଷେଣ ପାଶରେ ମିଳିଲେ ।
ତାହାର ଆଦେଶେ ହନୁ ଔଷଧି ଆଣିଲେ ॥
ସେ ଗନ୍ଧେ ମୋହ ତେଜିଲେ ଦୁଇ ସହୋଦର ।
ଅବର ପ୍ରାଣ ପାଇଲେ ସର୍ବ ବନଚର ॥

ଅସୁରେ ନିଶ୍ଚିନ୍ତ ହୋଇ ରାତ୍ରେ ଶୋଇଥିଲେ ।
ସୁଗ୍ରୀବ ବାକ୍ୟେ ବାନର ପାଚେରୀ ଡେଇଁଲେ
ଅସୁରମାନଙ୍କ ଘରେ ଲଗାଇଲେ ଜୁଇ ।
ଯେ ଘରୁ ବାହାରେ ମାରି ପକାଇଲେ ତହିଁ ॥
ଲାଗିଲା ତୁମୁଳ ଯୁଦ୍ଧ ମଲେ ବହୁ କପି ।
ସେପରି କପି ମାଇଲେ ଅସୁରଙ୍କୁ କୋପି ॥
ସେହି ଯୁଦ୍ଧେ ଶୋଣିତାକ୍ଷ ଯୂପାକ୍ଷ କମ୍ପନ ।
ପ୍ରଜଙ୍ଘ କୁମ୍ଭ ଏ ପାଞ୍ଚ ହୋଇଲେ ନିଧନ ॥
କୁମ୍ଭର ମରଣ ଦେଖି ନିକୁମ୍ଭ ଧାଇଁଲା ।
ଘୋର ରଣ କରି ହନୁମନ୍ତ ହାତେ ମଲା ॥
ଏମାନଙ୍କ ମରଣ ଦେଖିଣ ଦଶଶିର ।
ଶୋକେ ମକ ରାକ୍ଷସକୁ ପେଷିଲା ସତ୍ୱର ॥
ସେ ଗୋଧୁ ଚର୍ମ ଗୁଡ଼ାଏ ରଥେ ଗୁଡ଼ାଇଲା ।
ତେନୁ ବୃଷ ବସ୍ତ୍ରା ରଥ ଉପରେ ରଖିଲା ॥
ସେ ରଥେ ବସି ଯୁଦ୍ଧକୁ କଲାକ ଗମନ ।
ଅଗ୍ନିଶରେ ତାକୁ ପୋଡ଼ିଦେଲେ ଯେ ଶ୍ରୀରାମ
ମକରାକ୍ଷ ବଧ ବାର୍ତ୍ତା ଶୁଣି ଦଶମାଥ ।
ପୁତ୍ରରଙ୍କ ଗୁଣ ସ୍ମରି କାନ୍ଦିଲା ବହୁତ ॥
ତରଣୀସେନର କଥା ତା ମନେ ପଡ଼ିଲା ।
ତାହାକୁ ଡକାଇ ରଣ ସ୍ଥାନକୁ ପେଷିଲା ॥
ବିଭୀଷଣ ପୁତ୍ର ଅଟେ ବିଷ୍ଣୁଙ୍କ ଭକତ ।
ଶ୍ରୀରାମଙ୍କ ସଙ୍ଗେ ରଣ କଲାକ ବହୁତ ॥
ସ୍ତୁତି କରୁଥାଏ ପୁଣି ରଣ କରୁଥାଏ ।
ତା ଯୁଦ୍ଧେ ବ୍ୟସ୍ତ ହୋଇଲେ ଯହୁଁ ରାମରାୟେ
ବିଭୀଷଣଙ୍କୁ ପୁଚ୍ଛନ୍ତେ ସେ କହିଲା ମାର ।
ତେଣୁ ରାମ ବ୍ରହ୍ମଶରେ ଛେଦିଲେ ତା ଶିର ॥
ଶିର ରାମନାମ କହି ଗଡ଼ି ଗଡ଼ି ଗଲା ।
ଦେଖି ବିଭୀଷଣ ନେତ୍ରୁ ଲୋତକ ବହିଲା ॥
ଅବନୀରେ ପଡ଼ି ଯହୁଁ ହୋଇଲା କାତର ।
ବହୁରୂପେ ପ୍ରବୋଧିଲେ ତାକୁ ରଘୁବୀର ॥
ଏହାର ମରଣ ବାର୍ତ୍ତା ପାଇ ଦଶାନନ ।
ବୁଦ୍ଧି ନ ସ୍ଫୁରିଲା କ୍ଷଣେ ହୋଇଲା ମଉନ ॥
ପାଖ ଅସୁରେ ବୋଇଲେ ବିରସ କିପାଇଁ ।
ବୀରବାହୁ ନାମେ ତୁମ୍ଭ ପୁତ୍ରେକ ଅଛଇ ॥
ତାହାକୁ ଅଣାଇ ଦେବ ପେଶନ୍ତୁ ରଣକୁ ।
ସେ ନିଶ୍ଚେ ମାରି ଆସିବ ନର ବାନରଙ୍କୁ ॥

ଅସୁରଙ୍କଠାରୁ ଶୁଣି ତାକୁ ଅଣାଇଲା ।
ଗଉରବ କରି ସର୍ବ ବୃତ୍ତାନ୍ତ କହିଲା ॥
ରାବଣ କଥାରେ ସେହି ଯୁଦ୍ଧକୁ ଚଳିଲା ।
କପିଙ୍କି ବିନାଶି ଲକ୍ଷ୍ମଣଙ୍କୁ ମୋହ କଲା ॥
ଏହା ଶୁଣି ରାମ ଯାଆନ୍ତେ ଯୁଦ୍ଧକୁ ସତ୍ୱରେ ।
ବୀରବାହୁ ଯୁଦ୍ଧ କଲା ନାନା ପରକାରେ ॥
ବୀରବାହୁ କଣ୍ଠେ ଖଳ ପୁରୁଷ ରହିଲେ ।
ସରସ୍ୱତୀ ଶ୍ରୀରାମଙ୍କ କଣ୍ଠେ ବିଜେ କଲେ ॥
ଲାଗିଲା ତ୍ରିମୂଳି ଯୁଦ୍ଧ ଦୁଇଜଣଙ୍କର ।
ବୈଷ୍ଣବାସ୍ତ୍ରେ ଛେଦିଲେକ ରାମ ତାର ଶିର ॥
ତହୁଁ ରାମ ବିଜେ କଲେ ନିଜ କୁଟିରକୁ ।
ସେନାପତିମାନେ ଗଲେ ଆପଣା ଠଣାକୁ ॥
ସେ ରାତ୍ରେ ରାମ ଲକ୍ଷ୍ମଣ ଦେଖିଲେ ସ୍ୱପନ ।
ଇନ୍ଦ୍ରଜିତକୁ ନିଅନ୍ତି କୃତାନ୍ତକ ଗଣ ॥
ବୀରବାହୁର ମରଣ ଶୁଣି ବିଂଶପାଣି ।
ଅତ୍ୟନ୍ତ ଶୋକ କରିଣ ପଡିଲା ଅବନୀ ॥
ଇନ୍ଦ୍ରଜିତ ଯାଇ ତାକୁ ବହୁ ବୁଝାଇଲା ।
ରାମଙ୍କୁ ମାରିବା ପାଇଁ ପ୍ରତିଜ୍ଞା କରିଲା ॥
ସେ ରାତ୍ରେ ପ୍ରମିଳା ଇନ୍ଦ୍ରଜିତର ମହିଳା ।
କୁସ୍ୱପ୍ନ ଦେଖି ପ୍ରଭାତେ ବସି କାନ୍ଦୁଥିଲା ॥
ତାହାକୁ ପ୍ରବୋଧ ଦେଇ ରାବଣର ପୁଅ ।
ସୈନ୍ୟଙ୍କୁ କହିଲା ତୁମ୍ଭେ ବେଗେ ସଜହୁଅ ॥
ନିଜେ ଯାଇ ଖିରତରେ ହୋଇ ବୀରବେଶ ।
ନିକୁମ୍ଭିଲା ବଟପାଶେ ହେଲା ପରବେଶ ॥
ହୋମ କରନ୍ତେ ଅଗ୍ନି ତା ପୂଜା ନ ଘେନିଲେ
ବହୁକ୍ରୋଧକରି ତାକୁ ବରହିଁ ନ ଦେଲେ ॥
ବିମୁଖୀ ହୋଇ ଇନ୍ଦ୍ରାରି ଯୁଦ୍ଧସ୍ଥାନେ ଗଲା ।
ମାୟାସୀତା କରି ରଥେ ଘେନି ଯାଇଥିଲା ॥
ବହୁତ ସମର କରି ହନୁ ସାକ୍ଷାତରେ ।
ଖଡ଼ଗରେ ମାୟାସୀତା ହାଣିଲା ସତ୍ୱରେ ॥
ଶୁଣି ଶ୍ରୀରାମ ଲକ୍ଷ୍ମଣ ବାନରେ କାନ୍ଦିଲେ ।
ବିଭୀଷଣ ବଚନରେ ସବେ ତୁନି ହେଲେ ॥
ବିଭୀଷଣ ବଚନରେ ଲକ୍ଷ୍ମଣଙ୍କୁ ନେଲେ ।
ତାଙ୍କ ସଙ୍ଗେ ହନୁଆଦି ସେନାପତି ଗଲେ ॥
ଅସୁରର ହୋମ ଭଙ୍ଗି କରନ୍ତେ ବିନଷ୍ଟ ॥
ଆସନ ଛାଡ଼ି ଉଠିଲା ଇନ୍ଦ୍ରଜିତ ଦୁଷ୍ଟ ॥

ଏହି ଦୁଇ ମହାଯୋଦ୍ଧା କଲେ ଘୋରରଣ ।
ସର୍ବଶେଷେ ଇନ୍ଦ୍ର ଅସ୍ତ୍ର ଧରିଲେ ଲକ୍ଷ୍ମଣ ॥
ଶ୍ରୀରାମ ସୁମରି ତାହା ଶୀଘ୍ର ଛାଡ଼ିଦେଲେ ।
ଇନ୍ଦ୍ରଜିତର ଶିରକୁ କାଟି ପକାଇଲେ ॥
ଇନ୍ଦ୍ରଜିତ ବଧ ବାର୍ତ୍ତା ଶୁଣିଣ ଶ୍ରୀରାମ ।
ଲକ୍ଷ୍ମଣଙ୍କୁ କୋଳ କରି କଲେ ଆଲିଙ୍ଗନ ॥
ତତ୍ପରେ ସ୍ନାନାଦି କରି ଫଳମୂଳ ଖାଇ ।
ସକଳେ ଶୋଇଲେ ଶ୍ରମ ହରିବାର ପାଇଁ ॥
ଇନ୍ଦ୍ରଜିତ ମଲା କଥା ଚର ମୁଖୁ ଶୁଣି ।
ହା-ପୁତ୍ର କହି ରାବଣ ପଡ଼ିଲା ଧରଣୀ ॥
ମନ୍ଦୋଦରୀ ରାଣୀ ଶୁଣି କାନ୍ଦିଲା ବହୁତ ।
ପ୍ରମିଳାର ଶୋକ କେହୁ କରିବାକ ଅନ୍ତ ॥
ପୁରଯାକରେ କ୍ରନ୍ଦନ ଚହଳ ପଡ଼ିଲା ।
ସେଦିନ ରାତିଟା ଶୋକ ଦୁଃଖେ ପାହିଗଲା ॥
ପ୍ରଭାତ ହୁଅନ୍ତେ ଦଶ ବଦନ କ୍ରୋଧରେ ।
ବୀରଙ୍କୁ କହିଲା ସଜ ହୁଅ ହେ ବେଗରେ ॥
ଏମନ୍ତ କହିଣ ନିଜେ ହେଲା ବୀରବେଶ ।
ସୈନ୍ୟସହ ଯୁଦ୍ଧ ସ୍ଥାନେ ହୋଇଲା ପ୍ରବେଶ ॥
ତେଣେ ପ୍ରଭାତରୁ ରାମ ନିତ୍ୟକର୍ମ ସାରି ।
କୁଟୀରରେ ବସିଥିଲେ ମୃଗ ଚର୍ମୋପରି ॥
ବାରତା ପାଇ ସକଳେ ଯୁଦ୍ଧ କରି ଗଲେ ।
ରାବଣର ଅନୁଚରମାନଙ୍କୁ ମାରିଲେ ॥
ମହୋଦର ମହାପାର୍ଶ୍ୱ ଆଦି ବିରୂପାକ୍ଷ ।
ଏମାନଙ୍କୁ ମାରିଲେକ ବେଢ଼ି ହରି ଋକ୍ଷ ॥
ସେନାପତି ମୃତ୍ୟୁ ଦେଖି ରାବଣ ଆଇଲା ।
ରାମ ଲକ୍ଷ୍ମଣଙ୍କ ସଙ୍ଗେ ବହୁ ରଣ କଲା ॥
ଏକଘ୍ନୀ ଶକତି କାଢ଼ି ଧଇଲା ହସ୍ତରେ ।
ମାରନ୍ତେ ପଡ଼ିଲା ଯାଇଁ ଲକ୍ଷ୍ମଣ ଛାତିରେ ॥
ଭୂମିରେ ପଡ଼ିଲେ ବୀର ହୋଇଣ ଅଚେତ ।
ତାକୁ କୋଳେ ଧରି ରାମ କାନ୍ଦିଲେ ବହୁତ
ସୁଷେଣ ବୈଦ୍ୟ କହନ୍ତେ ଔଷଧ ବିଧାନ ।
ଶୁଣି ବେଗହୋଇ ଗଲା ବୀର ହନୁମାନ ॥
ଉଡ଼ିଯାଇ ଶୂନ୍ୟେ ବହୁ ଅସୁର ମାଇଲା ।
ସରୋବରେ ପଶି କୁମ୍ଭୀରୀଙ୍କ ନାଶ କଲା ॥
ତପୀରୂପେ କାଳନେମୀ ଦୈତ୍ୟକୁ ସଂହାରି ।
ଗନ୍ଧମାଦନେ ପ୍ରବେଶ ହେଲା ଯାଇ ଚରି ॥

ଔଷଧ ନ ଶକ୍ତି ହନୁଗିରି ଉପାଡ଼ିଲା ।
ମସ୍ତକେ ନେଇ ଅଯୋଧ୍ୟା ବାଟେ ଆସୁଥିଲା ॥
ଭରତ ବାଟୁଳିରେ ମୋହ ଯାନ୍ତେ ହନୁମାନ ।
ନିଜ ନିଜ ପରିଚୟ ଦେଲେ ଦୁଇଜଣ ॥
କେ କାହାକୁ ନ କହିବ ଏ ପ୍ରତିଜ୍ଞା କଲେ ।
ଏହି ବିଷୟ କ୍ରମରେ ପଢ଼ିବାର ବେଳେ ॥
ଭରତ ହନୁମାନର ମୁଖକୁ ଅନାଇ ।
ଇଷତ ହସିଲେ ଜାଣି ନ ପାରିଲେ କେହି ।
ଦୁହିଙ୍କର ହର୍ଷ ମୁଖ ଶ୍ରୀରାମ ଜାଣିଲେ ।
କିପାଇଁ ହସୁଛ ଦୁହେଁ ବୋଲି ପଚାରିଲେ ॥
ଭରତ ବୋଇଲେ ଦେବ ସତ ଏହି କଥା ।
ଯାହା ଲେଖିଛନ୍ତି ମୁନି କେବେ ନୁହେ ମିଥ୍ୟା
ଏ ଉତ୍ତରୁ ହନୁମାନ ଫେରି ଦେନି ଗଲା ।
ସୁଷେଣ ଔଷଧି ବାଟି ଯହୁଁ ପିଆଇଲା ॥
ନିଦ୍ରାରୁ ଉଠିଲା ପରି ଉଠିଲେ ଲକ୍ଷ୍ମଣ ।
ଦେଖି ମହା ଆନନ୍ଦିତ ହୋଇଲେ ଶ୍ରୀରାମ ॥
ଚାର ଜଣାଇଲା ଦେବ ଶୁଣ ଲଙ୍କସାଇଁ ।
ଶକତିରୁ ବଞ୍ଚିଲଣି ସେ ଜଟିଆ ଭାଇ ॥
ଶୁଣିଣ ଅତି ବିରସ ହୋଇଲା ରାବଣ ।
ବୋଇଲା କପରି ତହୁଁ ପାଇଲା ପରାଣ ॥
ପୁତ୍ର ନାତି ଅଣନାତି ସମସ୍ତ ମାଇଲା ।
ତାହାକୁ ମାରନ୍ତେ ସେହି କେବେହେଁ ନ ମଲା
ଏହି କଥା ଭାଳି ଭାଳି ପାହିଗଲା ନିଶା ।
ଏ ସମୟେ ପୁଣ ପାଶେ ଅଇଲା ନିକଷା ॥
ବୋଇଲା ଅରେ ରାବଣ କଥା ନ ମାନିଲୁ ।
ପରଶେଷେ ଆପଣାର ବଂଶ ମରାଇଲୁ ॥
ତୋର ଏକ ପୁଅ ଅଛି ପାତାଳରେ ଯାଇଁ ।
ସେ ତୋର ଶତ୍ରୁ ମାରିବ ମାୟାବୀ ଅଟଇ ॥
ଏମନ୍ତ ଶୁଣି ରାବଣ ତାକୁ ସୁମରିଲା ।
ପାତାଳ ପୁରରୁ ଆସି ସେହି ଦେଖା ଦେଲା ॥
ତା ଆଗେ କହିଲା ପୂର୍ବ ବିଷୟ ସକଳ ।
ସେ ବୋଇଲା ତୁମ୍ଭ ଶତ୍ରୁ ମାରିବ ନ ଭାଳ ॥
ଏହା କହି ହରି ନେଲା ଶ୍ରୀରାମ ଲକ୍ଷ୍ମଣ ।
ବନ୍ଧ କରିଣ ରଖିଲା ପାତାଳ ପୁରେଣ ॥
ସେଠାବକୁ ହନୁ ଯାଇ ନାନା କୌଶଳରେ
ଅସୁର ବଧି ଦୁହିଙ୍କୁ ମୁକ୍ତକରି ଖରେ ॥
ମକରଧ୍ୱଜକୁ ତହୁଁ ନୃପତି କରାଇ ।
ସୁବଳେ ମିଳିଲା ଦୁଇ ଭାଇ ସଙ୍ଗେ ନେଇ ॥
ଦୁତମୁଖୁ ବଧ ବାର୍ତ୍ତା ମହୀରାବଣର ।
ଶୁଣି ଦଶଶିର ଶୋକ କଲାକ ଅପାର ॥
ସ୍ଥୂଳଜଙ୍ଘନାମେ ତାର ଏକ ନାତି ଥିଲା ।
ତାହାକୁ ଡକାଇ ରଣ ସ୍ଥାନକୁ ପେଷିଲା ॥
ତା ସଙ୍ଗରେ ଗଲେ ମୋକ୍ଷ କର୍ଣ୍ଣ ଜଟାସୁର ।
ମହାକର୍ଣ୍ଣ ଚନ୍ଦ୍ର ନେତ୍ର ଆଉ ସିଂହାସୁର ॥
ଉଲ୍କ୍ୟ ଏ ଛଅଜଣ ପ୍ରତିଜ୍ଞାକୁ କରି ।
ସୈନ୍ୟମଧ୍ୟେ ପଶି ବହୁ କପି ଦେଲେ ମାରି ॥
ଦେଖି କପିବୀରମାନେ ଘେନିଣ ପଥର ।
ଛେଦ ପକାଇଲେ ଏହି ଛଅଙ୍କର ଶିର ॥
ସ୍ଥୂଳଜଙ୍ଘକୁ ଶ୍ରୀରାମ ମାରି ଅଗ୍ନି ବାଣ ।
ପୋଡ଼ି ପକାଇ ତାହାର ନେଲେ ଯେ ପରାଣ
ସ୍ଥୂଳଜଙ୍ଘ ବଧ ବାର୍ତ୍ତା ଶୁଣି ଲଙ୍କସାଇଁ ।
ଗୁରୁ ଶୁକ୍ରଙ୍କ ପାଶରେ ପହଞ୍ଚିଲା ଯାଇ ॥
ବଂଶ ନାଶର ବିଷୟ ତାହାଙ୍କୁ କହିଲା ।
ଶୁଣି ଶୁକ୍ରଙ୍କ ମନରେ ଦୟା ଉପୁଜିଲା ॥
ସର୍ବଜୟ ମନ୍ତ୍ର ତାକୁ ଦେଇଣ କହିଲେ ।
ଏ ମନ୍ତ୍ରେ ନିର୍ବିଘ୍ନେ ଲକ୍ଷେ ଆହୁତିକ ଦେଲେ
ଜିଣି ନ ପାରିବେ ରାମ ହେଲେ ନାରାୟଣ ।
ବିଘ୍ନ ହେଲେ କିଛି ଫଳ ନୋହିବ ଯେ ଜାଣ
ସେ ମନ୍ତ୍ର ପଢ଼ି ରାବଣ କରୁଥିଲା ହୋମ ।
ବିଭୀଷଣର ମୁଖରୁ ଶୁଣିଣ ଶ୍ରୀରାମ ॥
ପଠାଇଲେ ହନୁ ଆଦି ବୀରଙ୍କୁ ସେଠାକୁ ।
ସେ ଯାଇଁ ଭାଙ୍ଗିଲେ ଦଶଶିରର ହୋମକୁ ॥
ମନ୍ଦୋଦରୀ ରାବଣକୁ ଅନେକ ବୁଝାଇ ।
କହିଲା ନାଥ ସୀତାଙ୍କୁ ଦେବା ଯେ ଫେରାଇ
ତହିଁରେ ରାବଣ କେବେ ନ ହେଲା ସମ୍ମତ ।
ବୋଇଲା ରାମ ମାଇଲେ ହୋଇବି ମୁକତ ॥
ରାଜା ରାଣୀ ସେହି ରାତ୍ରେ ଦେଖିଲେ ସ୍ୱପନ
ଶ୍ରୀରାମବାଣେ ରାବଣ ହୋଇଲା ନିଧନ ॥
ପ୍ରଭାତ ହୁଅନ୍ତେ ବହୁ ସୈନ୍ୟ ସଙ୍ଗେ ନେଇ
ଯୁଦ୍ଧକୁ ବାହାର ହେଲା ମହାକ୍ରୋଧ ବହି ॥
ବହୁତ କପି ମାରନ୍ତେ ଧରି ଶରାଶନ ।
ବାନର ବାହିନୀ ରାମେ ପଶିଲେ ଶରଣ ॥

ରଥସହ ଦିବ୍ୟ ଅସ୍ତ୍ର ଇନ୍ଦ୍ର ପଠାଇଲେ ।
ସେ ରଥେ ବସିଣ ରାମଚନ୍ଦ୍ର ଯୁଦ୍ଧକଲେ ॥
ସାତଦିନ ସାତରାତି ଅବିଶ୍ରାନ୍ତ ଯୁଦ୍ଧ ।
କଲନା ନ ହେଲାକେତେଦୈତ୍ୟହେଲେ ବଧ
ସମରସ୍ଥାନେ ଖେଚରମାନେ ସେ ହସିଲେ ।
ରାମଙ୍କ ଧନୁ ମଣ୍ଡଳ ପରି ଦେଖାଗଲେ ॥
ଅଗସ୍ତିଙ୍କ ଦେବା ଶର ଧନୁରେ ବସାଇ ।
ବିନ୍ଧି ରାବଣ ଦେହକୁ ଦିଅନ୍ତେ ଫୁଟାଇ ॥
ରଥର ଉପରେ ବୀର ଢଳିଣ ପଡ଼ିଲା ।
କେତେକ କ୍ଷଣରେ ଚେତା ପାଇ ଯୁଦ୍ଧକଲା ॥
ବହୁଶର ମାରି ରାମ ହୋଇନ୍ତେ ଅସ୍ତ୍ର ବ୍ୟସ୍ତ ।
ମାତଲୀ କହିଲା ମୃତ୍ୟୁ ଶରର ବୃତ୍ତାନ୍ତ ॥
କପଟରେ ହନୁ ମନ୍ଦୋଦରୀ ପାଶେ ଗଲା ।
ରାବଣର ମୃତ୍ୟୁ ଶର ଘେନିଣ ଆସିଲା ॥
ସେ ଶରକୁ ଧରି ରାମ କରନ୍ତେ ପ୍ରହାର ।
ବୁକୁ ଫୁଟିଣ ରାବଣ ପଡ଼ିଲା ସେଠାର ॥
ରଥ ଉପରୁ ସେକ୍ଷଣି ଭୂମିରେ ପଡ଼ିଲା ।
ତାହାର ଦେହରେ ଆଉ ପ୍ରାଣ ନ ରହିଲା ॥
ଭାଇ ମରନ୍ତେ କ୍ରନ୍ଦନ କଲା ବିଭୀଷଣ ।
ତାହାକୁ ପ୍ରବୋଧ କଲେ ଶ୍ରୀରଘୁ ନନ୍ଦନ ॥
ଲଙ୍କାରେ ବିଭୀଷଣକୁ ଅଭିଷେକ କଲେ ।
ପାଟରାଣୀ କରି ମନ୍ଦୋଦରୀ ସମର୍ପିଲେ ॥
ସୀତାଙ୍କୁ ଆଣି ଅଗ୍ନିରେ ପରୀକ୍ଷା ସେ କଲେ
ତାଙ୍କ ପାଇଁ ବ୍ରହ୍ମା ଆସି ଅନେକ କହିଲେ ॥
ପିତା ଦଶରଥ ନାନା ରୂପେ ବୁଝାଇଲେ ।
ତେବେ ସୀତାଙ୍କୁ ଶ୍ରୀରାମ ଗ୍ରହଣ କରିଲେ ॥
ଯେତେ ଋକ୍ଷ କପିଗଣେ ଦେଇଥିଲେ ପ୍ରାଣ ।
ରାମ ବାକ୍ୟେ ଶଚୀପତି ଦେଲେ ଜୀବଦାନ ॥
ଦେବତାଏ ନିଜସ୍ଥାନେ କରନ୍ତେ ଗମନ ।
ଅଯୋଧ୍ୟାକୁ ଆସିବାକୁ ରାମ କଲେ ମନ ॥
ସୀତା ସହ ପୁଷ୍ପକରେ ବିଜେ ରଘୁନାଥ ।
ଲକ୍ଷ୍ମଣ ସହ ସୁଗ୍ରୀବ ସଇନ ସମସ୍ତ ॥
ପୁଷ୍ପକ ରଥରେ ଯହୁଁ ଆରୋହଣ କଲେ ।
ରଘୁବର ଉତ୍ତରାଭିମୁଖରେ ଗମିଲେ ॥
ଭରଦ୍ୱାଜଙ୍କ ଆଶ୍ରମେ ହୋଇଲେ ପ୍ରବେଶ ।
ହନୁକୁ ଗିଳୁ ଯେ ଥିଲା କବନ୍ଧ ରାକ୍ଷସ ॥

ରାମ ନାମ ମୋକ୍ଷହୋଇ ରାକ୍ଷସ ସେଠାରେ ।
ରହି ତହିଁ ପରଦିନ ପ୍ରଭାତ କାଳରେ ॥
ଆଗକରି ଅଯୋଧ୍ୟାକୁ ପେଶିଲେ ମାରୁତି ।
ସେ ସମୟେ ଲକ୍ଷେ ରାଜା ଭରତ ଆଣିଛନ୍ତି ॥
ଏହି ସମୟେ ରାମଙ୍କ ବାର୍ତ୍ତା ହନୁଦେଲା ।
ଶୁଣି ଭରତଙ୍କ ମନରେ ଆନନ୍ଦ ଜନ୍ମିଲା ॥
ରାମଙ୍କୁ ଆଣିବା ପାଇଁ ଭରତ ଯାଉଥିଲେ ।
ଏ ସମୟେ ରାମଚନ୍ଦ୍ର ଆସି ପହୁଞ୍ଚିଲେ ॥
ଅଭିଷେକ ହେଲେ ରାଜ ସିଂହାସନେ ବସି ।
ନାନାଦେଶୁ ଆସିଥିଲେ ବହୁତ ଯେ ଋଷି ॥
ଏଥି ଉତ୍ତାରୁ ଅଗସ୍ତି ମହର୍ଷି ଆଇଲେ ।
ରାବଣର ଜନ୍ମ କଥା ବିସ୍ତାରି କହିଲେ ॥
ରାଜାମାନେ ଅଯୋଧ୍ୟାରୁ ଗଲେ ବିଦାହୋଇ
ଯେ ଯାହାର ଅନୁରୂପେ ସନମାନ ପାଇ ॥
ବିଭୀଷଣ ହନୁମନ୍ତ ସୁଗ୍ରୀବାଦି ଗଲେ ।
ରାଜାହୋଇ ରାମ ବହୁ ସୁଖଭୋଗ କଲେ ॥
ସୀତାଙ୍କ ନାମରେ ଶୁଣି ଅପବାଦ ବାଣୀ ।
ତାହାଙ୍କୁ ତେଜିଲେ ବନେ ରାମ ରଘୁମଣି ॥
ସେହି ହୋଇଥିଲେ ପାଞ୍ଚମାସ ଗର୍ଭବାସ ।
ଯାଇଣ ରହିଲେ ବାଲ୍ମୀକଙ୍କ ଆବାସ ॥
ଗଙ୍ଗା ତୀର ବନେ ସୀତା ଛାଡ଼ିଣ ଲକ୍ଷ୍ମଣ ।
ଗଙ୍ଗା ଏ ପାଖରେ କଲେ ବହୁତ କ୍ରନ୍ଦନ ॥
ସୁମନ୍ତ୍ର କହିଲା ତାଙ୍କୁ ପୂର୍ବର ବିଷୟ ।
ଶୁଣି ଲକ୍ଷ୍ମଣ ଛାଡ଼ିଲେ ମନରୁ ବିସ୍ମୟ ।
ଅଯୋଧ୍ୟା ଆସି ରାମଙ୍କୁ ଦରଶନ କଲେ ।
ସୀତା କଥା ଶୁଣି ରାମ ବହୁତ କାନ୍ଦିଲେ ॥
ସୁବର୍ଣ୍ଣ ସୀତା ଗଢ଼ାଇ ରଖିଲେକ ପାଶ ।
ତାର ମୁଖ ଦେଖୁଥାନ୍ତି ରଜନୀ ଦିବସ ॥
କୁକୁର ବିପ୍ର ନାମରେ କରନ୍ତେ ଗୁହାରି ।
ଶିବ ଦେଉଳେ ରଖିଲେ କରି ପଡ଼ିହାରୀ ॥
ଲବଣର ଦୁଷ୍ଟପଣ କହନ୍ତେ ଋଷିଏ ।
ସୈନ୍ୟସହ ଶତ୍ରୁଘ୍ନଙ୍କୁ ପେଶି ରାମରାୟେ ॥
ଶତ୍ରୁଘ୍ନ ଯାଇ ବାଲ୍ମୀକି ଆଶ୍ରମେ ରହିଲେ ।
ସେହି ରାତେ ସୀତା ଦୁଇ ପୁତ୍ର ପ୍ରସବିଲେ ॥
ସେ ପୁତ୍ରଙ୍କ ନାମ ଲବ କୁଶ ଦେଲେ ମୁନି ।
ବିଷାଦିତ ହେଲେ ଏହା ସଭିଙ୍କନେ ଶୁଣି ॥

ତହିଁ ଆରଦିନ ଶତ୍ରୁଘ୍ନ ତହୁଁ ଗଲେ ।
ମଧୁପୁର ନିକଟରେ ପ୍ରବେଶ ହୋଇଲେ ।
ସେ ସମୟେ ମଧୁଦୈତ୍ୟ ପାରିଧି କାରଣେ ॥
ଶିବଶୂଳ ଗୃହେ ରଖି ଯାଇଥିଲେ ବନେ ॥
ତାହାକୁ ଅପେକ୍ଷା କରି ଶତ୍ରୁଘ୍ନ ବାଟରେ ।
ରହିଲେ ଆପଣା ସୈନ୍ୟମାନଙ୍କ ସଙ୍ଗରେ ॥
ସେ ଆସନ୍ତେ ତାହାସଙ୍ଗେ କଲେ ବହୁରଣ
ଶେଷେ ତା ମସ୍ତକ କାଟି କଲେକ ନିଧନ ॥
ଆକାଶେ ରହିଣ ଦେବେ ପୁଷ୍ପ ବୃଷ୍ଟିକଲେ ।
ମଥୁରା ବୋଲି ରାଜ୍ୟର ନାମ ଦେଇ ଗଲେ
ମଥୁରାରେ ଶତ୍ରୁଘ୍ନ ହୋଇ ନରେଶ୍ୱର ।
ବାରବରଷ ପାଳିଲେ ତହିଁ ପ୍ରଜାବର ॥
ରାମଙ୍କୁ ଦେଖିବା ପାଇ ତାହାଙ୍କର ମନ ।
ଉଦ୍‌ବେଗ ହୁଅନ୍ତେ ତହୁଁ କରିଲେ ପ୍ରସ୍ଥାନ ॥
ଅଯୋଧ୍ୟା କଟକେ ଆସି ରାମଙ୍କୁ ଭେଟିଲେ ।
ଦୁଇଦିନ ରହି ପୁଣି ମଥୁରାକୁ ଗଲେ ॥
ଦିନେ ରାମ ଯାଇଥିଲେ ମୃଗୟା କରିଣ ।
ଗୁହାରି କଲେ ଉଲୂକ ଗୃଧ୍ର ଦୁଇଜଣ ॥
ଗୃଧ୍ରକୁ ମୁକ୍ତ କରି ଗଲେ ନିଜପୁର ।
ବ୍ରାହ୍ମଣ ପୁତ୍ର ମରନ୍ତେ ଆଇଲା ସତ୍ୱର ॥
ଶବକୁ ସିଂହଦୁଆରେ ରଖିଣ କାନ୍ଦିଲା ।
ଦ୍ୱାରୀ ଯାଇ ଶ୍ରୀରାମଙ୍କୁ ଏହା ଜଣାଇଲା ॥
ତା କଥା ଶୁଣି ଶ୍ରୀରାମ ବିସ୍ମିତ ହୋଇଲେ ।
ଏ ସମୟେ ନାରଦ ଯେ ତହିଁ ପହଞ୍ଚିଲେ ॥
ସେ କହନ୍ତେ ଦ୍ୱିଜପୁତ୍ର ମରିବା କାରଣ ।
ଶୂଦ୍ର ତପୀକି ମାଇଲେ ଯାଇଣ ଶ୍ରୀରାମ ॥
ଶୂଦ୍ର ତପୀବଧ ହୋନ୍ତେ ସେ ଦ୍ୱିଜକୁମର ।
ପ୍ରାଣ ପାଆନ୍ତେ ବ୍ରାହ୍ମଣ ଗଲା ନିଜଘର ॥
ଦେବତାଏ ଶ୍ରୀରାମଙ୍କୁ ସାଧୁ ସାଧୁ କଲେ ।
ଅଗସ୍ତ୍ୟଙ୍କ ନିକଟକୁ ଯିବାକୁ କହିଲେ ॥
ସେଠାରୁ ଅଗସ୍ତି ପାଶେ ଗଲେ ରଘୁରାଣ ।
ରାମଙ୍କୁ ଦେଖି ସେ ଦେଲେ ବହୁ ଆଭରଣ ॥
ତାହାଘେନି ଅଯୋଧ୍ୟାରେ ହୋଇଲେ ପ୍ରବେଶ
ଭାଇମାନଙ୍କୁ ଡକାଇ ଅଣାଇଣ ପାଶ ॥
ବୋଇଲେ ମୁହିଁ କରିବି ଯଜ୍ଞ ରାଜସୂୟ ।
ଭରତ ବୋଲେ ଅଶ୍ୱମେଧ ହୋଇଲା ନିଶ୍ଚୟ ॥
ନୈମିଷାରଣ୍ୟ ଗୋମତୀ ନଦୀର ତୀରରେ ।
ଯଜ୍ଞ ଆରମ୍ଭ ନିମନ୍ତ୍ରି ଆଣି ନୃପବରେ ॥
ସୁଗ୍ରୀବ ସଙ୍ଗରେ କପିମାନେ ଯେ ଆଇଲେ ।
ବିଭୀଷଣ ସଙ୍ଗେ ବହୁ ରାକ୍ଷସ ଯେ ଗଲେ ॥
ଏହି ପରଯନ୍ତେ ବେନି କୁମରେ ଗାଇଲେ ॥
ତହୁଁ ବାଲ୍ମୀକି ରାମଙ୍କୁ କୋମଳେ କହିଲେ ॥
ଆଜ ଯାହା ରହିଲା ହେ ଅଯୋଧ୍ୟା ଈଶ୍ୱର ।
ଶୁଣିବାକୁ ଯେବେ ଶ୍ରଦ୍ଧା ହୋଇବ ତୁମ୍ଭର ॥
ଯଜ୍ଞ ଶେଷରେ ଶୁଣିବ ୟାଙ୍କଠାରୁ ପୁଣି ।
ହେଉବୋଲି କହି ରାମ ଦେଲେ ମେଲାଣି
ଗୀତ ଶୁଣି ରଘୁନାଥ ଆନନ୍ଦିତ ହେଲେ ।
ଋଷିବୃନ୍ଦ ଘେନି ଯଜ୍ଞ ଶାଳରେ ରହିଲେ ॥
କହେ ଦୀନ ମହାଦେବ ଯୋଡ଼ି ବେନିକର ।
ଅଭୟ ପଦ୍ମରେ ସ୍ଥାନ ଦିଅ ରଘୁବୀର ॥

——o——

## ସୀତାଙ୍କର ପୁନରାଗମନ ଓ ପରୀକ୍ଷା

ନଗ୍ର ନରନାରୀ ଆଦି ପୁରବାସୀ ଜନେ ।
ଋଷ ରାକ୍ଷସ ବାନର ଋଷି ରାଜାମାନେ ॥
ଅତି ଶ୍ରଦ୍ଧାରେ ଶୁଣିଲେ ରାମାୟଣ ଗୀତ ।
ନୂତନ ଛନ୍ଦରେ ହୋଇଥିବାରୁ ରଚିତ ॥
ଆପଣା ଆପଣା ମଧ୍ୟେ ହେଲେ କୁହାକୁହି ।
ଶ୍ରୀରାମଙ୍କ ପୁତ୍ର ପ୍ରାୟେ ଦିଶୁଛନ୍ତି ଏହି ॥
ଏ ବିଷୟେ ନାନାତର୍କ ବିତର୍କ ହୋଇଲା ।
ଅବଶେଷେ ସୀତା ପୁତ୍ର ବୋଲି ସ୍ଥିର ହେଲା
ଡିମ୍ବରୁ ଉଦ୍ଭୂତ ହୋଇଥିବା ଛୁଆ ପ୍ରାୟେ ।
ରାମଚନ୍ଦ୍ରଙ୍କ ସଦୃଶ ସେ କୁମର ଦ୍ୱୟେ ॥
କଣ୍ଠାବଳକଳ ଧାରୀ ଯେବେ ନୋହିଥାନ୍ତେ
ରାମଙ୍କୁ ତାହାଙ୍କୁ କେହି ଚିହ୍ନି ନ ପାରନ୍ତେ ॥
ଯେତେ ଥିଲେ ତହିଁ ପୁର ଦେଶବାସୀ ଜନ
ଏହିପରି ହୁଅନ୍ତି ଯେ କଥୋପକଥନ ॥
ବୁଝିବଲେ ରାମଚନ୍ଦ୍ର ପୁଅ ବୋଲି ଜାଣି ।
ନୟନ ଯୁଗଳୁ ତାଙ୍କ ବହିଲାକ ପାଣି ॥
ଧାଇଁଯାଇ ଭରତବୀର କୁଶକୁ ତୋଳିଲେ ।
ହୃଦରେ ଲଗାଇ ସ୍ନେହେ ମୁଖେ ଚୁମ୍ବିଦେଲେ ॥

ଲକ୍ଷ୍ମଣ ଯାଇଁ ନବକୁ ଧରଣ କୋଳରେ ।
ହସ୍ତ ବୁଲାଇଲେ ତାର ଅଙ୍ଗମାନଙ୍କରେ ॥
ସୁଗ୍ରୀବ ଭ୍ରତ କୋଳରୁ ନେଇଣ କୁଶକୁ ।
କାଖେ କାନ୍ଧକର ଦେଖାଇଲେ ସେ ଯାବାକୁ
ନବକୁ ଲକ୍ଷ୍ମଣ କୋଳୁ ନେଲ ହନୁମାନ ।
ଭ୍ରତକୋଳରୁ କୁଶକୁ ନେଲ ବଭୀଷଣ ॥
ଏପର ଦୁଇପିଲଙ୍କୁ ସେନାପତମାନେ ।
ସ୍ନେହଭରେକୋଳକଲେ ନେଇ ଜଣେଜଣେ
ଦୁଇପିଲଙ୍କୁ ଶତ୍ରୁଘ୍ନ ଧର ଦୁଇପାଶେ ।
ମାତାମାନଙ୍କ ପାଶକୁ ନେଲେକ ହରଷେ ॥
ନାତଙ୍କ ଦେଖିଣ ରାଣୀ ମହାସୁଖୀ ହେଲେ ।
କାହିଁଥିଲ ବାପଧନ କହଣ କାନ୍ଦଲେ ॥
ବୋହୂକୁ ନ ଦେଖି ତାପ ଦ୍ୱିଗୁଣ ବଢ଼ିଲା ।
କହଲେ କ୍ରୂର ଦଇବ ତାକୁ ବାଦୀ ହେଲ ॥
ଦୁଇ ପିଲଙ୍କୁ ରାଣୀଏ ରଖିଲେ ପାଶରେ ।
ନିନ୍ଧାଇଲେ ବାସ ଭୂଷା ତାହାଙ୍କ ଅଙ୍ଗରେ ॥
ସୀତା ପୁଅକୁ ବାଲ୍ମୀକ ଅଣିବାର ଶୁଣି ।
ଦେଖିବା ପାଇ ଅଇଲେ ଅନେକ ରମଣୀ ॥
ପୁଅକୁ ଦେଖି ସେମାନେ କହନ୍ତ ଏସନ ।
ଧନ୍ୟ ନେନ ଦେଖିଲ୍କ ଯେ ସୀତାର ନନ୍ଦନ
ପ୍ରତ୍ୟକ୍ଷ ବାପର ପର ଏ ଦୁଇ କୁମର ।
ଦେଖାଯାଉଛନ୍ତ କଛୁ ନୁହଇ ଅନ୍ତର ॥
ଏହପର ନାରୀମାନେ ହେଲେ କୁହାକୁହ ।
ତେବେ ଜନକ ରାଜର୍ଷି ଋଷିଙ୍କି ଅନାଇ ॥
ସୀତାଙ୍କ କଥା କହବା ପାଇଁ ଠାରଦେଲେ ।
ଶୁଣି ବଶିଷ୍ଠ ଜାବାଳି ବାମଦେବ ଗଲେ ॥
ଶ୍ରୀରାମଙ୍କ ହସ୍ତ ଧର କହଲେ ବୁଝାଇ ।
ନିର୍ଦ୍ଦୋଷ ସୀତାଙ୍କୁ ଅଣ ଦୂତ ବରଗାଇ ॥
ସେସ ସମୟେ କରଯୋଡ଼ି କହଲେ ରାଜାଏ ।
ମୁନିଏ ଯାହା କହଲେ ଅଜ୍ଞା କର ରାୟେ ॥
ବଭୀଷଣ ହନୁମନ୍ତ ଅବର ସୁଗ୍ରୀବ ।
ମଲ୍ଲ ମହାମଲ୍ଲ ଆଉ ଯୂଥପତ ସବ ॥
ବନୟ କରଣ ଯହୁଁ ହେତୁ ବୁଝାଇଲେ ।
ସମସ୍ତଙ୍କ ବାକ୍ୟେ ରାମ ସନମତ କଲେ ॥
ଦୂତକୁ ଡ଼ାକ ବୋଇଲେ ଏହୁକ୍ଷଣି ଯିବୁ ।
ବାଲ୍ମୀକ ମୁନଙ୍କ ଅଗେ ମୋ କଥା କହବୁ ॥
ସୀତା ଯେବେ ସୁଚରତା ନିଷ୍ପାପ ଅଟନ୍ତ ।
ତେବେ ମହା ମୁନଙ୍କର ନେଇ ଅନୁମତ ॥
ନିଜ ଚରତ୍ରର ପରଚୟ ଦେଉ ଅସି ।
ଏଥିରେ ଯାହା କହବେ ସେହ ମହାଋଷି ॥
ତାହାଙ୍କର ଅଭପ୍ରାୟ ବୁଝିକର ମୋତେ ।
କହବୁ ଅସି ବଳମ୍ବ ନ ହୁଏ ଯେମନ୍ତେ ॥
ଶ୍ରୀରାମଙ୍କ ମୁଖୁଁ ଶୁଣି ଏମନ୍ତ ବଚନ ।
ବାଲ୍ମୀକଙ୍କ ଅଶ୍ରମକୁ ଗଲେ ଦୂତଗଣ ॥
ପ୍ରଜ୍ୱଳିତ ତେଜୋବନ୍ତ ମୁନଙ୍କି ପ୍ରଣାମ ।
କରଣ କହଲେ ଯାହା କହଥିଲେ ରାମ ॥
ଦୂତଙ୍କ ମୁଖରୁ ସବୁ ଶୁଣି ମୁନବର ।
ଶ୍ରୀରାମଙ୍କ ମନକଥା ଜାଣିଣ ସତ୍ୱର ॥
ବୋଇଲେ ନାରୀମାନଙ୍କ ପତ ଅଟେ ଗତ ।
ସ୍ୱାମୀରେ ଶପଥ ନିଶ୍ଚେ କରବେକ ସତୀ ॥
ଯାଇଁ ତୁମ୍ଭେ ଶ୍ରୀରାମଙ୍କୁ ଏ କଥା କହବ ।
ତାହାଙ୍କର କଥା କେବେ ଅନ୍ୟଥା ନୋହବ
ମୁନଙ୍କ ମୁଖରୁ ଏହା ଶୁଣି ଦୂତଗଣ ।
ରାମଙ୍କ ପାଶରେ ଅସି କଲେ ନିବେଦନ ॥
ରାମଚନ୍ଦ୍ର ଶୁଣି ଅତ ଅନନ୍ଦତ ହୋଇ ।
ସଭା ମଧ୍ୟେ ଥିବା ମୁନ ନୃପଙ୍କୁ ଅନାଇ ॥
ବୋଇଲେ ଦେଖିବା ପାଇଁ ଯାର ଶ୍ରଦ୍ଧାହେବ
ସେ ଅସିଣ ଜାନକୀଙ୍କ ଶପଥ ଦେଖିବ ॥
ରାମଙ୍କର ଏହ କଥା ଶୁଣିଣ ସକଳେ ।
ଶ୍ରୀରାମଙ୍କୁ ଧନ୍ୟବାଦ ଦେଲେ ଏକାବେଳେ ।
ଅବର ବୋଇଲେ ସବେ ଅନନ୍ଦର ଶବ୍ଦେ ।
ତୁମ୍ଭ ଭନ୍ନ ଏ କାର୍ଯ୍ୟ କେ କରବ ଜଗତେ ॥
ରାଜାଙ୍କ ମୁଖରୁ ଏହା ଶୁଣି ରଘୁନାଥ ।
ବୋଇଲେ କାଲି ଜାନକୀ କରବେ ଶପଥ ॥
ଏହା କହ ସେମାନଙ୍କୁ ଦେଲେକ ମେଲାଣି ॥
ପବ୍ଦନ ପ୍ରଭାତରୁ ଉଠି ରଘୁମଣି ॥
ଭରତ ଅଉ ଭାଇଙ୍କି ପାଶକୁ ହକାର ।
ବୋଇଲେ ଯାଅ ସଙ୍ଗରେ ଘେନି ଋଷିବର ॥
ମୁନଙ୍କି କହବ ସୀତା ଅସିବେ ସତ୍ୱର ।
ଶୁଣି ଭରତ ଲକ୍ଷ୍ମଣ ଶତ୍ରୁଘ୍ନ ଅବର ॥
ସୁଗ୍ରୀବ ହନୁ ଅଦଙ୍କି ସଙ୍ଗତରେ ନେଲେ ।
ବାଲ୍ମୀକଙ୍କ ଆଶ୍ରମରେ ପରବେଶ ହେଲେ ॥

ପୁଣି ରାମ ଯଜ୍ଞଶାଳେ ଉପସ୍ଥିତ ହୋଇ ।
ଦୂତ ପେଷି ସମସ୍ତଙ୍କୁ ଆଣିଲେ ଡ଼କାଇ ॥
ବିଶ୍ବାମିତ୍ର ବାମଦେବ ବଶିଷ୍ଠ ପୌଲସ୍ତ୍ୟ ।
ଜାବାଳି କଶ୍ୟପ ଶକ୍ତି ଗାର୍ଗବ ସୁବ୍ରତ ॥
ଭରଦ୍ୱାଜ ଗଉତମ ନାରଦ ପର୍ବତ ।
ଏମାନଙ୍କୁ ଆଦିକରି ବହୁ ତପୋବନ୍ତ ॥
ପ୍ରବେଶ ହୋଇଲେ ଆସି ସେ ସଭା ମଧ୍ୟରେ ।
ଆଉରି ଯେତେକ ଥିଲେ ରାକ୍ଷସ ବାନରେ ॥
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଗୃହବନ୍ତ ।
ଶପଥ ଦେଖିବା ପାଇଁ ଆଇଲେ ବହନ ॥
ମୁନିଙ୍କି ଅପେକ୍ଷା କରି ଅଛନ୍ତି ସକଳେ ।
ପାଷାଣ ପ୍ରତିମା ପ୍ରାୟେ ରହିଲେ ନିଶ୍ଚଳେ ॥
ତେବେ ବାଲ୍ମୀକି ମୁନି ସୀତାଙ୍କୁ ବୁଝାଇ ।
ଆଣିବା ବେଳେ ଉଚିତ ବିନୟରେ କହି ॥
ତ୍ରୈଲୋକ୍ୟ ଈଶ୍ୱରୀ ତୁମ୍ଭେ ରାମଙ୍କ ଘରଣୀ ।
ରହୁବରେ ବିଜେକର ଯେନ ମୋ ଦୟିନୀ ॥
ଜାନକୀ ବୋଇଲେ ରଥେ କାର୍ଯ୍ୟ ନାହିଁ କିଛି
ଯେତେବେଳେ ଯାଏ ସ୍ୱାମୀ ପାଦ ନ ଦେଖିଛି
ଆଉରି ରାଜ୍ୟ ଲୋକଙ୍କୁ ପ୍ରତେ କରାଇବ ।
ଏ ମହାକଷଣୁ ଯେବେ ମୁଁ ପାର ହୋଇବି ॥
ତେତେବେଳେ ତୁମ୍ଭ ବାକ୍ୟେ ବସିବି ରଥରେ
ଏ କିସ ବାଟ ଚାଲିଣ ଯିବି ମୁଁ ପାଦରେ ॥
ଚଉଦବରଷ ପାଦେ ବୁଲିଲି ହେ ବନେ ।
ସେ ସମୟେ କିଛି ଦୁଃଖ ନୋହୁଥିଲା ମନେ
ଏହି କି ବାଟ ତଯ ମୁହିଁ ଆରୋହିବି ରଥ ।
ଏ ବିଷୟେ ନ ବଳାଅ ମୋତେ ହେ ଭରତ
ବାଲ୍ମୀକି ମୁନି ଅଟନ୍ତି ମୋର ଧର୍ମ ପିତା ।
ଆଉରି ସଙ୍ଗେ ଅଛନ୍ତି ମୋର ଧର୍ମଭ୍ରାତା ॥
ଏମାନେ କରିବେ ପାଦଗତିରେ ଗମନ ।
ମୁହିଁ ରଥରେ ବସିବି ନୁହେ ଏ ବିଧାନ ॥
ଏହା ଶୁଣିଣ ଭରତ ନ ଦେଲେ ଉତ୍ତର ।
ସୀତାଙ୍କୁ ନେଲେ ଋଷିଏ କରି ପଛୁଆର ॥
ଆପଣେ ବାଲ୍ମୀକି ଋଷି ଆଗେ ଯାଉଛନ୍ତି ।
ତାଙ୍କ ପଛେ ସୀତା ଦେବୀ ଗମନ କରନ୍ତି ॥
ତାହାଙ୍କ ପଛେ ଭରତ ଶତ୍ରୁଘ୍ନ ଲକ୍ଷ୍ମଣ ।
ସୁମନ୍ତ ଅଙ୍ଗଦ ହନୁମନ୍ତ ବିଭୀଷଣ ॥
ଗନ୍ଧମାଦନ ପନଶ ଡ଼ାଲମ୍ବ ସୁଗ୍ରୀବ ।
ପନଶିଳ ଶତାବଳି ବସନ୍ତ ଜାମ୍ବବ ॥
ସୁଶୋଭନ କାଳାଞ୍ଜନ କୁମୁଦ କେଶରୀ ।
ନଳ ନୀଳ ସୁଷେଣ ଯେ ପାରିଜାତ ଶୌରି ।
ତାରାକ୍ଷ ଦ୍ୱିବିଦ ଆଉ ସମ୍ପାତ ରମଣ ।
ଏ ଆଦି ଯେତେକ ଥିଲେ ଋକ୍ଷ କପିଗଣ ॥
ସମସ୍ତେ ତାହାଙ୍କ ପଛେ ପଛେ ଯାଉଛନ୍ତି ।
ଦେଖଣାହାରୀଏ ମଧ୍ୟ ଥିଲେ ନାନାଜାତି ।
ବଢ଼ିଲା ନଦୀ ପରାୟେ ଯାଉଛନ୍ତି ଜନ ।
କି ଜାଣି ସମୁଦ୍ର ସଙ୍ଗେ ହେବ କି ମିଳନ ॥
ବ୍ରହ୍ମାଙ୍କୁ ଗୃହିଁ ଅମରେ କହନ୍ତି ଭାରତୀ ।
ଦେଖ ଠାକୁରାଣୀ ଯାନ୍ତି ପାଦେ କରି ଗତି ।
ବ୍ରହ୍ମା ବୋଇଲେ ହେ ଦେବ ଦେଖିବ ଏକ୍ଷଣି
ରସାତଳକୁ କରିବେ ବିଜେ ଠାକୁରାଣୀ ॥
ଏମନ୍ତ କହିଣ ବ୍ରହ୍ମା ନସଠାରେ ରହିଲେ ।
ଋଷିଙ୍କ ସହିତେ ସୀତା ଗଙ୍ଗାକୂଳେ ଗଲେ ॥
ନାବେ ବସି ଏ କୂଳକୁ ଆଇଲେକ ଯହୁଁ ।
ଦେଖିବାକୁ ଆଉ ଲୋକ ଜମାହେଲେ ତହୁଁ ॥
ସୀତାଙ୍କୁ ଦେଖି ଏପରି କଲେକ ବିଚାର ।
ନୟନେ ଦେଖିଲୁ ଧନ୍ୟ ତପସ୍ୟା ଆମ୍ଭର ॥
ବିହି ବସି ଗଢ଼ିଥିଲା ଯାଙ୍କୁ କେତେକାଳ ।
ତ୍ରିଭୁବନେ ନ ଥିବ ଏ ରୂପ ସମତୁଲ ॥
ବିନାଦୋଷରେ କପାଇଁ ତେଜିଲେକ ରାୟ ।
କୁଳିଶୁ କଠିନ ଅଟେ ରାମଙ୍କ ହୃଦୟ ॥
ଏବେ ଦୁଇପୁତ୍ର ଦେଖି ଅନୁଗ୍ରହ କଲେ ।
ଭାଇମାନଙ୍କୁ ପଠାଇ ସତୀ ଆଣାଇଲେ ॥
କେଉଁ କଥା ତହିଁ ହେବ ଆସ ହେ ଶୁଣିବା ।
ରାମ ସୀତାଙ୍କର ଭେଟ ଦେଖିଣ ଆସିବା ॥
ଏପରି କହି ତାହାଙ୍କ ପଛେ ପଛେ ଗଲେ ।
ଯଜ୍ଞଶାଳର ନିକଟେ ପରବେଶ ହେଲେ ॥
ଭରତ ଲକ୍ଷ୍ମଣ ଶତ୍ରୁଘ୍ନ ସୁଗ୍ରୀ ବିଭୀଷଣ ।
ଆଗ ଯାଇ ଶ୍ରୀରାମଙ୍କୁ କଲେ ଦରଶନ ॥
ବାଲ୍ମୀକିଙ୍କ ପଛେ ପଛେ ଯାଉଛନ୍ତି ସତୀ ।
ଅଭିମାନେ ଶ୍ରୀମୁଖକୁ ନତ କରିଛନ୍ତି ॥
ଦୂରରୁ ଦେଖି ସୀତାଙ୍କୁ ରାମ ମନେ ଭାବି ।
କେତେଦିନରେ ଦେଖିଲି ମୋ ପ୍ରାଣବାନ୍ଧବୀ

ହରଷ ବିଷାଦେ ସଭାଜନଙ୍କୁ ଗୃହିଁଲେ ।
ଶ୍ରୀରଘୁ ନନ୍ଦନ ଉଚ୍ଚେ ଏପରି କହିଲେ ॥
ଅଯୋଧ୍ୟାଲୋକେ ସୀତାଙ୍କୁ ଅପବାଦ ଦ୍ୟନ୍ତେ
ଅବଗୃହେ ପେଶିଲି ମୁଁ ତାହାଙ୍କୁ ବନସ୍ତେ ॥
ମୋର ଅପାପ ସୀତାଙ୍କୁ ବ୍ୟର୍ଥେଦୋଷଦେଲେ
ନିର୍ମଳ ଦ୍ରବ୍ୟେ ହିଂସ୍ରକେ ମଳ ଲଗାଇଲେ ॥
ଏମନ୍ତ କହି ଶ୍ରୀରାମ ହୋଇଲେକ ତୁନି ।
ଏ ସମୟେ ପରବେଶ ବାଲ୍ମୀକି ମୁନି ॥
ଜାନକୀ ଦେବୀ ଅଛନ୍ତି ତାହାଙ୍କ ପଛରେ ।
ଶିର ନୁଆଇଁ ଅଛନ୍ତି ଅତି ଲଜ୍ଜାଭରେ ॥
କରଯୋଡ଼ି କରୁଛନ୍ତି ଶ୍ରୀରାମଙ୍କୁ ଧ୍ୟାନ ।
ମୁନିଙ୍କ ପଛେ ସୀତାଙ୍କୁ ଦେଖି ସଭାଜନ ॥
ଅତ୍ୟନ୍ତ ଆନନ୍ଦ ହୋଇ କଲେ ଧନ୍ୟ ଧନ୍ୟ ।
ଲୋତକରେ ପୂର୍ଣ୍ଣହେଲା ସବୁଙ୍କ ନୟନ ॥
ମହାକୋଳାହଳ ଧ୍ୱନି ଉଠିଲା ସଭାରେ ।
କେହି ସୀତା ଦେବୀଙ୍କର ଗୁଣକୁ ସୁମରେ ॥
କେହି କେହି ରାମଙ୍କର ଗୁଣ ସୁମରନ୍ତି ।
କେହି ଉଭୟଙ୍କ ଗୁଣ କୀର୍ତ୍ତିନ କରନ୍ତି ॥
ଜାନକୀ ରାମଙ୍କ ପାଦେ ପଡ଼ି ଯୋଡ଼ିକର ।
ଉଭାହୋଇ ବେନିନେତ୍ରୁ ବୁହାଇଲେ ନୀର ॥
ଏହା ଦେଖି ରାମ ନେତ୍ରୁ ବୁହନ୍ତେ ଲୋତକ ।
କିଛି ନ କହି ତଳକୁ ପୋତିଲେ ସେ ମୁଖ ॥
ଲବ କୁଶ ଦୁଇଭାଇ ଉଭା ହୋଇଛନ୍ତି ।
କିପାଇଁ ଯେ ଏହା ହୁଏ କିଛି ନ ଜାଣନ୍ତି ॥
ଏ ସମୟେ ସୀତାପାଶେ ସ୍ଥିତ ମୁନିବର ।
ବୋଇଲେ ହେ ଦାଶରଥି ଏ ସୀତା ତୁମ୍ଭର ॥
ସୁବ୍ରତା ଧର୍ମଚାରିଣୀ ସତୀ ଶିରୋମଣି ।
ଏଥିରେ ସନ୍ଦେହ ନାହିଁ ଆହେ ରଘୁମଣି ॥
କିନ୍ତୁ ଲୋକ ଅପବାଦ ଭୟ କରି ମନେ ।
ଛାଡ଼ି ଆସିଥିଲ ତୁମ୍ଭେ ପାଳିଛୁ ଯତନେ ॥
ତୁମ୍ଭର ଯେ ନିନ୍ଦା ଭୟ ନିବାରିବା ପାଇଁ ।
ସଭାରେ ଉଭା ହୋଇଛୁ ଆହେ ରଘୁସାଇଁ ॥
ନିୟମ କରିବା ଅଭିପ୍ରାୟେ ଏହି ସତୀ ।
ପ୍ରାର୍ଥନା କରୁଅଛନ୍ତି ତୁମ୍ଭ ଅନୁମତି ॥
ଆହେ ରାମ ସତ୍ୟକରି କହୁଅଛୁ ମୁହିଁ ।
ତୁମ୍ଭର ଔରସୁ ଜାତ ଏହି ପୁତ୍ର ଦୁଇ ॥
ଜାଆଁଳା ଅଟନ୍ତି ଜାଣ ଆହେ ରଘୁରାୟ ।
ମୁହିଁ ଅଟେ ପ୍ରଚେତାଙ୍କ ଦଶମ ତନୟ ॥
ମୋହ ପରି ଲୋକ କେବେ ମିଛ ନ କହିବ ।
ତୁମ୍ଭର ଏ ଦୁଇପୁତ୍ର ନିଶ୍ଚୟ ରାଘବ ॥
ନିୟମ କରି କହୁଛି ଦୁଷ୍ଟା ହେଲେ ସୀତା ।
ସହସ୍ର ବର୍ଷ ତପସ୍ୟା ମୋର ହେବ ବୃଥା ॥
ତାହାର ମୁଁ ଫଳଭୋଗୀ କଦାପି ନୋହିବି ।
ଯେବେ କାୟ ମନୋବାକ୍ୟେ ଏ ତୁମ୍ଭବାନ୍ଧବୀ ॥
କେଉଁଠାରେ ପାପକାର୍ଯ୍ୟ କରିଥାଏ ବୀର ।
ଶୁଭାଦୃଷ୍ଟ ଫଳଭାଗ ନଷ୍ଟ ହେବ ମୋର ॥
ଯଦ୍ୟପି ଜାନକୀ ପାପ ବର୍ଜ୍ଜିତା ହୁଅନ୍ତି ।
ତାହାହେଲେ ଫଳଭାଗୀ ହେବ ରଘୁପତି ॥
ମୁହିଁ ବହୁ ଚିନ୍ତା କରି ହେ ରଘୁନନ୍ଦନ ।
ଏ ସୀତାର ପଞ୍ଚଭୂତ ଆତ୍ମା ଆଉ ମନ ॥
ପବିତ୍ର ଅତି ବିଶୁଦ୍ଧ ଦରଶନ କରି ।
ଏହାଙ୍କୁ ନିର୍ଜ୍ଜନ ବନୁ ନେଲି ଦଣ୍ଡଧାରୀ ॥
ତୁମ୍ଭେ ଲୋକାପବାଦକୁ ଡରୁଅଛ ଯେଣୁ ।
ଏ ଶୁଦ୍ଧାଚାରିଣୀ ସୀତା ଅଜ୍ଞ ସେ କାରଣୁ ॥
ନିୟମ କରିବ ତୁମ୍ଭ ଆଗେ ହେ ରାଜନ ।
ମୁହିଁ ଦିବ୍ୟଜ୍ଞାନେ ଜାଣିଅଛି ତୁମ୍ଭ ମନ ॥
ଏହା କହି ନିରୁତ୍ତର ହେଲେ ମୁନିବର ।
ଦୀନ ମହାଦେବ ଶରଣେ ରାମଙ୍କ ପୟର ॥

—o—

## ସୀତାଙ୍କର ପରୀକ୍ଷା ଓ ପାତାଳ ଗମନ

ଏହାପରି କଥା ଶୁଣି ପ୍ରଭୁ ରଘୁମଣି ।
ଅତ୍ୟନ୍ତ ଦୁଃଖିତା ଦେଖି ଜନକ ଦୁଲଣୀ ॥
କରଯୋଡ଼ି ବୋଇଲେ ହେ ମୁନି ମହାଶୟ ।
ଆପଣ ଯାହା କହିଲ ଏ କଥା ନିଶ୍ଚୟ ॥
ଅବିଶ୍ୱାସ କରୁନାହିଁ ତୁମ୍ଭ ବାକ୍ୟ ମୁହିଁ ।
ପୂର୍ବେ ଦେବଙ୍କ ସମ୍ମୁଖେ ଏହି ବଇଦେହୀ ॥
ପରୀକ୍ଷା ଦେଇ ଶପଥ କରିଥିଲେ ବୋଲି ।
ଏହାଙ୍କୁ ଆଣି ମୁଁ ଗୃହ ମଧ୍ୟରେ ରଖିଲି ॥
ଲଙ୍କା ନିବାସୀଏ ତାହା ଦେଖି ପ୍ରତେଗଲେ
ସେହି କଥା ଅଯୋଧ୍ୟାର ଲୋକେ ନ ଜାଣିଲେ

କାଳେମୋତେଏତେଦୁଃଖଦେଲେଦୁଷ୍ଟମାନେ
ତାଙ୍କ ବୋଲେ ବାନ୍ଧବଙ୍କୁ ଛାଡ଼ିଥିଲେ ବନେ
ତହିଁରେ ପୁଣି ସେ ଗର୍ଭବାସ ହୋଇଥିଲେ ।
ଏ କଥା କେଡ଼େ ଦାରୁଣ ବିଗୁରିବ ଭଲେ ॥
ହେବାରୁ ଲୋକାପବାଦ ଅତ୍ୟନ୍ତ ପ୍ରବଳ ।
ପାପହୀନା ଏ ସୀତାକୁ ଜାଣି ମୁଁ କେବଳ ॥
ଜଣ୍ଣ ହେତୁ ପରିତ୍ୟାଗ କରିଥିଲି ମୁନି ।
ଦୟାକର ମୋରୁ ସେହି ଦୋଷକୁ ନ ଘେନି
ଏହି କୁଶ ନବ ଦୁଇ ମୋହର ନନ୍ଦନ ।
ଏହା ମୁଁ ଉତ୍ତମ ରୂପେ ଜାଣେ ତପୋଧନ ॥
ଅଯୋଧ୍ୟାର ଲୋକେ ଆସି ସମର୍ପିବେ ଯେବେ
ମୋହର ମନ ଆନନ୍ଦ ହୋଇବତ ତେବେ ॥
ଏ ନିଷ୍ପାପ ସୀତାଠାରେ ପ୍ରୀତି ବହୁ ମୋର ।
କିନ୍ତୁ ଲୋକ ଅପବାଦ ହୋଇଯାଉ ଦୂର ॥
ଯଦି ଛାଡ଼ିଥିଲି ସ୍ତ୍ରୀଙ୍କୁ ନ ଥିଲି ମୁଁ ସ୍ଥିର ।
ସବୁବେଳେ ସୀତା ତହିଁ ଥିଲା ମନ ମୋର ॥
ପରୀକ୍ଷା ଦେଲେ ଏଥିରେ ଘୋଷିବେ ସୁଯଶ ।
ଆବର ଦେଖିବେ ଛନ୍ତି ଯେତେକ ନରେଶ ॥
ଅଯୋଧ୍ୟାର ନରନାରୀ ସମସ୍ତେ ଦେଖିବେ ।
ଆଉବେଳେ ମନ୍ଦ ବୋଲି କହି ନ ପାରିବେ ॥
ଶ୍ରୀରାମ ମୁଖରୁ ଏହା ଶୁଣି ନରନାରୀ ।
ବିଗୁରିଲେ ନିଶ୍ଚେ ଆଜ ଜନକ କୁମାରୀ ॥
ପରୀକ୍ଷା ଦେବେ ଯାହାକୁ କେହି କରି ନାହିଁ
ଅପୂର୍ବ କଥା ଦେଖିବା ନୟନ ପୂରାଇ ॥
ଏହା କହିଣ ସକଳେ ରହିଲେ ସେଠାରେ
ରହିଲା ସବୁଙ୍କ ଦୃଷ୍ଟି ସୀତାଙ୍କ ଉପରେ ॥
ଶୁଣି କୌଶଲ୍ୟା କୈକେୟୀ ସୁମିତ୍ରା ଆଇଲେ
ସୀତା ତିନି ଭଗ୍ନୀ ତାଙ୍କ ସଙ୍ଗତେ ଗଲେ ॥
ଦାସୀ ପରିବାରୀ ଯେତେ ଥିଲେ ତାଙ୍କସଙ୍ଗେ
ସୀତାଙ୍କୁ ଦେଖିବାପାଇଁ ସର୍ବେ ଗଲେ ବେଗେ
ସୀତାଙ୍କର ଶପଥ ବିଷୟେ ରାମ ମନ ।
ଜାଣିପାରି ଉପସ୍ଥିତ ହେଲେ ସୁରଗଣ ॥
ବସୁ ରୁଦ୍ର ବିଶ୍ୱଦେବା ବାସବ ମରୁତ ।
ସିଦ୍ଧ ସାଧ୍ୟ ନାଗ ଦେବ ଋଷି ଯେ ଅଦିତ୍ୟ ॥
ଏହାଙ୍କୁ ଆଦି କରିଣ ଯେତେ ଦେବଗଣ ।
ଆଇଲେ ଦେଖିବାପାଇଁ ବ୍ରହ୍ମାଙ୍କୁ ଘେନିଣ ॥

ଆଗେ ବ୍ରହ୍ମା ଦେବଗଣ ତାହାଙ୍କ ପଛରେ ।
ଉପସ୍ଥିତ ହେଲେ ଆସି ସେ ସଭା ମଧ୍ୟରେ ॥
ଦେବତାମାନଙ୍କୁ ଦେଖି ରାମ ପୁନର୍ବାର ।
କହିଲେ ସଭା ମଧ୍ୟରେ ଆହେ ମୁନିବର ॥
ଆଜ ସୀତାଙ୍କ ଶପଥ ଦେଖିବା ନିମନ୍ତେ ।
ଦେବତା ମହର୍ଷି ନୃପ ଉପସ୍ଥିତ ଏଥେ ॥
କିନ୍ତୁ ସୀତାଠାରେ ପ୍ରୀତି ହେଉ ଯେ ମୋହର
ରାମଙ୍କ କଥା କହିବା ସମୟେ ସମୀର ॥
ସୁଗନ୍ଧ ଶୀତଳ ମନ୍ଦ ଗୁଣକୁ ଧରିଣ ।
ବହି ଆନନ୍ଦିତ କଲା ଜନଙ୍କର ମନ ॥
ସତ୍ୟଯୁଗ ପ୍ରାୟେ ତ୍ରେତାଯୁଗ ଲୋକମାନେ ।
ଅଦ୍ଭୁତ ବାୟୁ ବହିବା ଦେଖିଣ ନୟନେ ॥
ପରମ ଆନନ୍ଦ ଲଭି ଆଶ୍ଚର୍ଯ୍ୟ ହୋଇଲେ ।
ନାନା ଦେଶରୁତ ଜନମାନେ ଆସିଥିଲେ ॥
ଏଥୁ ଅନନ୍ତରେ ଦେବୀ ଜନକ ଦୁଲ୍ଲଣୀ ।
ପତିପରାୟଣା କଷାବସନ ଧାରିଣୀ ॥
ବହୁଲୋକ ଥିବା ଦେଖି ବଦନକୁ ପୋତି ।
ଭୂତଳକୁ ଦୃଷ୍ଟିଦେଇ ବସିଲେକ ସତୀ ॥
ଶାଶୂମାନଙ୍କ ଚରଣେ ନମସ୍କାର କଲେ ।
ଭଗ୍ନୀମାନଙ୍କୁ ସ୍ନେହରେ କଲ୍ୟାଣ କରିଲେ ॥
ଭରତ ଲକ୍ଷ୍ମଣ ଶତ୍ରୁଘ୍ନ ମୁଖକୁ ଗ୍ରୁହିଁଣ ।
ବାଷ୍ପଗଦ୍ଗଦ କଣ୍ଠରେ ବୋଇଲେ ବଚନ ॥
ତୁମ୍ଭେ ମୋ ଦେବର ଅଟ ପ୍ରାଣର ସମାନ ।
ଜନ୍ମେ ଜନ୍ମେ ତୁମ୍ଭଙ୍କୁ ମୁଁ ପାଇବି ଯେସନେ
ହେ ଅଯୋଧ୍ୟାପତି ଘେନ ଏ ଦାସୀ ବିନତି ।
ଜନ୍ମେ ଜନ୍ମେ ଦୟାକରି ହେବ ମୋରପତି ॥
କରକୁ ଅଞ୍ଜୋଳି କରି ବୋଇଲେ ଏମନ୍ତ ।
ମୁହିଁ ରାମ ଭଜନ୍ତି ଅନ୍ୟଜନେ କଦାଚିତ ॥
କେତେବେଳେ ମନମଧ୍ୟେ ଚିନ୍ତା କରିନାହିଁ ।
ଏ କାରଣୁ ଆଜ ଏହି ମଧୁମାସେ ମହୀ ॥
ମୋତେ ଆପଣା ଗର୍ଭରେ କରୁ ସ୍ଥାନ ଦାନ
ମୁଁ ଯେପରି କାୟେ।ବାକ୍ୟେ ମନେ ପ୍ରତିଦିନ॥
ସର୍ବଦା ରାମଚନ୍ଦ୍ରଙ୍କୁ ଅର୍ଚ୍ଚନା କରଇ ।
ସେହିପରି ମଧୁମୟୀ ଦେବୀ ଏହି ମହୀ ॥
ମୋତେ ସ୍ଥାନ ଦେଉ ଆଜ ତାହାର ଗର୍ଭରେ
ମୁଁ ଶପଥ କରି ଛିଡ଼ାଅଛି ସେ ପ୍ରକାରେ ॥

ରାମଚନ୍ଦ୍ର ଭକ୍ତ ଅନ୍ୟ କାହାକୁ ନ ଜାଣେ ।
ଏ ମାଧବୀ ପୃଥ୍ୱୀଦେବୀ ସର୍ବ ବିଦ୍ୟମାନେ ॥
ବିବରେକ ଦାନକରୁ ମୁଁ ଗର୍ଭେ ରହିବି ।
ବିଦେହ ନନ୍ଦିନୀ ସୀତା ରାମର ବାନ୍ଧବୀ ॥
ଏହିପରି ସଭାମଧ୍ୟେ କରନ୍ତେ ଶପଥ ।
ଏ କାଳର ଘଟଣା ଯେ ଅତ୍ୟନ୍ତ ଅଦ୍ଭୁତ ॥
ଭୂମି ଫାଟି ବାହାରିଲା ଏକ ସିଂହାସନ ।
ଧରିଥିଲେକ ତାହାକୁ ଦିବ୍ୟ ନାଗଗଣ ॥
ଅପରିମିତ ବିକ୍ରମ ସେହି ନାଗଙ୍କର ।
ଦିବ୍ୟରତ୍ନେ ବିଭୂଷିତ ତାହାଙ୍କ ଶରୀର ॥
ଉପରକୁ ସିଂହାସନ ଯହୁଁ ଦୃଶ୍ୟହେଲା ।
ଧରଣୀ ଦେବୀର ବାହୁ ଯୁଗଳ ଦିଶିଲା ॥
ଦୁଇ ହସ୍ତକୁ ବଢ଼ାଇ ଦେଇ ସେ ଧରଣୀ ।
ଜାନକୀ ଦେବୀଙ୍କି କୋଳକରି ନେଇ ପୁଣି ॥
କୁଶଳ ପଚାରି ଅତି ଆଦର କରଣ ।
ସିଂହାସନେ ବସାଇଣ ହେଲେ ଅନ୍ତର୍ଦ୍ଧାନ ॥
ଆକାଶରେ ଥାଇ ଦେବେ ପୁଷ୍ପବୃଷ୍ଟି କଲେ ।
ଧନ୍ୟ ଧନ୍ୟ ସୀତାବୋଲି ସେମାନେ କହିଲେ
ପାତାଳେ ସୀତାଙ୍କୁ ଦେଖି ଅନ୍ତରୀକ୍ଷ ବାସୀ ।
ସାଧୁ ସାଧୁ କହି ହେଲେ ଅତିଶୟ ଖୁସି ॥
ତୁମ୍ଭର ଚରିତ ଅଟେ ଉତ୍ତମ ପବିତ୍ର ।
ଏମନ୍ତେ ପ୍ରଶଂସା ବାକ୍ୟ କହିଲେ ବହୁତ ॥
ଯେତେ ଅନ୍ତରୀକ୍ଷବାସୀ ସ୍ଥାବର ଜଙ୍ଗମ ।
ଆଉରି ଯେ ମହାବଳ ଦନୁଜ ନନ୍ଦନ ॥
ପାତାଳ ତଳ ନିବାସୀ ନାଗଗଣ ଯେତେ ।
ଆନନ୍ଦରେ ସିଂହନାଦ କଲେକ ସମସ୍ତେ ॥
ଲୋଚନକୁ ବୁଜି ସେହି ସ୍ଥାନରେ ରହିଲେ ।
କେହି କେହି ଶ୍ରୀରାମଙ୍କୁ ନିରୀକ୍ଷି ରହିଲେ ॥
କେହିବା ମୋହେ କରନ୍ତି ସୀତାଙ୍କୁ ଦର୍ଶନ ।
ସମାନ ଭାବ ରହିଛି ସମସ୍ତଙ୍କ ମନ ॥
ସେକାଳେ ଜଗତଜନ ମୋହ ହୋଇଥିଲେ
ଏସବୁ କଥାକୁ ସ୍ୱପ୍ନ ପ୍ରାୟ ମନେ କଲେ ॥
ଦେଖଣାହାରିଏ ଯେତେ ଥିଲେ ସେହିସ୍ଥାନେ
ଆଉରି ନାନାଦେଶର ନରପତିମାନେ ॥
ସମସ୍ତେ ରହିଁ ଅଛନ୍ତି ଲକ୍ଷ୍ୟକୁ ଲଗାଇ ।
ଯେପରି ଶପଥ ହେଲା ନ ଜାଣିଲେ କେହି ॥

କେବଳ ଏହି ଘଟଣା ଦେଖି ବିଚାରିଲେ ।
ସୀତା କି ବମାନେ ଅଗ୍ନି ବୁଲି ବାହାରିଲେ ॥
ସିଂହାସନେ ଭୂଗର୍ଭକୁ ଗଲିଗଲା ଯହୁଁ ।
କହେଲା କି ହେଲା ବୋଲି ଡାକଦେଲେ ତହୁଁ
ବିସ୍ମୟ ସାଗରେ ସର୍ବେ ହୋଇଲେ ମଗନ ।
କାହାର ମୁଖୁଁ କାହାର ନୋହିଲା ବଚନ ॥
ଏହାଦେଖି ରଘୁନାଥ ମୂର୍ଚ୍ଛିତ ହୋଇଲେ ।
ସୁଗ୍ରୀ ବିଭୀଷଣ ଯାଇ ତାହାଙ୍କୁ ଧଇଲେ ॥
କେତେକ୍ଷଣେ ଚେତାପାଇ ମୁଖେ ବସ୍ତ୍ର ଦେଇ
ରୋଦନ କଲେ ଜାନକୀ ଗୁଣମାନ କହି ॥
ଆରେ କୁଞ୍ଚିତକୁନ୍ତଳା ମୋ ନେତ୍ର ସିତୁଳା ।
ଏତେକାଳେ କାଟି ଦେଇଗଲୁ ମୋର ଗଳା
ତୋ ଚନ୍ଦ୍ରବଦନ ଆଉ ଦେଖିବି କି ନେତ୍ରେ
ହସିକରି ପଦେ କଥା ନ କହିଲୁ ମୋତେ ॥
ସତୀ ଶିରୋମଣି ମୋର ଗଳା ହେମମାଳା ।
କିପରି ରହିବି କହ ତୋ ବିନାରେ ବାଳା ॥
ଲଙ୍କାରେ ଜଳନ୍ତାନଳେ ପଶିଥିଲୁ ତୁହି ।
ସେକଥା ଅଯୋଧ୍ୟାଲୋକେ ନ ଜାଣନ୍ତି କେହୁ
ତେଣୁ ପରୀକ୍ଷା ଦେବାକୁ କହୁଥିଲି ସିନା ।
ତାହା କରିବାକୁ କିପାଁ ନ କଲୁ ତୁ ମନା ॥
ଅତି ମନ୍ଥନରେ ହେଲା କାଳକୂଟ ଜାତ ।
ଅତି ଶପୁଡ଼ିଲେ ଲେମ୍ବୁ ଯେପରି ହୁଏ ତିକ୍ତ
ମୋହର ଏ କଥା ହେଲା ସେହି ପରକାରେ ।
ଭଲକରି ନ ଦେଖିଲି ତୋତେ ଯା ନେତ୍ରରେ
ବୁଝି ନ ପାରିଲି ଖଳ ଲୋକଙ୍କ ବଚନ ।
ତାହାଙ୍କ ବାକ୍ୟ ପାଇଲି ଏ ଘୋର କଷଣ
ପ୍ରତ୍ୟକ୍ଷେ ଦେଖି ସୁଧାକୁ ମଣିଲି ମୁଁ ବିଷ ।
ସେ କାରଣୁ ନେଇଥିଲି ତୋତେ ବନବାସ
ହେଲେହେଁ ସର୍ବଦା ମନ ଥାଏ ତୋହଠାରେ
ଲୋକ ଦେଖା କୋପ କରିଥିଲି ଯେ ବାହାରେ
ଏତିକି ଦୋଷେ ରହିଲୁ ଯାଇଁ ପାତାଳରେ ।
ମୋତେ କିପାଇଁ ନ ନେଲୁ ତୋହର ସଙ୍ଗରେ
ଭାଇମାନଙ୍କର ବୋଲ ନ କଲି ଯେ ମୁହିଁ ।
ସେ କାରଣୁ ତୋର ସଙ୍ଗ ଛଡ଼ାଇଲା ବିହି ॥
ତୋର ପାଇଁ ସିନ୍ଧୁ ଜଳେ ବନ୍ଧାଇଲି ବନ୍ଧ ।
ସବଂଶେ ବଧ କରିଲି ଦୁଷ୍ଟ ଦଶକନ୍ଧ ॥

ଅବର ଯେ କେତେ କଷ୍ଟପାଇଛୁ ଏ ଦେହେ
ସେ କଥା କ ତୁ ନ ଜାଣୁ କ କହିବ ପ୍ରିୟେ
ଅନଳସାକ୍ଷାତେ ସତୀ କରାଇଛୁ ସତ୍ୟ ।
ମୋହବନା ତୁମ୍ଭେ ଆଜ ବସ୍ତୁ ନୋହିବ ତା ॥
ରହିଅଛୁ ସେହି ସତ୍ୟ ପାଳି ଅଜ୍ଞାଯାଏ ।
ମୋତେ ଛାଡ଼ି ତୁହି ଏକା ଛାଡ଼ିଗଲୁ ପ୍ରିୟେ ॥
ରୋଦନ କରନ୍ତି ଦେଖି ତୋର ଦୁଇସୁତ ।
ତାଙ୍କଠାରେ ସ୍ନେହ ତୋର ନୋହିଲା କପିତ
ଏତେ ଅସ୍ନେହୀ ହୋଇଲୁ ଆଗୋ ବଇଦେହୀ
ଏମନ୍ତ କହି କାନ୍ଦନ୍ତି ରଘୁକୁଳ ସାଇଁ ॥
ଭରତ ଲକ୍ଷ୍ମଣ ଶତ୍ରୁଘ୍ନ ଏମାନେ କାନ୍ଦିଲେ ।
ସଭାସ୍ଥ ରାଜାଏ ମୁଖ ଶୁଖାଇ ବସିଲେ ॥
ସୁଗ୍ରୀବ ଅଙ୍ଗଦ ହନୁ ଆଉ ବଭୀଷଣ ।
ଅବର ଥିଲେ ରାକ୍ଷସ ଋକ୍ଷ କପିଗଣ ॥
ସମସ୍ତଙ୍କ ନୟନରୁ ବହିଲାକ ନୀର ।
ସୀତା ଭଗିନୀ ଆଉ ମାତାମାନଙ୍କର ॥
ରୋଦନ ଧ୍ୱନିରେ ଯଜ୍ଞଶାଳା କମ୍ପିଗଲା ।
ଗୃହୁଁ ଗୃହୁଁ ସଂସାରର ଶିରୀ ଲୋପ ହେଲା ॥
ପାତାଳପୁରକୁ ଯାନ୍ତେ ଜନକ କୁମାରୀ ।
ଅତଶୟ ଶୋକଭରେ ପ୍ରଭୁ ନୃପଧାରୀ ॥
ଭୂମି ଛନ୍ତାଇ କହିଲେ ଗଦ୍‌ଗଦ ସ୍ୱରରେ ।
ହାୟରେ ଦଇବ ଏହା ଥିଲା ତୋ ମନରେ ।
ସାକ୍ଷାତରେ ଲକ୍ଷ୍ମୀ ତୁଲ୍ୟ ସୀତା ରୂପବତୀ ।
ମୋ ସମ୍ମୁଖେ ଅନ୍ତର ହୋଇଲା ମୋର ସତୀ
ରାବଣ ମୋ ଅସାକ୍ଷାତେ ହରି ନେଇଥିଲା ।
ଏ ପୃଥିବୀ ମୋହର ସାକ୍ଷାତେ ହରିନେଲା ॥
ମୋର ଦେଖୁ ଦେଖୁ ବଳେ କଲାକ ହରଣ ।
ନିଶ୍ଚୟ ତାହାକୁ ବାଣେ କରିବ ବଦାର୍ଣ୍ଣ ॥
ଏହା ଭାବ କ୍ରୋଧଭରେ ହୋଇଣ ଅଧୀର ।
ବୋଇଲେ ଗୋପୃଥିବୀଦେବୀମୋରବୋଲକର
ସୀତାକୁ ମୋ ପାଶେ ଆଣି ଦିଅ ଗୋ ତୁରିତେ
ନ ଦେଲେ ତାହାର ଫଳ ପାଇବୁ ସାକ୍ଷାତେ
ପୂର୍ବରେ ଜନକରୂପି ଲଙ୍ଗଳରେ ତପି ।
ତୋର ଗର୍ଭୁ ପାଇଥିଲେ ସୀତା ଶୁଭ୍ରବେଣୀ॥
ତୁମ୍ଭେ ମୋର ଶାଶୁ ବୋଲି ନ କରଇ ରୋଷ
ସୀତାକୁ ନ ଦେଲେ ନଷ୍ଟେ ଯିବ ତୁମ୍ଭେ ନାଶ
ସୀତାକୁ ଦିଅ ଅଥବା ଗର୍ଭ ଦାନକର ।
ସୀତାଙ୍କୁ ଘେନି ରହିବି ମୁହିଁ ପାତାଳର ॥
ଅଥବା ସୀତା ସହିତ ସ୍ୱର୍ଗରେ ରହିବ ।
ବେଗେ ସୀତା ଆଣି ଦିଅ ଆଗୋ ପୃଥ୍ୱୀଦେବୀ
ସୀତା ନ ଦେଖି ମୋ ମନ ହୋଇଛୁ ବ୍ୟଥିତ
ହେବସୁଧେଯେବେ ତୁମ୍ଭେ ନଦେବମୋତେତ
ପର୍ବତ ବନ ସହିତ ତୁମ୍ଭ ଆୟତନ ।
ଉପାଡ଼ି କରିବ ମନ୍ଦାକଲେ ନିମଗନ ॥
କ୍ରୋଧେ ଶୋକାବଶେ ରାମ କହିଲେ ଏମନ୍ତ
ଶୁଣି ଦେବଲୋକେ ଭୟ ପାଇଣ ତ୍ୱରିତ ॥
ବ୍ରହ୍ମାଙ୍କୁ କହିଲେ ବ୍ରହ୍ମା ରାମଙ୍କୁ କହିଲେ ।
ହେ ରଘୁବଂଶ ତିଳକ ତୁମ୍ଭେ ମୋର ବୋଲେ
ଶୋକ ସନ୍ତାପ କ୍ରୋଧକୁ ପରିତ୍ୟାଗ କର ।
ତୁମ୍ଭର ପୂର୍ବ ବୈଷ୍ଣବ ଭାବକୁ ସୁମର ॥
ଅହେ ମହାବାହୁ ମୁହିଁ ଏ ସଭା ଅଗ୍ରତେ ।
ଗୁପତ କଥା ପ୍ରଘଟ କରିବ କେମନ୍ତେ ॥
ଅବଶ୍ୟକ ହୋଇବାରୁ କହୁଛୁ ସଂପ୍ରତ ।
ବୈଷ୍ଣବ ଜନ୍ମ ବିଷୟ ସ୍ମର ରଘୁପତ ॥
ତବ ଶରପରାୟଣା ଶୁଦ୍ଧା ସାଧ୍ୱୀ ସୀତା ।
ତୁମ୍ଭ ତପୋବଳେ ସେହି ଜନକ ଦୁହିତା ॥
ନାଗ ପୁରକୁ ଗଲେଣି ପୁଣି ସୁରପୁରେ ।
ସହବାସ କରିବେ ସେ ତୁମ୍ଭ ସଙ୍ଗତରେ ॥
ଏ ସଭା ମଧ୍ୟେ ତୁମ୍ଭଙ୍କୁ ଅହେ ରଘୁସାଇଁ ।
ଅଉ ଯାହା କହୁଅଛୁ ଶୁଣ ମନଦେଇ ॥
କାବ୍ୟ ମଧ୍ୟରେ ଉତ୍ତମ ଏହୁ ମହାକାବ୍ୟ ।
ଶେଷ ପର୍ଯ୍ୟନ୍ତ ଶ୍ରବଣ କର ହେ ରାଘବ ॥
ସକଳ ଜାଣି ପାରିବ କହିଲି ହେ ବୀର ।
ଜନ୍ମଠାରୁ ସୁଖ ଦୁଃଖ ଭୋଗ ଯେ ତୁମ୍ଭର ॥
ଭବିଷ୍ୟତେ ହେବ ଯାହା ସେ କଥା ଅଛଇ
ତୁମ୍ଭ ଭିନ୍ନ ଏ କାବ୍ୟର ଯଶୋଭାଗୀ କେହି
ହୋଇ ନ ପାରିବ ବୋଲି କରିଣ ଶ୍ରବଣ ।
ଏ ଅଦି କାବ୍ୟ ପ୍ରତିଷ୍ଠା କର ରଘୁରାଣ ॥
ଅମ୍ଭ ସଙ୍ଗେ ପୂର୍ବ ଭାଗ ଶୁଣିଅଛ ପୁଣି ।
ଉତ୍ତର ଭାଗ ଶ୍ରବଣ କର ରଘୁମଣି ॥
ଭବିଷ୍ୟତ କଥା ସବୁ ତହିଁରେ ଅଛଇ ।
ତୁମ୍ଭ ତୁଲ୍ୟ ରାଜଋଷି ଛଡ଼ା ଅଉ କେହି ॥

ଶୁଣିବାକୁ ଯୋଗ୍ୟ ନୁହେଁ ତାର ଶେଷଭାଗ ।
ମନଯୋଗ କରି ତାହା ଶୁଣ ମହାଭାଗ ॥
ତ୍ରିଭୁବନେଶ୍ୱର ବ୍ରହ୍ମା ଏ କଥା କହିଲେ ।
ସକଳ ଦେବଙ୍କୁ ଘେନି ସ୍ୱଭୁବନେ ଗଲେ ॥
ବ୍ରହ୍ମଲୋକ ନିବାସୀ ଯେ ମହାଋଷିଗଣ ।
ବ୍ରହ୍ମାଙ୍କର ବାକ୍ୟ ସେହି କରିଣ ଶ୍ରବଣ ॥
ରାମାୟଣ ଶେଷଭାଗ ଶୁଣିବା ନିମନ୍ତେ ।
ରହିଲେ ସେ ସେହି ସ୍ଥାନେ ଶୁଣ ଏଥୁ ଅନ୍ତେ
ପିତାମହଙ୍କର ବାଣୀ ଶୁଣି ରଘୁମଣି ।
ବୋଇଲେ ଏ ଭଗବତ ବାଲ୍ମୀକ ମୁନି ।
ଦେଖ ଏହି ବ୍ରହ୍ମଲୋକ ବାସୀ ଋଷିଗଣ ॥
କହିଲେ ଶୁଣିବା ପାଇଁ କାବ୍ୟ ରାମାୟଣ ॥
ଉତ୍ତର ଭାଗ ଆରମ୍ଭ ହେଉ କାଲି ପ୍ରାତେ ।
ଏହା କହିଣ ମେଲଣି ଦ୍ୟନ୍ତି ସେ ସମସ୍ତେ ॥
ଆନନ୍ଦ ହୋଇ ଯେ ଯାହା ମନ୍ଦିରକୁ ଗଲେ ।
ଶ୍ରୀରାମ କୁଶ ଲବଙ୍କୁ ଘେନିଣ ଚଳିଲେ ॥
ଯଜ୍ଞଶାଳରେ ରହିଲେ ସେ ଦିନ ରଜନୀ ।
ସୀତାଙ୍କର ଗୁଣମାନ ମନମଧ୍ୟେ ଗୁଣି ॥
ରାତ୍ରି ପାହିଯାନ୍ତେ ଉଠି ଶ୍ରୀରଘୁ ନନ୍ଦନ ।
ମହାମୁନିମାନଙ୍କୁ ସେ କରିଣ ଆହ୍ୱାନ ॥
ବୋଇଲେକ ଏହି ଯଜ୍ଞ କରି ସମାପତ ।
ଦୁଃଖେ ସୁଖେ ବରଷେକ ହୋଇଲା ଯେ ଗତ
ଶୁଣି ସକଳ ବ୍ରାହ୍ମଣ ଘୋଡ଼ା ଅଣାଇଲେ ।
ବିଧିବିଧାନରେ ତାକୁ ଛେଦନ କରିଲେ ॥
ତାହାର ଶୋଣିତ ନେଇ ଦିଅନ୍ତେ ଅଦ୍ଭୁତ ।
ପ୍ରଜ୍ୱଳିତ ଅଗ୍ନି ଶିଖା ଉଠିଲା ଯେ ଅତି ॥
ଅନଳ ଦେବଙ୍କୁ ପୂଜି ଶାନ୍ତ କଲା ପରେ ।
ଅକ୍ଷତବିଧି କରିଲେ ଶ୍ରୀରାମଙ୍କ ଶିରେ ॥
ତହୁଁ ରାମ ନିଜପୁତ୍ର ଦୁହିଁଙ୍କି ଅନାଇ ।
ବୋଇଲେ ବାବୁରେ ଗୀତ ଶେଷକର ଯାଇ ॥
ଯେବଣଠାବରୁ ରହିଥିଲା ସେ ସଙ୍ଗୀତ ।
ସେହିଠାବରୁ ଗାଇଲେ ସେହି ଦୁଇ ସୁତ ॥
ମହାସତୀ ଯେଉଁ କ୍ଷଣି ପାତାଳକୁ ଗଲେ ।
ଶ୍ରୀରଘୁ ନନ୍ଦନ ରାମ ବହୁତ କାନ୍ଦିଲେ ॥
ଯଜ୍ଞକୁ ସମାପ୍ତ କରି ରାଜୀବ ଲୋଚନ ।
ଦୁଃଖିତ ଚିତ୍ତରେ କଲେ ସମୟ ଯାପନ ॥

ସୀତା ବିହୁନେ ଦେଖିଲେ ଜଗତକୁ ଶୂନ୍ୟ ।
ନିତାନ୍ତ ଶୋକେ ବ୍ୟଥିତ ହେଲା ତାଙ୍କ ମନ ।
କେଉଁସ୍ଥାନେ ଶାନ୍ତି ଲାଭ କରି ନ ପାରିଲେ ।
ବହୁତ ପ୍ରକାର ଧନ ବ୍ରାହ୍ମଣଙ୍କୁ ଦେଲେ ॥
ଯେତେ ରାଜା ଋଷି ଆଉ ବାନର ରାକ୍ଷସ ।
ଧନରତ୍ନେ ସେମାନଙ୍କୁ କରିଣ ସନ୍ତୋଷ ॥
ମନମଧ୍ୟେ ସୀତାଙ୍କର ରୂପ ଧ୍ୟାନ କରି ।
ଅତିକଷ୍ଟେ ଚଳିଗଲେ ଅଯୋଧ୍ୟା ନଗରୀ ॥
ସନ୍ତୋଷ ହୋଇ ନୃପତି ରାକ୍ଷସ ବାନର ।
ଯଜ୍ଞରେ ଥିଲେ ଯେତେକ ବିପ୍ର ମୁନିବର ॥
ସକଳେ ସନ୍ତୁଷ୍ଟ ହୋଇ ଯେଝା ଘର ଗଲେ
ଭାଇ ପୁତ୍ର ସହ ରାମ ଅଯୋଧ୍ୟା ଆଇଲେ ॥
ଏଥୁଅନ୍ତେ ଦୀର୍ଘକାଳ ଯହୁଁ ଗଲା ବହି ।
କଉଶଲ୍ୟା ଦେବୀ ପୁତ୍ର ନାତି ମୁଖ ଚାହିଁ ॥
ପରମ ସୁଖରେ କରି ସମୟ ଯାପନ ।
ଅଗ୍ନିରେ ପଶିଣ କଲେ ପ୍ରାଣ ବିସର୍ଜନ ॥
ଏହିପରି ମାତାମାନେ ପରାଣ ଛାଡ଼ିଲେ ।
ସତ୍ୟପାଳି ଲକ୍ଷ୍ମଣଙ୍କୁ ରାମ ତଡିଦେଲେ ॥
ପୁତ୍ରକୁ ରାଜ୍ୟ ଦେଇଣ ସ୍ୱର୍ଗ ଗଲେ ରାମ ।
ଏହି ପରବ ଶୁଣିଣ ଭବିଷ୍ୟ ପୁରାଣ ॥
ରଘୁନାଥଙ୍କର ଆଉ ନ ସ୍ଫୁରିଲା କିଛି ।
ବୋଇଲେ ପୁତ୍ରଙ୍କୁ ମୋତେ ଏହି ଯୋଗଅଛି
ଏବେ ଚିନ୍ତାକଲେ ଆଉ ହୋଇବ ବା କିସ ।
କହି ଦୁଇ କାଖେ ବସାଇଲେ ଲବକୁଶ ॥
ମୁଖେ ଚୁମ୍ବଦେଇ ତାଙ୍କୁ ବୋଇଲେ ଏସନ ।
ଯେ ଗଲା ତା ପାଇଁ ଚିନ୍ତା ନ କରିବ ଧନ ॥
ଅଯୋଧ୍ୟାରେ ମୁଁ ତୁମ୍ଭଙ୍କୁ କରିବଇଁ ରାଜା ।
ସକଳ ଲୋକରେ ତୁମ୍ଭେ ପାଇବ ଯେ ପୂଜା ॥
ତୁମ୍ଭ ମାତାର ଅଛନ୍ତି ତିନୋଟି ଭଗିନୀ ।
କଉଶଲ୍ୟା ଆଦି ମୋର ଅନେକ ଜନନୀ ॥
ଏମାନେ ପାଳିବେ ତୁମ୍ଭ ମାତାହୁଁ ଅଧିକ ।
ପୁତ୍ରଙ୍କୁ କହି ମଉନ ଶ୍ରୀ ରଘୁ ନାୟକ ॥
ନାରୀଏ ବୋଲନ୍ତି ସୀତା ଏହିକ୍ଷଣି ଥିଲେ ।
କେଡ଼େ ବେଗେ ମହାସତୀ ପାତାଳକୁ ଗଲେ
ଧନ୍ୟ ଧନ୍ୟ ତୋହ ସମ ମହା ସତୀ ନାହିଁ ।
କହିବାମାତ୍ରେ ବିଦୀର୍ଣ୍ଣ ହୋଇଗଲା ମହୀ ॥

ତିନିପୁରରେ ଯେତେକ ଅଛନ୍ତି ଯୁବତୀ ।
ଏହା କରିବାକୁ କାର ନୋହିବ ଶକତି ॥
ହୋଇ ନ ଥିଲା ନ ହେବ କାହାର କଥାରେ
ଧନ୍ୟ ସତୀ ଶିରୋମଣି ଥିଲା ଏ ସଂସାରେ ॥
ଅପୂର୍ବ ସୁନ୍ଦରୀ ଏହି ଜନକ କୁମାରୀ ।
ଏହା ବିନା ରଘୁନାଥ ବଞ୍ଚିବେ କପରି ॥
ମୁ[illegible]ଙ୍କଠାରେ ଲିତାଏ ତା ସ୍ନେହ ନୋହିଲା ।
କପରି ଏପରି ପୁତ୍ର ଛାଡ଼ିଦେଇ ଗଲା ॥
କେ ବୋଲଇ କାହିଁ ପାଇଁ ସେ ଅବା ନ ଯିବ
ବିଶେଷ କଠୋର ଯନ୍ତୁ କଲେକ ରାଘବ ॥
ଲଙ୍କାରେ ଜଳନ୍ତାନଳେ ଥରେ ପଶିଥିଲା ।
ଖଳବାକ୍ୟେ ପୁଣି ରାମ ସେ କଥା କହିଲା ॥
ସତୀ ଜାଣି ଯେଣୁ ତାକୁ କଲା ଅବିଶ୍ୱାସ ।
ତେଣୁ କ୍ରୋଧ କରିଗଲା ସେହି ନାରୀଈଶ ॥
ମନୁଷ୍ୟ ଯିବାକୁ ଏବେ ଭାଳି ହେଉଅଛୁ ।
ଆଉ କି ପାଇବ ତାକୁ ସେ ଗଲା ମୂରୁଛୁ ॥
ତାର ସାଧୁପଣେ ସେହୁ ଏବେ ଚାଲିଗଲା ।
ତ୍ରିଦଶ ସଂସାରକୁ ଏହି କଥା ବୁଝାଇଲା ॥
ଧନ୍ୟ ଧନ୍ୟ ଆମ୍ଭେ ତାକୁ ଦେଖିଲୁ ନୟନରେ
ନର ନାରୀ କୁହାକୁହି ହେଲେ ଏ ପ୍ରକାରେ
ଏ ସକଳ କଥା ଶୁଣି ରାମ ରଘୁମଣି ।
ମନେ ମନେ ଚିନ୍ତାକଲେ ସୀତା ଗୁଣଗୁଣି ॥
ଚୋଇଲେ ମୁଁ ମିନାଦୋଷ କରିଥିଲି ତୋର
କେମନ୍ତେ ଛାଡ଼ିଣି ଗଲୁ ଏ ଦୁଇ କୁମର ॥
ତୋ ବିନା ଲୋକେ କରନ୍ତି ମୋତେ ଉପହାସ
ଥୁହାଯିବ ନାହିଁ ଏହା ମୋ ଦେହେ ନାରୀଶ
କିପାଁ ଅଣାଇଲି ଥିଲୁ ବାଲ୍ମୀକଙ୍କ ଘରେ ।
ଜୀଉଁଛୁ ବୋଲି ଭରସା ଥିଲା ଯେ ମନରେ ॥
ଆଉ ପାଇବଇଁ କାହିଁ ଏବେ ଯେ ଲୋଡ଼ିଲେ
ଅଯୋଧ୍ୟାର ନର ନାରୀ ମୋତେ ଏହା କଲେ
ପାଶେ ଥିଲାବେଳେ ବୋଲୁଥିଲେ ଦୋଷୀରୁଣୀ
ଏବେ ଗଲାକୁ କହିଲେ ସତୀ ଶିରୋମଣି ॥
ଯୋଗୁଁ ଏ ସଂସାର ଲୋକମାନଙ୍କ ବଚନ ।
ସଂସାରେ ହୋଇବାର ଅତ୍ୟନ୍ତ କଠିନ ॥
ବିଚାର କରଣି କଥାମାନ ନ କହନ୍ତି ।
ଯାହା ମନକୁ ଆସଇ କହି ଯାଉଥାନ୍ତି ॥

ଏପରି କହି କାନ୍ଦନ୍ତି ଶ୍ରୀରଘୁନାୟକ ॥
ଦେଖିଣାହାରୀଙ୍କ ନେତ୍ରୁ ବୋହିଲା ଲୋତକ
ଅନ୍ୟାନ୍ୟ ଋଷି ସକଳେ ନୀରବେ ଅଛନ୍ତି ।
ଏକକୁ ଅନେକ କେହି ସମସ୍ୟା ନ ଦ୍ୟନ୍ତି ॥
ବଶିଷ୍ଠ ଯାଇଁ ରାମଙ୍କୁ ବହୁ ବୁଝାଇଲେ ।
ସୁମନ୍ତ୍ର କର ଯୋଡ଼ିଣ ଅନେକ କହିଲେ ॥
ଶେଷେ ବାଲ୍ମୀକ ମୁନି ରାମ ପାଶେ ଯାଇଁ ।
ଭବିଷ୍ୟ ପୁରାଣ କଥା କହିଲେ ବୁଝାଇଁ ॥
ବୋଇଲେ ଅଦ୍ୟରୁ ଧାତା ଯାହା ଲିହିଅଛି
କିଏ ଆନ କରିବ ତା ଶୁଣ ରଘୁବଂଶି ॥
ଜ୍ଞାନବାନ ହୋଇ କର ମୂର୍ଖ ପରି କର୍ମ ।
ଗଲା ମଲା ପାଇଁ ଶୋକ କରୁଅଛ ରାମ ॥
ଚିରଜୀବୀ ହୋଇ ସଦା ରହି ନାହିଁ କେହି ।
ବାଳକାଳେ ତୁମ୍ଭର ନ ଥିଲାକି ବୈଦେହୀ ॥
କେତେକ ସମସ୍ତ ଭୋଗ କଲ ଯେ ତାହାଙ୍କୁ ।
ତହିଁରୁ ଲଭ ପାଇଲ ଏ ପୁତ୍ର ଦୁହିଁଙ୍କୁ ॥
ସୀତା ଗଲା ତାହାକୁ ନ ଭାଳ ଦେବ ଆଉ ॥
ସମୟେ ଭେଟ ପାଇବ ଆହେ ମହାବାହୁ ।
କ୍ଷୀର ସମୁଦ୍ରକୁ ଗଲା ସେହୁ ଆଗହୋଇ ।
ପୃଥିବୀରେ ଥିଲା ରାବଣର ବଧ ପାଇଁ ॥
ସଂସାରକୁ ରକ୍ଷାକରି ନିଜ ଧାମେ ଗଲା ।
ଲୋକରେ ତୁମ୍ଭର ଯଶ ବିସ୍ତାର କରିଲା ॥
ଏବେ ଏ ଦୁଇ ପୁତ୍ରକୁ ଭଲକରି ପାଳ ।
ଜାନକୀର କଥା ଆଉ ମନରେ ନ ଭାଳ ॥
ଏହା କହି ତୁନି ହୋଇନ୍ତେ ବାଲ୍ମୀକି ଋଷି ।
ପ୍ରବେଶ ହୋଇଲେ ତହିଁ ଜନକ ମହର୍ଷି ॥
ଲୋତକରେ ପୂର୍ଣ୍ଣ ହୋଇଛି ତାହାଙ୍କ ନୟନ
ଗଦ୍ ଗଦ୍ ସ୍ୱରେ କହିଲେ ଶୁଣ ବାବୁ ରାମ ॥
ଆଉ କିପାଇଁ ସନ୍ତାପ କରୁଅଛ ଏବେ ।
ବୁଝି ସୁଝି କିପାଁ କାର୍ଯ୍ୟ ନ କଲ ଯେ ତେବେ
ନ ବୁଝିବା ପଣେ ଏତେଦୂର କଥା ଗଲା ।
କିଏ ତା ଆନ କରିବ କହ ବାବୁ ଭଲା ॥
ମହୀରୁ ଜନ୍ମି ମହୀରେ ହୋଇଲା ଯେ ଗୋପ୍ୟ
କିଏ ତା ଆନ କରିବ କହ ମୋର ବାପ ॥
ଏ ପୁତ୍ର ଦୁହିଙ୍କି ପାଳ ଅତି ଯତ୍ନକରି ।
ମାତାଙ୍କୁ ଝୁରି ନ ପୁଣ ଯାଆନ୍ତି ଏ ମରି ॥

ଏହି ପ୍ରକାରେ ବୁଝାଇ କହିଲେ ଜନକ ।
ମନରୁ ଶୋକ ତେଜିଣ ଶ୍ରୀରଘୁ ନାୟକ ॥
ପୁତ୍ରଙ୍କୁ ନେଇ ମାତାଙ୍କ ପାଶେ ସମର୍ପିଲେ ।
ଆବର ତାହାଙ୍କୁ ବହୁ ବୁଝାଇ କହିଲେ ॥
ବୋଇଲେ ଗୋ ମାତ ଶତ୍ରୁ ଘଡ଼ନ୍ତୁ ବୋଳୁର
ଯତନେ ପାଳନ କର ଏ ଦୁଇ କୁମର ॥
ଖଳଙ୍କର କଥା କରି ପାଇଲି ତା ଫଳ ।
ଏମନ୍ତେ କହି ବାହାରେ ଆସି ମହୀପାଳ ॥
ସୁମନ୍ତଙ୍କୁ ଡ଼କାଇଣ ଦେଲେ ଏ ଆଦେଶ ।
ଅକ୍ଷତ ଦିଅ ସଭିଙ୍କୁ ଯିବେ ନିଜ ବାସ ॥
ମୁନି ସକଳେ ଯାଆନ୍ତୁ ଆପଣା ସଦନ ।
ତାଙ୍କ ମନମତ ଦିଅ ଧନ ଯେ ବସନ ॥
ଏମନ୍ତ କହିଣ ଧନ ବସ୍ତ୍ର ଅଣାଇଲେ ।
ଦ୍ୱିଜଙ୍କୁ ଦେଇ ସତ୍ୱର ବିଦାୟ କରିଲେ ॥
ଆପଣେ ବିଜୟ କଲେ ଯାଇଁ ରତ୍ନପୁରେ ।
ଯେତେ ରାଜା ଥିଲେ ଗଲେ ତାଙ୍କ ସଙ୍ଗତରେ
ବାନର ଭଲ୍ଲୁକ ସୁଗ୍ରୀ ବିଭୀଷଣ ଆଦି ।
ସମସ୍ତଙ୍କୁ ଅକ୍ଷତ ଯେ ଦେଲେ ଦୟାନିଧି ॥
ସାମନ୍ତ ରାଜାମାନଙ୍କୁ ସମାଦର କରି ।
ବିଦାୟ ଦେଲେ ଗୁହକୁ ସେ କୋଦଣ୍ଡଧାରୀ ॥
ଲବ କୁଶ ଭାଇ ମାତାଗଣ ସଙ୍ଗେ ଘେନି ।
ଯଜ୍ଞ ପୂର୍ଣ୍ଣ କରିଣ ସେ ରଘୁ କୁଳ ମଣି ॥
ଆସିଣ ରାଜ୍ୟରେ ପ୍ରଭୁ ହେଲେ ପରବେଶ ।
ରାମଙ୍କର ଅଶ୍ୱମେଧ ଶୁଣ ହେ ବିଦୁଷ ॥
ଏସନ ଶୁଣିଣ ରାଜା ସନ୍ତୋଷ ହୋଇଲେ ।
ଦୀନ ମହାଦେବ ହରି ପାଦ ଚିନ୍ତି ବୋଲେ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି

ରସଲୀଳା କଥା ପ୍ରବନ୍ଧେ ନାମ

ସପ୍ତବିଂଶୋଽଧ୍ୟାୟଃ ।



# ଅଷ୍ଟାବିଂଶ ଅଧ୍ୟାୟ

ତତ୍‌କର୍ମ ହରତୋଷଂଯତ୍‌ସ ବିଦ୍ୟା ତନ୍ମତିଷୟୁ
ହରେର୍ଦେହାମୃତାମାଗ୍ନା ଲୟଂ ପ୍ରକୃତିଶ୍ଚରଃ ।

## ମୟୁରଧ୍ୱଜ ପୁରେ ଅଶ୍ୱପ୍ରବେଶ ଓ ତାମ୍ରଧ୍ୱଜ ଦ୍ୱାରା ଅଶ୍ୱ ଧାରଣ

ଏଥୁଅନ୍ତେ ବୀରବର ଅଭିମନ୍ୟୁ ନାତି ।
ଜୈମିନିଙ୍କ ଚରଣରେ କରିଣ ଭକତି ॥
ବୋଇଲେ ପାଦରେ ପଡ଼ି ଅହେ ମୁନିବର ।
ଅନୁଗ୍ରହ କରି ମୋତେ କହନ୍ତୁ ସତ୍ୱର ॥
ବଭ୍ରୁବାହନଙ୍କୁ ସଙ୍ଗେ ଘେନିଣ ଅର୍ଜ୍ଜୁନ ।
ତଦପରେ ଗଲେ ସେହି ଯେ କେଉଣ ସ୍ଥାନ ॥
ଏ କଥାକୁ ଅନୁଗ୍ରହ କରି ମୋତେ କହ ।
ଜନ୍ମ ଜନ୍ମାନ୍ତର ପାପ ହେଉ ମୋର କ୍ଷୟ ॥
ଶୁଣି ଏସନ ବଚନ କହନ୍ତି ଜୈମିନି ।
ଶୁଣ ଅହେ ମହାରାଜା ଅପୂର୍ବ କାହାଣୀ ।
ହରିଭକ୍ତି ଲୀଳା ଏହି ଅହେ ନୃପବର ।
ଶ୍ରବଣ କରିଣ ସର୍ବପାପ ଦୂର କର ॥
ଶ୍ରୀହରି ଚରିତ ଏହି ଅମୃତ ଅଟଇ ।
ଶୁଣି ଶୁଣାଇଲେ ନର ମୁକତି ଲଭଇ ॥
ନାରାୟଣ ସହି ପାର୍ଥ ଆଦି ସୈନ୍ୟଗଣ ।
ଅଶ୍ୱ ସହିତରେ ଗଲେ ଦେଶକୁ ବୁଲିଣ ॥
କେତେ କେତେ ନଦନଦୀ କାନନ ପ୍ରାନ୍ତର
ଅତିକ୍ରମ କରିଯାଏ ଯଜ୍ଞ ଅଶ୍ୱବର ।
କ୍ରମେ କ୍ରମେ ଗମନ କରିଣ ଅଶ୍ୱବର ।
କାନ୍ତିବତୀ ନଗ୍ରେ ପ୍ରବେଶିଲା ସେ ସତ୍ୱର ॥
ସେ ଦେଶରେ ଶୁକ୍ତିବତୀ ନାମେ ବନ ଥିଲା ।
ଯଜ୍ଞ ଅଶ୍ୱ ତହିଁ ଯାଇଁ ପ୍ରବେଶ ହୋଇଲା ॥
ଶିଖୀଧ୍ୱଜ ନାମେ ରାଜା ଥିଲା ସେ ଦେଶର ।
ପରମବୈଷ୍ଣବ ରାଜା ବିଷ୍ଣୁ ଭକ୍ତବର ॥
ଜ୍ୟେଷ୍ଠପୁତ୍ର ନାମ ତାମ୍ରଧ୍ୱଜ ଯେ ଅଟଇ ।
ତା ସମାନ ବୀର ତିନି ଭୁବନରେ ନାହିଁ ।
ଶିଖୀଧ୍ୱଜ ଅଶ୍ୱମେଧ ଯଜ୍ଞ ଛଅ ଥର ।
ସମାପନ କରିଥିଲେ ହେ ନୃପ ଶେଖର ॥
ସପ୍ତମ ଥରକୁ ଅଶ୍ୱମେଧ ଯଜ୍ଞ ସେହି ।
ଆରମ୍ଭ କରିଅଛନ୍ତି କାନ୍ତିବତୀ ସାଇଁ ॥

ସର୍ବଦା ବୈଷ୍ଣବ ସେହି-ଅଟେ ନୃପବର ।
ଦାନବନ୍ତ ନାରାୟଣ ଭାବଇ ମନର ॥
ସେହି ରାଜା ଅଶ୍ୱମେଧ ଯଜ୍ଞର କାରଣ ।
ଏକ ଅଶ୍ୱ ଦେଇଥିଲା ବିଦେଶେ ଗ୍ରହଣ ॥
ତାମ୍ରଧ୍ୱଜ ପୁତ୍ର ତାର ଅଶ୍ୱ ରକ୍ଷା ପାଇଁ ।
ସୈନ୍ୟ ସହିତରେ ଅଶ୍ୱ ପଛରେ ବୁଲଇ ॥
ଏଣେ ଯୁଧିଷ୍ଠିରଙ୍କ ଅଶ୍ୱ ଯାଏ ସେ ସ୍ଥାନରେ ।
ଶିଖୀଧ୍ୱଜ ଅଶ୍ୱ ଆସି ମିଳିଲା ସେଠାରେ ॥
ଦୁଇ ଅଶ୍ୱଙ୍କର ତହିଁ ସାକ୍ଷାତ ହୋଇଲା ।
ଦୁହିଁଙ୍କର ସେ ସ୍ଥାନରେ କଳହ ଲାଗିଲା ॥
ଯୁଧିଷ୍ଠିର ଅଶ୍ୱକୁ କାମୋଡ଼ିଲା ଅଶ୍ୱ ତାର ।
ପୁଣି ପାଦ ପ୍ରହାରିଲେ ବେନି ଅଶ୍ୱବର ॥
ଏସନ ଦେଖିଣ ତାମ୍ରଧ୍ୱଜ ବୀରବର ।
ବୋଇଲେ ମନ୍ତ୍ରୀକୁ ଡାକି ଆପଣା ପାଶର ॥
ଏ ଅଶ୍ୱ କାହାର ଶୀଘ୍ର ବୁଝି ଆସ ଯାଇ ।
ଯଜ୍ଞ ଅଶ୍ୱ ପରି ମୋତେ ଏହୁ ଦେଖାଯାଇ ॥
ଆଜ୍ଞାମାତ୍ରେ ମନ୍ତ୍ରୀବର ବହନ ଚଳିଲା ।
ଯଜ୍ଞ ଅଶ୍ୱକୁ ଧରିଣ ପତ୍ରକୁ ଦେଖିଲା ।
ପଢ଼ିଣ ଜାଣିଲା ମନ୍ତ୍ରୀ ସକଳ ସନ୍ଦେଶ ।
ବୋଲଇ ଶୁଣ ମୋ ବାଣୀ ଆହେ ବୀରଈଶ ॥
ହସ୍ତୀନାର ରାଜା ଯୁଧିଷ୍ଠିର ନରପତି ।
ଅଶ୍ୱମେଧ ଯଜ୍ଞ ସେ ଆରମ୍ଭ କରିଛନ୍ତି ॥
ଅଶ୍ୱ ରକ୍ଷା ନିମିତ୍ତରେ ଆସିଛି ଅର୍ଜୁନ ।
ବଡ଼ ବଡ଼ ରାଜାମାନ ସଙ୍ଗରେ ଘେନିଣି ॥
ଦ୍ୱାରକାପତି ଶ୍ରୀକୃଷ୍ଣ ନିଜେ ନାରାୟଣ ।
ଅଶ୍ୱ ରକ୍ଷା ପାଇଁ ଛନ୍ତି ଅର୍ଜୁନ ସଙ୍ଗେଣ ॥
ଏହା ଶୁଣି ରାଜସୁତ ବୋଲଇ ବଚନ ।
ଶୀଘ୍ର ତୁମ୍ଭେ ସେ ଅଶ୍ୱକୁ ଆଣ ହେ ଧରଣ ॥
ସପ୍ତ ଅଶ୍ୱମେଧ କରୁଛନ୍ତି ପିତା ମୋର ।
ଅଷ୍ଟମ ଅଶ୍ୱମେଧ ହେବ ଆସିଲେ ଶ୍ରୀଧର ॥
ଯେବେ ଏ ଅଶ୍ୱକୁ ନ ଧରିଣ ଛାଡ଼ିବଇଁ ।
କେବେ ନ ଆସିବେ ପୁରେ କମଳାର ସାଇଁ ॥
ତେଣୁ କହେ ମନ୍ତ୍ରୀମଣି ମାନ ମୋ ବଚନ ।
ଅଶ୍ୱକୁ ଧର ବିଳମ୍ବ ଲବେ ନ କରଣ ॥
ଶୁଣି ମନ୍ତ୍ରୀବର ବେଗେ ଅଶ୍ୱକୁ ଧରିଣ ।
ତାମ୍ରଧ୍ୱଜଙ୍କ ପାଶକୁ ଆଣିଲା ବହନ ॥

ସେ ଯଜ୍ଞ ଅଶ୍ୱକୁ ପାଶେ ରଖି ବୀରବର ।
ସେନାପତିକୁ ପେଶିଲା ଅର୍ଜୁନ ପାଶର ॥
କହିଲା କହିବ ତୁମ୍ଭେ ଅର୍ଜୁନଙ୍କୁ ଯାଇଁ ।
ଅଶ୍ୱକୁ ନେଲା ମୟୂରଧ୍ୱଜର ତନୟୀ ॥
ତିନିପୁରେ ତାଙ୍କ ସମାନରେ ନାହିଁ ବୀର ।
ପ୍ରାଣେ ଆଶାଥିଲେ ଫେରି ଯାଅ ହେ ସତ୍ୱର ॥
ଶୁଣି ସେନାପତି ବେଗେ ପାର୍ଥ ପାଶେ ଗଲା ।
ସକଳ ବିଷୟ ତାଙ୍କୁ ବୁଝାଇ କହିଲା ॥
ଅର୍ଜୁନଙ୍କୁ କହି ବୀର ଗଲା ଲେଉଟିଣ ।
ତାମ୍ରଧ୍ୱଜ ଆଗେ ଯାଇ କହିଲା ବଚନ ॥
ଶୁଣ ବୀର ଅର୍ଜୁନର ଅଛୁ ଅଳ୍ପ ସୈନ୍ୟ ।
ଆମ୍ଭ ସୈନ୍ୟ ଶତେ ଅକ୍ଷୌହିଣୀ ହେବଜାଣ ॥
ଆମ୍ଭସଙ୍ଗେ ଯୁଦ୍ଧ କଲେ ନ ଜିଣିବ ସେହି ।
କ୍ଷଣିକ ଭିତରେ ସବୁ ପକାଇବା ଦହି ॥
ଅକ୍ଷୌହିଣୀ ସୈନ୍ୟର କହିବା ପରମାଣ ।
ହୃଦପଦ୍ମ ମଧେ ତାହା ଘେନ ସାଧୁଜନ ॥
ଗଜ ଅଶ୍ୱ ରଥ ରଥୀ ଚତୁରଙ୍ଗ ବଳ ।
କେତେ ଅକ୍ଷୌହିଣୀ ହୁଏ କର ତାହାଠୁଳ ॥
ଏକବିଂଶ ସହସ୍ର ଆଠଶତ ଯେ ସତ୍ତୁର ।
ଏପରି ସମାନ ଅଶ୍ୱ ଗଜ ଦୁହିଙ୍କର ॥
ପଞ୍ଚଶତ ସହସ୍ର ଷଡ଼ଶତ ଦଶ ଜଣ ।
ଅଶ୍ୱ ଆଜ ଏତେକ ତହିଁରେ ପରମାଣ ॥
ଏଗାର ଅୟୁତ ତିନିସହସ୍ର ଗୁରି ଶତ ।
ଏତେକ ଅକ୍ଷୌହିଣୀ ଏ ଜାଣ ବୁଦ୍ଧିମନ୍ତ ॥
ଏହିରୂପେ ସୈନ୍ୟ ଆମ୍ଭ ଶତେ ଅକ୍ଷୌହିଣୀ ।
ଅର୍ଜୁନର ସୈନ୍ୟ ଅଳ୍ପ ଦେଖିଲି ମୁଁ ପୁଣି ॥
କିନ୍ତୁ ଯେତେ ଯେତେ ବୀର ତା ସଙ୍ଗେ ଅଛନ୍ତି ।
ସେମାନଙ୍କ ପାଇଁ ମନେ ନାହିଁ ଆମ୍ଭ ଭୀତି ॥
ମାତ୍ର ବଭ୍ରୁବାହନ ଅଛଇ ତାଙ୍କ ସହ ।
ମହାବୀରବର ସେହି ସମରେ ଦୁର୍ଜୟ ॥
ସେ ବଭ୍ରୁବାହନ ଆମ୍ଭର ସାମନ୍ତ ରାଜା ।
ପ୍ରତିବର୍ଷେ କର ଦେଇ କରଇ ସେ ପୂଜା ॥
ଯେତେବେଳେ ତୁମ୍ଭ ପିତା ସଭାରେ ବସନ୍ତି ।
ଓ ବୈଶ୍ୟ ସଙ୍ଗେ ସେହି ଯଶ କୀରତି ଗାବନ୍ତି ॥
ତାହାର ଦେଶରେ ମୁକ୍ତା ଉପୁଜେ ବହୁତ ।
ତାହା ଆଣି କର ଦିଏ ଚିତ୍ରାଙ୍ଗଦା ସୁତ

ଧନବନ୍ତ ବଳବନ୍ତ **ଅମ୍ଭ** ସମାନରେ ।
କେହି ନ ଥିବେ ରାଜନ ସଂସାର ମଧ୍ୟରେ ॥
ଶୁଣି ତାମ୍ରଧ୍ୱଜ ବୋଲେ ଅର୍ଜ୍ଜୁନ ସୈନ୍ୟରେ ।
ଜାଣେ ଦୁର୍ଜ୍ଜୟ ଅଛନ୍ତି ଛନ୍ତି ଶୂରବୀରେ ॥
ତାଙ୍କ ଛଡା ଅନ୍ୟ ବୀର ତାଙ୍କ ସଙ୍ଗେ ନାହିଁ
କେବଳ ସେହି ଶୂରହେଁ ବୀର ଯେ ବୋଲାଇ
ପାର୍ଥ ବୃଷକେତୁ ଶାମ୍ବ ସେ ବଭ୍ରୁବାହନ ।
ବୀରଙ୍କ ଉପରେ ବୋଲନ୍ତି ଏ ବୀରଗଣ ॥
ଦିନେ ନାରଦ ମହର୍ଷି କହିଥିଲେ ମୋତେ ।
ନରନାରାୟଣ ପାର୍ଥ କୃଷ୍ଣ ଏ ଜଗତେ ॥
ଜନ୍ମିଣ ଅଛନ୍ତି ପାପୀ ଭାର ଦୁଷ୍ଟ ନାଶି ।
ଶେଷେ ଲୟ ହେବେ ପୃଥ୍ୱୀ ଭାରକୁ ବିନାଶି ॥
ଶ୍ରୀକୃଷ୍ଣ ଅଛନ୍ତି ନିଜେ ତ୍ରୈଲୋକ୍ୟ ଈଶ୍ୱର ।
ଅର୍ଜ୍ଜୁନ ସମାନ ବୀର ନାହିଁ ସଂସାରର ॥
ମାତ୍ର ଆଶା ଅଛି ମୋର ଶୁଣ ବୀରଗଣ ।
ଭକ୍ତ ମାନ ସବୁବେଳେ ରଖନ୍ତି ମୋହନ ॥
ଯେବେ ମୋର ପିତାଙ୍କର ହରିପାଦେ ମନ ।
ଥିବ ଯେବେ ମୁହିଁ ତାଙ୍କୁ ଭକ୍ତବତ୍ସଳ ପୁଣ ॥
ତେବେ ନିଶ୍ଚେ ଭକ୍ତ ବଳେ ଶ୍ରୀହରି ଅର୍ଜ୍ଜୁନ ।
ଅକ୍ଳେଶେ ଜୟ କରିବି ଏଥେ ନାହିଁ ଆନ ॥
ତହୁଁ ତାମ୍ରଧ୍ୱଜ ବୋଲେ ସୈନ୍ୟ ସଜକର ।
ଶ୍ରୀକୃଷ୍ଣ ଅର୍ଜ୍ଜୁନ ସଙ୍ଗେ କରିବି ସମର ॥
ଦୟାକର ଆଦିମୂଳ ସକଳ ପାଳକ ।
ଭକ୍ତର ମାନ ରଖିବେ ରୁକ୍ମିଣୀ ନାୟକ ॥
ବଂଶ ମୋହର ପବିତ୍ର ହେବ ଏ ଧରାରେ ।
ତାହାଙ୍କୁ ଦର୍ଶନ କରି ଯିବି ସ୍ୱର୍ଗପୁରେ ॥
ଶ୍ରୀହରି ଅରଜୁନ ଜିଣିଲେ ସମରେ ।
ଯୁଗେ ଯୁଗେ କୀର୍ତ୍ତି ମୋର ରହିବ ସଂସାରେ ॥
ଦୁଇଅଡ଼େ ବୀରପଣ ହୋଇବ ପ୍ରକାଶ ।
ଜିଣି ମୁଁ ପାରିଲେ ଯଶ ମଲେ ସ୍ୱର୍ଗବାସ ॥
ଆଜ ମୋର ବୀର ପଣ ପ୍ରକାଶ ହୋଇବ ।
କୃଷ୍ଣ ଦ୍ୱିତୀକୃଷ୍ଣ ଦେଖି କୋଟି ପାପ ଯିବ ॥
ମୋ ପିତା କୃଷ୍ଣଙ୍କୁ ଅନୁବ୍ରତେ ଲୋଡୁଥାନ୍ତି ।
ଭକ୍ତ ବଳେ ରଣେ ଜିଣି ନେବି ତାଙ୍କ କଣ୍ଠି ॥
ଏମନ୍ତ ପ୍ରକାର କହି ବୀରବେଶ ହେଲା ।
ଯୁଦ୍ଧ କରିବି ବୋଲିଣ କୋପେ ବାହାରିଲା ॥

ଏପରି କହୁଣ ବୀର ଚକ୍ରାକୃତ ବ୍ୟୂହ ।
ରଚନା କରିଲା ମୟୂରଧ୍ୱଜ ତନୟ ॥
ଚଳିଲା ସମର ଅଗେ ତାମ୍ରଧ୍ୱଜ ବୀର ।
ଧନୁ ଟଙ୍କାରରେ କମ୍ପମାନ ତିନିପୁର ॥
ଶୁଣି ଏସନ ଶ୍ରୀକୃଷ୍ଣ କହନ୍ତି ଅର୍ଜ୍ଜୁନେ ।
ମୋ ବଚନ ଶୁଣ ସଖା ତୁମ୍ଭେ ଏହିକ୍ଷଣେ ॥
ଅତ୍ୟନ୍ତ ଧାର୍ମିକ ଜିତେନ୍ଦ୍ରିୟ ସତ୍ୟବନ୍ତ ।
ଯଜ୍ଞ ଦାନ ଧ୍ୟାନେ ସଦା ଥାଇ ତାର ଚିତ୍ତ ॥
ବୀରପଣେ ବାସବକୁ ତିଳେ ନ ଗଣଇ ।
ଏପରି ରାଜା ମୟୂରଧ୍ୱଜ ଯେ ଅଟଇ ॥
ତାହା ପୁତ୍ର ତାମ୍ରଧ୍ୱଜ ସମରେ ନିପୁଣ ।
ସତ୍ୟ ନ୍ୟାୟ ଧର୍ମେ ସଦା ଥାଏ ତାର ମନ
ତେଣୁ ସଖା ମୋର ମନେ ଭୟ ହୁଏ ଜାତ
ସାବଧାନେ ଯୁଦ୍ଧ କର ଏହାର ସହିତ ॥
ଦାରୁକ ଚାଳିତ ରଥେ ମୁଁ ରଥି ହୋଇଣ ।
ତାମ୍ରଧ୍ୱଜର ସହିତ କରିବି ମୁଁ ରଣ ॥
ବେଗେ ଗୃଧ୍ରବ୍ୟୂହକୁ ରଚନା କର ବୀର ।
ନୋହିଲେ ନିନାଶ ହେବେ ସକଳ ଅମ୍ଭର ॥
ଏହା ଶୁଣି ପାର୍ଥ ବେଗେ ବ୍ୟୂହକୁ ରଚିଲେ
ମୁଖରେ ତାହାର ଯାଇଁ ଶ୍ରୀହରି ରହିଲେ ॥
କଣ୍ଠ ଦେଶରେ ରହିଲେ ଅନୁଶାଲ୍ୱ ବୀର ।
ନେତ୍ରଦ୍ୱାରେ ରହିଲେ ଶାମ୍ବ ସାତ୍ୟକି ନିକଟ ॥
ହଂସଧ୍ୱଜ ନୀଳଧ୍ୱଜ ବେନି ନୟନରେ ।
ବଭ୍ରୁବାହାନାଦି ବୀର ରହିଲେ ପାଦରେ ॥
ଯୁବନାଶ୍ୱ ତ୍ରମଘବର୍ଣ୍ଣ ଦୁଇପାଖେ ରହି ।
ନିଜେ ହୃଦୟରେ ପାର୍ଥ ରହିଲେକ ଯାଇଁ ॥
ବେନିବଳେ ମିଶାମିଶି ସେଠାରେ ହୋଇଲେ
ଉଭୟଙ୍କ ବୀରନାଦେ ମହୀ ଚମକିଲେ ॥
କୃଷ୍ଣେ ଦେଖି ତାମ୍ରଧ୍ୱଜ ରଥୁ ଓହ୍ଲାଇଲା ।
ଚରଣେ ପ୍ରଣାମ କରି ବଚନ ବୋଇଲା ॥
ଆହେ ପ୍ରଭୁ ନାରାୟଣ ଭକତ ସୋଦର ।
ଆହେ ଦୟାମୟ ହରି ଶଙ୍ଖ ଚକ୍ରଧର ॥
ଭକ୍ତର ଅଧୀନ ହରି ଜାଣନ୍ତି ଜଗତେ ।
ଭକ୍ତରେ ତୁମ୍ଭ ସହିତ ଜିଣି କୁନ୍ତୀସୁତେ ॥
ତୁମ୍ଭ ପାଦ ଦର୍ଶନରେ ମୋର ସର୍ବ ପାପ ।
କ୍ଷୀଣ ହୋଇଛି ଆହେ ରୁକ୍ମିଣୀ ନାୟକ

ସତ୍ର ଅଶ୍ୱମେଧ ମୋର ପିତା କରଛଇଁ ।
କେଉଁଦୋଷେ ଦେଖା ତାଙ୍କୁ ନ ଦଅଗୋସାଇଁ
ଏସନ କହୁଣ ବୀର କ୍ରୋଧେ ଧନୁର୍ବାଣ ।
ଧରଣ ଅର୍ଜ୍ଜୁନ ପରେ ବର୍ଷିଲା ବହନ ॥
ତିନିବାଣ ଶ୍ରୀକୃଷ୍ଣଙ୍କୁ ମନ୍ତ୍ରିଣ ବର୍ଷିଲା ।
ସେ ଶର ତେଜରେ ଶାନ୍ତା କଲେ ନନ୍ଦବଳା
ଶ୍ରାବଣ ମାସରେ ଯେସନେ ବରଷଇ ନୀର ।
ଅବିଶ୍ରାନ୍ତ ବାଣ ପଡ଼େ ସେ ରଣ ଭୂମିର ॥
ପ୍ରଳୟ ମେଘର ପରି ରଡ଼ି ସେ ଛାଡ଼ିଲା ।
ସେ ଶବଦେ ମେଘ କିବା ଖସିଣ ପଡ଼ିଲା ॥
ଦେଖି ଏସନ ଅବସ୍ଥା ତାମ୍ରଧ୍ୱଜ ବୀର ।
ଏକାବେଳେ ପ୍ରହାରିଲେ କୋଟି କୋଟି ଶର
ତାହାଙ୍କୁ କୋଡିଏ ତାଙ୍କୁ ମାରଇ ଯେ ଶଏ ।
ଶର ମାରି ସମସ୍ତଙ୍କୁ କରିଲା ଅଥୟେ ॥
ଦେଖି ଏସନ ଅବସ୍ଥା ଅନିରୁଦ୍ଧ ଶର ।
ପ୍ରତିଶରେ ନିବାରିଲା ତାମ୍ରଧ୍ୱଜ ବୀର ॥
କ୍ରୋଧେ ଡାକଦେଇ ବୀର ମାରେ ବାଣଗଣ ।
ବୋଲେ ଅରେ ମୋ ସହିତ କର ତୁହି ରଣ
ଦୁଇସିଂହ ରଣେ ଯେସନେ ହେଲେ ଅଗୁସାର
ମହାକ୍ରୋଧେ ଯୁଦ୍ଧକଲେ ଅତି ଚମତ୍କାର ॥
ବେଗେ ତାମ୍ରଧ୍ୱଜ ମାରେ ଏକ ଦିବ୍ୟବାଣ ।
ସେ ବାଣରେ ଅନିରୁଦ୍ଧ ହରାଇଲେ ଜ୍ଞାନ ॥
ଅନିରୁଦ୍ଧ ମୋହ ଦେଖି ବୃଷକେତୁ ବୀର ।
ତାମ୍ରଧ୍ୱଜ ଆଗେ ପ୍ରବେଶିଲା ସେ ସତ୍ୱର ॥
କ୍ରୋଧେ ପାଞ୍ଚବାଣ ବୀର କରିଲେ ପ୍ରହାର ।
ସେ ବାଣରେ ରଥ ଖଣ୍ଡ ଖଣ୍ଡ ହେଲା ତାର ॥
ତାମ୍ରଧ୍ୱଜ ସେ ରଥକୁ ଛାଡ଼ି ତତକ୍ଷଣ ।
ଅନ୍ୟ ରଥ ଚଢ଼ି କଲା ବାଣ ବରଷଣ ॥
ପୁଣି ବୃଷକେତୁ ମାରି ତୀକ୍ଷ୍ଣ ତୀକ୍ଷ୍ଣ ବାଣ ।
ରଥ ଖଣ୍ଡ ଖଣ୍ଡ କଲା ସର୍ବ ବିଦ୍ୟମାନ ॥
ଏହିପରି ତିନିଥର ବିରଥ କରିଲା ।
ଶେଷେ ତାମ୍ରଧ୍ୱଜ ଅନ୍ୟ ରଥ ଆରୋହିଲା ॥
ଚମ୍ପୁର ପଲକେ ବୀର ତୀକ୍ଷ୍ଣ ଅଶ୍ୱଗଣ ।
କ୍ରୋଧଭରେ ଛାଡ଼େ ମୟୂରଧ୍ୱଜ ନନ୍ଦନ ॥
ସେ ବାଣରେ ବୃଷକେତୁ ଚେତା ହରାଇଲେ
ତାଙ୍କ ଅନୁଶାଲ୍ୱ ବେଗେ ଯାଇ ଯୁଦ୍ଧ କଲେ

ଦୁଇ ମହାବୀର ସେହି ସମରେ ଅଟଳ ।
ଦୁହେଁଯାକ ଶର ମାରୁଛନ୍ତି ଅନିବାର ॥
କ୍ରୋଧେ ତାମ୍ରଧ୍ୱଜ ବୀର ତୀକ୍ଷ୍ଣ ତୀକ୍ଷ୍ଣବାଣ
ବିନ୍ଧି ଅଚେତନ କଲା ଅନୁଶାଲ୍ୱ ପୁତ୍ର ॥
ଏହିପରି ଯେତେବୀର ହେଲେ ଆଗୁସାର ।
ସମସ୍ତଙ୍କୁ ପରାଜିଲା ତାମ୍ରଧ୍ୱଜ ବୀର ॥
ଦେଖିଣ ଏସନ ସ୍ଥିତି ବଭ୍ରୁବାହ ବୀର ।
କ୍ରୋଧେ ଆପଣା ଧନୁକୁ କରିଲେ ଟଙ୍କାର ॥
ଚମ୍ପୁର ନିମିଷେ ବୀର ଛାଡ଼େ ଅସ୍ତ୍ରଗଣ ।
କକଡ଼ା ମାସରେ ଯେସନେ ବରଷଇ ଘନ ॥
କେତେକେତେ ସୈନ୍ୟଗଣ ଯମାଳୟ ଗଲେ
ଦେଖି ତାମ୍ରଧ୍ୱଜ କ୍ରୋଧେ ବଚନ ବୋଇଲେ
ଦଣ୍ଡେ ସ୍ଥିର ହୋଇ କର ମୋ ସଙ୍ଗେ ସମର
ଦେଖାଯିବ କେଡ଼େ ବୀରପଣ ଅଛି ତୋର ॥
ଏସନ କହିଣ ବୀର ମାରେ ଅସ୍ତ୍ରଗଣ ।
ଦୁହିଙ୍କର ଅସ୍ତ୍ର ଦୁହେଁ କରନ୍ତି ଛେଦନ ॥
କ୍ରୋଧେ ବଭ୍ରୁବାହ ବୀର ମାରେ ସାତବାଣ ।
ତାହା କାଟି ତାମ୍ରଧ୍ୱଜ ପେଶେ ତୀକ୍ଷ୍ଣବାଣ
ଦୁଇବାଣେ ବଭ୍ରୁବାହ ରଥ ଚୂର୍ଣ୍ଣ କଲା ।
ତିନିବାଣେ ସାରଥିର ପରାଣକୁ ନେଲା ॥
ପୁଣି ଏକ ତୀକ୍ଷ୍ଣବାଣ କରିଲା ସନ୍ଧାନ ।
ସେ ଶରେ ମୋହ ହୋଇଲେ ଅର୍ଜ୍ଜୁନ ନନ୍ଦନ
ବଭ୍ରୁବାହେ ପରାଜିତ କରି ବୀରବର ।
କୃଷ୍ଣଙ୍କ ଅଡ଼କୁ ଧାଏଁ ସକ୍ରୋଧ ଅନ୍ତର ॥
ଭୟଙ୍କର ରୂପ ତାର ଦେଖି ସୈନ୍ୟଗଣ ।
ପ୍ରାଣରକ୍ଷା ଭୟେ ନେଲେ ଅର୍ଜ୍ଜୁନ ଶରଣ ॥
ଯେତେବେଳେବୀରମାନେମୋହହୋଇଗଲେ
ତାହାଙ୍କୁ ଛାଡ଼ିଣ ସୈନ୍ୟମାନେ ପଳାଇଲେ ॥
ସୈନ୍ୟଙ୍କୁ ପ୍ରବୋଧ ଦେଇ ସୁଭଦ୍ରାର ପତି ।
ତାମ୍ରଧ୍ୱଜେ ନବବାଣ ମାରିଲେ ଝଟତି ॥
ରଥୁଁ ଭୂମିରେ ପଡ଼ିଲେ ତାମ୍ରଧ୍ୱଜ ବୀର ।
ଅନ୍ୟରଥେ ଚଢ଼ି ପାର୍ଥେ କରିଲେ ଅସ୍ଥିର ॥
ରହ ରହ ବୋଲି ପାର୍ଥ ଶର ଯେ ପେଷିଲେ
ରଥ ଅଶ୍ୱ ସାରଥିକି ଖଣ୍ଡ ଖଣ୍ଡ କଲେ ॥
ତାମ୍ରଧ୍ୱଜ ଆରୋହିଣ କୋପେ ଅନ୍ୟରଥେ ।
କାଟିଲେ ଅର୍ଜ୍ଜୁନ ବାଣ ତୀକ୍ଷ୍ଣ ବାଣଘାତେ ॥

ବୋଲେ ପାର୍ଥଙ୍କୁ ମୟୂରଧ୍ୱଜର ନନ୍ଦନ ।
ଯଜ୍ଞ ଅଶ୍ୱସହ ବାନ୍ଧି ନେବି ମୋ ସଦନ ॥
ଏହା ଶୁଣି ବୀରବର ପାଣ୍ଡୁଙ୍କ ନନ୍ଦନ ।
ତାମ୍ରଧ୍ୱଜ ରଥ ପୁଣି କରିଲେ ଛେଦନ ॥
କ୍ରୋଧେ ଗାଣ୍ଡିବ ଧନୁରେ ବସାଇଲେ ଶର ।
ନାରାୟଣ ଶର ସେହୁ ଜଗତେ ପ୍ରଚୁର ॥
ସେ ଶର ଅଘାତେ ତାମ୍ରଧ୍ୱଜ ବୀରବର ।
ଯୋଜନେକ ଦୂରେ ପଡ଼େ ରଥ ସହିତର ॥
ଏଣେ ଅର୍ଜ୍ଜୁନ ନାଶିଲେ ତାର ସୈନ୍ୟଗଣ ।
ନିମିଷେ ଅସେ ମୟୂରଧ୍ୱଜର ନନ୍ଦନ ॥
କ୍ରୋଧେ ପାର୍ଥେ ଲକ୍ଷକରି ତୀକ୍ଷ୍ଣ ତୀକ୍ଷ୍ଣଶର ।
ମାରି ଅର୍ଜ୍ଜୁନଙ୍କ ଶର ନାଶିଲା ସତ୍ୱର ॥
ଦୁଇଜଣ ମହାବୀର ଅଟନ୍ତି ସମରେ ।
ଭୟଙ୍କର ଯୁଦ୍ଧ ସେ କରନ୍ତି କ୍ରୋଧଭରେ ॥
କ୍ରମେ ଅର୍ଜ୍ଜୁନ ତାହାର କାଟି ଶସ୍ତ୍ର ରଥ ।
ତଥାପି ନୋହିଲେ ସେହୁ ବୀର ଭଗ୍ନରଥ ॥
ପାର୍ଥର ବାଣରେ ମାଂସ ଦେହୁ ଛିନ୍ନ ହୋଇ
ଧୂଳି ପରି ଉଡ଼ ହାଡ଼ ଦେଖାଗଲା ତହିଁ ॥
ତଥାପି ସେ ତାମ୍ରଧ୍ୱଜ ବୀରଙ୍କ ପ୍ରଧାନ ।
ତୀକ୍ଷ୍ଣ ତୀକ୍ଷ୍ଣ ଅସ୍ତ୍ରମାନ କରଇ ସନ୍ଧାନ ॥
କ୍ରୋଧେ ଅର୍ଜ୍ଜୁନଙ୍କ ରଥ ଧରି ବୀରବର ।
ଆକାଶକୁ ନେଇ ପକାଇଲେ ପୃଥିବୀର ॥
ରଥ ପଡ଼ନ୍ତେ ଶ୍ରୀକୃଷ୍ଣ ତାହାକୁ ଧଇଲେ ।
ତାମ୍ରଧ୍ୱଜ ଶିରପରେ ଗଦା ପ୍ରହାରିଲେ ॥
ତାହା ଅଘାତରେ ବୀର କିଞ୍ଚିତ୍‌କ୍ଷଣ ମୋହ ।
ହୋଇଣ ଚେତନା ଲଭି ମାରେ ବାଣଚୟ ॥
ଦେଖିଣ ଏସନ ଦଶା ଶ୍ରୀମଧୁସୂଦନ ।
ବୋଇଲେ ହେ ସଖା ଶୁଣ ମୋହର ବଚନ ॥
ତାମ୍ରଧ୍ୱଜ ମହାବୀର ସମରେ ଦୁର୍ଜ୍ଜୟ ।
ଦୁଇଜଣ ମିଶି ଯୁଦ୍ଧ କରିବା ତା ସହ ॥
ଗାଣ୍ଡିବ ଧନୁକୁ ତୁମ୍ଭେ ଦୃଢ଼କରି ଧର ।
ଶାରଙ୍ଗ ଧନୁରେ ମୁଁ ଛେଦିବି ଏହା ଶିର ॥
ଏସନ କହିଣ ହରି ତୀକ୍ଷ୍ଣ ଅସ୍ତ୍ରମାନ ।
ପ୍ରହାର କରିଲେ ତାମ୍ରଧ୍ୱଜକୁ ବହନ ॥
ଅର୍ଜ୍ଜୁନ ଯେ ତୀକ୍ଷ୍ଣ ଅସ୍ତ୍ର କରିଲେ ପ୍ରହାର ।
ଦୁହିଁଙ୍କ ଅସ୍ତ୍ର କାଟିଲେ ତାମ୍ରଧ୍ୱଜ ବୀର ॥
ବୋଲେ ଅହେ ନାରାୟଣ ଆଜ ରଣସ୍ଥଳେ ।
ଯୁଦ୍ଧକରି ଯଶ ମୁହିଁ ରଖିବି ଧରାରେ ॥
ଏସନ କହିଣ ବୀର ମାରେ ଶରଗଣ ।
ସେ ଶର କାଟି ଅର୍ଜୁନ ମାରେ ତୀକ୍ଷ୍ଣ ବାଣ ॥
ତାମ୍ରଧ୍ୱଜର ଶରୀର ବିକୋଡ଼ି କାଟିଲେ ।
ଶତେବେଳ ଯାଏ ତାଙ୍କୁ ପରାସ୍ତ କରିଲେ ॥
ତଥାପି ସେ ବୀରବର ଆସି ଯୁଦ୍ଧକଲା ।
ଅର୍ଜୁନଙ୍କ ହୃଦେ ଏକ ଶକତି ମାଇଲା ॥
ପରମ ଅନନ୍ଦେ ଦୁହେଁ କରୁଛନ୍ତି ରଣ ।
ସ୍ୱର୍ଗେ ଥାଇ କୌତୁକ ଦେଖନ୍ତି ଦେବଗଣ ॥
ବାସଦେବ ତନୟ ଘୋର ଯୁଦ୍ଧ କଲେ ।
ମେଦନୀ ସହିତେ ମେରୁ ସାଗର କମ୍ପିଲେ ॥
ଦୁହିଙ୍କର ବଳ ପରାକ୍ରମ ହେଲା ସରି ।
ପାଦଘାତେ ବାସୁକୀ ତଳକୁ ଶିରକରି ॥
ଅର୍ଦ୍ଧ ଅକାଶରେ ଥାଇ ଦେବେ ଦେଖୁଥିଲେ
ଧନ୍ୟ ଧନ୍ୟ ବେନି ବୀରେ ବହୁ ପ୍ରଶଂସିଲେ ॥
ବେନି ସୈନ୍ୟବଳ ଯେ ଦେଖନ୍ତି ଉଭାହୋଇ ।
ମଧ୍ୟସ୍ଥପଣରେ ଯେତେ ଅସ୍ତ୍ରମାନ ଥୋଇ ॥
ଦୁହେଁ ଦୁହିଁଙ୍କର ଶର ଛେଦ ପକାବନ୍ତି ।
ଯେ ଯାହାର ମର୍ମ୍ମସ୍ଥାନ ଜାଣିଣ ବିନ୍ଧନ୍ତି ॥
ନିମିଷକେ ଲକ୍ଷେଶର ପ୍ରହାର କରନ୍ତି ।
ପ୍ରଳେକାଳ ପ୍ରାୟେ ତେଜ ବେନି ବିକାଶନ୍ତି ॥
ତାମ୍ରଧ୍ୱଜ ପାଞ୍ଚଶର ମନ୍ତ୍ରିଣ ବିନ୍ଧିଲା ।
ପାର୍ଥରଥ ଦକ୍ଷିଣକୁ ବେଗେ ଭ୍ରମିଗଲା ॥
ଦଶଦିଗ ଭ୍ରମିଣ ସେ ରହିଲା ଶୂନ୍ୟରେ ।
ଶ୍ରୀକୃଷ୍ଣ ଯେ ବସିଥିଲେ ସେ ରଥ ଉପରେ ॥
ନନ୍ଦିଘୋଷ ରଥ ପୁଣି ଅଟଇ ହୋ ସେହି ।
ପାର୍ଥ ରଥ ଛେଦନ୍ତେ ସେ ବସିଲେକ ତହିଁ ॥
କପି କେତନ ଉପରେ ଅଛି ହନୁମନ୍ତ ।
ତାମ୍ରଧ୍ୱଜ ଶୂନ୍ୟେ ଉଡ଼ାଇଲା ତେତେ ରଥ ॥
କୋପେ ବେନିଶର ପୁଣି ବିନ୍ଧିଲା ରଥକୁ ।
ଶୂନ୍ୟରୁ ରଥ ପକାଇ ଦେଲାକ ତଳକୁ ॥
ସେ ରଥ ତଳକୁ ବେନି ଯୋଜନ ପଶିଲା ।
ପାର୍ଥର ପରାଏ ବୀର ମୂର୍ଚ୍ଛା ପୁଣି ହେଲା ॥
ରଥଦଣ୍ଡ ଧରି ହରି ବଳେ ଓଟାରିଲେ ।
ପାତାଳୁ ବାହାର କରି ରଥ ବେଗେନେଲେ ॥

ଚେତନା ପାଇଣ ପାର୍ଥ ଉଠିଲା ତକ୍ଷଣ ।
ଦେଖିଲା ଶ୍ରୀକୃଷ୍ଣ ବସି ଅଛନ୍ତି ରଥେଣ ॥
ତାମ୍ରଧ୍ୱଜ ଶ୍ରୀହରିଙ୍କି ବଚନ କହଇ ।
ଜାଣିଲି ଅର୍ଜୁନକୁ ରଖିଲେ ଭବଗ୍ରାହୀ ॥
ତୁମ୍ଭ ରଥ ଯୋଗେନେ ମୁଁ ଉତରକୁ ଦେଲି ।
ଓଟାରି ଆଣିଲି ମୁହିଁ ପ୍ରତ୍ୟକ୍ଷେ ଦେଖିଲି ॥
ଯେ ରଥେ ଅଛନ୍ତି କୃଷ୍ଣାର୍ଜୁନ ହନୁମନ୍ତ ।
ଯୋଗେନେକ ତଳକୁ ପଶିଲା ସେତେଡ଼େ ରଥ ॥
ଯେଣୁ ତୁମ୍ଭ ଦର୍ଶନେ ମୁଁ ପାତକ ନାଶିଲି ।
ତେଣୁ ତୁମ୍ଭ ଏତେଡ଼େ ରଥ ତଳକୁ ଚାପିଲି ॥
ପାର୍ଥଙ୍କ ସଙ୍ଗତେ ପୁଣ କରିବି ସମର ।
ଜିଣିଲେ ସଂସାରେ ବୋଲାଇବି ମହାବୀର ॥
ଜିଣି ନ ପାରଲେ ତୁମ୍ଭ ଆଗରେ ମରିବି ।
ମୁକ୍ତ ହୋଇ ଯାଇ ମୁହିଁ ବୈକୁଣ୍ଠେ ବସିବି ॥
ଏତେ କହି କୃଷ୍ଣଙ୍କୁ ବିନ୍ଧିଲା ପାଞ୍ଚଶର ।
ଗଦା ବୁଲାଇଣ ବଞ୍ଚାଇଲେ ଚକ୍ରଧର ॥
ତାହାଦେଖି ଶ୍ରୀକୃଷ୍ଣ ଯେ ମହାକୋପ କଲେ ।
ତାମ୍ରଧ୍ୱଜ ଉପରକୁ ଗଦା ପ୍ରହାରିଲେ ॥
ଦେଖି ଶିଖିଧ୍ୱଜ ସୁତ ଗଦା ବଞ୍ଚାଇଲା ।
ରଥନେଇ ଅର୍ଜୁନର ସମ୍ମୁଖେ ଠେକିଲା ॥
ଧରିଣ ଗାଣ୍ଡିବ ଧନୁ ଯୁଝନ୍ତି ଅର୍ଜୁନ ।
ଶାରଙ୍ଗ ଧନୁରେ ଯୁଝୁଛନ୍ତି ଭଗବାନ ॥
ଦୁହିଙ୍କର ବାଣ ଏକା ଛେଦେ ମହାବୀର ।
ଦେହକୁ ତାଙ୍କର ବିନ୍ଧେ ଶତ ଶତ ଶର ॥
ତାମ୍ର ଧ୍ୱଜ ବୀରମାନଙ୍କର ଶିରୋମଣି ।
ଶ୍ରୀକୃଷ୍ଣ ଅର୍ଜୁନକୁ ବିନ୍ଧଇ ଏକା ପୁଣି ॥
ପୁନରପି କୃଷ୍ଣଙ୍କୁ ବୋଲଇ ମହାବୀର ।
ଆଜ ହରି ତୁମ୍ଭେ ଅର୍ଜୁନକୁ ରକ୍ଷାକର ॥
ଭାରତ ଯୁଦ୍ଧରେ ତା ସାରଥି ହୋଇଥିଲ ।
ଭୀଷ୍ମ ଦ୍ରୋଣ କର୍ଣ୍ଣଠାରୁ ଯେମନ୍ତ ରଖିଲ ॥
ସେହିରୂପେ ଏବେ ତୁମ୍ଭେ ରଖ ଅର୍ଜୁନକୁ ।
ନୋହିଲେ ମୁଁ ଯମପୁରେ ପେଶିବି ତାହାଙ୍କୁ ॥
ନର ନାରାୟଣ ତୁମ୍ଭେ କରୁଛ ସମର ।
ଜଗତ ଈଶ୍ୱର ତୁମ୍ଭେ କିବା ମୁହିଁ ଛାର ॥
ଧର୍ମ ଯୁଦ୍ଧ ଛାଡ଼ି କରି ଅଧର୍ମେ ଯୁଝିଲ ।
ମୁହିଁ ଏକା ମୋ ସଙ୍ଗେ ସମର ଦୁହେଁ କଲ ॥
ଏତେ କହି ଦଶବାଣ କଲାକ ପ୍ରହାର ।
କୃଷ୍ଣାର୍ଜୁନ ହସୁ ବେଗେ ଛେଦିଲେକ ଶର ॥
ବୋଲେ ପୂର୍ବେ ହରି ଯେ ସାରଥିହୋଇଥିଲେ
ତାହା ଛାଡ଼ି ଏବେ ରଥି ହୋଇଣ ଯୁଝିଲେ ॥
ଜାଣିଲି ଛାଡ଼ିଲ ତୁମ୍ଭେ ନିଶ୍ଚେ ଅର୍ଜୁନକୁ ।
ଆଜ ମୁଁ ପେଶିବି ତାକୁ ଯମ ଭବନକୁ ॥
ତାହା ଶୁଣି ହରି ନିଜ ଅସ୍ତ୍ର ତ୍ୟାଗ କଲେ ।
ଅର୍ଜୁନର ରଥେ ବସି ସାରଥି ହୋଇଲେ ॥
ତାମ୍ରଧ୍ୱଜ ଶତେଶର ବିନ୍ଧିଲା କୃଷ୍ଣଙ୍କୁ ।
ବିନ୍ଧିଲା ଷାଠିଏ ବାଣ ମନ୍ତ୍ରୀ ଅର୍ଜୁନକୁ ॥
ତାହା ଦେଖି ଶତେଶର ଅର୍ଜୁନ ବିନ୍ଧିଲେ ।
ସବୁ ଶରଯାକ ତାର ଛେଦ ପକାଇଲେ ॥
ପୁଣି ପାର୍ଥ ତାହାକୁ ବିନ୍ଧିଲେ ଦଶଶର ।
ମୋହେ ପକାଇଲେ ତାମ୍ରଧ୍ୱଜକୁ ରଥର ॥
ତେତେଡ଼େବଡ଼ ବୀର ମୋହେ ରଥରେ ପଡିଲେ
ଚେତ ଉଠି ଅର୍ଜୁନକୁ ବେଗେଣ ଡାକିଲେ ॥
ସାରଥି ତା ରଥକଲା ପାର୍ଥ ନିକଟରେ ।
ବେଗେ ଯାଇଁ ଉଠିଲେ ଶ୍ରୀକୃଷ୍ଣ ତା ରଥରେ
ତାମ୍ରଧ୍ୱଜ ହୃଦୟରେ ପାଦେକ ମାଇଲେ ।
କୋଟି କୋଟି ଜନ୍ମର ତା ପାତକ ଦହିଲେ
ପାଦବାଜି ମୋହେ ବୀର ଭୂମିରେ ପଡ଼ିଲା ।
ଚେତ ଉଠି ରଥେ ବସି କୃଷ୍ଣଙ୍କୁ ବୋଇଲା ॥
ଭଲକଲ ମୋତେ ତୁମ୍ଭେ ପାଦେକ ମାଇଲ ।
ଯେ ଥିଲା ପୂର୍ବର ପାପ ସକଳ ଦହିଲ ॥
ଏବେ ତୁମ୍ଭ ସହିତେ ଜିଣିବି ଅର୍ଜୁନରେ ।
ବଳବନ୍ତ ହେଲି ପାଦପଦ୍ମ ଛୁଇଁବାରେ ॥
ଏତେବୋଲି ଲକ୍ଷେ ବାଣ କଲାକ ପ୍ରହାର ।
ଅର୍ଜୁନ ନାଶିଲେ ତା ବନ୍ଧଣ ପ୍ରତିଶର ॥
ପୁଣି ତାମ୍ରଧ୍ୱଜ ଯେ ବିନ୍ଧିଲା ଶତେବାଣ ।
ପ୍ରତିଶରେ ପାର୍ଥ ତାହା ଦେଲେକ ଛେଦଣ ॥
କୋପେ ରାଜସୁତ ପୁଣି ବାଣେକ ବିନ୍ଧିଲା ।
କୃଷ୍ଣ ଅର୍ଜୁନର ରଥ ଶୂନ୍ୟେ ବୁଲାଇଲା ॥
ଦେଖି ହରି ପାର୍ଥ ଦୁହେଁ ହୋଇଲେ କାତର
ଦଣ୍ଡେକ ବୁଲି ରଥ ପଡ଼ିଲା ଭୂମିର ॥
ଘଡ଼ିକେ ଉଠିଲେ ଦୁହେଁ ଦେହ ସମ୍ଭାଳିଣ
ପୁଣି ତାହା ସଙ୍ଗତରେ କଲେ ଯୋଧଣ ॥

ସୈନ୍ୟମାନେ ଯେତେ ୨ ମୋହେ ପଡ଼ିଥିଲେ
ପଦ୍ମନ ସହିତେ ସର୍ବେ ଚେତଣ ଉଠିଲେ ॥
ସମସ୍ତେ ଯୁଝିଲେ ବେଢ଼ି ସେ ତାମ୍ରଧ୍ୱଜକୁ ।
ବାଣରେ ସହସ୍ର ପୂର ଅଚ୍ଛାଦିଲେ ତାକୁ ॥
ଦେଖି ତାମ୍ରଧ୍ୱଜ ତାହା ଛେଦଣ ପକାଇ ।
ସମସ୍ତଙ୍କୁ ଏକା ସେ ଯେ ହୋଇଣ ଯୁଝଇ ॥
ମୋହତେଜ ଉଠି ଯୁଝୁଥିଲେ ଯେତେ ବୀର ।
ବାନ୍ଧିଲା ସେ ଜଣେ ଜଣେ ଦଶ ଦଶ ଶର ॥
ଶରବାଜ ସମସ୍ତେ ଯେ ମୋହେଣ ପଡ଼ିଲେ ।
ଦେବତାଏ ତାହା ଦେଖି ଚକିତ ହୋଇଲେ
ଦେଖି କୋପକଲେ ତହୁଁ ପ୍ରଭୁ ଭଗବାନ ।
ହୁହ ହୁହ ବୋଲି ପାଞ୍ଚଜନ୍ୟ କଲେ ସ୍ୱନ ॥
ଅରେ ଅରେ ବୋଲି ତାମ୍ରଧ୍ୱଜକୁ ଡ଼ାକିଲେ
ନିଜକରେ ଧରି ସୁଦର୍ଶନ ବୁଲାଇଲେ ॥
ବ୍ରହ୍ମା ଆଦି ଦେବେଦେଖି କାତର ହୋଇଲେ
ଶେଷପରେ ମେରୁ ଆଦି ମେଦିନୀ କମ୍ପିଲେ ॥
ତଳପୁର ଆଦି ସାତ ସିନ୍ଧୁ ଉଚ୍ଛୁଳିଲେ ।
ଚକ୍ରର ତେଜରେ ଯେ ଆଦିତ୍ୟ ନ ଦିଶିଲେ
ଦିଗପତି ପଳାଇଲା ହୋଇଣ କାତର ।
ଶେଷ ଆଦି ନାଗ ହେଲେ କୁଣ୍ଡଳ ଆକାର ॥
ଚକ୍ର ବୁଲାବନ୍ତେ ସପ୍ତଦ୍ୱୀପ ଯେ ବୁଲିଲା ।
ଚଉଦ ଭୁବନଯାକ ଉଲ୍ଲୋଳ ହୋଇଲା ॥
ତାମ୍ରଧ୍ୱଜ ବୀରଙ୍କ ଉପରେ ମହାବୀର ।
ଦେଖି ତେତେ଼ ଉପ୍ରାନ୍ତ ନ ଡ଼ରଇ ମନର ॥
କୋପକରି ମାଇଲେକ ବେଗେ ସୁଦର୍ଶନ ।
ସେ ବଞ୍ଚି ରହିଲା ସବୁ ମଲେ ତା ସଇନ୍ୟ ॥
ଯେତେସୈନ୍ୟମଲେ ସେବୈକୁଣ୍ଠପୁରେଗଲେ
ସ୍ୱର୍ଗେ ଦେବେ ତାମ୍ରଧ୍ୱଜ ସମର ଦେଖିଲେ ॥
ତାହା ଦେଖି ତାମ୍ରଧ୍ୱଜ ହରିଙ୍କୁ କହଇ ।
ତୁମ୍ଭଙ୍କୁ ସୈନ୍ୟଗହଳେ ଦେଖି ନ ପାରଇ ॥
ଭଲକଲ ସବୁ ସୈନ୍ୟ ମାଇଲ ମୋହର ।
ପାପନାଶି ସେମାନେ ବସିଲେ ବୈକୁଣ୍ଠର ॥
ଏବେ ତୁମ୍ଭ ରୂପ ଦେଖି ଯୁଝୁଥିବି ମୁହିଁ ।
କୋଟି କୋଟି ଜନମର ଦୁଃଖ ନାଶିବଇଁ ॥
ଯୁଦ୍ଧେ ଯାର ଶସ୍ତ୍ରବାଜ ଯାଏ ନିଜ ପ୍ରାଣ ।
ସେ ଯୁଦ୍ଧରେ ହରି ନ ଦେଖିଲେ ବ୍ୟର୍ଥଜାଣ

ଜନ୍ମ ମୃତ୍ୟୁ ବେନି କଥା ଶାସ୍ତ୍ରରେ ଉକତ ।
ତୁମ୍ଭର ଦର୍ଶନେ ଏଥୁଁ ଲଭିଲି ମୁକତି ॥
ସୁଧନ୍ୱା ଯୁଦ୍ଧରେ ପୂର୍ବେ ସର୍ବ ଧର୍ମ ଦେଲି ।
ମୋର ଯୁଦ୍ଧେ ଯତ୍ନେ ହରି ଶରୀର ରଖିଲ ॥
ଯେବେ ମୋହଠାରେ ଦୟା ଅଛି ହେ ତୁମ୍ଭର
ତେବେ ଆଜ ଘୋରଯୁଦ୍ଧ କର ଚକ୍ରଧର ॥
ବଗୁର କ ଆଜ ମୁଁ ତୁମ୍ଭଙ୍କୁ ଛାଡ଼ିଦେବି ।
ଅର୍ଜ୍ଜୁନ ସହ ତୁମ୍ଭଙ୍କୁ ମୋହ କରାଇବି ॥
ମୋର ପିତା ସର୍ବଦା ତୁମ୍ଭଙ୍କୁ ଲୋଡୁଥାଇ ।
ଯଜ୍ଞ ଅଶ୍ୱ ସହିତେ ଦେବଇଁ ତାଙ୍କୁ ନେଇ ॥
ଆଜ ହୋ ଅବଶ୍ୟ ମୁଁ ତୁମ୍ଭଙ୍କୁ ଧରିନେବି ।
ପିତା ଅଶ୍ୱମେଧ ଯଜ୍ଞ ସଫଳ କରିବି ॥
ଅନ୍ତର୍ଯ୍ୟାମୀ ବୋଲି ପ୍ରଭୁ ସଂସାରେ ଜାଣନ୍ତି ।
ମୁଁ ଦେଖିଲେ ପ୍ରତେ ହିନା ଯିବ ଲକ୍ଷ୍ମୀପତି ॥
ଏତେ କହି ମୋହଣର ମନ୍ତ୍ରିଣି ବାନ୍ଧିଲା ।
କୃଷ୍ଣ ଅର୍ଜ୍ଜୁନ ଦୁହିଙ୍କି ରଥରେ ମେହିଲା ॥
ଚେତଣ ଉଠିଲେ ବେଗ ହୋଇ ଦୁଇଜଣ ।
କ୍ରୋଧେ ଅର୍ଜ୍ଜୁନ ଗାଣ୍ଡିବେ ଚଢ଼ାଇଲେ ଗୁଣ
କ୍ରୋଧ ହୋଇ ପୁଣି ହରି ଚକ୍ରକୁ ଧଇଲେ ।
ପ୍ରହାରିବା ପାଇଁ ତାମ୍ରଧ୍ୱଜକୁ ବସିଲେ ॥
ଦେଖିଣ ଏସନ ରୀତି ତାମ୍ରଧ୍ୱଜ ବୀର ।
କୃଷ୍ଣେ ସ୍ତୁତି କରି ଡେ଼ଇଁ ପଡ଼ିଲା ସତ୍ୱର ॥
ମନ ମଧ୍ୟରେ ହରିଙ୍କି କରିଣ ସ୍ମରଣ ।
ଧାଇଁ ବେନିଭୁଜେ ତାଙ୍କୁ ଧଇଲା ତୁରିତେଣ ॥
କୃଷ୍ଣଙ୍କୁ ଧରିଣ ପୁଣି ଅର୍ଜ୍ଜୁନେ ଧଇଲା ।
ଦେଖି ଦେବତାଙ୍କ ମନେ ଭୟଜାତ ହେଲା
ଧଇଲା ବେଳରେ କୃଷ୍ଣ ଅର୍ଜ୍ଜୁନଙ୍କ କର ।
ଛଡ଼ାଇ ନ ପାରିଲେ ଅର୍ଜ୍ଜୁନ ଚକ୍ରଧର ॥
ଇଙ୍ଗିତରେ ଟେକିନେଇ ଶିରରେ ରଖିଲା ।
ନରନାରାୟଣ ଦୁଇଭୁଜରେ ବାନ୍ଧିଲା ॥
ବଳହୀନେ କୃଷ୍ଣାର୍ଜ୍ଜୁନେ ରହିଲେ ମୁଣ୍ଡରେ ।
ମହାଭକ୍ତ ତାମ୍ରଧ୍ୱଜ ଅଟେ ବ୍ରହ୍ମାଣ୍ଡରେ ॥
ଦୁହିଙ୍କ ଚରଣ ବାମ ହସ୍ତରେ ଧଇଲା ।
ଦକ୍ଷିଣ ହସ୍ତରେ ହସ୍ତ ଧରି ଘେନିଗଲା ॥
ସବୁ ଯଜ୍ଞେ ପିତା ଭକ୍ତ ଛନ୍ତି ଚକ୍ରଧର ।
ଆଜ ମନୋରଥ ପୂର୍ଣ୍ଣ କରିବି ତାଙ୍କର ॥

ମନେ ଯା ବିସ୍ମରୁଥାନ୍ତି ସେ କଥା କରିବ ।
ଯୁଗ ଯୁଗାନ୍ତରେ କଥା ସଂସାରେ ରହିବ ॥
ଏତେ ବୋଲି ଘେନିଗଲା ଅଶ୍ୱ ସହିତରେ ।
ଶ୍ରୀକୃଷ୍ଣ ମହିମା ସେହି ଭାବିଣ ହୃଦରେ ॥
କହନ୍ତି ଶ୍ରୀକୃଷ୍ଣ ତହିଁ ପାର୍ଥଙ୍କୁ ଚାହିଁଣ ।
ଆବର କି ଦେଖୁଅଛ ନେଉଛି ଧରିଣ ॥
ତୁମ୍ଭର ଅମ୍ଭର ବଳ ଯାକୁ ନୋହେ ସରି ।
ବଳେ ବେନିଭୁଜେ ନେଉଅଛି ଏହି ଧରି ॥

ଏହା ବୀରପଣ ପୂର୍ବେ କହୁଥିଲି ତୋତେ ।
ସେହିକଥା ଏବେ କଲା ଦେଖିଲୁଟି ନେତ୍ରେ
ସତ୍ୟବାଦୀ ବୀର ଏହି ଜାଣନ୍ତି ତ୍ରିପୁରେ ।
ଯାହା କହୁଥିଲା ତାହା କଲା ସାକ୍ଷାତରେ ॥
ଯେବେ ତୋର ବଳଅଛି କରସି ଉପାୟ ।
ନୋହିଲେ ତା ପିତାପାଶେ ନେବ ଏ ନିଶ୍ଚୟ
ମୋର ନାମ ପାର୍ଥ ଧରି ବନ୍ଧ ଶର ତୁହି ।
ଯେମନ୍ତେ ଏହି ଅମ୍ଭଙ୍କୁ ନ ପାରିବ ନେଇ ॥



ଶ୍ରୀକୃଷ୍ଣ ସୁଦର୍ଶନ ଚକ୍ରଦ୍ୱାରା ସୈନ୍ୟ ନାଶ କରିବା ଓ ପୁଣି ସୁଦର୍ଶନ ଚକ୍ରରେ ତାମ୍ରଧ୍ୱଜଙ୍କୁ ମାରିବାକୁ ବସନ୍ତେ ତାମ୍ରଧ୍ୱଜ ଭକ୍ତିବଳରେ ଶ୍ରୀକୃଷ୍ଣଙ୍କୁ ଧରିବା ।

ତାର ମୂର୍ତ୍ତେ ଥାଇ ପାର୍ଥ ହରି ସୁମରିଲା ।
ଶତ ଶତ ବାଣେ ତାଙ୍କୁ ଛିନ୍ନ ଭିନ୍ନ କଲା ॥
ବାଟ ନ ଦେଲା ଯେ ତାଙ୍କୁ ସେ ଶରବ୍ୟୂହରେ
ଦୁହିଁଙ୍କି ଧରିଣ ଅଛି ହସ୍ତରେ ଶିରରେ ॥
ଦଶଦିଗଯାକ ଘୋର ଅନ୍ଧାରେ ପୂରିଲା ।
ବାଟ ହୁଡ଼ି ଯାଇ ନ ପାଇଣ ସେ ଝୁଣ୍ଟିଲା ॥

ପୁଣି ପାର୍ଥ ହରି ସ୍ମରି ଶରକେ ବାନ୍ଧିଲେ ।
ବେନିହସ୍ତେ ଧରିଥିଲା ଖସିଣ ପଡ଼ିଲେ ॥
ପଡ଼ିଲାକ ତାମ୍ରଧ୍ୱଜ ମୁଖ ମାଡ଼ି କରି ।
ଲକ୍ଷ ଲକ୍ଷ ମେରୁ ପ୍ରାୟେ ଯେହୁ ଦୁହେଁ ଭରି
ତ୍ରୈଲୋକ୍ୟ ଈଶ୍ୱର ସେ ଯେ ନର ନାରାୟଣ
ତାମ୍ରଧ୍ୱଜ ଯାଏ ତାଙ୍କୁ ମୁଣ୍ଡରେ ଘେନିଣ ॥

ମାୟାଧର ମାୟାରେ ଯାଆନ୍ତେ ପୁଣ ସେହି ।
ଭୂମିରେ ପଡ଼ଣ ଧନଞ୍ଜୟ ହେଲେ ମୋହ ॥
ଶ୍ରୀହରି ଆପଣେ ନିଜ ମାୟାରେ ଶୋଇଲେ ।
ତାମ୍ର ଧ୍ୱଜ ପାର୍ଥ ଦୁହେଁ ମୋହଗତ ହେଲେ ॥
ଚେତନା ପାଇଣ ତାମ୍ରଧ୍ୱଜ ଯେ ଉଠିଲା ।
ଦୁହେଁ ମୋହେ ପଡ଼ିଛନ୍ତି ଅଣ୍ଡାଳ ଜାଣିଲା ॥
ପୁଣି ବୋଲେ ଏ ଦୁହିଁଙ୍କୁ ଗୃହେ ଘେନିଯିବି ।
ମୋହ ଯାଇଛନ୍ତି ଏହି ପିତା ଆଗେ ଦେବି ॥
ଏତେ ବୋଲି ଟେକିବାକୁ ହରିଙ୍କି ଧରିଲା ।
ବାହୁରେ ତଳେ ଭୂମିରୁ ଟୋଳି ନ ପାରିଲା ॥
ବୋଇଲା ଏ ହରି ଯେ ପ୍ରତ୍ୟକ୍ଷେ ଲକ୍ଷ୍ମୀନାହା ।
ନାରଦଙ୍କ ମୁଖରୁ ମୁଁ ଶୁଣିଅଛି ଏହା ॥
ବ୍ରହ୍ମା ଇନ୍ଦ୍ର ରୁଦ୍ର ଅନ୍ତ ନ ଜାଣନ୍ତି ଯାର ।
ଯାହାର ସର୍ଜିଲା ଏ ଅଟଇ ଚରାଚର ॥
ଭକ୍ତର ଅଧୀନ ବୋଲି ମାନ ରକ୍ଷାକଲେ ।
କି ଶକ୍ତି ମୋହର ନେବି ହରିକି ମୁଁ ବଳେ ॥
ଏହି ଥାଉ ପାର୍ଥେ ନେବି ପିତାଙ୍କ ପାଶକୁ ।
ନର ନାରାୟଣ ଭେଦ ନୁହେ ଭାବିବାକୁ ॥
ମୋହର ବଳରେ କୃଷ୍ଣେ ଟେକି ନ ପାରିବି ।
ଅର୍ଜୁନଙ୍କୁ ନେଇ ପିତାଙ୍କର ପାଶେ ଦେବି ॥
ଏତେ ବୋଲି ଅର୍ଜୁନଙ୍କୁ ଧଇଲାକ ଯାଇଁ ।
ତାହାକୁ ସେ ଭୂମିରୁ ନ ପାରିଲା ଉଠାଇ ॥
ସେହି ଗରୁ ହୋଇଲେ ଶ୍ରୀକୃଷ୍ଣଠାରୁ ଜାଣ ।
ସଂସାରର ମାୟା ସବ ଶ୍ରୀହରି ଭିଆଣ ॥
ତାମ୍ର ଧ୍ୱଜ ବୋଲେ ଯାଙ୍କୁ ନ ପାରିବି ନେଇ ।
ମେରୁ ଗିରିଠାରୁ ବଡ଼ ଏ ଗରୁ ଅଟଇ ॥
ଏ ଦୁହିଁଙ୍କି ବଳେ ମୁହିଁ ନେଇ ନ ପାରିବି ।
ଯାଗ ଅଶ୍ୱ ପିତା ଆଗେ ଦେଇଣ ରହିବି ॥
ଏତେ ବୋଲି ସୈନ୍ୟଘେନି ଗଲାକ ସତ୍ୱର ।
ଅର୍ଜୁନର ଯଜ୍ଞ ଅଶ୍ୱ ନେଲା ସଙ୍ଗତର ॥
ତାମ୍ରଧ୍ୱଜ ଯାଇ ପିତା ପାଶରେ ମିଳିଲା ।
ବେନି ଅଶ୍ୱ ନେଇ ଆଗେ ସମର୍ପଣ ଦେଲା ॥
ଶିଖୀଧ୍ୱଜ ରାଜା ବୋଲେ ପୁତ୍ର ମୁଖ ଚାହିଁ ।
ଅଶ୍ୱ କପାଁ ଅଣିଲୁ ବରଷେ ପୂରି ନାହିଁ ॥
ସମ୍ବତ୍ସର ପୂରିଲେ ହୋ ଆସଇ ତୁରଙ୍ଗ ।
ତେବେ ସମାପତ ହୁଏ ଅଶ୍ୱମେଧ ଯାଗ ॥
ଏତେ ଅବିଚାର ବାପୁ କପାଁ ତୁମ୍ଭେ କଲ ।
ଆଉ ଯାଗ ଅଶ୍ୱ ପୁଣି କାହୁଁ ଯେ ଅଣିଲ ॥
କେଉଁ ଦେଶେ କେଉଁ ରାଜା ଯଜ୍ଞ କରୁଥିଲା ।
କି ପ୍ରକାରେ ତାର ଅଶ୍ୱ ଅଟିଲ ବୋଇଲା ॥
ତାହା ଶୁଣି ତାମ୍ରଧ୍ୱଜ କରଇ ଉତ୍ତର ।
ଶୁଣ ଯେଉଁ ପ୍ରକାରେ ଅଣିଲି ଅଶ୍ୱବର ॥
ହସ୍ତିନା ନଗରେ ଜାଣ ଯୁଧିଷ୍ଠି ରାଜନ ।
ତାଙ୍କ ଯଜ୍ଞ ଅଶ୍ୱ କରିଥିଲେକ ମୋଚନ ॥
ଶ୍ରୀକୃଷ୍ଣ ଅର୍ଜୁନ ଦୁହେଁ ଅଶ୍ୱ ରଖିଥିଲେ ।
ବହୁତ ସଇନ୍ୟ ବୀରମାନଙ୍କର ତୁଲେ ॥
ଯୁବନାଶ୍ୱ ହଂସଧ୍ୱଜ ନୀଳଧ୍ୱଜ ବୀର ।
ପଦ୍ମନ ବଭ୍ରୁବାହନ କର୍ଣ୍ଣଙ୍କ କୁମର ॥
ଅନିରୁଦ୍ଧ ଅନୁଶାଲ୍ୱ ସାତ୍ୱକୀ ସହିତେ ।
ମେଘବର୍ଣ୍ଣ କୃତବର୍ମା ସହ ବୀର ଯେତେ ॥
ତାଙ୍କ ଅଶ୍ୱ ମୁହିଁ ଦୈବ ଯୋଗରୁ ଦେଖିଲି ।
ମନ୍ତ୍ରୀ ହସ୍ତେ ବୀର ପତ୍ର ପଢ଼ାଇ ଶୁଣିଲି ॥
ବୀରଗର୍ବ ଶୁଣି ଦେହ ନ ସହିଲା ମୋର ।
ତେଣୁ ଧରି ରଖିଲଇଁ ଅଶ୍ୱକୁ ତାଙ୍କର ॥
ବିଚାରିଲି ଏକା ଏହି ସଂସାରରେ ବୀର ।
ମୋର ବୀରପଣ କପାଂ ନୋହିବ ପ୍ରଚାର ॥
ଏମନ୍ତ ବିଚାରି ଅଶ୍ୱ ବାନ୍ଧିଲି ତ୍ୱରିତେ ।
ବୋଇଲି ଫେଟାଇ ନେଉ ଜିଣି ଯୁଦ୍ଧେ ମୋତେ
ଯୁଦ୍ଧକରି ଶ୍ରୀକୃଷ୍ଣ ଅର୍ଜୁନ ସଙ୍ଗତରେ ।
ସେ ଦୁହିଁଙ୍କି ଜିଣିଲି ମୁଁ ସୈନ୍ୟ ସହିତରେ ॥
ସେନାପତି ଥିଲେ ପିତା ମୋର ସଙ୍ଗତେଣ ।
ଏହାଙ୍କୁ ପଚାରି ବୁଝ ଯୁଦ୍ଧ ବିବରଣ ॥
ହରିଭକ୍ତ ରସଲୀଳା ବୋଲି ଏହୁ ଗୀତ ।
ଯେ ଶୁଣଇ ଶୁଣାଇ ସେ ହୁଅଇ ମୁକତ ॥
ଭାବଗ୍ରାହୀ ମାୟାଧର ଶ୍ରୀପଦ୍ମ ଚରଣ ।
ଉପାଧ୍ୟାୟ ମହାଦେବ ପଶିଲା ଶରଣ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତ
ରସଲୀଳା ସାରକଥା ପ୍ରସଙ୍ଗେ
ନାମ ଅଷ୍ଟାବିଂଶୋଽଧ୍ୟାୟଃ

—୦—

# ଊନତ୍ରିଂଶ ଅଧ୍ୟାୟ ।

ହିବଃମୋଃଭ୍ୟୁଦୟ ବାମନଃସୌ
ସଶ୍ବକଚ ଶ୍ବେତ ସବୈନ୍ୟସିଂହଂ
ନାଟେରିରନଟେ ଗତ ମୀଚ ମୀଟେଃ
ସଦ୍ୟ ରୁପାସ୍ୱେ ଫଳମେବ ସ୍ୱାଧମ୍ ।

## ଶିଖୀଧ୍ୱଜ ଖେଦ, ଶ୍ରୀକୃଷ୍ଣଙ୍କର କପଟବେଶ, ଶିଖୀଧ୍ୱଜର ଦେହାର୍ଦ୍ଧଦାନ ଓ ବରପ୍ରାପ୍ତି

ଜୈମିନି ବୋଲନ୍ତି ତୁମ୍ଭେ ଶୁଣ ଜନ୍ମେଜୟ ।
ଏଥୁଅନ୍ତେ ଯାହାହେଲା ଶୁଣ ସେ ବିଷୟ ॥
ଶିଖିଧ୍ୱଜ ଗୃହିଁ ସେନାପତିଙ୍କୁ କହଇ ।
କେମନ୍ତ ପ୍ରକାରେ ଯୁଦ୍ଧ କଲ କହ ତୁହି ॥
କରଯୋଡ଼ି କହନ୍ତି ସେ ଶୁଣ ନୃପବର ।
କୃଷ୍ଣ ଅର୍ଜୁନ ସହିତେ ଥିଲେ ଯେତେ ବୀର
ସେମାନେ ବହୁତ ସୈନ୍ୟ ଘେନିଣ ଯୁଝିଲେ
ତୁମ୍ଭ ସୁତ ଶରେ ସେ ସମସ୍ତେ ମୋହଗଲେ ॥
କୃଷ୍ଣ ଅର୍ଜୁନଙ୍କୁ ଏହୁ ଧରି ଆଣିଥିଲେ ।
ଭୂମିରେ ପଡ଼ିଣ କୃଷ୍ଣାର୍ଜୁନ ମୋହଗଲେ ॥
ବେନିଭୁଜେ ବାନ୍ଧିକରି ମୁଣ୍ଡିଆଇ ଥିଲେ ।
ଅନ୍ଧାରେ ଅଣନ୍ତେ ବେଗେ ଝୁଣ୍ଟିଣ ପଡ଼ିଲେ
ତାମ୍ରଧ୍ୱଜ ସମ ବୀର ତ୍ରୈଲୋକ୍ୟରେ ନାହିଁ ।
କୃଷ୍ଣାର୍ଜୁନ ସହିତେ ଜିଣିଲେ ସବୁ ଏହି ॥
ପୁଣି ସେ ଅର୍ଜୁନ ହରି ଆଣି ବସୁରଇଲ ।
ଚେତନ୍ତେ ସେ ମେଲ୍ଲଗିରି ପ୍ରାୟ ସ୍ଥିରହେଲେ
ତହୁଁ ତାଙ୍କ ଅଶ୍ୱକୁ ଆଣିଲେ ତୁମ୍ଭ ସୁତ ।
ବୋଇଲେ ଆବର ଯଜ୍ଞ କରନ୍ତୁ ମୋ ତାତ ॥
ତାହା ଶୁଣି ଶିଖିଧ୍ୱଜ ପୁତ୍ରେ ଗାଳିଦେଲା ।
କପଟି ପାର୍ଥ ଅଶ୍ୱ ଘେନି ଅଇଲୁ ବୋଇଲା ॥
ଜାଣିଲି କୁପୁତ୍ର ଜନ୍ମି ଅଛୁ ମୋ କୋଳରେ
ମୋତେ ନାଶ କରିବାକୁ ଜନ୍ମିଲୁ ମୋ ଘରେ
ଶ୍ରୀହରିଙ୍କ ଦ୍ରୋହୀ ମୋତେ କଲୁରେ ନନ୍ଦନ
ତୋର ହେତୁ ନିଷ୍ଟେ ମୁହିଁ ଛାଡ଼ିବି ଜୀବନ ॥
ତ୍ରୈଲୋକ୍ୟର ଈଶ୍ୱର ଅଟନ୍ତି ଯେଉଁ ହରି ।
ତାହାଙ୍କ ନିମନ୍ତେ ମୁଁ ଏ ଯଜ୍ଞ ଅଛି କରି ॥

ସେ କୃଷ୍ଣଙ୍କଠାରେ ତୁହି ଅପରାଧ ଅର୍ଜିଲୁ ।
ଯୁଧିଷ୍ଠିରଙ୍କ ଯଜ୍ଞ ଅଶ୍ୱ କମ୍ପାଇଁ ଆଣିଲୁ ॥
କପଟ ଯୁଦ୍ଧେ ପାର୍ଥ ସୈନ୍ୟ ସଂହାର ତୁ କଲୁ
କୃଷ୍ଣାର୍ଜୁନ ଦୁହିଁଙ୍କି ମୋହରେ ପକାଇଲୁ ॥
ଆଣିପାରି ଥିଲେ ତୁହି ହରି ଅର୍ଜୁନଙ୍କୁ ।
ସୁଫଳ ହୁଅନ୍ତା ଯଜ୍ଞ ଦେଖିଣ ତାହାଙ୍କୁ ॥
ଯାହା ପାଇଁ ଏହି ଯଜ୍ଞ କରୁଅଛି ମୁହିଁ ।
ସେ ଆସିବେ ମୋ ପୁରକୁ ଏଡ଼େ ଭାଗ୍ୟ କାହିଁ
ଏତେ ମୂର୍ଚ୍ଛପଣ କଲୁ ହୋଇ ମୋର ପୁତ୍ର ।
ତୋହର ମୁଖ ଗୃହିଁବା ନୁହଇ ଉଚିତ ॥
ଏବେ ମୋହ ଘରୁ ବେଗେ ବାହାରି ତୁ ଯାଅ
ତପସ୍ୱୀ ହୋଇଣ ଘୋର ଅରଣ୍ୟରେ ଥାଅ ॥
ଧିକ ତୋର ବିଦ୍ୟାବଳ ବୀର୍ଯ୍ୟବନ୍ତ ଗୁଣ ।
ଯେଣୁ ତୁହି ନ ଚିହ୍ନିଲୁ ନର ନାରାୟଣ ॥
ତୁଳସୀକୁ ତେଜି ବଛୁଆଟରେ ମାତିଲୁ ।
ଗଜମୁକ୍ତା ଛାଡ଼ି ଗରଗଡ଼ ମାଳ କଲୁ ॥
ଗଙ୍ଗାତୀର୍ଥ ଛାଡ଼ି କୂପଜଳେ କଲୁ ସ୍ନାନ ।
ହରି କଥା ଛାଡ଼ି ଦେଲୁ ଗ୍ରାମ୍ୟ ଗୀତେ ମନ
ଏ ଅଭାଗ୍ୟ କରମରେ ଜାଣିଲି ମୋହର ।
ନୟନ ପଥରେ ଥରେ ନ ଦେଖିଲି ହରି ।
ହରିଙ୍କୁ ଦେଖିଲେ ତିନି ତାପ ମୁଁ ହରନ୍ତି ।
କୋଟି କୋଟି ଯଜ୍ଞ ଫଳ କ୍ଷଣେକେ ଲଭନ୍ତି ॥
ପୂର୍ବର ପାତକମାନ ଥିଲାକ ମୋହର ।
ମୋତେ କମ୍ପାଇଁ ଦୟା ନ କଲେ ଚକ୍ରଧର ॥
ସେ କି ନ ଜାଣନ୍ତି ଅନ୍ତର୍ଯ୍ୟାମୀ ନାଥ ପୁଣି ।
ନିତ୍ୟେ ଭଜୁଥାଇ ମୁହିଁ ତାହାଙ୍କ ଚରଣ ॥
କୃଷ୍ଣଙ୍କ ଦର୍ଶନ କଲେ ପ୍ରାଣହିଁ ଛାଡ଼ନ୍ତି ।
ଆବର ଏ ମିଥ୍ୟା ସଂସାରରେ କମ୍ପା ଥାନ୍ତି ॥
କେମନ୍ତେ ଦେଖିବି କାହିଁ ଗଲେ ଚକ୍ରଧର ।
ବୃଥାରେ ଜୀବନ କମ୍ପା ଅଛି ମୋ ଦେହର ॥
କେଉଁଠାରେ ଛନ୍ତି ହରି ଏବେ ଯିବି ମୁହିଁ ।
ଅର୍ଜୁନ ସହିତେ ମୋହ ଅଛିନ୍ତି କସାଇ ॥
ସେନାପତି ବୋଲେ ଶ୍ୱେତବତୀ ଅରଣ୍ୟରେ
ଅଣୁଥିଲୁ ମୋହ ଯାଇ ପଡ଼ିଲେ ସେଠାରେ ॥
ତାହା ଶୁଣିଣ ରାଣୀକି ଘେନି ନୃପସାଇଁ ।
ପ୍ରବେଶହୋଇଲେ ବେଗେ ସେ ବନରେ ଯାଇ

ଶ୍ୱେତବତୀ ବନେ ପକ୍ଷୀ ସମସ୍ତ ଖୋଜିଲେ ।
ଶ୍ରୀହରି ଅର୍ଜ୍ଜୁନ ବେନି ତହିଁ ନ ଭେଟିଲେ ॥
ବନେ ଭଣ୍ଡାନାରୀ ବୁଲି ହରିଙ୍କି ନ ପାଇ ।
ବାହୁଡ଼ି ଘରକୁ ଦୁଃଖେ ଅଇଲେ ଯେ ସେହି
ବସି କୃଷ୍ଣପାଦେ ଧ୍ୟାନ କଲେକ ନୃପତି ।
ଅନ୍ତର୍ଯ୍ୟାମୀ ନାଥ ତା ଜାଣିଲେ ଜଗଜ୍ୟୋତି
ଯହୁଁ ହରି ପାର୍ଥ ମୋହ ତେଜିଣ ଉଠିଲେ ।
ଶ୍ରୀକୃଷ୍ଣ ମୁଖକୁ ଚାହିଁ ଅର୍ଜ୍ଜୁନ ପୁଚ୍ଛିଲେ ॥
ବୋଇଲେ ତୁରଙ୍ଗ ଘେନି ଗଲା ସେହି କାହିଁ
ଚାଲ ତାହା ସହ ଯୁଦ୍ଧ କରିବଇ ମୁହିଁ ॥
ତା ଶୁଣି ବୋଇଲେ କୃଷ୍ଣ ସେ ଯେ ମହାବୀର
ତାହା ସଙ୍ଗେ ନ ଜିଣିବୁ କଲେ ତୁ ସମର ॥
ତାହାମଙ୍ଗେ ସପ୍ତବର୍ଷ ଯୁଦ୍ଧ ତୁ କରିଲେ ।
କେବେ ଜିଣି ନ ପାରିବୁ ଜାଣଇ ମୁଁ ଭଲେ
ତାକୁ ଯୁଦ୍ଧେ ଜିଣି ଅଶ୍ୱ ଆଣି ନ ପାରିବା ।
ମୋହର ଉପାୟ ଅଛି ଶୁଣ ତା କହିବା ॥
ତୁମ୍ଭ ସହ ମୁହିଁ ମିଳି କରିଲେ ସମର ।
ତଥାପି ନୋହିବ ଜିଣି ସେହୁ ମହାବୀର ॥
ତାର ପିତା ଶିଖୀଧ୍ୱଜ ଧାର୍ମିକ ପ୍ରବର ।
ନାହିଁ ନ ଥିବ ତା ସଙ୍ଗେ ଏ ତଉଦ ପୁର ॥
ଦାନୀଙ୍କ ଉପରେ ଜାଣ ମହାଦାନୀ ସେହି ।
ତାହାକୁ କପଟେ ଦାନ ମାଗିବା ହୋ ଯାଇ
ଯେମନ୍ତେ ସେ ସାଧହେବ ସେ କଥା କରିବା
କପଟରେ ଦାନ ମାଗି ଅଶ୍ୱକୁ ଆଣିବା ॥
ସକଳ ସଇନ୍ୟ ଅସ୍ତୁଥାନ୍ତୁ ଯେ ପଛରେ ।
ଆମ୍ଭେ ଦୁଇଜଣ ଚାଲି ଯିବା ହୋ ଆଗରେ ॥
ଏତେ ବୋଲି ଦୁହେଁ ସଇନ୍ୟକୁ ରଖିଗଲେ
ଶିଖୀଧ୍ୱଜ ନଗ୍ରେ ଯାଇ ପ୍ରବେଶ ହୋଇଲେ ॥
ବୃଦ୍ଧ ବିପ୍ର ରୂପ ହରି ଆପଣେ ଧଇଲେ ।
ଶିଷ୍ୟ ରୂପ ଗୋଟି ଅର୍ଜ୍ଜୁନଙ୍କୁ କରାଇଲେ ॥
ଦୁହେଁ ନଗ୍ରେ ଘରେ ଘରେ ରାଜକ ବୁଲିଲେ
ପୁରୁଷ ନାରୀମାନଙ୍କ ବେଭାର ବୁଝିଲେ ॥
କାନ୍ତି ହେ କହଇ ଯେ ନାରୀମୁଖ ଚାହିଁ ।
ତୋ ସର୍ବାଙ୍ଗ ଦେଖି ତୋଷ ନହେଲଇଁ ମୁହିଁ
ତୋତେ ରମି ମନ ମୋର ସନ୍ତୋଷ ନୋହିଲା
ଶ୍ରୀକୃଷ୍ଣ ଦର୍ଶନ ଶତ୍ରୁ ଯେମନ୍ତେ ଦ୍ରବିଲା ॥

ସେ ବୋଲେ ମୋ ଆଖିରେ କଜ୍ଜଳ କଲାଥିଲା
ଚୁମ୍ବନରେ ତୁମ୍ଭ ମୁଖ କୃଷ୍ଣ ପ୍ରାପ୍ତ ହେଲା ॥
ଯେଣୁ ମୋର ଚକ୍ଷୁ କୃଷ୍ଣ ବର୍ଣ୍ଣକୁ ଦେଖିଲେ
ତାହା ଦେଖି ତୁମ୍ଭେ ମନ ଦୁଅ ଯେ ଭଲେ ॥
ଏ ପ୍ରକାରେ ସେ ନଗ୍ରେ ବୋଲନ୍ତି ନରନାରୀ
ଅର୍ଜ୍ଜୁନଙ୍କୁ ବୁଲାଇଣ ଦେଖାନ୍ତି ଶ୍ରୀହରି ॥
ସେ ଦେଶେ ସକଳ ସୈନ୍ୟ ବୈଷ୍ଣବ ଅଟନ୍ତି
ଏହିରୂପେ ନାରାୟଣ ରୂପ ଭଜୁଥାନ୍ତି ॥
କୃଷ୍ଣାର୍ଜ୍ଜୁନ ଦୁଇଜଣ ରାଜକ ବୁଲିଲେ ।
ସର୍ବ ନରନାରୀ ଠାରୁ ଏମନ୍ତ ଶୁଣିଲେ ॥
ରଜନୀ ପ୍ରଭାତେ ଗୁରୁ ଶିଷ୍ୟର ରୂପରେ ।
ପ୍ରବେଶ ହୋଇଲେ ଯାଇ ରାଜାଙ୍କ ଆଗରେ ॥
ରାଜା ନମସ୍କାର ନୋହୁ କଲ୍ୟାଣ ସେ କଲେ
କ ବୋଲିବେ ହରି ମନମଧ୍ୟେ ବିଚାରିଲେ ॥
ନମସ୍କାର କରି ରାଜା ବୋଲଇ ବଚନ ।
ଓଲଟି ନୋହୁ କପାଇଁ କଲେକ କଲ୍ୟାଣ ॥
ନମସ୍କାର ନୋହୁ ଯେହୁ କଲ୍ୟାଣ କରଇ ।
ଅକଲ୍ୟାଣ ବାଞ୍ଛା ତାକୁ ନିଶ୍ଚେ ପ୍ରାପ୍ତ ହୋଇ ॥
ପ୍ରଥମେ କଲ୍ୟାଣ କଲେ ଯାଇ ହେ ନର୍କକୁ ।
ପଛେ ପୁଣ୍ୟ ସେହି ଗତ ହୁଅଇ ବିପ୍ରଙ୍କୁ ॥
ଏତେ କହି ବେଗେ ରାଜା ଉଠିଣ ଅଇଲା ।
ଦୋଷ କ୍ଷମା କର ବୋଲି ପାଦରେ ପଡ଼ିଲା ॥
ଶୁଣି ହରି ବୋଇଲେ ହେ ମୁଁ ବୃଦ୍ଧ ବ୍ରାହ୍ମଣ ।
ନମସ୍କାର ନୋହୁ ତୋତେ କଲଇ କଲ୍ୟାଣ
ସେ କଥାକୁ କପାଁ ରାଜା କରୁ ତୁ ବିଚାର ।
ହରଷେ କଲ୍ୟାଣ କଲି ଶିଷ୍ୟ ସହିତର ॥
ଯଜ୍ଞ କାଳେ ପୂର୍ଣ୍ଣ କର ମୋର ମନୋରଥ ।
ବିନାଶ ହୋଇବ ତୋର ସକଳ ଦୁରିତ ॥
ଏତେ କହି କୃଷ୍ଣ ଉଚ୍ଚେ ବେଦଧ୍ୱନି କଲେ
ଶିଖୀଧ୍ୱଜ ନୃପତିର ଚିତ୍ତକୁ ମୋହିଲେ ॥
କରଯୋଡ଼ି ରାଜା ବୋଲେ ହୋଇଣ ହରଷ
କାହୁଁ ବିପ୍ର ଶିଷ୍ୟ ସଙ୍ଗେ ହୋଇଲେ ପ୍ରବେଶ
ଆଜ ମୋର ସବୁ ଯଜ୍ଞ ହୋଇଲା ସଫଳ ।
ଜାଣିଲି ବ୍ରାହ୍ମଣ ରୂପେ ପ୍ରଭୁ ଆଦ୍ୟମୂଳ ॥
ତୁମ୍ଭ ବେଦଧ୍ୱନି ଶୁଣି କୃତାର୍ଥ ହୋଇଲି ।
କୋଟି କୋଟି ଜନ୍ମର ପାତକ ବିନାଶିଲି ॥

କେବଣ କାରଣେ ବଞ୍ଚେଇଲ ବିପ୍ରବର ।
ମାୟା ନ କରଣ ବେଗେ କହ ମୋ ଆଗର
ହୃଦରେ ଆନନ୍ଦ ହେଲା ତୁମ୍ଭଙ୍କୁ ଦେଖିଣ ।
ଜାଣିଲି ପ୍ରତ୍ୟକ୍ଷେ ତୁମ୍ଭେ ନରନାରାୟଣ ॥
ବୈକୁଣ୍ଠର ବସ୍ତୁ ତୁମ୍ଭେ ଜାତ ମହୀତଳେ ।
ଯାହା ମୋତେ ମାଗିବ ହେ ଦେବଇଁ ତତ୍କାଳେ
ବେଗେ ମାଗ ବିପ୍ରବର ଅବଶ୍ୟ ଦେବଇଁ ।
ସତ୍ୟବାଣୀ କହୁଛି ତୁମ୍ଭର ପାଦ ଛୁଇଁ ॥
ଭଣ୍ଡାର ସହିତ ମୋର ରାଜ୍ୟ ପୁତ୍ର ନାରୀ ।
ସକଳ ଦେବଇଁ ଆନ ମନେ ନ ବିଚାରି ॥
ଯେବେ ମୋର ଜୀବନ ମାଗିବ ବିପ୍ରବର ।
ତେବେ ତାହା ଦେବି ଆନ ମନରେ ନ ଧର
ତୁମ୍ଭେ ତୁହେଁ ଦିଶୁଅଛ ମୋତେ ଭଗବାନ ।
ମୋର ଭାଗ୍ୟ କାହିଁ ଯେ ତୁମ୍ଭଙ୍କୁ ଦେବି ଦାନ
ତାହା ଶୁଣି ହରି ତାକୁ ସଧୀରେ କହନ୍ତି ।
ମୁଁ ଯାହା କହଇ ତାହା ଶୁଣ ନରପତି ॥
ଧର୍ମପୁର ନାମେ ନଗ୍ର ଅଟେ ଆମ୍ଭଘର ।
ପୁତ୍ର ଗୋଟିଏ ଜନ୍ମିଣ ଥିଲା ଯେ ମୋହର ॥
ତୁମ୍ଭ ରାଜ୍ୟ ବସ୍ତୁ, ଶର୍ମା ନାମରେ ବ୍ରାହ୍ମଣ ।
ତାଙ୍କ ଦୁହିତାକୁ ବିଭା କରିବି ବୋଲିଣ ॥
ଆସୁଥିଲି ମୋ ପୁତ୍ରକୁ ଘେନି ସଙ୍ଗତରେ ।
ଏ ତୁମ୍ଭର ରାଜ୍ୟ ଘୋର ଅରଣ୍ୟ ଭିତରେ ॥
ମହାବଳ ସିଂହ ସେ ବନରେ ବସିଥିଲା ।
ଦେଖି ମୋ ପୁତ୍ରକୁ ଆସି ବେଗେ ଧରିନେଲା
ଏକା ସେହି ପୁତ୍ର ବିନୁ ମୋର ଆଉ ନାହିଁ ।
ତାହା ବିନୁ ଅପୁତ୍ରିକ ହୋଇଲଇଁ ମୁହିଁ ॥
ସିଂହନେଉ ବକଲେ କାନ୍ଦନ୍ତେ ପୁତ୍ର ମୋର
ଡାକିଲା ହେ ପିତା ମୋତେ ବେଗେ ରକ୍ଷା କର
ତାହା ଦେଖି ଜ୍ଞାନ ସେ ମୋହର ବୁଡ଼ିଗଲା ।
ବୋବାଳି ଛାଡ଼ିଲି ଉଚ୍ଚେ କେହି ନ ଶୁଣିଲା ॥
ମୋର ହସ୍ତେ ଶସ୍ତ୍ର କିଛି ନ ଥିଲା ନୃପତି ।
ତା ତହୁଁ କେମନ୍ତେ ତାକୁ କରନ୍ତି ମୁକତି ॥
ମହାଭୟଙ୍କର ରୂପ ଜାଣ ସେ ସିଂହର ।
ଗର୍ଜନରେ ଅରଣ୍ୟ କମ୍ପିଲା ଥରହର ॥
ଦେଖିଲି ପୁତ୍ରକୁ ମୋର ଧରି ଘେନିଗଲା ।
ଖଣ୍ଡେଦୂରେ କପଣ ଖାଇବ ବସୁଥିଲା ॥

ସେ କାଳେ ମୁଁ ଅଭୟ ନୃସିଂହ ସୁମରିଲି ।
ଜୀବନର ଆଶା ଛାଡ଼ି ତାହାଠାକୁ ଗଲି ॥
କାନ୍ଦ ମୁହିଁ ହୃଦୟରେ ତାଡ଼ ବେନି କର ।
ଆହା ପୁତ୍ର ବୋଲି ମୁଣ୍ଡ କୋଡ଼ିଲି ଭୂମିର ॥
ମୋ ଆକୁଳ ଦେଖି ସିଂହ ମନେ ମନେ ହସି
ମନୁଷ୍ୟ ବଚନେ ମୋତେ କହିଲା ଆଶ୍ୱାସି ॥
ବୋଇଲା ତୋ ପୁତ୍ରକୁ ମୁଁ କରିବି ଆହାର ।
କପାଁ ବ୍ୟର୍ଥେ ବୋବାଳି ଛାଡ଼ୁଛୁ ବିପ୍ରବର ॥
ସର୍ବଦା ମୁଁ ଏ ବାଟରେ ଜଗି ବସିଥାଇ ।
ଯେ ଆସଇ ତାକୁ ମୁହିଁ ଆହାର କରଇ ॥
ଆଉ ତୁମ୍ଭ ପୁତ୍ରକୁ ହେ ନ ପାରିବ ରଖି ।
କାହିଁକି ଆକୁଳେ କାନ୍ଦ ହେଉଅଛ ଦୁଃଖୀ ॥
ଏବେ ତୁମ୍ଭେ ନିଜ ପ୍ରାଣ ଘେନି ଏଥୁଁ ଯାଅ
ଘୋର ଅରଣ୍ୟରେ ଆଉ ଦଣ୍ଡେ ହେ ନ ରହ
ତାହା ଶୁଣି ସିଂହକୁ ମୁଁ କହିଲି ଉତ୍ତର ।
ମୋତେ ଖାଇ ଛାଡ଼ିଦିଅ ପୁତ୍ରକୁ ମୋହର ॥
ସେ ବୋଲଇ ତୋର ମାଂସ ଶୁଷ୍କ ଅଛି ହୋଇ
ଏହାର କୋମଳ ମାଂସ ଖାଇବଇଁ ମୁହିଁ ॥
ମୁଁ ବୋଇଲି ମୋ ଆୟୁଷ ଅଳ୍ପ ଅଛି ଜାଣ ।
ମୋତେ ଖାଇ ପୁତ୍ରକୁ ମୋ ଦିଅସି ଛାଡ଼ିଣ ॥
ତାହା ଶୁଣି ସିଂହ ଯେ ବୋଇଲା ମୋତେ ଗୁହିଁ
ଆୟୁଷ ଥିଲା ଲୋକକୁ ଆମ୍ଭେ ହେ ନ ଖାଇ
ଯାହା ପରମାୟୁ ହୋ ନ ଥାଇ ବିପ୍ର ଜାଣ ।
ଏ ସଂସାରେ ଆଗେ ତାର ହୁଅଇ ମରଣ ।
ରୋଗ ବ୍ୟାଧି ଜଳ ଅଗ୍ନି ବ୍ୟାଘ୍ର ସର୍ପାଘାତ ।
ଆମ୍ଭେମାନେ ସବୁ ଯମ ଦେବତାଙ୍କ ଦୂତ ॥
ମୁଁ ତୁମ୍ଭ ପୁତ୍ରକୁ ବିପ୍ର ଅବଶ୍ୟ ଖାଇବି ।
କିମ୍ପା ବ୍ୟର୍ଥେ କାନ୍ଦୁଅଛ ଛାଡ଼ିଣ ନ ଦେବି ।
ବହୁତ ବିନୟେ ତାକୁ କହିଲି ବଚନ ।
ମୋ ପୁତ୍ର ଜୀଇଁବ କଲେ କେଉଁ ଦାନପୁଣ୍ୟ
ହେ ସିଂହ ତୁ କପଟ ନ କରି ମୋତେ କହ
କେବଣ ଉପାୟ କଲେ ବଞ୍ଚିବ ତନୟ ॥
ଏହା ଶୁଣି ସିଂହ ମୋତେ କହିଲାକ ଯାହା
କେବେହେଁ ନୃପତି ହୋଇ ନ ପାରଇ ତାହା
ଅତି ଅସମ୍ଭବ ତାହା କହି ନ ଯୋଗାଇ ।
ସେ କଥା ତୁମ୍ଭଙ୍କୁ ଯେ କେମନ୍ତେ କହିବଇଁ ॥

ତାହା ଶୁଣି ନୃପବର ବଗୃରେ ମନକୁ ।
ଏତେ ସିଂହ କାହୁଁ ହେ ଅଇଲା ଏ ବନକୁ
ଏ ମୋର ରାଜ୍ୟରେ ସିଂହ ବ୍ୟାଘ୍ର ଭୟ ନାହିଁ
ନରହର ରୂପ ଭୟ କେବଳ ଅଛଇ ॥
କାହୁଁ ଆସି ତୁମ୍ଭ ପୁତ୍ର ଧଇଲାକ ପୁଣି ।
ମୋତେ ତ ଅଣ୍ଡର୍ଯ୍ୟ ପ୍ରାୟ ଲାଗେ ତୁମ୍ଭ ବାଣୀ ॥
ଅଟର ପାଛଲେ କସ ଗ୍ଲଡ଼ବ ହେ କହ ।
ତାହା ମୁଁ କରବ ବପ୍ର ନ କର ସନ୍ଦେହ ॥
ସିଂହ ଯା ମାଗଇ ନିଶ୍ଚେ ଦେବ ତାହା ମୁହିଁ ।
ଯେମନ୍ତେ ତୁମ୍ଭର ପୁତ୍ର ଲେଉଟି ଆସଇ ॥
ବପ୍ର ବୋଇଲେ ସେ ଯାହା କହେ ନୃପବର ।
ତୁମ୍ଭଙ୍କୁ କହିବା ପାଇଁ ଭୟ ହୁଏ ମୋର ॥
ଯେବେ ମୋ ପୁତ୍ରକୁ ଦେବ ସିଂହଠାରୁ ଅଣି
ତେବେ ମୋର କୁଳ ରକ୍ଷାହେବ ନୃପମଣି ॥
ତାହା ଶୁଣି ରାଜା ବୋଲେ ଶୁଣ ବପ୍ରବର ।
ଗୋରୁ ବପ୍ର ପାଇଁ ପ୍ରାଣ ଦ୍ୟନ୍ତି ସାଧୁନର ॥
ହେ ବପ୍ର ହୃଦରୁ ଶଙ୍କା ଦଅ ଦୂର କର ।
ତୁମ୍ଭ ସୁତ ପାଇଁ ପ୍ରାଣ ଦେବଇଁ ମୋହର ॥
ନ ଦେବାର ଦ୍ରବ୍ୟ ଯେ ତା ତୁମ୍ଭଙ୍କୁ ମୁଁ ଦେବ
ସିଂହଠାରୁ ତୁମ୍ଭପୁତ୍ର ଉଦ୍ଧର ଅଣିବ ॥
ବିପ୍ର ବୋଲେ ସିଂହ ବଚନେ ମାଗିଲାକ ଯାହା ।
ମୋ କିମନ୍ତେ କେମନ୍ତ ଦେବ ହେ ନରନାହା
ସେ ମୋତେ କହିଲା ବଡ଼ ଦାରୁଣ ବଚନ ।
ତାହା ମୁଁ କେମନ୍ତେ ତୁମ୍ଭେ କହିବ ରାଜନ ॥
ତୁମ୍ଭଙ୍କୁ ହେ ଆହାର ମାଗିଲା ସିଂହ ଜାଣ ।
ସେ କଥା ମୁଁ କେମନ୍ତେ କହିବ ନୃପରାଣ ॥
ଆପଣାର ଦେହ ପ୍ରାଣ ଯେମନ୍ତ ପ୍ରକାର ।
ସେହିରୂପେ ଜାଣ ରାଜା ଜୀବନ ଅନ୍ୟର ॥
ଦୁଷ୍ଟ ସିଂହ ବୋଇଲା ତୁ ରାଜାଠାରୁ ଯିବୁ ।
ପୁତ୍ର ପାଇଁ ଦକ୍ଷିଣାଙ୍ଗ ଦାନ ହୋ ମାଗିବୁ ॥
କରତରେ ତାହା ପୁତ୍ର ନାରୀ କରନ୍ତବେ ।
ସେକାଳେ ଆକୁଳ ନୋହି ରାଜା ତା ସହିବେ
ସେ ରାଜାର ଶିରଠାରୁ କଟୀଭାଗ ଯାଏ ।
ନାହିକାରୁ ଅର୍ଦ୍ଧେ ଅର୍ଦ୍ଧେ ଲୋଚନ ଗୋଟିଏ
ନୋହିବେକ ଆକୁଳ ଲୋତକ ନ ବହିବ ।
ପୁତ୍ର ନାରୀ କାଟିବେ ସେ ସ୍ଥିର ହୋଇଥିବ ॥

ସତ୍ୟଭଙ୍ଗ ବକଳ ଯେ ନୋହିଲେ ରାଜନ
ତେବେ ଦକ୍ଷିଣାଙ୍ଗ ବପ୍ର ଘେନିବ ହେ ଦାନ
ଅଣି ବପ୍ରବର ତାହା ଦେବ ଯେବେ ମୋତେ
ମୁଁ ଯାଇ ତୁମ୍ଭର ପୁତ୍ର ଦେବଇଁ ତ୍ବରତେ ॥
ବେଗେ ବପ୍ରବର ଯାଅ କରଣ ସାହାସ ।
ମହାଦାନୀ ରାଜା ତାଙ୍କ ଅଙ୍ଗ ଘେନି ଆସ ॥
ଯେତେବେଳେ ଯାଏ ତୁମ୍ଭେ ଅସିବ ବ୍ରାହ୍ମଣ
ସେତେବେଳ ଯାଏ ସୁତକୁ ନ ଖାଇବି ଜାଣ
ଏତେ କହି ସିଂହ ମୋର ସଙ୍ଗେ ସତ୍ୟକଲା
ରାଜା ଅଙ୍ଗ ଅଣି ପୁତ୍ର ନିଅସି ବୋଇଲା ॥
ଦଧିଚ ବୋଲିଣ ମୁନି ଥିଲେକ ପର୍ବରେ ।
ତାଙ୍କ ସମ ଦାତା ହେ ନ ଥିଲେ ତ୍ରିଜଗତରେ ॥
ତାହାଙ୍କୁ ଦାରୁଣ ଦାନ ଇନ୍ଦ୍ର ଯେ ମାଗିଲେ ।
ନିଜ ଦେହୁ ଅସ୍ଥି ଚର୍ମ କାଢ଼ିଣ ସେ ଦେଲେ
ଏହି ମେଦିନୀରେ କର୍ଣ୍ଣ ଦାନୀ ବୋଲି ଥିଲା ।
ଦେହରୁ କାଢିଣ ଚର୍ମ ଇନ୍ଦ୍ରକୁ ସେ ଦେଲା ॥
ପୂର୍ବେ ମହାଦାନୀ ରାଜା ଥିଲା ଜାଣ ବଳି ।
କୃଷ୍ଣେ ପୃଥ୍ୱୀଦାନ ଦେଇ ହୋଇଲା ପାତାଳି
ଶିବ ନାମେ ରାଜା ଥିଲା ମହା ଦାନୀ ଜାଣ ।
ଦେହରୁ ସେ ମାଂସ ଦେଲା କପୋତ ପ୍ରମାଣ ॥
ଦାନୀ କୀର୍ତ୍ତିବନ୍ତ ଯଶସ୍ବୀଙ୍କ ଭାବ ଏହି ।
ନିଜ ପ୍ରାଣ ଦେହେ ସ୍ନେହ ରଖି ଯେ ନ ଥାଇ
ପ୍ରାଣୀଙ୍କର ପାଇଁ ସେ ଦଅନ୍ତି ନିଜ ପ୍ରାଣ ।
ଯଶ କୀର୍ତ୍ତି ରଖନ୍ତି ସେ ଯୁଗ ଯୁଗାନ୍ତେଣ ॥
ବୋଇଲା ହେ ବପ୍ର ଏକ ପୁତ୍ରେକ ତୁମ୍ଭର ।
ସେ ରାଜା ଶୁଣିଲେ ବେଗେ ଦେବ ହୋ ଶରୀର
ହେ ରାଜା ସେ ସିଂହ ମୋତେ ଏରୂପେ କହିଲା
ବେଗେ ଜାଣ ତୁମ୍ଭଠାକୁ ପଠାଇ ଦେଲା ॥
ଶିଷ୍ୟକୁ ଘେନିଣ ସଙ୍ଗେ ଅଇଲଇଁ ମୁହିଁ ।
ହୃଦୟ ହେଉଛି ମୋର ପୁତ୍ରଶୋକେ ଦହି ॥
ମୋତେ ତୁମ୍ଭେ ପୁତ୍ର କଷ୍ଟୁ କରସି ଉଦ୍ଧାର ।
ସନ୍ଦେହ ନ କର ଦଅ ଅର୍ଦ୍ଧେକ ଶରୀର ॥
ପୂର୍ବେ ରାମଚନ୍ଦ୍ର ରାଜା ଅଯୋଧ୍ୟାରେ ଥିଲେ ।
ବ୍ରାହ୍ମଣର ମଲାପୁତ୍ରେ ଜୀବଦାନ ଦେଲେ ॥
ଶ୍ରୀରାମଙ୍କ ପ୍ରାୟେ ତୁମ୍ଭେ ଅଟ ନରନାଥ ।
ସତ୍ୟବନ୍ତ ଧାର୍ମିକ ସତ୍‌କୁଳରେ ସମ୍ଭୂତ ॥

ଶ୍ରୀରାମ ସମାନେ ତୁମ୍ଭେ ଅଟଇ ହୋ ଜାଣି ।
ପୁତ୍ର ଦାନ ଦିଅ ମୋତେ ସିଂହଠାରୁ ଆଣି ॥
ତାହା ଶୁଣି ନୃପବର ଆନନ୍ଦେ କହଇ ।
ଚିନ୍ତା ଛାଡ଼ ବିପ୍ର ହେ ଶରୀର ଦେବି ମୁହିଁ ॥
ତୁମ୍ଭଙ୍କୁ ମୁଁ ପୁତ୍ରକଷ୍ଟୁ କରିବି ଉଦ୍ଧାର ।
ସିଂହକୁ ହେ ଦିଅ ନେଇ ମୋହର ଶରୀର ।
ଏହିକ୍ଷଣି କରତଣ ମୋ ଦେହ ଦେବଇଁ ।
ଦେଖ ତୁମ୍ଭେ କରତବେ ପୁତ୍ରନାରୀ ଦୁଇ ॥
ଯଜ୍ଞ ମଣ୍ଡପରେ ବସି ବିପ୍ର ଦେଖୁଥିବେ ।
ମୋର ଦକ୍ଷିଣାଙ୍ଗ ଯେ ତୁମ୍ଭଙ୍କୁ ଦାନଦେବେ
ଏମନ୍ତ ପ୍ରକାରେ ରାଜା କୃଷ୍ଣଙ୍କୁ କହିଲା ।
ବସିଥାଅ ଏହିକ୍ଷଣି ଦେବଇଁ ବୋଇଲା ॥
ସିଂହାସନେ ତାମ୍ରଧ୍ୱଜ ବୀରକୁ ବସାଇ ।
ରାଜା ଅଭିଷେକ ବେଗେ କରାଇଲା ତହିଁ ॥
କଉଣ୍ଡିକ ଋଷି ଅଭିଷେକ ବିଧି କଲେ ।
ଦଣ୍ଡଛତ୍ର ରାଜଛତ୍ର ଆଦି ଧରାଇଲେ ॥
ହରଷରେ ଶାଳଗ୍ରାମ ନୃପତି ପୂଜିଲା ।
ଲଲାଟେ ତିଳକ କଣ୍ଠେ ତୁଳସୀର ମାଳା ॥
ହସିଣ ନୃପତି ବିପ୍ରମାନଙ୍କୁ କହଇ ।
ଦେବା ଆମ୍ଭେ ଶରୀର ବ୍ରାହ୍ମଣ ପୁତ୍ର ପାଇଁ ॥
ପ୍ରତ୍ୟକ୍ଷେ ଶ୍ରୀହରିରୂପ ଜାଣୁ ସେ ବ୍ରାହ୍ମଣ ।
ପୁତ୍ରଦାନ ଦେବି ଯାଙ୍କୁ ଶରୀର ଦେଇଣ ॥
ସକଳ ବ୍ରାହ୍ମଣ ବସି ଦେଖ କଉତୁକ ।
ଦେହକୁ କରତ ମୋର ଦେବଇଁ ଅର୍ଦ୍ଧେକ ॥
ପୁତ୍ର ନାରୀ କରତ ଧରିଣ କାଟିବେ ।
କରତକରିଣ ଅର୍ଦ୍ଧେକ ବିପ୍ରଙ୍କୁ ଦେବେ ॥
ଏମନ୍ତେ ମୁଁ ସତ୍ୟ କରିଅଛି ମନେ ଧରି ।
ଏ ବିପ୍ରଙ୍କୁ ଦକ୍ଷିଣାଙ୍ଗ ଦେବି ଦାନକରି ॥
ତୁମ୍ଭେ ସଭାଜନ ଦେଖି ବିମୁଖ ନୋହିବ ।
ଯେମନ୍ତେ ମୋ ସତ୍ୟ ରହେ ତାହା ବିଚାରିବ
ଏତେ କହି ରାଜା ବଢ଼େଇଙ୍କୁ ଡ଼କାଇଲେ ।
ସେମାନେ କରତ ଘେନି ବେଗେଣ ଆଇଲେ
ତାଙ୍କୁ ରାଜା ବୋଇଲେ କରତ ଦେଇଣିରେ
ବେନିଫାଳ ମୋତେ ହୋ କରିବ ଯଥାର୍ଥରେ
ଦକ୍ଷିଣାଙ୍ଗ ଦେବି ଏ ବିପ୍ରଙ୍କୁ ଦାନକରି ।
ସେ ସିଂହକୁ ଦେଇ ପୁତ୍ର ଆଣିବେ ଉଦ୍ଧାରି ॥

ରାଜାକଥା ଶୁଣି ସର୍ବ ଜନ ଚିନ୍ତା କଲେ ।
କାହୁଁ ଏ ଦାରୁଣ ବିପ୍ର ଆଇଲା ବୋଇଲେ ॥
କାଳ ଦେବତା କି ଏ ବ୍ରାହ୍ମଣ ରୂପ ହୋଇ
ରାଜା ଅଙ୍ଗ ମାଗୁଅଛି ପ୍ରାଣ ନେବା ପାଇଁ ॥
ମହା ଘୋର କଷ୍ଟ ଏ ଆମ୍ଭଙ୍କୁ ଆସି ଦେଲା ।
ଏମନ୍ତ ଧାର୍ମିକ ରାଜା ସଂସାରେ ନ ଥିଲା ॥
ପୁତ୍ର ପ୍ରାୟେ କରି ଏହୁ ସଂସାର ପାଳଇ ।
ଏହା ଥାନ୍ତେ କିଛି ଦୁଃଖ ଆମ୍ଭଙ୍କୁ ନ ଥାଇ ॥
କେମନ୍ତ କରିବା ସବୁ କୁହ ହେ ବିଚାରି ।
ଏଥିରୁ କି ରୂପେ ରକ୍ଷା ହୁଏ ନୃପବର ॥
ଏ ବିପ୍ର କିପାଇଁ ଆନ ଦ୍ରବ୍ୟ ନ ମାଗିଲା ।
ସକଳ ସମ୍ପତ୍ତି ରାଜ୍ୟ ଭଣ୍ଡାର ନ ନେଲା ॥
କିବା ହରି ଆସିଛନ୍ତି ମାୟାରୂପ ଧରି ।
ଏ ଯଜ୍ଞ ସ୍ଥାନରେ ରାଜା ପ୍ରାଣ ନେବେ ହରି ॥
ଏହି ରାଜା ଅଟଇ ଯେ ଶ୍ରୀହରି ଭକତ ।
ତେଣୁ ଦୟାକରି ଅବା ଆଇଲେ ଅଚ୍ୟୁତ ॥
ଯେସନ୍ତେ ବଳି ଗୃପିଲେ ବାମନ ରୂପ ଧରି ।
କପଟେ ରଖିଲେ ନେଇ ପାତାଳ ନଗରୀ ॥
ଧର୍ମରେ କଷଣ ସେ ଦିଅନ୍ତି ଭାବଗ୍ରାହୀ ।
ଆସିଛନ୍ତି ରାଜା ସତ୍ୟ ବଢ଼ିବାର ପାଇଁ ॥
ଏହିପରି ସଭାଜନେ କୁହାକୁହି ହେଲେ ।
ରାଜାବସି ଦଶ ଦାନ ବ୍ରାହ୍ମଣଙ୍କୁ ଦେଲେ ॥
ଧୌତ କରି ପୂଜିଲେ ସେ ବିପ୍ରଙ୍କ ପୟର ।
ବେନି ସ୍ତମ୍ଭ ପକାଇଲେ ମେଢ଼ୁର ଆକାର ॥
ଉଭାହୋଇ ବେନି ଭୁଜ ତହିଁ ବନ୍ଧାଇଲେ ।
ମହାବଳି ଶତେ ମାଲମାନଙ୍କୁ ଆଣିଲେ ॥
ଧରନ୍ତୁ କରତ ପୁତ୍ର ନାରୀ ଯେ ମୋହର ।
ବିମୁଖ ନୋହିବ ମନ ତୁମ୍ଭମାନଙ୍କର ॥
ତୁମ୍ଭେମାନେ ନିଜବଳ ଦେଇ ହୋ କରତ ।
ବେନିଫାଳ କରି କରତିବ ଯେ ତ୍ୱରିତ ॥
ତାହା ଦେଖି ବୋଲେ କୁମୁଦନୀ ପାଟରାଣୀ ।
ମୁଁ ତୁମ୍ଭର ଅର୍ଦ୍ଧାଙ୍ଗ ହେ ଜାଣ ରାଜା ପୁଣି ॥
କରତଲେ ଦେହ ତୁମ୍ଭେ ନିର୍ଜୀବ ହୋଇବ ।
ଦାନଦେବା ବେଳେ ଜ୍ଞାନ ଦେହରେ ନ ଥିବ
ଅର୍ଦ୍ଧାଙ୍ଗେ ମୁଁ ଜୀବ ଥାଉ ଦିଅ ଦାନ କରି ।
ସନ୍ତୋଷେ ନିଅନ୍ତୁ ବିପ୍ର ଶରୀର ମୋହରି ॥

ଜୀବହୀନ ମାଂସ ସିଂହ ନ କରେ ଆହାର ।
ଜୀବଥିଲା ଶରୀରରେ ବହୁ ସ୍ନେହ ତାର ॥
ବିଶେଷ ପତିର ଆଗେ ଯେଉଁ ନାରୀ ମରେ ।
ସବୁ ପାପ ନାଶି ସେହୁ ବସଇ ସ୍ୱର୍ଗରେ ॥
ତାହା ଶୁଣି ବିପ୍ରବର ରାଣୀଙ୍କି କହନ୍ତି ।
ମୁଁ ରାଜାର ଦକ୍ଷିଣାଙ୍ଗ ନେବି ଜାଣ ସତୀ ॥
ପୁରୁଷମାନଙ୍କ ବାମ ଅଙ୍ଗ ଜାଣ ନାରୀ ।
ରାଜାର ତୁ ପତିବ୍ରତା ଅଟୁ କୁଳସ୍ତିରୀ ॥
ମୁହିଁ ପୁଣି ତୋତେ ଗୋ ନେଇଣ କି କରିବି
ସେ ସିଂହ ତ ନ ଖାଇବ ପୁତ୍ର ନ ପାଇବି ॥
ରାଜା ଦକ୍ଷିଣାଙ୍ଗ ବିନୁ ଆନେ କାର୍ଯ୍ୟ ନାହିଁ ।
ପୁତ୍ରକୁ ନ ପାଇ ପଛେ ଲେଉଟି ଯିବଇଁ ॥
ତୋତେନେଲେ ମୋର କାର୍ଯ୍ୟହୋଇବବିଫଳ
ସତ୍ୟଭଗ୍ନ ହେବ ଶିଖୀଧ୍ୱଜ ମହୀପାଳ ॥
ରାଜା ତୋତେ ଦେଲେ ତା ବୁଡ଼ିବ କୀର୍ତ୍ତିଯଶ
ରାଜାମାନେ ଶୁଣିଣ କରିବେ ଉପହାସ ॥
ବୋଲିବେ ନାରୀକି ଦାନ ଦେଲେ ନୃପଈଶ
ଯୁଗେ ଯୁଗେ ସଂସାରେ ହୋଇବ ଅପଯଶ ॥
ବ୍ରାହ୍ମଣକୁ ଅଙ୍ଗଦେବା ପାଇଁ ସତ୍ୟକଲା ।
ଦେଲାବେଳେ ନ ଦେଇ ତା ସତ୍ୟଭଗ୍ନକଲା ॥
ଶୁଣି କୁମୁଦନୀ ରାଣୀ ମଉନେ ରହିଲେ ।
ତାହା ଶୁଣି ତାମ୍ରଧ୍ୱଜ ହରିଙ୍କି କହିଲେ ॥
ବୋଇଲେ ହେ ସାବଧାନେ ଶୁଣ ଦ୍ୱିଜବର ।
ସିଂହକୁ ନେଇଣ ଦିଅ ଏ ମୋର ଶରୀର ॥
ପିତା ପୁତ୍ର ଦୁହିଙ୍କର ଭେଦ ନାହିଁ କିଛି ।
ପିତାର ଆତ୍ମାରୁ ପୁତ୍ର ଜାତ ହୋଇଅଛି ॥
ବେଦର ବଚନ ପୂର୍ବେ ଏ ରୂପେ ଅଛଇ ।
ପିତା ପୁତ୍ର ବେନି ଅଙ୍ଗ ଭେଦ କିଛି ନାହିଁ ॥
ମୋତେ ନେଇ ସିଂହକୁ ହେ ଦିଅ ବିପ୍ରବର ।
ତାହାଠାରୁ ଘେନିଆସ ପୁତ୍ରକୁ ତୁମ୍ଭର ॥
ମୋତେ ଯୁବା ଦେଖି ସିଂହ ସନ୍ତୋଷ ହୋଇବ
ଆହାରେ ସୁଖୀ ହୋଇଣ ତୁମ୍ଭ ପୁତ୍ର ଦେବ ॥
ତାହା ଶୁଣି ବିପ୍ରବର କହନ୍ତି ବଚନ ।
ତୁ ଯାହା କହିଲୁ ସତ ରାଜାର ନନ୍ଦନ ॥
ସିଂହ ଯାହା କହିଅଛି ଶୁଣ ତା ଉତ୍ତର ।
ମାତା ପୁତ୍ର ଦୁହେଁ କରତିବେ ରାଜା ଶିର ॥
ତେବେ ତାର ଦକ୍ଷିଣାଙ୍ଗ ବିପ୍ର ଯେ ଆଣିବ ।
ତାହା ମୁଁ ଖାଇବି ତୁମ୍ଭ ତନୟକୁ ନେବ ॥
ତୁ ଯେବେ ନ କରତିବୁ ପିତାର ଶରୀର ।
ସିଂହ ତାହା ନ ଖାଇ ନ ଦେବ ପୁତ୍ର ମୋର
ତାହା ଶୁଣି ରାଜସୁତ ମଉନେ ରହିଲା ।
ବିଚାରିଲା ମୋର ପିତା ନିଷ୍ଟେ ଆଜ ମଲା ॥
ରାଜା ପୁତ୍ର ନାରୀ ଦୁଇଜଣଙ୍କୁ କହିଲେ ।
ବିଳମ୍ବ ନ କର ଅଙ୍ଗ ଦିଅସି ବୋଇଲେ ॥
ଶୁଣି ନାରୀ ପୁତ୍ର ହସ୍ତ ଦେଲେ କରତରେ ।
ତା ଦେଖି ଆନନ୍ଦ ରାଜା ହୋଇଲା ଅନ୍ତରେ ॥
ତୁଣ୍ଡେ ବୋଲେ ରାମକୃଷ୍ଣ ମୁକୁନ୍ଦ ମୁରାରି ।
ଅଚ୍ୟୁତ ଗୋବିନ୍ଦ ମଧୁସୂଦନ ଶ୍ରୀହରି ॥
ନାରାୟଣ ବାସୁଦେବ ଜଗତ ଈଶ୍ୱର ।
ଦାମୋଦର ଅନନ୍ତ ହେ ପ୍ରଭୁ ଚକ୍ରଧର ॥
ରାଜା ସତ୍ୟ ଦେଖି ଇନ୍ଦ୍ର ଆଦି ଦେବଗଣ ।
ପ୍ରଶଂସା କରନ୍ତି ଅର୍ଦ୍ଧ ଆକାଶେ ରହିଣ ॥
ରାଜାଶିରେଯେତେବେଳେ କରତକୁଦେଲେ
ସଭାଜନେ ଦେଖି ହାହାକାର ଉର୍ଦ୍ଧେ କଲେ ॥
ନାରୀପୁତ୍ର ଦୁହେଁ ହସ୍ତ ଦେଇ କରତରେ ।
ରାମକୃଷ୍ଣ ନାରାୟଣ ବୋଲନ୍ତି ତୁଣ୍ଡରେ ॥
କୁମୁଦନୀ ରାଣୀ ଚାହିଁ ବିପ୍ରକୁ କହଇ ।
ଦେଖ ମୁଁ ବିଦାରୁଅଛି ସ୍ୱାମୀଙ୍କର ଦେହି ॥
ନୃସିଂହ ଯେସନେ ବିଦାରିଲେ ହିରଣ୍ୟକୁ ।
ସେହିରୂପେ କରତରେ ବିଦାରେ କାନ୍ତକୁ ॥
ତାହା ଶୁଣି ରାଣୀକି କହଇ ଶିଖୀଧ୍ୱଜ ।
ହେ ସଖି ତୋ ରତିକାଳେ ଯେସନେ ଉରଜ
ମୋର ଦେହ ବିଦାରନ୍ତେ ବେଦନା ନୁହଇ ।
ସେହିରୂପେ ନିର୍ଦ୍ଦୟେ କରତ ପ୍ରିୟେ ତୁହି ॥
ତୋର ନଖ ଦାନ୍ତ ଗୋ କରତପ୍ରାୟେ ଜାଣି
ମୋର ଦେହ ପୀଡ଼ା ନ କରଇ ପାଟରାଣୀ ॥
ତାହା ଶୁଣି ପାଟରାଣୀ ହରଷ ହୋଇଲା ।
ଧନ୍ୟ ସତ୍ୟବାଦୀ ରାଜା ବୋଲିଣ ବୋଇଲା ॥
ମାତା ପୁତ୍ର ଦୁହେଁ ଅଣ୍ଟେ କରତ ଧଇଲେ ।
ଆନନ୍ଦ ମନରେ ରାଜା ଶିର କରତିଲେ ॥
ସତ୍ୟବନ୍ତ ରାଜା କୃଷ୍ଣ ଅର୍ଜୁନ ଆଗରେ ।
ବିଦାରଣ କଲା ଦେହ ତୀକ୍ଷ୍ଣ କରତରେ ॥

ରାଜା ବାମ ଚକ୍ଷୁରୁ ବହିଲା ଅଶ୍ରୁଧାର ।
ତାହା ଦେଖି ଶ୍ରୀହରି ଯେ ବୋଇଲେ ଉତ୍ତର
ବୋଇଲେ ହୋ ଏ ରାଜାର ସତ୍ୟ ନ ରହିଲା
ଯାହା ବୋଲିଥିଲା ତାହା ଆନ ପୁଣି କଲା ॥
ସତ୍ୟ ଛାଡ଼ି ଭ୍ରମଜାତ ହୋଇଲାକ ତାର ।
ବହୁଛି ଲୋତକ ବାମ ଚକ୍ଷୁରୁ ଏହାର ॥
ନିସତ ହୋଇଣ ରାଜା ସତ୍ୟଭଗ୍ନ ହୋଇ ।
ନୋହିଲେ ନୟନୁ ଅଶ୍ରୁ ଗଳନ୍ତା କିପାଇଁ ॥
ନିସତରେ ଦେଲେ ଦାନପୁଣ୍ୟ ନୋହେ ଜାଣ
ବେଦୋକ୍ତ ବିଧିରେ ଏହି କଥା ହେ ପ୍ରମାଣ
ଏମନ୍ତ ବିଚଲେ ଦାନ ଆଜି ମୁଁ ନ ନେବି ।
ଅପୂର୍ବିକ ଦୋଷ ପଛେ ଭୋଗ ହୋ କରିବି ॥
ଦାନ ଦେଉଅଛି ରାଜା ଏତେ ଆକୁଳରେ ।
ଦେଖିଲି କରୁଛି ଶୋକ ବାମ ନୟନରେ ॥
ଏମନ୍ତ ପ୍ରକାରେ ମୁହିଁ ନ ଦେବଇଁ ଦାନ ।
ଏତେ କହି ଗୁରୁ ଶିଷ୍ୟ ଉଠିଲେ ବହନ ॥
ରାଜା ହୋଇ ଅଛନ୍ତି ଯେ ଅଚେତ ଶରୀର ।
ବିପ୍ର ଯାନ୍ତେ ଦେଖି ଜ୍ଞାନ ହଜିଲା ରାଣୀର ॥
ପତିର ଦକ୍ଷିଣ ଅଙ୍ଗ ଘେନିଣ କୋଳରେ ।
କୃଷ୍ଣ ଯାନ୍ତେ ଓଗାଳିଲା ଯାଇଣ ଆଗରେ ॥
ରାଜାର ଦକ୍ଷିଣ ଅଙ୍ଗ ଦାନ ବେଗେ ଦିଅ ।
ସିଂହକୁ ଦେଇଣ ତୁମ୍ଭ ପୁତ୍ର ମୁକୁଳାଅ ॥
କୃଷ୍ଣ ବୋଲେ ବାମଚକ୍ଷୁ କଲାକ ରୋଦନ ।
ନ ନେବଇଁ ଏମନ୍ତ ବିଚଲେ ରାଜା ଦାନ ॥
ରାଣୀ ବୋଲେ ସେ ଚରିତ ଶୁଣ ବିପ୍ରବର ।
ବାମ ଅଙ୍ଗ ନୃପତିର କଲାକ ବିଚାର ॥
ବୋଇଲାକ ଦକ୍ଷିଣାଙ୍ଗ ସୁକୃତ ବଢ଼ିଲା ।
ବିପ୍ରେ ଉପକାର କରି ପୁଣି ଦାନ ଦେଲା ॥
ବାମ ଅଙ୍ଗ ହୋଇଣ ମୁଁ ହେଲି ପାପୀବର ।
ଦେବତା ବ୍ରାହ୍ମଣଙ୍କ ନ କଲି ଉପକାର ॥
ବାମ ଅଙ୍ଗ ଏରୂପେ ଯେ ମନେ ବିଚାରିଲା ।
ବ୍ୟର୍ଥ ହେଲା ମୋ ଶରୀର କେହି ନ ଛୁଇଁଲା ॥
ତାହା ଶୁଣି ବିପ୍ରବର ହରଷ ହୋଇଲେ ।
ରାଣୀ ହସ୍ତୁ ରାଜା ଅଙ୍ଗଦାନ ସେ ଘେନିଲେ ॥
ସତ୍ୟବନ୍ତ ରାଜା କଥା ଦେଖାଇ ପାର୍ଥକୁ ।
ବାହୁଡ଼ିଣ ଗଲେ କୃଷ୍ଣ ଯଜ୍ଞ ମଣ୍ଡପକୁ ॥

ଅନ୍ତର୍ଯ୍ୟାମୀ ନାମ ଘଟେ ଘଟେ ଛନ୍ତି ପୂରି ।
ସକଳ ସଂସାର ମାୟା ଯେ ଉଦ୍ଭବକାରୀ ॥
ତାଙ୍କ ବିନୁ ଆନ କେହି ସଂସାରରେ ନାହିଁ ।
ଯାହା ମାୟା ବ୍ରହ୍ମା ରୁଦ୍ର ନ ଜାଣନ୍ତି କେହି ॥
ରାଜା ବାମ ଅଙ୍ଗଠାରେ ଶ୍ରୀହରି ମିଳିଲେ ।
ବ୍ରହ୍ମ ବ୍ରହ୍ମ କହି ଦକ୍ଷିଣାଙ୍ଗ ଲଗାଇଲେ ॥
ନିଜରୂପେ ଚତୁର୍ଭୁଜେ କରି ଆଲିଙ୍ଗନ ।
ସତ୍ୟବନ୍ତ ରାଜାକୁ ଦେଲେକ ପ୍ରାଣଦାନ ॥
ଆଲିଙ୍ଗନ ଯେହ୍ନେ ପିତା ପୁତ୍ରକୁ କରଇ ।
ସେହିରୂପେ ରାଜାକୁ କଲେକ ଭାବଗ୍ରାହୀ ॥
ଚାହାନ୍ତେ ଦେଖିଲା ରାଜା ପ୍ରଭୁ ଦୈତ୍ୟାରି ।
ଚାରିକରେ ଗଦାପଦ୍ମ ଶଙ୍ଖ ଚକ୍ରଧର ॥
ନବଘନ ଜିଣି ଅଙ୍ଗ ଅତ୍ୟନ୍ତ ସୁନ୍ଦର ।
ରତ୍ନ ଓଢ଼ଣୀ ପୀତ ବସନ କଟିର ॥
ବେନି ପାଦପଦ୍ମେ ତାଙ୍କ ନୂପୁର ଶୋଭଇ ।
ବେନିପାଦ ନଖ ମୁକ୍ତା ପ୍ରାୟେ ବିରାଜଇ ॥
ଇନ୍ଦ୍ର ନୀଳମଣିର କୁଣ୍ଡଳ ଗଣ୍ଡସ୍ଥଳ ।
ନାସାରେ ଦିଶଇ ଶୋଭା ଗଜମୁକ୍ତା ଫଳ ॥
ମୁରଲୀ ବିମ୍ବ ଅଧରେ ସୁସ୍ୱରେ ବାଜଇ ।
ଦନ୍ତପଂକ୍ତି ମାଣିକ୍ୟର ପ୍ରାୟେ ବିରାଜଇ ॥
ମୀନକେତନକୁ ଗଞ୍ଜି ଶ୍ରୀପଦ୍ମ ଲୋଚନ ।
ଚାହିଁଲେ ବିହ୍ୱଳ ହେବ ସମସ୍ତଙ୍କ ମନ ॥
ତାଳୁରେ ସେବତୀ ଚୂଳ ଅଛି ବକ୍ର ହୋଇ ।
ଇନ୍ଦ୍ରଧନୁ ପ୍ରାୟେ ଶିଖୀପୁଚ୍ଛ ବିରାଜଇ ॥
ଏମନ୍ତ ଶ୍ରୀକୃଷ୍ଣ ରୂପ ଦେଖି ନୃପବର ।
କୃତାର୍ଥ ହୋଇଲି ବୋଲି କଲାକ ବିଚାର ॥
ପାଦପଦ୍ମେ ପଡ଼ି ସେ ବହୁତ ସ୍ତୁତି କଲା ।
ଯେ ଥିଲା ସଂସାର ମାୟା ସକଳ ନାଶିଲା ॥
ବୋଇଲା ଅନାଦି ପ୍ରଭୁ ଶ୍ରୀପଦ୍ମଲୋଚନ ।
ଚଉଦ ଭୁବନ ନିସ୍ତାରଣ ଭଗବାନ ॥
କୋଟି କୋଟି ବ୍ରହ୍ମାଣ୍ଡ ଯା ଲୋମମୂଳେ ଥାଇ
ସଂସାର ପ୍ରଳୟ ସ୍ଥିତି ଯାଠାରୁ ହୁଅଇ ॥
ସେ ସୃଷ୍ଟିକରତା ମୁକ୍ତି ଜ୍ଞାନ ଦାତା ମୋର ।
ତ୍ରୈଲୋକ୍ୟର ପିତା ମାତା ଆଦି ନିରାକାର ॥
ହେ ସର୍ବସ୍ୱ ତ୍ରିକାଳଜ୍ଞ ଜ୍ଞାନରୂପୀ ହରି ।
ତୁମ୍ଭ ପାଦପଦ୍ମେ କୋଟି ପ୍ରଣାମ ମୋହରି ॥

ଏହିପରି ସ୍ତୁତି ରାଜା କରନ୍ତେ ବହୁତ ।
ପ୍ରସନ୍ନ ହୋଇଲେ ତାଙ୍କୁ ଲକ୍ଷ୍ମୀଦେବୀ କାନ୍ତ ॥
ହସି କୃଷ୍ଣ ରାଜାଙ୍କୁ ଯେ ବୋଇଲେ ବଚନ ।
ଧନ୍ୟ ସତ୍ୟବାଦୀ ନୃପ ଧନ୍ୟ ତୋର ପୁଣ୍ୟ
ବହୁତ ପ୍ରକାରେ ତୋତେ ପରୀକ୍ଷା ମୁଁ କଲି ।
କେବେହେଁ ତୋ ସତ୍ୟବ୍ରତ ଭାଙ୍ଗି ନ ପାରିଲି
ସନ୍ତୋଷ ହୋଇଲି ତୋର ସ୍ତବର ସମରେ ।
ଅର୍ଜୁନ ସହିତେ ମୋତେ ଜିଣିଲୁ ଯୁଦ୍ଧରେ ॥
ମୋ ବୋଲରେ ଅର୍ଦ୍ଧଅଙ୍ଗ ଦେଲୁ ଆନନ୍ଦେଣ
ତେଣୁ କିଛି ଦୁଃଖ ତୋ ନୋହିଲା ଶରୀରେଣ
ଯେ ଜନ ମୋହର ନାମ ଭଜନ କରଇ ।
ସର୍ବଦା ତାହାର ଦେହେ ଦୁଃଖ ନ ବାଧଇ ॥
ଏ ଯଜ୍ଞର ଅଧିକାରୀ ମୁଁ ତୋର ହୋଇବି ।
ଯଜ୍ଞର ଯେତେକ ଫଳ ଗ୍ରହଣ କରିବି ॥
ଏମନ୍ତ ପ୍ରବୋଧି ହରି ବହୁତ କହିଲେ ।
ପୁନଃପୁନଃ ଆଲିଙ୍ଗନ ସ୍ନେହଭରେ କଲେ ॥
କରଯୋଡ଼ି ବୋଲେ ରାଜା ଶୁଣ ଚକ୍ରଧର ।
ଏ ତୁମ୍ଭ ମାୟାରେ ଜାତ ସକଳ ସଂସାର ॥
ଜାଣିଲି ସଂସାରେ ତୁମ୍ଭଠାରୁ ଆନ ନାହିଁ ।
ଯେଣୁ ମୋ ଦେହରୁ ମାୟା ନେଲ ହେ ଛଡ଼ାଇ
ଆଉର ଏ ଯଜ୍ଞେ ମୋର ନାହିଁ ପ୍ରୟୋଜନ
ଯେତେବେଳେ ମୁଁ କଲଇଁ ଶ୍ରୀପଦ ଦର୍ଶନ ॥
ତୁମ୍ଭଙ୍କୁ ନ ଦେଖି ଯେତୁ ଯଜ୍ଞାଦ କରନ୍ତି ।
ସେମାନେ ସଂସାରୁ କେବେ ତରି ନ ପାରନ୍ତି
ତାଙ୍କଠାରେ ଯମର ହୁଅଇ ଅଧିକାର ।
ପୁଣ ପୁଣ ଅତଯାତ ହୁଅନ୍ତି ସଂସାର ॥
ଏ ମୋହର ପୁତ୍ର କଲା ବଡ଼ ମୂର୍ଖକର୍ମ ।
ଯୁଦ୍ଧରେ ଆଣିଲା ତୁମ୍ଭ ଦୁହିଁଙ୍କି ଜିଣିଣ ॥
ଏବେ ମୋର ବଡ଼ଭାଗ୍ୟ ଦଶିଲା ଗୋସାଇଁ ।
ନର ନାରାୟଣ ରୂପ ଦର୍ଶନ କଲଇଁ ॥
ଏତେକହି କୃଷ୍ଣ ପାଦେ ଭକ୍ତି ବଢ଼ାଇଲା ।
ତାଙ୍କୁ ଝନିଦନ ନିଜ ଗୃହରେ ରଖିଲା ॥
ନଗରପୁର ଜନମାନେ ସମସ୍ତେ ଦେଖିଲେ ।
କୋଟି କୋଟି ଜନ୍ମର ପାତକ ବିନାଶିଲେ ।
ଶ୍ରୀକୃଷ୍ଣ ପ୍ରସନ୍ନ ହୋଇ କହିଲେ ରାଜାଙ୍କୁ ।
ସୈନ୍ୟଘେନି ପାର୍ଥ ସହ ରଖ'ନ୍ତେ ଅଶ୍ୱକୁ ॥
ତା ଶୁଣି ମୟୂରଧ୍ୱଜ ଆନନ୍ଦ ହୋଇଲେ ।
ଆଣିଣ ତାମ୍ରଧ୍ୱଜକୁ କୃଷ୍ଣେ ସମର୍ପିଲେ ॥
ଶ୍ରୀହରିଙ୍କ ଶ୍ରୀଚରଣେ ହେଲେ ପ୍ରଣମିତ ।
ଅର୍ଜୁନକୁ ବେନିଭୁଜେ କଲେ କୋଳାଗତ ॥
ରାଜାପଣେ ଶ୍ରୀହରି ସ୍ଥାପନ ତାଙ୍କୁ କଲେ ।
ଯେତେ ପାପ ଥି ତାର ସକଳ ନାଶିଲେ ॥
ପ୍ରତ୍ୟକ୍ଷରେ ନଗ୍ରଜନ କୃଷ୍ଣଙ୍କୁ ଦେଖିଲେ ।
ନିସ୍ତରିଲୁ ନିସ୍ତରିଲୁ ବୋଲିଣ ବୋଇଲେ ॥
ହରିଭକ୍ତ ରସଲୀଳା ନାମେ ଏହୁ ଗୀତ ।
ଯେ ଶୁଣାଇ ଶୁଣଇ ସେ ହୁଅଇ ମୁକତ ॥
ଅନ୍ତର୍ଯ୍ୟାମୀ ନାରାୟଣ ଶ୍ରୀପଦ୍ମ ଚରଣ ।
ଉପାଧ୍ୟାୟ ମହାଦେବ ପଶିଲା ଶରଣ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତ
ରସଲୀଳା ସାର କଥା ପ୍ରବନ୍ଧେ ନାମ
ଊନବିଂଶୋଽଧ୍ୟାୟଃ ।

---

## ତ୍ରିଂଶ ଅଧ୍ୟାୟ

ଜାଡ଼୍ୟା ଧିୟୋ ହରତି ସିଞ୍ଚତି ବାଚି ସତ୍ୟଂ ।
ମନୋନ୍ନତିଂ ଦିଶତି ପାପମପାକରୋତି ॥
ଚେତଃ ପ୍ରସୀଦୟତି ଦିକ୍ଷୁ ତନୋତି କୀର୍ତ୍ତିଂ ।
ସତ୍ସଙ୍ଗତିଃ କଥୟ କିଂ ନ କରୋତି ପୁଂସା ॥

### ବୀରବର୍ମ୍ମାଙ୍କ ଉପାଖ୍ୟାନ

ଏଥୁଅନ୍ତେ ଜନ୍ମେଜୟ ଯୋଡ଼ି ବେନିପାଣି
ବୋଲନ୍ତି ହେ ମୁନି ମୋତେ କୁହ ସୁଧାବାଣୀ
ଶ୍ରୀକୃଷ୍ଣ ଚରିତ ଏହି ଅମୂଲ୍ୟ ଅଟଇ ।
ଯାହାଙ୍କ ନାମ ଶୁଣିଲେ ପାପୀ ତରିଯାଇ ॥
ତଦପରେ ଯଜ୍ଞ ଅଶ୍ୱ କେଉଁଆଡ଼େ ଗଲା ।
ସେ ସବୁ ବିସ୍ତାରି ମୋତେ କୁହ ରଷିବଳା ॥
ରାଜାଙ୍କ ବଚନ ଶୁଣି କହନ୍ତି ଜୈମିନି ।
ଶୁଣ ଶୁଣ ନରବର ଅପୂର୍ବ କାହାଣୀ ॥
ଶିଖୀଧ୍ୱଜ ପୁରୁ ଗଲା ଦୁଇ ଅଶ୍ୱବର ।
ରତ୍ନମୟ ପୁରେ ପ୍ରବେଶିଲାକ ସତ୍ୱର ॥
ପାଣ୍ଡବ ସୈନ୍ୟ ଅଶ୍ୱକୁ ନ ଦେଖିଲେ କେହି
ତହିଁ ମନେ ଚିନ୍ତାକଲେ ବାସବ ତନୟୀ ॥
ଏହି ସମୟେ ନାରଦ ସେଠାରେ ମିଳିଲେ ।
ଦେଖିଣ ସମସ୍ତେ ତାହାଙ୍କୁ ଯେ ମାନ୍ୟକଲେ

ଅର୍ଜ୍ଜୁନ ବୋଇଲେ ଅହେ ଶୁଣ ମୁନିବର ।
ଯଜ୍ଞ ଅଶ୍ୱ କେଉଁଣେ ଗଲା ନ ପାଉ ଖବର ॥
ନାରଦ ବୋଇଲେ ଏହି ରତ୍ନପୁରରେ ମୁହିଁ ।
ବୀରବର୍ମା ରାଜା ଦେଶେ ଅଶ୍ୱ ଦେଖିଲଇଁ ॥
ଶୁଣିଣ ସକଳ ବୀରେ ଆନନ୍ଦ ହୋଇଲେ ।
ନାରଦେ ମେଲାଣି ଦେଇ ରତ୍ନପୁରେ ଗଲେ
ଦେଖିଲେ ସେ ଦେଶଯାକ ସମସ୍ତେ ଧାର୍ମିକ
ପାପ ତାପ ହୀନ ସର୍ବେ ଅତ୍ୟନ୍ତ ବିବେକ ॥
ନଗରର ଶୋଭା ଦିଶେ ଅତି ମନୋହର ।
ଦେଖି ମନ ନେତ୍ର ଲୋଭା ରହିଲା ସେଠାର
ଧର୍ମ ଅର୍ଥ କାମ ମୋକ୍ଷପୂର୍ଣ୍ଣ ସେ ଦେଶରେ ।
ଦେଖିଣ ଆନନ୍ଦ ମନ ହେଲେ ସର୍ବ ବୀରେ ॥
ସେଠାରେ କାହାର ନାହିଁ ମନରେ ବିଷାଦ ।
ରୋଗ ଶୋକ ଚିନ୍ତା ଆଦି ନାହିଁ କିଛି ବାଦ
ଲକ୍ଷ୍ମୀ ଆଉ ସରସ୍ୱତୀ ଛନ୍ତି ସେ ନଗରେ ।
ସର୍ବେ ଧନବାନ ବିଦ୍ୟାବନ୍ତ ସେ ଦେଶରେ
ଜଗତ କରତା ହରି ଅର୍ଜ୍ଜୁନ ଘେନିଣ ।
ସେ ଦେଶରେ ଉପସ୍ଥିତ ହୋଇଲେ ଯାଇଣ
ଶ୍ରୀକୃଷ୍ଣ ଆଗମ ଶୁଣି ବୀରବର୍ମା ବୀର ।
ଆନନ୍ଦ ଭକ୍ତିରେ ପର୍ଣ୍ଣ ହୋଇଲା ଅନ୍ତର ॥
ଶ୍ରୀଚରଣ ଦେଖିବାକୁ ମନସ୍ଥ କରିଣ ।
ସୈନ୍ୟମାନଙ୍କୁ ହକାରି ବୋଇଲେ ବଚନ ॥
ଶୁଣ ଅହେ ବୀରମାନେ ମୋହର ବଚନ ।
ପାଣ୍ଡବଙ୍କ ଯଜ୍ଞ ହେତୁ ନିଜେ ନାରାୟଣ ॥
ଏଥେ ଆସିଛନ୍ତି ସେହି ବେଗେ ତୁମ୍ଭେ ଯାଅ
ବିକ୍ରମ ପ୍ରକାଶ କରି ଯୁଦ୍ଧ କରୁଥାଅ ॥
ଅଙ୍କମାନେ ସର୍ବ ବୀର ବହନ ଚଳିଲେ ।
ମହାବୀରେ ପାଞ୍ଚଜଣ ତାଙ୍କ ସଙ୍ଗେ ଗଲେ ॥
ସୁଲୋଲ, ସୁରଭ, ନୀଳ, ବକୁଳ, ସରଳ ।
ପ୍ରଚଣ୍ଡ ମୂରତି ଧରି ଗଲେ ସେ ସକଳ ॥
ଭୟଙ୍କରନାଦେ ପଶୁ ସୈନ୍ୟେ ପ୍ରବେଶିଲେ ।
ଯୁଦ୍ଧକରି ଯଜ୍ଞ ଅଶ୍ୱ ଧରିଣ ଆଣିଲେ ॥
ଯଜ୍ଞ ଅଶ୍ୱଧରା ହେବା ଦେଖି ପାର୍ଥ ସୈନ୍ୟ ।
ଅତ୍ୟନ୍ତ ରାଗରେ କଲେ ବାଣ ବରଷଣ ॥
ପ୍ରଳୟ ବର୍ଷା ସମାନ ନିକ୍ଷେପନ୍ତି ଶର ।
ବୀରବର୍ମା ସୈନ୍ୟମାନେ ହୋଇଲେ କାତର ॥
ଦେଖିଣ ଏସନ ରାଜା ପୁତ୍ରମାନେ ଆସି ।
ରେଖାରେଖି ବାଣ ମାରି ପାର୍ଥ ସୈନ୍ୟନାଶି
ଗରଜନ କଲେ ସେହି ଅତ୍ୟନ୍ତ ବେଗରେ ।
ବୃଷକେତୁ ଅନୁଶାଲ୍ୱ ଶାମ୍ବ ଆଦି ବୀରେ ॥
ଆଗଭର ହୋଇ ସର୍ବେ କରିଲେ ସମର ।
କାଳାନ୍ତକ ଶରମାନ କରନ୍ତେ ପ୍ରହାର ॥
ରାଜାଙ୍କର ପାଞ୍ଚପୁତ୍ରେ ଏମାନଙ୍କ ରଣେ ।
ସମର ଭୂମିରେ ପ୍ରାଣ ଦେଲେ ସେହିକ୍ଷଣେ ।
ଦେଖି ବୀରବର୍ମା ଭାବେ ଯମ ମୋର ଜୋଇଁ
କହିଥିଲେ ବିପଦ ପଡ଼ିଲେ ଯୁଝିବଇଁ ॥
ତେଣୁ ମୋ ପୁରେ ଅଛନ୍ତି ପତ୍ନୀର ସହିତ ।
ତାହାଙ୍କୁ ଡକାଇ ଆଣିଲେକ ନରନାଥ ॥
ସମସ୍ତ ବୁଝାଇ ତାଙ୍କୁ ଯୁଦ୍ଧକୁ ପେଶିଲା ।
ଜନ୍ମୁପତି ଅର୍ଜ୍ଜୁନର ଆଗରେ ମିଳିଲା ॥
ଦେବ ଶରମାନ କ୍ରୋଧେ କରଇ ପ୍ରହାର ।
ନିମିଷକେ କେତେ ସୈନ୍ୟ ଗଲେ ଯମପୁର ॥
ଦେଖି ପାର୍ଥସୁତ କୋପେ ଜଳିଣ ଉଠିଲା ।
ନିଠାଇ ନିଠାଇ ଶର ପ୍ରହାର କରିଲା ॥
କ୍ରୋଧେ ଯମ ପାର୍ଥ ସୁତ ଶରକାଟି ଦେଲେ ।
ଶରମାରି ସୈନ୍ୟକ୍ଷୟ କଲେ ଅବହେଳେ ॥
ସୈନ୍ୟକ୍ଷୟ ଦେଖିଣ ଅର୍ଜ୍ଜୁନ ଭୀତ ମନ ।
ଶ୍ରୀକୃଷ୍ଣଙ୍କୁ ଚାହିଁ ବୋଲେ ଶୁଣ ନାରାୟଣ ॥
କେଉଁ ଦେବ ନରରୂପେ ଏଥେ ଅଛି ଆସି ।
ମୋହର ସୈନ୍ୟଙ୍କୁ ହେଲେ ଦେଉଛି ବିନାଶି
ଜଣାଯାଏ ନରରୂପେ କେଉଁ ଦେବ ଏହି ।
ସମର କରିଣ ମୋର ସୈନ୍ୟଙ୍କୁ ନାଶଇ ॥
ଶୁଣି ଶ୍ରୀହରି ବୋଲନ୍ତି ଶୁଣ ପାର୍ଥବୀର ।
ବୀରବର୍ମା ଜୋଇଁ ଏହି ନିଜେ ନାଶକର ॥
ବୋଲଇ ଅର୍ଜ୍ଜୁନ ଅହେ ଦୟାମୟ ହରି ।
କହନ୍ତୁ ଯମ ଜୁଆଇଁ ହୋଇଲା କପରି ॥
କହନ୍ତି ଶ୍ରୀହରି ତୁମ୍ଭେ ଶୁଣ କୁନ୍ତୀସୁତ ।
ବୀରବର୍ମା ଜୋଇଁ ଯମ ହୋଇଲା ଯେମନ୍ତ ॥
ବୀରବର୍ମା ସ୍ତ୍ରୀ ସୁକଲ୍ୟାଣୀର ଗର୍ଭରୁ ।
ମାଳିନୀ ନାମରେ କନ୍ୟା ଜନ୍ମିଲା ତାଠାରୁ ॥
କ୍ରମେ କନ୍ୟା ଯୁବା ହେବା ଦେଖି ନୃପମଣି
ବିବାହ ଦେବା ପାଇଁକି କଲେ ଆୟୋଜନ ॥

ଶୁଣି କନ୍ୟା ବୋଲେ ତାତ ନରମାନଙ୍କରେ
ବିଭା ମୁଁ ନୋହିବି ସର୍ବେ ଯାନ୍ତି ଯମପୁରେ ॥
ବିଧବା କଷ୍ଟକୁ ମୁହିଁ ସହି ନ ପାରିବି ।
ନାଶକରଙ୍କ ସହିତ ବିବାହ ହୋଇବି ॥
ଝିଅ କଥା ଶୁଣି ନୃପ ଯମେ ଧ୍ୟାନ କଲେ ।
ତୁଷ୍ଟହୋଇ ଯମ ନାରଦଙ୍କୁ ପଠାଇଲେ ॥
ନାରଦ ବୀରବର୍ମାଙ୍କ ପୁରେ ପ୍ରବେଶିଲେ ।
ବୈଶାଖ ଶୁକ୍ଳ ପଞ୍ଚମୀ ତିଥି ସ୍ଥିରକଲେ ॥
ସେହିଦିନ ଯମରାଜା ବୋଇଲେ ସଇନେ ।
ମହା ମହା ବୀର ବିଜେ କରିବ ସେ ସ୍ଥାନେ ॥
ଭୂତ ପ୍ରେତ ରୋଗ କାଳ ବିକାଳ ସହିତେ
ପିଶାଚୀ ଡାକିଣୀ ଶରକୁଣୀ ଆଦି ଯେତେ ॥
ସମସ୍ତେ ମୋହର ସଙ୍ଗେ ବାହାରି ହୋଇବ ।
ବୀରବର୍ମାର ପୁରରେ ବିବାହ ଦେଖିବ ॥
ଶୁଣି ଯକ୍ଷ୍ମାରୋଗ ବୋଲେ ଅହେ ଜନୁରାଣ ।
ସମସ୍ତେ ସେ ପୁରଲୋକ ବିଷ୍ଣୁ ପରାୟଣ ॥
ସେଠାକୁ ଗଲେ ଅମ୍ଭର ହୋଇବ ମରଣ ।
ତେଣୁ କରି ଧର୍ମରାଜ ନ ଯିବୁ ସେ ସ୍ଥାନେ ॥
ପ୍ରମେହ ବୋଲି ଅଛଇ ମୋହର ନନ୍ଦନ ।
ମୋହ ସମାନ ପ୍ରକୃତି ତାର ଦେବ ଜାଣ ॥
ଆବର ମୋ ଝିଅ ନାମ ମାରି ଯେ ଅଟଇ ।
ସମସ୍ତଙ୍କ ଜୀବନ ସେ ସଂହାର କରଇ ॥
ପାଣ୍ଡୁ ମୋର ଭାଇ ଅଟେ ଅତି ତେଜୋବନ୍ତ
ସଂସାରେ ବୁଲିଣ ନାଶେ ପ୍ରାଣୀଙ୍କି ନିରତ ॥
ତାର ପୁତ୍ର ଜଲୋଦର ପିତା ପରି ଗୁଣ ।
ଏଥିରୁ କାହାକୁ ବା ପେଷିବ ଜନୁରାଣ ॥
ଏଣୁ ସେଠାକୁ ଯିବା ମୋ ଉଚିତ ନୁହଇ ।
ଧାର୍ମିକ ସହିତ କପରି ରହିବି ମୁହିଁ ॥
ଗଲେ ନିଶ୍ଚୟ ମରଣ ହୋଇବ ମୋହର ।
ମୋହଯୋଗୁ ହେବ ଆପଣଙ୍କ ହତାଦର ॥
ଯେଉଁ ରାଜାମାନେ ନାନା ଅନ୍ୟାୟ କରନ୍ତି ।
ସେମାନଙ୍କ ସଙ୍ଗେ ମୁହିଁ କରଇ ବସତି ॥
ଏ ଯେତେ ବ୍ରଣ ଦେଖୁଛ ଅହେ ନାଶକର ।
ଏହିମାନଙ୍କ ମଧ୍ୟରେ ଶ୍ରେଷ୍ଠ ଭଗନ୍ଦର ॥
ଗୁରୁପତ୍ନୀ ଆଦିଙ୍କୁ ଯେ ହରଣ କରନ୍ତି ।
ସେମାନଙ୍କଠାରେ ଏହିମାନେ ଯେ ବସନ୍ତି ॥

ଦେଖ ସନ୍ନି ପାତ ଅତିସାର ଯେ ଗ୍ରହଣୀ ।
ଶୋଥ ଧାତୁକ୍ଷୟ ବାନ୍ଧେ ବୁଦ୍ବୁଦରୀ ଦେନା ॥
ଶ୍ୱାସ ବାନ୍ଧି କର୍ଣ୍ଣଶୂଳ ଚକ୍ଷୁ ରୋଗମାନ ।
ଧନୁଷ୍ଟଙ୍କାରାଦି ବାତ ହୋଇବେ ନିଧନ ॥
ଗଳଗଣ୍ଡ ରୋଗ ପାର୍ଶ୍ୱ ରୋଗ ଆଦି ଯେତେ ।
ଅପସ୍ମାର ପ୍ଲେଗ ଆଦି ଅଛନ୍ତି ସମସ୍ତେ ॥
ରାଜଯକ୍ଷ୍ମାକୁ କହନ୍ତି ନିଜେ ଜନୁରାଣି ।
ମୋହର ବଚନ ତୁମ୍ଭେମାନେ ଏବେ ଶୁଣ ॥
ମୋର ପୁରେ ଯେଉଁପରି କର ହେ ବସତି ।
ବୀରବର୍ମାପୁରେ ଚାଲ ହୋଇ ହର୍ଷମତି ॥
ବୋଇଲି ଯାଠାରେ ଥାଇ ପାତକ ବିଶେଷ ।
ତୁମ୍ଭମାନଙ୍କର ସିନା ତାହା ଦେହେ ବାସ ॥
ଯେଉଁଲୋକ ଯକ୍ଷ୍ମାରୋଗ ମୁକ୍ତ ଇଚ୍ଛାକରେ ।
ବିପ୍ରେ ଦାନଦେଇ ରୁଦ୍ରାକ୍ଷ ଜପିଲେ ତରେ ॥
ଯେଉଁ ଜନ ଦେବ ବିପ୍ରମାନଙ୍କୁ ନିନ୍ଦଇ ।
ବିସୂଚିକା ତାଙ୍କୁ ଆକ୍ରମଣ ଯେ କରଇ ॥
ମହାଦେବଙ୍କ ଦ୍ରବ୍ୟକୁ ଯେ ହରଣ କରେ ।
ମୂତ୍ରକୃଚ୍ଛ୍ର ବ୍ୟାଧି ଆକ୍ରମଣ କରେ ତାରେ ॥
ସୁବର୍ଣ୍ଣ ପଲଙ୍କେ ପଦ୍ମ ଫୁଲ ଯେ କରଣ ।
ବ୍ରାହ୍ମଣକୁ ଦାନ ଦେଲେ ମୁକ୍ତ ହୋଏ ଜାଣ
ପରସୁଖ ଦେଖି ସୁଖୀ ଯେହୁ ନ ହୁଅଇ ।
କାମଳ ପାଣ୍ଡୁର ତାକୁ ଆଶ୍ରୟ କରଇ ॥
ଉଚିତ ବେଭାରେ ଯେ ମହିଷ ଦାନକରେ ।
କାମଳ ପାଣ୍ଡୁର ତାକୁ ଛାଡ଼ିଯାଏ ଦୂରେ ॥
ପାଣ୍ଡୁ ପୁତ ସଖାକୁ ଯେ ଆଶ୍ରୟ କରିବ ।
ସେହିଲୋକ ଜୀବନରେ କଷ୍ଟ ଦିନ ଥିବ ॥
ଗଢ଼ାଇ ସୁବର୍ଣ୍ଣ ଛତା ବେଦଜ୍ଞ ବିପ୍ରଙ୍କୁ ।
ଦାନ ଦେଲେ ଶୋଥ ଛାଡ଼ିଯାଏ ହେ ତାହାକୁ
ଯେଉଁମାନେ ଭ୍ରୂଣହତ୍ୟା ପାତକ କରନ୍ତି ।
ଜଲୋଦର ବ୍ୟାଧି ତାଙ୍କୁ ନିଶ୍ଚୟ ଧରନ୍ତି ॥
ବରୁଣର ପ୍ରୀତି ଅର୍ଥେ ଜଳଦାନ ଦେଲେ ।
ତେବେ ସେ ତାହାକୁ ଛାଡ଼ିଦିଏ ସହଜରେ ॥
ଶତେତାଅଷ୍ଟୋତ୍ତର ବ୍ରଣ ଅଛନ୍ତି ଯେ ମୋର ।
ତାହା ସଙ୍ଗେ ପ୍ରୀତି ମୋର ଅଟେ ଅତ୍ୟନ୍ତର
ତିଳଫୁଲ ଦ୍ୱିମୁଖୀ ରୁଦ୍ରାକ୍ଷ ଦାନକଲେ ।
ତାହାର ଦେହକୁ ସେହି ସ୍ପର୍ଶ ନ କରେ ॥

ବଇଁଅଁ ବୋଲନ୍ତି ତାହାଙ୍କର ଯେଉଁ ନାସି ।
ଯେ ଗ୍ରାସନ୍ତି ଷଡ଼ରସ ତାଙ୍କୁ ଅଶେଷ କରି ॥
ସୁବର୍ଣ୍ଣ ଫଳକୁ ଦାନ ବିପ୍ରଙ୍କୁ ଯେ ଦେଇ ।
ତାର ପାର୍ଶ୍ୱ ଅନ୍ତର ସେ ବେଗ ହୋଇ ଯାଇ ॥
ଯେଉଁମାନେ ବିଶ୍ୱାସ ଘାତକୀ ଯେ ହୁଅନ୍ତି ।
ସନ୍ନିପାତମାନେ ତାଙ୍କୁ ଦିଅନ୍ତି ଯେ ଶାସ୍ତି ॥
ଯେ କରେ ଦେଉଳ ଅଜ ଶିବ ବିଷ୍ଣୁ ଘର ।
ତେବେ ତାକୁ ଛାଡ଼ନ୍ତି ଅସନ୍ତି ମୋର ପୁର ॥
ପରଦ୍ରବ୍ୟ ଆଣେ ଯେହୁ ଧର୍ମକୁ ଛାଡ଼ିଣ ।
ସଂଗ୍ରହଣୀ ରୋଗେ ସେହୁ ପାଏ ଯେ କଷଣ ॥
ସେ ଯେବେ ବେଦବିଧାନେ କାର୍ଯ୍ୟକୁ କରନ୍ତି
ତେବେ ଏହିମାନେ ତାର ପାଶକୁ ନ ଯାନ୍ତି ॥
ଯେ କର୍କଶ କହେ ମାତା ପିତା ସୁହୃଦରେ ।
ବନ୍ଧୁ ମିତ୍ର ଭାର୍ଯ୍ୟା କନ୍ୟା ପୁତ୍ରଙ୍କୁ ପାଶରେ ॥
ତିନି ଶତ ଶୂଳ ବ୍ୟାଧି ଅଛନ୍ତି ମୋହର ।
ସେ ଯାଇ ଛୁହନ୍ତି ସେମାନଙ୍କୁ ଅଶେଷ କରି ॥
ଏଥିକି ଉଚିତ ଯେବେ ଦାନ ସେ ଦିଅନ୍ତି ।
ତେବେ ସେ ଛାଡ଼ିଣ ତାଙ୍କୁ ଲେଉଟି ଅସନ୍ତି ॥
ସାଧୁ ବିପ୍ର ଦେଖି ନମସ୍କାର ଯେ ନ କରେ ।
ଧନୁବାତ ଆଦି ବ୍ୟାଧି ହୁଏ ତା ହୃଦରେ ॥
ସୁବର୍ଣ୍ଣ ପ୍ରତିମା ପ୍ରତିକାର ଯେ ତାହାକୁ ।
ତୈଳଦ୍ରୋଣୀ ନ କରଇ ଆସେ ମୋ ପୁରକୁ
ସାଧୁଠାରେ ହରିକଥା ଯେବା ନ ଶୁଣଇ ।
କର୍ଣ୍ଣମୂଳ ଶୂଳବ୍ୟାଧି ତାହାକୁ ଭଜଇ ॥
ଶୁଣି ବିଷ୍ଣୁ ପୁରାଣ ଯେ ଗାଈ ଦାନ ଦେଲେ ।
ତାହାକୁ ନ ମାରି ସେ ଲେଉଟି ଆସେ ଭଲେ
ନିଜ ନାସି ଛିଦ୍ର ଖୋଜୁଥାନ୍ତି ଯେଉଁ ନର ।
ଚକ୍ଷୁ ରୋଗମାନ ସବୁ ହୁଅଇ ତାଙ୍କର ॥
ଯେବେ ପଦ୍ମପୁଷ୍ପ ଯେ ଗଢ଼ାଇ ସୁବର୍ଣ୍ଣରେ ।
ଦାନ ସେ କରଇ ହରି ହରଙ୍କି ଭକ୍ତରେ ॥
ଚକ୍ଷୁକର୍ଣ୍ଣ ରୋଗମାନ ତାହାକୁ ନ ହୋଇ ।
ରାଜଯକ୍ଷ୍ମା ଶୂଳ ରୋଗ ପୀଡ଼ା ନ ଧରଇ ॥
ମୁଖ ରୋଗ ନିକଟକୁ ତାହାର ନ ଯାନ୍ତି ।
ଦେଖିଣ ମୋ ପୁରେ ଆସି ଲେଉଟି ରହନ୍ତି ॥
ଯେ ବ୍ରାହ୍ମଣ ଦେବତାଙ୍କ ଧନ ଯେହୁ ହରେ ।
ଗଣ୍ଡମାଳା ରୋଗ ତାଙ୍କୁ ନିରନ୍ତେ ଅଶେଷ କରେ
ଶମ୍ଭୁ ଅଟଳେ କମ୍ବୁ ଦେଇ ସ୍ୱର୍ଣ୍ଣଦାନ ଦେଲେ ।
ଗଣ୍ଡମାଳା ରୋଗ ତାଙ୍କୁ ନ ବାଧଇ ଭଲେ ॥
ପରର ସମ୍ପତ୍ତି ଦେଖି ହୋଏ ଯେ ମୂର୍ଚ୍ଛିତ ।
ତାହାଠାକୁ ବାତବ୍ୟାଧି ଯାଏ ହୋ ଭାରତ ॥
କଲାଗାଈ ସ୍ୱର୍ଣ୍ଣପଦ୍ମ ଯେ ଦେଇ ବିପ୍ରଙ୍କୁ ।
ଅପସ୍ମାର ବାତାଦି ନ ଯାଏ ତା ପାଶକୁ ॥
ସାଧୁଙ୍କର ବ୍ରତମାନ ଭଗ୍ନ ଯେ କରଇ ।
ମହାକୁଷ୍ଠ ବ୍ୟାଧି ତାଙ୍କୁ ଭଲେ ନ ଛାଡ଼ଇ ॥
ତହିଁକି ସୁବର୍ଣ୍ଣ ଶଙ୍ଖ ବିପ୍ରେ ଦେଲେ ଦାନ ।
ତାକୁ ଏହି ବ୍ୟାଧି ଯେ ନ କରନ୍ତି ନିଧନ ॥
ପ୍ରାଣୀଙ୍କି ବିଶ୍ୱାସଘାତୀ ହୋଇ ଯେଉଁ ନର ।
ଶିରପୀଡ଼ା ରୋଗମାନ ହୁଅଇ ତାହାର ॥
ତହିଁକି ସୁବର୍ଣ୍ଣ ମୁଦ୍ରା ବିପ୍ରେ ଦେଲେ ଦାନ ।
ତାକୁ ଏହି ବ୍ୟାଧି ଯେ ନ କରନ୍ତି ନିଧନ ॥
ଶ୍ରୀହରି ବଚନ ଏହି ବେଦର ପ୍ରମାଣ ।
ସୈନ୍ୟ ଘେନି ସାରସ୍ୱତେ କର ତୁ ଗମନ ॥
ଅର୍ଜ୍ଜୁନଙ୍କୁ ଗୃହିଁଣ କହନ୍ତି ହୃଷୀକେଶ ।
ଏମନ୍ତ କହିଲେ ଯମରାଜା ଯକ୍ଷ୍ମା ପାଶ ॥
ସେ ସକଳ ସୈନ୍ୟମାନ ଘେନିଣ ସଙ୍ଗତେ ।
ସାରସ୍ୱତ ପୁରେ ଯାଇ ମିଳିଲେ ତୁରିତେ ॥
ମଧ୍ୟସ୍ଥ ନାରଦ ଘେନି ମିଳିଲେ ସେଠାରେ ।
ମାଳିନୀ ଦେଖିଣ ହେଲା ହରଷ ମନରେ ॥
ମନ୍ତ୍ରୀ ଆସି ବେଗରେ ଯମକୁ ଘେନିଗଲେ ।
ବୀର ବର୍ମା ନୃପତି ଆଗରେ ଭେଟାଇଲେ ॥
ଯମକୁ ଦେଖିଣ ବୀରବର୍ମା ସ୍ତୁତିକଲେ ।
ପାଦଧୌତ କରି ସ୍ୱର୍ଣ୍ଣାସନେ ବସାଇଲେ ॥
ରାଜାଙ୍କୁ ଗୃହିଁଣ ଯମ କହିଲେ ବଚନ ।
ତୁମ୍ଭେ ବରମାଗ ଦେବ ହୋଇଲି ପ୍ରସନ୍ନ ॥
ଯାହା ମନେ ବାଞ୍ଛା ହେବ ମାଗି ଘେନ ବର
ତାହା ଶୁଣି ବୀରବର୍ମା ବୋଲଇ ଉତ୍ତର ॥
ବୋଲେ ମୁହିଁ କନ୍ୟାଦାନ ତୁମ୍ଭଙ୍କୁ ଦେବଇଁ
ତୁମ୍ଭ ଅନୁଗ୍ରହ ସଦା ଥିବ ମୋର ଠାଇଁ ॥
ଦୈବର ଭିଆଣ ଏହୁ ଅନିତ୍ୟ ସଂସାର ।
ସବୁ ମିଛ ମାୟା ଶ୍ରୀହରିଙ୍କ ଖେଳଘର ॥
ସୁପାତ୍ରେ ଯେ କନ୍ୟାଦାନ ଦିଅଇ ହେ ଜାଣ
ଉଦ୍ଧାର କରଇ ସପ୍ତପୁରୁଷ ସେ ଜନ ॥

ଅବର ଯମଙ୍କୁ ଗୁହିଁ ବୋଲେ ନରବର ।
ଯେଉଁଦିନ ମରଣ ହୋଇବ ଜାଣ ମୋର ॥
ଏହି ବର ଦିଅ ଆୟୁ କ୍ଷୀଣ ଦିନେ ମୁହିଁ ।
ଅର୍ଜ୍ଜୁନ ସହିତେ ଶ୍ରୀକୃଷ୍ଣଙ୍କୁ ଦେଖିବଇଁ ॥
ତେତେଦିନଯାଏ ତୁମ୍ଭେ ମୋ ପୁରରେ ଥିବ ।
ପ୍ରସନ୍ନ ହୋଇଲ ଯେବେ ଏହୁ ବର ଦେବ ॥
ଯେବେ ହରି ଅର୍ଜ୍ଜୁନ ଆସିବେ ମୋ ପୁରକୁ ।
ସେତେକାଳଯାଏ ରଖିଥିବି ମୁଁ ତୁମ୍ଭଙ୍କୁ ॥
ତାହା ଶୁଣି ଯମ ବୋଲେ ଏ ମୋର ପ୍ରମାଣ
ଥିବି ଯେତେକାଳକେ ଆସିବେ ନାରାୟଣ ॥
ସେହିକାଳେ ରାଜା ତୁମ୍ଭ ଆୟୁଷ ବଢ଼ିବ ।
ଏ ମୋହର ବୋଲେ ଅପମୃତ ନାଶଯିବ ॥
ତାଙ୍କ ଅଶ୍ୱ ଧରି ତୁମ୍ଭେ କରିବ ସମର ।
ମୁହିଁ ମୋର ସୈନ୍ୟ ଘେନି ଯିବ ସଙ୍ଗତର ॥
ତାହାଙ୍କର ସୈନ୍ୟ ମୁଁ ନାଶିବି ସଂଗ୍ରାମରେ ।
ଏହି ବର ଦେଲି ସଦା ଥାଅ ନିଶ୍ଚିନ୍ତରେ ॥
ରାଜା ଆଜ୍ଞାରେ ମାଳିନୀ ଯମଙ୍କୁ ବରିଲେ ।
ଶୁଭଲଗ୍ନ ବୁଝି ଯମରାଜେ ବିଭାହେଲେ ॥
ସେହିଦିନୁ ଅଛି ଯମ ସାରସ୍ୱତ ପୁରେ ।
ଏବେ ଅମ୍ଭ ସୈନ୍ୟ ସବୁ ନାଶିଲେ ସମରେ ॥
ଶୁଣି ପାର୍ଥ କୋପେ ଦେବ ଶରକୁ ଘେନିଲା ।
ଯମଦେବତାଙ୍କ ପରେ ପ୍ରହାର କରିଲା ॥
ପାର୍ଥ ବାଣ ବ୍ୟର୍ଥକରି କାଳଦଣ୍ଡ ପାଣି ।
ଦଣ୍ଡ ଘେନି କୋପମୂର୍ତ୍ତିହେଲେ ସେହିକ୍ଷଣି ॥
କାଳଦଣ୍ଡ ଯମ ହସ୍ତେ ଦେଖି ନାରାୟଣ ।
ହନୁକୁ ଠାରଣ ଦେଲେ ଯାଅ ହେ ବହନ ॥
ଶୁଣିଣ ମାରୁତ ମହା ବିଶ୍ୱମୂର୍ତ୍ତି ହେଲା ।
ରଥପରୁ ଡେଇଁ ଯମ ପାଶରେ ମିଳିଲା ॥
ବୋଇଲା ରେ ନାଶକର ମରିବୁ ଏକ୍ଷଣି ।
ଘୋର କାଳଦଣ୍ଡକୁ ଦେଖାଉ ମୋତେ ଅଣି ॥
ହ . କୁ ଦେଖିଣ ଯମ ଭୟେ ପଳାଇଲା ।
ବୀରବର୍ମାଙ୍କୁ ସକଳ ବିଷୟ କହିଲା ॥
ଏଣେ ଶ୍ରୀହରି ପାର୍ଥକୁ ବୋଲନ୍ତି ବଚନ ।
ସାବଧାନେ ଶୁଣ ସଖା ଭ୍ରାତ ମୋର ମନ ॥
ବୀରବର୍ମା ଏହିକ୍ଷଣି ଯୁଦ୍ଧକୁ ଆ◌ିବ ।
ଦେଖ ପାର୍ଥ କେମନ୍ତ ହେ କୌତୁକ ହୋଇବ

ସୈନ୍ୟ ସେନା ଘେନି ପାର୍ଥ ତୁମ୍ଭେ ସଜହୁଅ
ପଦ୍ମନ ବବ୍ରୁବାହନ ବୃଷକେତୁ ସହ ॥
ଏସନ କହିଣ ହରି ଶଙ୍ଖନାଦ କଲେ ।
ଉପାଧ୍ୟାୟ ମହାଦେବ ଗୀତେ ଏହା ବୋଲେ
ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତ
ରସଲୀଳା ସାରକଥା ପ୍ରସଙ୍ଗେ,
ନାମ ତ୍ରିଂଶୋଽଧ୍ୟାୟଃ ।



## ଏକତ୍ରିଂଶ ଅଧ୍ୟାୟ

ଉପାଧୌ ଯଥା ଭେଦଦତା ସନ୍ମଣିନାଂ
ତଥା ଭେଦଦତାବୃଦ୍ଧି ଭଦେଷ୍ୱ ତେଷୁ ।
ଯଥାଚନ୍ଦ୍ର କାମ୍ୟାଂ ଜଳେ ଚଞ୍ଚଳତ୍ୱଂ
ତଥା ଚଞ୍ଚଳତ୍ୱଂ ତବାପୀ ହରଷ୍ଟୋ ॥

### ବୀରବର୍ମ୍ମା ସହ କୃଷ୍ଣାର୍ଜ୍ଜୁନ ଯୁଦ୍ଧ ଓ ମିଳନ

ଜୈମିନି ବୋଲନ୍ତି ଶୁଣ ରାଜା ଜନ୍ମେଜୟ
ଅର୍ଜ୍ଜୁନ ବୀରବର୍ମାଙ୍କ ସମର ବିଷୟ ॥
ବୀରବର୍ମା ନରପତି ଯୁଦ୍ଧସ୍ଥାନେ ଯାଇ ।
ଶ୍ରୀକୃଷ୍ଣ ଅର୍ଜ୍ଜୁନେ ନମି ବଚନ କହଇ ॥
ମୋ ଚକ୍ଷୁରେ ଏମାନେ ହୋ ନ ଦିଶନ୍ତି ବୀର
ତୁମ୍ଭେ ଅବା ଶ୍ରୀକୃଷ୍ଣ ମୋ ସଙ୍ଗେ ଯୁଦ୍ଧକର ।
ମହାଘୋର ଯୁଦ୍ଧେ ବାହୁକଣ୍ଡୁ ହେ ନିବାର ।
ଦୁହେଁ ରହି ସଂଗ୍ରାମ ହେ କର ମୋ ସଙ୍ଗର ॥
ଏମନ୍ତ କହିଣ ଦଶ ନାରାଚ ବିନ୍ଧିଲା ।
ପଲକ ଭିତରେ ରକ୍ତନଦୀ ବୁହାଇଲା ॥
ଏକା ବୀରବର୍ମ୍ମାକୁ ସକଳ ବୀରମାନେ ।
ଅର୍ଜ୍ଜୁନ ସହିତେ ବାଣ ବିନ୍ଧିଲେ ଗହଣେ ॥
ପ୍ରତିଶର କରି ଛେଦେ ସମସ୍ତଙ୍କ ଶର ।
ଏକା ହୋଇ ଯୁଦ୍ଧ କଲା ବୀରବର୍ମ୍ମା ବୀର ॥
ତାହାର ସମାନ ବୀର ତ୍ରିଭୁବନେ ନାହିଁ ।
ଦେବତାଏ ପ୍ରଶଂସା କରନ୍ତି ସ୍ୱର୍ଗେ ଥାଇ ॥
ସକଳ ବୀରଙ୍କ ଦେହ ରଙ୍ଗବର୍ଣ୍ଣ ହେଲା ।
ରକ୍ତନଦୀ ଯୋଜନ ଓସାରେ ବୁହାଇଲା ॥
ଅରଜୁନ ବିନ୍ଧିଲା ବହୁତ ତୀକ୍ଷ୍ଣ ଶର ।
ଦେହ ତାର ବିଦାରିଲେ ଘୋର ସଂଗ୍ରାମର ॥

ସର୍ବ ବୀରେ ଏକାବେଳେ ବିନ୍ଧିଲେକ ବାଣ ।
ଶ୍ରାବଣ ବରଷା ପ୍ରାୟେ ପଡ଼େ ବାଣଗଣ ॥
ରାଜାର ସକଳ ସୈନ୍ୟ ପକାଇଲେ ମାରି ।
ଦୀର୍ଘପ୍ରସ୍ଥ ଯୋଜନେ ଲୋଟିଲେ ବସୁନ୍ଧରୀ ॥
କୋପେ ପାର୍ଥ ଡାକି ତାକୁ କହନ୍ତି ଉତ୍ତର ।
ବେଗେ ରାଜା ଛାଡ଼ିଦିଅ ବେନି ଅଶ୍ୱ ମୋର ॥
ନୋହିଲେ ଯୁଦ୍ଧରେ ଆଜ ଘେନିବି ତୋ ପ୍ରାଣ
କୋପେ ପୁଣ ପୁତ୍ରୀ ପାର୍ଥ ବିନ୍ଧିଲେ ଯେ ବାଣ
ତାହା ଶୁଣି ବୀରବର୍ମ୍ମା ମହାକୋପ କଲା ।
ସହସ୍ରେକ ବାଣ କୃଷ୍ଣ ଅର୍ଜ୍ଜୁନେ ବିନ୍ଧିଲା ॥
ପ୍ରଳୟକାଳ ମେଘ ଯେହ୍ନେ କରଇ ଗର୍ଜ୍ଜନ ।
ଡାକହାକେ ପୂରିଗଲା ଚଉଦ ଭୁବନ ॥
ଅର୍ଜ୍ଜୁନ ବିନ୍ଧଇ ତାକୁ କୋପେ ତୀକ୍ଷ୍ଣ ଶର ।
ସେ ପୁଣି ଛେଦଇ ତାକୁ ତିଳ ପ୍ରମାଣର ॥
ପାର୍ଥ ମନ୍ତ୍ରୀ ପାଞ୍ଚଶର ରାଜାକୁ ବିନ୍ଧିଲା ।
ବାଜି ପାଞ୍ଚଧାରେ ରକ୍ତ ଦେହୁ ତା ବହିଲା ॥
ବୀରବର୍ମ୍ମା ପାର୍ଥକୁ ବିନ୍ଧିଲା ପାଞ୍ଚବାଣ ।
ବାଜିଣ ବିବର୍ଣ୍ଣ ହେଲା ପାର୍ଥ ଦେହ ଜାଣ ॥
କୃଷ୍ଣଙ୍କୁ ସେ ଶତେଶର ମନ୍ତ୍ରିଣ ବିନ୍ଧିଲା ।
ଚାରି ଚାରି ଶର ଚାରି ଅଶ୍ୱକୁ ମାଇଲା ॥
ଧ୍ୱଜେ ଥିଲା ହନୁକୁ ବିନ୍ଧିଲା ଦିବ୍ୟ ଶର ।
ସମସ୍ତଙ୍କ ଦେହ ବିଦାରିଲା ମହାବୀର ॥
ପଦ୍ମନ ସହିତେ ଯେତେ ବୀର ତହିଁ ଥିଲେ ।
ବୀରବର୍ମ୍ମା ଶର କେହି ସହି ନ ପାରିଲେ ॥
ଲୁଚିଲେ ସେ ରଥ ଘେନି ଜୀବନ ଭୟେଣ ।
ମହାଘୋର ଯୁଦ୍ଧକଲା ବୀରବର୍ମ୍ମା ରାଣ ॥
ଅର୍ଜ୍ଜୁନର ସବୁ ସୈନ୍ୟ ଭୂମିରେ ଲୋଟିଲେ ।
ଆବର ଯେତେକ ଏଣେ ତେଣେ ପଳାଇଲେ
ତାହା ଦେଖି ପାର୍ଥକୁ କହନ୍ତି ଚକ୍ରଧର ।
ଏ ନୃପତି ଜୟକଲା ଆଜି ଏ ସମର ॥
ମୋରବଳେ ଏହାକୁ ହୋ ନପାରିବା ଜିଣି ।
କରୁଣେ ନେବା ହେ ଅଶ୍ୱ ନ ଦେଲେ ସେପୁଣି
ଯେଉଁ ଚକ୍ରେ ଶିଶୁପାଳ ଶିର ଛେଦିଥିଲି ।
ସେ ଚକ୍ରେ ଏ ନ ମରିବ ନିଶ୍ଚୟ ଜାଣିଲି ॥
ଯେଉଁ ଚକ୍ରେ ଛେଦିଲୁ ତୁ ଜୟଦ୍ରଥ ଶିର ।
ତହିଁ ଛେଦ ନ ପାରିବୁ ମସ୍ତକ ଏହାର ॥

ଏହାର ସମାନେ ବୀର ନାହିଁ ଜଗତରେ ।
ଅତ୍ୟନ୍ତ ଦୁର୍ଜ୍ଜୟ ବୀର ଅଛି ଏ ସଂସାରେ ॥
ହନୁକୁ ବୋଇଲେ ବୀରବର୍ମ୍ମା ରଥ ତୁହି ।
ପୁଚ୍ଛେ ବାନ୍ଧିଣ ପକାଅ ସିନ୍ଧୁ ମଧ୍ୟେ ନେଇ ॥
ହନୁମନ୍ତ ବୋଇଲା ପୂର୍ବରେ ଲଙ୍କାପୁର ।
ମହାବଳବନ୍ତ ଥିଲା ରାବଣ ଅସୁର ॥
କୁମ୍ଭକର୍ଣ୍ଣ ଇନ୍ଦ୍ରଜିତ ଦର୍ପିଷ୍ଠ ଅସୁରେ ।
ଜମ୍ବୁମାଳି ଧୁମ୍ରଜଙ୍ଘ ଆଦି ଯେତେ ବୀରେ ॥
ସେ ସର୍ବଙ୍କୁ ଆମ୍ଭେମାନେ କଲୁ ହେ ନିଧନ ।
ବଳବନ୍ତ ନୁହନ୍ତି ସେ ଏହାର ସମାନ ॥
ବୀରବର୍ମ୍ମା ସମ ବୀର ତ୍ରୈଲୋକ୍ୟରେ ନାହିଁ ।
ଏକା ହୋଇ ଏହି ଦେଖ ସର୍ବଙ୍କୁ ପୂରଇ ॥
ତାହା ଶୁଣି ହନୁକୁ ସେ ବୋଇଲେ ତୁ ଯାଅ
ବୀରବର୍ମ୍ମା ରଥ ନେଇ ଶୂନ୍ୟରେ ରଖାଅ ॥
ଶ୍ରୀକୃଷ୍ଣ ଆଜ୍ଞାରେ ହନୁମନ୍ତ ବେଗେ ଗଲା ।
ରଥ ତାର ଲାଙ୍ଗୁଳେ ବାନ୍ଧି ଶୂନ୍ୟେ ବୁଲିଗଲା ॥
ସେ ରଥ ଛାଡ଼ିଣ ବୀରବର୍ମ୍ମା ବେଗେ ଆସି ।
ନନ୍ଦିଘୋଷ ରଥ ଯାଇ ଧଇଲା ଆକ୍ରୋଶି ॥
କୃଷ୍ଣ ଅର୍ଜ୍ଜୁନ ସହିତେ ରଥ ଘେନିଗଲା ।
ଶୂନ୍ୟରେ ହନୁ ଥିଲା ତା ପାଶରେ ମିଳିଲା ॥
କୋପେ ତାର ମୁଖ ଚାହିଁ ବୀରବର୍ମ୍ମା ବୋଲେ
ଦେଖ ହନୁ ହରି ରଥ ଆଣିଲଇଁ ହେଲେ ॥
କୃଷ୍ଣାର୍ଜ୍ଜୁନ ଦୁହେଁ ଏ ରଥରେ ବସିଛନ୍ତି ।
ମୋର ତୁଚ୍ଛା ରଥ ଧରିଅଛୁ ତୁ ମାରୁତି ॥
ଆଜ ଏ ଦୁହିଙ୍କି ମୁହିଁ ନ ଦେବି ଛାଡ଼ିଣ ।
ଦୈବବଶୁ ମୋର ହସ୍ତେ ପଡ଼ିଛନ୍ତି ଜାଣ ॥
ଏହାକୁ ଘେନିଣ କ୍ଷୀର ସମୁଦ୍ରକୁ ଯିବି ।
ଶେଷ ପଲଙ୍କରେ ଲକ୍ଷ୍ମୀ ଆଗେ ସମର୍ପିବି ॥
ପାର୍ଥର ସଙ୍ଗତେ ହରି ଯୁଦ୍ଧରେ ରହିଲେ ।
ହରିଙ୍କ ବିଚ୍ଛେଦେ ଲକ୍ଷ୍ମୀ ବିରହଣୀ ହେଲେ ॥
ନିଜ ଭର୍ତ୍ତା ପାଇ ଲକ୍ଷ୍ମୀ ସୁଖେଣ ରହନ୍ତୁ ।
ମୋହଠାରେ ସର୍ବଦା ପ୍ରସନ୍ନ ହୋଇଥାନ୍ତୁ ॥
ଏ ମୋହର ବୀରପଣ ସଂସାରେ ଦେଖାଇ ।
ଲକ୍ଷ୍ମୀ ନାରାୟଣ ଭେଟି କରାଇବି ମୁହିଁ ॥
ପୂର୍ବେ ତୁ ବସିଲୁ ଯେଉଁ ଅଦ୍ଭୁତ ରଥରେ ।
ସେହି ହନୁ ଭୟୁ ସେ କରନ୍ତୁ ତୋହଠାରେ ॥

ତେଣୁ ଜନ୍ମକାଳୁ ବୀରପଣ ତୋ ଦଶିଲା ।
ସେ ଯୁଗରେ ତୋ ସମାନେ ବୀର ହେ ନ ଥିଲା
ଏବେ ଏ ଯୁଗରେ ତୋହଠାରୁ ବଡ଼ ମୂର୍ଖ ।
ଶୂନ୍ୟେ କୃଷ୍ଣ ଅର୍ଜୁନର ରଥ ଅଣିଲଇଁ ॥
ପ୍ରତ୍ୟକ୍ଷରେ ନରନାରାୟଣ ଅବତାର ।
ଏହାଙ୍କ ମହିମା ତୁ ତ ଜାଣୁ ହନୁବୀର ॥
ମୁହିଁ ଏହାଙ୍କୁ ଚିହ୍ନଇ ତ୍ରୈଲୋକ୍ୟ କାରଣ ।
ସୃଷ୍ଟି ସ୍ଥିତ ପ୍ରଳୟତି ଏହାଙ୍କ ଭିଆଣ ॥
ବ୍ରହ୍ମା ବିଷ୍ଣୁ ହର ତିନି ରୂପ ଏ ଏକତ୍ୱ ।
ସତ ରଜ ତମ ଗୁଣମାନଙ୍କ ସଂଯୁକ୍ତ ॥
ତାହା ଶୁଣି ହନୁମନ୍ତ ହସିଣ କହଇ ।
ଏହାଙ୍କ ମହିମା କିବା ଜାଣିବଇଁ ମୁହିଁ ॥
ତୋ ସମାନେ ଯେ ସୁବୁଦ୍ଧି ନାହିଁ ସଂସାରରେ
ଆପଣା ବଡ଼ାଇ ଆପେ କହୁଛୁ ତୁଣ୍ଡରେ ॥
ଏଡ଼େ ବଡ଼ ଲୋକ ହୋଇ ବିଚାର ନ କଲୁ ।
ନିଜ ବଡ଼ାଇ ନିଜର ତୁଣ୍ଡରେ କହିଲୁ ॥
ଆପଣାର ଯଶ ଆପେ ତୁଣ୍ଡରେ କହିଲେ ।
ସଂସାରେ ପ୍ରତିଷ୍ଠା ଯଶ ବୁଡ଼ଇ ହୋ ଭଲେ ॥
ଏହା ନ ବିଚାରି ତୁ କହିଲୁ ନିଜ ଯଶ ।
ସଂସାରେ ଲଭିବୁ କାହିଁ ଅତି ପଉରଷ ॥
ତାହା ଶୁଣି ହନୁକୁ ଯେ କୋପେଣ କହଇ ।
ତୁହି ଯେବେ ବୀର ରହ ମୋ ପ୍ରହାର ସହି ॥
କୃଷ୍ଣାର୍ଜୁନେ ନନ୍ଦଘୋଷ ଅଛଇ ଧରଣୀ ।
ତେବେହେଁ ତୋହର ସଙ୍ଗେ କରିବଇଁ ରଣ ॥
ଏମନ୍ତ କହିଣ କ୍ରୋଧେ ମୁଷ୍ଟି ପ୍ରହାରିଲା ।
ଦେଖି ହନୁମନ୍ତ ତହିଁ ହୃଦୟ ପାତିଲା ॥
ବଜ୍ର ସମାନେ ବାଜିଲା ତାର ହୃଦୟରେ ।
ହନୁ ମେରୁ ପ୍ରାୟେକ ରହିଲା ନିର୍ଭୟରେ ॥
ତାହା ଦେଖି ବୀରବର୍ମ୍ମା ମହାକୋପ କଲା ।
ଶ୍ରୀହରି ହନୁ ଅର୍ଜୁନ ତିନିଙ୍କି ଧରିଲା ॥
ଆକ୍ରୋଷିଣ ଧରିଲା ସେ ରଥ ସହିତରେ ।
କୃଷ୍ଣ ଅର୍ଜୁନ ହନୁକୁ ଗଡ଼ିଲା ଭୂମିରେ ॥
ମହା ବୀରବର ସେହି ପବନ ନନ୍ଦନ ।
କ୍ରୋଧଭରେ ବଜ୍ରବିଧା ମାଇଲା ତକ୍ଷଣ ॥
ସେ ଆଘାତେ ବୀରବର୍ମ୍ମା ମୋହେଣ ପଡ଼ିଲା ।
ଚେତ ଉଠି କୃଷ୍ଣାର୍ଜୁନ ଧରିବାକୁ ଗଲା ॥

କୋପେ କୃଷ୍ଣ ପାଦ ତାକୁ କଲେନ୍ତେ ପ୍ରହାର
ମୂର୍ଚ୍ଛାଗତ ଯାଇଣ ସେ ପଡ଼ିଲା ଭୂମିର ॥
ଚେତ ଉଠି ବୀରବର୍ମ୍ମା ବୋଲେ କୃଷ୍ଣ ଶୁଣ ।
ଦେଖ ତୁମ୍ଭ ଦୁହିଙ୍କି ଧରିଲି ଏକା ପୁଣ ॥
ତୁମ୍ଭେ ତିନିଜଣ ମୋତେ ମାରି ନ ପାରିଲ ।
ଯେଣୁ ପାଦ ମାରି ମୋର ପାତକ ନାଶିଲ ॥
ବର ପାଇ ଚିରକାଳ ଥିଲି ମୁଁ ବିଚାରି ।
ଏତେକାଳେ ପ୍ରସନ୍ନ ହୋଇଲ ମୋତେ ହରି
ଅର୍ଜୁନର ବେନି ଅଶ୍ୱ ବଳେ ବାନ୍ଧିନେଲି ।
ସମସ୍ତ ବୀରମାନଙ୍କୁ ସଂଗ୍ରାମେ ଜିଣିଲି ॥
ମୋତେ ଅପମୃତ୍ୟୁ ଥିଲା ହୋଇଲା ସେ ଦୂର ।
ଯେଣୁ ତୁମ୍ଭ ପଦ୍ମପାଦ ବାଜିଲା ହୃଦର ॥
ଏମନ୍ତ ବଚନ ତାର ଶ୍ରୀହରି ଶୁଣିଲେ ।
ଅର୍ଜୁନ ମୁଖକୁ ଚାହିଁ ବଚନ ବୋଇଲେ ॥
ଦେଖ ବୀରବର୍ମ୍ମା ସଂସାରରେ ମହାବୀର ।
ଏହାକୁ ଜିଣିନ୍ତା କେହି ନାହିଁ ଜଗତର ॥
ଶତେ ବରଷରେ ତୁମ୍ଭେ ଆମ୍ଭେ ଦୁଇଜଣ ।
ଏ ରାଜାକୁ ଯୁଦ୍ଧେ ନ ପାରିବା ହେ ଜିଣିଣ ॥
ଭକ୍ତି ଧର୍ମବଳେ ରାଜା ବଳବନ୍ତ ହୋଇ ।
ଇନ୍ଦ୍ର ଦେବତାହିଁ ଯାକୁ ଜିଣି ନ ପାରଇ ॥
ପଦ୍ମନ ସହିତେ ମହାବୀର ଯେ ଜିଣିଲା ।
ତୁମ୍ଭ ଆମ୍ଭ ରଥ ଧରି ଶୂନ୍ୟେ ଉଡ଼ାଇଲା ॥
ଶ୍ରୀକୃଷ୍ଣଙ୍କ ବାଣୀ ଶୁଣି ବୋଲନ୍ତି ଅର୍ଜୁନ ।
ତୁମ୍ଭେ ଯା ସହାୟ ସେହି ମହାବଳୀ ଜାଣ ॥
ମୋହର ହସ୍ତରେ ସେ ନ ହେବ ପରାଜୟ ।
ଏକଥା ପ୍ରମାଣ ହରି କହିଲି ନିଶ୍ଚୟ ॥
ତିନିପୁରେ ଏହା ସମାନରେ ବୀର ନାହିଁ ।
ଧର୍ମବଳେ ବଳବାନ ଏ ରାଜା ଅଟଇ ॥
ମୋରଯୁଦ୍ଧେ ନ ହେବ ସେ କେବେ ପରାଜିତ
ଏକଥା ମୋର ପ୍ରମାଣ ଅହେ ନନ୍ଦସୁତ ॥
ତାହା ଶୁଣି ବୀରବର୍ମ୍ମା ପାର୍ଥକୁ କହଇ ।
ସଂସାର ଜିଣିଣ ତୋର ପୌରୁଷ ଅଛଇ ॥
ଶ୍ରୀହରିଙ୍କୁ ବୋଇଲେ ଯେ ତୁମ୍ଭଙ୍କୁ ତୋଷଇ ।
ତାକୁ ପରାଜୟ କରି ନ ପାରଇ କେହି ।
ତୁମ୍ଭ ଏ ବଚନେ ବୀରପଣ ମୋ ବଢ଼ିଲା ।
ଯୁଗ ଯୁଗାନ୍ତରେ ଯଶ କାହିଁହିଁ ରହିଲା ॥

ଏତେ କହି ବୀରବର୍ମା ଧନୁ ତ୍ୟାଗକରି ।
ସାଷ୍ଟାଙ୍ଗେ ପଡ଼ିଲା ଶ୍ରୀହରିଙ୍କ ପାଦ ଧରି ॥
ହରି ତାଙ୍କୁ ଶ୍ରୀଭୁଜେ ଧରଣି ଟେକିଲେ ।
ହୃଦରେ ଲଗାଇ ଗାଢ଼େ ଆଲିଙ୍ଗନ କଲେ ॥
ଯେସନେ ହୃଦରେ ପିତା ପୁତ୍ରକୁ ଯାକଇ ।
ସେହିରୂପେ ରାଜାକୁ କଲେକ ଭାବଗ୍ରାହୀ ॥
ବୀରବର୍ମା ଅର୍ଜ୍ଜୁନଙ୍କୁ କଲା କୋଳାଗତ ।
ବେନିଯାଗ ଅଶ୍ୱ ଆଣି ଦେଲାକ ତ୍ୱରିତ ॥
ତାହାର ଭଣ୍ଡାରେ ଯେତେ ଧନରତ୍ନ ଥିଲା ।
ସବୁ ଆଣି ପାର୍ଥଙ୍କୁ ବେଭାର ସମର୍ପିଲା ॥
ତାହାପୁରେ ସାତଦିନ ଶ୍ରୀହରି ରହିଲେ ।
ସେ ଦେଶର ନରନାରୀ ଦେଖି ମୁକ୍ତହେଲେ
ଆରଦିନ ସୈନ୍ୟ ଘେନି ହୋଇଲେ ବାହାର
ଆଗରେ ଗଲେକ ଘେନି ଯାଗ ଅଶ୍ୱବର ॥
ଭାସ୍କର ନାମରେ ନଦୀ ନଗ୍ର ଉତ୍ତରରେ ।
ଲହରୀ ସିନ୍ଧୁ ସମାନେ ମାରେ ଯେ ତହିଁରେ ॥
ବୀରବର୍ମା ମୁଖ ଚାହିଁ ବୋଇଲେ ବଚନ ।
ସୈନ୍ୟପାରି କରି ଦିଅ ଆଣି ନାବମାନ ॥
ତାହା ଶୁଣି ନୃପତି ଯେ ବେଗ ହୋଇଗଲା ।
ଆପଣାର ନାବମାନ ଆଣି ପାରିକଲା ॥
ଆପଣେ ବାହାର ହେଲା ସଇନ୍ୟ ଘେନିଣ ।
କୃଷ୍ଣ ଆଦି ସବୁ ଗଲେ ଉତ୍ତର ଦିଗେଣ ॥
ପୁଣ୍ୟବନ୍ତ ରାଜା ସେହି ହରିଙ୍କି ତୋଷିଲା ।
ଯମରାଜା ପାଇଁ ଅପମୃତ୍ୟୁରୁ ବଞ୍ଚିଲା ॥
ହରିଭକ୍ତ ରସଲୀଳା ବୋଲି ଏହୁ ଗୀତ ।
ଯେ ଶୁଣଇ ଶୁଣାଇ ସେ ହୁଅଇ ମୁକତ ॥
ଭକ୍ତ ଉଦ୍ଧାରଣ ହରି ଶ୍ରୀପଦ୍ମ ଚରଣ ।
ଉପାଧ୍ୟାୟ ମହାଦେବ ପଶିଲା ଶରଣ ॥
ଧୂଲୀଶ୍ୱର ଗ୍ରାମରେ ଅଟଇ ଘର ମୋର ।
ଦୋଷାଦୋଷ ଥିଲେ ସାଧୁସନ୍ଥ କ୍ଷମାକର ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତ
ରସଲୀଳା ସାର କଥା ପ୍ରବନ୍ଧେ ନାମ
ଏକବିଂଶୋଽଧ୍ୟାୟଃ ।

—o—

## ଦ୍ୱାତ୍ରିଂଶ ଅଧ୍ୟାୟ

ଯଦି କୃଷ୍ଣ ପଦେ ଚିନ୍ତା ଭକ୍ତସୁପଦପଙ୍କଜେ ।
ବିଷମେ ଦୁର୍ଗମେ ବାପି କା ଚିନ୍ତାମରଣେରଣେ ॥

### ଚନ୍ଦ୍ରହାସ୍ୟଙ୍କ ବିଷୟ

ଚଣ୍ଡାଳଗଣ ଚନ୍ଦ୍ରହାସ୍ୟଙ୍କୁ ବନରେ
ଛାଡ଼ିବା, କୁଳିନ୍ଦ କର୍ତ୍ତୃକ ଚନ୍ଦ୍ରହାସ୍ୟ
ଗୃହେ ଗମନ ଓ ଶିକ୍ଷା ।

ଏଥୁଅନ୍ତେ ଜନ୍ମେଜୟ ଯୋଡ଼ି ବେନିକର
ଜୈମିନିଙ୍କ ଚରଣରେ ପଡ଼ି ବାରବାର ॥
ନାନାମତେ ସ୍ତୁତି କରି କହିଲେ ବଚନ ।
ଅନୁଗ୍ରହ କରି କଲ ମୋ ପାପ ମୋଚନ ॥
ଏଥୁଅନ୍ତେ ମୋର ପିତାମହ ପାର୍ଥବୀର ।
କିପରି ଯଜ୍ଞ ଅଶ୍ୱକୁ ନେଲେ କେଉଁପୁର ॥
ସେ ସ୍ଥାନରେ କେଉଁପରି ଘଟଣା ହୋଇଲା ।
ଏହା ମୋତେ ବିସ୍ତାରିଣ କୁହ ଋଷିବଳା ॥
ରାମଙ୍କ ବଚନ ଶୁଣି ଜୈମିନି କହନ୍ତି ।
ମନଦେଇ ଶୁଣ ତୁମ୍ଭେ ଉତ୍ତରାର ନାତି ॥
ସାରସ୍ୱତ ପୁର ଗଲେ ବେନି ଅଶ୍ୱବର ।
ପବନ ଗତିରେ ସେହି ଉତ୍ତର ଦିଗର ॥
ଚନ୍ଦ୍ରହାସ୍ୟ ପୁରେ ଅଶ୍ୱ ଯାଇ ପ୍ରବେଶିଲେ ।
ତାହାପରେ ପାର୍ଥବୀର ସୈନ୍ୟମାନେ ଗଲେ ॥
ବଭ୍ରୁବାହ ବୃଷକେତୁ ପ୍ରଦ୍ୟୁମ୍ନ ସହିତେ ।
ସୈନ୍ୟ ଗହଣେ ମିଳିଲେ ଅଶ୍ୱର ପଶ୍ଚାତେ ॥
ହଂସଧ୍ୱଜ ନୀଳଧ୍ୱଜ ଶିଖୀଧ୍ୱଜ ବୀର ।
ଶ୍ରୀକୃଷ୍ଣ ଅର୍ଜ୍ଜୁନ ସହ ମିଳିଲେ ସକଳ ।
ଅକସ୍ମାତେ ଅଶ୍ୱ ଦୁଇ ନ ଦେଖି ନୟନେ ।
ଅତ୍ୟନ୍ତ ବିଷାଦ ହେଲେ ସମସ୍ତେ ସେ ସ୍ଥାନେ
ପରସ୍ପର ବିଚାରନ୍ତି ଅଶ୍ୱ କେଣେ ଗଲା ।
କିଏ ଜୀବନକୁ ଯମପୁରରେ ଥୋଇଲା ॥
ପାତାଳେ କି ଗଲା ଅଶ୍ୱ ଅନନ୍ତଙ୍କ ପୁର ।
କିବା ସ୍ୱର୍ଗଭୁବନକୁ ଗଲା ଅଶ୍ୱବର ॥
ଏତେବୋଲିଣ ସମସ୍ତେ ଆକାଶେ ଚାହିଁଲେ ।
ଦେବର୍ଷି ନାରଦଙ୍କୁ ସେ ଆସିବା ଦେଖିଲେ ॥

ବ୍ରହ୍ମବେତ୍ତା ବ୍ରହ୍ମଋଷି ସତ୍ୟବାଦୀ ମୁନି ।
ବ୍ରହ୍ମାଙ୍କର ପୁତ୍ର ସେହି ଭର୍ଗୀ ଶିରୋମଣି ॥
ଦେଖିଣ ତାହାଙ୍କୁ ସର୍ବେ ନମସ୍କାର କଲେ ।
ନାରଦ ଶ୍ରୀକୃଷ୍ଣଙ୍କର ଚରଣ ବନ୍ଦିଲେ ॥
ଏଥୁ ଅନ୍ତେ ଧନଞ୍ଜୟ ଦୁଇ କର ଯୋଡ଼ି ।
ବିନୟେ ପୃଚ୍ଛନ୍ତି ସେହି ମୁନି ପାଦେ ପଡ଼ି ॥
କୁହ ମହାମୁନି ମୋତେ ଅନୁଗ୍ରହ କରି ।
ଯଜ୍ଞ ଅଶ୍ୱ ଗଲା ମୋର କେବଣ ନଗରୀ ॥
ନାରଦ ବୋଲନ୍ତି ଶୁଣ ଯୁଧିଷ୍ଠିର ଭାଇ ।
କୌନ୍ତୁଳକ ପୁରେ ଅଶ୍ୱ ଯାଇଣ ଅଛଇ ॥
ପରମ ଧାର୍ମିକ ରାଜା ଚନ୍ଦ୍ରହାସ୍ୟ ନାମ ।
ସେ ଦେଶରେ ରାଜପଣ କରେ ହେ ଅର୍ଜ୍ଜୁନ
ଚନ୍ଦ୍ରହାସ୍ୟ କେରଳ ଦେଶର ରାଜା ସୁତ ।
ପିତା ମରନ୍ତେ ସେହି ଯେ ହୋଇଲା ଅନାସ୍ତ
ସେ ଦେଶର ଅନ୍ୟ ନାମ କୁନ୍ତଳ ଅଟଇ ।
ଚନ୍ଦ୍ରହାସେ ରାଜାକଲେ ସେ ଦେଶକୁ ନେଇ
ମହାବୀରବର ଚନ୍ଦ୍ରହାସ୍ୟ ଯେ ଅଟଇ ।
ତିନିପୁରେ ତାହାର ସମାନ ବୀର ନାହିଁ ॥
ଯେତେ ଯେତେ ବୀରମାନେ ଅଛନ୍ତି ତୁମ୍ଭର
ଶତାଂଶେ ନୋହିବେ ସମ ଚନ୍ଦ୍ରହାସ୍ୟଙ୍କର ॥
ଶୁଣିଣ ଋଷିଙ୍କ ବାଣୀ ବୋଲନ୍ତି ଅର୍ଜ୍ଜୁନ ।
ଚନ୍ଦ୍ରହାସ୍ୟର ଚରିତ କୁହ ତପୋଧନ ॥
ନାରଦ ବୋଲନ୍ତି ଅଶ୍ୱ ନିମନ୍ତେ ଅର୍ଜ୍ଜୁନ ।
ଚଞ୍ଚଳ ହୋଇଣ ଅଛି ତୁମ୍ଭର ତ ମନ ॥
ହସ୍ତିନାରେ ଯୁଧିଷ୍ଠିର ଅତି ଶଙ୍କାକୁଳ ।
ସମୟେ କହିବି ମୁହିଁ ସେ ସର୍ବ ଖବର ॥
ଅର୍ଜ୍ଜୁନ କହିଲେ ମୁନି ସତ ଉପଦେଶ ।
ସମସ୍ତଙ୍କୁ ଅପେକ୍ଷା ନ କରଇ ବହୁତ ॥
ଯା ହେଉ ବିସ୍ତାର କର ସେ ସବୁ ବୃତ୍ତାନ୍ତ ।
କହି ମୋ ସଂଶୟ ଫେଡ଼ ଆହେ ତପୋବନ୍ତ
ନାରଦ ବୋଇଲେ ଶୁଣ କୁନ୍ତୀ ଦେବୀ ଶିଷ୍ୟ
ଚନ୍ଦ୍ରହାସ୍ୟଙ୍କ ଚରିତ ସୁମଧୁର ରସ ॥
ସୁଧର୍ମି ବୋଲିଣ କେରଳର ନରବର ।
ଶୁଭ ଯୋଗେ ଜନ୍ମହେଲା ତାହାଙ୍କ କୁମର ॥
କୁମର ଜନ୍ମ ହେବାର କିଛି ଦିନ ପରେ ।
ଶତ୍ରୁମାନେ ଆକ୍ରମଣ କଲେ ସେ ରାଜାରେ ॥
ଯୁଦ୍ଧେ କେରଳ ରାଜନ ପରାସ୍ତ ହୋଇଲେ ।
ତାଙ୍କ ମରନ୍ତେ ତାହାଙ୍କ ସ୍ତିରି ଦଗ୍ଧହେଲେ ॥
ରାଜ୍ୟର ବିପଦ ଦେଖି ରାଜାଙ୍କର ଧାଈ ।
ଚନ୍ଦ୍ରହାସ୍ୟଙ୍କୁ ନେଇଣ ଗଲାକ ପଳାଇ ॥
କୁନ୍ତଳ ରାଜ୍ୟରେ ଯାଇଁ ପ୍ରବେଶ ହୋଇଲା ।
ରାଜାଙ୍କୁ ସବୁ ଘଟଣା ବୁଝାଇ କହିଲା ॥
ଶୁଣି କୌନ୍ତଳ ରାଜନ ଏକ ପୁରେ ନେଇ ।
ଧାତ୍ରୀସହ ରଖାଇଲେ କୁମରଙ୍କୁ ତହିଁ ॥
ସେହି ଦାସୀ ଅତି କଷ୍ଟେ ଯାହା ଉପାର୍ଜ୍ଜନ ।
କରେ ତହିଁରେ ବଞ୍ଚାଏ ବାଳକ ପରାଣ ॥
ବୃଦ୍ଧାବସ୍ଥା ହେତୁ ଦାସୀ ଜୀବନ ତେଜିଲା ।
ବାଳକ ଏକାକୀ ଘରେ ଅନାଥ ହୋଇଲା ॥
ଭଗବାନଙ୍କ କୃପାରେ ନରନାରୀମାନେ ।
ଖାଦ୍ୟ ଦେଇଣ ପାଳନ୍ତି ଶିଶୁକୁ ଯତନେ ॥
ଅତ୍ୟନ୍ତ ସୁନ୍ଦର ରୂପ ଅଟଇ ତାହାର ।
ଛଅ ଆଙ୍ଗୁଠି ଅଛଇ ତା ବାମ ପାଦର ॥
ଏହିପରି ପାଞ୍ଚବର୍ଷ ସେ ବାଳକ ହେଲା ।
ନଗ୍ରେ ବୁଲି ଭିକ୍ଷାକରି ଜୀବନ ପୋଷିଲା ॥
ବାଳକ ସୁନ୍ଦର ରୂପ ଦେଖି ନାରୀମାନେ ।
ସାଧ ମତେ ଖାଦ୍ୟ ଆଦି ଦିଅନ୍ତି ବହନେ ॥
ହଳଦି ତଇଲ ତାର ଅଙ୍ଗରେ ଲେପନ୍ତି ।
ଏହିପରି ସେ ବାଳକ ଚଳେ ନିତି ପ୍ରତି ॥
ଭଗବାନ ନାମ ଗୁଣ ସଦା ଗାଉଥାଇ ।
ତାକୁ ଦୟାକଲେ ପ୍ରଭୁ କମଳାର ସାଇଁ ॥
ନିଜେ ତାକୁ ମହାପ୍ରଭୁ ଶାଳଗ୍ରାମ ଦେଲେ ।
ସେ ଦିନୁ ସେ ପୂଜା ତାକୁ ଆନନ୍ଦରେ କଲେ
ହାତରେ ଧରଇ କେବେ କଳରେ ଯାକଇ ।
ପଚାରିଲେ ପଥର ବୋଲିଣ ସେ କହଇ ॥
ଏକଦିନେ ମନ୍ତ୍ରୀବର ଭୋଜି ଦେଉଥିଲେ ।
ବ୍ରାହ୍ମଣ ସହିତ ଶିଶୁ ସେଠାରେ ମିଳିଲେ ॥
ଦୁଷ୍ଟବୁଦ୍ଧି ସମସ୍ତଙ୍କୁ କଲା ସମାଦର ।
ଶିଶୁର ଉପରେ ତାର ପଡିଲା ନଜର ॥
ଦେଖିଲା ଅପୂର୍ବ ରୂପ ସୁଲକ୍ଷଣବନ୍ତ ।
ଅଷ୍ଟାଦଶ ଚିହ୍ନ ଦେହେ ଅଛି ବିରାଜିତ ॥
ବ୍ରାହ୍ମଣଙ୍କୁ ପୁଛିଣ ବୋଲଇ ମନ୍ତ୍ରୀବର ।
ଏ ବାଳକ କାହାପୁତ୍ର କହ ମୋ ଆଗର ॥

ବ୍ରାହ୍ମଣ ବୋଇଲେ ଅମ୍ଭେ କିଛିହିଁ ନ ଜାଣୁ
ଅଷ୍ଟାଦଶ ଚିହ୍ନ ଦେଖାଯାଏ ଯାର ତନୁ ॥
ନିଶ୍ଚେ ଦିନେ ନରବର ହେବ ଏ ନନ୍ଦନ ।
ଏସନ କହିଣ ମୁନି କରିଲେ ପ୍ରସ୍ଥାନ ॥
ନିଜ ନାରୀ ପାଶେ ତହୁଁ ଗଲା ମନ୍ତ୍ରୀବର ।
କହିଲେ ସଜନୀ ଶୁଣ ବଚନ ମୋହର ॥
ଆମ୍ଭ ରାଜା ଅପୁତ୍ରିକ ପୁତ୍ର ତାର ନାହିଁ ।
ଭାବିଥିଲି ମୋ ମଦନ ହେବ ନୃପସାଇଁ ॥
କାହୁଁ ଏକ ବାଳକ ଯେ ଏଠାକୁ ଆସିଛି ।
ରାଜପୁତ୍ର ପ୍ରାୟ ତାର ଶରୀର ଦିଶୁଛି ॥
ମୁନି ଋଷିଏ କହିଲେ ମୋହର ଆଗର ।
ଅଷ୍ଟାଦଶ ଚିହ୍ନ ଅଛି ହେବ ନୃପବର ॥
ରାଜନ ଜାଣିଲେ ନିଶ୍ଚେ ନେବ ଏ କୁମର ।
ଅଧର୍ମ ହେଉ ପଛକେ ପ୍ରାଣ ନେବି ତାର ॥
ଚଣ୍ଡାଳ ଜାତିମାନଙ୍କୁ ଡକାଇ ଆଣିଣ ।
ବୋଇଲେ ସେ ଦୁଷ୍ଟ ବୁଦ୍ଧି ଗୋପନ କରିଣ
ଏ ବାଳକକୁ ନେଇଣ ବନସ୍ତ ମଧ୍ୟରେ ।
ବେଗେ ମାରି ରକ୍ତ ଆଣ ମୋହର ପାଶରେ ॥
ତୁମ୍ଭମାନଙ୍କୁ ବହୁତ ପୁରସ୍କାର ଦେବି ।
ବିପଦ ସମୟେ ମୁହିଁ ସାହା ହେଉଥିବି ॥
ଗୋରୁ ଗାଈ ଗଧ ଘୋଡ଼ା ମହିଷ ଆବର ।
ଯାହା ମାଗିବ ତାହା ମୁଁ ଦେବି ପୁରସ୍କାର ॥
ଆଜ୍ଞାମାତ୍ରେ ଚଣ୍ଡାଳେ ପିଲାକୁ ଘେନିଗଲେ ।
ନିବିଡ଼ ବନ ମଧ୍ୟରେ ଯାଇ ପହଞ୍ଚିଲେ ॥
ସୂର୍ଯ୍ୟତେଜ ପଶି ନ ପାରଇ ସେ ବନରେ ।
ଖଡ୍ଗ ଧଇଲେ ଶିଶୁ ମାରିବା ଆଶାରେ ॥
ଦେଖିଣ ଏସନ ରୀତି ଚନ୍ଦ୍ରହାସ୍ୟ ମନେ ।
ଶାଳଗ୍ରାମକୁ ସେ ଧରି ସ୍ମରେ ଜନାର୍ଦ୍ଦନେ ॥
ହେ ପ୍ରଭୁ କମଳାପତି ଗଜ ଉଦ୍ଧାରଣ ।
ମୃଗୁର୍ଣୀକୁ ବିପଦରୁ କରିଛ ତାରଣ ॥
ଅହେ ଦୟାମୟ ମୁହିଁ ମରି ଯାଉଅଛି ।
ରକ୍ଷାକର ରକ୍ଷାକର ଅହେ ନନ୍ଦ ବତ୍ସ ॥
ଦୁଷ୍ଟବୁଦ୍ଧି ମନ୍ତ୍ରୀ ବୋଲେ ଏ ଚଣ୍ଡାଳଗଣ ।
ବିନାଦୋଷେ ମୋତେ ପ୍ରଭୁ କରିବେ ନିଧନ
ରକ୍ଷାକର ଦୀନବନ୍ଧୁ ଦୁଃଖୀର ଶରଣ ।
ତୁମ୍ଭେ ନ ରଖିଲେ ମୁହିଁ ହୋଇବି ଅନାଥ ॥

ସ୍ତବେ ତୁଷ୍ଟ ହୋଇ ହରି ଚଣ୍ଡାଳଗଣଙ୍କ ।
ହୃଦୟେ ବିରାଜ କଲେ କମଳାନାୟକ ॥
ତହୁଁ ଚଣ୍ଡାଳେ ବୋଲନ୍ତି ଏ ପିଲା ସୁନ୍ଦର ।
ଅଷ୍ଟାଦଶ ଚିହ୍ନ ଅଙ୍ଗେ ଅଛଇ ଏହାର ॥
ବିଷ୍ଣୁ ପ୍ରାୟେ ତେଜ ଦେଖାଯାଏ ତ ଏହାର
ନିଶ୍ଚୟ ଏ ରାଜ୍ୟର ହୋଇବ ନରବର ॥
କେଉଁ ପାପୁଁ ହୀନକୁଳେ ଜନମ ଆମ୍ଭର ।
ଶିଶୁହତ୍ୟା କଲେ ପଡ଼ିବୁ ନରକର ॥
ଏସନ ଭାବିଣ ତାର କନିଷ୍ଠ ପାଦର ।
ଅଧିକା ଆଙ୍ଗୁଠି ଗୋଟି କାଟିଲେ ସତ୍ୱର ॥
ତାହା ନେଇକରି ସର୍ବେ ମନ୍ତ୍ରୀପାଶେ ଦେଲେ
ବହୁ ପୁରସ୍କାର ପାଇ ଗୃହେ ଫେରିଗଲେ ॥
ଏଣେ ଅରଣ୍ୟେ ବାଳକ କରଇ ରୋଦନ ।
ଶୁଣିଣ ଆସିଲେ ତାହା ସର୍ବ ଜୀବଗଣ ॥
ଭଗବାନଙ୍କ ଦୟାରୁ ସର୍ବେ ରୁଣ୍ଡହେଲେ ।
ମୃଗମାନେ ପାଦ ଚାଟି ଘାଅ ଶୁଖାଇଲେ ॥
ସର୍ପମାନେ ଫଣାପରେ ଶୁଆନ୍ତି ଯତନେ ।
ଅନ୍ୟ ଜୀବ ଫଳମୂଳ ଦିଅନ୍ତି ସେ ସ୍ଥାନେ ॥
ତାହା ଖାଇଣ ବାଳକ ବଞ୍ଚିଣ ରହିଲା ।
ଏକଦିନେ କୁଳିନ୍ଦ ଶବର ବନେ ଗଲା ॥
ବନର ରାଜନ ସେହୁ ଶବର ଅଟଇ ।
ପରମ ଧାର୍ମିକ ବିଷ୍ଣୁଭକ୍ତ ଅଟେ ସେହି ॥
ରାଜା ଆଜ୍ଞାରେ ସେ ବନେ ଅଟେ ନରବର ।
ଶିକାରକୁ ଯାଇ ମିଳେ ବାଳକ ପାଶର ॥
ଦେଖିଲା ସର୍ପ ଫଣାରେ କରିଛି ଶୟନ ।
ବନ ଜୀବମାନେ ବସି ଅଛନ୍ତି ପାଶେଣ ॥
ଦେଖିଣ ଶବର ରୂପ ବନ ଜୀବମାନେ
ଭୟରେ ପଳାଇଗଲେ ସେହୁ ଏଣେ ତେଣେ
ରାମ କୃଷ୍ଣ ନାମ ଧରି ବାଳକ ରୋଦଇ ।
ଦେଖି କୁଳିନ୍ଦ ଶବର ତାହା ପାଶେ ଯାଇ ॥
କୋଳକେ ଧରି ତାହାକୁ ବୋଇଲା ବଚନ ।
କପାଇଁ କାନ୍ଦୁଣ ଅଛୁ କାହାର ନନ୍ଦନ ॥
ଶରଦ ଚନ୍ଦ୍ରମା ପ୍ରାୟେ ତୋ ମୁଖ ଦିଶଇ ।
ତୁହିଁ ଦେଖି ମାତ୍ରେ ମନ ଆନନ୍ଦ ହୁଅଇ ॥
ଜାଣିଲି ତୋହର ପିତା ଅଟନ୍ତି ଶ୍ରୀହରି ।
ନୋହିଲେ କି ଏ ବନରେ ଥାନ୍ତୁ ଦେହଧରି

ସଙ୍ଗୀ ଲୋକମାନଙ୍କୁ ସେ ଡାକିଣ କହିଲା ।
ହରି କୃପାବଳେ ମୋରେ ପୁତ୍ର ପ୍ରାପ୍ତି ହେଲା
ପୁତ୍ର ମୋର ନ ଥିବାରୁ ପ୍ରଭୁ କୃପାକଲେ ।
ବିଷ୍ଣୁ ଭକ୍ତ ପୁତ୍ର ମୋ କୋଳରେ ଆଣିଦେଲେ
ଏହା ଯୋଗୁ ଯଶ ମୋର ବଢ଼ିବ ବହୁତ ।
ଏସନ କହି ଘୋଡ଼ାରେ ବସାଇ ତୁରିତ ॥
ଚନ୍ଦ୍ରହାସ୍ୟଙ୍କୁ ନେଇଣ ପୁରେ ପ୍ରବେଶିଲା ।
ପରମ ବୈଷ୍ଣବ ପୁତ୍ର ପାଇଲି ବୋଇଲା ॥
ବଡ଼ରାଣୀଙ୍କର କୋଳେ ଦେଇଣ କୁମର ।
ଅତ୍ୟନ୍ତ ଆନନ୍ଦ ମନ ହୋଇଲା ଶବର ॥
ସକଳ ଚରିତ ସେ କହିଲା ରାଣୀପାଶ ।
ବୋଇଲା କୁମର ଗୋଟି ଦେଲେ ପୀତବାସ
ଏସନ ଶୁଣିଣ ରାଣୀ ଆନନ୍ଦ ହୋଇଲା ।
କୋଳେ ଧରି ପୁତ୍ର କଷ୍ଟ ପାଶୋରିଣ ଦେଲା
ବ୍ରାହ୍ମଣ ଋଷିଏ ଆସି ପୁତ୍ରଙ୍କୁ ଦେଖିଲେ ।
କଲ୍ୟାଣ କରିଣ ଚନ୍ଦ୍ରହାସ୍ୟ ନାମ ଦେଲେ ॥
ଜ୍ୟୋତିଷ ଗଣକୁ ରାଇ ଗଣନା କରିଲା ।
ରାଜା ଯୋଗ୍ୟ ଅଟେ ଏହି ବୋଲିଣ ଜାଣିଲା
ପରମ ବୈଷ୍ଣବ ବିଷ୍ଣୁ ଭକ୍ତ ଏ ହୋଇବ ।
ରାଜା ହୋଇ ପୃଥିବୀରେ ଯଶ ଏ ରଖିବ ॥
ଏହିପରି ଚନ୍ଦ୍ରହାସ୍ୟ ରହିଲା ତା ଘରେ ।
ବିଦ୍ୟା ଶିକ୍ଷା କଲା ସେ ସପ୍ତମ ବରଷରେ ॥
ଦିନରାତି ହରିପାଦେ ଚିତ୍ତ ଦେଇଥାଇ ।
ଶ୍ରୀରାମ ଗୋବିନ୍ଦ ସଦା ତୁଣ୍ଡରେ ଜପଇ ॥
ଅଷ୍ଟମ ବରଷ ଯହୁଁ ସମ୍ପୂର୍ଣ୍ଣ ହୋଇଲା ।
ମେଖଳ ବନ୍ଧନ କଲେ ବେଦ ସେ ପଢ଼ିଲା ॥
ବେଦକୁ ପଢ଼ି ଜାଣିଲା ଶ୍ରୀହରି ଶରୀର ।
ବେଦ ଭିନ୍ନୁ ଶାସ୍ତ୍ର ନାହିଁ ସଂସାର ମଧ୍ୟର ॥
କୁଳିନ୍ଦ ମେଧାବୀ ରାଣୀ ଆନନ୍ଦେ କୋଳରେ
ଧରିଣ କୁମରଙ୍କୁ ବହୁତ ସୁଖୀ ହେଲେ ॥
ତହୁଁ ଚନ୍ଦ୍ରହାସ୍ୟ ଧନୁର୍ବିଦ୍ୟା ଶିକ୍ଷାକଲା ।
ଭକ୍ତି ଧନୁ ସଙ୍ଗେ ନିଜ ହୃଦ ଗୁଣକଲା ॥
ଉଚ୍ଚାଟ ମୋହନ ବଶୀକରଣ ସ୍ତମ୍ଭନ ।
ସମସ୍ତ ଶିଖିଣ ମାତ୍ର କରେ ହରିନାମ ॥
ଅଶ୍ୱ ଚଢ଼ି ଦିଗ ବିଜେ କରି ବାହାରିଲା ।
ଭକ୍ତିବଳେ ଦେଶେ ସବୁ ରାଜାଙ୍କୁ ଜିଣିଲା ॥

ଅତି ବଳବନ୍ତ ରାଜା ସମରେ ନିପୁଣ
ହରିଭକ୍ତି ବିନା ସେହି ନ ଜାଣଇ ଆନ ॥
ଶୁଣି ଅର୍ଜୁନ ବୋଇଲେ ହେ ନାରଦ ଯତି ।
କିପରି ଚନ୍ଦ୍ରହାସ୍ୟଙ୍କୁ ଜିଣିବା ଏ ଭ୍ରାନ୍ତି ॥
ଧ୍ରୁବ ଧ୍ରୁବ ମଣ୍ଡଳରେ ବଳି ପାତାଳରେ ।
ଲଙ୍କାପୁରେ ବିଭୀଷଣ ହନୁ ମୋ ରଥରେ ॥
ବ୍ରହ୍ମଲୋକେ ବ୍ରହ୍ମା ପୁଣି ତାଣ ତପୀମଣି ।
ଏମାନେ ଶ୍ରୀହରିଙ୍କର ଶ୍ରେଷ୍ଠ ଭକ୍ତ ଜାଣି ॥
ଚନ୍ଦ୍ରହାସ୍ୟ ଏମାନଙ୍କଠାରୁ ବଳି ଜାଣ ।
ତାହାର ଦିଗ ବିଜୟ କହନ୍ତୁ ଆପଣ ॥
ଚନ୍ଦ୍ରହାସ୍ୟ ବୀର ପିତାମାତାଙ୍କୁ କହିଣ ।
ଦିଗବିଜୟ ପାଇଁ ସେ ବାହାରିଲା ପୁଣ ॥
କୁଳିନ୍ଦ ବୋଇଲା ଛନ୍ତି ଦୁର୍ଜୟ ରାଜନ ।
କିପରି ତାହାଙ୍କ ସଙ୍ଗେ କରିବୁ ତୁ ରଣ ॥
ଚନ୍ଦ୍ରହାସ୍ୟ ବୋଲେ ପିତା ମାତା କଲ୍ୟାଣରେ
ଶ୍ରୀହରିଙ୍କ କୃପାରେ ମୁଁ ଜିଣିବି ସକଳେ ॥
ଶୁଣି କୁଳିନ୍ଦ ବୋଲଇ ଶୁଣରେ କୁମର ।
ଅମ୍ଭ ରାଜା ଅଟନ୍ତି କୋନ୍ତଳ ନରବର ।
ଦୁଷ୍ଟବୁଦ୍ଧି ନାମେ ମନ୍ତ୍ରୀ ଅଛଇ ତାଙ୍କର ।
ତାଙ୍କ ବିନୁ ରାଜା ନ ଜାଣଇ ଅନ୍ୟ ବୀର ॥
ସେ ଅମ୍ଭଙ୍କୁ ଏହି ଦେଶ ଦେଇଣ ଅଛନ୍ତି ।
ଆମ୍ଭେ କର ଦେଉ ତାଙ୍କୁ ପାଉ ଏହି କ୍ଷିତି ॥
ଅମ୍ଭ ରାଜାଙ୍କର ବହୁ ଶତ୍ରୁ ଯେ ଅଛନ୍ତି ।
ତାହାଙ୍କୁ ପ୍ରାଣ ପଣରେ ନୃପତି ଡରନ୍ତି ॥
ଶୁଣି ଏସନ କୁମର ନମସ୍କାର କଲା ।
ସୈନ୍ୟ ଘେନି ସମରକୁ ବେଗେ ବାହାରିଲା ॥
ଯୁଦ୍ଧକରି ଜିଣିଲାକ ସର୍ବ ରାଜାଗଣ ।
ସେମାନଙ୍କ ଧନ ରତ୍ନ ଆଣିଲା ବହନ ॥
ଏକା ହୋଇ ଗୁରୁ ଦିଗ ରାଜାଙ୍କୁ ଜିଣିଲା ।
କୋନ୍ତଳ ନୃପତିଙ୍କ ଅଭୟ କରାଇଲା ॥
ଶତ୍ରୁ ଜନମାନଙ୍କୁ ସେ କରିଣ ବିନାଶ ।
ମହାବୀର ବୋଲାଇଲା ତହୁଁ ଚନ୍ଦ୍ରହାସ୍ୟ ॥
ଚନ୍ଦନାବତୀ ପୁରକୁ ରାଜଧାନୀ କଲା ।
ବହୁତ ଭଣ୍ଡାର ସେହିଠାରେ ରଖାଇଲା ॥
ନିତ୍ୟେ ମାତା ପିତାଙ୍କୁ ସେ ଦୋଳାରେ ବସାଇ
ବିଷ୍ଣୁ ପ୍ରତିମା ପରାଏ ପୂଜା କରୁଥାଇ ॥

ବହୁ ପ୍ରଜାମାନେ ଆସି ସେ ଦେଶେ ରହିଲେ
ଚନ୍ଦ୍ରହାସ୍ୟ ରୁପେ ନାରୀ କାମେ ଘାରି ହେଲେ
ମଦନର ପ୍ରାୟେ ଶୋଭା ଦିଶଇ ତାହାର ।
ବିଷ୍ଣୁ ପରାୟଣ ସେହି ବୈଷ୍ଣବ ଆକାର ॥
କୁଳିନ୍ଦ ଅନେକ ଋଷିମାନ ଡକାଇଲା ।
ମହାସମ୍ଭର୍ବରେ ଚନ୍ଦ୍ରହାସେ ରାଜା କଲା ॥
ଅଭିଷେକ ହେଲା ବସି ସିଂହାସନ ପରେ ।
ମହାଦେବ ବୋଲେ ଶୁଣ ଏଥୁ ଅନନ୍ତରେ ॥

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାର କଥା ପ୍ରବନ୍ଧେ ନାମ
ଦ୍ୱାତ୍ରିଂଶୋଽଧ୍ୟାୟଃ

---

## ତ୍ରୟସ୍ତ୍ରିଂଶ ଅଧ୍ୟାୟ

କରୋତି ନାମ ନାତଙ୍କେ ବ୍ୟବଧାୟ ମିତସ୍ତତଃ
ଫଳ ପୁନସ୍ତୁଦେବାସ୍ୟ ଯଦାତ୍ରି ଧର୍ମ୍ମ ନସଂସ୍ଥିତଂ

### 'ଚନ୍ଦ୍ରହାସ୍ୟଙ୍କ କୋନ୍ତଳରାଜ୍ୟେ ଗମନ, ପଥେ ବିଷୟାର କୌଶଳ ଓ ମଦନଙ୍କ ସହିତ ସାକ୍ଷାତ

ଜୈମିନି ବୋଲନ୍ତି ଶୁଣ ରାଜା ଜନ୍ମେଜୟ
ଏଥୁଅନ୍ତେ ଯାହା ହେଲା ଶୁଣ ସେ ବିଷୟ ॥
ଚନ୍ଦ୍ରହାସ୍ୟ ନରପତି ହୋଇଣ ରାଜ୍ୟରେ ।
ଘୋଷଣାସେଦେଲାବେଗେତାହାରରାଜ୍ୟରେ
ମୋହ ରାଜ୍ୟେ ଯେତେକ ଅଛନ୍ତି ପ୍ରଜାଗଣ ।
ସର୍ବେ ଏକାଦଶୀ ବ୍ରତ କରିବେକ ଜାଣ ॥
ରାଜା ଆଜ୍ଞା ମତେ ସର୍ବେ ଏକାଦଶୀ କଲେ ।
ବିଷ୍ଣୁ ପରାୟଣ ତହିଁ ସମସ୍ତେ ହୋଇଲେ ॥
ଦଶମୀଦିନ ହବିଷ୍ୟ ସମସ୍ତେ କରନ୍ତି ।
ଏକାଦଶୀଦିନ ଉପବାସରେ କଟାନ୍ତି ॥
ରାତ୍ରି ମଧ୍ୟ ଜାଗରେ କଟାନ୍ତି ସେ ଦିନ ।
ଦ୍ୱାଦଶୀରେ ହବିଷ୍ୟାନ୍ନ କରନ୍ତି ଭୋଜନ ॥
ଏହିପରି ସର୍ବେ ସେ ଦେଶରେ ପୂଜାକଲେ ।
ପରମ ଧାର୍ମିକ ସର୍ବେ ଶ୍ରୀହରି ସେବାରେ ॥
କୁଳିନ୍ଦ ପୁତ୍ରକୁ ବୋଲେ ଶୁଣ ମୋ ବଚନ ।
କରନେଇ ଦିଅ ବାବୁ କୋନ୍ତଳ ରାଜନ ॥
ମନ୍ତ୍ରୀକୁ ମଧ୍ୟ କେତେକ ଦେବୁ ବାପ ନେଇ
ଏସନ ଶୁଣିଣ ଚନ୍ଦ୍ରହାସ୍ୟ ନରସାଇଁ ॥
ମହାଜନ ଦେଇଣ ତୁରିତେ ପେଶି ଦେଲା ।
ରାଜାକର ମନ୍ତ୍ରୀକର ପଠାଇଣ ଦେଲା ॥
ମହାଜନମାନେ ନେଇ ରାଜା କରେ ଦେଲେ
ମନ୍ତ୍ରୀକୁ ଦିଅନ୍ତେ ମନ୍ତ୍ରୀ ମନରେ ଭାବିଲେ ॥
ସକଳ ଖବର ବୁଝି ବିଚାରିଲେ ମନ ।
ବଳାତ୍କାରେ ନେବି ତାହାର ରାଜ୍ୟ ଧନ ॥
ବଡ଼ ହେଲେ ପ୍ରଜା ମୁନିବଙ୍କୁ ନ ମାନନ୍ତି ।
ଏସନ ମନେ ଭାବିଣ ଦୁଷ୍ଟବୁଦ୍ଧିମନ୍ତ୍ରୀ ॥
କହିଲେ କାଲିରେ ଯାଇଁ ତଣ୍ଡିଣ ଆଣିବି ।
ରାଜ୍ୟରୁ ଚନ୍ଦ୍ରହାସ୍ୟକୁ ଦୂର କରି ଦେବି ॥
ଏସନ ଭାବି ଚରକୁ ବୋଇଲା ବଚନ ।
କିଛି ଜଳ ପାନ କର ଆଜ ମୋ ପୁରେଣ ॥
ଚରମାନେ ବୋଇଲେ ହେ ଏକାଦଶୀ ବ୍ରତ
ଆଜ ଆମ୍ଭେମାନେ କେବେ ନ ଭୁଞ୍ଜିବୁ ଭାତ
ଶୁଣି ମନ୍ତ୍ରୀବର ବୋଲେ ଜାତରେ ଚଣ୍ଡାଳ ।
ଏକାଦଶୀ ବ୍ରତ ପୁଣି କରନ୍ତି ପାମର ॥
କାଲି ଯାଇ କୁଳିନ୍ଦକୁ ଧରିଣ ଆଣିବି ।
ନଗ୍ରଯାକ ତାହାର ମୁଁ ଉଜାଡ଼ିଣ ଦେବି ॥
ମୁଦା ନାମେ କାର୍ଯ୍ୟୀ ଥିଲା ସେ ଦୁଷ୍ଟବୁଦ୍ଧିର
ତାହାର ସହିତ ମନ୍ତ୍ରୀ କଲେକ ବିଚାର ॥
ବୋଇଲେ କୁଳିନ୍ଦ ଅଟେ ଜାତରେ ଶବର ।
ଧନ ହେତୁ ନ ମାନିଲା ଆମ୍ଭଙ୍କୁ ପାମର ।
କାଲି ତାକୁ ସାଙ୍କୋଳି ଦେଇଣ ହୋ ମାରିବା
ସମସ୍ତ ଧନ ରତନ ତାହାର ଆଣିବା ॥
ପରଦିନ ପ୍ରଭାତରୁ ଉଠି ମନ୍ତ୍ରୀବର ।
ଜ୍ୟେଷ୍ଠ ପୁତ୍ର ମଦନକୁ ଦେଇ ରାଜ୍ୟଭାର ॥
ସୈନ୍ୟଙ୍କୁ ଆଣିଣ ବୋଲେ ବେଗେ ସଜହୁଅ
କୁଳିନ୍ଦ ଦେଶକୁ ଯିବି ଅସ୍ତ୍ର ଶସ୍ତ୍ର ସହ ॥
ଆଜ୍ଞାମାନେ ସୈନ୍ୟଗଣ ତୁରିତେ ଆସିଲେ ।
ଦେଖିଣ ମନ୍ତ୍ରୀର ଝିଅ ବିଷୟା ଯେ ବୋଲେ
ହେ ତାତ ଚଉଦବର୍ଷ ହୋଇଛି ମୋହର ।
ମୋହର ବେଦନା କିଛି ନ ଜାଣ ପିଅର ॥

ପୃ ୨୮୫ ପୃଷ୍ଠା

ଚନ୍ଦ୍ରହାସ୍ୟ ଓ ବିଷୟା



ନିଦ୍ରାବଶେ ଚନ୍ଦ୍ରହାସ୍ୟ ଅଚେତନ ଥିଲା ।
ବିଷୟା ତା ପାଶେ ଯାଇ ପତ୍ରକୁ ପଢ଼ିଲା ॥

ତୁମ୍ଭେ ଅଟ ମନ୍ତ୍ରୀବର ଅତି ବୁଦ୍ଧିମନ୍ତ ।
ମୋହର ପାଇଁ ଆଣିବ ଉତ୍ତମ ପଦାର୍ଥ ॥
ଏସନ କହିଣ ନୃପସ୍ୱା ଯେ ଗୃହେ ଗଲା ।
ସୈନ୍ୟ ଧର ମନ୍ତ୍ରୀ କୁଳିନ୍ଦପୁରେ ଚଳିଲା ॥
ଦେଖିଣ ନଗର ଶୋଭା ଅତି ବଡପନ ।
ସ୍ୱର୍ଗପୁର ଶୋଭାଠାରୁ ବଳି ଦିଶେ ପୁଣି ॥
ମନ୍ତ୍ରୀ ଆଗମନ ଜାଣି କୁଳିନ୍ଦ ରାଜନ ।
ପୁତ୍ରସହ ଆସି ନେଲା ସମ୍ମାନ କରଣ ॥
ମନ୍ତ୍ରୀବର ପଚାରିଲେ ଶୁଣ ନୃପବର ।
କେବେ ଜାତ ହେଲା ଏହି ପୁତ୍ର ଗୁଣାଧାର ॥
କିପାଇଁ ପୁତ୍ରର ଜନ୍ମ ବାରତା ନ ଦେଲ ।
ଏହା କି ତୁମ୍ଭ ଉଚିତ ବିଚାର ତା ବୋଲ ॥
ଏହା ଶୁଣିଣ କୁଳିନ୍ଦ କରନ୍ତି ଉତ୍ତର ।
ମୃଗୟାର୍ଥେ ବନେ ଯାଇ ପାଇଲି କୁମର ॥
ଯେ ଦିନୁ ଏହାକୁ ଆଣି ଯତ୍ନରେ ପାଳିଲି ।
ବହୁ ଧନବାନ ଏହା ସକାଶେ ମୁଁ ହେଲି ॥
ଶୁଣି ମନ୍ତ୍ରୀବର ମୁଖ ହେଲା ଶ୍ରୀହୀନ ।
ଭାବିଲା ଏ ଚନ୍ଦ୍ରହାସ୍ୟ ନିଶ୍ଚେ ହେବ ଜାଣ ॥
ଯାହାକୁ ମାରିବା ପାଇଁକି ବନେ ପଠାଇଲି ।
ସେହି ଚନ୍ଦ୍ରହାସ୍ୟ ଏହି ନିଶ୍ଚୟ ଜାଣିଲି ॥
କିପରି ମାରିବ ଯାହାକୁ ମନେ ବିଚାରିଲା ।
ଏକ କୃତ୍ରିମ ବୁଦ୍ଧି ଯେ ତହିଁ ପ୍ରକାଶିଲା ॥
ବୋଇଲା ଆରେ କୁଳିନ୍ଦ ଶୁଣ ମୋ ବଚନ ।
ରାଜଲକ୍ଷ୍ମୀ ପ୍ରାପ୍ତ ହେଉ ତୁମ୍ଭର ନନ୍ଦନ ॥
ଏବେ ଗୁରୁତର କାର୍ଯ୍ୟ ଅଛଇ ମୋହର ।
ପଠାଅ ତୁମ୍ଭ କୁମର ଚନ୍ଦ୍ରହାସ୍ୟ ବୀର ॥
ଲେଖା ନେଇ ମୋ ପୁତ୍ର ମଦନ ପାଶେ ଯିବ
ବାରତା କହିଣ ତାକୁ ଫେରିଣ ଆସିବ ॥
ଏସନ କହିଣ ମନ୍ତ୍ରୀ ପତ୍ର ଯେ ଲେଖିଲା ।
ଆଜ୍ଞା ପ୍ରମାଣେ ଛେଦିବୁ ତୁ ଏହାର ଗଳା ॥
ଆମ୍ଭ ସର୍ବ ରାଜ୍ୟଧନେ ଏ ଅନିଷ୍ଟକାରୀ ।
ଶତ୍ରୁ ହୋଇ ପଶ୍ଚାତରେ ହେବ ଅଧିକାରୀ ॥
ରୂପଗୁଣ ଦେଖି ଯାହାକୁ କେବେ ନ ଭୁଲିବୁ ।
ନ ମାରିଲେ ପଶ୍ଚାତେ ତୁ କଷ୍ଟକୁ ଲଭିବୁ ॥
ଏପରି ଲେଖିଣ ଚନ୍ଦ୍ରହାସ୍ୟ କରେ ଦେଲା ।
ପତ୍ରକୁ ନ ଫିଟାଇବୁ ତଆର କହିଲା ॥

ଶୁଣି ଚନ୍ଦ୍ରହାସ୍ୟ ମହା ଆନନ୍ଦ ହୋଇଣ ।
ପତ୍ର ଘେନି ପିତା ପାଦେ ପଡ଼ିଣ ବହନ ॥
ଜନନୀଙ୍କ ପାଦେ ବୀର ପ୍ରଣାମ କରିଲା ।
ସମସ୍ତ ଘଟଣା ତାଙ୍କଠାରେ ଜଣାଇଲା ॥
ଶୁଣି ମେଧାବୀ ରାଣୀ ଯେ ବସ୍ତ୍ର କବଚରେ ।
ପୁତ୍ରର ଅଙ୍ଗକୁ ହସ୍ତ ବୁଲାଇ ସ୍ନେହରେ ॥
କଲ୍ୟାଣ କରିଣ ସେ ବୋଇଲେ ଏହି ବାଣୀ
କନ୍ୟାରତ୍ନ ଲଭ କର ରେ କୁମରମଣି ॥
ତହୁଁ ଚନ୍ଦ୍ରହାସ୍ୟ ଅଶ୍ୱ ଉପରେ ଚଢ଼ିଣ ।
ଆନନ୍ଦେ କୋନ୍ତଳ ରାଜ୍ୟେ କରିଲା ଗମନ ॥
ଗୁରୁଜଣ ଅନୁଚର ସଙ୍ଗତରେ ନେଲା ।
ନିବିଡ଼ ବନ ମଧ୍ୟରେ ପ୍ରବେଶ ହୋଇଲା ॥
ବନବାସୀମାନେ ଦେଖି ସମାଦର କଲେ ।
ଫଳଫୁଲ ଦେଇ ଚନ୍ଦ୍ରହାସେ ତୋଷକଲେ ॥
ତହୁଁ ବୀର ଅଶ୍ୱ ଚଢ଼ି ବେଗେ ବେଗେ ଗଲା
କୋନ୍ତଳ ରାଜ୍ୟରେ ଯାଇଁ ପ୍ରବେଶ ହୋଇଲା
ଦେଖିଲା ନଗର ଶୋଭା ଅତି ମନୋହର ।
ଉପବନ ତହିଁ ଦିଶେ ଅତ୍ୟନ୍ତ ସୁନ୍ଦର ॥
ନାଗେଶ୍ୱର ଚମ୍ପକ ସେବତୀ ଟୁରୀଅନା ।
ମାଧବୀ ମାଳତୀ ଟଗର ଅବର ହେନା ॥
ନାନାପୁଷ୍ପ ମନୋହର ଦିଶଇ ସେ ବନ ।
ସୁଗନ୍ଧରେ ମନ ମୀନ ହୋଏ ତୃପ୍ତ ପୁଣ ॥
ମଧ୍ୟେ ଅଛି ପୁଷ୍କରିଣୀ ଅତି ମନୋହର ।
ସୁଗନ୍ଧ ଶୀତଳ ବାୟୁ ବହେ ନିରନ୍ତର ॥
ନନ୍ଦନ କାନନ ତୁଲ୍ୟ ସେ ବନ ଦେଖିଣ ।
ପଥଶ୍ରାନ୍ତେ ଘୋଟକରୁ ଓହ୍ଲାଇ ତକ୍ଷଣ ॥
ବଉଳ ଗଛରେ ନେଇ ଘୋଡ଼ାକୁ ବାନ୍ଧିଲା ।
ପଥଶ୍ରାନ୍ତେ ଚନ୍ଦ୍ରହାସ୍ୟ ଶୟନ କରିଲା ॥
ଶୋଇଲା ବେଳେ ତାହାର କରୁ ମନ୍ତ୍ରୀ ପତ୍ର
ଭୂମିପରେ ଧୂଳିରେ ପଡ଼ିଣ ଥିଲା ସେ ତ ॥
ଦେଖ ବିଧାତାର ରୀତି ଏଣେ ମନ୍ତ୍ରୀ ସୁତା ।
ଫୁଲ ତୋଳିବା ନିମିତ୍ତ ହୋଇ ଆନନ୍ଦିତା ॥
ସଖିମାନଙ୍କୁ ସଙ୍ଗରେ ନେଇଣ ସୁନ୍ଦରୀ ।
ଫୁଲବନେ ଉପସ୍ଥିତ ହେଲା ଯାଇ କରି ॥
ଏକେ ନବ ଯଉବନୀ ଅତ୍ୟନ୍ତ ସୁନ୍ଦରୀ ।
ମନ୍ଥରଗାମିନୀ ଯୋଗୀ ଯୋଗ ଭଙ୍ଗକାରୀ ॥

ସଖି ସଙ୍ଗ ଉପବନେ ପ୍ରବେଶ ହୋଇଣ ।
ନାନାଜାତି ଫୁଲ ତୋଳେ ଆନନ୍ଦ ହୋଇଣ
ଫୁଲତୋଳି ପୁଷ୍କରଣୀ ତଟେ ପ୍ରବେଶିଲା ।
ଘୋଟକ ବନ୍ଧା ହୋଇଛି ସେଠାରେ ଦେଖିଲା
ସର୍ବସଖି ସଙ୍ଗେ କନ୍ୟା ରଙ୍ଗେ ସ୍ନାନକଲା ।
ଓଦାଲୁଗା ଚିନ୍ଧି ପାହାଚରେ ଛିଡ଼ାହେଲା ॥
ବସ୍ତ୍ରପୁଟି କୁଚ ଦୁଇ ପର୍ବତ ନିନ୍ଦଇ ।
ବାଳଫିଟି କଳା ମେଘକୁ ନିନ୍ଦା କରଇ ॥
ତରୁତଳେ ଦେଖିଲାକ ଅପୂର୍ବ ସୁନ୍ଦର ।
ଯୁବତୀଙ୍କ ଚିତ୍ତଚୋର ଯୁବକ ସେଠାର ॥
ତରୁତଳେ ଅଚେତନ ନିଦ୍ରା ଅଛି ଯାଇ ।
ତାହାରୂପ ଦେଖି କନ୍ୟା କାମେ ହେଲା ବାଇ
ସଖୀଙ୍କି ଡାକିଣ କନ୍ୟା ବୋଇଲା ବଚନ ।
ଦେଖି ସଖି କେଉଁ ଯୁବା ସାକ୍ଷାତେ ମଦନ ॥
ଦେଖିଲା ବେଳରୁ ଚିତ୍ତ ଅଥୟ ହୁଅଇ ।
ସତେ ପ୍ରାଣନାଥ ମୋର ହୋଇବ ଗୋ ଏହି
ଯେବେ ମୋର ପୂର୍ବଜନ୍ମେ ସୁକୃତ ଗୋ ଥିବ
କୋଳେ ବସାଇବି ସଖି କରି ଜୀବଧନ ॥
ଶିବ ଶିବା ମୋ ଉପରେ ପ୍ରସନ୍ନ ହୋଇଣ ।
ସତେକି ମୋତେଗୋ ଦେବେ ବଲ୍ଲଭ କରିଣ
ଏପରି କହିଣ ରମା ପାଶେ ପ୍ରବେଶିଲା ।
ପତ୍ର ପଡ଼ିଥିବାର ଯେ ସେଠାରେ ଦେଖିଲା ॥
ମୁଦ ଫିଟାଇଣ କନ୍ୟା ପଢ଼ିଲା ପତର ।
ଦେଖିଲା ହୋଇଛି ଲେଖା ବିଷ ଦେଇ ମାର
ପତ୍ରରେ ହୋଇଛି ଲେଖା ହେ ମଦନ ବୀର
ଏହି ଚନ୍ଦ୍ରହାସ୍ୟ ଅଟେ ଅତ୍ୟନ୍ତ ଦୁର୍ବାର ॥
ବିଷଦେଇ ଏହା ପ୍ରାଣ ନାଶ ତୁ କରିବୁ ।
ତେବେ ବାବୁ ନିଶ୍ଚିନ୍ତରେ ରାଜା ତୁ ହୋଇବୁ
ପତ୍ର ପଢ଼ି କନ୍ୟା ବୋଲେ ମୋ ପିତା ଦାରୁଣ
କି ଦୋଷରେ ଅକାରଣେ ବଧିବେ ଯା ପ୍ରାଣ
ଯେତେବେଳେ ପ୍ରାଣ ମୁହିଁ ଧରି ଅଛି ଯାଙ୍କୁ
ଉପାୟେ ରଖିବି ମୋର ଜୀବନ ଧନଙ୍କୁ ॥
ଏସନ ଭାବି ବିଷୟା ଦୁର୍ଗା ସୁମରିଲା ।
ରସାଳ ବୃକ୍ଷରେ ନେଇ ନଖକୁ ମାଇଲା ॥
ଆଖିର କଜ୍ଜ୍ୱଳ ନେଇ ସେ ରସେ ଗୋଳାଇ ।
ଲେଖିଲା ସେ ଏକ ପତ୍ର ଆନନ୍ଦିତ ହୋଇ ॥

ଶୁଣ ବାବୁ ମଦନରେ ମୋହର ବଚନ ।
ଏହି ପତ୍ରବାହି ଅଟେ ଚନ୍ଦ୍ରହାସ୍ୟ ଜାଣ ॥
ପରମ ଧାର୍ମିକ ଏହି ମହା ବୀରନ୍ଦ୍ର ।
ବିଷୟା ସହିତରେ କରିବୁ ବିଭାଘର ॥
ମୋହ ଯିବା ପାଇଁ ତୁ ଅପେକ୍ଷା ନ କରିବୁ ।
ଯେପରି ଶୋଭା ହୋଇବ ସେ କାର୍ଯ୍ୟ କରିବୁ
ବିଷ ସ୍ଥାନେ ବିଷୟା ବୋଲିଣ ଏହିପରି ।
ଲେଖିଣ ସୁନ୍ଦରୀ ଚାଟି ଦେଲା ମୁଦକରି ॥
ଚାଟି ମୁଦ କନ୍ୟା ଶିବ ଦୁର୍ଗା ସୁମରିଲା ।
ସଖିଙ୍କ ସଙ୍ଗରେ ଆନନ୍ଦରେ ପୁରେ ଗଲା ॥
ଏଣେ ଚନ୍ଦ୍ରହାସ୍ୟ ବୀର ଗୋଧୂଳି ସମୟେ ।
ନିଦ୍ରାତେଜି ମୁଖ ଧୋଇ ଶ୍ରୀହରିଙ୍କୁ ଧ୍ୟାୟେ ॥
ନିତ୍ୟକର୍ମ ସାରି ବୀର ବାହାର ହୋଇଲା ।
ମନ୍ତ୍ରୀର ପୁର ନିକଟେ ଯାଇଣ ମିଳିଲା ॥
ଦ୍ୱାରୀକି ବୋଇଲେ ତୁମ୍ଭେମାନେ ଶୀଘ୍ର ଯାଅ
ମନ୍ତ୍ରୀ ପୁତ୍ରଙ୍କପାଖରେ ଏସନ ଜଣାଅ ॥
କହିବ ପଠାଇଛନ୍ତି ପିତା ଯେ ତୁମ୍ଭର ।
ଲେଖାନେଇଣ ଅସିଛି ଚନ୍ଦ୍ରହାସ୍ୟ ବୀର ॥
ଶୁଣି ଦୂତମାନେ ଶୀଘ୍ର ବହନ ଚଳିଲେ ।
ମନ୍ତ୍ରୀପୁଅ ମଦନକୁ ସମସ୍ତ କହିଲେ ॥
ଶୁଣିଣ ମଦନ ବେଗେ ଡକାଇଣ ନେଲା ।
ଚନ୍ଦ୍ରହାସ୍ୟ ମଦନକୁ ଦେଖି ମାନ୍ୟ କଲା ॥
ମନ୍ତ୍ରୀଙ୍କର ଲେଖାଦେଇ ସମସ୍ତ ଖବର ।
କହିଣ ଅସନେ ବୀର ବସିଲା ସେଠାର ॥
ପିତାଙ୍କ ଲେଖା ନେଇଣ ମଦନ ସୁନ୍ଦର ।
ଫେଡ଼ି ପଢ଼ି ଜାଣିଲାକ ସକଳ ଖବର ॥



## ଚନ୍ଦ୍ରହାସ୍ୟ ବିଷୟା ବିବାହ

ଅତ୍ୟନ୍ତ ଆନନ୍ଦ ହୋଇ ଚନ୍ଦ୍ରହାସ୍ୟେ ଦେଇ
ସମ୍ମାନ ସହିତେ ରଖାଇଲା ଘରେ ଯାଇଁ ॥
ପିତାଙ୍କର ଲେଖା କଥା ସମସ୍ତଙ୍କଠାରେ ।
ବୁଝାଇ କହିଲା ବୀର ଆନନ୍ଦ ମନରେ ॥
ଶୁଣି ସର୍ବେ ଚନ୍ଦ୍ରହାସ୍ୟ ରୂପକୁ ଦେଖିଣ ।
ଆନନ୍ଦ ହୋଇଣ କଲେ ବିଭା ଅୟୋଜନ ॥

ଚନ୍ଦ୍ରହାସ୍ୟ ରୂପ ଦେଖି ସର୍ବ ନରନାରୀ ।
ମଦନ ଶରରେ ଘାରି ହୋଇଲେ ନାଗରୀ ॥
ତହୁଁ ମଦନ ବିଭାର ସମ୍ଭାର ସକଳ ।
ଆୟୋଜନ କଲା ବୀର ଅତି ହରଷର ॥
ବ୍ରାହ୍ମଣ ପୁରୋହିତ ଜ୍ୟୋତିଷ ଡକାଇଣ ।
ଶୁଭଲଗ୍ନ ଦେଖି ବିଭା କଲାକ ବନ୍ଧନ ॥
ରତ୍ନ ସିଂହାସନ ପରେ ବରକନ୍ୟା ଦୁଇ ।
ବସାଇଣ ବିଧିମତେ ବିଭା କଲା ତହିଁ ॥
ବରକନ୍ୟାର ମଙ୍ଗଳ ସର୍ବେ ମନାସିଲେ ।
ଆନନ୍ଦ ମନରେ ବିଭା ବିଧି ବଢ଼ାଇଲେ ॥
ଚଉଁଗ୍ରାସି ଯୁଆଖେଳ ଆଦି ଅଧିବାସ ।
ବିଧିମତେ କରାଇଲେ ସକଳ ନାରୀଗଣ ॥
ବରକନ୍ୟା ଆନନ୍ଦରେ ଗୃହରେ ରହିଲେ ।
ଦାନ ଦକ୍ଷିଣା ଦେଇଣ ବ୍ରାହ୍ମଣେ ତୋଷିଲେ
ପ୍ରତିଘରେ ଆନନ୍ଦରେ ପତାକା ଶୋଭଇ ।
ବାଦ୍ୟନାଦରେ ନଗର ଉଚ୍ଛୁଳି ପଡ଼ଇ ॥
ମହା ସମ୍ଭ୍ରମରେ ତହିଁ ବିଭାବିଧି କଲେ ।
ଜାତି ଅଣସର ଡାକି ଭୋଜି ଏକ ଦେଲେ॥
ସର୍ବେ ଆନନ୍ଦ ମନରେ କଲ୍ୟାଣ କରିଣ ।
ଗୃହେ ଫେରିଗଲେ ଏଥୁ ଅନନ୍ତରେ ଶୁଣ ॥
ଚନ୍ଦ୍ରହାସ୍ୟ ବିଷୟାର ବିଭାବିଧି ସାରି ।
ଅତ୍ୟନ୍ତ ହର୍ଷେ ମଦନ ଡାକି ନରନାରୀ ॥
ସମସ୍ତଙ୍କୁ ସମାନରେ ପୁଣି ଭୋଜି ଦେଲା ।
ନାନାଦି ଧନରତ୍ନ ଯେ ବିପ୍ରଙ୍କୁ ବାଣ୍ଟିଲା ॥
ଭାଟ ବିପ୍ର ମାଗନ୍ତା ଜନଙ୍କୁ ତୋଷିଲେ ।
ନାନାଦି ଉତ୍ସବମାନ ପୁରରେ ସେ କଲେ ॥
ଠାବେ ଠାବେ ନୃତ୍ୟଗୀତ ଆରମ୍ଭ ହୋଇଲା
ଚନ୍ଦନର ଛେରା ସ୍ଥାନେ ସ୍ଥାନେ ଦିଆଗଲା ॥
ଏହିପରି ନଗରରେ ହୋଇଲା ଉତ୍ସବ ।
କେଳି ମନ୍ଦିରରେ ବିଜେକଲେ କନ୍ୟାଧବ ॥
ଅତ୍ୟନ୍ତ ଆନନ୍ଦ ହୋଇ ରଜନୀ ବଞ୍ଚିଲେ ।
ଏହିପରି ସୁଖେ ବାସରରୀ ପୁହାଇଲେ ॥
ଭଉଣୀ ଭଣେଇଙ୍କ ସେ ମନୋହର ପୁରେ।
ରହିଣ ବସତି ହେଲା ଅତ୍ୟନ୍ତ ମନରେ ॥
ଧନରତ୍ନ ଗଜ ଅଶ୍ୱ ସଂଖ୍ୟା ନାହିଁ ତାର ।
ଚନ୍ଦ୍ରହାସେ ହେଲା ସେହି ମନ୍ତ୍ରୀର କୁମର ॥
ଚନ୍ଦ୍ରହାସ୍ୟ ବିଷୟାର ବିଭାଘର ଶେଷ ।
କହିଲେ ମହାଦେବ ବୋଲେ ଧ୍ୟାୟୀ ପୀତବାସ

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାର କଥା ପ୍ରବନ୍ଧେ ନାମ
ତ୍ରୟସ୍ତ୍ରିଂଶୋଽଧ୍ୟାୟଃ ।

——o——

## ଚତୁଃତ୍ରିଂଶ ଅଧ୍ୟାୟ

ନିଗମସ୍ୟ ପରାୟଣୋ ପଦ୍ମଜାତ ପତିତସ୍ୟତ
ତସ୍କରୋନାପି ଦୁଷ୍ଟସ୍ୟ ଅୟୂର୍ନ୍ନମାଣି ରକ୍ଷତ ॥

କୁଳିନ୍ଦଙ୍କୁ କାରାରୁଦ୍ଧ କରି ଦୁଷ୍ଟବୁଦ୍ଧି
କୌନ୍ତଳକପୁରେ ଆଗମନ ଓ
ବିଷୟାର ପରିଣୟ ଶ୍ରବଣେ
ଦୁଃଖ ଓ ଚନ୍ଦ୍ରହାସ୍ୟର
ରାଜ୍ୟପ୍ରାପ୍ତି ।

ଜନ୍ମେଜୟ ନୃପବରେ ଯୋଡ଼ି ବେନିକର
ବୋଇଲେ ହେ ମୁନି ମୋତେ ପ୍ରତିକାରକର
ଶ୍ରୀକୃଷ୍ଣ ଚରିତ ଏହି ଅମୃତ ଅଟଇ ।
ଶୁଣାଇ ପବିତ୍ର ମୋତେ କରି ମୁନିସାଇଁ ॥
ଶୁଣିଣ ବୋଲନ୍ତି ଜଇମିନି ଶୁଣ ରାୟ ।
ଏଥୁଅନ୍ତେ ଯାହା ହେଲା ଶୁଣ ସେ ବିଷୟ ॥
ଏବେ ଶୁଣ ଚନ୍ଦନାବତୀ ନଗର ଲୀଳା ।
ଦୁଷ୍ଟବୁଦ୍ଧି ମନ୍ତ୍ରୀ ଚନ୍ଦନାବତୀରେ ଥିଲା ॥
ଚନ୍ଦ୍ରହାସ୍ୟର ବିଳମ୍ବ ଦେଖି ବିଚାରିଲା ।
ନିଶ୍ଚୟ ଚନ୍ଦ୍ରହାସ୍ୟର ମରଣ ହୋଇଲା ॥
ଭାବିଲା କୁମର ମୋର ପତ୍ରିକୁ ପାଇଣ ।
ବିଷଦେଇ ଚନ୍ଦ୍ରହାସେ କରିଛି ନିଧନ ॥
ଚନ୍ଦ୍ରହାସ୍ୟବଳେ ମିଥ୍ୟା କୁଳିନ୍ଦର ଠାଣ ।
ନିଶ୍ଚେ ଏବେ ଚନ୍ଦ୍ରହାସ୍ୟ ତେଜିଲା ଜୀବନ ॥
ଯେବେ ସେହି ଜୀବନରେ ମରଣ ନ ଥାନ୍ତା
ଏତେଦିନ ବିଳମ୍ବ ଯେ କିମ୍ପାଇଁ ହୁଅନ୍ତା ।
ଏମନ୍ତ ବିଚାରି କୁଳିନ୍ଦଙ୍କୁ ସେ ବାନ୍ଧିଲା ।
ଗୋଡ଼ରେ ଶାଙ୍କୁଳି ଦେଇ ବହୁ ମାଡ଼ଦେଲା
ବୋଇଲା ଆରେ ବର୍ବର ଧନ ଗର୍ବେ ତୁହି ।
ମୋତେ ଛଳେ ଖାତିର ତୁ ଏବେ କଲୁନାହିଁ

ଅରଣ୍ୟରୁ ପାପଛୁଆ ଗୋଟାଏ ଆଣିଲ ।
ତାହାକୁ ପୁଅ କରଣ ମୋତେ ନ ମାନିଲ ॥
ମୋର ଆଜ୍ଞା ନ ମାନିଲ ଏବେ ତୁହି ମର ।
ଏସନ କହିଣ କୋପେ ସେହି ମନ୍ତ୍ରୀବର ॥
ଚୃରଙ୍କୁ ବୋଇଲା ସ୍ତ୍ରୀଙ୍କୁ ବେଗେ ଘେନିଯାଅ
ହାଡ଼ଗୋଡ଼ ଗୁଣ୍ଡକରି ବନ୍ଧରେ ରଖାଅ ॥
ପ୍ରଜାମାନଙ୍କୁ ଧରାଇ ଆଣି ମନ୍ତ୍ରୀବର ।
ବହୁତ ମାଡ଼ ମାଇଲା ହୋଇ କୋପଭର ॥
ବୋଇଲା ଅରେ ଅଧମ ଜାତିରେ ଶବର ।
ବନ ପଶୁ ସଙ୍ଗତରେ ସମାନ ତୁମ୍ଭର ॥
କାହିଁ ବନସ୍ତରୁ ଏକ ଶିଶୁକୁ ଆଣିଣ ।
ତା କଥାରେମୋତେତୁମ୍ଭେ ନ କଲରେମାନ୍ୟ
ତାକ ଏବେ ସେହି ବାପ ଆସି ରକ୍ଷାକରୁ ।
ଏକାଦଶୀ ବ୍ରତ ଫଳ ପାଅ ମୋ ହାତରୁ ॥
ଏସନ କହିଣ ମନ୍ତ୍ରୀ ମାରେ ଘନ ଘନ ।
ବିକଳ ହୋଇଲେ ତହିଁ ନଗ୍ର ପ୍ରଜାଗଣ ॥
ପୁଣି ବାଟେ ଯାଉ ଯାଉ କରଇ ବିଚାର ।
ଚନ୍ଦ୍ରହାସ୍ୟ ଖାର ନଷ୍ଟ ହୋଇଛି ସଂସାର ॥
ଏକ ପ୍ରହର ମଧ୍ୟରେ କରଣ ଗମନ ।
ଚନ୍ଦ୍ରହାସ୍ୟ ମୃତ୍ୟୁ ଯାଇ କରିବ ଶ୍ରବଣ ॥
ଏପରି ଚିନ୍ତା କରଣ ଯାନରେ ବସିଲା ॥
ବାହାକମାନଙ୍କୁ ବହୁ ତାଡ଼ନା କରିଲା ।
ସେମାନେ ବୋଇଲେ କପାଁଦିଅ ଏତେଦୁଃଖ ॥
ଅଳ୍ପକ୍ଷଣେ ନେଇଯିବୁ ନ ହୁଅ ବିମୁଖ ।
ଅତଶୀଘ୍ରେ ଅମ୍ଭେମାନେ କରଣ ଗମନ ।
ଆପଣଙ୍କୁ ଘେନିକରି ଯାଉଛୁ ଏକ୍ଷଣ ॥
ଏ ପ୍ରକାର ବନସ୍ଥରେ କହନ୍ତେ ବାହକ ।
ଏ ସମୟେ ଏକ ସର୍ପ ହେଲା ଉପସ୍ଥିତ ॥
ବିସ୍ତାର କରିଣ ଫଣା ମନୁଷ୍ୟ ବଚନେ ।
କହିଲା କ୍ରୋଧରେ ସର୍ପ ମନ୍ତ୍ରୀକୁ ତକ୍ଷଣେ ॥
ଏତେଦିନ ଅମ୍ଭେ ତୁମ୍ଭ ନିକଟରେ ଥିଲୁ ।
ତୁମ୍ଭ ପୁଣ୍ୟ ଯୋଗୁ ଅମ୍ଭେ ବଦାସ୍ତ ହୋଇଲୁ॥
ଏକ୍ଷଣି ତୁମ୍ଭଙ୍କୁ ତେଜ ହୋଇଲୁ ବାହାର ।
ତୁମ୍ଭର କଲ୍ୟାଣ ହେଉ ଅହେ ମନ୍ତ୍ରୀବର ॥
ଏହା କହି ପାତାଳକୁ ଗଲା ନାଗମଣି ।
ଦୁଷ୍ଟବୁଦ୍ଧି ମନ ମଧ୍ୟେ ଭାବି କରୁଛି କ୍ଷଣି ॥

ବାହାକମାନଙ୍କୁ ସେହି କ୍ରୋଧେ ମାଡ଼ଦେଲା ।
ଅତଶୀଘ୍ର କୁନ୍ତଳରେ ପ୍ରବେଶ ହୋଇଲା ॥
ଶଙ୍ଖବାଦ୍ୟ ମଙ୍ଗଳର ଶବଦ ଶୁଣିଣ ।
ମନମଧ୍ୟେ ଭାବିଲା ଯେ ଏମନ୍ତ କରଣ ॥
ମୋହର କୁମର କାର୍ଯ୍ୟ କରିଛି ସଫଳ ।
ତେଣୁ ଏ ମଙ୍ଗଳଧ୍ୱନି ହେଉଛି ପୁରର ॥
ଏତେ ବୋଲି ଦୁଷ୍ଟବୁଦ୍ଧି ପୁରମଧ୍ୟେ ଗଲା ।
ବନ୍ଦିଗଣମାନଙ୍କୁ ସେ ଆଗରେ ଭେଟିଲା ॥
ବନ୍ଦିଏ କହିଲେ ତାକୁ ହାତଯୋଡ଼ି କରି ।
କିପାଇଁ ଏଡ଼େ ଚଞ୍ଚଳ ମନ ହେ ତୁମ୍ଭର ॥
ଆପଣଙ୍କ ପତ୍ର ପାଇ ମଦନ କୁମର ।
ଚନ୍ଦ୍ରହାସ୍ୟ ସହ ବିଷୟାର ବିଭାଘର ॥
ବିଭାଘର କରି ସେହୁ ବହୁ ଦାନଦେଲା ।
ଶୁଣି ଦୁଷ୍ଟବୁଦ୍ଧିର ଯେ ମୁହଁ ଜଳିଗଲା ॥
ସମ୍ମୁଖରେ ବିପ୍ରଗଣେ ଦେଖିବାକୁ ପାଇ ।
ବୁଝିଣ ସବୁ ଖବର ଅତି ଦୁଃଖୀ ହୋଇ ॥
ବ୍ରାହ୍ମଣ କହିଲେ ଦୁଷ୍ଟବୁଦ୍ଧିକୁ ଏ କାଳେ ।
ଚନ୍ଦ୍ରହାସ୍ୟ ସହ ବିଷୟା ଯେ ବିଭା ହେଲେ ॥
ଶୁଣି ଦୁଷ୍ଟବୁଦ୍ଧି ବେଗେ ମାରି ଗୋଡ଼ାଇଲେ ।
ଦାନ ଦ୍ରବ୍ୟ ଛାଡ଼ି ବିପ୍ରେ ପଳାଇଣ ଗଲେ ॥
ଚନ୍ଦ୍ରହାସ୍ୟ ରାଜା ହେଉ ଗାୟକ ବୋଲନ୍ତି ।
ଦଣ୍ଡ ଢୋଲ ଯନ୍ତ୍ର ଭାଙ୍ଗି ଦେଲା ବେଗେ ମନ୍ତ୍ରୀ
ଭୟରେ ଗାୟକମାନେ ତହୁଁ ପଳାଇଲେ ।
ତହୁଁ ଖରେ ଯାଇ ମନ୍ତ୍ରୀ ନିଜପୁରେ ମିଳେ
ପୁର ଦ୍ୱାରେ ଯାଇ ଦେଖେ ନାରୀଙ୍କର ଦଳ
ଆନନ୍ଦରେ ଜାଳୁଛନ୍ତି ପ୍ରଦୀପ ସକଳ ॥
ପଚାରିଲେ ଏହି ସବୁ ଉତ୍ସବ କାହାର ।
ଶୁଣି ନରନାରୀମାନେ ଦିଅନ୍ତି ଉତ୍ତର ॥
ବିଷୟାର ସଙ୍ଗେ ଚନ୍ଦ୍ରହାସ୍ୟ ବିଭାଘର ।
କରିଣ ଅଛନ୍ତି ତୁମ୍ଭ ମଦନ କୁମର ॥
ତେଣୁ ମନ୍ତ୍ରୀବର ଏହି ଉତ୍ସବ ହୁଅଇ ।
ଶୁଣି ମୂର୍ଚ୍ଛାଗତ ପ୍ରାୟ ମନ୍ତ୍ରୀବର ହୋଇ ॥
କ୍ରୋଧଭରେ ରମଣୀଙ୍କୁ କଲା ସେ ଧିକ୍କାର ।
ଲଜ୍ଜାନାହିଁ ମୁଖ ଦେଖାଉଛ ମୋ ଆଗର ॥
ଏପରି ସପ୍ତମଦ୍ୱାରେ ପ୍ରବେଶ ହୋଇଲା ।
ଚନ୍ଦ୍ରହାସ୍ୟ କୋଳେ ଝିଅ ବସିଛି ଦେଖିଲା

ମଣିହାର ଫଣି ପରି ତହିଁ ଝୁଲାଉଥିଲେ ।
ଚନ୍ଦ୍ରହାସ୍ୟ ବିଷୟା ଯେ ଚରଣ ବନ୍ଦିଲେ ।
ଏ ସମୟରେ ମଦନ ତହିଁ ପ୍ରବେଶିଲା ।
ପିତାପାଦେ ପଡ଼ି ହାତଯୋଡ଼ି ଛିଡ଼ାହେଲା ।
ପୁତ୍ରକୁ ଦେଖି ସେ ମନ୍ତ୍ରୀ କୋପଭରେ କହେ
କିପାଇଁ ଏମନ୍ତ କାର୍ଯ୍ୟ କଲୁ ରେ ତନୟେ ।
ମୁଁ କିସ ଲେଖିଲି ତାହା ପାଠଣ ରେ କୁମର
ତୁ କିସ ପଢ଼ିଣ କଲୁ ଏପରି ବେଭାର ॥
ଶୁଣିଣ ମଦନ ବୋଲେ ଶୁଣ ହେ ପିତର ।
ଯାହା ପତ୍ରେ ଲେଖା ଥିଲା କଲି ସେ ପ୍ରକାର
ଚନ୍ଦ୍ରହାସେ ବିଷୟାକୁ ପ୍ରଦାନ ମୁଁ କଲି ।
ଗଜ ବାଜି ଧନରତ୍ନ ଯଉତୁକ ଦେଲି ।
ଏ ବିବାହେ ଭଣ୍ଡାରରେ ଥିଲା ଯେତେକ ଧନ
ଅକାତରେ କରି ଅଛି ମୁହିଁ ବିତରଣ ।
ଯେତେକ ବ୍ରାହ୍ମଣ ଭିକ୍ଷୁ ପୁରକୁ ଆସିଲେ ।
ସମସ୍ତଙ୍କୁ ଧନଦାନ ଦେଲି ଆନନ୍ଦରେ ।
ଶୁଣି ଦୁଷ୍ଟବୁଦ୍ଧି ଶିରେ କରାଘାତ କଲା ।
କି କଲୁ ମଦନ ବୋଲି ଦୁଃଖିତ ହୋଇଲା ॥
ମଦନ ବୋଇଲା ପିତା ଆଜ୍ଞା ପାଳି ଶ୍ରମ ।
ଯେବେ ବନକୁ ଗଲେ ସେପରି ମୁଁ ଜାଣ ॥
ଆପଣଙ୍କ ଆଦେଶକୁ ପାଳିଣ ଅଛଇ ।
ଏଥିରେ ମୋହର ପିତା କିଛି ଦୋଷ ନାହିଁ
ଶୁଣି ବୋଲେ ମନ୍ତ୍ରୀ ଆରେ ମୂର୍ଖବୁଦ୍ଧି କଲୁ ।
ମୁହିଁ କିସ ଲେଖିଥିଲି ଏପରି କରିଲୁ ।
ଆଣ ଦେଖିବା ଏକ୍ଷଣି ପତ୍ରକୁ ମୋହର ।
ଶୁଣି ମଦନ ଆଣିଣ ଦେଲା ସେ ପତ୍ରର ॥
ପତ୍ର ପାଇ ମନ୍ତ୍ରୀବର ପୁତ୍ରକୁ ବୋଇଲା ।
ଦୈବ ବଳେ ଏହି ଲେଖା ତୋ ପାଶେ ଆଇଲା ।
ଏଥିରେ ତୋହର ଦୋଷ ନାହିଁ ରେ କୁମର
ମନୁ ଚିନ୍ତା ଛାଡ଼ି ଗଲା ମୋହ ସଙ୍ଗତର ॥
ଚନ୍ଦ୍ରହାସ୍ୟକୁ ଅତ୍ୟନ୍ତ ସମାଦର କଲା ।
ଚତୁର୍ଥୀ ବିଧାନ ଶୁଭମତେ କରାଇଲା ॥
ଦୁଷ୍ଟବୁଦ୍ଧି ପାପମତି ହୃଦେ ହଳାହଳ ।
ମୁଖେ ଅମୃତ ବଚନ ଭାଷଇ କେବଳ ।
ଏଥୁଅନ୍ତେ ଦୁଷ୍ଟବୁଦ୍ଧି ଭାବେ ମନେ ମନେ ।
ବାଞ୍ଛିତ କାର୍ଯ୍ୟ ଏଥା ଘଟିଲା ଏକ୍ଷଣେ ।

କି କରିବି ଏତେ ଯତ୍ନ କଲି ବୁଝିଣ ନ ପାରେ ।
କେତେବେଳ ମନ୍ତ୍ରଣା ମୋ ତାର ତାହାକୁ ପଶ୍ଚାତେ
ପ୍ରଭାତରୁ ମୋର ଆଶା ନ ହେବ ସଫଳ ।
କନ୍ୟା ହେଲା ମୋର ଏବେ ଯାତନାର ସ୍ଥଳ ।
ବିଷୟା ଚନ୍ଦ୍ରହାସ୍ୟ ଏ ମିଳି ଦେନିଜନ ।
ନିଶ୍ଚୟ ମୋର କୁଳକୁ କରିବେ ଛେଦନ ।
ବିଷୟା ବିଧବା ହେଉ ଚିନ୍ତା ନାହିଁ ମୋର
କୁପରି କରିବି ଚନ୍ଦ୍ରହାସ୍ୟକୁ ସଂହାର ॥
ଏତେ ଭାବି ମନେ ମନେ ଚଣ୍ଡାଳେ ଡାକିଣ ।
କହାଇଲେ ତୁମ୍ଭେମାନେ ଶୁଣ ମୋ ବଚନ
ନଗର ବାହାରେ ତୁମ୍ଭେ ଦେବୀଙ୍କ ମନ୍ଦିରେ ।
ଖଣ୍ଡା ଧେନିକରି ରହିଥାଅ ଗୋପନରେ ॥
ଦୁଇଜଣେ ଦୁଇକୋଣେ ଗୋପନେ ରହିବ
ଯେଉଁ ଲୋକ ପୂଜାଦ୍ରବ୍ୟ ଘେନିକରି ଯିବ ।
ତାହାକୁ ସେଠାରେ ତୁମ୍ଭମାନେ ବିନାଶିବ ।
ମୋହର ଆଜ୍ଞାକୁ କେବେ ହେଳା ନ କରିବ
ପୂର୍ବରେ ଯେପରି ମୋତେ ଦେଲ ଠକାଇଣ
ଏଥରକ ସେପରି ତୁମ୍ଭେ ନ କରିବ ଜାଣ ॥
କଲେ ମୋହର ହସ୍ତରେ ସବଂଶେ ମରିବ ।
ମୋର ଏହି କଥା ଅଟେ ଜାଣିଥାଅ ଧ୍ରୁବ ॥
ଯେତେବେ ମୋର କାର୍ଯ୍ୟ ତୁମ୍ଭେ କରିବ ହେ ବୀର
ନିଶ୍ଚୟ କରୁଛି ଦେବି ବହୁ ପୁରସ୍କାର ॥
ଶୁଣିଣ ମନ୍ତ୍ରୀଙ୍କ ବାଣୀ ସେ ଚଣ୍ଡାଳ ଗଣ ।
ଖଡ୍ଗ ନେଇ ଦେବୀ ଗୃହେ କରିଲେ ଗମନ
ତହିଁପରେ ଦୁଷ୍ଟବୁଦ୍ଧି କହେ ଚନ୍ଦ୍ରହାସେ ।
ହିତବାକ୍ୟ ଶୁଣ ବତ୍ସ ଯାହା ମୁହିଁ ଭାଷେ ।
ବିଭାଘରେ କୁଳପ୍ରଥା ଅମ୍ଭମାନଙ୍କର ।
ପୂଜା ଘେନି ଯାନ୍ତି ବରୁ ଦେବୀଙ୍କ ପାଶର ।
ଅଛି ତୁମ୍ଭେ ଦେବୀ ମନ୍ଦିରକୁ ବେଗେ ଯାଅ ।
ଭୋଗଦ୍ରବ୍ୟ ନେଇ ତାଙ୍କ ପୂଜାକୁ କରାଅ ।
ଏହିପରି ପାପମତି ବୋଇଲା ବଚନ ।
ଶୁଣି ଆନନ୍ଦିତ ହେଲା ଚନ୍ଦ୍ରହାସ୍ୟ ମନ ।
ବୋଇଲା ହେ ତାତ ଆପଣଙ୍କର ଆଜ୍ଞାରେ ।
ପୂଜାଦ୍ରବ୍ୟ ଘେନି ମୁହିଁ ଯିବି ଆନନ୍ଦରେ ।
ଏମନ୍ତ କହିଣ ଚନ୍ଦ୍ରହାସ୍ୟ ଘରେ ଗଲା ।
ଦୁଷ୍ଟବୁଦ୍ଧି କୁଳ ପୁରୋହିତେ ଡକାଇଲା ।

ଗାଳବ ନାମରେ ତାଙ୍କ କୁଳ ପୁରୋହିତ ।
ତାକୁ ଡାକି ଦୁଷ୍ଟବୁଦ୍ଧି କହିଲା ଏମନ୍ତ ।
ଶୁଣ ଅହେ ପୁରୋହିତ ମୋହର ବଚନ ।
ଏହି ଚନ୍ଦ୍ରହାସ୍ୟ ଅଟେ ମୋର ଶତ୍ରୁଜାଣ ।
ଏହାକୁ ମାରିବା ପାଇଁ ଯେତେ ଚେଷ୍ଟା କଲି
କେଉଁଣସି ମତେ ତାକୁ ମାରି ନ ପାରିଲି ॥
ଭାବିଥିଲି ଅମ୍ଭ ରାଜାଙ୍କର ପୁତ୍ର ନାହିଁ ।
ରାଜାଅନ୍ତେ ମୋର ପୁତ୍ର ହେବ ନରସାଇଁ ॥
ତେଣୁ ଚନ୍ଦନାବତୀ ପୁରକୁ ମୁହିଁ ଗଲି ।
କପଟ କରିଣ ଚନ୍ଦ୍ରହାସ୍ୟେ ପଠାଇଲି ॥
ଲେଖାଦେଇ ପଠାଇଲି ତା ହସ୍ତରେ ମୁହିଁ ।
ବିଷଦେଇ ମଦନେ ଯେ ମାରିବାର ପାଇଁ ।
ଦୈବବଳେ ସେହି ଲେଖା ଅନ୍ୟପରି ହେଲା
ବିଷୟାକୁ ବିଭାଦେବ ବୋଲି ଲେଖାଗଲା ।
ମଦନ ସେ ଲେଖା ପାଇ ବିଷୟା ସହିତ ।
ବିବାହ କରାଇ ଚନ୍ଦ୍ରହାସ୍ୟକୁ ତୁରିତ ।
ଚନ୍ଦନାବତୀ ନଗରର କୁଳିନ୍ଦକୁ ମୁହିଁ ।
ବେଢ଼ିଦେଇ ବନ୍ଦଘରେ ରଖିଣ ଅଛଇ ।
ଆନନ୍ଦମନେ ଆସିଲି ଘରକୁ ମୋହର ।
ଭାବିଥିଲି ମରିଥିବ ଚନ୍ଦ୍ରହାସ୍ୟ ବୀର ।
ମାତ୍ର ଦେଖିଲି ଯେ ଏହା ହୋଇଛି ଘଟଣ ।
ଜୀବନେ ମାରିବି ଚନ୍ଦ୍ରହାସେ ମୁହିଁ ପୁଣ ।
ଏହିଉପାୟ ଭାବୁ ଅଛଇ ମନରେ ।
ଚଣ୍ଡୀପାଟଣ ପୂଜାଦ୍ରବ୍ୟ ଦେଇଣ ଯତ୍ନରେ ॥
ଚନ୍ଦ୍ରହାସେ ପୂଜା ପାଇଁ ପଠାଇବି ଦେଖ ।
ଚଣ୍ଡାଳଗଣଙ୍କ ଦ୍ୱାରା ବଧ କରାଇବି ॥
ଆଗରୁ ଚଣ୍ଡାଳଗଣ ପଠାଇ ଅଛଇ ।
ସେମାନେ ପ୍ରଚ୍ଛଭାବରେ ରହିଛନ୍ତି ତହିଁ ॥
ଏସନ ଶୁଣିଣ ପୁରୋହିତ ଆନନ୍ଦରେ ।
ପୂଜା ଦ୍ରବ୍ୟମାନ ସଜାଡିଲେ ତତକାଳେ ।
ଏ ସମୟେ ମଦନକୁ ଡାକି ମନ୍ତ୍ରୀବର ।
ବୋଲେ ତୁମ୍ଭେ ଡାକିଆଣ ଚନ୍ଦ୍ରହାସ୍ୟ ବୀର ।
ଏ ସବୁ ଘଟଣା ଯେ ମଦନ ଜାଣେ ନାହିଁ ।
ଆନନ୍ଦ ମନରେ ଗଲା ଡାକିବାର ପାଇଁ ।
ବୋଇଲା କହନ ଆସ ଅହେ ବୀରବର ।
ପିତାଙ୍କର ଆଜ୍ଞା ପୂଜି ଯିବ ହେ ମନ୍ଦିର ॥

ମଦନ ଏପରି କହି ଗମନ କରିଲା ।
ଏଥିଅନ୍ତେ ଶୁଣ ଯେଉଁ ବିଷୟ ଘଟିଲା ।
ମନ୍ଦାର ଫୁଲ ପରାୟେ ହୋଇଣ ବଦନ ।
ପଶ୍ଚିମ ଦିଗକୁ ସେହି କରରେ ଗମନ ॥
ତାହା ଦେଖି ଆନନ୍ଦିତ ହୋଇ ଚନ୍ଦ୍ରହାସ୍ୟ ।
ଚଣ୍ଡୀଙ୍କର ପୂଜା ପାଇଁ କରି ଅଭିଳାଷ ॥
କୁସୁମ ଚନ୍ଦନ ଆଦି ନେଇ ଉପହାର ।
ନିଜ ନାରୀ ବିଷୟାକୁ କହିଣ ସକଳ ॥
ବୋଇଲା ସଜନୀ ଶୁଣ ମୋହର ବଚନ ।
ଦେବୀ ପୂଜା ପାଇଁ ଡକାଇଲେ ପିତା ପୁଣ ।
ବୋଇଲେ ଅମ୍ଭକୁଳର ଦେବୀର ଅଛଇ ।
ବିଭା ହୋଇଣ ଦେବୀଙ୍କୁ ପୂଜନ୍ତି ସେ ଯାଇ ।
ତେଣୁକରି ଦେବୀଙ୍କି ମୁଁ ପୂଜିବା ନିମନ୍ତେ ।
ଯାଉଅଛି ବିମନ ନୋହିବୁ ସଖୀ ଚିତ୍ତେ ॥
ଏପରି କହିଣ ବୀର ମେଲଣି ମାଗିଣ ।
ଦୁଷ୍ଟବୁଦ୍ଧି ପାଶେ ପ୍ରବେଶିଲେକ ବହନ ।
ଦେଖି ଦୁଷ୍ଟବୁଦ୍ଧି ଅତି ଆନନ୍ଦ ହୋଇଲା ।
ଶୀଘ୍ର ଚଳିବାକୁ ବାବୁ ଯତ୍ନରେ ବୋଇଲା ।
ଦେବୀ ପୂଜା ଦ୍ରବ୍ୟ ସବୁ ଥାଳରେ ସଜାଇ ।
ଦୁଷ୍ଟବୁଦ୍ଧି ଚନ୍ଦ୍ରହାସ୍ୟ କରେ ଦେଲା ନେଇ ।
ବୋଇଲା ଦେବୀଙ୍କ ଗୃହେ ଯାଇଣ କୁମର ।
ପୂଜାକରି ଭଗବତୀଠାରୁ ଘେନ ବର ॥
ଶୁଣି ଚନ୍ଦ୍ରହାସ୍ୟ କରେ ଘେନି ପୂଜାଥାଳି ।
ଧୀରେ ଧୀରେ ଦେବୀଙ୍କ ମନ୍ଦିରେ ଗଲା ଚଳି
ନାରଦ ବୋଇଲେ ଏବେ ଶୁଣ ବୀର ପାର୍ଥ ।
ଏଥିଅନ୍ତେ ଯାହା କଲେ କୁନ୍ତଳର ନାଥ ॥
ଅଶୁଭ ସ୍ୱପନ ସେହି ନିଦ୍ରାରେ ଦେଖିଲେ ।
ନିଦ୍ରା ତେଜି ଗାଳବ ଋଷିଙ୍କି ଡକାଇଲେ ।
ବୋଇଲେ ହେ ମୁନି ଆଜ ଦେଖିଲି ଅଶୁଭ ।
ନିକଟରେ ମୃତ୍ୟୁ ମୋର ନିଶ୍ଚୟ ଘଟିବ ।
ପୂର୍ବେ ଶୁଭ ଦିନେ ଦାଲ୍ଭ୍ୟ ମୁନିବର ।
ଅନଙ୍ଗ ନୃପତି ପାଶେ କହିଲେ ଏ ଗୀର ।
ଯୋଗୀ ଋଷିମୁନିମାନେ ଦେଖିଲେ ଅବଶ୍ୟ ।
ଜାଣିଣ ରଖନ୍ତି ତାଙ୍କ ମୃତ୍ୟୁକାଳ ଗୋଟି ।
ଯାହାକୁ ନ ହୁଏ ଦୃଶ୍ୟ ଧ୍ରୁବ ଅରୁନ୍ଧତୀ ।
ବର୍ଷେକ ମଧ୍ୟରେ ସେହି ମରନ୍ତି ଯତ ॥

ଅଦତ୍ୟ ଅନଳ ତେଜ ନ ଲାଗେ ଯାହାଙ୍କୁ ।
ଏଗାର ମାସରେ ମୃତ୍ୟୁ ଘଟଇ ତାହାଙ୍କୁ ॥
ଯେ ଦେଖଇ ସ୍ୱପ୍ନେ ବିଷ୍ଠା ସ୍ୱର୍ଣ୍ଣ ରୌପ୍ୟମାନ
ଦଶମାସେ ତାହାର ଯେ ହୁଅଇ ମରଣ ।
ପିଶାଚ ଗନ୍ଧର୍ବ ପ୍ରେତ ସ୍ୱପ୍ନେ ଯେ ଦେଖଇ ।
ନବମାସେ ତାହାର ଯେ ମୃତ୍ୟୁଟି ଘଟଇ ।
ସ୍ୱର୍ଣ୍ଣରୌପ୍ୟ ବସ୍ତ୍ର ସ୍ୱପ୍ନେ ଦେଖେ ଯେହୁ ଜାଣ
ଅଷ୍ଟମାସେ ମୃତ୍ୟୁ ଘଟେ ନ ହୁଅଇ ଆନ ॥
ଶୂନ୍ୟପାଦ ଦେଖେ ସପ୍ତ ମାସରେ ମରଣ ।
ଶାସ୍ତ୍ରର ବଚନ ଏହୁ ନ ହୋଇବ ଆନ ॥
ଗୃଧ୍ର କାକ କପୋତ ଯା ଶିରରେ ବସଇ ।
ଷଷ୍ଠମାସେ ମୃତ୍ୟୁ ତାର ଅବଶ୍ୟ ଘଟଇ ।
ଯେ ଦେଖେ ନାସରେ ବସି କାକ ଧଏ ରବ
ପାଞ୍ଚମାସ ମଧ୍ୟରେ ସେ ନିଶ୍ଚୟ ମରିବ ।
ନିଜ ଛାୟା ବିପରୀତ ଭାବେ ଯେ ଦେଖଇ ।
ଚାରିମାସ ମଧ୍ୟେ ତାର ମରଣ ଲେଖଇ ।
ବହୁତ ଜଳ ଯେ ପାନ କରଇ ସ୍ୱପ୍ନରେ ।
ତିନିମାସ ମଧ୍ୟେ ନିଶ୍ଚେ ସେହୁ ପ୍ରାଣୀ ମରେ ।
ଋଷ ଭଡି ସଙ୍ଗେ ଯେହୁ ଦକ୍ଷିଣେ ଗମଇ ।
ବେନିମାସେ ମୃତ୍ୟୁ ତାର ନିଶ୍ଚୟ ହୁଅଇ ।
ରଙ୍ଗବସ୍ତ୍ର ଟିକେ ନାରୀସଙ୍ଗେ ଦକ୍ଷିଣରେ ।
ଗମନେ ମରଣ ହୁଏ ପ୍ରଥମ ମାସରେ ।
ଉଲଗ୍ନ ବାତୁଳଙ୍କୁ ଯେ ସ୍ୱପ୍ନେ କଥା କୁହେ ।
ଅଳପ ଦିବସେ ତାର ମରଣଟି ହୁଏ ।
ଏହୁ ରୂପେ ଗାଲବଙ୍କୁ ସକଳ କହିଲେ ।
ଗାଲବ ବିଗୁର ମନେ ଚାଅସି ବୋଇଲେ ॥
ମୃତ୍ୟୁକାଳ ନିକଟ ଯେ ହୋଇଲା ତୁମ୍ଭର ।
ବିଳମ୍ବ ନ କର ବେନେ ଚଳ ନୃପବର ॥
ତାହା ଶୁଣି ନୃପମଣି ବୋଇଲେ ବଚନ ।
ରାଜ୍ୟଦଣ୍ଡ କାହାକୁ କରିବା ସମର୍ପଣ ।
ଅମ୍ଭର ନଗରେ ଥିଲା ଯେବଣ କୁମର ।
ତାକୁ ଅଣି ଅଭିଷେକ କରାଅ ସତ୍ୱର ॥
ମନ୍ତ୍ରୀର ପୁତ୍ର ମଦନ ପାଶେ ବସିଥିଲେ ।
ତାକୁ ଗୃହିଁ ନୃପସାଇଁ ବଚନ ବୋଇଲେ ।
ବୋଇଲେ ମଦନ ତୁମ୍ଭେ ଶୀଘ୍ର ଚଳିଯିବ ।
କେରଳ କୁମର ଚନ୍ଦ୍ରହାସ୍ୟଙ୍କୁ ଅଣିବ ॥

ବିଳମ୍ବ ନ କର ବେଗେ ଯାଅ ରେ କୁମର ।
ମୁହୂର୍ତ୍ତି ମଧ୍ୟରେ ଅଣ ଚନ୍ଦ୍ରହାସ୍ୟ ବୀର ॥
ନୃପତି ବାକ୍ୟେ ଗାଲବ ମଦନଙ୍କୁ ଗୃହିଁ ।
ବୋଇଲେ ଚନ୍ଦ୍ରହାସ୍ୟଙ୍କୁ ଘେନି ଅସ ଯାଇ
ଆଜ୍ଞା ପାଇ ମଦନ ଯେ ବେଗେ ଚଳିଗଲା ।
ପଥେ ଯାଉ ଚନ୍ଦ୍ରହାସ୍ୟ ଆସୁଛି ଭେଟିଲା ॥
ବାଟରେ ଦେଖନ୍ତେ ସେହୁ ମଦନ କୁମର ।
ବୋଇଲେ କେଉଣେ ଯାଉଛ ଅହେ ବୀରବର
ଚନ୍ଦ୍ରହାସ୍ୟ ବୋଲେ ଦେବୀ ପୂଜି ଯାଉଛଇଁ ।
ଶୁଣିଣ ମଦନ ବୋଲେ ଫେରିଯାଅ ଭାଇ ।
ତୁମ୍ଭେ ବେଗେ ଯାଅ ଚଳି ରାଜାଙ୍କ ସ୍ଥାନକୁ ।
ମୁଁ ଯାଇଁ କରିବି ପୂଜା ଗ୍ରାମ ଦେବତୀଙ୍କୁ ॥
କୁନ୍ତଳ ନୃପତି ଅତି ମହାଶୋକ କଲେ ।
ଅପଣା ଛାୟାରେ ନିଜ ଶିର ନ ଦେଖିଲେ ॥
ନିକଟରେ ମୃତ୍ୟୁ ହେବ ସ୍ୱପନେ ଜାଣିଲେ ।
ଗାଲବ ଋଷିଙ୍କୁ ତାହା ସକଳ କହିଲେ ।
ଋଷିଙ୍କ ବଚନେ ରାଜା ହେବେ ବନଗୃସୀ ।
ତୁମ୍ଭ ହସ୍ତେ ରାଜ୍ୟଭାର ସମର୍ପଣ କରି ॥
ମୋତେ ଦେଲେ ଆଜ୍ଞା ବେଗେ ତୁମ୍ଭ ନିବା ପାଇଁ
ତୁମ୍ଭେ ଯାଅ ରାଜାପାଶେ ମୁଁ ପୂଜି ଯିବଇଁ ॥
ଦେଇ ନୃପବର ରାଜ୍ୟ ସମ୍ପତ୍ତି ତୁମ୍ଭଙ୍କୁ ।
ସନ୍ନ୍ୟାସୀ ହୋଇଣ ସେହୁ ଯିବେଟି ବନକୁ ।
ଏତେ କହି ମଦନ ଯେ ପୂଜାଥାଳି ଘେନି ।
ଦେବୀଙ୍କ ମନ୍ଦିରେ ଚଳିଗଲା ସେହୁକ୍ଷଣି ॥
ଯାଉନ୍ତେ ମାର୍ଗରେ କଳି ଦେଖିଲା ପଥରେ ।
ଉଲ୍ଲୁକ ଅସିଣ ଉଡ଼ି ବସିଲା ମଥାରେ ॥
ଦେବୀଙ୍କ ମନ୍ଦିର ପାଖେ ହୁଅନ୍ତେ ପ୍ରବେଶ ।
ଅଇଲେ ଚଣ୍ଡାଳମାନେ ଘେନି ତୀକ୍ଷ୍ଣ ଅସ୍ତ୍ର
ନ ଚିହ୍ନି ଖଡ଼ଗ ଘେନି ପକାଇଲେ ହାଣି ।
ଛାଡି ପଳାଇଲେ ଶେଷେ ମନ୍ତ୍ରୀ ପୁତ୍ର ଜାଣି ।
ପଡିବା ବେଳେ ମଦନ ହରି ଚିନ୍ତାକଲା ।
ରାମକୃଷ୍ଣ ବନମାଳୀ ତୁଣ୍ଡରେ ଜପିଲା ।
ଚନ୍ଦ୍ରହାସ୍ୟ ମଦନ ହସ୍ତରେ ଦେଇ ଥାଳି ।
ତାର ଅଶ୍ୱପୃଷ୍ଠେ ଚଢି ରାଜା ପାଶେ ଚଳି ॥
ହରିନାମ ଗୋଟି ହୃଦେ ଜପି ଚନ୍ଦ୍ରହାସ୍ୟ ।
କୁନ୍ତଳ ନୃପତି ପାଶେ ହୋଇଲା ପ୍ରବେଶ ॥

ନୃପତି ଚରଣତଳେ କଲା ନମସ୍କାର ।
ଦେଖିଣ ଆନନ୍ଦ ହେଲେ କୋନ୍ତଳ ଈଶ୍ୱର ॥
ଗାଲବ ଋଷିଙ୍କ ପାଶେ ଡକାଇ ଆଣିଲେ ।
ତାଙ୍କ ହସ୍ତେ ଚନ୍ଦ୍ରହାସ୍ୟ ସମର୍ପଣ କଲେ ॥
ଏଥୁଅନ୍ତେ ରାଜକନ୍ୟା ଚମ୍ପକମାଲିନୀ ।
ଚନ୍ଦ୍ରହାସ୍ୟେ ବିଭା ତାଙ୍କୁ ଦେଲେ ନୃପମଣି ॥
କନ୍ୟାଗୋଟି ବିଭାଦେଇ ରାଜ୍ୟ କଲେ ରାଜା ।
ସମସ୍ତ ଜନ ପରଜା କଲେ ପାଦ ପୂଜା ।
ନୃପ ବୋଲେ ପରମ ବୈଷ୍ଣବ ଚନ୍ଦ୍ରହାସ୍ୟ ।
ଏହାଯୋଗେ ସଂସାରରେ ଉପୁଜିବ ଯଶ ।
ରାଜ୍ୟ ଧନ ସିଂହାସନ ଚନ୍ଦ୍ରହାସ୍ୟେ ଦେଇ ।
ବନକୁ ଯିବାକୁ ସଜ ହେଲେ ନରସାଇଁ ॥
ନାନାଦି ତୀର୍ଥମାନଙ୍କ ଜଳ ଅଣାଇଲେ ।
ଚନ୍ଦ୍ରହାସ୍ୟେ ବିଧିମତେ ଅଭିଷେକ କଲେ ॥
ସାଧୁଜନଙ୍କ ପଣ୍ଡିତଙ୍କୁ ନିମନ୍ତ୍ରି ଆଣିଣ ।
ଚନ୍ଦ୍ରହାସ୍ୟେ କୋନ୍ତଳରେ ରାଜାକଲେ ପୁଣ
ଦୂର୍ବାଧାନ୍ୟ ଦେଇଣ ଆଶିଷ ସର୍ବେ କଲେ ।
କୋନ୍ତଳ ନୃପତି ଆଦି ସମସ୍ତ ଦେଖିଲେ ।
ଏଥୁଅନ୍ତେ କୋନ୍ତଳ ଦେଶର ନୃପସାଇଁ ।
ବନକୁ ଗମନ କଲେ ଯୋଗୀବେଶ ହୋଇ ।
ଯାହାକୁ ଯେ ସହାୟ ଅଛନ୍ତି ଚକ୍ରଧର ।
ତାହାର ଅନିଷ୍ଟ କରିପାରେ କେଉଁ ଛାର ।
ଶ୍ରୀହରିଙ୍କ ପରମ ଭକତ ଜାଣ ସେହି ।
ତାହାର କି ଦ୍ରୋହ ଚିନ୍ତି ପାରନ୍ତି ହେ କେହି
ହସ୍ତୀପୃଷ୍ଠେ ଚନ୍ଦ୍ରହାସ୍ୟ ହୋଇଲା ବାହାର ।
ବାଟେ ଜନ ପ୍ରଜାଏ କରନ୍ତି ନମସ୍କାର ।
ବାଦ୍ୟନାଦ ଶବଦରେ ରାଜ୍ୟ ଉଚ୍ଛୁଳିଲା ।
ହସ୍ତୀପୃଷ୍ଠେ ଚନ୍ଦ୍ରହାସ୍ୟ ନଗ୍ର ବୁଲିଗଲା ।
ନୂଆ ରାଜା ହୋଇଣ ସେ ଭ୍ରମଇ ଦେଶରେ ।
ଦୁଷ୍ଟବୁଦ୍ଧି ଦ୍ୱାରେ ଗଲେ ରଜନୀ ଶେଷରେ ।
ଦ୍ୱାରୀକି ଡାକି ଡଗରେ କହନ୍ତି ବଚନ ।
ରାଜା ଷଟେକ କରଛନ୍ତି ମନ୍ତ୍ରୀ ଡାକି ଆଣ ।
କୋନ୍ତଳର ନୃପତି କଲେକ ବନବାସ ।
ଏ ଦେଶରେ ରାଜା ହୋଇଛନ୍ତି ଚନ୍ଦ୍ରହାସ୍ୟ ।
ଚମ୍ପକମାଳିନୀକୁ ସେ ବିଭା ହୋଇଛନ୍ତି ।
ହସ୍ତୀର ପୃଷ୍ଠରେ ଦେଖ ନଗରେ ଭ୍ରମନ୍ତି ।
ମନ୍ତ୍ରୀଙ୍କୁ ଦେଖିବା ପାଇଁ ଆଇଲେ ଏଠାକୁ ।
ବେଗହୋଇ ଯାଇଁ ଦ୍ୱାରୀ କୁହ ଯା ତାହାଙ୍କୁ
ତାହା ଶୁଣି ଦ୍ୱାରପାଳ ବେଗ ହୋଇ ଗଲା ।
ଚନ୍ଦ୍ରହାସ୍ୟ ବାର୍ତ୍ତା ମନ୍ତ୍ରୀ ଆଗରେ କହିଲା ।
ଚନ୍ଦ୍ରହାସ୍ୟ ଯେ ତୁମ୍ଭର ଅଟଇ ଜୁଆଇଁ ।
କୋନ୍ତଳରେ ସେହୁ ହୋଇଛନ୍ତି ନୃପସାଇଁ ।
ନୃପକନ୍ୟା ଚମ୍ପକମାଳିନୀ ବିଭାକଲେ ।
ରାଜ ଅଭିଷେକ ହୋଇ ନଗ୍ରରେ ବୁଲିଲେ ॥
ତୁମ୍ଭଙ୍କୁ ଦେଖିବା ପାଇଁ ଆଇଲେ ଏଠାକୁ ।
ବେଗେ ମନ୍ତ୍ରୀ ଦରଶନ କର ଯା ତାହାଙ୍କୁ ।
ତାହା ଶୁଣି ମନ୍ତ୍ରୀ ଯେ ଦ୍ୱାରୀକି ଦେଲା ଗାଳି
ଅଜ୍ଞ ସେ କଥା ନ କହୁ ବେଗେ ଯାଅ ଚଳି
ମୋହର ଯେ ମହାରାଜା କୁନ୍ତଳ ଈଶ୍ୱର ।
ତହୁଁ ଚନ୍ଦ୍ରହାସ୍ୟ ରାଜା କହୁଛୁ ତୁଣ୍ଡର ॥
କୋନ୍ତଳ ନଗ୍ରର ରାଜା ଅନ୍ୟ କେ ହୋଇବ ।
ଏକଥା ନିଷ୍ଟପୁ ନୁହେଁ ମନେ ତୋର ଭାବ ।
ଶୁଣିଣ ବୋଲଇ ଦ୍ୱାରୀ ମୋତେ କ୍ଷମା ଚଳ
ଦେଖନ୍ତୁ ଦ୍ୱାରରେ ଉଭା ଛନ୍ତି ମହୀପାଳ ॥
ଏମନ୍ତେ କହନ୍ତେ ଚନ୍ଦ୍ରହାସ୍ୟ ନରସାଇଁ ।
ପତ୍ନୀ ସହିତରେ ମନ୍ତ୍ରୀ ଆଗେ ହେଲେ ଯାଇଁ
ଦେଖି ଦୁଷ୍ଟବୁଦ୍ଧି ଅତି ମଳିଣ ଗୃହଁନ୍ତି ।
ମଦନ କି ରାଜା ହୋଇ ଆଇଲା ବୋଇଲା ।
ବେଗେଣ ଡାକିଲେ ମନ୍ତ୍ରୀ ଆସରେ ମଦନ ।
କେହୁ ନ ଗୃହିଁଲେ ତାଙ୍କୁ ଟେକିଣ ବଦନ ॥
ରାଜା ରାଣୀ ଦୁଇଜଣ ଅପାଙ୍ଗେ ଗୃହିଁଲେ ।
ଚରଣରେ ପଡ଼ି ଦଣ୍ଡବତକୁ କହିଲେ ॥
ବେନିହସ୍ତେ ମନ୍ତ୍ରୀ ତାଙ୍କୁ ଉଠାଇଲେ ଧରି ।
ବୋଇଲେ ନ ଗଲ କିପାଁ ଚଣ୍ଡୀପୂଜା କରି ।
କୁଳ ବ୍ୟବହାର ନାଶେ କୁଳ ହେବ ନାଶ ।
ତାହା ଶୁଣି ମନ୍ତ୍ରୀକି କହନ୍ତି ଚନ୍ଦ୍ରହାସ୍ୟ ॥
ପୂଜିବ କୁ ଯିବାବେଳେ ଚଣ୍ଡୀଙ୍କ ଚରଣ ।
ବାଟରେ ମଦନ ମୋତେ କଲେକ ବାରଣ ॥
କହିଲେ ଯେ ଆଜ୍ଞା ଦେଇଛନ୍ତି ନରପତି ।
ବେଗ ବେଗ ହୋଇ ତୁମ୍ଭେ ଯାଅ ତାଙ୍କ କତି
ମୁହିଁ ତୁମ୍ଭ ପାଇଁ ଯାଉଅଛି ପୂଜା ଢାଳି ।
ଏତେବୋଲି ମୋର ହସ୍ତୁ ନେଲେ ଅର୍ଘ୍ୟଥାଳି

ଥାଳିରେଣ ମଦନ ଯେ କରନ୍ତେ ଗମନ ।
ମୁହିଁ ତହୁଁ ଚଳିଗଲି ନୃପତି ଭୁବନ ॥
ଦଣ୍ଡଛତ୍ର ଦେଇ ରାଜା କନ୍ୟାଚାରି ଦେଲେ
ରତ୍ନସିଂହାସନେ ଅଭିଷେକ କରାଇଲେ ।
ସନ୍ନ୍ୟାସୀ ହୋଇଣ ରାଜା ଗମିଲେ ବନକୁ ।
ହସ୍ତୀ ଚଢ଼ିଅଇଲି ମୁଁ ନଗ୍ର ବୁଲିବାକୁ ।
ତାହା ଶୁଣି ମନ୍ତ୍ରୀର ବୁଡ଼ିଲା ନିଜଜ୍ଞାନ ।
ବେନିକର ହୃଦେ ମାରି କରଇ କ୍ରନ୍ଦନ ।
ବୋଇଲା ମୁଁ ପାପବୁଦ୍ଧି କଲଇଁ ଯେତେକ ।
ମୋହର ଉପରେ ତାହା ପଡ଼ିଲା ପ୍ରତ୍ୟକ୍ଷ ।
ଜାଣି ଶୁଣି ଧର୍ମପଥ ଯେ ଜନ ଛାଡ଼ଇ ।
ନାନାଦି ଯାତନା ସେହି ଜନ ଯେ ଭୁଞ୍ଜଇ ॥
ପରର ଅମନ୍ତ୍ର ଯେହୁ ଖୋଜୁ ଥାଇ ଗାଢ ।
ସେହିଗତେ ସେହିଲୋକ ପଡଇ ନିଯୁତ ।
ଚନ୍ଦ୍ରହାସ୍ୟ ଶ୍ରୀହରିର ଭକତ ମୁଁ ଜାଣି ।
ମୁହିଁ ମୂଢ଼ ତାଙ୍କୁ ଦ୍ରୋହ ଚିନ୍ତାକଲି ପୁଣି ।
ତହିଁରେ ଅଧର୍ମ ପୁଣ ହୋଇଲା ମୋହର ।
ସର୍ବଦା ଦୋଷେହା ମୁହିଁ ହେଲି ଶ୍ରୀହରିର ॥
ଯାହିବାକୁ ଅଛି ମାର ବେନିଘଣ୍ଡ ଗତ ।
ଦେବୀଙ୍କ ଗୃହକୁ ମନ୍ତ୍ରୀ ବେଗେ କଲେ ଗତି
ପ୍ରେତଗଣମାନଙ୍କୁ ସେ ବାଟରେ ଦେଖିଲେ ।
ମନୁଷ୍ୟ ବଗୃର ତାଙ୍କୁ ବଚନ ବୋଇଲେ ॥
ବୋଇଲେ ପୂର୍ବେ ମୁଁ ଯେଉଁ ପାପ କରିଥିଲି
ସେହି ଅଧର୍ମର ଫଳେ ଏ ଦୁଃଖ ଭୁଞ୍ଜିଲି ॥
ଶୁଣି ପ୍ରେତଗଣ ତାଙ୍କୁ କିଛି ନ କହିଲେ ।
ମୁଖକୁ ନ ଚାହିଁ ସର୍ବେ ଅଦୃଶ୍ୟ ହୋଇଲେ
ତହୁଁ ଯାଇ ଚଣ୍ଡୀ ଗୃହେ ହୋଇଲା ପ୍ରବେଶ ।
ଦେଖିଲା ମଦନ ତହିଁ ହୋଇଅଛି ନାଶ ॥
ହାହା କରି କପାଳରେ ହସ୍ତକୁ ମାଇଲା ।
କେଣେ ପୁତ୍ର ଛାଡିଗଲୁ ବୋଲିଣ ବୋଇଲା
କୋଳେ ଧରି ବୋଲେ ଉଠ ମଦନ କୁମର
ତୋହ ଲାଗି ଘର ମୋର ହେଲା ଅନ୍ଧକାର ।
ଶ୍ରୀହରି ଭକ୍ତକୁ ମୁହିଁ ଦୋଷେହା ହୋଇଲି
ସେହି ପାପରେ କୁମର ତୋତେ ହରାଇଲି ॥
ତୁହି ପୁଣ ଅଟୁ ପୁତ୍ର ଶ୍ରୀହରି ଭକତ ।
ତୋତେ କିପାଁ ଏ ଦଶା ହୋଇଲା ପରାପତ ॥

ଏତେକ ବୋଲି ମନ୍ତ୍ରୀବର ବହୁତ କାନ୍ଦିଲା ।
ସ୍ତମ୍ଭରେ ମୁଣ୍ଡକୁ ମାରି ଜୀବନ ଛାଡ଼ିଲା ॥
ପିତାପୁତ୍ର ଦୁହେଁ ଦେବୀଗୃହେ ହେଲେ ହତ
ଶ୍ରୀହରିର ମହିମା ସେ ଦଇବ ଅଦ୍ଭୁତ ॥
ପିତା ପୁତ୍ର ଦୁଇ ଚଣ୍ଡୀ ମନ୍ଦିରେ ରହିଲେ ।
ଅବ ଦିନ ଉଦୟ ଚିବରେ ରବି ହେଲେ ।
ଏଣେ ଚନ୍ଦ୍ରହାସ୍ୟ ବିଷୟାର ପାଶେ ଗଲା ।
ହେମ୍ବଭରେ ତାଙ୍କୁ ସଙ୍ଗେ ଘେନିଣ ଅସିଲା ।
ବେନି ନାରୀ ନେଇ ଗୃହେ ଚନ୍ଦ୍ରହାସ୍ୟ ବୀର
ଆନନ୍ଦମନରେ କାଳ କାଟିଲା ସେଠାର ।
ଦେବୀଙ୍କ ପୂଜକ ଦ୍ୱିଜ ଘେନି ପୁଷ୍ପଜଳ ।
ମନ୍ଦିର ମଧ୍ୟରେ ପ୍ରବେଶିଲେ ତତକାଳ ॥
ଦେଖିଲେ ଯେ ମନ୍ତ୍ରୀ ସଙ୍ଗେ ମଦନକୁମର ।
ପ୍ରାଣହାର ପଡ଼ିଣ ଯେ ଅଛଇ ଭୂମିର ॥
ଦେଖି ମନେ ମନେ ପୁଣ ଭାଳଇ ପୂଜକ ।
ଚନ୍ଦ୍ରହାସ୍ୟ ଦ୍ରୋହ ଚିନ୍ତା ଫଳିଲା ଏତେକ ।
ଏମନ୍ତ ଦେଖିଣ ନୃପତିଙ୍କ ପାଶେ ଗଲେ ।
ବିନୟ ହୋଇଣ ତାଙ୍କୁ ବଚନ କହିଲେ ।
ବୋଇଲେ ମୁଁ ଦେବୀଙ୍କର ଅଟଇ ପୂଜକ ।
ସାବଧାନ ହୋଇ ଶୁଣ କୋନ୍ତଳ ନାୟକ ।
ପ୍ରଭାତରୁ ଗଲି ମୁହିଁ ଦେବୀ ପୂଜା ପାଇଁ ।
ବଡ଼ ଦୁର୍ଘଟଣା ତହିଁ ଦେଖି ଅଇଲଇଁ ।
ଦୁଷ୍ଟବୁଦ୍ଧି ମନ୍ତ୍ରୀ ତାର କୁମର ମଦନ ।
ମନ୍ଦିରରେ ପଡିଛନ୍ତି ହରାଇ ଜୀବନ ।
ସେ ଦୁହିଁଙ୍କ ଗନ୍ଧେ କେହୁ କରିଛି ଛେଦନ
ସେହି କଥା କହିବାକୁ ଅସିଛି ରାଜନ ।
ତାହା ଶୁଣି ଚନ୍ଦ୍ରହାସ୍ୟ ହୋଇଣ ଚକିତ ।
ଦେବୀଙ୍କ ମନ୍ଦିରେ ଯାଇଁ ମିଳିଲେ ତୁରିତ ॥
ଅନ୍ତଃପୁରେ ନାରୀମାନେ ବିକଳେ କାନ୍ଦିଲେ ।
ନଗ୍ର ପ୍ରଜାମାନେ ଶୁଣି ବହୁ ଶୋକ କଲେ ।
ଚନ୍ଦ୍ରହାସ୍ୟ ଦେଖେ ପିତା ପୁତ୍ର ବେନିଜଣ ।
ପନ୍ଦରେ ପଡ଼ିଅଛନ୍ତି ହରାଇ ଜୀବନ ।
ସେ ଦୁହିଁଙ୍କ ମୃତ୍ୟୁ ଦେଖି ବହୁ ଶୋକକଲା ।
କି ବୁଦ୍ଧି କରିବି ବୋଲି ମନେ ବିଚାରିଲା ।
ଏତେ ଭାଳି ଶୁଚିବନ୍ତ ହୋଇ ଚନ୍ଦ୍ରହାସ୍ୟ ।
ଦେବୀଙ୍କପାଶରେ ଯାଇଁ ହୋଇଲା ପ୍ରବେଶ ॥

ଏକ ଏକ କରି ବ୍ରାହ୍ମଣଙ୍କୁ ଡକାଇଲେ ।
ପୂଜା ଜପ ହୋମ ନାନାମତେ କରାଇଲେ ॥
ପିଷ୍ଟକ କଦଳୀ ଛେନା ପାୟସ ସାକର ।
ଘୃତ ସହିତେ ପାୟସ କଲେକ ଅପାର ।
ଯବ ତିଳ ଆଦି ସର୍ବ ଆହୁତି ଯେ ଦେଲେ ।
ଦେବୀଙ୍କର ସ୍ତବ ସ୍ତୁତି ବହୁ ପାଠ କଲେ ॥
ଲକ୍ଷେହୋମ କଲେ ଦେବୀଙ୍କରଉଦ୍ଦେଶ୍ୟରେ
ନିଜ ମାଂସ କାଟିଦେଲେ ମନ ହରଷରେ ।
ଖଡଗ ଧରିଣଛନ୍ତି ଆପଣାର କରେ ।
ଅସ୍ଥି ମାତ୍ର ରହିଅଛି ତାହାଙ୍କ ଶରୀରେ ।
ଖଡ୍ଗଧରି କାଟିବାକୁ ଯାନ୍ତେ ନିଜ ଶିର ।
ବେଗେ ଯାଇ ଚଣ୍ଡିକା ଧଇଲେ ତାଙ୍କ କର
ବୋଇଲେ ତୁ ଚନ୍ଦ୍ରହାସ୍ୟ ଶ୍ରୀହରି ଭକତ ।
ନିଜଶିର କାଟୁଅଛୁ ଏ ନୋହେ ଉଚିତ ॥
ଦୁଷ୍ଟବୁଦ୍ଧି ମନ୍ତ୍ରୀ ତୋତେ ଦ୍ରୋହ ଚିନ୍ତାକଲା
ସେଥି ପାଇଁ ପୁତ୍ର ସହିତରେ ନାଶଗଲା ॥
ଜାଣି ଚନ୍ଦ୍ରହାସ୍ୟ ତୋତେ ହରି କୃପାକଲେ
ଅଧିକା ଅଙ୍ଗୁଳି ଛେଦ ଜୀବନ ରଖିଲେ ।
ତୋହର ଚରିତ୍ର ଏବେ କହୁଅଛି ଶୁଣ ।
କୁଳିନ୍ଦ ପାଳିଲା ତୋତେ କରିଣ ନନ୍ଦନ ।
ତହିଁ ପାଇଁ ଦୁଷ୍ଟବୁଦ୍ଧି କପଟ ଭିଆଇ ।
ମଦନ ନିକଟେ ତୋତେ ଦେଲା ପଠିଆଇ ॥
ତୁ ନ ଜାଣୁ ପତ୍ର ଲେଖିଥିଲା ମଦନକୁ ।
ବିଷଦେଇ ବେଗକରି ମାରିବ ଏହାକୁ ॥
ପତ୍ର ଘେନି ତୁହି ମନ୍ତ୍ରୀ ଉପବନଠାରେ ।
ଘୋଡ଼ାରଖି ଶୋଇଣ ପଡ଼ିଲୁ ସେ ସ୍ଥାନରେ
ପତ୍ର ତୋର ଶୋଇବାର ବେଳେ ପଡ଼ିଥିଲା
ଏ ସମୟେ ବିଷୟା ଯେ ସେଠାରେ ମିଳିଲା
ପତ୍ର ପଢ଼ି ବିପରୀତ କରି ଲେଖି ଦେଇ ।
ସ୍ୱାମୀପଦେ ବରି ଗୃହେ ଫେରିଗଲା ସେହି ।
ତହୁଁ ଉଠି ପତ୍ର ଘେନି ଚଳିଗଲୁ ତୁହି ।
ମଦନର ସହିତରେ ଦେଖା କଲୁ ଯାଇଁ ।
ଶ୍ରୀହରି ମହିମା କେହି କହି ନ ପାରଇ ।
ବିଷୟା କନ୍ୟାକୁ ବିଭା ହୋଇଲୁ ଯେ ତୁହି
ତେବେଣ ଦୁଷ୍ଟବୁଦ୍ଧି କୁଳିନ୍ଦକୁ ଯେ ବାନ୍ଧିଲା ।
ସର୍ବ ଧନ ଆଣି ତାକୁ ବହୁତ ମାଇଲା ।
ତୋର ବିଭା ହେବା ଜାଣି କୁମନ୍ତ୍ରଣା କଲା ।
ମୋତେ ପୂଜିବାକୁ ତୋତେ ଏଠା ପଠାଇଲା
ଚଣ୍ଡାଳେ କହିଲା କାଟିବାକୁ ତୋର ଶିର ।
ଶ୍ରୀହରି କୃପାରେ ପ୍ରାଣ ପାଇଲୁ କୁମର ॥
ଶ୍ରୀହରି ଭକତ ତୁହି ଅଟୁ ଚନ୍ଦ୍ରହାସ୍ୟ ।
ଜଗତେ କେ ଅଛି ତୋତେ କରିବାକୁ ନାଶ
ପୂଜାଥାଳୀ ଘେନି ତୁହି ବାଟରେ ଆସନ୍ତେ ।
ସାକ୍ଷାତ ହୋଇଲା ତୋର ମଦନ ସଙ୍ଗତେ ।
ଦୈବରେ ରାଜା ଆଜ୍ଞା ହୋଇଥିଲା ତୋତେ
ମଦନକୁ ଦେଇ ଥାଳୀ ଫେରିଲୁ ତ୍ୱରିତେ ।
ରାଜା ଆଜ୍ଞା ହେବାରୁ ତୋତେ ଲେଉଟାଇଦେଲା
ଚଣ୍ଡାଳ ହସ୍ତେ ମଦନ ଶିର ଛେଦ ହେଲା ।
ସେହି ଅଧର୍ମିକୁ ଜାଣ ଅସି ପିତା ତାର ।
ପୁତ୍ରର ମରଣ ଦେଖି ତେଜିଲା ଶରୀର ॥
ଶ୍ରୀହରି ପ୍ରସାଦେ ତୁହି ହୋଇଲୁ ରାଜନ ।
ଏତେ ଅବଗ୍ରହ କଥା କରୁ କିଆଁ ପୁଣ ।
ମହାସୁଖ ହୋଇ ରାଜ୍ୟ ଭୋଗକର ରହି ।
ବୃଥାରେ ଶରୀର ନାଶ କରୁଛୁ କିପାଇଁ ॥
ଏତେ କହି ଦେବୀ ହେଲେ ଅଛନ୍ତି କୁମର ।
ପ୍ରସନ୍ନ ହୋଇଲି ତୋତେ ମାଗିଘେନ ବର ।
ଶୁଣି ଚନ୍ଦ୍ରହାସ୍ୟ ଯେ ବହୁତ କଲା ସ୍ତୁତି ।
ବୋଇଲେ ପ୍ରସନ୍ନ ଯେବେ ହେଲ ଭଗବତୀ
ଏ ମୋହର ଶିର ଦେଇ ତୋଷିବି ତୁମ୍ଭରେ
ଏତେ କହି ଖଡ଼ଗ ଧଇଲା ବେନିକରେ ॥
ଚଣ୍ଡିକା ଯାଇଣ ବେଗେ ଧଇଲେ ତା କର ।
ଶୁଣ ହେ ସୁଜନେ କଥା ଏହା ଅନନ୍ତର ।
ଚଣ୍ଡିକା ଧରନ୍ତେ କର ଚନ୍ଦ୍ରହାସ୍ୟ ଭଣି ।
ଯେବେ ମୋତେ ବରଦେବ ଶୁଣ ଠାକୁରାଣୀ
ସର୍ବଦା ତୋହର ପଦ୍ମପାଦେ ମନ ଥିବ ।
ଦୁଷ୍ଟବୁଦ୍ଧି ମଦନକୁ ପ୍ରାଣଦାନ ଦେବ ॥
ଶୁଣି ଦେବୀ ଅସ୍ତୁହେଉ ବୋଲି ଆଜ୍ଞାଦେଲେ
ଧନ ଜନ କୀର୍ତ୍ତି ତୋର ବଢ଼ିବ ବୋଇଲେ
ବାଳକ କାଳରୁ ହେଲୁ ଶ୍ରୀହରି ଭକତ ।
ତୋହର ଯଶ ପଢ଼ୁଛୁ ଘୋଷୁ ଦିଗନ୍ତ ॥
ଯେଉଁ ନର ନାରୀ ତୋର ଚରିତ୍ର ଶୁଣିବେ
ଅଶେଷ ଜନ୍ମର ପାପମାନ ବିନାଶିବେ ।

କଳିଯୁଗେ ଶୁଣିବେ ଯେ ଚରିତ ତୋହର ।
ଏ ମାୟା ସଂସାରୁ ଅବହେଳେ ଯିବେ ତରି ॥
ଦେବୀଙ୍କ ଆଜ୍ଞାରେ ଦୁଷ୍ଟବୁଦ୍ଧି ତାର ସୁତ ।
ପ୍ରାଣ ଦାନ ପାଇ ଅଙ୍ଗ ଝାଡ଼ିଲେକ ପବନ ।
ବରଦେଇ ଭଗବତୀ ଅନ୍ତର୍ଦ୍ଧାନ ହେଲେ ।
ଚନ୍ଦ୍ରହାସ୍ୟ ଶିରେ ଦେବେ ପୁଷ୍ପ ବୃଷ୍ଟି କଲେ ॥
ଦୁଷ୍ଟବୁଦ୍ଧି ମଦନଙ୍କୁ ଘେନି ଚନ୍ଦ୍ରହାସ୍ୟ ।
ଆଲିଙ୍ଗନ କରି ବସାଇଲେ ନିଜ ପାଶ ।
ଦୁଷ୍ଟବୁଦ୍ଧି ପିତା ପୁତ୍ର ଦେଖି ଚନ୍ଦ୍ରହାସ୍ୟ ।
ନିଜ ନଗରେ ଯାଇଣ ହୋଇଲେ ପ୍ରବେଶ ।
ହରିଙ୍କ କୃପାରେ ଚନ୍ଦ୍ରହାସ୍ୟ ହୋଇ ରାଜା ।
ସୁଖରେ ପାଳିଲେ କୋନ୍ତଳର ଜନପ୍ରଜା ॥
ଚନ୍ଦ୍ରହାସ୍ୟ ରାଜା ହେବା ଶୁଣିଣ କୁଳିନ୍ଦ ।
ଶ୍ରୀହରି ମହିମା ଜାଣି ହୋଇଲେ ଆନନ୍ଦ ॥
ଦୁଷ୍ଟବୁଦ୍ଧି ହସ୍ତରୁ ଯେ ନିଶ୍ଚିନ୍ତ ହୋଇଲେ ।
ବିପ୍ର ଦୁଃଖୀ ଜନଙ୍କୁ ବହୁତ ଦାନ ଦେଲେ ॥
ଏସନ ବିଚାର ମନେ କୁଳିନ୍ଦ ନୃପତି ।
ମୋର ଆଶା ପୂର୍ଣ୍ଣ କରିଛନ୍ତି ଭଗବତୀ ।
ଆଉ ଏ ରାଜ୍ୟରେ ମୋର କି କାର୍ଯ୍ୟ ଅଛଇ ।
ଅନଳରେ ପଶି ପାପ ଦେହ ନାଶିବଇଁ ।
ଏମନ୍ତ କୁଳିନ୍ଦ ରାଜା ବିଚାରି ମନରେ ।
ନିଶ୍ଚିନ୍ତେ ରହିଲେ ବସି ଶ୍ରୀହରି ଧ୍ୟାନରେ ॥
ବୋଇଲେ ହେ ହରି ତୁମ୍ଭେ ଅନ୍ତର୍ଯ୍ୟାମୀନାଥ
ଚନ୍ଦ୍ରହାସ୍ୟେ ଦେଇଥିଲ କରି ମୋତେ ସୁତ ॥
ତୁମ୍ଭର ପରମ ଭକ୍ତ ଅଟେ ଜାଣ ସେହି ।
ତାଙ୍କୁ ରକ୍ଷା କରିଥାଅ ଲକ୍ଷ୍ମୀଦେବୀ ସାଇଁ ।
ଏମନ୍ତ ବିଚାରି ନିଜ ପତ୍ନୀକି କହଇ ।
ଅଗ୍ନି ବେଗେ ଜାଳ ଦେହ ନାଶ କରିବଇଁ
ଅଜଥରେ ଦୁଷ୍ଟବୁଦ୍ଧି ଅଇଲେ ହୋ ଜାଣ ।
ସହି ନ ପାରିବି ଆଉ ତାହାର କଷଣ ।
ଶୁଣି କୁଳିନ୍ଦର ରାଣୀ କଲା ସନମତି ।
ଏଥୁ ଅନନ୍ତରେ ଶୁଣ କଥା ବିପରୀତ ।
ଦୁଷ୍ଟବୁଦ୍ଧି କେମନ୍ତେ ସେ ବାରତା ପାଇଲା ।
ତୁମ୍ଭନାମେ କୁଳିନ୍ଦଟି ମହା ଭୟ କଲା ॥
ଅଗ୍ନି ଜାଳି ନିଜ ପ୍ରାଣ ତେଜିବ ଏକ୍ଷଣ ।
ବିପ୍ରଗଣେ ଧନ ଦ୍ରବ୍ୟ ସର୍ବ କଲା ଦାନ ॥
ଅନଳ ଜାଳିଣ ସେ କୁଟୁମ୍ବ ସହିତରେ ।
ନାଶିବ ଶରୀର ମନ୍ତ୍ରୀ ତୁମ୍ଭର ଭୟରେ ।
ଶୁଣି ଦୁଷ୍ଟବୁଦ୍ଧି ଅଶ୍ୱ ଚଢ଼ି ବେଗେ ଗଲା ।
କୁଳିନ୍ଦ ପାଶରେ ଯାଇ ପ୍ରବେଶ ହୋଇଲା ।
ଦେଖି ସେ କୁଳିନ୍ଦ ତାକୁ ମହାଭୟ କଲା ।
ଏବେ ପ୍ରାଣ ଗଲା ବୋଲି କାତର ହୋଇଲା
କୁଳିନ୍ଦର ଭୟ ଦେଖି ମନ୍ତ୍ରୀ ବୋଲେ ବାଣୀ
କିପାଇ ମନରେ ଭୟ ପାଉଅଛ ପୁଣି ।
ଦୁହିତା ଦେଇଛି ବିଭା ତୋ ଚନ୍ଦ୍ରହାସ୍ୟକୁ ।
ସମ୍ବନ୍ଧ ହୋଇଲ ଭୟ କରୁଛ କାହାକୁ ॥
ତୁଁଅ ଦେଇ ଶରଣ ପଶୁଛି ତୁମ୍ଭ ଠାଇଁ ।
ମୋହ ଦୋଷ କ୍ଷମା କର ଆହେ ନରସାଇଁ ।
କୋନ୍ତଳ ଦେଶରେ ଚନ୍ଦ୍ରହାସ୍ୟ ରାଜା ହେଲେ
ମୋତେ ଦୟା କରି ଜୀବନ ଦାନ ଦେଲେ
ଶ୍ରୀହରିଙ୍କ ପାଦପଦ୍ମ ସୁମରି ଅନ୍ତରେ ।
ରହିଲା କୁଳିନ୍ଦ ତହିଁ ଆନନ୍ଦ ଚିତ୍ତରେ ।
ନିତ୍ୟେ ଧନ ଧାନ୍ୟ ଦୁଃଖୀ ଜନେ କରେ ଦାନ
ଅହରହ ହରିପାଦେ ରଖିଥାଇ ଧ୍ୟାନ ।
ଚନ୍ଦ୍ରହାସ୍ୟ ରାଜା ହୋଇ କୋନ୍ତଳ ପାଳିଲେ
ଦେଖି ଜନ ପ୍ରଜାମାନେ ଆନନ୍ଦ ହୋଇଲେ
ବ୍ରାହ୍ମଣମାନଙ୍କୁ ଦେଲେ ଅନ୍ନ ବସ୍ତ୍ର ଦାନ ।
କୁଳିନ୍ଦଙ୍କୁ ଆଣାଇଲେ ଆପଣା ଭୁବନ ।
ପିତାମାତା ଦୁହିଙ୍କୁ ସେ ରଖି ନିଜଘରେ ।
ଦେବତା ପରାୟେ ନିତ୍ୟେ ସେବା ପୂଜା କଲେ
ଏହିପରି ତିନିବର୍ଷ ଗତ ଯେ ହୋଇଲା ।
ବେନି ନାରୀଠାରୁ ବେନି ପୁତ୍ର ଉପୁଜିଲା ॥
ମକରଧ୍ୱଜ ନାମରେ ବିଷୟାର ସୁତ ।
ପଦ୍ମ ନାମ ଧରେ ଚମ୍ପାମାଳିନୀର ସୁତ ॥
ଏହିପରି ଚନ୍ଦ୍ରହାସ୍ୟ ରାଜ୍ୟକୁ ପାଳିଲେ ।
ଶାଳଗ୍ରାମ ଶିଳା ପୂଜି ଭକ୍ତ ପାରହେଲେ ।
ଏଣୁ ସାଧୁଜନ ଶାଳଗ୍ରାମଙ୍କୁ ପୂଜିବେ ।
ସେହି ଫଳେ ସଂସାର ମାୟାରୁ ତରିଯିବେ ।
କଳିଯୁଗେ ଶାଳଗ୍ରାମ ରୂପେ ନାରାୟଣ ।
ସଂସାରେ ବିହରି ଜନେ କରନ୍ତି ତାରଣ ॥
ଶାଳଗ୍ରାମ ରୂପେ ହରି ଖ୍ୟାତ କଳିକାଳେ ।
ଯେ ତାଙ୍କୁ ପୂଜଇ ଯମଦଣ୍ଡ କାଟେ ହେଲେ

କେବଳ ଶାଳଗ୍ରାମ ବାନ୍ଧ ଗୁଳିଇ ଯେ ପଥ ।
ଜାଣନ୍ତୁ ସେ ରହିଥାଏ ଏ ତିନି ଜଗତ ॥
ଯେଉଁଜନ ଶାଳଗ୍ରାମ ଦାନ ହୋ କରଇ ।
ପୃଥ୍ୱୀଦାନ କଲା ଫଳ ନିଶ୍ଚୟ ଲଭଇ ।
ନିତ୍ୟ ଶାଳଗ୍ରାମ ସ୍ତୁତି କରେ ଯେଉଁ ଜନ ।
ସର୍ବପାପ ନାଶି ବସେ ବୈକୁଣ୍ଠ ଭୁବନ ॥
ନୈମିଷା ଅରଣ୍ୟେ ଶିରୀକ୍ଷେତ୍ର ପ୍ରୟାଗରେ ।
ଗୋମତୀ ଗଙ୍ଗା ସାଗରେ ତୀର୍ଥଙ୍କ ସ୍ନାନରେ ।
ସମ୍ପୂର୍ଣ୍ଣ ବରଷେ କରି ଯେଉଁ ଫଳ ପାଇ ।
ଶାଳଗ୍ରାମ ସ୍ନାନେ ସେହୁ ଫଳକୁ ଲଭଇ ।
କୋଟି କୋଟି ପାପ ଥାଇ ଯାହାର ଶରୀରେ
ତାହା ନାଶ ଯାଏ ଶାଳଗ୍ରାମ ପୂଜିବାରେ ।
ଶାଳଗ୍ରାମେ ଯେହୁ ଲେପେ ତୁଳସୀ ଚନ୍ଦନ ।
ନାନା ସ୍ତବ ପଢ଼ି କରେ ଚରଣ ବନ୍ଦନ ।
ଅନ୍ନ ଅଦ ଭୋଜନ ଯେ ନୈବେଦ୍ୟ କରଇ
କୁଟୁମ୍ବ ସହିତେ ବୈକୁଣ୍ଠରେ ବସେ ଯାଇଁ ।
ଶାଳଗ୍ରାମ ଶିଳା ଯେହୁ ବହଇ ଶିରେଣ ।
ବ୍ରହ୍ମା ତାଙ୍କୁ ବୋଲନ୍ତି ଯେ ସ୍ୱୟଂ ନାରାୟଣ ॥
ଶାଳଗ୍ରାମ ଶିଳା ଯେହୁ ପୂଜନ୍ତି ନିତ୍ୟରେ ।
ଦେବଗଣ ତାଙ୍କୁ ତୋଷ ହୁଅନ୍ତି ଅନ୍ତରେ ।
ଅଗ୍ରେ ଶାଳଗ୍ରାମ ସ୍ଥାପି ପୂଜିଲେ ପ୍ରବୀଣ ।
ମନୋରଥ ପୂର୍ଣ୍ଣହୁଏ ମୁକ୍ତ ହେବେ ଜାଣ ।
ଶାଳଗ୍ରାମ ଶିଳାଗଣ ଥାଇ ଯା ଗୃହରେ ।
ତା ଗୃହ ପବିତ୍ର ହୁଏ ଯୋଜନ ଅନ୍ତରେ ।
ଶାଳଗ୍ରାମ ଶିଳା ଚକ୍ର ଯାର ଗୃହେ ଥାଇ ।
ସଂସାର ସକଳ ତୀର୍ଥ ମେଳି ହୋନ୍ତି ତହିଁ ॥
ଶାଳଗ୍ରାମ ଶିଳାକୁ ଯେ ନିତ୍ୟ ପୂଜା କରେ ।
ମନସ୍ତାପ ଯେତେକ ତା ଦୂରନ୍ତରେ ହରେ ।
ମୃତ୍ୟୁକାଳେ ଶାଳଗ୍ରାମୋଦକ କଲେ ପାନ ।
ମୁକତ ଲଭିଣ ବସେ ବୈକୁଣ୍ଠ ଭୁବନ ॥
ଶ୍ରୀହରିଙ୍କ ପ୍ରିୟବନ୍ଧୁ ହୁଏ ସେ ସଂସାରେ ।
ଯେହୁ ତାଙ୍କୁ ଅର୍ଚ୍ଚେ କରେ ବସେ ବୈକୁଣ୍ଠରେ
ଶାଳଗ୍ରାମ ତୁଳସୀର ଏମନ୍ତ ମହିମା ।
ଗୁଣମୁଖେ ବର୍ଣ୍ଣିବାର ନ ପାରିଲେ ବ୍ରହ୍ମା ।
ଏମନ୍ତ ନାରଦ ମୁଖୁ ଶୁଣି ଅର୍ଜୁନ ।
ଧନ୍ୟ ଧନ୍ୟ ହେଲି ବୋଲି ବୋଇଲେ ବଚନ
ଶ୍ରୀହରିଙ୍କ ରସଲୀଳା ଅଟେ ଏହୁ ଗୀତ ।
ମହାଦେବ ଉପାଧ୍ୟାୟ ଧ୍ୟାୟେ ଲକ୍ଷ୍ମୀକାନ୍ତ ॥

—o—

## ଚନ୍ଦ୍ରହାସ୍ୟ ପୁତ୍ରଦ୍ୱାରା ଅର୍ଜୁନଙ୍କ ଅଶ୍ୱଧାରଣ ଶ୍ରୀକୃଷ୍ଣ ଅର୍ଜୁନଙ୍କ ସହିତ ଚନ୍ଦ୍ରହାସ୍ୟର ସାକ୍ଷାତ

ଜନ୍ମେଜୟ ମହାରାଜା ବୋଲନ୍ତି ବଚନ ।
ତଦପରେ କିସ ହେଲା ଅହେ ମୁନିଗଣ ॥
ଚନ୍ଦ୍ରହାସ୍ୟ ପୁରୁ ଅଶ୍ୱ କିପରି ଅଇଲା ।
ତା ସବୁ ବିସ୍ତାରି ମୋତେ କହ ମୁନିବଳା ॥
ରାଜାଙ୍କ ବଚନ ଶୁଣି ଜୈମିନି କହନ୍ତି ।
ଏକମନେ ଶୁଣ ତୁମ୍ଭେ ଉତ୍ତରାର ନାତି ॥
ଚନ୍ଦ୍ରହାସ୍ୟ ପୁଅ ଦୁହେଁ ସକାଳ ସମୟେ ।
ନିଜପୁରେ ଦେଖିଲେ ସେ ଚରୁର ଅଶ୍ୱ ହୟେ
ଦେଖିଣ ଆନନ୍ଦମନ ହୋଇଲେ କୁମର ।
ସୁନ୍ଦର ଦେଖି ମିଳିଲେ ଅଶ୍ୱଙ୍କ ପାଶର ।
ଆନନ୍ଦ ମନରେ ବେନି ଅଶ୍ୱକୁ ଧଇଲେ ।
ପିତାଙ୍କ ପାଶରେ ଯାଇଁ ଉପସ୍ଥିତ ହେଲେ ।
ଚନ୍ଦ୍ରହାସ୍ୟ ଅଶ୍ୱଶିରେ ପତ୍ରକୁ ଦେଖିଲେ ।
ତାହାଙ୍କୁ ପଢିଣ ସର୍ବ ବୃତ୍ତାନ୍ତ ଜାଣିଲେ ।
ଶ୍ରୀକୃଷ୍ଣ ଆସିବେ ପୁରେ ଏସନ ଭାବିଣ ।
ନର ନାରାୟଣ ଆଜ କରିବି ଦର୍ଶନ ।
ପିଇଦନ୍ତି ଯାହାଙ୍କର ଚରଣ ଚିନ୍ତଇ ।
ଆଜ ମୁଁ ଦେଖିବି ପାର୍ଥସହ ଯଦୁସାଇଁ ।
ବପଟ୍ଟା ପୁତ୍ରଙ୍କୁ ଗୃହେ ବୋଲଇ ବଚନ ।
ଧର୍ମ ରାଜାଙ୍କର ଏହୁ ଅଶ୍ୱ ଅଟେ ଜାଣ ।
ଅତଏବ ଯତ୍ନରେ ଏ ଅଶ୍ୱକୁ ରଖିବ ।
ପୁଣି ଧର୍ମରାଜେ ଅଶ୍ୱ ଫେରାଇଣ ଦେବ ।
ଅଶ୍ୱ ହେତୁ ହେବ ମୋର ଶ୍ରୀକୃଷ୍ଣ ଦର୍ଶନ ।
ଅଶ୍ୱଠାରେ ଅମ୍ଭର ଯେ ନାହିଁ ପ୍ରୟୋଜନ ॥
ନାରାୟଣଙ୍କୁ ଦେଖିଲେ ମୁକତି ମିଳିବ ।
ଯେତେ ପାପଥିବ ସବୁ ବିନାଶ ହୋଇବ ।
ଶ୍ରୀହରି ସନ୍ତୋଷ ହେବେ ଭାବିଣ ଏସନ ।
ଅର୍ଜୁନଙ୍କ ସହିତରେ କରିବି ମୁଁ ରଣ ॥

# ଜୈମିନୀ ଭାରତ

ଚନ୍ଦ୍ରହାସ୍ୟ, ଶ୍ରୀକୃଷ୍ଣ ଓ ଅର୍ଜୁନ



ଭୁବନ ମୋହନ ରୂପ ନାରାୟଣେ ଚାହିଁ ।
ଚନ୍ଦ୍ରହାସ୍ୟ ରଥୁଁ ଖସି ହୋଇଲ ବନସ୍ଥି ॥

ଟିଭାଙ୍କର ଆଜ୍ଞା ପାଇ ବଷସ୍ୱୀ ନନ୍ଦନ ।
ଦୁଇ ଅଶ୍ୱ ନେଇଗଲେ ରଖିବା କାରଣ ।
ଚନ୍ଦ୍ରହାସ୍ୟ ନରପତି ନଗର ପ୍ରାନ୍ତରେ ।
ବହିଲ ଅର୍ଜୁନ ସଙ୍ଗେ ସମର ଅଶାରେ ॥
ଏହିକାଳେ ଅର୍ଜୁନର ସଙ୍ଗ ନାରାୟଣ ।
ସେ ସ୍ଥାନରେ ଉପସ୍ଥିତ ହୋଇଲେ ବହନ ॥
ଜ୍ଞାନବନ୍ତ ଗୁଣବାନ୍ତ ଧାର୍ମିକ ପ୍ରବର ।
ଦେଖିଣ ଅର୍ଜୁନ କହେ ଅହେ ଚକ୍ରଧର ॥
ଏପରି ପ୍ରଶାନ୍ତ ମୂର୍ତ୍ତି ମୁହିଁ ଦେଖି ନାହିଁ ।
କିବା ବ୍ରହ୍ମା ନର ରୂପେ ଅସିଅଛି ମହୀ ॥
ସେକ୍ଷଣି ଶ୍ରୀକୃଷ୍ଣ ହେଲେ ଚତୁର୍ଭୁଜ ମୂର୍ତ୍ତି ।
ଦେଖିଣ କହିଲ ଭକ୍ତ ବୋଲାନ୍ତର ପତି ।
କଟିରେ ପୀତବସନ ଚରଣେ ନୂପୁର ।
ଶ୍ରୀବତ୍ସ ଲାଞ୍ଛନ ହୃଦେ ଦିଶଇ ସୁନ୍ଦର ।
ରୂପଛଟା ଘଟା ନବ ଘନକୁ ଗଞ୍ଜଇ ।
କଉସ୍ତୁଭ ମଣି କଣ୍ଠଦେଶେ ବିରାଜଇ ।
ଶରଦ ଶଶୀକି ଜିଣେ ବଦନ ସୁନ୍ଦର ।
ବିମ୍ବ ଅଧରେ ମୁରଲୀ ବାଜଇ ମଧୁର ।
ଚୂଳରେ ସେବତୀ ଗଭା ସୁନ୍ଦର ଦିଶଇ ।
ତଥିପରେ ଶିଖୀପୁଚ୍ଛ ଜଗତ ମୋହଇ ।
ତ୍ରିପୁର ମୋହନ ରୂପ ହରିଙ୍କି ଦେଖିଲା ।
ବେଗେ ଚନ୍ଦ୍ରହାସ୍ୟ ରଥୁଁ ଓହ୍ଲାଇ ପଡ଼ିଲା ।
ନିସ୍ତରିଲି ନିସ୍ତରିଲି ବୋଲି କର ଯୋଡ଼ି ।
ସାଷ୍ଟାଙ୍ଗେ ପ୍ରଣାମ କଲା ଧରଣୀରେ ପଡ଼ି ।
ଦେଖି ଦେବକୀ ରଥୁଁ ଓହ୍ଲାଇ ଅଇଲେ ।
ଚତୁର୍ଭୁଜେ ଧରି ତାକୁ ଆଲିଙ୍ଗନ କଲେ ।
ପୁତ୍ରକୁ ଯେସନେ ପିତା କରେ ଆଲିଙ୍ଗନ ।
ସେହିପରି ଆଲିଙ୍ଗିଲେ ପ୍ରଭୁ ଜନାର୍ଦ୍ଦନ ।
ଚନ୍ଦ୍ରହାସ୍ୟ ଭାବେ ମନେ କୃତାର୍ଥ ହୋଇଲି ।
ବାଳକାଳୁ ଲୋଡ଼ି ଲୋଡ଼ି ଆଜ ମୁଁ ପାଇଲି ।
ଅର୍ଜୁନ ମୁଖକୁ ଚାହିଁ ବୋଲନ୍ତି ଶ୍ରୀହରି ।
ଧ୍ରୁବ ପ୍ରହ୍ଲାଦଠାରୁ ଭକ୍ତ ଏ ମୋହର ।
ଏହାକୁ ତୁ ପାର୍ଥ ବେଗେ ଆଲିଙ୍ଗନ କର ।
ଚନ୍ଦ୍ରହାସ୍ୟ ପରମ ଭକତ ଅଟେ ମୋର ॥
ଅର୍ଜୁନ ବୋଲନ୍ତି ତୁମ୍ଭଠାରୁ ପୂର୍ବେ ମୁହିଁ ।
ଭାରତ ଯୁଦ୍ଧରେ ଦେବୁ ଶୁଣିଣ ଅଛଇ ॥
ଯାଗ ଅଶ୍ୱ ଧରିଅଛି ଶତ୍ରୁ ମୋର ଏହି ।
କେମନ୍ତେ ଏହାକୁ ଆଲିଙ୍ଗନ କରିବଇଁ ॥
ଏହାକୁ ଯୁଦ୍ଧରେ ଜିଣି ଆଣିବ ଅଶ୍ୱକୁ ।
ନମସ୍କାର କି ପ୍ରକାରେ କରିବି ଶତ୍ରୁକୁ ।
ଶ୍ରୀକୃଷ୍ଣ ବୋଲନ୍ତି ଯେବେ ଚଣ୍ଡାଳ ହୁଅଇ ।
ମୋଠାରେ ଭକତ ଥିଲେ ମାନ୍ୟକୁ ଲଭଇ ।
ବୈଷ୍ଣବ ଜନକୁ ଯେହୁ କରେ ଆଲିଙ୍ଗନ ।
ପୁଣ୍ୟ ସେ ଲଭଇ ଶତ କପିଳାର ଦାନ ॥
ମୋର ଭକ୍ତ ଦେଖି ଯେହୁ ମାନ୍ୟ ନ କରଇ ।
ଶତେ ଜନ୍ମଯାଏ ନର୍କ ଯାତନା ଭୋଗଇ ।
ଚନ୍ଦ୍ରହାସ୍ୟ ମୋହର ଭକତ ଶିରୋମଣି ।
ଏହାକୁ ତୁ ଆଲିଙ୍ଗନ କର ଫାଲ୍‌ଗୁନୀ ।
ଶ୍ରୀକୃଷ୍ଣଙ୍କ ବାକ୍ୟେ ତୋଷ ହୋଇଣ ଅର୍ଜୁନ
ଯାଇଁ ଚନ୍ଦ୍ରହାସଙ୍କୁ କଲେକ ଆଲିଙ୍ଗନ ॥
ଚନ୍ଦ୍ରହାସ୍ୟ ଅର୍ଜୁନକୁ ଆଲିଙ୍ଗନ କରି ।
ମଧୁର ବଚନେ ହସି କହେ ଦଣ୍ଡଧାରୀ ।
ବୋଇଲେ ଅର୍ଜୁନ ଯେବେ ଯୁଦ୍ଧବାଞ୍ଛା ତୋର
ତେବେ ଯୁଦ୍ଧ କରି ନ ପାରିବେ ସୁଦୃଢ଼ର ।
ଶ୍ରୀକୃଷ୍ଣଙ୍କ ସହାୟେ ବୋଲାଅ ମହାବୀର ।
ମୋତେ ନ ଜିଣିଲେ ନ ନେବ ତ ଅଶ୍ୱବର
ଚନ୍ଦ୍ରହାସ୍ୟ ବଚନ ଶୁଣିଣ ପୀତବାସ ।
ଅର୍ଜୁନକୁ ପ୍ରବୋଧି ଆସିଲେ ନିଜ ପାଶ ।
ଚନ୍ଦ୍ରହାସ୍ୟକୁ ଶ୍ରୀହରି ପ୍ରବୋଧି କହିଲେ ।
ଶୁଣି ଚନ୍ଦ୍ରହାସ୍ୟ ମନେ ହରଷ ହୋଇଲେ ॥
ଅଶ୍ୱ ଦେଇଣ ଶ୍ରୀହରି ଚରଣରେ ପଡ଼ି ।
କୃତାର୍ଥ ହୋଇଲି ବୋଲି କହେ କରଯୋଡ଼ି
କୁନ୍ତଳପୁର ସହିତରେ ନଗ୍ର ପ୍ରଜାଜନେ ।
କୃତାର୍ଥ ହୋଇଲେ ସର୍ବେ କୃଷ୍ଣ ଦରଶନେ ।
ଚନ୍ଦ୍ରହାସ୍ୟ ରାଜ୍ୟରେ ଯେତେକ ଜନ ଛନ୍ତି ।
ସେମାନେ ବୈଷ୍ଣବ ଜାଣ ସତ୍ୟରେ ଅଟନ୍ତି ।
କୃଷ୍ଣାର୍ଜୁନ ସଙ୍ଗ ସର୍ବଜନେ ଘେନି ଯାଇଁ ।
ଜନାର୍ଦ୍ଦନ ଗୃହେ ରଖାଇଲେ ନରସାଇଁ ॥
ଅର୍ପିଣ ଗାଲବ ଋଷି ହରି ପୂଜା କଲେ ।
କୃତାର୍ଥ ହୋଇଲି ବୋଲି ଚରଣେ ପଡ଼ିଲେ
ଚନ୍ଦ୍ରହାସ୍ୟ ରାଜ୍ୟଧନ ପୁତ୍ର ସହିତରେ ।
ସମର୍ପଣ କଲା ନେଇ ଶ୍ରୀହରି ପଦରେ ।

ଯଜ୍ଞ ଅଶ୍ୱ ସଙ୍ଗେ ଯେବେ ବାହାର ହୋଇଲେ
ଗାଲବ ଋଷିଙ୍କ ହସ୍ତ ଅଶ୍ୱ ତହୁଁ ଦେଲେ ॥
ଚନ୍ଦ୍ରହାସ୍ୟ ତାର ବେନି ପୁତ୍ରଙ୍କୁ କହଇ ।
ବନବାସ କରିବାକୁ ବାଞ୍ଛା ମୋର ଥିଲା ।
ଏବେ ମୋର ଭାଗ୍ୟରୁ ଶ୍ରୀହରି ବିଜେକଲେ ।
ନଗ୍ରଜନ ଲୋକେ ସର୍ବେ କୃତାର୍ଥ ହୋଇଲେ
କୃଷ୍ଣାର୍ଜ୍ଜୁନ ସଙ୍ଗତରେ ଯାଉଅଛି ମୁହିଁ ।
ତୁମ୍ଭେ ରାଜା ହୋଇ ଜନ ପ୍ରଜା ପାଳିବଇଁ ।
ଧର୍ମଶାସ୍ତ୍ର ଅନୁସାରେ ପ୍ରଜାଙ୍କୁ ପାଳିବ ।
ଶ୍ରୀହରିଙ୍କ ଶ୍ରୀଚରଣେ ଧ୍ୟାନ ରଖିଥିବ ।
ଏମନ୍ତେ ପୁତ୍ରମାନଙ୍କୁ ବୁଝାଇ ରାଜନ ।
କୃଷ୍ଣାର୍ଜ୍ଜୁନ ସଙ୍ଗେ ଗଲେ ହସ୍ତିନା ଭୁବନ ॥
ଶ୍ରୀହରିଙ୍କ ପରମ ଭକତ ଚନ୍ଦ୍ରହାସ୍ୟ ।
ତା ଚରିତ ଶୁଣିଲେ ସ୍ୱର୍ଗରେ ହେବ ବାସ ।
ଚନ୍ଦ୍ରହାସ୍ୟ ଚରିତ ଯେ ମୁଖରେ ଗାଇବ ।
ଶ୍ରୀହରିଙ୍କ ଶ୍ରୀଚରଣେ ଭକତି ପାଇବ ।
ଅଶେଷ ଜନମ ପାପ ନାଶ ହେବ ତାର ।
ଶେଷକାଳେ ବସିବ ସେ ବଇକୁଣ୍ଠ ପୁର ॥
ଦସ୍ତାପସ୍ତ ଶ୍ରୀହରିଙ୍କ ଚରଣ ସୁମରି ।
ଉପାଧ୍ୟାୟ ମହାଦେବ କହଇ ବିସ୍ତାରି ।

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତି
ରସଲୀଳା ସାର କଥା ପ୍ରସଙ୍ଗେ
ନାମ ଚତୁଃବିଂଶୋଽଧ୍ୟାୟଃ ।

—*—

## ପଞ୍ଚବିଂଶ ଅଧ୍ୟାୟ

କଦା ବୃନ୍ଦାରଣ୍ୟେ ବିମଳଯମୁନାତୀରପୁଲିନେ
ସମାସୀନଃ ଶ୍ରୀମଦ୍ ଯଦୁପତିପଦାବ୍ଜଂ ହୃଦିବହନ୍
ଅପେ କୃଷ୍ଣସ୍ୱାମୀନ୍ ମଧୁରମୁରଲୀମୋହନଶିବେ
ପ୍ରସିଦେତକ୍ରୋଶନ୍ନିମିଷମିବନେଷ୍ୟାମିରଜନୀଂ

### ବକଦାଲ୍ଭ ଋଷି ଉପାଖ୍ୟାନ
### ପ୍ରଳୟ ବର୍ଣ୍ଣନା

ଏଥୁଅନ୍ତେ ଜୈମିନି ଯେ ବୋଲନ୍ତି ବଚନ
ଏକମନେ ଶୁଣ ତୁମ୍ଭେ ମୋହର ବଚନ ॥
କୌନ୍ତଳପୁରରୁ ଅଶ୍ୱ ହୋଇଣ ବାହାର ।
ଉତ୍ତର ଦିଗକୁ ଗଲା ଶୁଣ ନରବର ॥
ଚନ୍ଦ୍ରହାସ୍ୟ ନରପତି ଛନ୍ତି ସଙ୍ଗତରେ ।
ଅରଣ୍ୟ ପର୍ବତ ଡେଇଁ ଗଲା ଅତି ଖରେ ।
ସମୁଦ୍ର କୂଳରେ ଅଶ୍ୱ ପ୍ରବେଶିଲା ଯାଇ ।
ଏଥୁ ଅନନ୍ତରେ କଥା ଶୁଣ ନରସାଇଁ ।
ଶ୍ରୀହରି ଅର୍ଜ୍ଜୁନ ଆଦି ସୈନ୍ୟଙ୍କ ସହିତେ ।
ଉତ୍ତର ସମୁଦ୍ର କୂଳେ ମିଳିଲେ ତ୍ୱରିତେ ॥
ଏଥିପରି ଅଶ୍ୱ ଯାଇଁ ସମୁଦ୍ରର କୂଳେ ।
ଦେଖୁ ଦେଖୁ ବୁଡ଼ିଗଲା ସେ ଅଗାଧ ଜଳେ ।
ଶ୍ରୀକୃଷ୍ଣ ମୁଖକୁ ଚାହିଁ ବୋଲନ୍ତି ଅର୍ଜ୍ଜୁନ ।
ଜଳେ ଅଶ୍ୱ ବୁଡ଼ିଲା ହେ କରିବା କେସନ ।
ଶ୍ରୀହରି କହନ୍ତି ହଂସଧ୍ୱଜ ନରବର ।
ପ୍ରଦ୍ୟୁମ୍ନ ବଭ୍ରୁବାହନ ଶିଖିଧ୍ୱଜ ବୀର ।
ଯୁବନାଶ୍ୱ ଆଦି ଛଳ ଘୋଟକଙ୍କୁ ଆଣ ।
ତାହା ଚଢ଼ି ଯିବା ଆମ୍ଭେ ସମୁଦ୍ର ମଧ୍ୟେଣ ।
ତହୁଁ ବେଗେ ଜଳଚର ଅଶ୍ୱକୁ ଆଣିଲେ ।
ଶ୍ରୀକୃଷ୍ଣ ଅର୍ଜ୍ଜୁନ ବଭ୍ରୁବାହନ ବସିଲେ ॥
ପ୍ରଦ୍ୟୁମ୍ନ ମୟୂରଧ୍ୱଜ ପାଞ୍ଚଜଣେ ଚଢ଼ି ।
ଗମ୍ଭୀର ସମୁଦ୍ର ଜଳେ ଗଲେ ସର୍ବେ ବୁଡ଼ି ।
ସମୁଦ୍ର ମଧ୍ୟରେ ଯାଇ ଦ୍ୱୀପେକ ଦେଖିଲେ ।
ବକଦାଲ୍ଭ ଋଷି ତପ ସ୍ଥାନରେ ମିଳିଲେ ॥
ଛତ୍ରକ ବଟପତ୍ର ଗୋଟି ମସ୍ତକରେ ରଖି ।
ତପ କରୁଛନ୍ତି ଋଷି ବୁଜି ବେନି ଆଖି ।
ଊର୍ଣ୍ଣନାଭି ମସ୍ତକରେ କରିଛନ୍ତି ବସା ।
ଶ୍ରୀହରି ଶ୍ରୀଚରଣରେ ଲାଗିଅଛି ଆଶା ॥
ଦେଖି ପାଞ୍ଚବୀରେ ଅଶ୍ୱ ପୃଷ୍ଠୁ ଉତ୍ତରିଲେ ।
ତପସ୍ୟା ଭାଙ୍ଗିଣ ଋଷି ତାହାଙ୍କୁ ଚାହିଁଲେ ।
କୃଷ୍ଣ ଆଦି ପାଞ୍ଚବୀରେ କଲେ ନମସ୍କାର ।
ହରଷେ କଲ୍ୟାଣ ତାଙ୍କୁ କଲେ ତପୀବର ॥
ହସି ହସି ମୁନି ତାଙ୍କୁ ବଚନେ ବୋଇଲନ୍ତି ।
କହନ୍ତୁ କପାଇଁ ଆସିଛନ୍ତି ମୋର କତି ।
ଯେବେ ତୁମ୍ଭେ ମୋ ନିକଟେ ହେଲ ପରବେଶ
ମୋହର ମଣ୍ଡପେ ସର୍ବେ କୁହ କରି ବାସ ।
ତାହା ଶୁଣି ଅର୍ଜ୍ଜୁନ ଯେ ଚକିତ ହୋଇଲେ ।
ଚାରିଦିଗ ଚାହିଁଣ ମଣ୍ଡପ ନ ଦେଖିଲେ ॥
ବୋଇଲେ ହେ ଋଷି ମଣ୍ଡପଟି କେଉଁଠାରେ
ବଟପତ୍ର ଦେଇ ତୁମ୍ଭେ ରହିଛ ଶିରରେ ॥

ପଲାଶ ବୃକ୍ଷରତଳେ କରୁଛ ତପସ୍ୟା ।
ଶିରଯାକ କରିଅଛୁ କର୍ଣ୍ଣନାଭ ବସା ॥
ସେହି ବୃକ୍ଷପତ୍ରର ପକ୍ଷୀ ବସା କରିଛନ୍ତି ।
ବୃକ୍ଷମୂଳେ ଉମ୍ବ ଏକ ଗାଦ ଅଛୁ ସ୍ଥିତି ।
ତହିଁର ମଧ୍ୟରୁ ସର୍ପ ବାହାର ହୋଇଣ ।
ତୁମ୍ଭର ଶିରରେ ଛତ୍ର ଫଣା ଜାଭବଣ ।
ଲହ ଲହ କରି ଜିହ୍ୱା କରନ୍ତି ବାହାର ।
ବିଷ ଅଗ୍ନି କଣା ପୁଣ କରନ୍ତି ଉଦ୍‌ଗାର ।
ପବନ ଭକ୍ଷନ୍ତି ସର୍ପ ଅତି କ୍ଷୁଧାତୁରେ ।
ତେଣୁ ଫଣା ଦେଇଛନ୍ତି ତୁମ୍ଭର କନ୍ଧରେ ॥
ଏତେ ଯତ୍ନ କରିଛ ହେ ଦେହ ଅପକାର ।
ମଣ୍ଡପ ରଚିଛୁ କାହିଁ ବସିବା ତହିଁର ॥
ଏମନ୍ତ ଶୁଣିଣ କହୁଛନ୍ତି ତପୋଧନ ।
ମୋହର ବଚନ ଏବେ ଶୁଣ ହେ ଅର୍ଜୁନ ।
ଭାବଯା କଲେ ଯେ ଲାଗେ ଗୃହର ଜଞ୍ଜାଳ ।
ପୁତ୍ରକନ୍ୟା ବିନା ପ୍ରାଣ ହୁଅଇ ବିକଳ ।
ପୁତ୍ର କନ୍ୟା ହେଲେ ବୋଲି ଚିନ୍ତା କରଇବ
ବିଭାହେଲେ ବୋଲେ ନାତିନାତୁଣୀ ଦେଖିବ
ପୁତ୍ର ନାତି ହେଲେ କେବେହେ ବିଦ୍ୟାସେ ପଢ଼ିବ
ବିଦ୍ୟା ପଢ଼ି ଧନ ଆଣି କୁଟୁମ୍ବ ପୋଷିବ ।
ଗୃହ ନାରୀ ବୋଲେ ନିରନ୍ତରେ କ୍ଷୋଭ ପାଇ
ଧନ ଅର୍ଜିବା ପୋଷିବା ବନ୍ଧରେ ପଡ଼ଇ ।
ଧର୍ମ କଥାମାନ ଆଉ ନ ପଡ଼େ ମନରେ ।
ଦଣ୍ଡେମାତ୍ର ଭଜିଣ ନ ପାରେ ଶ୍ରୀହରିରେ ॥
ବକଦାଲ୍ଭ କହନ୍ତି ତୁ ଶୁଣ ପାର୍ଥବୀର ।
ଶ୍ରେଣୀ ବୃନ୍ଦ ଦାସ ସେବା ନ କଲି ସଂସାର ॥
କେତେଦିନ ବଞ୍ଚିବି ଆୟୁଷ ଅଳ୍ପ ମୋର ।
ଏଥି ପାଇଁ ମିଛେ କାହିଁ କରିବି ସଂସାର ।
ତାହା ଶୁଣି ଅର୍ଜୁନ ବୋଲନ୍ତି ଋଷି ଶୁଣ ।
ଛନ୍ନ ବଟପତ୍ର ଶିରେ ଦିଅ କି କାରଣ ।
କେତେକାଳ ତପ କରୁଅଛ ଏଥେଁ କହ ।
ପରମାୟୁ କେତେ ପୁଣି ତୁମ୍ଭର ଅଟଇ ।
ଯଥାର୍ଥ ବଚନ କୁହ କପଟ ନ କର ।
କେତେ କାଳ ହେଲା ପୁଣ ହେଲ ତପସ୍ୱୀ ॥
ଅର୍ଜୁନ ବଚନ ଶୁଣି କହୁଛନ୍ତି ଋଷି ।
ଏଥି ଯେତେକାଳ ହେଲା ତପ କରେ ବସି ॥

କୋଟି କୋଟି ମାରକଣ୍ଡ ଋଷି ଗଲେ ଜାଣ ।
ସହସ୍ର ବରଷେ କେତେ କରିବ ବଖାଣ ॥
ସତ୍ୟଲୋକରୁ ଆସି ସତର ବ୍ରହ୍ମା ଗଲେ ।
ସେହିକାଳୁ ଏଥି ମୁହିଁ ବସିଅଛୁ ଭଲେ ॥
ଯେତେକାଳେ ବ୍ରହ୍ମାମାନଙ୍କର ହୁଏ ହତ ।
ଚରାଚର ଆଦି ଜଗତ ଡୁବନ୍ତି ସମସ୍ତ ॥
ବଟବୃକ୍ଷ ଜାଣ ସେତୁ ସହସ୍ର ପତ୍ରେଣ ।
ସଂସାର ଗୋଟିକ ଆଚ୍ଛାଦନ ଥାଇ ପୁଣ ।
ତହିଁ ଏକା ପତ୍ରକେ ବାଳକ ଶୋଇଥାଇ ।
ହସି ଖେଳ ବାଦେଣ ସେ ଜୀବନ ଧରଇ ।
ବାମପାଦ ଅଙ୍ଗୁଠିକି ମୁଖରେ ଦେଇଣ ।
ନିରନ୍ତର ଅମୃତ ସେ କରୁଥାଇ ପାନ ॥
ମୁଖ ନିନ୍ଦା କରଇ ଶରଦ ନିଶାକର ।
କରେ ପାଦଧରି କେତେ ଦିଶନ୍ତି ସୁନ୍ଦର ।
ତାହାଙ୍କୁ ଦେଖିଣ ମୁହିଁ କୃତାର୍ଥ ହୁଅଇ ।
ଏହି କୃଷ୍ଣ ରୂପ ସେହି ବାଳକ ଦିଶଇ ॥
ଜାଣିଲି ଏ କୃଷ୍ଣ ନିଶ୍ଚେ ହୋଇଛନ୍ତି ଜାତ ।
ଦ୍ୱାପର ଯୋଗରେ ଭେଟ ହୋଇଲା ଏବେତ
ଏ ମୋର କର୍ମକୁ କୃଷ୍ଣ ଦୂର ହୋଇ ଥିଲେ ।
ଏବେ ମୋତେ କୃପାକରି ନିକଟେ ଆଇଲେ
ପ୍ରଳୟ କାଳେ ବଟପତ୍ରେ ଦେଖିଥିଲି ମୁହିଁ ।
ବାଳକ ରୂପରେ ଏହି କୃଷ୍ଣ ଥିଲେ ଶୋଇ ।
ଶୁଣ ହେ ଶ୍ରୀକୃଷ୍ଣ ତୁମ୍ଭେ ସେହି ସେ ବାଳକ ।
ଏତେକାଳେ ଦୟା କଲ ଲକ୍ଷ୍ମୀଙ୍କ ନାୟକ ।
ପ୍ରଳେ କାଳେ ଏକା ମୋତେ ଗ୍ଲଡ଼କରି ଗଲ
ବାଳକ କାଳରୁ ସ୍ଥିତି ଏବେ ଦେଖାଦେଲ ।
ବାଳକାଳେ ତୁମ୍ଭଙ୍କୁ ମୁଁ ଦେଖି ଚକ୍ରଧର ।
କିଛି ମାଗିବାକୁ ଥିଲି ବିଚାର ମନର ॥
ବାଳକ ଦେଖିଣ ପ୍ରଭୁ ନ ମାଗିଲି ମୁହିଁ ।
ଏତେ ବଡ଼ ହେଲ ଦେବ ଯାହା ମାଗିବଇଁ ॥
ମୁଁ ଯାହା ମାଗିବି କୃଷ୍ଣ ଅବଶ୍ୟ ତା ଦେବ ।
ବହୁଦିନ ମନୋରଥ ପୂର୍ଣ୍ଣ କରିଇବ ॥
ଏମନ୍ତ କହି ବକଦାଲ୍ଭ ଆନନ୍ଦେ ଉଠିଲେ ।
ଶ୍ରୀକୃଷ୍ଣଙ୍କୁ ଧରି ଗାଢ଼େ ଆଲିଙ୍ଗନ କଲେ ।
ଦେଖି ଜଗନ୍ନାଥ ତହିଁ ଚତୁର୍ଭୁଜ ମୂର୍ତ୍ତି ।
ବକଦାଲ୍ଭ ଋଷିଙ୍କୁ ପ୍ରଦାନ କଲେ ମୁକ୍ତି ॥

ପାର୍ଥ ମୁଖ ବୃଦ୍ଧ ଋଷି ବୋଲନ୍ତି ବଚନ ।
ଶ୍ରୀହରି ଜାଣନ୍ତି ନିଶ୍ଚେ ମୁକତି କାରଣ ॥
ମୁକ୍ତି ନାଶି ଥାଉନ୍ତି ଧନ ନାଶି ପରବ୍ରହ୍ମ ।
ଭବ ଯେଉଁ ଅଜ୍ଞାନ ସଂସାରେ ପଡ଼େ ଜୀବ ॥
ବାଞ୍ଛା କରିଥାଇ ମୁଁ ଏମନ୍ତ ବୃଦ୍ଧ ନାଶି ।
ଜାଣି ଦୟାକରି ମୋତେ ଦେଲ ତା ଶ୍ରୀହରି ।
ଆନନ୍ଦ ମନରେ ମୋତେ କୃଷ୍ଣ କଲେ ପାରି
ଯଥା ମୁହିଁ ହୋଇଲି ଯେ ମୁକ୍ତିନାମେ ନାଶି ॥
ଏମନ୍ତ ବଚନ ଶୁଣି ଶ୍ରୀହରି ଅର୍ଜୁନ ।
ଋଷିଙ୍କୁ କହିଲେ କରି ବହୁତ ସମ୍ମାନ ॥
ଶ୍ରୀହରି କହନ୍ତି ତୁମ୍ଭେ ପୁରାଣ ପୁରୁଷ ।
ବହୁତ ଦେଖିଣ ଅଛ ବ୍ରହ୍ମାଙ୍କର ନାଶ ।
ଯେଉଁ ବ୍ରହ୍ମାମାନଙ୍କର ଯହିଁ ଅଛି ସ୍ଥିତି ।
ସମସ୍ତ ଦେଖିଣ ଅଛ ତୁମ୍ଭେ ମହାଯତି ॥
ତୁମ୍ଭେ ହସ୍ତିନାକୁ ଗଲେ ରାଜା ଯୁଧିଷ୍ଠିର ।
ସୁଫଳ ଲଭିବେ ଜାଣ ଯଜ୍ଞ କରିବାର ॥
ତୁମ୍ଭଙ୍କୁ ଦର୍ଶନ କରି ଲଭିବେ ମୁକତି ।
ତାଙ୍କ ଭାଗ୍ୟ ଥିଲେ ତୁମ୍ଭେ ଯିବ ମହାଯତି ।
ଏମନ୍ତ ଶୁଣିଣ ଋଷି କହନ୍ତି ଉତ୍ତର ।
ଯେତେ ପାପ ଥିଲା ଜାଣ ମୋହର ଦେହର ।
ସେଣୁ ମୋତେ ପରମ ଗତି ହରି ଦେଲେ
ପତିତ ତାରଣ ସର୍ବ ପାତକ ନାଶିଲେ ॥
ଅର୍ଜୁନଙ୍କୁ ବୃଦ୍ଧ ପୁଣି ବୋଲନ୍ତି ବଚନ ।
ସବୁ ଦେବଙ୍କର ମୂଳ ପ୍ରଭୁ ଭଗବାନ ॥
ତାଙ୍କ ଅଦଅନ୍ତ ମୁହିଁ ଉତ୍ତମେ ଜାଣଇ ।
କୋଟି କୋଟି ଶିବ ବ୍ରହ୍ମା ଅନ୍ତ ଟି ନ ପାଇ ।
ଶୁଣନ୍ତୁ ପୂର୍ବର କଥା କହିବି ତୁମ୍ଭଙ୍କୁ ।
ପଦ୍ମକଳ୍ପ ବ୍ରହ୍ମା ଆସିଥିଲେ ମୋ ପାଶକୁ ॥
ସେ କାଳରେ ବ୍ରହ୍ମା ଯାଇଁ ବେଦ ପଢୁଥିଲେ
ସଙ୍ଗେ ଷାଠି ଋଷି ହଂସ ବାହନେ ଆଇଲେ ।
ସେ ସମସ୍ତେ ମିଳି ମୋତେ ବୋଇଲେ ବଚନ
କେ ତୁମ୍ଭେ କରୁଛ ତପ ଶିରେ ଜଟାଛନ୍ନ ।
କିମ୍ପାଇ ବହୁତ କାଳୁ କରୁଅଛ ତପ ।
ମୁଁ ବ୍ରହ୍ମା ପ୍ରସନ୍ନ ହେଲି ଦେଖ ମୋ ସ୍ୱରୂପ
ପ୍ରସନ୍ନ ହୋଇଲି ବାପ ତୋହର ଉପରେ ।
ଯେ ତୋହର ଇଚ୍ଛା ବର ମାଗ ତୁ ମୋହରେ

ଏହା ଶୁଣି ତାହାଙ୍କୁ ଯେ ଦେଲି ମୁହିଁ ଗାଳି ।
ବୋଇଲି ଦୁରାତ୍ମା ଏଥୁଁ ବେଗେ ଯାଅ ଚଳି ॥
ଏତା ପରାୟେ କୋଟି ବ୍ରହ୍ମା ଦେଖିଅଛି ମୁହିଁ
ବେଗେ ଏଥୁ ଚଳିଯାଅ ନ କର ବଡ଼ାଇ ।
ବ୍ରହ୍ମାଙ୍କୁ ଏମନ୍ତ ମୁହିଁ ବୋଲନ୍ତେ ବଚନ ।
ସେକାଳେ ବହିଲା ଆସି ପ୍ରଳୟ ପବନ ॥
ଅଣଗୁଣ ପବନ ସେ ସହସ୍ର ଆକାରେ ।
ବ୍ରହ୍ମାସହ ମୋତେ ଘେନି ଚଳିଲା ଶୂନ୍ୟରେ ॥
ସେ ଦ୍ୱିତୀୟ ବ୍ରହ୍ମାଣ୍ଡକୁ ଘେନି ବେଗେ ଗଲା ।
ଅଷ୍ଟମୁଖ ବ୍ରହ୍ମା ପାଶେ ପ୍ରବେଶ ହୋଇଲା ।
ଏ ବ୍ରହ୍ମାଙ୍କଠାରୁ ହୋ ସୁନ୍ଦର ଅଟେ ସେହି ।
ଦେଖି ଚତୁର୍ମୁଖ ବ୍ରହ୍ମା ଆନନ୍ଦିତ ହୋଇ ॥
ଅଷ୍ଟମୁଖ ବ୍ରହ୍ମା ଦେଖି ଆମ୍ଭଙ୍କୁ ପଚାରି ।
କାହୁଁ ତୁମ୍ଭେ ଆସିଅଛ ଏ ମୋହର ପୁରୀ ।
କିବା ତୁମ୍ଭ ନାମ ଅଟେ କୁହ କିନା ମୋତେ
ଏମନ୍ତ ଶୁଣିଣ ବ୍ରହ୍ମା କହିଲେ ତ୍ୱରିତେ ॥
ଚତୁର୍ମୁଖ ବ୍ରହ୍ମା ମୁହିଁ ଶିଷ୍ୟ ଏ ମୋହର ।
ସେବାକରି ବର ପାଇ ଅଛଇ ସଙ୍ଗର ।
ବକଦନ୍ତ ଋଷି ବୋଲି ନାମ ଯାଙ୍କ ଜାଣ ।
ଶୁଣି ଅଷ୍ଟମୁଖ ବ୍ରହ୍ମା ହସିଲେ ତତକ୍ଷଣ ।
ବୋଇଲେ ହୋ ଚତୁର୍ମୁଖ ବ୍ରହ୍ମା ତୁମ୍ଭେ ଶୁଣ
ଏ ତୁମ୍ଭର ବକଦନ୍ତ ଶିଷ୍ୟ ବୋଲି ଜାଣ ।
କାଳକାଳଯାଏ ଦେଖି ନ ଥିଲି ଯେ ମୁହିଁ ।
କେତେକାଳ ବ୍ରହ୍ମା ହୋ ବୋଲାଉଥିଲ ତୁହି
ଶିଷ୍ୟ ସହିତରେ ମୋର ସେବକ ହୋଇବୁ ।
ଯାହା ଆଜ୍ଞା ଦେବ ଶିଷ୍ୟ ସହିତେ କରିବୁ ।
ଏମନ୍ତ କହନ୍ତେ ଅଷ୍ଟମୁଖ ବ୍ରହ୍ମା ପୁଣ ।
ସେହିଠାରେ ବହିଲା ଯେ ପ୍ରଳୟ ପବନ ॥
ସେ ଘେନି ବ୍ରହ୍ମାଙ୍କୁ ମୋତେ ଉଡ଼ାଇଣ ନେଲା
ତୃତୀୟ ବ୍ରହ୍ମାଣ୍ଡେ ନେଇ ଭେଟ କରାଇଲା ॥
ସେଠାରେ ଦେଖିଲି ଷୋଳମୁଖ ବ୍ରହ୍ମା ଅଛି
ବ୍ରହ୍ମାଣ୍ଡର ନବ ନାଶ ବୈଷ୍ଣବ ଅଟନ୍ତି ।
ଆମ୍ଭଙ୍କୁ ଦେଖି ସେ ବ୍ରହ୍ମା ପଚାରନ୍ତି ପୁଣ ।
କେଉଁଠାରୁ ଆସିଅଛ କରନ୍ତୁ ବଖାଣ ।
କେ କିସ ନାମ ତୁମ୍ଭର ଜନଙ୍କର କୁହ ।
କେଉଁଠାରୁ ଆସିଅଛ କାହୁଁ ତୁମ୍ଭ ଗୃହ ॥

ତାହା ଶୁଣି ଅଷ୍ଟମୁଖ ବ୍ରହ୍ମା ଯେ ବୋଲନ୍ତି ।
ହୋମ ଯଜ୍ଞସ୍ଥଳୁ ଆମ୍ଭେ ଆସୁଅଛୁ ଏଥି ॥
ସେ ବୋଇଲେ ଯଦି ହୋ ଆଇଲ ଆମ୍ଭପୁର ।
ଯେ ଯାହାର ଗର୍ବମାନ ମନୁ ଦୂରକର ।
ଆମ୍ଭପାଦେ ତିନିଜଣ ନମସ୍କାର କର ।
କରଯୋଡି ତୁହ ମନେ ଅନ୍ୟଥା ନ ଧର ॥
ତାଙ୍କ କଥା ଶୁଣି ତହିଁ ରହିଲ ହେ ଜାଣ ।
କହିଲେ ତାହାଙ୍କୁ ଚତୁର୍ମୁଖ ବ୍ରହ୍ମା ପୁଣ ॥
ସତ୍ୟଲୋକେ ଚତୁର୍ମୁଖ ବ୍ରହ୍ମା ଅଟେ ମୁହିଁ ।
ଦ୍ୱିତୀୟ ବ୍ରହ୍ମାଣ୍ଡ ଅଷ୍ଟମୁଖ ଅଟେ ଏହି ।
ଆମ୍ଭର ଶିଷ୍ୟ ଏ ବକଦାଲ୍ଭ୍ୟ ଋଷି ଜାଣ ।
ଶୁଣି ଷୋଳ ମୁଖ ବ୍ରହ୍ମା ହସିଲେ ତକ୍ଷଣ ॥
ଏକାବେଳେ ଷୋଳମୁଖେ ହସନ୍ତେଣ ସେହି
ମହାପୁର ଯାକ ଗୋଳ ଉଚ୍ଛୁଳିଲା ତହିଁ ।
କରତାଳି ମାରିଣ ସେ ଆପଣା କରରେ ।
ବୋଇଲେ ଆଶ୍ଚର୍ଯ୍ୟ କଥା ଶୁଣିଲି କର୍ଣ୍ଣରେ ।
ମୋହର ଉପରେ ବ୍ରହ୍ମା ଅଛି ସଂସାରରେ ।
ଏହା ମୁଁ କେବେ ଶୁଣି ନ ଥିଲି ଏ କର୍ଣ୍ଣରେ
ଷୋଳମୁଖ ବ୍ରହ୍ମା ଯେ ବୋଲନ୍ତେ ଏହୁବାଣୀ
ମହା ପ୍ରଳୟ ପବନ ବହିଲାକ ପୁଣି ।
ତିନିବ୍ରହ୍ମାସହିତେ ସେ ବେଗେ ମୋତେ ନେଲା
ଚତୁର୍ଥ ବ୍ରହ୍ମାଣ୍ଡେ ନେଇ ପକାଇଣ ଦେଲା ॥
ତହିଁରେ ବତିଶ ମୁଖ ବ୍ରହ୍ମା ବସିଛନ୍ତି ।
ପକାଇଲେ ପବନ ଆମ୍ଭଙ୍କୁ ତାଙ୍କ କତି ॥
ସେ ଆମ୍ଭଙ୍କୁ ଦେଖି ବଡ ଆଶ୍ଚର୍ଯ୍ୟ ହୋଇଲେ ।
ଦୟାକର ଜଣେ ଜଣେ ନାମ ପଚାରିଲେ ॥
ଆମ୍ଭେ ଜଣେ ଜଣେ ତାଙ୍କୁ କହିଲୁ ଯେ ନାମ
ସତ୍ୟଲୋକ ଚତୁର୍ମୁଖ ବ୍ରହ୍ମାଙ୍କର ନାମ ।
ହୋମଯଜ୍ଞ ଲୋକ ଅଷ୍ଟମୁଖ ବ୍ରହ୍ମା ଏହି ।
ଜୀବଲୋକେ ଷୋଳମୁଖ ବ୍ରହ୍ମା ଏ ଅଟଇ ॥
ମୋତେ ଦେଖାଇ ବୋଇଲେ ଶିଷ୍ୟଏ ଆମ୍ଭର
ଋଗବେଦ ପଢୁଛନ୍ତି ଆମ୍ଭର ପାଶର ॥
ତାହାଶୁଣି ସେ ବ୍ରହ୍ମାଟି କହିଲେ ବଚନେ ।
ଆଶ୍ଚର୍ଯ୍ୟ କଥାଟି ତୁମ୍ଭେ କହିଲ ଯେ ପୁଣ ।
ମୋ ସମାନେ ସଂସାରରେ ବ୍ରହ୍ମା କାହିଁ ଅଛି
ମୁହିଁ ସେ ସମସ୍ତ ସୃଷ୍ଟି ସର୍ଜନା କରୁଛି ।

ତୁମ୍ଭଙ୍କୁ କେ ବ୍ରହ୍ମା କହିଲା କରଅଛି ମୁଣି ।
ଥାଉ ତ ଦେଖିବା କେବେ କର୍ଣ୍ଣେ ନାହିଁ ଶୁଣି
ଆକାଶରେ ଚନ୍ଦ୍ରମା ହୋଇଲେ ଉଦେ ଜାଣ
ନକ୍ଷତ୍ରଙ୍କ ତେଜ ଯେସନ୍ତେ ହୁଅଇ ମଳିନ ॥
ସେହିରୂପେ ଚନ୍ଦ୍ର ପ୍ରାୟେ ବ୍ରହ୍ମା ମୁଁ ଅଟଇ ।
ଜୁଳୁଜୁଳା ପୋକ ପ୍ରାୟେ ତୁମ୍ଭଙ୍କୁ ମଣଇ ।
ସୁଦକ୍ଷ ଦେଶର ବ୍ରହ୍ମା ଜାଣ ହାଦେ ମୁହିଁ ।
ତୁମ୍ଭେମାନେ ବ୍ରହ୍ମାବୋଲି କେବେ ଶୁଣି ନାହିଁ
ଏମନ୍ତ ବତିଶ ମୁଖ ବ୍ରହ୍ମା ସେ ବୋଲନ୍ତେ
ମହାଘୋର ପବନ ହେ ବହିଲା ତୁରନ୍ତେ ।
ଦ୍ୱାତ୍ରିଂଶ ବ୍ରହ୍ମା ସହିତେ ସମସ୍ତଙ୍କୁ ନେଲା ।
ପଞ୍ଚମ ବ୍ରହ୍ମାଣ୍ଡ ମଧ୍ୟେ ନେଇ ପକାଇଲା ॥
ଚତୁଃଷଷ୍ଠୀ ମୁଖ ବ୍ରହ୍ମା ଅଛନ୍ତି ଯହିଁରେ ।
ପବନର ଘାତେ ଆମ୍ଭେ ମିଳିଲୁ ତହିଁରେ ॥
ସେ ବ୍ରହ୍ମାଙ୍କ ମହିମା କହିଲେ ନ ସରଇ ।
ଦେଖିଣ ଆମ୍ଭର ଜ୍ଞାନ ବୁଡିଲାକ ତହିଁ ॥
ସୁରମ୍ୟ ବୋଲିଣ ଜାଣ ନାମ ବ୍ରହ୍ମାଙ୍କର ।
ଏହିକାଳେ ବହିଲା ଯେ ପ୍ରଳୟ ସମୀର ।
ପଞ୍ଚବ୍ରହ୍ମା ସହିତରେ ଉଡାଇଣ ନେଲା ।
ଷଷ୍ଠ ବ୍ରହ୍ମାଣ୍ଡରେ ନେଇ ପକାଇଣ ଦେଲା ।
ଅଧୋମୁଖ ପୁର ବୋଲି ନାମ ଧରେ ସେହୁ
ବ୍ରହ୍ମାଆଦି ସର୍ବେ ଛନ୍ତି ଅଧୋମୁଖ ହୋଇ ।
ପଦ୍ମାନ ଉପସ୍ଥିତ ହୋଇଲା ଆମ୍ଭର ।
ତଳକୁ ହୋଇଲା ଶିର ଶୁଣ ପାର୍ଥ ବୀର ॥
ସେ ପୁରେ ଯେତେକ ଛନ୍ତି ବ୍ରହ୍ମା ସହିତେଣ
ତଳକୁ ଶିର ତାଙ୍କର ଉପରେ ଚରଣ ।
ଶଏ ଅଠାଇଶ ମୁଖ ଜାଣ ସେ ବ୍ରହ୍ମାର ।
ଭେଟିଲୁ ଯେ ଆମ୍ଭେ ଯାଇ ତାହାଙ୍କ ପୁରର
ସେ ଆମ୍ଭଙ୍କୁ ଦେଖି ସେହିକ୍ଷଣି ପଚାରିଲେ ।
ତୁମ୍ଭେମାନେ କେଉଁଠାରୁ ଆସିଛ ବୋଇଲେ
ଆମ୍ଭର ବୃତ୍ତାନ୍ତ ସର୍ବ କୁହନ୍ତେ ତାହାଙ୍କୁ ।
ଶୁଣିଣ ସେ ମହାକୋପ କଲେକ ଆମ୍ଭଙ୍କୁ ॥
ବୋଇଲେ ମୋ ଥାନ୍ତେ ବ୍ରହ୍ମା ଅଛିକି ଏ ପୁଣ
ସକଳ ବ୍ରହ୍ମାମାନଙ୍କ ମୁହିଁ ସେ କାରଣ ।
ଦେଖ ମୋ ବଦନ ଅଟେ ଶଏ ଅଠାଇଶ ।
ସକଳ ମୁଖରୁ ବେଦ ହେଉଛି ପ୍ରକାଶ ।

ଏମନ୍ତ ବଚନ ବ୍ରହ୍ମା କହନ୍ତେ ଯେ ପୁଣ ।
ସେହିକାଳେ ବହିଲା ଯେ ପ୍ରଳୟ ପବନ ॥
ସେ ବ୍ରହ୍ମାଙ୍କ ସହିତରେ ମୋତେ ବେଗେ ନେଲା
ସପତ ବ୍ରହ୍ମାଣ୍ଡ ମଧ୍ୟେ ନେଇ ପକାଇଲା ।
ଦୁଇଶ ଯୌବନ ମୁଖ ବ୍ରହ୍ମା ଛନ୍ତି ତହିଁ ।
ତାହାଙ୍କ ମହିମା ଯେ କହିଲେ ନ ସରଇ ।
ସୁଗମ ବୋଲିଣ ନାମ ସେହି ବ୍ରହ୍ମାଙ୍କର ।
ଅଧୋମୁଖ ହୋଇ ସେ ଯେ କରନ୍ତି ଋଗୃର ॥
ବସିଣ ଯେ ରତ୍ନ ସିଂହାସନର ଉପରେ ।
ବୋଇଲେ ଅଇଲ କିମ୍ପା ଘର ବେଜ୍‌ ଠାରେ ।
ତାଙ୍କ ବାଣୀ ଶୁଣି ଅଚମ୍ଭ କହନ୍ତେ ସମସ୍ତ ।
ତାହା ଶୁଣି କୋପଭରେ ହେଲେ ପ୍ରଜ୍ୱଳିତ ।
ବୋଇଲେ ମୋ ଥାନ୍ତେ ବ୍ରହ୍ମା କାହିଁ ସେ ଅଛଇ
ଏତେ ଅବଗୃବ କଥା କହୁଛ କିମ୍ପାଇ ॥
ଏମନ୍ତ ସମୟେ ଘୋର ପବନ ବହିଲା ।
ବ୍ରହ୍ମାଙ୍କ ସହିତେ ମୋତେ ଉଡାଇଣ ନେଲା
ଅଷ୍ଟମ ବ୍ରହ୍ମାଣ୍ଡ ମଧ୍ୟେ ପକାଇଲା ନେଇ ।
ପଈଶତ ଅଷ୍ଟମୁଖ ବ୍ରହ୍ମା ଛନ୍ତି ତହିଁ ।
ଆମ୍ଭଙ୍କୁ ଦେଖିଣ ସେହୁ କହିଲେ ବଚନ ।
କାହିଁ ତୁମ୍ଭେ ଆସିଅଛ କ୍ଷୁଦ୍ର ହେ ବଦନ ॥
ଆମ୍ଭର ଚରଜ କହୁଁ ତାଙ୍କର ଅଗର ।
ଶୁଣି ମହାକୋପ ଯେ କରିଲେ ବେଦବର ।
ବୋଇଲେ ମୋ ଥାନ୍ତେ ବ୍ରହ୍ମା କାହୁଁ ଅଛି ଅଉ
ଏପରି ଅନ୍ୟାୟ କଥା କିମ୍ପା ପୁଣି କହୁ ॥
ରତ୍ନଥେଳ ଉପରେ କି ଚନ୍ଦ୍ରମା ବହଇ ।
ମୋହର ସମାନେ ବ୍ରହ୍ମା ଆଉ କି ଅଛଇ ।
ଏମନ୍ତ ବଚନ ସେହୁ ଆମ୍ଭଙ୍କୁ କହନ୍ତେ ।
ଘୋର ପ୍ରଳୟ ପବନ ବହିଲା ତ୍ୱରିତେ ॥
ଅଷ୍ଟବ୍ରହ୍ମା ସହିତେ ଉଡ଼ାଇ ମୋତେ ନେଲା
ନବମ ବ୍ରହ୍ମାଣ୍ଡ ମଧ୍ୟେ ପକାଇଣ ଦେଲା ॥
ସହସ୍ରେକ ମୁଣ୍ଡେ ବ୍ରହ୍ମା ଅଛନ୍ତି ଯେ ତହିଁ ।
ଆମ୍ଭଙ୍କୁ ଦେଖିଣ ପୁଚ୍ଛା କଲେ ଦୟାବହି ॥
ତାହାଙ୍କୁ ଦେଖିଣ ଭୟ ଉପୁଜିଲା ମନେ ।
ସାଷ୍ଟାଙ୍ଗେ ପ୍ରଣାମ ହୋଇଲି ଶ୍ରୀଚରଣେ ॥
କରଯୋଡ଼ି ସମସ୍ତ କହନ୍ତେ ତାଙ୍କ ପାଶ ।
ଶୁଣି ବେଦବର କଳ ହୋଇଥିଲ ସନ୍ତୋଷ ।

ବୋଇଲେ ବହୁତ ଦୁଃଖେ ଆସିଅଛ ପୁଣ ।
ଆମ୍ଭର ମହିମା ଯାଇ କରିବ ବଖାଣ ।
ତାହା ଶୁଣି ଅମ୍ଭେମାନେ ହରଷ ହୋଇଲୁ ।
ସର୍ବ ବ୍ରହ୍ମା ସହିତରେ ସ୍ତୁତି ଆରମ୍ଭିଲୁ ।
ବହୁତ ସେ ବ୍ରହ୍ମଋଷି ବ୍ରହ୍ମାପାଶେ ଥିଲେ ।
ସମସ୍ତଙ୍କ ସ୍ତୁତି ଶୁଣି ହରଷ ହୋଇଲେ ॥
ସହସ୍ରମୁଖ ବ୍ରହ୍ମା ଶୁଣି ହରଷ ହୋଇଣ ।
ଜଣେ ଜଣେ ନିଜ ପାଶେ ନେଲେ ହକାରିଣ
ଶାଢ଼ୀ ଯେ ପ୍ରସାଦମାନ ସମସ୍ତଙ୍କୁ ଦେଇ ।
ବୋଇଲେ ଯେ ଯାହା ଦେଶ ପାଳ ତୁମ୍ଭେ ଯାଇଁ
ସେ ମୁଣି ବୋଇଲେ ମୁଁ ବ୍ରହ୍ମାଙ୍କ ଶ୍ରେଷ୍ଠ ଜାଣ
ଏହିପରି ସର୍ବେ ମୋତେ ଜାଣିଥିବ ପୁଣ ॥
ଶୁଣି ବ୍ରହ୍ମାମାନେ ମନେ ହରଷ ହୋଇଣ ।
ଯେ ଯାହାର ବ୍ରହ୍ମାଣ୍ଡକୁ କଲେକ ଗମନ ।
ସହସ୍ରମୁଖ ବ୍ରହ୍ମା ସର୍ବ ବ୍ରହ୍ମାଙ୍କ ଈଶ୍ୱର ।
ତାଙ୍କ ଅଙ୍ଗୁ ବ୍ରହ୍ମା ଯେତେ ହେଲେ ଅବତାର
ଯେହ୍ନେ ମହାବିଷ୍ଣୁ ଠାରୁ ଅବତୀର୍ଣ୍ଣ ହୋଇ ।
ଦୀପରୁ ଯେସନେ ଦୀପ ବହୁତ ଜଳଇ ॥
ସେହିରୂପେ ଏସ ବ୍ରହ୍ମାଙ୍କଠାରୁ ପାର୍ଥ ଜାଣ ।
କୋଟି କୋଟି ବ୍ରହ୍ମା ଜାତ ହୋଇଛନ୍ତି ପୁଣ
ବ୍ରହ୍ମା ପ୍ରଳୟ କାଳରେ ସର୍ବ ବ୍ରହ୍ମା ଯାନ୍ତି ।
ସହସ୍ରମୁଖ ବ୍ରହ୍ମାଙ୍କର ହୃଦରେ ପଶନ୍ତି ।
ଏତେ ଏତେ ବ୍ରହ୍ମା ପୂର୍ବେ ଦେଖିଅଛି ମୁହିଁ
ଏହି ଠାରେ ବସିଣ ତପସ୍ୟା କରୁଛଇଁ ।
ଚିରସ୍ଥାୟୀ ନୋହେ ଯେଣୁ ଏ ମୋର ଶରୀର ।
ନାଶହେବ ନିଶ୍ଚେ ଦିନେ ପ୍ରଳୟ କାଳର ॥
ତେଣୁ ମାୟାସଂସାରେ ନ ଲଗାଇଲି ମୋହ ।
ତ୍ୟାଗ କରିଅଛି ମୁହିଁ ଦାରାସୁତ ଗୃହ ॥
ତୋହର ନିମନ୍ତେ କୃଷ୍ଣ ଦୟା ମୋତେ କଲେ
ମୋହ ସ୍ଥିର ଅଧମକୁ ଆଲିଙ୍ଗନ ଦେଲେ ॥
ଏହି କୃଷ୍ଣ ଭକ୍ତ ପାଇଁ ଧରିଛି ଶରୀର ।
ନାରଦାଦି ମୁନିଙ୍କି ଯା ଅଟେ ଅଗୋଚର ॥
ଏମନ୍ତ ପ୍ରକାରେ ମୁନି ପାର୍ଥଙ୍କୁ କହିଲେ ।
ଶୁଣି କୃଷ୍ଣ ସହିତେ ଆନନ୍ଦ ସର୍ବେ ହେଲେ ।
ଋଷିଙ୍କ ଚରଣେ ପଡ଼ି ବୋଇଲେ ଅର୍ଜ୍ଜୁନ ।
ହସ୍ତିନାକୁ ଯିବେ ପ୍ରଭୁ ସଦୟ ହୋଇଣ ।

ଯୁଧିଷ୍ଠିର ମହାରାଜା ଅଶ୍ୱମେଧ ଯାଗ ।
ହସ୍ତିନାପୁରେ କରିବେ ସକଳ ମହାଭାଗ ।
ଏଣୁ ତରତେ ସନତ ଅଟେ ମୁନିବର ।
ହସ୍ତିନା ପୁରକୁ ଏହିକ୍ଷଣି ସତ୍ୱର ॥
ଅର୍ଜ୍ଜୁନଙ୍କର ତନୟ ଭକତି ଦେଖିଣ ।
ହାଦୋଳାରେ ବସେଇଲେ ହୋଇ ହୃଷ୍ଟମନ
ଋଷିଙ୍କି ଘେନିଣ ସର୍ବେ ଆନନ୍ଦେ ବସିଲେ ।
କୂଳରେ ସୈନ୍ୟଙ୍କ ପାଶେ ପ୍ରବେଶ ହୋଇଲେ
ଶ୍ରୀହରି ଚରିତ ଏହି ଅମୃତ ଅଟଇ ।
ମହାଦେବ କହେ ଶ୍ରୀକୃଷ୍ଣଙ୍କ ପାଦ ଧ୍ୟାୟୀ ॥

ଇତି ଶ୍ରୀ ଜୈମିନି ଭାରତେ ହରଭକ୍ତି
ରସଲୀଳା ସାର କଥା ପ୍ରବନ୍ଧ
ନାମ ପଞ୍ଚତ୍ରିଂଶୋଽଧ୍ୟାୟଃ

— ———

## ଷଷ୍ଠତ୍ରିଂଶ ଅଧ୍ୟାୟ

କଦେଶ୍ରୁ ନାମ. ମୃତଙ୍କେ ବ୍ୟବସାୟମିତସ୍ତତ
ଫଳଂ ପୁନସ୍ତୁ ଦେବାସ୍ୟ ଯୁକ୍ତ ଧର୍ମିନସଂସ୍ଥିତଃ

### ଜୟଦ୍ରଥ ପୁରେ ଯଜ୍ଞଅଶ୍ୱ ଗମନ
### ଜୟଦ୍ରଥ ପୁତ୍ରର ମୃତ୍ୟୁ
### ଶ୍ରୀକୃଷ୍ଣଙ୍କ ଦ୍ୱାରା ଜୀବଦାନ

କହନ୍ତି ଜୟ ମହାରାଜା ମୁନିଙ୍କୁ କହନ୍ତୁ ।
ତଦନ୍ତରେ ଅଶ୍ୱ ଗଲା କେଉଁ ନଗର ।
ସେ ସ୍ଥାନରେ କି କି ସବୁ ଘଟଣା ହୋଇଲା ।
ଏହା ଶୁଣିବାକୁ ମୋର ବାସନା ରହିଲା ॥
ଜୈମିନି ବୋଲନ୍ତି ଅହେ ଶୁଣ ନରବର ।
ଏଥୁଅନ୍ତେ ଜୟଦ୍ରଥ ପୁରେ ଅଶ୍ୱବର ।
ପ୍ରବେଶ ହୋଇଲା ଯାଇ ଅତି ଆନନ୍ଦରେ ।
ତାଙ୍କ ପଛରେ ଅର୍ଜୁନ ସୈନ୍ୟ ସବୁ ଗଲେ ॥
ଜୟଦ୍ରଥ ପୁରେ ଅଶ୍ୱ ଯାଇ ପ୍ରବେଶିଲା ।
ଗୃହ ଯାଇ ରାଜାଙ୍କୁ ସେ ବାରତା କହିଲା ।
ଶୁଣ ଅହେ ନରପତି ମୋହର ବଚନ ।
ଯଜ୍ଞ ଅଶ୍ୱକୁ ଘେନିଣ ପାଣ୍ଡବ ଅର୍ଜୁନ ।
ସୈନ୍ୟ ସେନାପତି ସହ ପୁରେ ପରବେଶ ।
ବସୁଛନ୍ତି ବାପାଙ୍କୁ କହନ୍ତୁ ଅହେ ନରେଶ ।

ଦୂତ ମୁଖୁଁ ଶୁଣିଣ ଅର୍ଜୁନ ଆଗମନ ।
ଜୟଦ୍ରଥ ପୁତ୍ର ଭୀତ ହେଲା ତତକ୍ଷଣ ।
ବୋଇଲା ମୋହ ପିତାକୁ ମାରିଅଛି ଏହି ।
ମୋତେ ମାରିବା ପାଇଁକି ଏଠାକୁ ଆସଇ ।
ଏତେ ବେଳେ ତାଙ୍କ ମନ ଅଧୀର ହୋଇଲା ।
ଭୟେ ସିଂହାସନ ପରେ ପ୍ରାଣ ତ୍ୟାଗ କଲା ।
ପୁତ୍ରର ଅବସ୍ଥା ଦେଖି ଦୁଃଶୀଳା ତକ୍ଷଣ ।
ମୁଣ୍ଡ ପିଟି ଉଚ୍ଚସ୍ୱରେ କଲା ସେ କ୍ରନ୍ଦନ ॥
ଅର୍ଜୁନ ନିକଟେ ଯାଇ କୃଷ୍ଣେ ପ୍ରଣମିଣ ।
କହିଲା ସେ ଏହିପରି ବିନୟ ବଚନ ॥
ରକ୍ଷାକର ରକ୍ଷାକର ହେ ମଧୁସୂଦନ ।
କେଉଁ ଦୋଷେ ପ୍ରଭୁ ମୋତେ ଦେଲ ଏ ଦଣ୍ଡ
ସଂଗ୍ରାମରେ ପତିଙ୍କି ମୋ କପଟେ ମାଇଲ ।
ଆଜିର ପୁରରେ ପଶି କୁମର ନାଶିଲ ।
ଏପରି କହି ଦୁଃଶୀଳା ଉଚ୍ଚରେ ରୋଦନ ।
କରନ୍ତେ ଦେଖିଣ ଏହା କୁନ୍ତୀଙ୍କ ନନ୍ଦନ ।
ରଥର ଉପରୁ ବେଗେ ତଳକୁ ଆସିଲେ ।
ଭଉଣୀଙ୍କ ଚରଣରେ ଦଣ୍ଡବତ କଲେ ॥
ସାନ୍ତ୍ୱନା ଦେଇଣ ବୋଲେ କ୍ଷମା ଦିଅ କାଳ
ଧନରତ୍ନ ଦ୍ରବ୍ୟ ଦେଶ ଦେବି ମୁଁ ସକଳ ।
ରଥ ଗଜ ଅଶ୍ୱ ଧନରତ୍ନ ସବୁ ଦେବି ।
ଯେସ ବିପଦ ତୁମ୍ଭର କୁହ ମୁଁ ଶୁଣିବି ।
କିଛି ନ କହି ଦୁଃଶୀଳା କାନ୍ଦେ ଘନଘନ ।
ଆକୁଳେ ଶ୍ରୀକୃଷ୍ଣ ପାଦେ ପଡ଼ିଲା ଯାଇଣ ।
ରକ୍ଷାକର ଦୀନବନ୍ଧୁ ଜଗତ ସୋଦର ।
କେଉଁ ଅପରାଧ କଲି ଶ୍ରୀଚରଣ ତଳ ।
ପତି ବିନାଶିଣ ଥିଲ ପୁତ୍ରକୁ ନାଶିଲ ।
କ୍ଷଣେ ମୋତେ ନ ନାଶୁଛ ଅହେ ନନ୍ଦ ବାଳ
ଏହିପରି ମହାଶୋକେ ହେଲା ଅଚେତନ ।
ବହୁକଷ୍ଟେ ଚେତା କରାଇଲେ ନାରାୟଣ ।
ବୋଇଲେ ଦୁଃଶୀଳା ତୁମ୍ଭେ ରୋଦନ ନ କର
ନିଶ୍ଚେ ବଞ୍ଚାଇଣ ଦେବି ତୁମ୍ଭର କୁମର ॥
ଏମନ୍ତ କହିଣ ହରି ଅର୍ଜ୍ଜୁନ ସେ କାଳ ।
ପ୍ରବେଶ ହେଲେ ଦୁଃଶୀଳା କୁମର ପାଶରେ ।
ଛୁଇଁ କର ହରି ତାକୁ ଜୀବଦାନ ଦେଲେ ।
ଦେଖି ସର୍ବେ ଆନନ୍ଦରେ ହରିଧ୍ୱନି କଲେ ।

ଦୁଃଶୀଳାର ମନ ହେଲା ଆନନ୍ଦ ତକ୍ଷଣ ।
ପୁର ମଧ୍ୟରେ ଉତ୍ସବ କଲା ସେ ବହନ ।
ଶ୍ରୀକୃଷ୍ଣ ଅର୍ଜ୍ଜୁନ ତହିଁ ଭୋଜନ କରିଲେ ।।
ଦୁଃଶୀଳାକୁ ଚାହିଁଣ ଅର୍ଜ୍ଜୁନ ବୀର ବୋଲେ ।
ଶୁଣ ଗୋ ଭଗିନୀ ମୋର ଏହୁ ନିବେଦନ ।
ମୋ ସହିତ ପୁରେ ଯିବ ତୁମ୍ଭେ ଏହିକ୍ଷଣ ।।
ତୁମ୍ଭର ନନ୍ଦନ ଆମ୍ଭ ସଙ୍ଗତରେ ଯିବ ।
ଆଈ ମାଉଁଙ୍କୁ ସେଠାରେ ଦର୍ଶନ କରିବ ।
ମହା ଅଶ୍ୱମେଧ ଯଜ୍ଞ ହେବ ହସ୍ତିନାରେ ।
ସେଠାରେ ରଙ୍ଗ ଦେଖିବ ଆନନ୍ଦ ମନରେ ।।
ଅନେକ ଦେଶରୁ ନରପତି ଆସିଛନ୍ତି ।
ଅବର ଶ୍ରୀକୃଷ୍ଣଙ୍କର ସମସ୍ତ ଯୁବତୀ ।।
ମାତାଙ୍କ ସହିତ ତୁମ୍ଭେ କରିବ ଦର୍ଶନ ।
ପୂର୍ବ ଅଭିମାନ ଛାଡ଼ ଧରୁଛୁ ଚରଣ ।।
ଅର୍ଜ୍ଜୁନ ବାକ୍ୟ ଶୁଣିଣ ଦୁଃଶୀଳା ହର୍ଷରେ ।
ପୁତ୍ର ସହ ବାହାରିଲା ଅର୍ଜ୍ଜୁନ ସଙ୍ଗରେ ।
ମନ୍ତ୍ରୀଙ୍କ ହସ୍ତରେ ରାଜ୍ୟ ଭାରକୁ ସେ ଦେଲେ
ତହୁଁ ନାଗପୁରଙ୍କୁ ଯେ ପାର୍ଥବୀର ବୋଲେ ।
ବରଷେ ହୋଇଲା ପୂର୍ଣ୍ଣ ଅହେ ନାଗପୁର ।
ଚାଲ ଏବେ ହସ୍ତିନାକୁ ଯିବା ହେ ବହନ ।।
ଶ୍ରୀକୃଷ୍ଣ ଆନନ୍ଦ ହେଲେ ଅର୍ଜ୍ଜୁନ କହନ୍ତେ ।
ହସ୍ତିନା ଆସିଲେ ସବୁ ରାଜାଙ୍କ ସହିତେ ।।
ପାର୍ଥଙ୍କୁ ବୋଇଲେ ହରି ହସ୍ତିନାକୁ ଯିବା ।
ଯଜ୍ଞଟି ସମ୍ପୂର୍ଣ୍ଣ ଯେହ୍ନେ ହୁଅଇ କରିବା ।
ସୁଖାସନେ ବକବନ୍ତ ଋଷିଙ୍କି ବସାଇ ।
ଆନନ୍ଦରେ ହସ୍ତିନା ପୁରକୁ ଗଲେ ନେଇ ।
କିଛି ଦୂର ଯାଆନ୍ତେ ସେ ଅର୍ଜ୍ଜୁନଙ୍କୁ କହି ।
ହସ୍ତିନା ପୁରକୁ ଗଲେ ଆଗଭର ହୋଇ ।
ଯୁଧିଷ୍ଠିରଙ୍କୁ ଦେଖି ହରି ପ୍ରଣାମ କରିଲେ ।
କୋଳକରି ଯୁଧିଷ୍ଠିର ଆସନେ ବସାଇଲେ ।
ଯୁଧିଷ୍ଠିରଙ୍କ ଆଗେ ଯାଇ କହିଲେ ସକଳ ।
ଯେମନ୍ତେ ବୁଲିଲା ଅଶ୍ୱ ଏ ମହୀ ମଣ୍ଡଳ ।
ଯୁଦ୍ଧରେ ଯେମନ୍ତେ ରାଜାମାନଙ୍କୁ ଜିଣିଲେ ।
ଏକେ ଏକେ ଯୁଧିଷ୍ଠିରଙ୍କ ଆଗରେ କହିଲେ ।।
ବୋଇଲେ ସକଳ ରାଜା ଜିଣି ପାର୍ଥବୀର ।
ପଛରେ ଆସୁଣ ଛନ୍ତି ଘେନି ଅଶ୍ୱବର ।
ଶୁଣ ରାଜା ଅଶ୍ୱ ଶିଳା ରୂପକୁ ଧରିଲା ।
ସୌଭରି କହନ୍ତେ ପାର୍ଥ ସ୍ପର୍ଶେ ମୁକ୍ତହେଲା ।
ଅମ୍ବିକା ଅରଣ୍ୟେ ଅଶ୍ୱ ସ୍ୱରୂପ ହୋଇଲା ।
ତୀର୍ଥପାଣି ପିଅନ୍ତେ ସେ ବ୍ୟାଘ୍ର ରୂପ ହେଲା ।
ଦେବବୁଢ଼ କହନ୍ତେ ତହିଁରୁ ମୁକ୍ତ ହେଲା ।
ବଷ ନାରୀଙ୍କର ଦେଶେ ଅଶ୍ୱ ଚଳିଗଲା ।।
ଦେବବାଣୀ ଶୁଣି ବନ୍ଦୀ ହୋଇଲେ ଅର୍ଜ୍ଜୁନ ।
ସେ ଆସି ପ୍ରବେଶ ହେଲେ ହସ୍ତିନା ଭୁବନ ।
କ୍ରମେ ହଂସଧ୍ୱଜ ରାଜା ଦେଶେ ଅଶ୍ୱ ଗଲା ।
ତାହାର କୁମର ଆସି ଅଶ୍ୱ ବାନ୍ଧି ନେଲା ।
ସୁଧନ୍ୱା ସୁରଥ ବୋଲି ଦୁଇ ପୁତ୍ର ତାର ।
ମହାବୀର ଅଟନ୍ତି ସେ ସଂସାର ଭିତର ।
ତାହାଙ୍କୁ ଜିଣିଣ ଅଶ୍ୱ ଆଣିଅଛି ପାର୍ଥ ।
ହଂସଧ୍ୱଜ ଆସିଣ ଅଛନ୍ତି ଆମ୍ଭ ସାଥ ।।
ତହୁଁ ଯାଇ ଅଶ୍ୱ ମଣି ପୁରରେ ହୋଇଲା ।
ଦେଖି ବଭ୍ରୁବାହନ ସେ ଅଶ୍ୱକୁ ବାନ୍ଧିଲା ।।
ସବୁ କଥା ଜାଣି ଅଶ୍ୱ ସମର୍ପନ୍ତେ ପୁଣି ।
କ୍ରୋଧ ହୋଇ ନିନ୍ଦା ତାକୁ କଲେ ଫାଲ୍‌ଗୁନୀ
ଅର୍ଜ୍ଜୁନଙ୍କୁ ବିନାଶ କରିଲା ବୀରମଣି ।
ମହାଶୋକ କଲା ଜନନୀଙ୍କ ବାଣୀ ଶୁଣି ।।
ମୃତ୍ୟୁ ସଞ୍ଜୀବନୀ ମଣି ବାସୁକି ଦିଅନ୍ତେ ।
ପ୍ରାଣ ପାଇ ପାର୍ଥ ଅଶ୍ୱ ଆଣିଲେ ତ୍ୱରିତେ ।
ତହୁଁ ଶିଖିଧ୍ୱଜ ରାଜା ଦେଶେ ଅଶ୍ୱଗଲା ।
ତାର ପୁତ୍ର ତାମ୍ରଧ୍ୱଜ ଅଶ୍ୱକୁ ବାନ୍ଧିଲା ।।
ପାର୍ଥ ଆମ୍ଭେ ଯୁଦ୍ଧେ ତାକୁ ଜିଣି ନ ପାରିଲୁ
କପଟେ ତା ପିତା ପାଖୁ ମାଗିଣ ଆଣିଲୁ ।।
ତହୁଁ ବୀରବର୍ମା ରାଜା ପାଶେ ଅଶ୍ୱଗଲା ।
ବାନ୍ଧିଣ ସେ ଆମ୍ଭ ସଙ୍ଗେ ଘୋର ଯୁଦ୍ଧ କଲା ।
ଜାମାତା ଅଟଇ ତାର ଯମଦେବ ଜାଣ ।
ଅଶ୍ୱକୁ ସେ ଦେଲେ ଘୋର ସଂଗ୍ରାମ କରିଣ
ଚନ୍ଦ୍ରହାସ୍ୟ ଦେଶେ ଅଶ୍ୱ ହୁଅନ୍ତେ ପ୍ରବେଶ ।
ଭକ୍ତି ଭାବ କରି ଅଶ୍ୱ ଦେଲା ଆମ୍ଭ ପାଶ ।
ତହୁଁ ଅଶ୍ୱ ଉତ୍ତର ସାଗରୁ ହେଲା ପାର ।
ବକଦନ୍ତଠାରୁ ଅଶ୍ୱ ଆଣିଲୁ ଉଦ୍ଧାର ।।
ତହୁଁ ଜୟଦ୍ରଥ ପୁରେ ଅଶ୍ୱ ପ୍ରବେଶିଲା ।
ସେହିଠାରେ ବରଷକ ପୂର୍ଣ୍ଣ ଯେ ହୋଇଲା ।।

ଏମନ୍ତ ଯୁଧିଷ୍ଠି ଆଗେ ଶ୍ରୀକୃଷ୍ଣ କହନ୍ତେ ।
ଅର୍ଜ୍ଜୁନ ପ୍ରୀତବଶ ହେଲେ ଅଶ୍ୱର ସଙ୍ଗତେ ।
ବାଦ୍ୟନାଦ ଶବଦରେ କମ୍ପେ ମହୀତଳ ।
ଜଳୁଅଛି ମଶାଲ ଅବର ଦୀପାବଳୀ ॥
ଅନ୍ତଃପୁର ନାରୀମାନେ ହୁଳହୁଳି ଦେଇ ।
ଅର୍ଘ୍ୟଥାଳୀ ଘେନି ଅଶ୍ୱ ବନ୍ଦାଇଲେ ଯାଇଁ ।
ବେନିଯାଗ ଅଶ୍ୱନେଇ ଗୃହରେ ବାନ୍ଧିଲେ ।
ସର୍ବ ରାଜାଙ୍କୁ ଯୁଧିଷ୍ଠି ସମାଦର କଲେ ।
ଜଣେ ଜଣେ ଯେ ଯାହାକୁ ମାନ୍ୟ ଧର୍ମ କଲେ
ନିଜ ନିଜ ବାହଗୃହେ ରାଜନେ ବସିଲେ ॥
ତହୁଁ କୁନ୍ତୀ ଏହା ଦେଖି ହର୍ଷଯୁକ୍ତ ମନ ।
ବୀର ଅର୍ଜ୍ଜୁନଙ୍କୁ ଯେ କଲେକ ଆଲିଙ୍ଗନ ॥
ଅତି ପ୍ରୀତିଭରେ ବୃଷକେତୁ କୋଳକଲେ
ପରଶେଷେ ଅତିଶୟ ତୃପ୍ତ ହେଲେ ଧୀରେ ॥
ଏଥୁଅନ୍ତେ ଯୁଧିଷ୍ଠିର ଡାକି ରାଜାଗଣ ।
ମହାଦେବ ବୋଲେ କଲେ ଯଜ୍ଞଆୟୋଜନ

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତ
ବତ୍ସଲୀଳା କଥା ପ୍ରବନ୍ଧେ ନାମ
ଷଡ୍ତ୍ରିଂଶୋଽଧ୍ୟାୟଃ ।

—୦—

## ସପ୍ତତ୍ରିଂଶ ଅଧ୍ୟାୟ

ଗମ୍ଭୀର ଧୀର ନ ନିର୍ବାଣ ଶୂନ୍ୟଂ
ସଂସାରସାର ନ ଚ ପାପ ପୂର୍ଣ୍ଣଂ,
ବ୍ୟକ୍ତ ନଚାବ୍ୟକ୍ତମଭେଦଭିନ୍ନଂ
ତସ୍ମୈ ନମୋ ବ୍ରହ୍ମନିରଞ୍ଜନାୟ ।

### ଅଶ୍ୱମେଧ ଯଜ୍ଞର ବିଧି ଶେଷ ହେବା

ଏଥିଅନ୍ତେ ଜନ୍ମେଜୟ ଯୋଡ଼ିବେନିପାଣି
ବିନୟେ ବୋଲନ୍ତି ଶୁଣ ଅହେ ତପୀମଣି ॥
ଏଥୁଅନ୍ତେ କିପରି ହୋଇଲା ଅଶ୍ୱମେଧ ।
ତାହା ମୋତେ ବିସ୍ତାରଣ କୁହ ମହାବୁଦ୍ଧ ।
ଜୈମିନି ବୋଲନ୍ତି ଶୁଣ ଅହେ ନରବର ।
ମନଦେଇ ଶୁଣ ଯଜ୍ଞ ବିଧିର ଖବର ॥
କୃଷ୍ଣସହ ଧର୍ମ ଭୂମି କରଷଣ କାର୍ଯ୍ୟ ।
ଦୁଇଜଣେ କରନ୍ତି ବିଧାନ ଯଥା ଧାର୍ଯ୍ୟ ।
ଅଦ୍ୟେ ସୁବର୍ଣ୍ଣର ପୀଢ଼ ଶଙ୍ଖ ବେଢ଼ ଛନ୍ଦ ।
ଏହାରୂପେ ସୌଧମାନେ ହୁଅନ୍ତି ଶୋଭିତ ।
ବହୁ ଦ୍ୱିଜଗଣ ଅଷ୍ଟହାର ସୁଶୋଭନ ।
ସ୍ୱନ୍ଦର ପତାକା ଶୋଭାପାଏ ସ୍ଥାନେ ସ୍ଥାନ ।
ମଣ୍ଡପ ନିର୍ମାଣି ଅଷ୍ଟାଦଶ ଜପ କର ।
ସକଳ କରନ୍ତି ସୁଶୋଭନ ଦେଖି ହର ॥
ରମଣୀୟ ବେଦୀତ୍ରୟ ବହୁତ ତହିଁରେ ।
ବ୍ୟାସଦେବ ବରଣ ହୋଇଲେ ଅଗ୍ରୁଯ୍ୟରେ
ବକ ଦାଲଭ୍ୟ ମୁନି ସେ ବ୍ରହ୍ମା ଯେ ଉଦାନଣ
ସେ ଯଜ୍ଞର ସାଧ୍ୟେ ନ ଅଶନ୍ତି ହୁତାଶନ ।
ଦ୍ୱାଦଶ ଦେବର୍ଷିଗଣ ସାନ୍ତ୍ୱିକେ ବରଣ ।
ରକ୍ଷାମନ୍ତ୍ରେ ରକ୍ଷାସବୁ କରନ୍ତି ହର୍ଷେଣ ।
ସପ୍ତମହାଋଷିଗଣ ଦ୍ୱାରୀ ହୋଇ ତହିଁ ।
ଧର୍ମରାଜ ମୁଗଟଙ୍କ ଧରି ଶୋଭା ପାଇ ।
ଯଜ୍ଞରେ ଦୀକ୍ଷିତ ଯେହ୍ନେ ଅଛି ସୁବିହିତ ।
ପଣକର ବୋଲେ ଋଷିବରେ ହେ ଭରତ ।
ଆପଣା କାର୍ଯ୍ୟରେ ନିଯୋଗ କରନ୍ତି ସୁତର
ସମ୍ପୂର୍ଣ୍ଣ ହୋଇଲା ଏବେ ଯଜ୍ଞ ଉପକୃତେ ॥
ଚୌଷଠି ଦମ୍ପତିଗଣ ଜଳ ଯେ ଆଣିବେ ।
ଗଙ୍ଗାରୁ ଜଳ ଆଣିଣ ଯୁଧିଷ୍ଠି ବନ୍ଦିବେ ।
ପରସ୍ପର ସମ୍ଭାଷଣ କରନ୍ତି ବହୁତ ।
ଅକାଳରେ ହୃଷ୍ଟମନେ ଚଳନ୍ତି ଏମନ୍ତ ।
ପ୍ରିୟତମା ଯେହୁ ଯାର ସଙ୍ଗେ ଯାଏ ତାର ।
ଅନ୍ୟନାରୀ କରେ ଅଭିମାନ ବିଶେଷର ॥
କେହୁ ଯାଏ ସଙ୍ଗେ କେହୁ ଅନ୍ତରେ ଜ୍ୱଳଇ
ଏହୁ ରାଜ ସମ୍ମାନ ହେ ନ ପାଇଣ କେହୁ ।
ରୁକ୍ମିଣୀଙ୍କ ସଙ୍ଗେ ହରି ଜଳ ଆଣିବାରେ ।
ଯାନ୍ତି ସର୍ବ ସଖୀ ଭଦ୍ରା ସଙ୍ଗେ ଆନନ୍ଦରେ ।
ନାରଦ ଦେବର୍ଷି ବ୍ୟାପାର କୌତୁକର ।
ଦେଖିଣ ସତ୍ୟଭାମାରେ କହିଲେ ଏ ଗୀର ।
ଶୁଣ ଗୋ ସୁନ୍ଦରୀ ଉପସ୍ଥିତ ରାଜାଗଣ ।
ରୁକ୍ମିଣୀଦେବୀ ପାଇଲେ ବହୁତ ସମ୍ମାନ ॥
ଶ୍ରୀହରିଙ୍କ ସହିତରେ ମିଳି ଗଙ୍ଗାଜଳ ।
ଆଣିବାକୁ ଏହୁ ଦେଖ ଯାଅନ୍ତି ଏ ବେଳ ॥
ରୁକ୍ମିଣୀ ଶ୍ରୀକୃଷ୍ଣ ପ୍ରିୟା ମୁଖେ ସନ୍ତୋଷିଣ ।
ସ୍ନେହ ଦେଖାଉଣଥାନ୍ତି ତୁମ୍ଭଙ୍କୁ ମହେଛଣ ।

ସତ୍ୟଭାମା କହନ୍ତି ମୋ ଗୃହେ ଜନାର୍ଦ୍ଦନ ।
ତାହାଙ୍କ ସଙ୍ଗତେ ଅମ୍ଭେ ଯିବୁ ତ ବହନ ।
ନାରଦ ସତ୍ୟାସଦନେ ପ୍ରବେଶି ବହନ ।
ଦେଖିଲେ କେଶବ ତହିଁ ଛନ୍ତି ବିଦ୍ୟମାନ ॥
ସତ୍ୟାଙ୍କୁ ଦେଖି କହନ୍ତି ଶ୍ରୀହରି ଏଠାର ।
ଦେଖି କିଛି ନ ପାଇ ଯେ ସନ୍ଧାନ ତାହାର ।
ଅତଏବ ସତ୍ୟାଘେନି ବେଗେ ହୃଷ୍ଟହୋଇ ।
ଯାଆନ୍ତି ଜାହ୍ନବୀ ଜଳ ଅଣିବାର ପାଇଁ ।
ନାରଦ କହିଲେ ଜାମ୍ବବତୀ ଯାଅ ଘର ।
କହିଲେ ଯେ ତାହାଙ୍କୁ ସକଳ ସମାଚାର ।
ରୁକ୍ମିଣୀ ସତ୍ୟଭାମାଙ୍କୁ ସଙ୍ଗତରେ ନେଇ ।
ଗଙ୍ଗାବାରି ଅଣିବାକୁ ହରି ଯାଉଛଇଁ ।
କହିଲେ ଜାମ୍ବବତୀ ଯେ ଅହେ ମହାସତି ।
ଯାଅ ଦେଖ ମୋର ଘରେ ଥିଅନ୍ତି ଶ୍ରୀପତି ॥
ସେଠାରେ ଦେଖିଣ ହରି ବିସ୍ମୟ ଅନ୍ତରେ ।
ପୁନର୍ବାର ଯାବାକର ଗୋପୀ ଭବନରେ ।
ଏହିରୂପେ ଯହିଁ ଯାନ୍ତି ତହିଁ ନାରାୟଣ ।
ବିସ୍ମୟ ଭାବନ୍ତି ମନେ ତାଙ୍କୁ ନିରେଖିଣ ।
ଅଗ୍ରେ ବଶିଷ୍ଠ ପ୍ରିୟା ଜଳ ପାଇଁ ଯାନ୍ତି ।
ଅରୁନ୍ଧତୀ ରୁକ୍ମିଣୀଙ୍କୁ ଏମନ୍ତ କହନ୍ତି ।
ଅଳ୍ପ ପୁଲଭାରେ ତୁମ୍ଭ ଶିର ବ୍ୟଥା ପାଏ ।
କ୍ଲେଶ ଓଡବ ନାହିଁ କଳସ ବହନ୍ତେ କାୟେ
ସୁଭଦ୍ରା କହନ୍ତି ଯେହୁ ଗିରି ଗୋବର୍ଦ୍ଧନ ।
ଧରିଛନ୍ତି ଏକପାଦ କରେ ଜନାର୍ଦ୍ଦନ ॥
ଯାଙ୍କହୃଦେ ସେହି ହରି ବାସ କରିଛନ୍ତି ।
କିବା କ୍ଳେଶ କର କଳସର ଭାର ଅତି ।
ରୁକ୍ମିଣୀ କହନ୍ତି ସୁଭଦ୍ରା ଅମ୍ଭର ଧୀରା ।
ଧରିଛନ୍ତି ପାଇଣ ସେ ଧନଞ୍ଜୟ ଭାରା ।
ଏପରି ଅଳାପ କରି ପଥ ସହି ବାର ।
ଘେନିଣ ଗମନ କଲେ ସେ ସକଳ ନାରୀ ।
ମୃଦଙ୍ଗାଦି ବେଣୁ ବୀଣା ହୁଏ ବାଦ୍ୟଧ୍ୱନି ।
ହସ୍ତିନାରେ ମତ୍ତ ସର୍ବଜନ ତାହା ଶୁଣି ।
ବୋଲନ୍ତି ଜୈମିନି ଶୁଣ ହେ ମହାରାଜନ ।
ମହା ସମାରୋହେ ହେଲା ଯଜ୍ଞ ସମାପନ ।
ସ୍ୱୟଂ କୃଷ୍ଣ ଭଗବାନ ବିପ୍ର ଋଷିଗଣେ ।
ନିଯୁକ୍ତ ହୋଇଲେ ତହିଁ ପଦ ପ୍ରକ୍ଷାଳନେ ॥

କରି ପଦ ପ୍ରକ୍ଷାଳନ ରାଜାଙ୍କର ଦାନ ।
ସୁନ୍ଦର ବସନ ମୂଲ୍ୟ ଅଳଙ୍କାର ମାନ ।
ପରିଧାନ କରି ସର୍ବେ ଆନନ୍ଦିତ ମନେ ।
ହୋଇଲେ ଯେ ଉପସ୍ଥିତ ସୁବର୍ଣ୍ଣ ଆସନେ ॥
ଦିଅ ଦିଅ ଶବ୍ଦ ଭିନ୍ନ ଅନ୍ୟ କିଛି ନାହିଁ ।
ମାଗନ୍ତା ଲୋକେ ସନ୍ତୋଷ ହେନ୍ତି ଦ୍ରବ୍ୟ ପାଇ
ସୁବର୍ଣ୍ଣ ରଜତ ରତ୍ନ ବସନ ଭୂଷଣ ।
ହାତୀ ଘୋଡ଼ା ରଥ ଆଦି ଚାମର ଚନ୍ଦନ ॥
ସହସ୍ର ସହସ୍ର ଗାଈ ଦାସ ଦାସୀ କେତେ ।
ମାଗିବା ମାନେ ନେଲେ ନିଜ ଇଚ୍ଛାମତେ
କେହି ବିମୁଖ ନ ହେଲେ ଯୁଧିଷ୍ଠିର ଦାନେ
ଅସନ୍ତୁଷ୍ଟ ନୁହେ କେହି ସର୍ବେ ହୃଷ୍ଟମନେ ॥
ଏଥୁଅନ୍ତେ ଧର୍ମରାଜ ହୋଇଣ ଦୀକ୍ଷିତ ।
ଅଶ୍ୱକୁ ଆଣିଣ ଯଜ୍ଞେ କଲେ ଉପସ୍ଥିତ ।
ସନ୍ତୋଷେ ଉତ୍ସର୍ଗ କଲେ ସେହି ଯଜ୍ଞୁଲେ
ସ୍ୱର୍ଗପୁର ଲଭ ତୁମ୍ଭେ ହେବ ଅବହେଳେ ।
ଏହି କଥାମାନ ଶୁଣି ଆନନ୍ଦିତ ମନେ ।
ସତ୍ମାନ ଗୃହିଁଲେ ଯେ କୃଷ୍ଣଥିଲେ ଯେତେଣି
ନକୁଳଙ୍କୁ ଜଣାଇଣ ନିଜ ଅଭିପ୍ରାୟ ।
ବଦନ ଚେକନ୍ତେ ସେହି ବୁଝିଲେ ବିଷୟ ॥
ନକୁଳ କହନ୍ତି ତୁମ୍ଭେ ଶୁଣ ଧର୍ମରାଜ ।
ଘୋଟକର ଇଚ୍ଛା ସ୍ୱର୍ଗେ ନାହିଁ କିଛି କାର୍ଯ୍ୟ ।
ଯେ ଯଜ୍ଞର କର୍ତ୍ତା ନାହିଁ ସେ ଯଜ୍ଞ ବିଫଳ ।
ଏକ ମାନ ଅଛୁ ଜାଣ ସ୍ୱର୍ଗହିଁ କେବଳ ।
ଏଥିପାଇଁ ସ୍ୱର୍ଗେ ତାର ନାହିଁ ଅଭିଳାଷ ।
ତାହାର ଅନ୍ତରେ ସଦା ହରିପଦ ଆଶ ॥
ଏ ଯଜ୍ଞର କର୍ତ୍ତା ହରି ନିଜେ ଯଜ୍ଞେଶ୍ୱର ।
ସେହି ଯେ ସାକ୍ଷାତ ଫଳ ବୁଝିଛି ଅନ୍ତର ॥
ଏସନି ଯାଜ୍ଞିକଗଣ କରନ୍ତୁ ଦର୍ଶନ ।
ମଧୁସୂଦନଙ୍କ ମୁଖେ ହୋଇଛି ବିଲୀନ ॥
ତହିଁ କି ଅମ୍ଭର ସ୍ଥିତ ନିକର ହୋଇବ ।
ଅନ୍ୟ ସ୍ୱର୍ଗରେ ମନ କି ସୁଖ ପାଇବ ।
ତହିଁ ଧୌମ୍ୟ ପୁରୋହିତ କହେ ଭୀମସେନେ
ଖଡ୍ଗ ଘେନି ସ୍ଥିରହୋଇ ରହ ହେ ଏସଣେ
ଘୋଟକ ପରୀକ୍ଷା ମୁହିଁ କରିବି ବିଶେଷେ ।
ଯେତେବେଳେ କହିବି ମୁଁ ଛେଦିବ ସେ ଅଶ୍ୱେ

ଏତେକବୋଲି ଧୌମ୍ୟ ଅଶ୍ୱ ପରୀକ୍ଷାର ପାଇଁ ।
ଘୋଟକ ପାଶରେ ଉପସ୍ଥିତ ହେଲେ ଯାଇଁ ॥
ଶ୍ରୁବ ଘେନି ଦକ୍ଷକରେ କରିଲେ ପ୍ରହାର ।
ବାମ କର୍ଣ୍ଣେ ସେ ଆଘାତ ହୋଇଲା ଅଶ୍ୱର ॥
ଅନର୍ଗଳ ଦୁଗ୍ଧ ଧାର ହେଲା ପ୍ରବାହିତ ।
ବିନ୍ଦୁମାତ୍ର ରୁଧିର ଯେ ନ ହୋଇଲା ଜାତ ॥
ଦେଖି ତାହା ସର୍ବଲୋକ ମଣିଲେ ବିସ୍ମୟ ।
ଧୌମ୍ୟ କହନ୍ତି ଭୀମ କାଟନ୍ତୁ ଏହି ହୟ ।
ତେତେବେଳେ ବୃକୋଦର ଥିଲେ ଖଡ୍ଗହାତେ
କାଟିଲେ ଅଶ୍ୱର ଶିର ସମସ୍ତ ସାକ୍ଷାତେ ॥
ଭୂମିରେ ନ ପଡି ଶିର ଊର୍ଦ୍ଧ୍ୱରେ ଉଠିଲା ।
ତହୁଁ ଜ୍ୟୋତି ରୂପେ ସୂର୍ଯ୍ୟଦେହେ ଲୀନ ହେଲା
ଏପରି ଅଶ୍ୱ ଯେ ଦେଖା ନୋହିଥିଲା କାହିଁ ।
ଏ ଯଜ୍ଞ ପୂରିଲା ତବ ଭାଗ୍ୟ ଅନୁଯାୟୀ ॥
ଏହି କଥାବୋଲୁବୋଲୁ ହେଲେ ଯେକାଳରେ
ତେଜ ବାହାରିଲା ତହୁଁ ଅଶ୍ୱର ଦେହରେ ॥
ଦୀପ୍ତିମୟ ତେଜ ଏକ ହୋଇ ବହିର୍ଗତ ।
ସେକାଳେ ହରିଙ୍କ ମୁଖେ ହୋଇଲା ପ୍ରବେଶିତ
ତନୁରେ କର୍ପୂର ହୁଏ ବହୁତ ସମାନ ।
ଧରାତଳେ ପତିତ ରହିଲା ବିଦ୍ୟମାନ ।
ଋଷିଗଣ ସେ କର୍ପୂର କରିଣ ଗ୍ରହଣ ।
ହୋମକୁଣ୍ଡେ ଆହୁତି ଦେଲେ ସେ ସେହିକ୍ଷଣି
ତହୁଁ ପରେ ବାସୁଦେବ କର୍ପୂର ଘେନିଣ ।
ସପତ୍ନୀକ ଯୁଧିଷ୍ଠିରେ କହନ୍ତି ଯାଇଣ ।
କର୍ପୂର ଆହୁତି ଏହି କର ସେ ଗ୍ରହଣ ।
କଳିଯୁଗେ ଅଶ୍ୱ କେହୁ ନ ପାଇବ ଜାଣ ।
ଶ୍ରୀକୃଷ୍ଣ କର୍ପୂରାହୁତି କରନ୍ତି ପ୍ରଦାନ ।
ବ୍ୟାସଙ୍କୁ କହନ୍ତି ଇନ୍ଦ୍ର ହୋଇ ମୂର୍ତ୍ତିମାନ ॥
ଅନଳ ବଦନେ ତୁମ୍ଭେ ଆହୁତି ହବିର ।
ଦେଇ ତୃପ୍ତି କର ତୁମ୍ଭେ ଅମର ଅନ୍ତର ।
ଏଥୁ ଅନ୍ତେ ବାସୁଦେବ ମଧୁର ମାସରେ ।
ଶୁକ୍ଳପକ୍ଷ ତିଥି ଦଶମୀର ଗୁରୁବାରେ ।
ଯଥା ବିଧି ଆହୁତି ଅର୍ପଣେ ହୁତାଶନେ ।
ପରିତୃପ୍ତ ପରିତୁଷ୍ଟ ହୋଇଲେ ସେ ସ୍ଥାନେ ।
ଅନନ୍ତରେ ଯୁଧିଷ୍ଠିରେ ହରି ଆଲିଙ୍ଗିଣ ।
କହିଲେ ଯେ ତାଙ୍କ ପ୍ରତି ଶ୍ରୀମଧୁସୂଦନ ॥

ହେ ରାଜନ ତବ ଯଜ୍ଞ ହେଲା ସମ୍ପାଦିତ ।
ଏବେ ହେ କରନ୍ତୁ ସ୍ନାନ ଯେପରି ବିଦିତ ॥
ଏତେକବୋଲି ନାରଦପୁଣ ସର୍ବ ଋଷିଗଣ ।
ତାଙ୍କୁ ସ୍ନାନ କରାଇଲେ ଯେପରି ବିଧାନ ।
ସୋମପାନ କରିଣ ଭକ୍ଷଣ ପୁରୋଭାଗ ।
ସମସ୍ତଙ୍କୁ ଶେଷ ଦ୍ୟନ୍ତି କରି ଅନୁରାଗ ॥
ବନ୍ଦୀଗଣ କଲେ ସ୍ତୁତି ଚାରଣେ ଗାଇଲେ ।
ପୁରବାସୀଗଣ ସର୍ବେ ମାଙ୍ଗଲ୍ୟ କରିଲେ ॥
ତହୁଁ ଧର୍ମରାଜ ପୂର୍ଣ୍ଣ ଆହୁତି ଦେଇଣ ।
ନିର୍ବିଘ୍ନରେ ଯଜ୍ଞକୁ ସେ କଲେ ସମାପନ ॥
କୃଷ୍ଣଙ୍କ ସହିତ ବସି ବ୍ୟାସଙ୍କୁ ତକ୍ଷଣ ।
ପୃଥିବୀ ଦକ୍ଷିଣା ତାଙ୍କୁ କରନ୍ତି ପ୍ରଦାନ ॥
ଏଥୁଅନ୍ତେ ଧର୍ମରାଜ ଯାଜ୍ଞିକ ବ୍ରାହ୍ମଣେ ।
ଇଚ୍ଛାମତ ଦାନ ଦେଇ ତୋଷି ସର୍ବଜନେ ॥
ଏକ ଏକ ରାଜାଙ୍କୁ ସେ କରିଲେ ପ୍ରଦାନ ।
ସହସ୍ର ସହସ୍ର ଘୋଡ଼ା ମହା ବଳବାନ ॥
ସର୍ବ ଯଦୁବଂଶ ବୀରଗଣେ ହକାରିଣ ।
ଧନରତ୍ନ ଦାନ ଦେଲେ ସର୍ବୁଁହୁଁ ଦ୍ୱିଗୁଣ ।
ରୁକ୍ମିଣୀ ସତ୍ୟାଦି ଯେତେ ଶ୍ରୀକୃଷ୍ଣଙ୍କ ନାରୀ ।
ଅଲଙ୍କାରମାନ ଦେଲେ ମନ ତୃପ୍ତ କରି ।
ଏଥୁ ଅନ୍ତେ ଆନନ୍ଦିତ ହୋଇ ଯୁଧିଷ୍ଠିର ।
ଅମୂଲ୍ୟ ରତ୍ନେ ସଜାନ୍ତି ଶ୍ରୀକୃଷ୍ଣ ଶରୀର ।
ସ୍ୱର୍ଣ୍ଣ ସିଂହାସନେ ତାଙ୍କୁ ବସାଇ ତକ୍ଷଣ ।
ଯଜ୍ଞ ଫଳମାନ ସବୁ କରନ୍ତି ଅର୍ପଣ ।
ସେକ୍ଷଣି ସ୍ୱର୍ଗରେ ହେଲା ଦୁନ୍ଦୁଭିର ଧ୍ୱନି ।
ପୁଷ୍ପ ବରଷିଲେ ଦେବେ ସ୍ୱର୍ଗରୁ ତକ୍ଷଣି ।
ଶ୍ରଦ୍ଧାରେ ଯେହୁ ଶୁଣିବ· ଯଜ୍ଞ ପ୍ରକରଣ ।
ତାହାର ସମସ୍ତ ପାପ ହୋଇବ ଦହନ ।
ଏ ପ୍ରକାର ଯଜ୍ଞ ଯହୁଁ ହେଲା ସମାପନ ।
ଭୀମସେନ ସମସ୍ତଙ୍କୁ କରାନ୍ତି ଭୋଜନ ॥
ସର୍ବ ନରପତିଗଣେ ପ୍ରାର୍ଥନା କରିଣ ।
ସମସ୍ତଙ୍କୁ ଦେଲେ ଅନ୍ନ ଷଡ୍‌ରସ ବ୍ୟଞ୍ଜନ ।
ବସାଇଣ ଋଷିଗଣେ ଅତି ଯତ୍ନ କରି ।
ସୁବର୍ଣ୍ଣ ଭୂଷିତ ଚନ୍ଦନର ପିଢ଼ା ଉପରି ।
ସୁଗନ୍ଧ ଜଳରେ ପାଦ କରି ପ୍ରକ୍ଷାଳନ ।
ଯଥାସ୍ଥାନେ କ୍ରମେ କ୍ରମେ କରିଲେ ସ୍ଥାପନ ।

ସବୁପାତ୍ର ହେମମୟ ରତନ ଖଚିତ ।
ସୁମିଷ୍ଟ ପାୟସ ତହିଁ ଦେଲେ କୁନ୍ତୀସୁତ ।
ସୁଗନ୍ଧ ଧବଳ ରୂପ ଦେଖି ଋଷିଗଣ ।
ଭାବନ୍ତି ଏ ରସ ଦ୍ରବ୍ୟ ଦେଖିନାହୁଁ ଜାଣ ।
କେତେ ଋଷିଯୁବ ଦେଖି କହନ୍ତି ଅପରେ ।
ବନେ ଥାଇ ଦେଖିନାହୁଁ ନୟନରେ ଏବେ
କେତେ ଦ୍ରବ୍ୟ କହ ମୋତେ ଅନୁଗ୍ରହ କରି
ଜାଣନା କି ଚନ୍ଦ୍ରର କଳଙ୍କ ହେ କପର ।।
ଶତ ଶତ ଖଣ୍ଡ ଏବେ ପଡ଼ନ୍ତି ଧରାତଳ ।
ଏହିପରି କୁହାକୁହି ହୋନ୍ତି ସକଳରେ ।
ପାୟସ ଭୋଜନେ ତୃପ୍ତ ହୋଇ ଋଷିଗଣ ।
ଦଧି ଦୁଗ୍ଧ ଘୃତ ମଧୁ କରନ୍ତି ଯେ ପାନ ।
ଏହିପରି ଗୃହଜାତ ନିଜ ଇଚ୍ଛାମତ ।
ଭୋଜନ କରନ୍ତି ସର୍ବେ ପ୍ରଫୁଲ୍ଲିତ ଚିତ୍ତ ।
ଋଷିମାନେ ଖାଇସାରି ଆଚମନ କଲେ ।
କର୍ପୂର ପାନ ଖାଇଲେ ପ୍ରଫୁଲ୍ଲ ଅନ୍ତରେ ।
କହିଲେ ଅରଣ୍ୟେ ଶୁଷ୍କ ପତ୍ର ଚୂନାକର ।
ଖାଇକରି ମନତୃପ୍ତ କରୁ ହେ ଅମ୍ଭର ।
ଏପରି ପଦ ଅମ୍ଭ ନୟନେ ଦେଖି ନାହୁଁ ।
ଖାଇଲା ମାତ୍ରକେ ମନ ତୃପତ ହୁଅଇ ।।
ଏହିପରି ଯଜ୍ଞ ଶେଷେ ରାଜା ଯୁଧିଷ୍ଠିର ।
ବ୍ରାହ୍ମଣ କ୍ଷତ୍ରିୟ ସଙ୍ଗେ ବସନ୍ତେ ସେଠାର ।
ନାରାୟଣ ବସିଛନ୍ତି ଧର୍ମଙ୍କ ଭବନେ ।
ଏହିକାଳେ ସଭାମଧ୍ୟେ ଦ୍ୱିଜଟେ ବ୍ରାହ୍ମଣେ ।
ଦୁଇଜଣ କଳି କରି ଧର୍ମଙ୍କ ପାଶରେ ।
ବୋଇଲେ ବୁଝନ୍ତୁ ରାଜା ବହୁତ ବିଚାରେ ।
ପ୍ରଥମ ବ୍ରାହ୍ମଣ କହେ ଏହି ଯେ ବ୍ରାହ୍ମଣ ।
କରିବାକୁ ଦେଇ ନାହିଁ ଜମି କର୍ଷଣ ।।
କର୍ଷଣ କରିବାକୁ ତା ରାଜା ଛନ୍ତି ଦେଇ ।
ତେଣୁ ସେହି ମୋର ପ୍ରାପ୍ୟ ଜାଣିଅଛି ମୁହିଁ
ମାତ୍ର ସେହି ଅକାରଣ ଅମ୍ଭଙ୍କୁ ପୀଡ଼ନ ।
କରୁଅଛି କର ଯାହା ଉଚିତ ଏକ୍ଷଣ ।।
ଦ୍ୱିତୀୟ ବ୍ରାହ୍ମଣ କହେ ଧର୍ମର ତନୟ ।
କପାଇଁ ପୀଡ଼ନ କରେ ତାକୁ ମହାଶୟ ।।
ପର୍ଶୁରାମ ପୁରୁବ କାଳରେ ବୀରବର ।
ପୃଥ୍ୱୀଦାନ ଦେଇଥିଲେ ବ୍ରାହ୍ମଣ ହସ୍ତର ।।
ତହିଁରେ ରାଜା ମାନଙ୍କ ଅଧିକାର ନାହିଁ ।
ବ୍ରାହ୍ମଣମାନଙ୍କର ଅଟଇ ଏହି ମହୀ ।
ଏ ବ୍ରାହ୍ମଣ ସେ ଜମିରେ ଧାନ କରିଥିଲା ।
ମାଗନ୍ତେ କଣ୍ଟାଏ ମୋତେ ଭାଗ ସେ ନ ଦେଲା
ଏହିକଥା ଶୁଣି କୃଷ୍ଣ ସହାସ୍ୟ ବଦନେ ।
ବୋଇଲେ ଯେ ତିନିମାସ ଥାଉ ଏହିକ୍ଷଣେ ।
ଏହି କାଳପରେ ହେବ ମୀମାଂସା ଏହାର ।
ବିପ୍ରଗଣ ଗୃହେ ଯାନ୍ତୁ ଆନନ୍ଦ ମନର ।।
ଯୁଧିଷ୍ଠିର କହିଲେ ଯେ କୃଷ୍ଣଙ୍କୁ ତକ୍ଷଣ ।
ନ କରିଲ ବିବାଦ ମୀମାଂସା କି କାରଣ ।।
କୃଷ୍ଣ ବୋଲେ ଯଜ୍ଞ ଅନ୍ତେ ସୁଖୀ ସର୍ବଜନେ
ବିବାଦର କଥା ନ ପଡ଼ିବ ଏହିକ୍ଷଣେ ।
ଯେତେବେଳେ ତିନିମାସ ହେବ ଉପସ୍ଥିତ ।
ଭୟଙ୍କର କଳିଯୁଗ ହୋଇବ ଆଗତ ।।
ଏ ଦୁଇ ବ୍ରାହ୍ମଣ ତେବେ କଳିର ବଳରେ ।
କଜିଅ କରି ଆସିବେ ତୁମ୍ଭ ନିକଟରେ ।
ଏହି ଅମ୍ଭ ଅଭିପ୍ରାୟ ଶୁଣ ଧର୍ମରାଜ ।
ଦୁହେଁ ଏ ବିବାଦ ଶେଷ ରଖିବାକୁ କାର୍ଯ୍ୟ ।।
ଭଗବାନ ବାସୁଦେବ ଅତି ଆନନ୍ଦରେ ।
କଳିଧର୍ମ କହିବାକୁ ଆରମ୍ଭ କରିଲେ ।
ଦେବତାଙ୍କ ଉଦ୍ଦେଶ୍ୟରେ କିଛିହିଁ ନ ହେବ
ବିବିଧ ଅନ୍ୟାୟ କାର୍ଯ୍ୟ ସେତେବେଳେ ହୋଇବ ।
କଳିଯୁଗରେ ବ୍ରାହ୍ମଣ ଧର୍ମର ଛାଡ଼ିବେ ।
ବେଦବିଦ୍ୟା ଛାଡ଼ି ଗାବଡ଼ରେ ମନଦେବେ ।
ରାଜାମାନେ ପ୍ରଜାଙ୍କୁ ଯେ ବହୁ ପୀଡ଼ା ଦେବେ
ନାନାଦି ଅନ୍ୟାୟ ଭାବେ କର ସେହି ନେବେ
ପରସ୍ତ୍ରୀ ପରଧନ କରିବେ ହରଣ ।
କୁଳସ୍ତ୍ରୀଏ ଯିବେ ଅନ୍ୟ ପୁରୁଷ ସଙ୍ଗେଣ ।
ବିଧବା ବିବାହ ସ୍ତ୍ରୀଏ ଲୋକେ ଯେ କରିବେ
ବେଶ୍ୟାସକ୍ତ ହୋଇ ନିଜ ଭାର୍ଯ୍ୟାକୁ ଛାଡ଼ିବେ
ପୁଅଝିଅ ପିତା ମାତା କଥା ନ ମାନିବେ ।
ବୋହୂମାନେ ଶାଶୁକୁ ଯେ ଗଞ୍ଜଣା କରିବେ
ଗୁରୁଜନମାନଙ୍କୁ ଯେ ମାନ୍ୟ ନ କରିବେ ।
ଭାଇ ଭାଇ ମଧ୍ୟେ କଳିକରି ଭିନ୍ନ ହେବେ ।।
ଦେଢ଼ଶୁର ଭାଇବୋହୂ ବାରଣ ନ ହେବ ।
ଏପରି କେତେ ଅନ୍ୟାୟ କଳିରେ ହୋଇବ

ଅଦ୍ଭୁତ ଶୁଣ ରାଜନ କଳିର କାହାଣୀ ।
ମାତାପିତାଙ୍କ ଜଡ଼ହେବେ ନ ମାନିବେ ପୁଣି ॥
ଅବାଟ ବାଟ ହେବ ଅଘାଟ ଘାଟ ହେବ ।
ଗୋଦଣ୍ଡା ଗୋ ହସ୍ତ ଆଦି କିଛି ନ ରହିବ ।
ଗଙ୍ଗା ଅନ୍ୟାୟ ଦେଖିଣ କ୍ରମେ ଲୀନ ହେବେ
ଜଳ ବର୍ଷିନବେ ତେବେ ପ୍ରାଣୀଏ ମରିବେ ।
ଅଗ୍ନିମନ୍ଦ ବ୍ୟାଧିଗ୍ରସ୍ତ ହେବେ ଜୀବଗଣ ।
କେହି ତାହା ନ ଚିହ୍ନିବେ ଲଭିବେ ମରଣ ॥
ବରଷା ନ କରି ଇନ୍ଦ୍ର ଅପାଳକ ହେବ ।
ଦୁର୍ଭିକ୍ଷ ହୋଇବ ଅନ୍ନ କଷ୍ଟ ଯେ ବଢ଼ିବ ।
ଜଳଖାଦ୍ୟ ବସ୍ତ୍ରହୀନ ଗୋମାଂସା ଗବଦେବେ ।
ଅଗ୍ନିଦେବ ପ୍ରବଳ ହୋଇବ ଠାବେ ଠାବେ
ନାନାଦି ଉତ୍ପାତମାନ ହେବ ଏ ସଂସାରେ ।
ପତି ସ୍ୱଜନକୁ ନାରୀ ଯେ ନ ମାନିବେ ତେଲେ ॥
ଘରେ ଘରେ ପ୍ରତିଦିନ କଳହ ଲାଗିବ ।
ବାପ ପୁଅ ଭିନ୍ନ ଭିନ୍ନ ହୋଇବେ ଏ ଧ୍ରୁବ
ପୁତ୍ରେ ଶେଷେ ନିଜ ନାରୀଙ୍କ ଘରୁ କାଢ଼ିଦେବେ ।
ବାଟସ୍ତ୍ରୀଙ୍କ ସଙ୍ଗତରେ ସମସ୍ତ କାଟିବେ ।
ପିଇଜନ ଛନ୍ଦକୂଟ କପଟ ଅସୁର ।
କରିଣ ଅଳ୍ପ ଆୟୁଷ ହେବେ ତେତେ ନର ॥
ନାନାଦି ଅନ୍ୟାୟ ଦେଖି ଦେବତା ଡରିବେ,
ମର୍ତ୍ତ୍ୟ ଛାଡ଼ି ଅଧା ସ୍ୱର୍ଗେ ସେ ଲୁଚି ରହିବେ ।
ସତକଥା ମିଛ ହେବ ମିଛ ହେବ ସତ ।
ଅଜ୍ଞାନ ଲୋକ ମିଳିଣ କରିବେ ଏହାତ ।
ଏହିପରି କଳିକାଳ ହୋଇବ ଘଟଣ ।
ସାଧୁମାନେ ଗୁପ୍ତେ ନେବେ ମୋହର ଶରଣ
ଶୁଣି ଯୁଧିଷ୍ଠିର ରାଜା ମଉନ ହୋଇଲେ ।
ରାଜାମାନଙ୍କୁ ଗୃହିଣି ବିନୟେ କହିଲେ ।
ସତ୍କାରେ ଯୁଧିଷ୍ଠିର କରିଲେ ପୂଜନ ।
ନିଜ ନିଜ ଦେଶେ ଗଲେ ସର୍ବ ନୃପଗଣ ॥
ଯାଦବଗଣଙ୍କୁ ସେହି ବହୁମାନ୍ୟ କଲେ ।
ଦେଶକୁ ଅତ୍ୟନ୍ତ ସମାଦରେ ପଠାଇଲେ ।
ରାଜା ପ୍ରଜା ଋଷିଆଦି ବ୍ରାହ୍ମଣ ସକଳେ ।
ଅକ୍ଷତ ପାଇ ଗୃହକୁ ଗଲେ ଆନନ୍ଦରେ ।
ଅଶ୍ୱମେଧ ଯଜ୍ଞ ଶେଷ ହେଲା ଏ ପ୍ରକାର ।
ଯେ ଶ୍ଳୋକ ଶୁଣେ ସେହି ଭବୁ ହୁଏ ପାର ॥
ସପ୍ତକନ୍ୟା ଶାଳବୃକ୍ଷ ଦାନରେ ଯେ ଫଳ ।
ଏ ସର୍ବ ଶୁଣିଲେ ନର ଲଭେ ସେ ସକଳ ।
ଲକ୍ଷେ ଗାଈ ଦାନକଲେ ହୁଏ ଯେତେ ଫଳ ।
ଏହି ସର୍ବ ଶ୍ରବଣରେ ହୁଏ ସେହି ଫଳ ।
ଏ ପୁରାଣ ଶ୍ରବଣରେ କଳିଦୋଷ ନାଶ ।
ଯେ ଯାହା ବାଞ୍ଛଇ ତାର ପୂରେ ଅଭିଳାଷ ॥
ବିଦ୍ୟାର୍ଥୀର ବିଦ୍ୟାଲାଭ ଧନାର୍ଥୀର ଧନ ।
କ୍ଷତ୍ରିୟର ବୀରତ୍ୱ ବିଜୟ ସର୍ବକ୍ଷଣ ।
ଅପୁତ୍ରିକ ପୁତ୍ର ପାଏ ରୋଗୀ ମୁକ୍ତ ହୁଏ ।
ଏ ସର୍ବ ପଢ଼ିଲେ କିମ୍ବା ଶୁଣିଲେ ନିଶ୍ଚୟେ ॥
ଅଷ୍ଟାଦଶ ପୁରାଣ ଭାରତ ସମୁଦାୟ ।
ପାଠକଲେ ଏହି ଫଳ ଫଳିବ ନିଶ୍ଚୟ ।
ସମସ୍ତ ପୁରାଣକୁ ପଢ଼ିଲେ ଯେତେ ଫଳ ।
ଏହି ସର୍ବ ପଢ଼ିଲେ ଲଭଇ ସେ ସକଳ ।
ଉତ୍ତମ ବସନ ଆଦି ଅଳଙ୍କାରମାନ ।
ପୁରାଣ ଶୁଣି ଦକ୍ଷିଣା ଦେବ ଯେ ବହନ ।
ଜଗତ୍‌କର୍ତ୍ତା କେଶବଙ୍କ ମହିମା କୀର୍ତ୍ତନ ।
ହୋଇଛି ଏହି ପର୍ବର ପ୍ରତିପାଦେ ପୂର୍ଣ୍ଣ ।
ଯଜ୍ଞସାରି ସୁଖେ ଯୁଧିଷ୍ଠିର ରାଜ୍ୟକଲେ ।
ନବ ସସ୍ର ବର୍ଷ ପ୍ରଜା ସୁଖରେ ପାଳିଲେ ॥
ଯଜ୍ଞ ସମାପତି କରି ଧର୍ମ ନରବର ।
ପ୍ରଜାଙ୍କୁ ପାଳିଲେ ସେହି ପୁତ୍ର ପରିକାର ॥
ଏହିପରି ରାଜ୍ୟ ଧର୍ମ ଧର୍ମରେ କରନ୍ତି ।
ଦୁଃଖୀରଙ୍କୀ ତାଙ୍କ ରାଜ୍ୟେ ଜଣେ ନ ରହନ୍ତି
ଶତ୍ରୁଭୟ ନାହିଁ ପୁଣି ନାହିଁ ଯମ ଭୟ ।
ଧର୍ମଙ୍କ ଧର୍ମରେ ସ୍ୱର୍ଗଯାନ୍ତି ପ୍ରଜାଚୟ ॥
ସାମ୍ୟମୈତ୍ରୀ ନୀତିରେ ପାଳନ୍ତି ଯୁଧିଷ୍ଠିର ।
ଅନ୍ଧ ନୃପତି ହୋଇଣ ଶୋକରେ ଅସ୍ଥିର ।
ବିଦୁରକୁ ପଠାଇଲେ କହି ଏ ବଚନ ।
ଯାଇ ଯୁଧିଷ୍ଠିରଠାରୁ ମାଗି ଆଣ ଧନ ।
ଆମ୍ଭେ ପତି ପତ୍ନୀ ବାନପ୍ରସ୍ଥ ଆଚରିବୁ ।
ଗୟା ପିଣ୍ଡ ଦେଇ ଜ୍ଞାତିମାନଙ୍କୁ ତାରିବୁ ॥
ବିଦୁର ଆସିଣ ଧର୍ମେ ସମ୍ପତ୍ତି ମାଗିଲେ ।
ଶୁଣିକରି ଭୀମସେନ ତାହା ନାସ୍ତିକଲେ ॥
ତହିଁ ଧର୍ମ ଅର୍ଜୁନ ଅଙ୍ଗ ଧନମାନ ।
ବିଦୁର ହାତେ ପଠାଇଦେଲେ ରାଜାସ୍ଥାନ ।

ଧନ ଘେନି ଧୃତରାଷ୍ଟ୍ର ପତ୍ନୀର ସହିତ ।
ପାଣ୍ଡବଙ୍କୁ କହି ବନେ ଅସନ୍ତେ ତ୍ୱରିତ ॥
ଦେଖି କୁନ୍ତୀ ଶୋକଭରେ ଦଉଡ଼ି ଅସିଲେ ।
ରାଜ ଭୋଗ ଛାଡ଼ି ସେହି ବନବାସୀ ହେଲେ ॥
ଧର୍ମ ଅର୍ଜୁନ ତାହାଙ୍କୁ ଯେତେ ବୁଝାଇଲେ ।
ତାହାର କଥାକୁ କୁନ୍ତୀ ତିଳେ ନ ଶୁଣିଲେ ।
କହିଲେ ମୋ ଗୁରୁଜନ ଅଟନ୍ତି ଏ ଦୁଇ ।
ଏ କଷ୍ଟ ପାଇବେ ମୁହିଁ ସୁଖେ ରହିବଇ ॥
ନ କରିବ ଏପରି ମୁଁ ପିଶାଚିନୀ କର୍ମ ।
ତାଙ୍କ ସେବା କରି ବନେ ତେଜିବି ପରାଣ ।
ଏହା କହି ଧୃତରାଷ୍ଟ୍ର ଗାନ୍ଧାରୀ ସହିତେ ।
ବନସ୍ତକୁ ଗଲେ କୁନ୍ତୀ ଅନନ୍ଦତ ଚିତ୍ତ ।
ସଞ୍ଜୟ ବିଦୁର ଦୁହେଁ ଗଲେ ସଙ୍ଗତରେ ।
ପିଣ୍ଡ ଦେଇଣ ତାରିଲେ ସର୍ବଜ୍ଞାତନରେ ।
ଯୁଧିଷ୍ଠି କେତେକ ଦିନେ ଦେଖିବାକୁ ଗଲେ
ବିଦୁର ଯୁଧିଷ୍ଠି ଦେଖି ଜୀବନ ତେଜିଲେ ।
ତାଙ୍କ ଆତ୍ମା ଯୁଧିଷ୍ଠିଙ୍କ ଦେହେ ହେଲା ଲୀନ ।
ସର୍ବ କୁଳବଧୂମାନେ ମିଳିଲେ ଯାଇଣ ॥
ତାଙ୍କୁ ଦୟାକରି ବ୍ୟାସ ସ୍ୱାମୀ ଦେଖାଇଲେ ।
ତପୋବଳେ ସ୍ୱାମୀସଙ୍ଗେ ବୈକୁଣ୍ଠ ଗମିଲେ ।
ଏ ସବୁ ଦେଖିଣ ଧର୍ମ ଫେରିଣ ରାଜ୍ୟକୁ ।
କୁନ୍ତୀ ଗାନ୍ଧାରୀ ରଜା ଚିନ୍ତନ୍ତି ଶ୍ରୀହରିଙ୍କୁ ॥
ଅକସ୍ମାତେ ବନ ପୋଡ଼ି ହୋଇଲା ସେଠାରେ
ତିନିହେଁ ପ୍ରାଣ ତେଜିଲେ ସେହି ଅନଳରେ ॥
ସଞ୍ଜୟ ସେଠାରୁ ବେଗେ ପଳାଇ ଅସିଲେ ।
ଧର୍ମକୁ କହନ୍ତେ ସେହି କଥା ଶୋକ କଲେ ।
ବିଧିମତେ ପ୍ରେତକାର୍ଯ୍ୟ କଲେ ଯୁଧିଷ୍ଠିର ।
ପିତା ମାତା କଥା ସ୍ମରି ହୁଅନ୍ତି ଅସ୍ଥିର ।
ଏଣେ ଯାଦବଙ୍କୁ କପଟରେ ନାଶି ହରି ।
ନିଜକାୟା ତେଜିବାକୁ ଲତା କୁଞ୍ଜେ ବୁଲି ।
ବ୍ୟାଧ ଶର ମାରନ୍ତେ ସେ ଅଥୟ ହୋଇଲେ
ବ୍ୟାଧକୁ ମୁକ୍ତ କରିଣ ଅର୍ଜୁନେ ଡ଼ାକିଲେ ।
ପାର୍ଥ ପ୍ରବେଶନ୍ତେ ତାଙ୍କଠାରୁ କଳା ନେଇ ।
ବୈକୁଣ୍ଠ ଗମନ କଲେ ରୁକ୍ମିଣୀଙ୍କ ସାଥି ॥
ପାର୍ଥ କାନ୍ଦି କାନ୍ଦି ଅସି ଧର୍ମକୁ କହିଲେ ।
ଶ୍ରୀହରି ବିଚ୍ଛେଦେ ଧର୍ମ ରାଜ୍ୟ ତ୍ୟାଗ କଲେ ॥
ଅଭିମନ୍ୟୁର କୁମର ପରୀକ୍ଷିତେ ରାଇ ।
ରାଜ୍ୟଭାର ଦେଇ ଅଭିଷେକ କରି ତହିଁ ।
ପଞ୍ଚଭ୍ରାତା ଦ୍ରୌପଦୀ ସହିତ ଗଲେ ବନ ।
ନାନାତୀର୍ଥ ଭ୍ରମିଗଲେ ହିମାଳୟ ସ୍ଥାନ ॥
ପ୍ରଥମେ ଦ୍ରୌପଦୀ ଦେବୀ ଶରୀର ତେଜିଗଲ ।
ତାହାପରେ ନକୁଳ ଯେ ସହଦେବ ମଲେ ।
ତାପରେ ପୁଣି ଅର୍ଜୁନ ବୀର ଭୀମସେନ ।
ମରନ୍ତେ ଦେଖିଣ ଧର୍ମ ସ୍ୱଦେହ ଘେନିଣ ।
ସ୍ୱର୍ଗ ଭୁବନରେ ଯାଇ ହୋଇଲେ ପ୍ରବେଶ ।
ତାଙ୍କୁ ତହିଁ ପୂଜା କଲେ ସକଳ ତ୍ରିଦଶ ।
ଶୁଣିଲ ହେ ସାଧୁମାନେ ଶ୍ରୀମହାଭାରତ ।
ଯାହା ଶୁଣନ୍ତେ ଖଣ୍ଡନ ସକଳ ଦୁରିତ ।
ରୁକ୍ମିଣୀ ନାୟକ ପାଦପଦ୍ମେ ଦେଇ ମନ ।
ଉପାଧ୍ୟାୟ ମହାଦେବ କରଇ ଲିଖନ ॥
ଘର ମୋର ଟୁଲୀଶ୍ୱର କଟକ ଜିଲ୍ଲାରେ ।
ବ୍ରହ୍ମାନନ୍ଦ ମୋ ଜନକ ତାହାଙ୍କ କୃପାବର ।
ଏ ପବିତ୍ର ପୁରାଣକୁ ଲେଖିଲି ଧ୍ୟାନରେ ।
ଦୋଷଥିଲେ କ୍ଷମିବ ହେ ସର୍ବ ସାଧୁ ନରେ ।
ସକଳ ସମ୍ପ୍ରଦା ବୈଷ୍ଣବଙ୍କର ଚରଣେ ।
ସଦାଭକ୍ତି ଥାଉ ଏହା ଭାବେ ରାତ୍ରଦିନେ ॥
ସମସ୍ତ ଗୋସାଇଁଙ୍କର ଶ୍ରୀଚରଣ ଧ୍ୟାୟୀ ।
ଏ ପବିତ୍ର ପୁରାଣକୁ ପୂର୍ଣ୍ଣ କରିଲଇଁ ।
ଜୈମିନିଙ୍କ କୃତ୍ୟ ଏହି କୃଷ୍ଣ ଭକ୍ତିସାର ।
ଶୁଣି ସକଳ କଳୁଷ ଖଣ୍ଡ ସାଧୁନର ।
ବାଳକ ପିତା-କନିଷ୍ଠ-ପିତା ରଘୁପତି ।
ତାରପରେ ସୁତା-ମାତା ମାତାପରେ ସ୍ଥିତି ॥
ତାରପରେ ସୁତ ସୁତ ସୁତା ପତି ରସ ନାମ ।
ଶ୍ରୀକୃଷ୍ଣ ଚରଣ ଧ୍ୟାଇ କଲି ସମାପନ ।

ଇତି ଶ୍ରୀ ଜୈମିନି ଭାରତେ ହରିଭକ୍ତିରତ୍ନାବଳୀ ଦ୍ୱାରକଥା ପ୍ରବନ୍ଧେ ନାମ ସପ୍ତତ୍ରିଂଶୋଽଧ୍ୟାୟଃ

—ଇତି ଶ୍ରୀ ଜୈମିନି-ଭାରତେ ସଦାଜୟେ ସମ୍ପୂର୍ଣ୍ଣ ।—

କଟକ ମନମୋହନ ପ୍ରେସରେ ଶ୍ରୀ ମୋହନଚରଣ ଦାସଙ୍କ ଦ୍ୱାରା ମୁଦ୍ରିତ । ୧୯୫୭ ।

◀ କଟକ ଛାପା ▶

ସଚିତ୍ର

# ବୃହତ୍ ବାଲ୍ମୀକି ରାମାୟଣ

ସେଟ୍ ସତରଟଙ୍କା




ସେଟ୍—ଛଅଟଙ୍କା  ଜ୍ଞାନକ୍ରିୟା ଖଣ୍ଡ ଟ ୨୫

# ଅନ୍ନପୂର୍ଣ୍ଣା

ଦେଢ଼ ଟଙ୍କା

# ସମ୍ପୂର୍ଣ୍ଣ ଟେମାଧ

ଏକଟଙ୍କା ଚାରିଅଣା

ମନମୋହନ ପୁସ୍ତକାଳୟ
ମୋ: ଅ: ଗୁନ୍ଦକାଉଗୀର ଉଚ୍ଚେକ-୨ ଓ ୧୨୩।୨୫, ବହୁବଜାରଷ୍ଟ୍ରୀଟ୍, କଲିକତା ୧୨